ଓଡ଼ିଶାର ଆଦିବାସୀ ସଂସ୍କୃତି

# ବନଫୁଲ

୧୯୭୧

ସମ୍ପାଦକ ଓ ପ୍ରକାଶକ :

## ଶ୍ରୀ ଉପେନ୍ଦ୍ର ମିଶ୍ର

ବୁଦ୍ଧନଗର, ଭୁବନେଶ୍ୱର-୬

ମୂଲ୍ୟ--RS. 40

# ସଂପାଦକୀୟ

## ଓଡ଼ିଶାର ଆଦିବାସୀ ଓ ଅଧିବାସୀ

ଆଦିବାସୀର ପ୍ରକୃତ ଅର୍ଥ ହେଉଛି ଆଦିମ ଅଧିବାସୀ । ତେଣୁ ସଭ୍ୟତାର ଆଦିମତା ମୂଳରେ ନିଶ୍ଚୟ ଏହି ଆଦିବାସୀମାନେ ସମ୍ବନ୍ଧିତ । କେବଳ ଆମ ଦେଶ ଭାରତରେ ଯେ ଆଦିବାସୀ ରହିଛନ୍ତି ତାହା ନୁହେଁ, ଅଷ୍ଟ୍ରେଲିଆ, ଆଫ୍ରିକା, ଆମେରିକା ପ୍ରଭୃତି ଦେଶରେ ମଧ୍ୟ ଆଦିବାସୀ ବାସ କରନ୍ତି । ଆଦିବାସୀମାନଙ୍କର ପ୍ରଥମ ବାସସ୍ଥାନ କେଉଁ ଦେଶ ତାହା ସଠିକ ଭାବରେ କହି ହେବ ନାହିଁ । ଏ ସମ୍ପର୍କରେ ଭିନ୍ନ ଭିନ୍ନ ପଣ୍ଡିତଙ୍କର ଭିନ୍ନ ଭିନ୍ନ ମତାମତ ରହିଛି । କେତେକଙ୍କ ମତରେ ଜାଭା ବା ଯବଦ୍ୱୀପ, ମଧ୍ୟଏସିଆର ଦକ୍ଷିଣାଞ୍ଚଳରେ କୌଣସି ଏକ ସ୍ଥାନ ବା ଅଷ୍ଟ୍ରେଲିଆ, ଆଫ୍ରିକା ବା ଭାରତର କୌଣସି ଏକ ସ୍ଥାନ ସେମାନଙ୍କର ପୀଠସ୍ଥଳୀ ଥିଲା । ଏହିଠାରୁ ହିଁ ଆଦିବାସୀମାନେ ଅନ୍ୟାନ୍ୟ ଦେଶ ପର୍ଯ୍ୟନ୍ତ ସ୍ଥାନାନ୍ତରିତ ହୋଇଛନ୍ତି ।

ଭୌଗଳିକମାନେ ମତ ଦିଅନ୍ତି ଯେ ଆଦିମତମ ସମୟରେ ଦକ୍ଷିଣ ଆଫ୍ରିକା ଓ ଭାରତ ଠାରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ଏକ ବିରାଟ ଭୂଖଣ୍ଡ ରହିଥିଲା । ଏହାର ନାମ ଥିଲା, ଗଣ୍ଡୱାନାଲାଣ୍ଡ । ସେହି ଭୂଖଣ୍ଡରେ ବାସ କରୁଥିଲେ ଆଦିମ ଅଧିବାସୀମାନେ ।

ଫଳରେ ଗୋଟିଏ ଅଞ୍ଚଳରୁ ସେମାନେ ଅନ୍ୟ ଅଞ୍ଚଳକୁ ଗତିକରି ଯିବା ସହଜ ଓ ସୁବିଧାଜନକ ହୋଇ ପାରିଥିଲା । ଏପରି ଏକ ପରିକଳ୍ପନାର ମୁଖ୍ୟ ଅର୍ଥ ହେଲା ଯେ ଏ ପର୍ଯ୍ୟନ୍ତ ସିଂହଳ, ଜାଭା, ବାଲି, ବୋର୍ଣ୍ଣିଓ, ସୁମାତ୍ରା, ସେଲିବସ୍, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା ଆଦି ଅଞ୍ଚଳରେ ସମସ୍ୱଭାବସମ୍ପନ୍ନ ଆଦିବାସୀମାନେ ଏ ପର୍ଯ୍ୟନ୍ତ ରହିଛନ୍ତି । ଭୌଗଳିକମାନେ ମଧ୍ୟ ଏହାର ସପକ୍ଷରେ ମତଦିଅନ୍ତି । ସେମାନଙ୍କର ମତରେ ପରବର୍ତ୍ତୀ ସମୟରେ ଭୌଗଳିକ ଆବର୍ତ୍ତନ ଫଳରେ ଏହି ଗଣ୍ଡୱାନାଲାଣ୍ଡର ବିସ୍ତୃତ ଭୂଖଣ୍ଡ ସମୁଦ୍ର ମଧ୍ୟରେ ମଗ୍ନହୋଇ ବିରାଟ ସମୁଦ୍ରରେ ପରିଣତ ହୋଇ ଯାଇଛି । ଅନ୍ୟ କେତେକ ସମାଲୋଚକ ମତ ଦିଅନ୍ତି ଯେ—ଆଦିବାସୀମାନେ କୋହ୍ଲ ବା ମୁଣ୍ଡାରି ଗୋଷ୍ଠୀର । ମୁଣ୍ଡା ଜାତୀୟ ଲୋକ କ୍ରମେ ଭାରତର ଅଷ୍ଟ୍ରେଲିଆ ଆଡ଼େ ଯାଇଥିଲେ । ତେବେ ଯେ ଯାହାହେଉ, ଛୋଟ ନାଗପୁର ଅଞ୍ଚଳରେ ଏହି ମୁଣ୍ଡାରି ଜାତିର ବହୁ ଲୋକ ଏବେ ମଧ୍ୟ ବାସ କରନ୍ତି ।

ଅନ୍ୟ କେତେକଜଣ ସମାଲୋଚକ କହନ୍ତି ଯେ ଆଦିବାସୀମାନଙ୍କ ପୂର୍ବରୁ ଭାରତରେ ଆଉ ଏକ ଗୋଷ୍ଠୀର ଆଦିମତା ରହିଥିଲା । ସେମାନେ ହେଲେ ନିଗ୍ରୋଜାତୀୟ । ଆମ ଦେଶରେ ଯେଉଁ ଅଶ୍ୱତ୍ଥ ଗଛର ପୂଜା ଏବେ ମଧ୍ୟ ଲକ୍ଷ୍ୟ କରାଯାଉଛି, ତାହା ନିଗ୍ରୋଜାତିର ପ୍ରଭାବରୁ ସମ୍ଭବ ହୋଇ ପାରିଛି । ନିଗ୍ରୋଙ୍କ ପରେ ଆମ ଦେଶକୁ ଯେଉଁ ଜାତିର ଲୋକ ଆସିଲେ ସେମାନେ ହେଲେ ନିଷାଦ । ଆମ ପୁରାଣ ମାନଙ୍କରେ ଏହାର ବର୍ଣ୍ଣନା ରହିଛି । ତେବେ ଯାହାହେଉ ଆଦିବାସୀ ସଂସ୍କୃତିର ଆଦିମତା ବିଚାର କଲେ ଜଣାଯାଏ ଯେ ଏମାନେ ଅକ୍ଷତ ଏବଂ ସ୍ୱୟଂ ସମ୍ପୂର୍ଣ୍ଣ ପରମ୍ପରାର ବ୍ୟକ୍ତି । ତେଣୁ ଏମାନଙ୍କ ସାମାଜିକ ଚଳନି, ଧର୍ମଧାରଣା, ପ୍ରକୃତି, ସ୍ୱରୂପ, ଆନ୍ତର ବିଚାର ସମ୍ପର୍କରେ ଆଲୋଚନା କଲେ ଅନେକ ତଥ୍ୟ ପ୍ରକାଶ ପାଇପାରେ । ପ୍ରକୃତରେ ଆଦିବାସୀମାନଙ୍କର ସଂସ୍କୃତିହିଁ ଭାରତର ସଂସ୍କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାରେ ଦାରୁପୂଜକ ଶବର ସମ୍ପ୍ରଦାୟ ହିଁ ଆମ ଜଗନ୍ନାଥ ସଂସ୍କୃତିର ମୂଳ ଆଧାର । ତେଣୁ ଆଦିବାସୀ ଆମର ଚିର ନମସ୍ୟ ।

ବର୍ତ୍ତମାନ ଓଡ଼ିଶାର ଜନସଂଖ୍ୟାର ପ୍ରାୟ ୪୦ ଭାଗ ଏହି ଆଦିବାସୀ ଓ ହରିଜନ ସମ୍ପ୍ରଦାୟର ପ୍ରାୟ ୭୦ ଲକ୍ଷ ଲୋକ ଅବହେଳିତ, ଉପେକ୍ଷିତ ଅବସ୍ଥାରେ ବଣ ପାହାଡ଼ ମାଳଭୂମିରେ ବାସ କରୁଛନ୍ତି । ଓଡ଼ିଶା ଏକ ଅନୁନ୍ନତ ରାଜ୍ୟ । ଏହାର ଉନ୍ନତି କରିବାକୁ ହେଲେ ଏହି ୭୦ ଲକ୍ଷ ସରଳ ଅମାୟିକ କର୍ମଠ ଲୋକଙ୍କର ଉନ୍ନତି [illegible]

ଉପେନ୍ଦ୍ର ମିଶ୍ର

GOVERNOR, ORISSA.

RAJ BHAVAN
BHUBANESWAR

4th January, 1971

Orissa abounds in Adibasi population and the Adibasi tradition and culture is a part and parcel of our State. While uplifting the lot of the Adibasis due stress should be given to the development of their culture also. I do hope that the publication 'Banafula' will endeavour in this direction and wish the publication all success.

S. S. Ansari
GOVERNOR OF ORISSA.



'ବଂନଫୁଲ୍' ଉତ୍ସବରେ ଓଡ଼ିଶାର ରାଜ୍ୟପାଳ ଓ ଆ ଦବାସୀ ଛାତ୍ର ଶ୍ରୀ ଡୁଗୁରାମ ବେଶ୍ରା ।

# On the literary merits of Banafula

Approved by the D. P. I. & T. R. W. Deptt. Orissa.

---

Chief Minister Orissa :—

I hope, the efforts of the Banafula will be crowned with success.

R. N. Singh Deo.

Education Minister :—

Banafula has great educative value.

Banamali Patnaik,

Cultural Affairs Minister :—

The articles in the Banafula are pleasant reading. Both the old and the new writers contribute to this Magazine.

Nityananda Mohapatra.

Minister T. R. W. :—

I request the contrymen to make the Banafula popular in every home.

Manmohan Tudu.

Deputy Minister Health :—

The Banafula is a messanger of Adivasi Culture.

Gobinda Munda.

Minister Urban Development :—

Banafula is a precious treasure of the Adivasis. Gandhian philosophy in the Santali language is an example.

Kartik Chandra Majhi.

Sri Malana, M. L. A. :—

Banafula has taken a great step forward by presenting Adivasi culture and Education.

Sri Arjun Singh, M. L. A. :—

The Carrier of Adivasi culture Banafula shows a new path by combining the old and the new.

Sri Kalindi Charan Panigrahi :—

Banafula does pioneering work in depicting different facts of Adivasi life and culture. It also publishes new type of articles to the need of the general readers.

Professor Dr. S. C. Dash :—

Banafula is a quality-magazine. It is unique in its get-up, printing and the choice of articles.

Kavi-chandra Kali Charan Patnaik :—

Banafula succeeds in the blossoming of flowers in the minds of its readers. This is a novel attempt in Oriya literature.

Dr. Mayadhar Mansingh :—

As an apostle of Adivasi culture, Sri Upendra Mishra's Banafula is an welcome adventure. This is a new venture in Oriya literature. In addition to serving general literature, this Magazine carries the message of the country and the nation to our beloved Adivasi sisters and brothers. A glaring example of this is Gandhian philosophy in Santali Language.

Professor Pranabandhu Kar :—

Banafula has Ushered in a new era by presenting Adivasi language in Oriya Literature.

Jenakabi Murarimohan :—

Banafula was a symbol of rural civilization. The editor friend Upendra Mishra introduced it with courage into Urban milieu. This is an unique achievement.

Professor Bibhuti Patnaik :—

Banafula has taken a bold step forward in breaking with what is traditional.

Professor Dr. Radhanath Rath :—

The language and the articles of Banafula are simple but unique. It is very useful for the students and the teachers in the Adivasi schools of the state. There is no doubt that this Magazine is the first of its kind in oriya literature and has a bright and prosperous future.

Professor Dr. Gopal Chandra Mishra :—

There are many flowers in the forests rich in their fragrance. Banafula has been serving that sweet smell to its readers. Let its path be studded with flowers only.

Brajamohan Mohanty (Poet and Novelist) :—

It is said that the wild flower withers away unseen. But how can that which is an embodiment of the mighty abstract idea of universal beauty fade away ? Let this flower that blossoms forth with enchanting fragrance open up its petals in the minds of its innumerable readers, leaving far behind the wilderness.

Professor N. K. Rath :—

Banafula is the first of its kind to carry the massage of culture of the Harijans and the Adivasis and to bring about an unified sensibility in oriya literature by presenting the myths and legends prevalant among them.

The Samaja, Kalinga and Swaraj :—

Banafula provides pleasant reading as a Magazine.

———

# ଓଡ଼ିଶା ରାଜ୍ୟ ପଣ୍ୟାଗାର ସଂସ୍ଥା

## ୟୁନିଟ୍ ନଂ ୩, ଭୁବନେଶ୍ୱର

## ଫୋନ ନଂ ୫୮୫

**କାର୍ଯ୍ୟକାରୀ ହେଉଥିବା କେନ୍ଦ୍ରର ନାମ :—**

| | | | |
|---|---|---|---|
| ୧—ଜଟଣୀ | ପୁରୀ ଜିଲ୍ଲା | ୧୧—ଟିଟିଲାଗଡ଼ | ,, |
| ୨—ବୀର ହରାପପୁର | | ୧୨—ଝାରସୁଗୁଡ଼ା | ସମ୍ବଲପୁର ଜିଲ୍ଲା |
| ୩—ଭୁବନେଶ୍ୱର | ,, | ୧୩—ବାମଣ୍ଡା | ,, |
| ୪—ରାୟଗଡ଼ା | କୋରାପୁଟ ଜିଲ୍ଲା | ୧୪—ଅନୁଗୁଳ | ଢେଙ୍କାନାଳ ଜିଲ୍ଲା |
| ୫—ଗୁଣୁପୁର | ,, | ୧୫—ଭଦ୍ରକ | ବାଲେଶ୍ୱର ଜିଲ୍ଲା |
| ୬—କେଶିଙ୍ଗା | କଳାହାଣ୍ଡି ଜିଲ୍ଲା | ୧୬—ପାରଳାଖେମୁଣ୍ଡି | ଗଞ୍ଜାମ ଜିଲ୍ଲା |
| ୭—ଖରିଆର ରୋଡ଼ | ,, | ୧୭—କଟକ | କଟକ ଜିଲ୍ଲା |
| ୮—କଣ୍ଟାବାଞ୍ଜି | ବଲାଙ୍ଗିର ଜିଲ୍ଲା | ୧୮—କେନ୍ଦ୍ରାପଡ଼ା | ,, |
| ୯—ବଲାଙ୍ଗିର | ,, | ୧୯—ବାରିପଦା | ମୟୂରଭଞ୍ଜ ଜିଲ୍ଲା |
| ୧୦—ସମ୍ବଲପୁର | ,, | | |

**ମୁଖ୍ୟ ଉଦ୍ଦେଶ୍ୟ :—**

୧—ବୈଜ୍ଞାନିକ ପ୍ରଣାଳୀରେ ଖାଦ୍ୟ ଶସ୍ୟ ଓ କୃଷିଜାତ ଦ୍ରବ୍ୟର ସଂରକ୍ଷଣ ।

୨—ସସ୍ତା ଦରରେ କୃଷୀ ଓ ବ୍ୟବସାୟୀମାନଙ୍କୁ ଋଣ ଯୋଗାଣ ।

୩—ସମସ୍ତ ଗୋଦାମମାନଙ୍କରେ ସଂରକ୍ଷିତ ଖାଦ୍ୟ ଶସ୍ୟର କୀଟାଣୁ ନାଶକ ପ୍ରତିଷେଧକ ବ୍ୟବସ୍ଥା ।

ବିଶଦ ବିବରଣୀ ପାଇଁ କାର୍ଯ୍ୟକାରୀ କେନ୍ଦ୍ରର ପରିଚାଳକ କିମ୍ବା ମ୍ୟାନେଜିଂ ଡାଇରେକ୍ଟର, ରାଜ୍ୟ ପଣ୍ୟାଗାର ସଂସ୍ଥା, ଭୁବନେଶ୍ୱରଙ୍କ ସାକ୍ଷାତ କିମ୍ବା ପତ୍ରାଳାପ କରନ୍ତୁ ।

Source: KC Dash, Digitized by PPRACHIN, SOA

## Publications of

# THE ORISSA STATE MUSEUM

## BHUBANESWAR

| | | |
|---|---|---|
| 1. | The Orissa Historical Research Journal. | Rs. P. |
| | (Rs. 3 per copy and Rs. 5 per joint copy) | 10-00 per volume |
| 2. | Inscriptions of Orissa Ed. By Sri S. N. Rajguru | |
| | (a) Vol.—I (Part-II) | 15-00 |
| | (b) Vol.—II | 15-00 |
| | (c) Vol.—IV | 20-00 |
| 3. | Descriptive Cat. of Sanskrit Manuscript. | |
| | (a) Vol.—I Sri K. N. Mohapatra | 10-00 |
| | (b) Vol.—II Sri K. N. Mohapatra | 8-00 |
| | (c) Vol.—IV Sri M. P. Dash | 8-00 |
| | (d) Vol.—V Sri M. P. Dash | 10-00 |
| 4. | Chandrakala Natika, Sri S. N. Rajguru and Sri Sarbeswar Das | 5-00 |
| 5. | Archaeological Remains at Bhubaneswar Dr. K. C. Panigrahi | 25-00 |
| 6. | Oriya Publications | |
| | (a) Parimala Ed. by Kabi Narasingh Sen | 3-00 |
| | (b) Premalochana Kabi Bishnu Das | 1-50 |
| | (c) Kalapalata Kabi Arjun Das | 1-25 |
| | (d) Kalabati Kabi Bishnu Das | 0-50 |
| | (e) Chhata Ichhabati Kabi Banamali Das | 0-75 |
| | (f) Bharatiya Pratnatatva | 0-75 |
| | (g) Napoi | 1-25 |
| 7. | Picture Post Cards :- | |
| | Set-A—Sculptures of Orissa | 2-50 |
| | Set-B—Temples of Orissa | 2-00 |

## VISIT THE ORISSA STATE MUSEUM

## Bhubaneswar

AND BRANCH MUSEUMS AT

**BARIPADA, KHICHING AND BELKHANDI**

ଏକାମ୍ର ଚତ୍ରମ୍

ପ୍ରଯୋଜିତ

# ଘର ବାହୁଡ଼ା

ରଚନା — କମଳଲୋଚନ ମହାନ୍ତି

ସଂଗୀତ—ଅକ୍ଷୟ ମହାନ୍ତି

ନିର୍ଦ୍ଦେଶନା—ସୋନା ମୁଖାର୍ଜୀ

ଅଭିନୟରେ

ବାବ, ନିରଂଜନ, ସୁଜିତ୍, ହିମାଂଶୁ, ସୁଜାତା, ଶାନ୍ତି, ସୁଧା, ଗୀତା, ଲକ୍ଷ୍ମୀ, ରାଧା, ଲକ୍ଷ୍ମୀଧର, ଅସୀମ, ପୂର୍ଣ୍ଣସିଂ, ମାଧବ, ହରମୋହନ, କିଶୋର ଓ ଆହୁରି ଅନେକ ।



The Orissa Road Transport Company covers daily 33106 Kilometres, carrying 36912 passengers in the districts of Ganjam, Phulbani, Puri and 280 buses in 114 routes. It operates part of Cuttack District

It gives you a glimps into the picturesque beauty, the grandeur of art and architecture by regular services to Puri, the seat of LORD JAGANNATH, the sun temple at KONARK, GOPALPUR-on-sea, Hot spring at Taptapani and LINGARAJ Temple and New Capital at Bhubaneswar.

The passenger buses can be reserved for Tourists, site seeing and excursion purposes.

Public service is the motto of the Company.

Source: KC Dash, Digitized by PPRACHIN, SOA

# ସାଫଲ୍ୟମଣ୍ଡିତ ଯୋଜନା
# ଅଗ୍ରଗତିର ସୂଚନା

ଥେରୁବାଲିର ଫେରୋସିଲିକନ କାରଖାନା ୧୯୬୭ରେ ଉତ୍ପାଦନ ଆରମ୍ଭ କରିଛି । ଫେରୋ-ସିଲିକନ ଇସ୍ପାତ ତିଆରି କରିବା ପାଇଁ ଅତ୍ୟାବଶ୍ୟକ । ଭାରତ ଓ ବିଦେଶୀ ଫେରୋସିଲିକନ ଚାହିଦା ଦୃଷ୍ଟିରୁ ଆମର ଫେରୋସିଲିକନ କାରଖାନା ସମ୍ପ୍ରସାରଣ କାର୍ଯ୍ୟ ଆରମ୍ଭ ହୋଇଛି ।

୧୯୭୨ ସୁଦ୍ଧା ଆମର ସମ୍ପ୍ରସାରିତ ବିଜୁଳି ଚାଳିତ ଫର୍ଣ୍ଣେସ (ଭାଟି) ଚାଲୁ ହେବ ।

ଆମର ଯୋଜନାର ସଫଳତା ଭାରତର ଇସ୍ପାତ ପ୍ରସ୍ତୁତ ଅଗ୍ରଗତିର ବିଶେଷ ଅଂଶ ଗ୍ରହଣ କରିଛି ।

ଶ୍ରମ ନିଯୋଗ ଦୃଷ୍ଟିରୁ ମଧ୍ୟ ଆମର କର୍ତ୍ତବ୍ୟ ସୁଚାରୁ ଭାବେ ପାଳନ କରାଯାଇଛି । ସ୍ଥାନୀୟ ଆଦିବାସୀ ମାନଙ୍କ ମଙ୍ଗଳ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇଛି ।

ଆମର ଉଦ୍ଦେଶ୍ୟ କେବଳ ଆମର ଉନ୍ନତି ନୁହେଁ — ଆମର ପଡ଼ୋଶୀ ଭାଇଙ୍କ ମଙ୍ଗଳ ମଧ୍ୟ ଆମର କର୍ତ୍ତବ୍ୟ । ଆମ କାରଖାନାର ଉନ୍ନତି ହେଉଛି ଆଦିବାସୀ ଭାଇଭଉଣୀଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ।

କାରଖାନାର ଶତକଡ଼ା ଆଦିବାସୀ ଭାଇଭଉଣୀଙ୍କ ସେବାରେ ନିଃସ୍ୱାର୍ଥ ଭାବେ ନିୟୋଜିତ ।

ଇଣ୍ଡିଆନ ମେଟାଲସ ଏଣ୍ଡ ଫେରୋଏଲଏଜ ଲିଃ, ମୁଖ୍ୟକାର୍ଯ୍ୟାଳୟ ଭୁବନେଶ୍ୱର କାରଖାନା ଥେରୁବାଲି, କୋରାପୁଟ ।

Source: KC Dash, Digitized by PPRACHIN, SOA

# ଆଜିର ରାଉରକେଲା



## ଭାରତର ଶିଳ୍ପ-ମାନଚିତ୍ରରେ ଏକ
## ଉଲ୍ଲେଖଯୋଗ୍ୟ ପୀଠ
## ଭାରତ-ଜର୍ମାନ ସହଯୋଗିତାର ପ୍ରତୀକ

୧୯୫୫ ସାଲ ଯାଏ ରାଉରକେଲା ଥିଲା ମାତ୍ର ୧୪୦ ଜଣ ଅଧିବାସୀଙ୍କର ବାସସ୍ଥଳୀ—ଓଡ଼ିଶା ଅଭ୍ୟନ୍ତରରେ ଏକ କ୍ଷୁଦ୍ର ଗ୍ରାମ। ଏଇ ୧୪ ବର୍ଷ ମଧ୍ୟରେ ସେଇ କ୍ଷୁଦ୍ର ଗ୍ରାମ ଖଣ୍ଡିକ ପରିଣତ ହୋଇଛି ଏକ ବିରାଟ ଶିଳ୍ପସମୃଦ୍ଧ ସହରରେ; ଏଠାରେ ଆଜି ଅଢ଼େଇ ଲକ୍ଷ ଲୋକବିଶିଷ୍ଟ ଏକ ଆଧୁନିକ ସହର ମୁଣ୍ଡଟେକି ଉଠିଛି। ଇସ୍ପାତ, ସାର ଓ କୋଇଲାର ଉପଜାତ ଦ୍ରବ୍ୟମାନ ଏଠାରେ ତିଆରି ହେଉଛି।

ଏଥିପାଇଁ ପ୍ରାରମ୍ଭିକ ଯନ୍ତ୍ରକୌଶଳ ଓ କାରିଗରି ସହାୟତା ଯୋଗାଇଥିଲେ ଏକ ପଶ୍ଚିମ ଜର୍ମାନୀ ସଂସ୍ଥା—ଏହି ସଂସ୍ଥାର ମୁଖ୍ୟ ହେଉଛନ୍ତି 'କ୍ରୁପ୍ସ୍ ଡିମାଗ୍ ଓ ଭୋଏଷ୍ଟ' ଭଳି ବିଶ୍ୱବିଖ୍ୟାତ ଶିଳ୍ପାନୁଷ୍ଠାନମାନ। ଫଳରେ ପଶ୍ଚିମ ଜର୍ମାନୀ ଇସ୍ପାତ ଶିଳ୍ପର ଶ୍ରେଷ୍ଠ ସହାୟତା ଭାରତ ଲାଭ କରିଛି।

ଇସ୍ପାତ ଉତ୍ପାଦନ ସଙ୍ଗେ ସଙ୍ଗେ ରାଉରକେଲା ବି ବହୁ ଇସ୍ପାତ ମିସ୍ତ୍ରିଙ୍କୁ ଜନ୍ମ ଦେଇଛି ଏବଂ ନୂତନ ଧାତୁଶିଳ୍ପର କାରଖାନା ଗଢ଼ି ପାରିଲା ଭଳି ତାଲିମପ୍ରାପ୍ତ ଇଂଜିନିୟର ମଧ୍ୟ ସୃଷ୍ଟି କରିଛି। ୧୦ବର୍ଷ ମଧ୍ୟରେ ଆମର ନିଜର ଇଂଜିନିୟର-ମାନଙ୍କ ତତ୍ତ୍ୱାବଧାନରେ ୧୦ ଲକ୍ଷରୁ ୧୮ ଲକ୍ଷ ଟନ ଇସ୍ପାତ ଉତ୍ପାଦନ ନିମିତ୍ତ ସମ୍ପ୍ରସାରଣ ପରିକଳ୍ପନା ଏହି କାରଖାନାରେ କାର୍ଯ୍ୟକାରୀ ହୋଇଛି। ଅବଶ୍ୟ ପଶ୍ଚିମ ଜର୍ମାନୀର ଇଂଜିନିୟରମାନଙ୍କ ସହାୟତା ଏଥିରେ ରହିଛି।

## ବିଶେଷ ଇସ୍ପାତ ରୋଲିଂରେ ଉତ୍କର୍ଷ—

ରାଉରକେଲାର ଯେଉଁ ବାର୍ଷିକ ୧୮ ଲକ୍ଷ ଟନ୍ ଇସ୍ପାତ ଉତ୍ପାଦନ କ୍ଷମତା ରହିଛି, ତା ପ୍ଲେଟ, ସିଟ୍, କଏଲ୍ ଓ ପାଇପ୍ ଉତ୍ପାଦନରେ ନିୟୋଜିତ ହୋଇଥାଏ । ଏଠାର ଯନ୍ତ୍ରପାତି ଓ ଉତ୍ପାଦନ ପ୍ରଣାଳୀ ପୃଥିବୀର ଅତ୍ୟାଧୁନିକ ଯନ୍ତ୍ରପାତି ଓ ଉତ୍ପାଦନ ପ୍ରଣାଳୀ ମଧ୍ୟରେ ଗଣ୍ୟ । ରାଉରକେଲା ଏଲ୍. ଡି. ପ୍ରଣାଳୀରେ ଇସ୍ପାତ ଉତ୍ପାଦନ କଲାବେଳକୁ ପାଶ୍ଚାତ୍ୟ ଜଗତରେ ମଧ୍ୟ ଏ ପ୍ରଣାଳୀର ବ୍ୟାପକ ବ୍ୟବହାର ହୋଇ ନ ଥିଲା । ଏଠାର ପ୍ଲେଟ ମିଲ୍‌ରେ ୬୩ ମି.ମି. ଯାଏ ମୋଟା ପ୍ଲେଟ ତିଆରି ହୋଇପାରେ । ଏହାର ଓ୍ୱାଇଡ୍ ଷ୍ଟ୍ରିପ୍ ମିଲରେ ସେକେଣ୍ଡକୁ ୧୧ ମିଟର ହାରରେ, ୨୦୦ ମି.ମି. ମୋଟା ସ୍ଲାବକୁ ୨ ମି.ମି. ଯାଏ ପାତଳା ଷ୍ଟ୍ରିପ୍‌ରେ ପରିଣତ କରାଯାଇପାରେ । ସମ୍ପ୍ରସାରଣ ଯୋଜନାରେ ଯେଉଁସବୁ ନୂତନ ବିଭାଗ ନିର୍ମିତ ହେଲା, ସେଥିରେ ରହିଛି ଏକ ଇଲେକ୍‌ଟ୍ରିକାଲ୍ ସିଟ୍ ମିଲ ଏବଂ ଏକ ଅବିରାମ କଏଲ୍ ଗ୍ୟାଲଭାନାଇଜିଂ ଲାଇନ । ଏଠାରେ ଥିବା ୫-ଷ୍ଟାଣ୍ଡ ଟ୍ୟାଣ୍ଡେମ୍ କୋଲ୍ଡ-ରୋଲିଂ ମିଲରେ ସର୍ବାଧୁନିକ ଯନ୍ତ୍ରକୌଶଳ ବ୍ୟବହୃତ ହୋଇଛି ଏବଂ ନୂତନ ଇଲେକ୍‌ଟ୍ରୋଲାଇଟିକ୍ ଟିନିଂ ଲାଇନ୍‌ଟି ଯୋଗୁଁ ଦେଶର ଟିଣ ଚଦର ଯୋଗାଣ ବହୁଗୁଣିତ କରିବାରେ ରାଉରକେଲା ସକ୍ଷମ ହୋଇଛି ।

ଏହିସବୁ ବିବିଧ ଇସ୍ପାତ ସାମଗ୍ରୀ ଦେଶର ବିଭିନ୍ନ ଶିଳ୍ପର କାମରେ ଲାଗେ । ଯଥା ଜାହାଜ ତିଆରି, ମୋଟର ଗାଡ଼ି ତିଆରି, ରେଳ ଇଂଜିନ୍ ଓ ରେଲଡବା ତିଆରି, ନିର୍ମାଣ ଓ ପ୍ରତିରକ୍ଷା ଶିଳ୍ପ ଇତ୍ୟାଦି ।

## ବିବିଧ ପ୍ରକାର ଉପଜାତ ଦ୍ରବ୍ୟ—

ଇସ୍ପାତ ଉତ୍ପାଦନ ଓ ପ୍ରସେସିଂ ପାଇଁ ଯନ୍ତ୍ରପାତି ଯୋଗାଇବା ଛଡ଼ା ପଶ୍ଚିମ ଜର୍ମାନୀ ମଧ୍ୟ ଏଇ ଇସ୍ପାତ କାରଖାନାଠାରେ ଗୋଟିଏ କୋକ୍ ଉପଜାତ କାରଖାନା ବସାଇବାରେ ସହାୟତା କରିଛି । ଏସିଆରେ ଏଇଟି ହେଉଛି ବୃହତ୍ତମ । ପ୍ରତି ଘଣ୍ଟାରେ ଏଠାରେ ୭୦,୦୦୦ ଘନ ମିଟର କୋକ୍ ଓଭେନ ଗ୍ୟାସ୍ ବ୍ୟବହୃତ ହୁଏ । ଏଥିରୁ ଯେଉଁସବୁ ରାସାୟନିକ ଦ୍ରବ୍ୟ ଜାତ ହୁଏ ତା' ପ୍ଲାଷ୍ଟିକ, ଔଷଧ, ବାରୁଦ, ରଙ୍ଗ ଓ ଜୀବାଣୁନାଶକ ପ୍ରସ୍ତୁତିରେ କଞ୍ଚାମାଲ ଭାବେ ବ୍ୟବହୃତ ହୁଏ । ରାଉରକେଲାର ସାର କାରଖାନାଟି ହେଉଛି ଦେଶ ମଧ୍ୟରେ ଥିବା ବୃହତ୍ତମ ନାଇଟ୍ରୋଜେନ୍ ସାର ଯୋଗାଣ କେନ୍ଦ୍ରମାନଙ୍କ ମଧ୍ୟରେ ଅନ୍ୟତମ । ୧୯୬୯-୭୦ରେ ଏଠାରେ ୪୦୦,୦୦୦ ଟନ କ୍ୟାଲସିଅମ୍ ଆମୋନିୟମ ନାଇଟ୍ରେଟ୍ ( ୨୦.୫%କ୍ୟାନ ) ପ୍ରସ୍ତୁତ ହେବ ।

## ରାଉରକେଲା ଯୋଗୁଁ ଆମଦାନି କମିଛି, ରପ୍ତାନି ବଢ଼ିଛି ।

ରାଉରକେଲାରେ ଯେଉଁ ପ୍ରତିଟି ଟନ୍ ପ୍ଲେଟ୍ ଓ ସିଟ୍ ଉତ୍ପନ୍ନ ହୁଏ ତା' ଦେଶର ଆମଦାନି ବୋଝକୁ ସେଇ ମାତ୍ରାରେ ଉଶ୍ୱାସ କରେ । ଏଠାର ପାଇପ୍ ସବୁ ପାଖ ପଡ଼ୋଶୀ ବନ୍ଧୁ ଦେଶକୁ ରପ୍ତାନି ହୁଏ । ସେସବୁ ଦେଶର ଅର୍ଥନୈତିକ ଉନ୍ନୟନରେ ସହାୟତା କରିବା ସଙ୍ଗେ ସଙ୍ଗେ ଭାରତ ପାଇଁ ବହୁମୂଲ୍ୟ ବୈଦେଶିକ ମୁଦ୍ରା ମଧ୍ୟ ଅର୍ଜନ କରିଥାଏ । ଭାରତରୁ ଯେଉଁସବୁ ଇଂଜିନିୟରିଂ ସାମଗ୍ରୀ ବାହାରକୁ ଯାଏ, ତା' ମଧ୍ୟରେ ରାଉରକେଲାର ପ୍ଲେଟ୍, ସିଟ୍ ଓ କଏଲର ଅଂଶ ଉଲ୍ଲେଖଯୋଗ୍ୟ ।

**ହିନ୍ଦୁସ୍ତାନ ଷ୍ଟିଲ**

ରାଉରକେଲା ଇସ୍ପାତ କାରଖାନା

**ରାଉରକେଲା**

# ଦୁର୍ଦ୍ଦିନର ମୁକାବିଲା କରିବାପାଇଁ ସଞ୍ଚୟ କରନ୍ତୁ ।

ପୋଷ୍ଟ ଅଫିସ ସେଭିଂସ୍ ବ୍ୟାଙ୍କରେ ଆଜ ଗୋଟିଏ ଏକାଉଣ୍ଟ୍ ଖୋଲନ୍ତୁ ।

* ଅତ କମ୍‌ରେ ୫ ଟଙ୍କା ଦେଇ ଏହ ଏକାଉଣ୍ଟ୍ ଖୋଲାଯାଇ ପାରବ ।
* ଅତ କମ୍‌ରେ ଟଙ୍କାଟିଏ ହେଲେ ପାଶ୍ ବହରେ ଜମାଦେଇ ହେବ ।
* ଯେ କୌଣସି ନାବାଳକ ମଧ୍ୟ ଏକାଉଣ୍ଟ୍ ଖୋଲ ପାରବେ ।
* ଟଙ୍କା ଉଠାଇ ନେବାରେ କଛ ଅସୁବଧା ନାହିଁ ।
* ଶତକଡ଼ା ବାର୍ଷିକ ଟ ୩।୫୦ ପ: ହସାବରେ ସୁଧ ମିଳେ ।
* ଏଥିରେ ମିଳୁଥିବା ସୁଧ ଉପରେ ଆୟକର ପଡ଼େ ନାହିଁ ।

ପିଲାମାନେ ସଂଚୟ ଟିକେଟ କଣି ମଧ୍ୟ ଏକାଉଣ୍ଟ୍ ଖୋଲ ପାରବେ ।

* ବଦ୍ୟାଳୟରେ ପ୍ରତ୍ୟେକ ଛାତ୍ର–ଛାତ୍ରୀ ଏହାର ସୁଯୋଗ ନଅନ୍ତୁ ।

ବଶେଷ ବବରଣୀ ପାଇଁ ନକଟତମ ଡାକଘରେ ଅନୁସନ୍ଧାନ କରନ୍ତୁ ।




ସ୍ୱଳ୍ପ ସଂଚୟ ସଂଗଠନ,
ଅର୍ଥବଭାଗ, ଓଡ଼ଶା




ଆଦିବାସୀ ଭାଇ-ଭଉଣୀମାନଙ୍କୁ ଅନୁରୋଧ ହଳଦୀ, ସୋରିଷ, ମହୁ ଇତ୍ୟାଦି ବଦଳାଇବାବେଳେ ନିକିତି, ବଟକରା ଓ ଲିଟରଗୁଡ଼ିକରେ ଓଜନ ମାପ ବିଭାଗର ମୋହର ଦେଖି ନିଅନ୍ତୁ ।

ସୁଲଭ ମୂଲ୍ୟ ଦୋକାନଗୁଡ଼ିକରେ ବ୍ୟବହୃତ ହେଉଥିବା ନିକିତି, ବଟକରା ଓ ଲିଟର ମାପଗୁଡ଼ିକ ଓଜନ ମାପ ବିଭାଗ ଦ୍ୱାରା ପରୀକ୍ଷିତ ।

ଓଜନ ଓ ମାପ ବିଭାଗ, ଓଡ଼ିଶା ସରକାର ।

# ॥ ଚଣ୍ଡୀର ଅଷ୍ଟଶକ୍ତି ॥

ଶ୍ରୀ ଗଣେଶ ପ୍ରସାଦ ପରିଜା

[ ଶ୍ରୀ ଗଣେଶ ପ୍ରସାଦ ପରିଜା ଜଣେ ପ୍ରବୀଣ ତରୁଣ ସାହିତ୍ୟିକ । ବିଶେଷ କରି ଦେବୀ ଶକ୍ତି ଓ ଦେବୀ ମାହାତ୍ମ୍ୟ ଉପରେ ସେ ସଂଖ୍ୟାଧିକ ପ୍ରବନ୍ଧ ରଚନା କରିଛନ୍ତି । ଏ ପ୍ରବନ୍ଧଗୁଡ଼ିକ ଝଙ୍କାର, , ପ୍ରଜାତନ୍ତ୍ର, ଜୀବନରଙ୍ଗ, ଆସନ୍ତାକାଲି, ଡଗର, ସମାଜ, ମାତୃଭୂମି ଇତ୍ୟାଦି ପତ୍ର-ପତ୍ରିକାରେ ପ୍ରକାଶିତ । ଏହା ବ୍ୟତୀତ ସେ ଜଣେ ଉନ୍ନତ ଔପନ୍ୟାସିକ ଓ ଗାଳ୍ପିକ । ସ. ବନଫୁଲ ]

"ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା"

ଏହି ଅନନ୍ତ ବିଶ୍ୱ ଜଗତ ମୂଳରେ ଅଛି ଗୋଟିଏ ମହାଶକ୍ତି । ତାହାଠାରୁ ପ୍ରତ୍ୟେକ ବସ୍ତୁର ଉଦ୍ଭବ, ତାହାଙ୍କ ଅଙ୍କରେ ସ୍ଥିତି ଏବଂ ପୁନର୍ବାର ତାହାଙ୍କ କ୍ରୋଡ଼ରେ ଶେଷ ପରିଣତି ଲାଭ । ଏକ ହେଲେ ମଧ୍ୟ ସେ ବ୍ୟକ୍ତ କରନ୍ତି ନିଜକୁ ନାନା ରୂପରେ ପୁଣି ବହୁତ୍ୱ ମଧ୍ୟ ଦେଇ ଏକତ୍ୱର ବିକାଶ । ମହାଭାରତ ଯୁଦ୍ଧ ଆରମ୍ଭ ପୂର୍ବରୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇ କହିଛନ୍ତି ଏହି ମହାଶକ୍ତିର ସ୍ତବ କରିବାକୁ । ଚଣ୍ଡୀଗ୍ରନ୍ଥ ଏହି ମହାଶକ୍ତିକୁ ଜଗତ୍ପତି ହରିଙ୍କ ଯୋଗନିଦ୍ରା ବୋଲି କହିଛି । ସ୍ତବରେ ଅର୍ଜୁନ ମହାଶକ୍ତିଙ୍କୁ କୌମାରୀ, କାଳୀ, କପାଳିନୀ, କାନ୍ତାରବାସିନୀ ପ୍ରଭୃତି ବହୁ ନାମରେ ଅଭିହିତ କରିଛନ୍ତି । ଗୀତାରେ ଭଗବାନ ଅର୍ଜୁନଙ୍କୁ କହିଛନ୍ତି ନିଜର ଆଠଟି ପ୍ରକୃତି କଥା । ତାହା-ଭୂମି, ଅପ୍, ଅନଳ, ଅନିଳ, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର । ଶକୁନ୍ତଳା ନାଟକ ପ୍ରାରମ୍ଭେ ମଙ୍ଗଳାଚରଣରେ ମହାକବି କାଳିଦାସ ଶିବଙ୍କର ଅଷ୍ଟମୂର୍ତ୍ତି କଥା କହିଛନ୍ତି । ତାହା କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ, ଚନ୍ଦ୍ର, ସୂର୍ଯ୍ୟ ଓ ଯଜମାନ । ଅଷ୍ଟ ପ୍ରକୃତି ଅଷ୍ଟମୂର୍ତ୍ତି ମଧ୍ୟରେ ଅନେକ ସାଦୃଶ୍ୟ ଅଛି ।

ଅର୍ଗଳାସ୍ତୋତ୍ର କହୁଛି ଦଶଟି ମୂର୍ତ୍ତିର କଥା— ଜୟନ୍ତୀ, ମଙ୍ଗଳା, କାଳୀ, ଭଦ୍ରକାଳୀ କପାଳିନୀ, ଦୁର୍ଗା, ଶିବା, କ୍ଷମାଧାତ୍ରୀ, ସ୍ୱାହା ଏବଂ ସ୍ୱଧା । ଏହି ଦଶରୂପରେ ଦଶଦିଗ ପ୍ରତିପାଳନ ହୁଏ । ଦେବୀ କବଚ ନବଦୁର୍ଗା ନାମରେ ନଅଟି ଦେବୀଙ୍କ ନାମ କହୁଛି— ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟିନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧିଦାତ୍ରୀ । ଏହି ନବଦୁର୍ଗା ଈଶ୍ୱର ରକ୍ଷୟିତ୍ରୀ ଶକ୍ତିନାମେ 'ଖ୍ୟାତ' । ଚଣ୍ଡୀର ଅଷ୍ଟମ ଅଧ୍ୟାୟରେ ଅଷ୍ଟଶକ୍ତିଙ୍କ କଥା ବିଶଦ ଭାବେ ବର୍ଣ୍ଣିତ । ଏହି ଶକ୍ତିମାନେ ଆସିଲେ ରକ୍ତବୀର୍ଯ୍ୟ ବଧରେ ମା' ଦୁର୍ଗାଙ୍କୁ ସାହାଯ୍ୟ କରିବା ପାଇଁ । ଚଣ୍ଡ ଓ ମୁଣ୍ଡ ଦୁଇ ସେନାପତିଙ୍କର ପତନ ହୋଇଛି, ଅହଂକାରୀ ଅସୁର ରାଜା ଶୁମ୍ଭ କ୍ରୋଧରେ ଅଗ୍ନିଶର୍ମା । ସେ ଆଦେଶ ଦେଉଛି ତାର ଅଗଣିତ ସୈନ୍ୟଙ୍କୁ ଶୀଘ୍ର ଯୁଦ୍ଧପାଇଁ ପ୍ରସ୍ତୁତ ହୁଅ । ଅପମାନର ପ୍ରତିଶୋଧ ନେବାକୁ ହୁଏତ ଦୁର୍ଗାକୁ ବଧ କରିବାକୁ ହେବ, ନଚେତ୍ ତାର କେଶାକର୍ଷଣ କରି ଧରି ଆଣିବାକୁ ହେବ ।

ଶୁମ୍ଭାସୁରର ଅସୀମ ସେନା ସେନାପତି ଆସିବା ଦେଖି ମହାଦେବୀ ଉଠି ଦଣ୍ଡାୟମାନ ହେଲେ, ଟଙ୍କାର

ଦେଲେ ଧନକୁ ଆମନ୍ତ୍ର । ବାଜି ଉଠିଲା ହସ୍ତସ୍ଥିତ ଘଣ୍ଟା । ସିଂହ ଦେଲା ହୁଙ୍କାର । ଦେବୀ କାଳିକା କଲେ ମହାଶବ୍ଦ । ସେହି ଶବ୍ଦରେ ଦିଗ୍‌ମଣ୍ଡଳ ପୂର୍ଣ୍ଣ ହୋଇଗଲା । ଚମକିତ ହେଲେ ଦେବତାମାନେ ଅସୁର ସୈନ୍ୟ ଦେଖି । ମହାବୀର ରକ୍ତବୀର୍ଯ୍ୟ ଗର୍ଜୁଛି ଘୋରଦର୍ପେ । ସେ ଏ ଯୁଦ୍ଧରେ ସେନାପତି । ସେ ନୁହେଁ ଚଣ୍ଡ ମୁଣ୍ଡ ଯାହାଙ୍କ ଅନାୟାସେ ତାର ମୃତ୍ୟୁହୋଇ ପାରିବ । ତା’ ଦେହର ଯଦି ଗୋଟାଏ ଟୋପା ରକ୍ତ ମାଟିରେ ପଡ଼ିବ, ତେବେ ତାଆରି ଭଳି ଶକ୍ତିଶାଳୀ ଆଉ ଏକ ରକ୍ତବୀର୍ଯ୍ୟ ଜନ୍ମଗ୍ରହଣ କରିବ । ତେବେ ସେ ମରିବ କପରି ?

— ଅଧିକ ଉଦ୍‌ବେଗ ହେତୁ ଦେବତାମାନଙ୍କ ଅଙ୍ଗରୁ ନିର୍ଗତ ହେଲେ ସେମାନଙ୍କର ଶକ୍ତିଗଣ । ସେମାନେ ସମସ୍ତେ ମହାଦେବୀର ଶକ୍ତି, ଥିଲେ ସେମାନେ ଦେବଗଣଙ୍କ ମଧ୍ୟରେ । ଦେବତାମାନଙ୍କ ମଧ୍ୟରେ ଥିବାବେଳେ ମଧ୍ୟ ସେମାନେ ମହାଦେବୀଙ୍କଠାରୁ ଅଭିନ୍ନା ହୋଇ ଅଖଣ୍ଡ ରୂପେ ଥିଲେ । ବର୍ତ୍ତମାନ ସେମାନେ ପ୍ରକଟିତ ହେଲେ । ସେମାନଙ୍କୁ ଦେଖିଲେ ମନେହେବ ଯେପରି ଭିନ୍ନ ଭିନ୍ନ । ମାତ୍ର ଏମାନେ ପ୍ରକୃତରେ ଏକ ଏବଂ ସେହି ଏକ ରୂପ । ଏମାନେ ସମସ୍ତେ ଏକତ୍ରୀଭୂତ ଭାବେ ପ୍ରକାଶ ହେବେ ସେହି ସମୟରେ, ଯେଉଁ, ସମୟରେ କି ସମସ୍ତ ମାତୃକା ଶକ୍ତି ଏକତ୍ରିତ ହୋଇ ମିଶିଯିବେ ସେହି ମହାଦେବୀଙ୍କ ଦେହରେ ।

ଆସିଲେ ଅଷ୍ଟଶକ୍ତି-ବ୍ରହ୍ମାଣୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ଐନ୍ଦ୍ରୀ, ଯଜ୍ଞ ବାରାହୀ, ନାରସିଂହୀ ଓ ଚଣ୍ଡିକା । ପ୍ରଥମୋକ୍ତ ସପ୍ତଦେବୀ ବିଭିନ୍ନ ସପ୍ତଦେବଙ୍କ ଠାରୁ ନିର୍ଗତ ହୋଇ ଆସିଲେ ଏବଂ ଅଷ୍ଟମ ଚଣ୍ଡିକା ଦେବୀ ବ୍ୟକ୍ତହେଲେ ମହାଦେବୀଙ୍କ ଦେହରୁ । ଏ ଯେପରି ଶକ୍ତିର ହିଁ ଶକ୍ତି । ଏହି ଦେବୀଙ୍କର ଅପର ନାମ ଅପରାଜିତା ଓ ଶିବଦୂତୀ । ଯେଉଁ ଦେବତାଙ୍କର ଯେଉଁ ରୂପ ତାଙ୍କ ଶକ୍ତି ମଧ୍ୟ ସେହିଭଳି, ସେହି ରୂପ । ଯେଉଁ ଦେବତାଙ୍କର ଯେଉଁଭଳି କାର୍ଯ୍ୟ ତାଙ୍କ ଶକ୍ତିର ମଧ୍ୟ ସେହିପରି କାର୍ଯ୍ୟ । ଏହି ଉକ୍ତିକୁ ତନ୍ତ୍ର ଦୃଷ୍ଟିରେ ଆହୁରି ପରିଷ୍କାର କରି କହିଲେ କହିବାକୁ ହେବ ଏହି ଶକ୍ତିଙ୍କ ଅନ୍ତଃ ପ୍ରବେଶରେ ଏହି ଦେବତାଙ୍କର ମଧ୍ୟ ଏହି ରୂପର କାର୍ଯ୍ୟ ହୋଇଥାଏ । ଶକ୍ତିଠାରୁ ଶକ୍ତିମାନର ପ୍ରକାଶ । ବିଷ୍ଣୁଙ୍କୁ ବିଷ୍ଣୁତ୍ୱ ଦେଇଛନ୍ତି ଯେଉଁ ଶକ୍ତି, ସେ ହିଁ ବୈଷ୍ଣବୀ ଶକ୍ତି । ନରସିଂହ ହିରଣ୍ୟ କଶିପୁକୁ ବଧ କରିଥିଲେ ନିଶ୍ଚୟ ଶକ୍ତିବଳରେ । ସେହି ଶକ୍ତି ସେତେବେଳେ ଥିଲା ନରସିଂହଙ୍କ ଠାରେ ଅମୂର୍ତ୍ତ । ଆଜି ମୂର୍ତ୍ତିମନ୍ତ ହୋଇ ପ୍ରକଟିତ ହୋଇଛି ନାରସିଂହୀ ରୂପେ । ବରାହ ଦନ୍ତାଗ୍ରେ ଧରଣୀ ଧରିଥିଲେ ଯେଉଁ ଶକ୍ତି ବଳରେ ସେ ହିଁ ବାରାହୀ ଶକ୍ତି । ସେତେବେଳେ ସେ ଥିଲେ ବରାହଙ୍କ ମଧ୍ୟରେ ଅମୂର୍ତ୍ତ ଭାବେ । ଆଜି ମୂର୍ତ୍ତି ଧାରଣ କରି ଧାଇଁ ଆସିଛନ୍ତି ଯୁଦ୍ଧକ୍ଷେତ୍ରେ ମହାଦେବୀଙ୍କୁ ସାହାଯ୍ୟ କରିବାକୁ । ଅଙ୍ଗୀର ହିଁ ଅଙ୍ଗ । ଅଙ୍ଗର କାର୍ଯ୍ୟ ହେଲା ଅଙ୍ଗୀକୁ ରକ୍ଷା କରିବା, ହସ୍ତପଦ ଯେପରି ଦେହକୁ ରକ୍ଷା କରେ । ଶକ୍ତିଗଣ ମୂର୍ତ୍ତହୋଇ ଧାଇଁ ଆସିଲେ ମହାଶକ୍ତିଙ୍କ ସେବାରେ ଲାଗିବାକୁ । ମହାଶକ୍ତିଙ୍କ ଆବଶ୍ୟକବେଳେ ତାଙ୍କ ଶକ୍ତି ରହିବେ କେଉଁଠି ?

ଶକ୍ତିଗଣଙ୍କ ରୂପ, ଭୂଷଣ, ବାହାନ ଓ କାର୍ଯ୍ୟ-ସବୁ ଶକ୍ତିମାନର ଅନୁରୂପ । ଶକ୍ତିମାନେ ତ ଶକ୍ତିରହିଁ ପ୍ରକାଶ । ପ୍ରଥମେ ଆସିଲେ ବ୍ରହ୍ମାଣୀ । ଏ ହେଉଛନ୍ତି ବ୍ରହ୍ମାର ମୂଳୀଭୂତ ଶକ୍ତି ନାଦ ଓ ବେଦବ୍ରହ୍ମ ରୂପିଣୀ । ସେ ଆସିଲେ ହଂସଯୁକ୍ତ ବିମାନରେ—‘ହଂସ’ ହେଲା ‘ଅହଂସ’, ‘ସୋହହଂ’ ଏହା ବ୍ରହ୍ମୈକାତ୍ମ୍ୟ ଜ୍ଞାନର ସ୍ୱରୂପ । ଏହି ଜ୍ଞାନ ଶିଖରରେ ଶବ୍ଦବ୍ରହ୍ମ ବିରାଜମାନ । ବ୍ରହ୍ମାଣୀଙ୍କ ହସ୍ତରେ ଅକ୍ଷମାଳା ଓ କମଣ୍ଡଳୁ । ଅକ୍ଷମାଳା ମନ୍ତ୍ରଶକ୍ତିର ପ୍ରକାଶ ଏବଂ କମଣ୍ଡଳୁରେ ଅମୃତବାରି । ମନ୍ତ୍ରଶକ୍ତି ଓ ବାରି ପ୍ରଭାବରେ ସେ ଯେପରି ଭକ୍ତକୁ ରକ୍ଷା କରନ୍ତି, ସେହିପରି ଅଭକ୍ତକୁ ବିନାଶ କରନ୍ତି । ବସ୍ତୁତଃ ବିନାଶ କାହାରିକୁ କରନ୍ତି ନାହିଁ—ଅଭକ୍ତର ଅଭକ୍ତିକୁ ନାଶକରି ଜ୍ଞାନ ସଞ୍ଚାରିତ କରନ୍ତି, ବ୍ରହ୍ମାଣୀ ପରେ ଆସିଲେ ମାହେଶ୍ୱରୀ । ଏ ହେଉଛନ୍ତି ମହେଶ୍ୱର

ବା ଇନ୍ଦ୍ରଙ୍କ ଶକ୍ତି । ଏହାଙ୍କର ପ୍ରଧାନ କାର୍ଯ୍ୟ ହେଉଛି ସଂହାରାତ୍ମକ । ଏ ରହିଥାନ୍ତି ଶିବ ବ୍ରହ୍ମର ପଶ୍ଚାତରେ । ଧ୍ୱଂସ ନ ହେଲେ ଦେବବ୍ରହ୍ମ ସୃଜନ କରିବ କପରି ? ଶଙ୍କର ଭଙ୍ଗିଲେ ବ୍ରହ୍ମାଣୀ ଗଢ଼ନ୍ତି । ଗୋଟିଏ କର୍ମର ଦୁଇଟି ଦିଗ ଦୁଇଟି ପାର୍ଶ୍ୱ ।

ମାହେଶ୍ୱରୀ ବୃଷଭାରୂଢ଼ା । କରରେ ତ୍ରିଶୂଳ, ମସ୍ତକରେ ଚନ୍ଦ୍ରକଳା, ଦୁଇ ବାହୁରେ ବଳୟାକାର ଦୁଇ ମହାସର୍ପ । ବୃଷ ଧର୍ମର ପ୍ରତୀକ । ତ୍ରିଶୂଳ ତ୍ରିଗୁଣ ନାଶକାରୀ ନିର୍ଗୁଣ ତତ୍ତ୍ୱର ଜ୍ଞାନସୂଚକ । ଚନ୍ଦ୍ରକଳାରେ କରୁଣାକୋମଳ ସ୍ନିଗ୍ଧତାର ସଙ୍କେତ । ସାମରିକ ନିଷ୍ଠୁରତା ମଧ୍ୟରେ କରୁଣାଧାରା । ସର୍ପଦ୍ୱୟ ଅନନ୍ତ ଓ ବାସୁକୀ ଆକର୍ଷଣୀ ଏବଂ ବିକର୍ଷଣୀ ଶକ୍ତି । ଥରେ ଗୁଡ଼ାଇଦେଲେ ଆଉଥରେ ଟାଣି ଆଣନ୍ତି । ମହାବିବରରେ ସବୁ ଅବଶ ହୋଇ ତାହାଙ୍କଠାରେ ନିଦ୍ରା ଯାଆନ୍ତି । ନିଷ୍ଠୁର ଭାବେ ଏହି ଶକ୍ତି ଧ୍ୱଂସ କରନ୍ତି ଅସୁରର ଆସୁରିକତାକୁ । ମହେଶ୍ୱରୀଙ୍କ ପଶ୍ଚାତରେ କୌମାରୀ । ଦେବ ସେନାପତି କୁମାରଙ୍କର ଏ ହେଉଛନ୍ତି ସମଗ୍ର ଶକ୍ତି । ଏହାଙ୍କୁ କ୍ଷେତ୍ର ଶକ୍ତିର ମୂର୍ତ୍ତି ବୋଲି କୁହାଯାଏ । କ୍ଷେତଠାରୁ ତ୍ରାଣ କରନ୍ତି ବୋଲି କ୍ଷତ୍ରିୟ । ଯେଉଁଠି କ୍ଷତ, ଆଘାତ ଦେଖିଲେ ତାହାର ପ୍ରତିକାର ନ କରି ରହନ୍ତି ନାହିଁ । ଏହାଙ୍କର ଏକ ବିଶେଷତ୍ୱ ଗୁହରୂପିଣୀ । ସେ ଗୋପନ କରନ୍ତି ନିଜର ସୈନ୍ୟଦଳ ଶତ୍ରୁ ଦୃଷ୍ଟିରୁ । ସୁତରାଂ ଏ ହେଉଛନ୍ତି ଯୁଦ୍ଧ-କୌଶଳୀ । ଏହି ଦେବୀ ମୟୂର ବାହନା ଶକ୍ତି ହସ୍ତା । ମୟୂର କାମବେଗ ନ କରି ଦୂରରେ ଥାଏ, ତେଣୁ ସେ ରିପୁଜୟୀ, ତାର ଆହାର କାଳସର୍ପ—ସେ କାଳଜୟୀ । ତାହାରି ଉପରେ ଦେବୀସ୍ଥିତା । ଦେବୀଙ୍କ ହସ୍ତରେ ଶକ୍ତି । ଏହି ଶକ୍ତି ଏକ ଲୌହ ନିର୍ମିତ ବର୍ଚ୍ଛାପରି । ଦୁଇ ପାର୍ଶ୍ୱରେ ତାର ତୀକ୍ଷ୍ଣ ଧାର । ଏହା କ୍ଷେପଣାସ୍ତ୍ର ଏବଂ ଧାରଣ ଅସ୍ତ୍ର । କୌମାରୀ ଶକ୍ତି ଚିରକୁମାରୀ, ଏହାଙ୍କୁ ବାର୍ଦ୍ଧକ୍ୟ ସ୍ପର୍ଶ କରିପାରେ ନାହିଁ । ଆତ୍ମରକ୍ଷା ସତ୍ୟ-ରକ୍ଷାର, ରଣ ନୈପୁଣ୍ୟର ଏବଂ ଚିର କୌମାର୍ଯ୍ୟର ପ୍ରକଟ ମୂର୍ତ୍ତି କୌମାରୀ ଶକ୍ତି ।

ତତ୍ପରେ ଆସିଲେ ବୈଷ୍ଣବୀ ଶକ୍ତି । ପ୍ରତ୍ୟେକ ନରର ଯେ ଆଶ୍ରୟ ସେହି ନାରାୟଣର ଏ ହେଉଛନ୍ତି ଶକ୍ତି । ଏହି ଶକ୍ତି ବଳରେ ନାରାୟଣ ଜଗତ୍ପାଳନ —ରକ୍ଷା କରନ୍ତି । ଶକ୍ତି ଗରୁଡ଼ାସନା । ଚାରି ହସ୍ତ ଶଙ୍ଖ, ଚକ୍ର, ଗଦା, ଖଡ୍ଗ । ଗରୁଡ଼ ସତ୍ତ୍ୱଗୁଣ ପ୍ରଧାନ, ଊର୍ଦ୍ଧ୍ୱଗତି ଓ ସୂକ୍ଷ୍ମଦୃଷ୍ଟି ଏହାର ଦୁଇଟି ବୈଶିଷ୍ଟ୍ୟ । ଶଙ୍ଖ ପ୍ରଣବ ନାଦ—ଚକ୍ର କର୍ମ ପ୍ରବାହ—ଗଦା ନ୍ୟାୟଦଣ୍ଡ ଓ ଖଡ୍ଗ ତତ୍ତ୍ୱଜ୍ଞାନର ପ୍ରତୀକ । ଏହି ଅସ୍ତ୍ରଗୁଡ଼ିକ ବିଶ୍ୱକୁ ସ୍ଥିତ ରଖନ୍ତି । ସତ୍ତ୍ୱଗୁଣର ଆଶ୍ରୟରେ ମନ୍ତ୍ରଶକ୍ତିର ଉଦ୍ବୋଧନ, ଜ୍ଞାନାସି ଦ୍ୱାରା ଦ୍ୱନ୍ଦ୍ୱ ଓ ଅନୃତ ଛେଦନ, ଏକତ୍ୱ ଓ ଋତ ସ୍ଥାପନରେ ଜଗତର ରକ୍ଷା ଏବଂ ଆତ୍ମିକ ଭାବ ଭୂମିରେ ସତ୍ୟ-ଧର୍ମ ସ୍ଥାପନ ନିମିତ୍ତ ବୈଷ୍ଣବ ଶକ୍ତି ନିତ୍ୟ ନିଯୁକ୍ତ । ଏହାଙ୍କ ପରେ ଆସିଲେ ଯଜ୍ଞ ବରାହଙ୍କ ଶକ୍ତି ବାରାହୀ । ଏହି ଦେବୀ ବରାହ ରୂପିଣୀ । ଦନ୍ତରେ ଏହି ଦେବୀ ବସୁନ୍ଧରାଙ୍କୁ ଧାରଣ କରିଛନ୍ତି ଏବଂ ଦେବୀ ଯଜ୍ଞମୟୀ । ଧରଣୀ ଯେତେବେଳେ ପାପେ ଅଧଗାମୀ ହୁଏ, ସେତେବେଳେ ଯଜ୍ଞ ତାହାକୁ ଧାରଣ କରେ । ବରାହ ହିରଣ୍ୟାକ୍ଷ ଅସୁରକୁ ବଧ କରିଛନ୍ତି । ହିରଣ୍ୟ ପ୍ରତି ଯାହାର ଆଖି ବା ଲୋଲୁପ ଦୃଷ୍ଟି କେବଳ ସ୍ୱର୍ଣ୍ଣ ପ୍ରତି, ସେହି ଭୋଗୀର ଜୀବନ ହିଁ ହିରଣ୍ୟାକ୍ଷ । ତାହାର ବିନାଶ ହୁଏ ଯଜ୍ଞ ମାଧ୍ୟମରେ । ତ୍ୟାଗଦ୍ୱାରା ହିଁ ଭୋଗର କ୍ଷୟ । ସେଥିପାଇଁ ବାରାହୀ ସିଂହବାହିନୀ । ଏହାଙ୍କର ଦୁଇ ହାତରେ ଗଦା ଓ ଚକ୍ର । ଚକ୍ର କର୍ମର ପ୍ରତୀକ ଏବଂ ଗଦା ଧର୍ମର ସହାୟ । ଏହି ଶକ୍ତିଙ୍କ ମସ୍ତକର ଚତୁର୍ଦ୍ଦିଗେ ଜୟଲକ୍ଷ୍ମୀ ଚାମର ସୁଶୋଭିତ ।

ଅତଃ ପର ଆଗମନ କଲେ ନାରସିଂହୀ ଶକ୍ତି । ଏହାଙ୍କର ଅଙ୍ଗରାଜି ଠିକ୍ ନରସିଂହଙ୍କ ଭଳି । କେଶର ସଞ୍ଚାଳନ କରି ଆକାଶର ନକ୍ଷତ୍ରମାନଙ୍କୁ ଇତଃସ୍ତତ

ବକ୍ଷିପ୍ତ କର କର ଏହି ଭୀଷଣା ଶକ୍ତି ଆବିର୍ଭୂତ ହେଲେ । ଦୈତ୍ୟରାଜ ହିରଣ୍ୟ କଶିପୁ ବଧ ନିମିତ୍ତ ଏହି ଦେବୀ ଆବିର୍ଭୂତା । ଏହାଙ୍କର ମୂର୍ତ୍ତି ଅର୍ଦ୍ଧମାନବୀ ଅର୍ଦ୍ଧସିଂହୀ । ଚକ୍ଷୁ ଦୁଇଟି ତପ୍ତଲୌହ ଭଳି । ଭ୍ରୂକୁଟି ପୂର୍ଣ୍ଣ ତାଙ୍କ ନେତ୍ର । ବିଶାଳ ବକ୍ଷ, କ୍ଷୀଣ କଟୀ, ବଦନ ମଣ୍ଡଳ ଅପୂର୍ବ ଜ୍ୟୋତିରେ ଭରା । ସର୍ବାଙ୍ଗରେ ଚନ୍ଦ୍ର କିରଣ ଭଳି ସ୍ନିଗ୍ଧ ଲୋମରାଜି ବିରାଜିତ । ଏହି ମୂର୍ତ୍ତି ଦେବୀଙ୍କର ରୌଦ୍ର ଓ ବିଭତ୍ସତାର ମୂର୍ତ୍ତି । ସ୍ନେହ କ୍ରୋଧରେ ଅପୂର୍ବ ସମନ୍ୱୟ । ଏହାପରେ ଐନ୍ଦ୍ରୀ ଶକ୍ତିଙ୍କ ପ୍ରକାଶ । ଐନ୍ଦ୍ରୀ ଦେବରାଜ ଇନ୍ଦ୍ରଙ୍କର ଶକ୍ତି । ଯେଉଁ ଶକ୍ତି ବଳରେ ଦେବରାଜ ବ୍ରଜଶକ୍ତି ପରିଚାଳନା କରନ୍ତି, ଏ ସେହି ଶକ୍ତି । ଏହି ଶକ୍ତି ସାମ୍ରାଜ୍ଞୀ ଭଳି ତପ୍ତ କାଞ୍ଚନ ବର୍ଣ୍ଣା, ବିଦ୍ୟାଭରଣ ଭୂଷିତା, ଗଜବାହନା । ଗଜ କୁମ୍ଭୋପରି ଉପବିଷ୍ଟା, ହସ୍ତେ ରାଜଦଣ୍ଡ ତୁଲ୍ୟ ବଜ୍ର । ଐନ୍ଦ୍ରୀ ସମସ୍ତ ଇନ୍ଦ୍ରିୟଗଣଙ୍କ ଅଧିଷ୍ଠାତ୍ରୀ ଶକ୍ତି । ଜୀବର ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ସହିତ ବିଶ୍ୱର ରୂପ, ଶବ୍ଦ, ଗନ୍ଧ, ରସ ଓ ସ୍ପର୍ଶର ନିବିଡ଼ ସମ୍ବନ୍ଧ । ଏହାର ନିୟନ୍ତ୍ରଣକାରିଣୀ ଶକ୍ତି ହିଁ ଐନ୍ଦ୍ରୀ-ଶକ୍ତି । ବାହାରେ ମେଘାଦି ପ୍ରାକୃତିକ ଶକ୍ତି ଉପରେ, ଅନ୍ତରେ ମନାଦିଶକ୍ତି ଉପରେ ଏହାଙ୍କ ଅଧିକାର ।

ଏହି ସପ୍ତଶକ୍ତି ଆସିଲେ ସ୍ୱର୍ଗଲୋକରୁ ଯୁଦ୍ଧ କ୍ଷେତ୍ରକୁ । ଚଣ୍ଡିକା ବହିର୍ଗତ ହେଲେ ମହାଦେବୀଙ୍କ ଶ୍ରୀଅଙ୍ଗରୁ । ଚଣ୍ଡିକାଙ୍କ ଅପର ନାମ ଅପରାଜିତା । ଏହି ଶକ୍ତି ଅତି ଭୟଙ୍କରୀ, ଶତଶିବା ବେଷ୍ଟିତା ଦେବୀ ଭୟାନକ ରସର ମୂର୍ତ୍ତି । ସାକ୍ଷାତ ଶିବଙ୍କୁ ଦୂତ କରିଥିଲେ ବୋଲି ଚଣ୍ଡିକାଙ୍କ ଅପର ନାମ ଶିବଦୂତୀ । ଏହି ଦେବୀ ଶିବଙ୍କୁ କହିଥିଲେ—ଆପଣ ଗର୍ବିତ ଦାନବ ଶୁମ୍ଭ—ନିଶୁମ୍ଭଙ୍କୁ କହନ୍ତୁ—ଇନ୍ଦ୍ର ତ୍ରିଲୋକର ଆଧିପତ୍ୟ କରିବ, ଦେବଗଣ ଯଜ୍ଞର ଆହୁତି ଭୋଗ କରିବେ—ଆଉ ତୁମେସବୁ ଯଦି ବଞ୍ଚିବାକୁ ଚାହଁ ତେବେ ପାତାଳପୁରୀ ପ୍ରସ୍ଥାନ କର—ଆଉ ଏହିକଥା ଗ୍ରାହ୍ୟ ନ କରି ଯଦି ବଳ-ଗର୍ବ ଦେଖାଇ ଯୁଦ୍ଧ କରି-ବାକୁ ଇଚ୍ଛା ପ୍ରକାଶ କର ତେବେ ଆସ, ମୋର ଶୃଗାଳଗଣ ତୁମ୍ଭମାନଙ୍କ ଦାନବ ମାଂସ ଭକ୍ଷି ତୃପ୍ତିଲାଭ କରିବେ ।

ଚଣ୍ଡିକା ମହାକାଳର ଧ୍ୱଂସାତ୍ମକ ଶକ୍ତି । ଗୀତାରେ ସେ "କାଳୋହସ୍ମି" କହି ପରିଚୟ ଦେଇଛନ୍ତି ତାହାଙ୍କ ପ୍ରକଟ ମୂର୍ତ୍ତି ହିଁ ଚଣ୍ଡିକା । ଅନନ୍ତ ବିଶ୍ୱରେ ସମସ୍ତେ କାଳର ଅଧୀନ । ସୁତରାଂ ଏହାଙ୍କୁ କିଏ ପରାଜିତ କରିବ ? ସେଥିପାଇଁ ତାଙ୍କର ଅନ୍ୟ ନାମ ଅପରାଜିତା । ଏହି ଦେବୀଙ୍କର ବର୍ଣ୍ଣ ସିନ୍ଦୂର ଭଳି, ସେ ଶୂଳ, ଚକ୍ର, ପାଶ ଓ ବର୍ମ ଧାରଣ କରିଛନ୍ତି । ସେ ଶବ ଉପରେ ଦଣ୍ଡାୟମାନ—ତେଣୁ ସେ ଶିବା । ଏତେ ଭୟଙ୍କରୀ ହୋଇ ଦେବୀ ଶିବ ଦୂତୀ, କଲ୍ୟାଣ-ମୟୀ ଶିବଙ୍କୁ ଦୂତରୂପେ ସେ ପ୍ରେରଣ କରିଥିଲେ । ମହା ଧ୍ୱଂସ ମୂଳରେ ମଧ୍ୟ ଅନନ୍ତ କଲ୍ୟାଣ ଅନ୍ତର୍ନିହିତ । ଭୀଷଣ ଭାବେ ବିନାଶ କରନ୍ତି ନୂତନ ଭାବେ ବିକାଶ ହେବା ନିମିତ୍ତ ।

ପାର୍ବଣରେ ମହାପାର୍ବଣୀର ଅର୍ଚ୍ଚନା ଲାଗି ଦେଶବାସୀ ଆଜ ତତ୍ପର । ହେ ଅଷ୍ଟଶକ୍ତି ତୁମେ ନିର୍ଗତ ହୋଇଥିଲ ରକ୍ତବୀଜର ବଧ ନିମିତ୍ତ । ସେଥି ପାଇଁ ଯୁଗେ ଯୁଗେ ତୁମେ ଧେୟହୋଇ ରହିଛ । ହେ ମା ଅଷ୍ଟଶକ୍ତି ! ଏ ଜଗତବାସୀଙ୍କ ବିଷୟବାସନାରୂପୀ ରକ୍ତବୀଜ ତୁମେ କ'ଣ ବିନାଶ କରି ପାରିଛ ? ଏହି ବିଷୟବାସନାର ରକ୍ତବୀଜ ଏ ଜଗତକୁ ଉତ୍ପୀଡ଼ିତ କରୁଛି—ଜଗତ୍‌ବାସୀ ଶାନ୍ତି-ସୁଖରେ ରହିପାରୁ ନାହାନ୍ତି । ଆଜ ତୋର ମହାପୂଜାବେଳେ ସେଥିପାଇଁ ପ୍ରତ୍ୟେକ କୃତାଞ୍ଜଳି ପୁଟେ ଦଣ୍ଡାୟମାନ ହୋଇ-ଛନ୍ତି, ତୋତେ ସେହିକଥା କହିବାକୁ, ତୁ ତୋର ସନ୍ତାନମାନଙ୍କ ଉପରେ ସନ୍ତୁଷ୍ଟା ହୋଇ ରୂପ ଦେ—ଜୟ ଦେ —ଯଶ ଦେ—ଶତ୍ରୁ ବିନାଶ କର ।

— * —



# ଗାନ୍ଧିଜୀଙ୍କ ଶତବାର୍ଷିକୀ ଉତ୍ସବ

## ଶ୍ରୀମତୀ ସରଳା ଦେବୀ

[ ଓଡ଼ିଶାର ଜଣେ ସୁନାମଧନ୍ୟା ନାରୀ ଲେଖିକା ଶ୍ରୀମତୀ ସରଳାଦେବୀ । ଆଜୀବନ ସାଧନା ଫଳରେ ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ ଓ ବଳିଷ୍ଠ କରି ପାରିଛନ୍ତି । ତାଙ୍କ ରଚିତ ବିଭିନ୍ନ ପୁସ୍ତକ ତଥା ପ୍ରବନ୍ଧଗୁଡ଼ିକ ନାରୀ ଜାଗରଣ, ନାରୀ ଶିକ୍ଷା, ସାଂସାରିକ ଆଚାର ବିଚାର, ସମାଜ ସଂସ୍କାର ଭିତ୍ତିରେ ବଳିଷ୍ଠ । ଦେଶାତ୍ମବୋଧକତାର ଚରମ ପରୀକ୍ଷାରେ ଜାତୀୟତାର ବୀଜବପନ କରି ସେ ଉତ୍କଳୀୟତାର ସୌଧ ରଚନାରେ ସିଦ୍ଧହସ୍ତା, ବିଶେଷ କରି ସେ ଜଣେ ସ୍ୱାଧୀନ ନେତ୍ରୀ, କର୍ମିକା, ଯଥାର୍ଥ ସମାଲୋଚିକା ଓ ଗବେଷଣା ପ୍ରବୀଣା ପ୍ରାବନ୍ଧିକା ସ. ବନଫୁଲ ]

ମହାତ୍ମା ଗାନ୍ଧୀଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ ଭାରତବର୍ଷରେ ଗଭୀର ଉଦ୍ଦୀପନା ସୃଷ୍ଟି କରିଅଛି । ଭାରତର ପ୍ରତି ରାଜ୍ୟରେ ଏହି ଉତ୍ସବ ପାଳନ ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏ ସମାରୋହ କେବଳ ଭାରତରେ ହେଉନାହିଁ ପୃଥିବୀର ୧୬୭ଟି ଦେଶରେ ଉତ୍ସବ ପାଳନ କରା ହେଉଛି । ଏହି ମହାମାନବଙ୍କ ଶତବର୍ଷପୂର୍ତ୍ତିର ଘଟଣାଟିକୁ ଯଥାଯୋଗ୍ୟ ମର୍ଯ୍ୟାଦା ଦାନ କରିବାକୁ ପୃଥିବୀର ବହୁଦେଶ ଆୟୋଜନ କରିଛନ୍ତି । ଜାତିସଂଘର ଶିକ୍ଷା—ସଂସ୍କୃତି ବିଜ୍ଞାନ ସଂସ୍ଥା ଏହି ଉଦ୍ଦେଶ୍ୟରେ ସଂଘ ତରଫରୁ ପ୍ରସ୍ତୁତ ହେଉଛନ୍ତି ।

ପୁଣି ପଶ୍ଚିମ ଜଗତ ସଙ୍ଗେ ସଙ୍ଗେ ପୂର୍ବ ୟୁରୋପର ସମାଜବାଦୀ ଦେଶଗୁଡ଼ିକ ମଧ୍ୟ ମହାତ୍ମାଜୀଙ୍କ ଶତବର୍ଷକୃତ୍ୟ ପାଳନ ପାଇଁ ବଡ଼ ତତ୍ପର । ସୋଭିଏଟ୍ ରୁଷିଆରେ ସରକାରୀ ମଣ୍ଡଳରେ ଏବର୍ଷ ଗାନ୍ଧୀ ଶତାବ୍ଦୀ ଉଦ୍‌ଯାପନ ଗୋଟିଏ ବିଶେଷ କାର୍ଯ୍ୟସୂଚୀ ରୂପରେ ଅଗ୍ର-ପ୍ରାଧାନ୍ୟ ଲାଭ କରିବା କଥା ଭାରତର ଲୋକେ ଜାଣନ୍ତି ।

କେହି ପଛେଇ ନାହାଁନ୍ତି । ଦେଶୀ ବିଦେଶୀ ନିକଟ ଦୂର ପ୍ରତି ରାଷ୍ଟ୍ର ନିଜ ନିଜର ଶକ୍ତି ଅନୁସାରେ ମହାତ୍ମାଗାନ୍ଧୀଙ୍କ ଶତବର୍ଷ ପୂର୍ତ୍ତି ଉତ୍ସବକୁ ସାର୍ଥକ କରିବାରେ ଶ୍ରଦ୍ଧାଞ୍ଜଳି ବାଢ଼ିବାପାଇଁ ବ୍ୟଗ୍ର ହୋଇଛନ୍ତି । ଶ୍ରଦ୍ଧାଜ୍ଞାପନ ପ୍ରଣାଳୀ ଓ ଉପଚାରରେ ଭିନ୍ନ ଥାଇପାରେ; କିନ୍ତୁ ସବୁ ଶ୍ରଦ୍ଧାର୍ଘ୍ୟ ଏକ ଅଭିପ୍ରାୟରେ ଏକ ଲକ୍ଷ୍ୟରେ ଉତ୍ସର୍ଗୀକୃତ । ବିଭିନ୍ନ ଯଜ୍ଞସ୍ଥଳୀରୁ ଉଦ୍‌ଗତପୂତ ହୋମାଗ୍ନି ଶିଖା ଊର୍ଦ୍ଧ୍ୱ ବାୟୁ ମଣ୍ଡଳରେ ଏକାକାର ହୋଇ ସ୍ଫୀତ କଳେବର ସେହି ଜ୍ୟୋତିର୍ମୟ ଲୋକ ଅଭିମୁଖରେ ପ୍ରଧାବିତ । ଯେଉଁଠି ଏକ ଅମରଆତ୍ମା ଅବିନଶ୍ୱର ମହିମାରେ ଭାସ୍ୱରିତ

ବରାଜ୍ୟାଂସବୁ ଦେଶର ସମ୍ମିଳିତ ପ୍ରସ୍ତୁତ ଗୋଟିଏ ଆନ୍ତର୍ଜାତିକ ଉତ୍ସବର ରୂପ ଧାରଣ କରିଛି ବୋଲି ଜଣାପଡ଼େ । ଏହା ଭାରତର ଆତ୍ମାର ପୂଜା ଭାରତବର୍ଷର ପୂଜା—କାରଣ ଭାରତର ଶ୍ରେଷ୍ଠତମ ସନ୍ତାନଙ୍କ ଅବଦାନକୁ ଆଜି ସମଗ୍ର ପୃଥିବୀ ସ୍ୱୀକାର କରି ନେଇଛି ନତମସ୍ତକରେ । ଏହାହିଁ ଥିଲା ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଚିରଜୀବନର ସାଧନାର ମୂଳମନ୍ତ୍ର ଓ ସ୍ୱପ୍ନ । ତାହାହିଁ ଏ ଯୁଗରେ ସାର୍ଥକ କରିଛନ୍ତି ଆମର ଜାତିର ପିତା ମହାତ୍ମାଗାନ୍ଧୀ । ଗାନ୍ଧିଜୀଙ୍କ ଜୀବନ ତାଙ୍କର ବାଣୀର ରୂପ ଧାରଣ କରିଛି । ଗାନ୍ଧିଜୀ ଭାରତର ଆତ୍ମାପୁରୁଷକୁ ଚିହ୍ନିଥିଲେ ଓ ଭାରତର ଆତ୍ମାର ବାଣୀ ଭାରତର ସଂସ୍କୃତି ଓ ପରମ୍ପରା-ଭାରତୀୟ ଜୀବନ ଧାରା ରୂପ ତାଙ୍କଠାରେ ହିଁ ରୂପାୟିତ ହୋଇଥିଲା । ସେ ଭାରତରେ ଜନ୍ମହୋଇ ମଧ୍ୟ ପୃଥିବୀର ଆଲୋକ, ପୃଥିବୀର ଆଶା ଓ ଭରସା ଥିଲେ ।

ଗାନ୍ଧୀ-ଶତାବ୍ଦୀ ପାଳନ ପାଇଁ ଯଦି ସମଗ୍ର ପୃଥିବୀ ଉତ୍ସବାୟିତ ହେବ, ତେବେ ଆମ ଭାରତର ଉତ୍ସବ ଉତ୍କଳର ଉତ୍ସବ ଆହୁରି ବ୍ୟାପକ ଓ ପ୍ରସାରିତ କରିବା ଠିକ୍ ହେବ । ଏହାର ସ୍ଥାୟିତ୍ୱ—ଗାନ୍ଧୀଙ୍କ ଆଦର୍ଶକୁ ଦେଶର ସର୍ବସ୍ତରରେ ବଞ୍ଚାଇବା ପାଇଁ କେବଳ ସ୍କୁଲ ଗୁଡିକରେ ପ୍ରାର୍ଥନାରେ ପର୍ଯ୍ୟବସିତ କଲେ କାମ ସରିବ ନାହିଁ କି କଟକରେ ଭଙ୍ଗି ମୁକ୍ତି ଆନ୍ଦୋଳନ କରି ବସିଲେ ହେବନାହିଁ । ଅଖଣ୍ଡ ଅଲିଭା ଦୀପକୁ ଜଳାଇ ରଖିବାର ଶକ୍ତି କର୍ମସାଧନା ଆମକୁ ଅନ୍ତରରୁ ଆହରଣ କରି ଆଣିବାକୁ ହେବ । ଏ ଉତ୍ସବକୁ ଜାତୀୟ ଉତ୍ସବର ଚେହେରା ଦେବାକୁ ହେବ । ଏପର୍ଯ୍ୟନ୍ତ ଶତାବ୍ଦୀପାଇଁ ଯେଉଁ ଆୟୋଜନ ଓ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ତାହା ଠିକ୍ ପଥରେ ଗତିକଲେ ମଧ୍ୟ ମନେହୁଏ, ସେସବୁ ପ୍ରୟୋଜନ ନିର୍ଦ୍ଦେଶନାରେ ଜନମନ ଉପରେ ଆଶାନୁରୂପ ରେଖାପାତ କରି ପାରେ ନାହିଁ । ନାନା ଲକ୍ଷଣ ଦେଖି ଏହା ଧାରଣା କରିବା ଭୁଲ୍ ନୁହେଁ ଯେ, ଗାନ୍ଧୀ ଶତବାର୍ଷିକୀ ଉତ୍ସବ ଏକ ଖଣ୍ଡିତ ଗୋଷ୍ଠୀଗତ ଉତ୍ସବର ବେଢ଼ା ଭିତରେ ପୁରି ବୁଲୁଛି । ତାକୁ ଗୋଟିଏ ସର୍ବଦଳୀୟ ବ୍ୟାପାରରେ ପରିଣତ ଦାନ କରା ହୋଇ ପାରିନାହିଁ, ଏ ଆୟୋଜନର ବଳୟ ସୀମା ମଧ୍ୟରେ ସର୍ବଜନ ଦଳମତ ନିର୍ବିଶେଷରେ ସବୁ ଶ୍ରେଣୀର ଓ ସ୍ତରର ଲୋକଙ୍କୁ ଆକର୍ଷିତ କରାହୋଇ ପାରିନାହିଁ । ଏ ଉତ୍ସବର ଧାରା ଧରଣ ଦେଖିଲେ ସ୍ୱତଃମନରେ ହୁଏ, ଯେଉଁ ମହାପୁରୁଷ ତାଙ୍କ ଜୀବନ କାଳରେ ଜାତିର ଜନକରୂପେ ପୂଜିତ ଓ ବନ୍ଦିତ ହୋଇଥିଲେ ତାଙ୍କ ଶତାବ୍ଦୀ ଉତ୍ସବକୁ ଆମେ ଯେପରି ଏକ ସରକାରୀ ଦଳୀୟ ଉତ୍ସବରେ ସୀମିତ ରଖି ତୃପ୍ତ । ଉତ୍ସବର ଦୃଷ୍ଟିଭଙ୍ଗୀ, ପ୍ରସ୍ତୁତି ଓ ପ୍ରକରଣ ମଧ୍ୟରେ ଜାତୀୟତାର ସେହି ସର୍ବାତିଶାୟୀ ମୂର୍ତ୍ତି ଯେପରି ଫୁଟି ଉଠୁନାହିଁ ।

କିନ୍ତୁ କାହିଁକି ଏପରି ହେବ ? ମହାତ୍ମା ଏପରି ଏକ ମନୁଷ୍ୟ ଯେ ଆଜି ସବୁଦଳ ମତର ସଙ୍କୀର୍ଣ୍ଣତାର ଊର୍ଦ୍ଧ୍ୱରେ ଇତିହାସର ଶାଶ୍ୱତଲୋକରେ ପ୍ରତିଷ୍ଠିତ । ସମସାମୟିକ କାଳର ଗଣ୍ଡି ଅତିକ୍ରମ କରି ସେ ମହାକାଳ ସୀମା ଅତିକ୍ରମ କରିଛନ୍ତି । ମହାତ୍ମାଙ୍କ ରାଜନୀତିର ଆଦର୍ଶ ଓ ମନ୍ତ୍ରା ସମ୍ବନ୍ଧେ କେତେକ ଅମତ ହୋଇ ପାରନ୍ତି; କିନ୍ତୁ ଏକଥା ଅପ୍ରତିବାଦ୍ୟ ସତ୍ୟ ଯେ ତାଙ୍କ ନେତୃତ୍ୱ ଗୁଣରୁ ତାଙ୍କ ପ୍ରଦର୍ଶିତ ସଗ୍ରାମ ଫଳରୁ ଭାରତ ସ୍ୱାଧୀନତା ଲଭିକଲା । ଏତେବଡ଼ ଜନନାୟକ ପୃଥିବୀରେ ଜନ୍ମି ନାହାନ୍ତି । ତାଙ୍କ ଆତ୍ମିକ ମହିମା ସତ୍ୟନିଷ୍ଠା ନିର୍ଭୟତା ମୃତ୍ୟୁଞ୍ଜୟୀ ଶତ୍ରୁ ମିତ୍ର ସମସ୍ତଙ୍କ ପ୍ରତି ସମଧାରାରେ ପ୍ରବାହିତ ଅବାରିତ ମାନବପ୍ରେମ—ଏହିସବୁ ଅସାଧାରଣ ଚରିତ୍ର ବୈଶିଷ୍ଟ୍ୟ ମାନବ ସଭ୍ୟତାର ଚିରନ୍ତନ ସମ୍ପଦ ହୋଇ ରହିଲା ।

ଗାନ୍ଧୀଙ୍କ ଉତ୍ସବ ଜାତୀୟ ଉତ୍ସବ National festival ହେବା ଉଚିତ । ଆଉ ଆମେ ସେପରି ଭାବରେ ତାକୁ ରୂପ ଦେବାନାହିଁ କାହିଁକି ? ଏହା ସମସ୍ତେ ଭାବିବା ଉଚିତ । ଦଳୀୟତା ଚିନ୍ତା ଗୁଡ଼ିକ ଦଳବିଶେଷ ପ୍ରତି ପକ୍ଷପାତ ଓ ବିରୋଧିଦଳମାନଙ୍କ ପ୍ରତି ବିମୁଖଭାବ ବର୍ଜନ କରି ଯଦି ଆମେ ସମସ୍ତେ ଗାନ୍ଧୀ ଶତବାର୍ଷିକୀର ମିଳନ ଭୂମିରେ ଆସି ଛିଡ଼ା ହେଉଁ ସମସ୍ତଙ୍କୁ ଛିଡ଼ା କରାଉ ତେବେ ଯାଇ ଗାନ୍ଧୀ ଶତବାର୍ଷିକୀରେ ସାଧାରଣ ମିଳନ ଭୂମିରେ ଶତାବ୍ଦୀ ଉତ୍ସବକୁ ଯଥାର୍ଥ ସାର୍ଥକତାରେ ଭୂଷିତ କରିବା ସମ୍ଭବ । ଭାରତର ପ୍ରତି ମନୁଷ୍ୟର ସହଯୋଗ ପଥ ଦେଇ [ ଗୃହାଉଠା ପଥ ନୁହେଁ ] ଶତାବ୍ଦୀର ଉତ୍ସବକୁ ଜାତୀୟ ଉତ୍ସବରେ ରୂପାନ୍ତରିତ କରିବା ଗାନ୍ଧୀ ରାଜ୍ୟବାସୀଙ୍କର ଭାରତବର୍ଷର କ୍ଷମତା ହୀନ ଓ କ୍ଷମତାକୁ ଧରି ରଖିଥିବା ଏବଂ କ୍ଷମତା ରାଜନୀତିର ପଛରେ ଥିବା ସବୁନେତାମାନଙ୍କର କର୍ତ୍ତବ୍ୟ । ଆନ୍ତରିକ ଅସୂୟାକୁ ଦୂର ନ କଲେ ସମସ୍ତେ ସବୁଦଳ ମିଶି ଗାନ୍ଧିଜୀଙ୍କ ପୂଜା ଉତ୍ସବ କରିଲେ ଠିକ୍ ଗାନ୍ଧିଜୀଙ୍କ ଶତାବ୍ଦୀର ଉତ୍ସବ ହେବନାହିଁ—ଶୁଷ୍କ କର୍ତ୍ତବ୍ୟ ମାତ୍ର ହେବ; ତାଙ୍କପ୍ରତି କର୍ତ୍ତବ୍ୟ କରାଯିବ ।

— — —

# ଗାନ୍ଧୀଜୟନ୍ତୀର ଭାବନା

ଯେତେବେଳେ ମହାତ୍ମାଗାନ୍ଧୀଙ୍କ ମୃତ୍ୟୁଜୟୀ ଜୀବନକଥା ଆମେ ସ୍ମରଣକରୁ ସେହି ସ୍ମରଣ ମଧ୍ୟରେ ତାଙ୍କ ଜୀବନର ସୃଷ୍ଟି ଧନ ଶକ୍ତି ତାଙ୍କ ମୃତ୍ୟୁପରେ ଲୋକ ସଂଗ୍ରହ ପାଇଁ ଅପେକ୍ଷା କରିଥାଏ । ତାହା ସହିତ ଆମ୍ଭେମାନେ ନିଜର ଭାବନା ଓ କର୍ମାଦର୍ଶକୁ ଯୋଡ଼ିବାର ପ୍ରୟାସ କରୁ । ମହାତ୍ମାଙ୍କ ସ୍ମରଣ କରି ଆମ୍ଭେମାନେ ତାଙ୍କର ଜୀବନର ଆଦର୍ଶକୁ ଅନୁସରଣ କରିବାକୁ ଆଗ୍ରହୀ ହେଉଁ-ଯେଉଁଜୀବନ ଆମ୍ଭମାନଙ୍କୁ ଶିକ୍ଷା ଦେଇଛି ଯାହା ଅମର ମୃତ୍ୟୁର ଅତୀତ ।

ଆମ୍ଭେମାନେ ସ୍ୱାର୍ଥ ଲୋଭ ଇନ୍ଦ୍ରିୟଗତ ପ୍ରବୃତ୍ତିର ନାନା ବାସନା ଓ ଅପରିମିତ ସୀମିତ ବନ୍ଧନ ନେଇ ପ୍ରାତ୍ୟହିକ ଜୀବନଯାପନ କରୁ । ଏହି ପ୍ରାତ୍ୟହିକ ଦୈନିକ ଜୀବନଧାରାର ଚଳଣି ଅତି ତୁଚ୍ଛ ଅତି କ୍ଷୁଦ୍ର ଓ ସୀମାବଦ୍ଧ ଘେର ଭିତରେ ରହି ଆମ୍ଭମାନଙ୍କୁ ଅନବରତ ପୀଡ଼ିତ କରେ—ଅଶାନ୍ତ ଦିଏ-ଏହା ଆମେ ବୁଝିପାରିଲେ ମଧ୍ୟ ମାନିବାକୁ ଚାହୁଁ ନାହିଁ; କାରଣ ଆମେ ଯେତିକି, ଆମ ଗୃହପଟର ବିଶ୍ୱ ସଂସାର ସେତିକି ହଟେ ।

ଆମ ଜୀବନରେ ବହୁ ସମସ୍ୟା ବହୁ ଅଭାବ । ଆମର ଅନ୍ନବସ୍ତ୍ର ଜଳ ସ୍ୱାସ୍ଥ୍ୟ ଶିକ୍ଷା ଜୀବିକାର ଅଭାବ । ଅଭାବ ସଂସାରରେ ଆମର ଜନ୍ମ । ଅଭାବ ଦାରିଦ୍ର୍ୟର ମରୁଭୂମି ଭିତରେ ଆମେ ଆଜନ୍ମ ପଥବାହି ଆସିଛୁ । ତେଣୁ ଆମର ଜାତୀୟ ଜୀବନରେ ବୈଶିଷ୍ଟ୍ୟ ଚେତନା ହେଉଛି ଅଭାବର । ତେଣୁ ସମସ୍ତ ଜୀବନ ଧରି ଏହି ଅଭାବ ସଙ୍ଗରେ ପ୍ରାଣ ଧାରଣ ପାଇଁ ଆମେ ସଂଗ୍ରାମ କରି ଆସୁଛୁ । ଜୀବନର ସମସ୍ତ ଚେତନା ଓ କର୍ମର ସମସ୍ତ ଆୟୋଜନ ଆମର ଅନ୍ନବସ୍ତ୍ର ମୁଖୀ ।

ଏହି ଅଭାବ ଆମ ଦେଶରେ ଏତେ ବେଶି ଯେତେବେଳେ ଏହି ଅଭାବମାନଙ୍କର ତାଲିକାମାନ ତିଆରି କରି ଦୁଃଖିଦରିଦ୍ର-ମାନଙ୍କୁ ଡାକୁ, ସମବେଦନାଶୀଳ ବାଣୀ ଭାଷଣ ଦେଉ, ଯେତେବେଳେ ବିପୁଳ ଜନତା ଆମକୁ ତାଙ୍କର ତ୍ରାଣକାରୀ ନେତା ବୋଲି ମନେ କରନ୍ତି ଓ ଯେଉଁ ଅଭାବ ସବୁ ରହିଛି ସେ ଅଭାବ ଦୂର କରିବାର ଯେଉଁ ସୂତ୍ରଗୁଡ଼ିକ ଆମେ ଆବିଷ୍କାର କରି ଜନତାଙ୍କ ଆଗରେ ଥୋଉ, ତାହାକୁ ପରମ ତତ୍ତ୍ୱ ଓ ତଥ୍ୟ ବୋଲି ମାନିନେଇ ଜନତା ଆମର ଜୟଜୟକାର କରେ । ତହିଁରେ କାହାରି ଅଭାବ ସମସ୍ୟାର ସମାଧାନ ହୁଏ ନାହିଁ; କିନ୍ତୁ ହୋଇପାରିବ ବୋଲି ଯେଉଁ ଆଶ୍ୱାସବାଣୀ ଲୋକଙ୍କୁ ଦେଉ, ତହିଁରେ ସେମାନଙ୍କ ମନରେ ପ୍ରବଳ ପ୍ରଲୋଭନର ଆଶା ବଞ୍ଚାଇ ରଖିଦେଉ ।

ଜୀବନରେ ମଣିଷ କିଛି ପାଏ ବା କିଛି ପାଏ ନାହିଁ । ପାଇବାଟା ଏକାନ୍ତ ବସ୍ତୁଗତ ବୋଲି ନ ପାଇବାଟା ବି ବସ୍ତୁଗତ ହୋଇପଡ଼େ । ଅର୍ଥ ଯାହାପାଇଁ ଆମେ ଖପିହେଉ, ତାହା ଆହୁରି ବେଶି ପାଇବାକୁ ଚାହୁଁ । ନ ପାଇଲେ ତାହା ପାଇବାକୁ ଯୁଦ୍ଧକରୁ । ଏହିପରି ବସ୍ତୁପ୍ରାପ୍ତିର କାମନା ବାସନା ଆକାଂକ୍ଷାରେ ଆମର ଜୀବନ ତିଆରି ହୁଏ । ଅପରିମିତ ଐଶ୍ୱର୍ଯ୍ୟ ଆଶାକରି ସେହି ବାସନାର ମାପକୁ ଆମେ ଯେତେ ବଢ଼େଇ ଦେଲେ ମଧ୍ୟ ତାହା ମୃତ୍ୟୁକୁ ବେଢ଼ି ଥିବା ସ୍ଥାନକୁ ଅତିକ୍ରମ କରି ପାରେନାହିଁ । ମୃତ୍ୟୁକୁ ଉତ୍ତିର୍ଣ୍ଣ ହେବାପାଇଁ ଆମର ଇଚ୍ଛା କି ଅଭିପ୍ସା ନାହିଁ । ସେଥିପାଇଁ ମୃତ୍ୟୁରୁ ଅତୀତ କଥା କେହି କହିଲେ ଆମେ ବୁଝି ପାରୁନାହିଁ । ଆମର ବୁଦ୍ଧି ତାହା ଗ୍ରହଣ କରିବାକୁ ଅକ୍ଷମ । ତାହା ମାନିବାକୁ ଶୁଣିବାକୁ ଆମର ଆନ୍ତରିକ ପ୍ରବୃତ୍ତି ହୁଏନାହିଁ । ଆମେ ନିଶ୍ଚିତ ଭାବରେ ଯେପରି ଜାଣିଛୁ, ମୃତ୍ୟୁପରେ ଆମର ଅସ୍ତିତ୍ୱ ନାହିଁ, ମୃତ୍ୟୁପରେ ଆମର ନେତା ବି ବଞ୍ଚି ରହିବେ ନାହିଁ ବୋଲି ମଧ୍ୟ ଜାଣୁ । ନେତା ଆମ ନିକଟରେ କେବଳ ପ୍ରୟୋଜନ ସାଧନର କଥା କହନ୍ତି; କାରଣ ତାଙ୍କର ଜୀବନର ସୀମିତକାଳ ଭିତରେ ହିଁ ତାଙ୍କ ସକଳତ୍ୱକାଳ ନିହିତ । ତା'ପରେ ସେ ଆମ ନିକଟରେ ଚିରଦିନ ଲୁପ୍ତ ହୋଇଯାନ୍ତି ।

ତେଣୁ ଆମେ ଆଉ ଯାହାକରୁ ବା ନ କରୁ ମହାତ୍ମା-ମାନଙ୍କର ଜନ୍ମଜୟନ୍ତୀ ପାଳୁନାହିଁ । କାହାରି ଜନ୍ମ ଭିତିଦେଇ ନିଜର ଜନ୍ମକୁ ଅନୁଭବ କରୁନାହିଁ । ମୃତ୍ୟୁ ଉତ୍ତୀର୍ଣ୍ଣିତ ଜୀବନ ଦେଇ କେହି ଆମକୁ ଜୟ କରନ୍ତି ନାହିଁ । ବସ୍ତୁତୃଷ୍ଣାରେ ଆଉଁ ଆମ ନିକଟରେ ଜନ୍ମ-ଜୟନ୍ତୀ ଅନୁଷ୍ଠାନ କେବଳ ଫାଙ୍କା ଭାବରେ ଉଚ୍ଛ୍ୱାସ ଛଡ଼ା ଆଉ କ'ଣ ? ପ୍ରକୃତରେ ଜନ୍ମଜୟନ୍ତୀ ଅନୁଷ୍ଠାନର ତତ୍ତ୍ୱ ତାହା ନୁହେଁ । ଜନ୍ମଜୟନ୍ତୀ ପାଳନର ଅର୍ଥ ହେଉଛି ମୃତ୍ୟୁର ଅତୀତ ଜୀବନର ବଡ଼ ପରିଚୟକୁ ସ୍ୱୀକାର କରି ଅନୁଭବ କରିବା । ଆମର ସ୍ୱାର୍ଥଲୋଭର ଅତିରିକ୍ତ ଜୀବନ ରୂପକୁ ଧ୍ୟାନ ଚକ୍ଷୁରେ ଦେଖିବା । ମୃତ୍ୟୁରୁ ଉତ୍ତୀର୍ଣ୍ଣ ହୋଇ ଯେ ଜୀବନ ନିଜ ମହିମାରେ ପ୍ରକାଶିତ, ସେହି ମହାତ୍ମାଙ୍କ ଜୀବନ ଅନୁଭବ କରିବା । ସେହି ଜୀବନକୁ ସ୍ମରଣ କଲେ ଆମେ

ଆତ୍ମିକ ଚିନ୍ତାଧାରର ସ୍ୱାଦ ପାଇବା । ଆମର ସୀମାବଦ୍ଧ ଜୀବନରୁ ଉତ୍ତୀର୍ଣ୍ଣ ହୋଇ ବିଶ୍ୱଜୀବନରେ ନିଜର ସ୍ଥିତିକୁ ଅନୁଭବ କରିବାରେ ଆମେ ବୁଝି ପାରିବୁ ଆମ ସ୍ୱାର୍ଥ, ଆମ ଲୋଭ ଓ ବସ୍ତୁଗତ ଅଭାବକୁ ଏକମାତ୍ର ଲକ୍ଷ୍ୟ ଭାବି ଯେଉଁ ଧାରଣା ଆମ ଜୀବନରେ ବସାବାନ୍ଧି ରହିଛି, ତାହା କେବଳ ଆମ ଜୀବନର ପାଥେୟ ଓ ଲକ୍ଷ୍ୟ ନୁହେଁ । ତାହା ସତ୍ୟ ହୋଇଥିଲେ ଆମେ ଆତ୍ମକଳହ କରି ମରି ଯାଆନ୍ତୁଣି । ଜୀବନର ଶୋଭାଯାତ୍ରା ଆଗେଇ ଚାଲି ଗୋଟିଏ ଲକ୍ଷ୍ୟରେ ପହଞ୍ଚିବା ପାଇଁ ସଙ୍କେତ ଦିଏ । ତାହା ବ୍ୟଷ୍ଟିକୁ ବଡ଼କରି ଏକାନ୍ତ ସତ୍ୟକରି ସମ୍ଭବ ନୁହେଁ । ବହୁକୁ-ସମଷ୍ଟିକୁ ସ୍ୱୀକାର କରିବାରେ ଜୀବନର ଯଥାର୍ଥ ଶୋଭାଯାତ୍ରା କରାହୁଏ; କାରଣ ତହିଁରେ ଗୋଟିଏ କଲ୍ୟାଣ ବୋଧର ବନ୍ଧନ ଅଛି । ହେଉ ନ ହେଉ ବସ୍ତୁ ସମସ୍ୟା ନେଇ ତାହା ଯଦି ବହୁଜନଙ୍କୁ ଆଶ୍ରୟ କରେ, ତେବେ ଜନତାଙ୍କ ପାଇଁ ବ୍ୟକ୍ତିଗତ ଆକାଂକ୍ଷାଗୁଡ଼ିକୁ ସାମୟିକ ଭାବରେ ପଛରେ ପକେଇ ଦବାକୁ ପଡ଼େ—ଅନ୍ତତଃ ଛଳନାରେ—ଲୋକଲଜ୍ଜା ପାଇଁ ଘୋଡ଼ାଇବାକୁ ପଡ଼ିବ । କାରଣ ସଂସାରରେ ତୁମେ ଜଣକ ସୁଖ ଦୁଃଖ କଥା ଯେତେ ବଡ଼ ଚିତ୍କାର କରି କହିଲେ କେହି ଶୁଣିବେ ନାହିଁ । ଜନତା କଳରବ ନିକଟରେ ବ୍ୟକ୍ତିର ଅଭିଯୋଗ ସ୍ୱର ଲୁପ୍ତ ହୋଇଯିବ । ଯାହା ଜଣକ ପାଇଁ ତୁଚ୍ଛ, ସମସ୍ତଙ୍କ ପାଇଁ ତାହା ଗମ୍ଭୀର । ସ୍ୱାର୍ଥରେ ଯାହା ମଳିନ ପରାର୍ଥେ ତାହା ସୁନ୍ଦର ଉଜ୍ଜ୍ୱଳ ।

ବିଶ୍ୱମାନବର ନିରନ୍ତର ହାହାକାର ଜ୍ୱାଳା ଆଜି ମନୁଷ୍ୟକୁ ତାʼର ନିରାକରଣ ପାଇଁ ମହାତ୍ମାଗାନ୍ଧୀଙ୍କ ଜୀବନ ସାଧନା ପଥକୁ ଡାକୁଛି । କିନ୍ତୁ ତାର ସିଦ୍ଧି ପଥକୁ ଚାହିଁଲେ ବାଟରେ ଗୋଳକ ଧନ୍ଦାର ସୃଷ୍ଟି ହେଉଛି । କେଉଁଠି ଆମେ କଳରବ ଭିତରେ ମନୁଷ୍ୟ ଜୀବନର ମଙ୍ଗଳ ସୂତ୍ରଟି ହଜେଇ ଦେଇଛୁ । ତେଣୁ ବ୍ୟକ୍ତିର ଲୋଭ ଆଜି ଜନତାଙ୍କ କଣ୍ଠରେ ପ୍ରବଳତର ହୋଇ ବିଶ୍ୱର ଶାନ୍ତି ହରଣ କରୁଛି ।

ବ୍ୟକ୍ତି ଅନ୍ତରର ପାପଗୁଡ଼ିକ ଆଜି ସମଷ୍ଟିର ହିତ ନାମରେ ସମର୍ଥନ ପାଉଛି । ଯେଉଁ ଦସ୍ୟୁବୃତ୍ତି ନିତାନ୍ତ ନିନ୍ଦନୀୟ ତାହା ଦଳ ନାମରେ ପ୍ରଶ୍ରୟ ଖୋଜୁଛି । ଯେଉଁ ପାଶବିକତା ସମାଜର ଓ ସଭ୍ୟତାର କଳଙ୍କ, ତାକୁ ପ୍ରତିବାଦ କରିବାକୁ ଆମେ ଇତଃସ୍ତତ ହେଉଛୁ । ଅର୍ଥାତ୍ ଆମର ଜୀବନପଥ ଚାଲିବାର ସବୁ ପ୍ରଚେଷ୍ଟା ନିଜ ନିଜର ସ୍ୱାର୍ଥ ଓ ଲୋଭକୁ କେନ୍ଦ୍ର କରି ସୂର୍ଯ୍ୟକୁ ପୃଥିବୀ ଅବିଚ୍ଛିନ୍ନ କଲାପରି ଆବର୍ତ୍ତିତ ହେଉଛି । ସ୍ୱାର୍ଥରୁ ଉତ୍ତୀର୍ଣ୍ଣ ହେବାପାଇଁ ମୃତ୍ୟୁବ୍ରତରେ ଦୀକ୍ଷିତ ହେଉନାହିଁ, ଖଣ୍ଡେ ଜୀବନ ମୋହରେ ଅଖଣ୍ଡ ଜୀବନ ଲାଭ ପାଇଁ ପ୍ରତ୍ୟକ୍ଷ ସାଧନା ଦ୍ୱାରା ବରଣ କରିପାରୁ ନାହିଁ । ଭୀତ ହେଉଛୁ—ଆତ୍ମଶକ୍ତି ଅଭାବରୁ । ତାହା ଯଦି କରୁ ତେବେ ଅଭିଯୋଗ କରି ରୁଦ୍ଧକରି ଆତ୍ମ-ଯୋଗର ପଥ ଖୋଜନ୍ତୁ । ବ୍ୟକ୍ତି ସ୍ୱାର୍ଥକୁ ତୁଚ୍ଛକରି ଜନ-ସେବାରେ ବ୍ରତୀ ହୁଅନ୍ତୁ । ତାʼ ହେଲେ ଜନତାକୁ ପ୍ରେମ ପଥରେ ଡାକନ୍ତୁ । ହିଂସା ପଥରେ ନୁହେଁ, ଇନ୍‌କିଲାବ ଜିନ୍ଦାବାଦ ପଥରେ ନୁହେଁ, କହିବୁ ସମସ୍ତଙ୍କର ମଙ୍ଗଳହିଁ ଜିନ୍ଦାବାଦ ।

କେବଳ ମଙ୍ଗଳ ଚେତନା ମୃତ୍ୟୁକୁ ଉତ୍ତୀର୍ଣ୍ଣ କରି ଦେଶରେ କାଳେ କାଳେ ପ୍ରସାରିତ ହୁଏ । ମଙ୍ଗଳ, ଶୁଭ ବୁଦ୍ଧିକୁ ସ୍ୱୀକାର କଲେ ଜୀବନକୁ ମୃତ୍ୟୁର ଅତୀତରେ ମଧ୍ୟ ସ୍ୱୀକାର କରିବୁ । ମଙ୍ଗଳ ବୁଦ୍ଧିରେ ଜାଗ୍ରତ ହେଲେ ମହାତ୍ମାଗାନ୍ଧୀଙ୍କ ଦାନ ଜୀବନରେ ଗ୍ରହଣ କରି ପାରିବୁ । ମହାତ୍ମାଗାନ୍ଧୀଙ୍କ କାଳଜୟୀ ବାଣୀର ମର୍ମକଥା ଏହା ନୁହେଁ ତ ଆଉ କʼଣ ? ମଙ୍ଗଳ ଚେତନାରେ ଉଦ୍‌ବୋଧିତ ହୋଇ ମହାତ୍ମାଙ୍କ ଦାନ ଗ୍ରହଣ ପାଇଁ ଆମ୍ଭମାନଙ୍କୁ ଆଜି ତାଙ୍କ ଜୟନ୍ତୀରେ ଶପଥ ନେବାକୁ ହେବ । ସେ ଭାରତର ପିତା ବୋଲି ଆମେ ସ୍ୱୀକାର କରୁଛୁ । ଚିରଦିନ ପାଇଁ ସେ ହିନ୍ଦୁସ୍ଥାନର ପିତା ବାପୁଜୀ ହୋଇ ରହିବେ ।

---

# ।। ସେହି ଖଜୁରୀ ଗଛଟି ।।

## କାହ୍ନୁ ଚରଣ

[ ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରାଣପ୍ରତିଷ୍ଠାତା ଶ୍ରୀ କାହ୍ନୁ ଚରଣ ବହୁ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନା କରି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିବାରେ ଲାଗିଛନ୍ତି, ପ୍ରାୟ ୧୯୬୮ ମସିହାରୁ ଆଜି ପର୍ଯ୍ୟନ୍ତ । କେନ୍ଦ୍ର ସାହିତ୍ୟ ଏକାଡ଼େମୀଦ୍ୱାରା ମଧ୍ୟ ସେ ପୁରସ୍କୃତ । ତାଙ୍କ ରଚିତ ବାଲିରାଜା, କା, ତୁଣ୍ଡବାଇଦ, ବଜ୍ରବାହୁ, ଡମସାଡାରେ, ମିଳନର ଛନ୍ଦ, ଅଭିନେତ୍ରୀ, ଶାସ୍ତି, ବଗ-ବଗୁଲି ଇତ୍ୟାଦି ଉପନ୍ୟାସଗୁଡ଼ିକ ଘରେ ଘରେ ସ୍ଥାନ ପାଇ ଏକ ବିରାଟ ପାଠକ ସମାଜ ସୃଷ୍ଟି କରି ଓଡ଼ିଆର ଜାତୀୟତା ଓ ସାମାଜିକ ଜୀବନକୁ ରୁଦ୍ଧିବନ୍ତ କରିଛି । ସ. ବନଫୁଲ ]

ମୂଳରୁ ତ ପାହାଚ ପାହାଚ, କି ଗୁଣ ତା'ର କିଏ ବର୍ଣ୍ଣିବ ?-ସେ ବଧିର ଓ ମୂକ, ସେ ସର୍ବ-ସହିଷ୍ଣୀ । ସେ ବଳବଳ କରି ଗୃହିଆଡ଼କୁ ସଦାସର୍ବଦା ଅନାଇଁ ଥାଏ; କିଛି ଦେଖେନାହିଁ, କିନ୍ତୁ ସେ ସବୁ ଅନୁଭବ କରେ, ସେଇଥିପାଇଁ ତାକୁ ଅନ୍ଧବୋଲି କହି ହେବନାହିଁ । ଖନାଟିଏ ହେଲା ଢ଼ିନରୁ ସେ କେତେ ପ୍ରକାର ଅତ୍ୟାଗୃଭ ସହିଛି, ସହି ସହି ରହିଛି, ବଢ଼ି ହୋଇଛି । ମୁଣ୍ଡ ଟେକି ଟେକିକା ଧୀରେ ଧୀରେ ଉପରକୁ ଉଠିଛି । ରାସ୍ତାର ଦୁଇ କଡ଼ରେ ଦୁଇଧାଡ଼ି ଆମ୍ବ, ଓସ୍ତ ଓ ମୋଟା ମୋଟା ଗୃକୁଣ୍ଡା ଗଛଗୁଡ଼ିକ ସଙ୍ଗରେ ପ୍ରତିଯୋଗିତା କରି ମୋଟରେ ଓ ଉଚ୍ଚରେ ତାକୁ ଟପି ଯିବାକୁ ସେ କେବେ ସାହସ କରିନାହିଁ । ସେ ଜାଣେ ସେ ଅଳ୍ପକ-ସ୍ୱଳ୍ପକ ଗଛ ।

ତଥାପି ତାର ବି ଗର୍ବ ଥାଏ । ତା ମୂଳର ଗୋଲେଇ ତିନିହାତ, ଉଚ୍ଚତା କୋଡ଼ିଏ ହାତରୁ ଅଳ୍ପ ଊଣା ହୋଇପାରେ । ବେକର ଗୋଲେଇ ଦେଢ଼ହାତ ହେବ । ମୁଣ୍ଡରେ ଛତାଳିଆ ଡାଳଗୁଡ଼ିକ ମେଲିଛି । କେତୋଟି ବାହୁଙ୍ଗାରେ ବାଇଆ-ଚଢ଼େଇ ବସାଗୁଡ଼ିଏ ଓହଳିଛି, ଧୀର ପବନରେ ଦୋହଲୁଛି । ଆମ୍ବ ଓ ଗୃକୁଣ୍ଡା ଗଛ ଧାଡ଼ିରୁ ସେ ରାସ୍ତା ଉପରକୁ ଦୁଇହାତ ଆଗେଇ ଠିଆ ହୋଇଗଲା-ଆଇଲାଙ୍କର ଦୃଷ୍ଟି ଆଗ ଓଟାରୁଛି । ତା'ର ପାହାଚିଆ ଦେହରେ ମୂଳରୁ ବେକେ ଉଛଯାଏ କେବେ କିଏ କଳିଚୂନ ପଲସ୍ତରା କରିଥିଲା, ଏବଯାଏ ଧୋବଲା ଦିଶୁଛି ।

ଜାଣି ଜାଣି ସେ ବଡ଼-ରାସ୍ତା ଉପରେ ଖଜୁରୀ ନ ଥିଲା, ଅବା ସେଠାକୁ ଡେଇଁ ପଡ଼ି ନ ଥିଲା । ତା'ର ଜନ୍ମବେଳେ ସେ ରାସ୍ତା ପାଖରୁ ବେଶ୍ ଦୂରରେ ଥିଲା, ଅରମା ଭିତରେ । ବଡ଼ ଉଇ-ହୁଙ୍କା ମୂଳରେ, ଯେଉଁ ହୁଙ୍କାର ଗାଡ଼ ମାଳରେ କେତେ ନାଗସାପ ବାସ କରୁଥିଲେ । ଭଲ ହୋଇଥିଲା । କାନକୋଳ କଣ୍ଟା ଓ ସାପ ଡରରେ ଢ଼'ଗୋଡ଼ିଆ ଜନ୍ତୁ ତାର ପାଖ ପଶୁ ନ ଥିଲେ । ସେ ନିଶ୍ଚିନ୍ତରେ ଡାଳପତ୍ର ମେଲାଇ ବଢ଼ିଲା, ଆଖି ଦୁରୁଶିଆ ହେଲା ।

କେବେ ଦିନେ କାହାର ଦୁଇଟା ଛେଳିକୁ ତା' ମୂଳରେ କାଠି ଛୁଇଁଥିଲା । ମଣିଷର ନୋଧକୁ କିଏ

ପାରିବ ? କିଏ କେଉଁଠୁ କୋଡ଼-କାଙ୍କ-କଟୁରି ଧରି ଆସିଲେ । ଅରମା ସଫା କଲେ । ହୁଙ୍କା ଭାଙ୍ଗିଲେ । ସାପ ମାରିଲେ; କେଇଟା ଅନ୍ୟଆଡ଼େ ପ୍ରାଣ-ବିକଳରେ ପଳାଇଲେ । ସେହି ମଣିଷମାନେ ତାର ଡାଳଗୁଡ଼ିକ କାଟି ପକାଇଲେ; ଖଜୁରୀପତ୍ରରେ ପଟି ବୁଣିବାକୁ ସେ ସବୁ ବୋହିନେଲେ । ତାର କପାଳ ଭଲ ଯେ ସେମାନେ ତାର ବେକ କାଟି ଛିଡ଼ାଇ ନାହାନ୍ତି । ଦେହ କାଠକରି ସେ ପୁଣି ଡାଳ-ପତ୍ର ମେଲାଇ ବଢ଼ିବାକୁ ଲାଗିଲା ।

ବେକ ସିନା କାଟିଲେ ନାହିଁ, ତା' ବେକ କଡ଼ରୁ ଛେଲା ଛେଲକା ଠେକ ବାନ୍ଧି ତା' ଦେହର ରସ ନିଗାଡ଼ିଲେ । ସେ ଯେଉଁ ଜୀବନ ଛଡ଼ା କଷ୍ଟ ! ଦେହରେ ତାକତ ଥିବାରୁ ସେ ସବୁ ଦୁଃଖ ସହି ବଞ୍ଚି ରହିଲା । ଦୂରେଇ ଦୂରେଇ ତା' ପଛର ଅନାବାଦୀ ଅରମା ଭୂଇଁରେ ଠିଆ ହୋଇଥିଲେ ତା' ଜାତିଆ ଆଉ ଯେତେ ଗଛ, ସେମାନେ ଦିନାକେତେ ପରେ ଛଟପଟ ହୋଇ ମଲେ । ଆଉ ଦୁଇ ଚାରିଟା ମିଁ ମିଁ ହୋଇ ଏବଯାଏ ବଞ୍ଚିଛନ୍ତି । ଫଳିବାର ଶକ୍ତି ହରାଇ-ଛନ୍ତି । ସେ କିନ୍ତୁ ଫଳୁଛି, ଫଳ ପଚୁଉଛି । ତା'ର କୋଳ ଯେତେ, ଜାଣ ମଞ୍ଜି ବି ସେତେ, ଉପରେ ଖାଲି ଚେପା ଗୁନ୍ଥିଣି । ଏଇ ଦି'ଗୋଡ଼ିଆ ସବୁଖିଆ ରାକ୍ଷସମାନେ କଞ୍ଚା-ଦରପାଚିଲା ଅବସ୍ଥାରେ ତାର ଝୋଳକତକ ସବୁ ନେଇ ଯାଆନ୍ତି କେଉଁ ପୂଜା—ପରବରେ ଲେଡ଼ାହୁଏ ପରା !

ସହି ସହି ସେ ବଞ୍ଚି ରହିଥିଲା । ତଥାପି ତା' କପାଳ ଫାଟିଲା କାହିଁକି ? କେତେ ଝଡ଼-ତୋଫାନ ଆସିଛି । ଡେଙ୍ଗା ମୁଣ୍ଡରେ ଠେଙ୍ଗାପରି, ରାସ୍ତା କଡ଼ର ଆକାଶର ମଥାନଛୁଆଁ ଆମ୍ବ, ବର, ଚକୁଣ୍ଡା ଗଛର ବଡ଼ ବଡ଼-ଡାଳ ଭାଙ୍ଗି ରାସ୍ତା ଉପରେ କଚଡ଼ି ଦେଇ-ଛନ୍ତି । କିନ୍ତୁ ସେ ଅଳପ ଦୋହଲି ବାହୁଙ୍ଗା ଓ ପତ୍ର ହଲାଇ ଜୁହାରି ଗୁହାରି ବଞ୍ଚିଛି । ତା' ମୁଣ୍ଡ ଉପରେ ରଡ ରଡକା ଛଡଚଡ ଭଡ଼ମୋଡ଼ ହୋଇ ଉଡ଼ି ଯାଇଛି, ଦେହ ଛୁଇଁ ନାହିଁ, ଖାଲି ଝିକିଏ ଚମକାଇ ଦେଉଛି । ଚିହ୍ନାଇ ଦେଉଛି । ଆଜି ସେ ଦୁଇଜଣ ଲୋକ ଆସି କୁରାଢ଼ୀରେ ତା' ମୂଳରେ ଚୋଟ ହାଣୁଛନ୍ତି । ସେ ବୁଝି ସାରିଲାଣି । ସେମାନେ ତା'ଡ଼ ନେବାକୁ ଆସି ନାହାନ୍ତି । ସେମାନେ ତାର ମୂଳପୋଛ କରି କାଟିବାକୁ ଆସିଛନ୍ତି । ଆଉ ରକ୍ଷାରକ୍ଷଣ ମିଳିବ ନାହିଁ ।

ତା' ବେଳକାଳ ସରିଲା, ସେ ଜାଣିଲାଣି । ଏଇଠି ଠିଆହୋଇ ତା'ର ଭାଇମାନଙ୍କ ଅବସ୍ଥା ସେ ଦେଖିଛି । ଦି'ଗୋଡ଼ିଆଙ୍କୁ ବିଶ୍ୱାସ ନାହିଁ । କୁରାଢ଼ୀ-ଚୋଟରେ କେତେ ଦାରୁମାନ ଟଳାଇ ଦେଇଛନ୍ତି-ଅନାବାଦୀ ଅପନ୍ତରାକୁ ସେମାନେ ଫଦାକରି ସାରିଲେଣି । ସେ ବି ଯିବ । ପ୍ରତିବାଦ ସେ କରିପାରିବ ନାହିଁ । ସେ ମୁଣ୍ଡ ହଲାଇ, ଦେହ ଉଲୁସାଇ ଦଶ ଦିଗକୁ ଚାହିଁଲା । ତାର ମୂଳରେ କୁରାଢ଼ୀ-ଚୋଟ ବାଜୁଛି । ଭାରି କାଟୁଛି ସେ ମୂକ ଓ ବଧିର; କିନ୍ତୁ ତାର ସାରା ଦେହ ଜକଜକ କରି ଚାହିଁଛି ।

ଦେଖୁଛି—

ତା' ପାଖରୁ ଖଣ୍ଡେ ଦୂରରେ ଚାରି ଚକିଆ ମଟର—ଗାଡ଼ି ଖଣ୍ଡେ ତଳ ଉପରକୁ ପିଠି ତଳକୁ କରି ପଡ଼ିଛି । ଗାଡ଼ିର ମୁଣ୍ଡ ଓ ଦେହ ଭାଙ୍ଗି ରୁଜି ଯାଇଛି । ଚେପା ହୋଇଛି । ମାସକ ତଳେ, କଅଁଳ ଖରାକୁ ସକାଳର ବହଳ କୁହୁଡ଼ି ଉହାଡ଼ କରିଥାଏ, ତା' ବାହୁଙ୍ଗା ଓ ପତ୍ରମାନରୁ କାକର ଟୋପାମାନ ଟପ ଟପ ହୋଇ ତଳେ ପଡ଼ୁଥାଏ । ସେହି ମଟର-ଗାଡ଼ିଟା ତୋଫାନ ବେଗରେ ଆଲୁଅର ଆଖି ଦୁଇଟି ଘଞ୍ଚ କୁହୁଡ଼ି ଭିତରେ ମିଟି ମିଟି କରି ଧାଇଁ ଆସୁଥିଲା । ବିପରୀତ ଦିଗରୁ ଆହୁରି ଅଧିକ ବେଗରେ ଧାଇଁ ଆସୁଥିଲା ବଡ଼ ଟ୍ରକ୍‌ଟିଏ, ସେଥିରେ ପଥର ବୋଝେଇ ହୋଇଥିଲା । ତାର ଫିକା ଆଲୁଅ ଦୁଇଟା ସେମିତି

ଜଳୁଥାଏ । ମନେ ହେଉଥାଏ, କେହି କାହାକୁ ବାଟ ଛାଡ଼ିବାକୁ ରାଜି ନୁହଁନ୍ତି । ସେ ଯିଏହିଁ ନିଜ ନିଜର ବଡ଼ ପଣର ଟେକ ରଖିବାକୁ ତତ୍ପର ।

ସେହି ଖଜୁରୀ ପାଖରେ—

ଷଣ୍ଢଙ୍ଗର ସେହି ଟ୍ରକ୍‌ଟି ନିଜର ଟେକରଖି ରାସ୍ତାର ମଝିରେ ଛୁଟି ପଳାଇଲା । ଠିକ୍ ସେତିକବେଳେ ଖଜୁରୀ ଗଛଟି ଅନୁଭବ କଲା ସତେକି ତା' ଦେହରେ କିଏ ପର୍ବତ ଛେଚିଲା । ଏତେବଡ଼ ଆଘାତ ଜନ୍ମରୁ ସେ କେବେ ପାଇ ନ ଥିଲା । ସେ ଦୋହଲି ଉଠିଲା । ସେ ଖଣ୍ଡିଆ ଖାବରା ହେଲା । ଧକ୍‌କାକୁ ସମ୍ଭାଳି ଥକ୍‌କା ହୋଇ ରହିଲା—

ଷ୍ଟେଟ ମଟର—ଗାଡ଼ିଟି ଭାଙ୍ଗିରୁଜି ଦୁଇ ଗଡ଼ଗଡ଼ା ହୋଇ ସଡ଼କ କଡ଼ର ସନ୍‌ସନିଆ ନାଳରେ ଉପରକୁ ଚାରିଚକ ଟେକି ପଡ଼ିଛି । ଭିତରୁ ନାଲିଆ ରକ୍ତ ଧାର ଧାର ହୋଇ ଛୁଟିଛି ଭୂଇଁ ଉପରେ ।

କୁହୁଡ଼ି ଅପସରିଲା । ଚାରିଆଡ଼େ ଖବର ବ୍ୟାପିହୋଇ ପଡ଼ିଲା । ତାହାର ପାଖରେ ଲୋକଭିଡ଼ । ଦୁଇ ପାଖରୁ ଆସୁଥିବା ଯାନବାହନ ତାହାର ଆଗରେ ରାସ୍ତା ଉପରେ ଅଟକି ରହିଲେ । କେତେଲୋକ ଓହ୍ଲାଇଲେ । ଭଙ୍ଗାରୁଜା ମଟରଗାଡ଼ି ଚାରି ପାଖରେ ବେଢ଼ିଗଲେ । ଗାଡ଼ି ଭିତରୁ ସେମାନେ ଖଣ୍ଡିଆ-ଖାବରା ପାଞ୍ଚଜଣ ଲୋକଙ୍କୁ ପଦାକୁ କାଢ଼ିଲେ, ଘାସ ଉପରେ ସେମାନଙ୍କର ରକ୍ତବୋଳା ଦେହଗୁଡ଼ିକୁ ଶୁଆଇ ଦେଲେ ।

ତିନୋଟି ପୁରୁଷ ଓ ଦୁଇଟି ନାରୀ ! ମରିଛନ୍ତି ଅବା ହତଜ୍ଞାନ ହୋଇ ପଡ଼ିଛନ୍ତି । ଗାଡ଼ି ଉପରେ ବନ୍ଧା ହୋଇଥିବା ଜିନିଷ ଓ କାଚ-ଭଙ୍ଗା ଖୋଲା ଝରକା ବାଟେ ଛିଟିକି ଆସିଥିବା ପଦାର୍ଥଗୁଡ଼ିକ ଏଣେତେଣେ ବିଞ୍ଚିହୋଇ ପଡ଼ିଛି । ଲୋକେ ତାକୁ ବି ଦେଖୁଛନ୍ତି । ଆଙ୍ଗୁଠି ବଢ଼ାଇ ସେହି ଖଜୁରୀ ଗଛଟିକୁ ଦେଖାଇ ଦେଉଛନ୍ତି ।

ସେ କିନ୍ତୁ ନିର୍ବିକାର କେବଳ ହଲବଲ କରି ରହିଛି । ଡାଳପତ୍ର ହଲଉଛି । ଖଣ୍ଡିଆ ଦେହରୁ ରସ ଝରାଉଛି । ତା' ଉପରେ ବସି କେତୋଟି କାଉ ରକ୍ତରେ ଜୁଡ଼ୁବୁଡ଼ୁ ଅଜ୍ଞାନ ହୋଇ ପଡ଼ିଥିବା ଦେହ-ଗୁଡ଼ିକୁ ଚାହିଁ ରହିଛନ୍ତି, ବେଳେବେଳେ ଏ ଡାଳରୁ ସେ ଡାଳକୁ ଡେଇଁ ନାଚ କରୁଛନ୍ତି । ବାହୁଙ୍ଗା-ମାନଙ୍କରୁ ଓହଳି ଥିବା ବାଇଆ-ଚଢ଼େଇଙ୍କର ବସା-ଗୁଡ଼ିକ ଧୀର ପବନରେ ଦୋହଲୁଛନ୍ତି । ବସା ଭିତରୁ ଚଢ଼େଇଗୁଡ଼ିଏ ପଦାକୁ ଉଡ଼ି ଆସୁଛନ୍ତି । ତାର ବାହୁଙ୍ଗା ଉପରେ ଡେଇଁ, ପୁଣି ବସାରେ ପଶୁଛନ୍ତି ।

କେତେଦିନ କେତେ ରାତି ବିତି ଗଲାଣି । ଆଜି ତାର ଆୟୁଷ ପୂରିବ । ତା' ମୂଳରେ ଟାଙ୍ଗିଆ ପାହାର ବାଜୁଛି, ସେ ହଲିଲାଣି, ସେ ଟଳଟଳ ହେଲାଣି—

( ୨ )

ସେହି ଖଜୁରୀ ଗଛ, ଓଲଟି ପଡ଼ିଥିବା ମଟର ଗାଡ଼ି ଓ ତା' ପାଖରେ ରକ୍ତ-ଜୁଡ଼ୁବୁଡ଼ୁ ପାଞ୍ଚଟି ଦେହର ଫଟୋ ଖବର କାଗଜମାନଙ୍କରେ ବାହାରି ଥିଲା ।

ସମ୍ବାଦ ଛପା ହୋଇଥିଲା ଯେ ଘଟଣାସ୍ଥଳରେ ଚାଳକର ମରଣ ହୋଇଥିଲା । ତାର ମୁଣ୍ଡ ଫାଟି ଛତର ଛତ୍ରଳ ହୋଇଥିଲା ଓ ମୁଣ୍ଡ ଭିତରର ଦହିରୁ ଚୂନାଏ ପଦାକୁ ବାହାରି ଆସିଥିଲା ।

ପୁଣି ଲେଖା ହୋଇଥିଲା ଯେ ଡାକ୍ତରଖାନାକୁ ଅଣା ହେଉଥିବା ଅବସ୍ଥାରେ ବାଟରେ ଆଉ ଜଣକର ମୃତ୍ୟୁ ହୋଇଥିଲା । ସେ ଜଣେ ଯୁବ, ଡ୍ରାଇଭର ପାଖରେ ଆଗ ସିଟ୍‌ରେ ବସିଥିଲେ । ଖଣ୍ଡିଆ ଖାବରା ତ ହୋଇଥିଲେ, ତାଙ୍କର ବେକତଳର ବେଁଶିରା ହାଡ଼ ଭାଙ୍ଗି ଦୁ'ଗଡ଼ ହୋଇଥିଲା । କାନ୍ଧରୁ ଝୁଲୁଥିଲା ଗୋଟିଏ କ୍ୟାମେରା ।

ସେହି ଆଗ ସିଟ୍‌ରେ ଖୋଲା ଦରଜା ଉପରେ ବାଁ ହାତର କହୁଣୀ ରଖି ବସିଥିଲେ ଯେଉଁ ଯୁବତୀ ଜଣକ, ତାଙ୍କର ସେହି ହାତଟି କହୁଣୀ ପାଖରୁ ଦଗଡ଼ ହୋଇ ଛିଣ୍ଡି ପଡ଼ିଥିଲା ଓ କପାଳ ଉପରେ କଟା-ଦାଗ ହୋଇଥିଲା । ଉପର ପାଟିର ସମ୍ମୁଖଦାନ୍ତ ଦୁଇଟି ଭାଙ୍ଗି ଯାଇଥିଲା । ସୋପ୍-କେସ୍ ଆକାରର ଟ୍ରାନ୍‌ଜିଷ୍ଟରଟିଏ, ଯାହାକୁ ସେ ଡାହାଣ ହାତରେ ଧରିଥିଲେ, ସେଥିରେ ଚାପ ପଡ଼ି ଯାଇଥିଲା ।

ପଛରେ ବସିଥିଲେ ଯେଉଁ ଯୁବକ ଓ ଯୁବତୀ ଦୁଇଜଣ, ସେମାନଙ୍କର ଅବସ୍ଥା ମଧ୍ୟ ସାଂଘାତିକ । ଗାଡ଼ି ଭିତରେ ବଣ-ଭୋଜି ପାଇଁ ଖାଦ୍ୟ ହୋଇଥିଲା କେତେ ସରଞ୍ଜାମ । ପଛସିଟ୍ ପାଖରେ ବାଁ ପାଖ ଦରଜା ଖୋଲି ଯାଇଥିଲା, ଯୁବକଙ୍କର ଆଣ୍ଠୁ ତଳ ଯାଏ ଗୋଡ଼ ସେଥିରେ ଚୁପିହୋଇ ନଳୀ-ହାଡ଼ କେତେଖଣ୍ଡ ହୋଇ ଭାଙ୍ଗି ଯାଇଥିଲା । ତାଙ୍କର ବୁସ୍-ସାର୍ଟର ପକେଟରୁ ଯେଉଁ ପକେଟ୍-ସାଇଜ୍‌ର ସଚିତ୍ର ଓମର-ଖାଏମ ବାହାରିଲା ତା' ଭିତରେ ଖଣ୍ଡେ ଫଟୋ ଥିଲା, ସେଇଟି ସିପ୍ରା ଦେବୀଙ୍କର, ଯିଏ ଆଗ ସିଟ୍‌ରେ ବସିଥିଲେ ।

ତାଙ୍କ ପାଖରେ ବସିଥିଲେ ଯେଉଁ ଯୁବତୀ ଜଣକ, ତାଙ୍କର ଡାହାଣ ଆଖିରେ କଚଟୁକୁଳର ନାଡ଼ ପଶି ଡୋଳାଟିକୁ ନଷ୍ଟ କରିଥିଲା । ପୁଣି ଆଉ କଅଣ ଛାତିରେ ବାଜି ଦୁଇଟି ଡାହାଣପାଖର ପଞ୍ଜରା-ହାଡ଼ ଭାଙ୍ଗି ଯାଇଥିଲା । ତାଙ୍କର ନାମ କ୍ଷିପ୍ରା । ସିପ୍ରାଙ୍କର ସେ ସାନ ଭଉଣୀ ନୁହଁନ୍ତି ।

ଯାହାହେଉ ତିନୋଟି ପ୍ରାଣୀ ବଞ୍ଚିଗଲେ ତ ଭଗବାନଙ୍କର ଅପାର କରୁଣା ! ଚଞ୍ଚଳ ମହାପାତ୍ର ମରିଗଲେ ସିନା, ଯଦି ବଞ୍ଚିଥାନ୍ତେ ଅବଶ୍ୟ ସେ ଜଣେ ଜନନାୟକ ହୋଇଥାନ୍ତେ । ଭଲ ଯୁବକ ନ ହେଲେ ନାହିଁ, ସେ ଜଣେ ଖେଳୁଆଡ଼, ଆକ୍ଟର, ରାଜନୈତିକ ଓ ବକ୍ତା ଥିଲେ । ଭଜପୁ ଦାସ ମେଧାବୀ ଯୁବକ, ଗମ୍ଭୀର ବୁଡ଼ି ବୁଡ଼ି ପାଣି ପିଅନ୍ତି ଓ ରହିରହିଆ ସରଳ କବିତା ଲେଖନ୍ତି । ତାଙ୍କର ନିଶ୍ଚିତ ଆଶା ଥିଲା ଯେ ସେ ଜଣେ ବଡ଼ ଅଫିସର ହେବେ । ଅନ୍ୟମାନେ ବି ସେହିପରି ଭାବୁଥିଲେ । ଆଣ୍ଠୁ ଉପରୁ ଗୋଡ଼ଟି କଟିଲା ପରେ ତାଙ୍କର ଓ ଅନ୍ୟମାନଙ୍କର ସେ ଆଶା ଆକାଶ କୁସୁମ ହେଲା । କେଉଁ ଉତ୍ସାହୀ ଜନନୀ ତାଙ୍କର ଅଳଅଳର ଆଖିରେ ସରୁ-କଜଳ, ଓଠରେ ପାତଳ ଗୋଲାପୀ ବୋଳିଦେଇ ତାଙ୍କର ମନ-ମିନକୁ ଆକର୍ଷିବାକୁ ଛାଡ଼ିଦେବେ ନାହିଁ । ତାଙ୍କର ଭବିଷ୍ୟତ୍ ?

ସିପ୍ରା ଚଉଧୁରୀ ପାଠ ପଢ଼ୁଥିଲେ ଦୁଇଟି ଉଦ୍ଦେଶ୍ୟରେ···ସଂସାର ପାଳିବା, ନ ହେଲେ ସ୍ୱାଧୀନ ଜୀବନ ଯାପିବା । ରଙ୍ଗ ଚୋପା ନ ହେଲେ ନାହିଁ, ମୁହଁଟି ଗୋଲଗାଲିଆ ଓ ସୁନ୍ଦର । ସବୁବେଳେ ପରିଷ୍କାର ପରିଚ୍ଛନ୍ନ ଅପ୍-ଟୁ-ଡେଟ୍ । ବେଶ୍ ମିଶି ପାରନ୍ତି । ତାଙ୍କ ସଙ୍ଗେ ମିଶିବାକୁ ପୁଅମାନେ ସୁଖ ପାଆନ୍ତି, ଯେହେତୁ ସେ ସୁନ୍ଦର ଗୀତବୋଲି ପାରନ୍ତି ।

କ୍ଷିପ୍ରା ସାମନ୍ତରାୟ ଧନୀ ଘରର ଝିଅ, ତନୁ-ପାତଳୀ, ରଙ୍ଗ ସଫା, ଲମ୍ବାଳିଆ ମୁହଁଟି ସବୁବେଳେ ହସ ହସ । ଆଖି ଦୁଇଟି ପୋଟଳ-ଫାଳିଆ । ଅଳ୍ପ କଥା କହନ୍ତି, ଛବି ଆଙ୍କିବା ଥିଲା ତାଙ୍କର ସଉକ । ବେଶ୍ ମିଶୁଣା । ତାଙ୍କର ଧାରଣା ଥିଲା ଯେ ମେଧାବୀ ଭଜପୁ ଦାସ ତାଙ୍କୁ ପସନ୍ଦଭରା ଦୃଷ୍ଟିରେ ଚାହାନ୍ତି । କେତେ ଆଶା କେତେ ସ୍ୱପ୍ନ !

ନଉଁଛଣା ଡ୍ରାଇଭର ଦରବୁଢ଼ା ହରି ନାୟକ, ନିଜେ ତ ମଲା । ଦୁଇଟି ଝିଅ, ତିନୋଟି ପୁଅ ଓ ବୁଢ଼ା ଅଚଳ ବାପ ଏବଂ ବାତ-ରୋଗଣୀ ମାଆଙ୍କୁ ଅନାଥ କରି ବାଟରେ ବସାଇଲା, ପିଲା ତିନୋଟିଙ୍କର ଜୀବନ ବରବାଦ୍ କରିଦେଲା, ଭବିଷ୍ୟତକୁ ପୋଡ଼ିଜାଳି

ପାଉଁଶ କଲା ! ଚଞ୍ଚଳ ମହାପାତ୍ରଙ୍କ ପରି ଏ ଲୋକଟା ଯଦି ମରିଯାଇଥାନ୍ତେ ତ ଭଲ ହୋଇଥାନ୍ତେ । ଡ୍ରାଇଭର୍ ସିଟ୍‌ରେ ବସି ଷ୍ଟିଅରିଂରେ ହାତ ପକାଇଲେ ତ ନିଜକୁ ନବାବ୍ ବୋଲି ସେମାନେ ମଣନ୍ତି ।

ଅନ୍ଧାରିଆ ଶୀତ-ବଣିଆ ସକାଳ, ହାତଗୋଡ଼ ଥରି ଯାଉଥିବ, କୁହୁଡ଼ି ଘୁଞ୍ଚୁଛି ସେ ଦଶହାତ ଦୂରରେ କ'ଣ ଅଛି ଆଖିକୁ ଦିଶୁ ନ ଥିବ । ବଣ-ଭୋଜି କରିବାକୁ, ଟିକିଏ ଫୂର୍ତ୍ତି ଆନନ୍ଦରେ ବେଳ କଟାଇ, ସେ ଦିନ ରହି ତହିଁଆର ଦିନ କୋଣାର୍କରୁ ଫେରି ଆସିବାର ପ୍ରୋଗ୍ରାମ୍ କରି, ସ୍କୁଲ୍‌ଟି ବନ୍ଦ୍ ଗାଡ଼ି ଭଡ଼ାକରି, ହଜ ଆଗଭୁରା ଅଧେ ଟଙ୍କା ଗାଡିର ମାଲିକକୁ ଗଣିଦେଇ କେତେ ଉତ୍ସାହରେ ବାହାରିଥିଲେଟି ! ବେଶି ବାଟ ତ ନୁହେଁ, ରହି-ସମ୍ଭାଳି ଗାଡ଼ି ଚଳାଇଥିଲେ କ'ଣ ଗୁଡ଼-ଘର ପିମ୍ପୁଡ଼ି ଖାଇ ଯାଇଥାନ୍ତେ ?

ଡ୍ରାଇଭର ବେଉସା ତ, କେଜାଣି, ଶୀତର କୋପ ନ ବାଧିବାକୁ ଅବା ଅଭ୍ୟାସ ବଶତଃ ପେଟେ ମଦ ପିଇ ଦେଇଥିବ । ମରୁ, ମରୁ ସେ ଅବେଇଜ୍ ଛନିପୁରରେ ତାର ଦାୟିତ୍ୱ-ହୀନ ଅମ୍ବାକୁ ଠାବ ମିଳିବ ନାହିଁ । ତା'ର ଅମୋକ୍ଷ ଅବାଧ ଆତ୍ମା ସେ ସେଉଁ ଖଜୁରି ଗଛ, ତାଆରି ଦେହରେ ନିଶ୍ଚୟ ଆଶ୍ରା ନେଇଥିବ । ରସ ଟିକିଏ ଚାଟିବାକୁ ତା' ମନ ହାଇଁ-ପାଇଁ ହେଉଥିବ । ଖାଲି ହାଇଁପାଇଁ, ଉହନ-ବକଳ ! ପ୍ରେତ-ଲୋକଟା, ଆଶା ତାକୁ ଛଟପଟ କରୁଥିବ ହେ, ଜଭ କାହୁଁ ପାରିବ ଯେ ରସ ଚାଟିବ ? ସରିଗଲା ତା' ପାଇଁଟି ।

ଖାଲି ଉହନ-ବକଳ ? ଖେଳୁଆଡ଼, ଘୁଷନେତା ଚଞ୍ଚଳ ମହାପାତ୍ରଙ୍କର ନିଷ୍ପାପ-ଆତ୍ମା କ'ଣ ନିଜ ଡ୍ରାଇଭରର ପାପ-ଅମ୍ବାକୁ ସହଜରେ ଛାଡ଼ିଦେବ ? କୋରୁଥିବ, ଝାଲ ଯାଉଁଣୁ ଆସୁଣୁ ତା' ପଛେ ପଛେ ଧାଇଁ କୋରୁଥିବ । ଚଞ୍ଚଳ ମହାପାତ୍ରଙ୍କର କ୍ରୁଦ୍ଧ-ଆତ୍ମା ବି ସେଇ ଖଜୁରି ଗଛରେ ଆଶ୍ରା ନେଇଛି । କିଏ ସବୁ କହୁଥିଲେ, ରାତି ଅଧରେ ସେମାନେ ସେହି ଗଛଆଡ଼ୁ ଭାସି ଆସୁଥିବା କଳକଳା ରଡ଼ି, ଅତି ବକଳ କାନ୍ଦଣା, ଆଉ ଠୋ ଠୋ ହସ ଶୁଣିଛନ୍ତି । ଥରେ ନୁହେଁ, କେତେଥର; ରାତିଏ ନୁହେଁ, କେତେ ରାତି । ତାହାରି ସେ କାନ୍ଦ ଓ କାହାରି ସେ ଟହ ଟହ ହସ ଅନୁମାନ କରିବାର ଭାରି !

ଅସଂପୃକ୍ତ ଲୋକେ ଦୁର୍ଘଟଣାର ତାଜା ଖବର ପାଇ ଖୋଳତାଡ଼ ପ୍ରକୃତ ଘଟଣା ଜାଣିବାକୁ ଚେଷ୍ଟା କରି ଏହିପରି କେତେ ଅନୁମାନ କରୁଥିଲେ । ନିଜ ନିଜ ଭିତରେ ବାଦପ୍ରତିବାଦ କରି ହାତ ଚଟକାଚଟକି ହେଉଥିଲେ ।

କିଏ କହୁଥିଲେ ବଡ଼ ରାସ୍ତାର ରକ୍ଷଣାବେକ୍ଷଣର ଦାୟିତ୍ୱ ଯେଉଁ ବ୍ୟକ୍ତିଟି ଉପରେ ନ୍ୟସ୍ତ, ତାକୁ ସେହି ଖଜୁରି ଗଛରେ ବାନ୍ଧି ପିଟି ପିଟି ହାତ-ଗୋଡ଼ ଭାଙ୍ଗି ଛାଡ଼ି ଗୋଟାଏ ଆଖି ଛାଡ଼ି ଦେବାର କଥା । କେଉଁ ଅକଲରେ ରାସ୍ତାଉପରେ ଗଛଟାକୁ ରଖିଥିଲା, ଆଗରୁ କଟାଇ ନ ଦେଲା କାହିଁକି ? ଶୁଣା ଶୁଣିରେ ବଜ ଡ୍ରାଇ-ଭର୍ ଭାରି ସତର୍କ—ସାବଧାନ ଲୋକ, ମଦ ପାଣିରି ପାଖେ ପଶେନାହିଁ । ଦିନୁଦିନ ଟ୍ରାଫିକ୍ ଯେପରି ବଢ଼ୁଛି ନା, ରାସ୍ତାର ଗୁର୍ଜସାହା ଉପରେ—

ଆଉକିଏ ବୁଦ୍ଧି ବଳୁରି କହନ୍ତି, କିନ୍ତୁ ମୁଁ ତ କହିବି ପ୍ରକୃତ ଦୋଷୀ ସେହି ଟ୍ରକ୍-ଚାଳକ, ନିଶ୍ଚେ ଦାଡ଼ିଓ୍ୱାଲା ବେପରୁଆ ପଞ୍ଜାବୀ ହୋଇଥିବ, ପିଏ ତ ହାଣ ଆଡ଼କୁ ମାଡ଼ ଆଖିକାନ ବୁଜି ଭାରି ବେଗରେ ଗାଡ଼ି ଛୁଟାଇ ଚାଲିଗଲା । ନିଜର କାର୍‌କୁ ବଂଚାଇବାକୁ ସେହି ଖଜୁରି ଗଛ ପାଖରେ ବଜ ଡ୍ରାଇଭର ଗାଡ଼ିକୁ ଟିକିଏ ବାଁଆଡ଼କୁ ମୋଡ଼ି ଦେଇଥିବ । ନିଜେ ସେ ଆତ୍ମବଳି ଦେଲା, ଖଣ୍ଡିଆଖାବରା ହେଉନ୍ତୁ ପଛକେ ଅନ୍ତତଃ ଆଉ ତିନୋଟି ପ୍ରାଣୀଙ୍କୁ ବଂଚାଇ ଦେଲା ତ !

ୀରତ୍ୱ ପାଇଁ ବିଜକୁ ପ୍ରେସିଡେଣ୍ଟଙ୍କ ସ୍ୱର୍ଣ୍ଣପଦକ ଦେବାର କଥା ! ଟ୍ରକ୍ ସଙ୍ଗେ ମୁହାଁମୁହିଁ ଧକ୍କା ଲଗିଥିଲେ ଜଣେକେହି ବଞ୍ଚି ନ ଥାନ୍ତେ ।

ଗୁଡ଼ରେ ଯାଇ, ଦୁର୍ଘଟଣାର ହାତଗୋଡ଼ ନାହିଁ । କିନ୍ତୁ; କାରଣ ତ ନିଶ୍ଚୟ ଅଛି ? ଅନୁସନ୍ଧାନ କରି ସେହି କାରଣକୁ ନିର୍ଣ୍ଣୟ କରି ଦୂରକଲେ ଭବିଷ୍ୟତ୍‌ରେ ଆଉ ଦୁର୍ଘଟଣା ହେବାର ସମ୍ଭାବନାକୁ ଦୂରକରି ହେବ ।

କାରଣ ତ ଜଣାଶୁଣା—ରାସ୍ତା ଉପରେ ସେହି ଝଙ୍କୁଣି ଗଛର ସ୍ଥିତି ! ସେଇଠାର ଆଇଷ ପୂରିଲା !

କିନ୍ତୁ ସବୁବେଳେ ସବୁଠ ନୂଆ କାରଣମାନ ବିଦ୍ୟମାନ କେଉଁମାନେ ମୁଣ୍ଡଟେକି ଠିଆ ହୋଇଛନ୍ତି । ଆମର ସର୍ବନାଶ କରିବାକୁ ଠାକି ରହିଛନ୍ତି; ଆଉ କେଉଁମାନେ ଆଖିକୁ ଦିଶୁ ନାହାନ୍ତି । କେଉଁଠୁ ସହସା ଆସି ଆମ-ଆମ ଉପରକୁ ଝାମ୍ପ ମାରୁଛନ୍ତି । କାରଣମାନେ, ଦେଖା ଅଦେଖା, ପୁରୁଣା ନୂଆ ଯାହା ହେଉନ୍ତୁ, ସେମାନେ ଅମର । ସେମାନେ କାହାର କେବେ କେଉଁଠି ସତ୍ୟାନାଶ କରନ୍ତି, ପୁଣି ପାତାଳରୁ ଟେକି ସ୍ୱର୍ଗରେ ବି ଥୁଅନ୍ତି ।

କପାଳରେ ଥାଇ, କପାଳ । ଯେତେବେଳେ ଯାହା ହେବାର କଥା, ମନେ ହେଉଛି, ତାହା ଯେପରି ଆଗରୁ ସ୍ଥିରହୋଇ ରହିଛି । ସମସ୍ତେ ତାଙ୍କର ନିଜ ନିଜ ବାଗରେ ସାବଧାନ ହେବାକୁ, ବୁଝି ବିଚାରି ପାଦ ଚିପି ଚିପି ଆଗେଇବାକୁ ଚେଷ୍ଟା ତ କରୁଛନ୍ତି; କିନ୍ତୁ ସବୁପ୍ରକାର ଚେଷ୍ଟାରେ ଗୋଟାଏ ଆଶା—ସୁଖ-ସୌଭାଗ୍ୟର ଆଶା ଯୋଗୁ ହୋଇଚି । ତାକୁ ଅଡ଼ାଇ ଅଡ଼ାଇ ନେଉଛି ଆମ-ଆମର ଉଦ୍‌ବିଗ୍ନତା । କେବେ କେବେ ପଥା ଠିକିଏ କୋହଳ ହୋଇ ଯାଉଛି, ବାଟର ବାଟୋଇ ଖାତରେ ପଡ଼ୁଛି ।

ଦୁର୍ଘଟଣା !

(୩)

ଖଣ୍ଡିଆ ହାତରୁ ଏବେଯାଏ ବ୍ୟାଣ୍ଡେଜ୍ ଖୋଲା ହୋଇନାହିଁ । କହୁଣୀ ଉପରୁ ବାଁହାତଟି କଟା ହୋଇଛି । ମୁଣ୍ଡରୁ ଓ ପାଟି ଉପରୁ ଷ୍ଟିଚ୍ ଖୋଲା ସରିଲାଣି । ପାଟି ଭିତରେ ଜିଭ ବୁଲାଇଲେ ଲାଗୁଛି, ତଳ ଓ ଉପର ପାଟିରୁ ଅନେକଗୁଡ଼ାଏ ଦାନ୍ତ ନାହିଁ । ଦର୍ପଣରେ ଗୁହାଁଲେ ମୁହଁଟା ବିକୃତ ଦିଶୁଛି ।

ଆତ୍ମୀୟ-ସ୍ୱଜନମାନେ ବାରମ୍ବାର ସାନ୍ତ୍ୱନା ଦେଉଛନ୍ତି – ଭଗବାନଙ୍କୁ ଧନ୍ୟବାଦ, ଏତେବଡ଼ ଦୁର୍ଘଟଣା ଘଟିଗଲା, ଜୀବନଟା ତ ରହିଲା । ପାଟିରେ ନକଲି ଦାନ୍ତ ଖଞ୍ଜାଯାଇ ପାରିବ, ପ୍ଲାଷ୍ଟିକର ହାତ ବି ଯୋଡ଼ି ହେବ । ଚିନ୍ତା କାହିଁକି ? ଡାହାଣ ହାତ ଅକ୍ଷତ ରହିଛି, ଲେଖିବାରେ ଅସୁବିଧା ହେବନାହିଁ । ଅସାବ-ଧାନ ମଦୁଆ ଡ୍ରାଇଭର ସଙ୍ଗେ ସଙ୍ଗେ ତା'ର ବଦ୍‌ଖୋଇ ପାଇଁ ଅସାବଧାନତାର ଦଣ୍ଡ ପାଇଯାଇଛି । ଦୁଃଖ ହେଉଛି ଖାଲି ସେହି ଚଞ୍ଚଳ ମହାପାତ୍ରଙ୍କ ପାଇଁ । ସ୍ୱାସ୍ଥ୍ୟ, ରୂପ, ଢଙ୍ଗ—

ଆଖିରୁ ଦୁଇଧାର ଲୋତକ ଗଡ଼ାଇବା ବ୍ୟକ୍ତିଙ୍କ ସମସ୍ତଙ୍କର ସବୁପ୍ରକାରେ ସାନ୍ତ୍ୱନାର ଆଉ କୌଣସି ଉତ୍ତର ସିପ୍ରା ଚଉଧୁରୀ ଦିଏ ନାହିଁ, ଦେଇପାରେ ନାହିଁ । ଏମିତି ଖଣ୍ଡିଆଖାବରା ଅକର୍ମଣ୍ୟ ହୋଇ ବଂଚି ରହିବାର ଦୁଃଖ ଅପେକ୍ଷା ମରଣ ସହସ୍ର ଗୁଣରେ ଭଲ । ଦେହରେ ପ୍ରାଣ ଥିବାଯାଏ ଲୋକଙ୍କର କୌତୁହଳୀ ଦୃଷ୍ଟି ତା'ର ଅନାବଶ୍ୟକ ଦେହଟା ଉପରେ ପଡ଼ୁଥିବ । ସେହି ଦୃଷ୍ଟି ସମ୍ବେଦନଶୀଳ ହୋଇ ଜାଣିବାକୁ ଆଗ୍ରହୀ ହେଉଥିବ—କେଉଁଠି କପରି ଏହା ଘଟିଲା, କାହିଁକି ଏପରି ହେଲା ? ଦୃଷ୍ଟିର ଭାଷା-ହୀନ ପ୍ରଶ୍ନକୁ ନିଜର ଦୃଷ୍ଟି ଆଡ଼େଇ ଉପେକ୍ଷା କରାଯାଇ ପାରିବ; କିନ୍ତୁ ଯେଉଁଠି ଅନ୍ୟର ସମ୍ବେଦନ ହେବ ମୁଖର, ପ୍ରଶ୍ନର ଉତ୍ତର ତ ଦେବାକୁ ହେବ ।

ମର ମର ହୋଇ ହସ୍‌ପିଟାଲରେ ପଡ଼ିଥିବା ଅବସ୍ଥାରେ ଯେତେବେଳେ ତାର ଜ୍ଞାନ ଫେରିଲା, ସେ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ମୃତ୍ୟୁକାଳୀନ—ବିବୃତ୍ତି ଦେଇଥିଲା—କୁହୁଡ଼ିର ଝାପ୍‌ସା ଅନ୍ଧାର ଭିତରେ ଗାଡ଼ିର ଆଲୁଅ ବିଓଟି ଖଣ୍ଡେ ଦୂରଯାଏ ଆଲୁଅର ଯେଉଁ ସ୍ତମ୍ଭ ସର୍ଜିଥିଲା, ସେ ଚିନ୍ତାଶୂନ୍ୟ ଦୃଷ୍ଟିରେ ତାକୁ ହିଁ ଅନାଇ ଥିଲା; ଆଗରୁ ଦିଶିଲା ବିଜୁଳି ବେଗରେ ମାଡ଼ି ଆସୁଥିବା ଦୁଇଟି ଫିକ୍‌କା-ଆଲୁଅ, ଏ ଗାଡ଼ିର ଆଲୁଅ ମିଶି ମିଶି ହେଲା; ସେଇଠୁ ମୁଣ୍ଡରେ ଗୋଟାଏ ବଜ୍ର-ପ୍ରହାର ! ଆଉକିଛି ମୁଁ ଜାଣେ ନାହିଁ ।

ସେ ସତ୍ୟ ପ୍ରକାଶ କରିଥିଲା; କିନ୍ତୁ ତାର ମରଣ-ମୁଖୀ ଆତ୍ମା ଯେତିକି ପ୍ରକାଶ କରି ନ ଥିଲା, ମୁହଁ ଖୋଲି ସେତିକି ସେ କାହାରି ଆଗରେ ପ୍ରକାଶ କରି ପାରିବ ନାହିଁ । କ୍ଷିପ୍ରା ଧନୀ ଘରର ଝିଅ, ତାର ସହ-ପାଠିନୀ । ତାର ଦେହର ରଙ୍ଗ ସଫା ସେ ପଛ ସିଟ୍‌ରେ ବିଜୟ ଦାସଙ୍କ ପାଖରେ ଆଗ ଯାଇ ବସିପଡ଼ିଲା କାହିଁକି ? କ୍ଷିପ୍ରା ସାମନ୍ତରାୟଙ୍କୁ ସେ ଭଲକରି ଜାଣେ । ମଉଁ ନମୁହାଁ ବୁଡ଼ି ବୁଡ଼ି ପାଣିପିଏ । ଧନର ଅଭାବ ନାହିଁ, ତାର ସ୍ୱାଧୀନତାର ଅଭାବ ନାହିଁ ।

ଅଭିଯାନର ପ୍ରସ୍ତାବ ବାଢ଼ି ଥିଲା ଚଂଚଳ ମହାପାତ୍ର ଅଧେ ଟଙ୍କା ବହନ କରିବାକୁ କ୍ଷିପ୍ରାକୁ ସେ ଅନୁରୋଧ କରିଥିଲା । ସିପ୍ରା ବି ଯିବ, ଏ ଖବର ଜାଣି କ୍ଷିପ୍ରାର ମା ରାଜି ହୋଇଥିଲେ । ବିଜୟକୁ ହସ୍ତଗତ କରିବାକୁ ସେ ଯେ ଆଗ୍ରହୀ ଥିଲେ ସିପ୍ରା ଏହା ଜାଣିଥିଲା । ସେ ଆହୁରି ମଧ୍ୟ ଜାଣିଥିଲା ଯେ କ୍ଷିପ୍ରା ଆକର୍ଷି ପାରେ; କିନ୍ତୁ ଭଲ ପାଇବାର ପଦ୍ଧତି ଜାଣେନାହିଁ । ଖାଲି ଛବି ଆଙ୍କିଲେ, ସୁସ୍ୱାଦୁ ଖାଦ୍ୟ ଖୁଆଇଲେ ଓ ମୂଲ୍ୟବାନ ଶାଢ଼ୀ-ବ୍ଲାଉଜ୍ ପିନ୍ଧି ଆଗକୁ ଆସିଲେ ମନ କିଣି ହୁଏ-ନାହିଁ । ସେ ହସି ଜାଣେ ନାହିଁ, କଥା କହି ଜାଣେ ନାହିଁ, ଚାଲିବାର ରୀତି ବି ଜାଣେ ନାହିଁ । ଚାହିଁବା ଓ ଭ୍ରୂକୁଟି ନଚାଇ ମୁଖଭଙ୍ଗୀ କରିବାର କାଇଦା ତାକୁ ଜଣା ନାହିଁ । କାଠ-ପିତୁଳାଟା !

ତଥାପି, ସେ ଧନୀର ଦୁଲାଳୀ, ଆଉ ବିଜୟ ଦାସ, ମେଧାବୀ ଛାତ୍ର । ମଧ୍ୟବିତ୍ତ ଘରର ପୁଅ ! ହଁ, ବିଜୟ ଦାସଙ୍କୁ ସେ ସିପ୍ରା ପ୍ରାଣଦେଇ ଭଲପାଇଛି, ତାଙ୍କର ମନକୁ କିଣି ନିଜର କରି ସାରିଛି ବୋଲି ମଣିଛି; ତାଙ୍କର ଦାୟିତ୍ୱ-ଜ୍ଞାନକୁ ବନ୍ଧନ କରିବା ପାଇଁ ଅଂସନା ଅପପ୍ରଚାର ହେବାର ମାତୃପ୍ରିୟା ସୁଯୋଗ ଦେଇଛି, ଧରାଦେଇ ଧରା ନ ଦେବାର ଅଭିନୟ । ବିଜୟ ଦାସ ତାର, ଗୋଟାଗୁଏ ତାର, କ୍ଷିପ୍ରା କାହିଁକି ତାଙ୍କ ପାଖରେ ପଛ-ସିଟ୍‌ରେ ବସିବ ? କି ରହସ୍ୟ, କି ଚକ୍ରାନ୍ତ ଲୁଚି ରହିଛି ଏହାରି ଭିତରେ ? ବିଜୟ ଦାସ ଆଗ ସିଟ୍‌କୁ ଆସିଲେ ନାହିଁ କାହିଁକି ? ଚଞ୍ଚଳ ମହାପାତ୍ର ଡ୍ରାଇଭର୍ ପାଖରେ ଆଗ ସିଟ୍‌ରେ ବସିଛନ୍ତି, ଦରଜା ଖୋଲି ନିମନ୍ତ୍ରଣ କରୁଛନ୍ତି, ଆପଣ ଏଇଠିକୁ ଆସନ୍ତୁ, ମୋ ପାଖକୁ । କାଚ ଟେକିଦେଲେ ଭିତରକୁ ଥଣ୍ଡା ଓ କୁହୁଡ଼ି ପଶି ପାରିବ ନାହିଁ । ଆସନ୍ତୁ—

ଅଗତ୍ୟା ସିପ୍ରା ଆଗକୁ ଆସିଲା । ତାଙ୍କର ଘର ବାଟେ ଚଞ୍ଚଳ ମହାପାତ୍ର ଗାଡ଼ିକୁ ଆଗ ଆଣି ପାରି-ଥାନ୍ତେ, ସର୍ବ-ଶେଷରେ ଆଣିଲେ । ଏଥିପାଇଁ ତାଙ୍କୁ ମୁହଁଖୋଲି ଦୋଷଦେଇ ହେବନାହିଁ । ଝିଅ ଯିଏହିଁ ପଛରେ ଓ ପୁଅ ଯିଏହିଁ ଆଗରେ ବସିଥିଲେ ଭଦ୍ରୋ-ଚିତ ହୋଇଥାନ୍ତା; କିନ୍ତୁ କାହାରି ଏହା ଏବେ ସମ୍ଭବ ହୋଇ ପାରିବ, ଗାଡ଼ି ତ ଚାଲିଲାଣି । ଦରଜା ବନ୍ଦ କରି ସିପ୍ରା ଚଞ୍ଚଳଙ୍କ ଦେହକୁ ନ ଲାଗି ଦରଜାକୁ ଲାଗି ବସିଲାଣି ।

ମନ ଚିଡ଼ ଚିଡ଼ ହେଉଛି ଈର୍ଷାରେ ଗୁଡ଼ିଗୁଡ଼ିକ ନିଆଁ ଜୁହୁଳୁଛି । ଚଞ୍ଚଳ ମହାପାତ୍ର ସୁଯୋଗନେଇ ତାଙ୍କ ପାଖରୁ ସେ ଚିରଦିନ ଦୂରେଇ ରହିଛି । ସେ ଓ ସିପ୍ରା, କେଜାଣି ବା ବିଜୟ ଦାସ ଶିଖାଶିଖି ହୋଇ ମଜା

ଦେଖିବାକୁ ଏପରି ଚକ୍ରାନ୍ତ କରିଛନ୍ତି ପରା । କେବଳ ତାକୁ ଚିଡ଼େଇବାକୁ ? ସେ ଚିଡ଼ିବ ନାହିଁ । ସେ ବି ମଜା ଦେଖିବ, ହେଉ ପଛେ ନିଜକୁ ଟିକିଏ କଷ୍ଟ ।

ପଛ ସିଟ୍‌ରେ ବିଜୟ ଓ ସିପ୍ରା କଅଣ କଥାଭାଷା ହେଲେଣି । ସିପ୍ରା କାନ ଡେରିଲା । ଦୁହିଁଙ୍କର ସ୍ୱର ଶୁଭୁଛି । ପଦକୁ ପଦ; କଅଣ ସେମାନେ କୁହାକୁହି ହେଉଛନ୍ତି ବୁଝି ହେଉନାହିଁ । ମୁଣ୍ଡ ବୁଲାଇ ପଛକୁ ଥରେ ଅନାଇଁ ଦେବାକୁ ଇଚ୍ଛା ହେଉଛି । ଝାପ୍‌ସା ଅନ୍ଧାରତ ! ପୁଣି ନିଜ ଭିତରେ କିଏ ଯେପରି ବାରଣ କରି କହୁଛି । ଛି, କଅଣ ବିଜୟ ମନେ କରିବେ ? ତା' ମନର ଅବଳତା—ସନ୍ଦେହ, ଈର୍ଷା ହୀନତାର ଆଶ୍ରୟ ପାଇବେ; ପ୍ରଶ୍ନ ହେବ ମନ,—ସିପ୍ରାର ସ୍ନେହ କ'ଣ ଟଳମଳ, ସେଥିରେ ସ୍ଥିରତା ନାହିଁ କି ଦୃଢ଼ତା ନାହିଁ ? ସେତିକ ଥିଲେ ତା' ମନରେ ଅନ୍ତଃପରତର ଅସ୍ଥିରତା ଆସନ୍ତା ନାହିଁ ।

ବିଜୟଙ୍କର ମନରେ ଏପରି ଧାରଣାର ରେଖାପାତ ସେ କରିବାକୁ ଚାହେଁନାହିଁ ।

ଚଞ୍ଚଳ ମହାପାତ୍ର ଘୁଞ୍ଚି ଆସିଲେଣି, ଦେହକୁ ଦେହ ଲାଗିଲାଣି । ଗାଡ଼ି ବେଗରେ ଚାଲିଛି । ବେଳେବେଳେ ଦୋହଲୁଛି, ଉଠୁଛି ପଡ଼ୁଛି । କୁହୁଡ଼ି ମଝିରେ ଆଲୁଅର ସ୍ତମ୍ଭ ଥରୁଛି । । ସିପ୍ରାର ମନେ ହେଉଛି, ଗପ କରୁଣୁ କ୍ଷିପ୍ରା ଓ ବିଜୟ ଲାଗି ଲାଗି ବସିଲେଣି । ଥଣ୍ଡାତ ହେଉଛି, ଲାଗି ଲାଗି ଠେଲାପେଲା ହୋଇ ବସିଲେ ଗରମ ଲାଗିବ । କ୍ଷିପ୍ରା ଧର୍ମଘରର ଝିଅ, ଦେହର ରଙ୍ଗ ପରିଷ୍କାର ! ଦେହର ପରଶ ମନର ହରଷ ବଢ଼ାଇବ । ବୋଧହୁଏ କେଉଁ ମଜାଗପ ଚାଲିଥିବ, ହସାହସି । ସ୍ନେହକୁ କେହି ଏକଚାଟିଆ କରି ରଖିପାରେ ନାହିଁ । ସୁବିଧା ଓ ସୁଯୋଗ ପାଇଲେ ସେ କେତେବେଳେ କେଉଁଠିକୁ ଡେଇଁପଡ଼େ । ହାତହାତର ବନ୍ଧନର ଦାୟିତ୍ୱ ନାହିଁ ତ, ଖାଲି ବୁଝାମଣାର ଘେନାଘେନ, ବାନ୍ଧି ନ ହେବା ଯାଏ ଯା-ଲାଗିଯା-ଯା-ଛାଡ଼ିଯାଉ ଡର । ବିଜୟ ଦାସଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରେ; କିନ୍ତୁ ସେ ଧର୍ମଘରର ପୁଅ ନୁହଁ, କ୍ଷିପ୍ରାର ଅଭାବ ନାହିଁ, ଧନର ମୋହ ବେଶ୍ ମତୁଆ !

ଚଞ୍ଚଳ ମହାପାତ୍ର ଅଡୁରି ଲାଗି ଆସିଲେଣି । ପଛରେ ଥାଇ ବିଜୟ ଦାସ ଲକ୍ଷ୍ୟ କରୁଥିବେ । ଚଞ୍ଚଳ ଅନୁରୋଧ କରୁଛନ୍ତି, ତମେ ଗୋଟିଏ ଗୀତଗାଅ ସିପ୍ରା ! ଚଳନ୍ତା ଗାଡ଼ିରେ ଗୀତର ଲହର ଭଲ ଜମିବ । ଗାଡ଼ି ଭିତରେ ବେଶ୍ ଗରମ ତ ହେଉଛି, ସ୍ୱର ଥରିବ ନାହିଁ । ଗାଅ ନା—

କର୍ତ୍ତବ୍ୟନିଷ୍ଠ ଅବିଚଳିତ ଡ୍ରାଇଭର୍ ଆଗକୁ ଚାହିଁ ଗାଡ଼ି ଚଳାଉଛି । ଷ୍ଟିଅରିଂ ଉପରେ ହାତ । ଯନ୍ତ୍ର ସଙ୍ଗେ ସେ ବି ଯନ୍ତ୍ର ପାଲଟିଛି । ତାର ନେତ୍ର, ମନ ଓ କର୍ଣ୍ଣ ରାସ୍ତା ଉପରେ । ସୁଦକ୍ଷ ଚାଳକ । ସିପ୍ରା ଆଡ଼ଆଖିରେ ଚାହିଁଲା, ଚଞ୍ଚଳ ମହାପାତ୍ରଙ୍କୁ ଉତ୍ତର ଦେଲା, ବେଶ୍ ଗରମ ହେଉଛି ସତେ । ସେ ଦରଜା ଆଡ଼କୁ ଠେଲିହୋଇ ବସି ହ୍ୟାଣ୍ଡେଲ୍ ଘୂରାଇ କାଚକୁ ତଳେଇ ଦେଲା, ବାଁ ହାତକୁ ଝରକା ଉପରେ ରଖିଲା । ଥଣ୍ଡା ପବନ ସଙ୍ଗେ ମେଞ୍ଚାଏ କୁହୁଡ଼ି ଗାଡ଼ି ଭିତରକୁ ପଶି ଆସିଲା ।

ଚଞ୍ଚଳ ମହାପାତ୍ର ଶିହରି ଉଠିଲେ । କହିଲେ, ଏ କ'ଣ କଲ ସିପ୍ରା, କାଚ ଖୋଲିଲ କାହିଁକି, ଗରମ ପରିବେଶକୁ ଶୀତଳ କଲ ?

ଅଟେନଶ୍ୱାସୀ ଲାଗିଲା ଯେ—

ହଉ ତେବେ, ଥଣ୍ଡା ଲାଗିବ, ଏଣିକି ଘୁଞ୍ଚିଆସ । ଚଞ୍ଚଳ ମହାପାତ୍ର ବାମ ହାତଟି ଲମ୍ବାଇ ସିପ୍ରାର ପିଠି ଆଡ଼େ ବୁଲାଇ ତାର ବାମ ବାହୁକୁ ଧରି ପାଖକୁ ଘୁଞ୍ଚାଇ ନେଉଣୁ ସିପ୍ରାର ମନେହେଲା ଯେପରି ପଛ

ସିଟ୍‌ରେ କ୍ଷିପ୍ରା ଖିଲଖିଲ ହୋଇ ହସି ଉଠୁଛି । ସେ ବିରକ୍ତ ହେଲା । ମୁହଁ ନ ଖୋଲି ଡାହାଣ ହାତର କହୁଣୀରେ ସଜୋରରେ ଚଞ୍ଚଳ ମହାପାତ୍ରଙ୍କ ହାତକୁ ଠେଲିଦେଲା । ବଳିଷ୍ଠ ଯୁବକ; କିନ୍ତୁ କ୍ଷିପ୍ରା'ର ସହସା କହୁଣୀର ଆଘାତ ଓ ବନ୍ଦ ଦରଜାରେ ତାର ଡିଗ୍‌ଦିଆ ପୃଥୁଳ ଦେହର ଓଲଟ-ଗୃପର ଅନୁକୂଳ ତାଇ ସେ ଆଶାକରି ନ ଥିଲେ । ଚମକି ଉଠି ସେ ଢଳି ଡ୍ରାଇଭର୍‌ର ହାତ ଉପରେ ପଡ଼ିଲେ ଯଦି, ଯେଉଁ ହାତଟି ଗାଡ଼ିର ଷ୍ଟିଅରିଂକୁ ନିୟନ୍ତ୍ରଣ କରୁଥିଲା !

ଆଖିର ପଲକପାତରେ କଅଣ ହୋଇଗଲା ସତେ, ପାଞ୍ଚଟି ପ୍ରାଣୀଙ୍କର ସଂସାର ଉଚ୍ଛନ୍ନ ହୋଇଗଲା । ଆହା ! ଟିକିଏ ଈର୍ଷା, ଅନାବଶ୍ୟକ ଉତ୍ତେଜନା ପାଇଁ —

କ୍ଷିପ୍ରାର ଆଖିରୁ ଧାର ଧାର ଲୋତକ ଝରିପଡ଼େ । ଅନୁତାପ ନିଆଁରେ ମନ ଜଳିଉଠେ, ଛଟପଟ ହୁଏ । ସେ ମନ ବୋବାଳି ଉଠେ । ତାର ମୁହୂର୍ତ୍ତିକର ଅବିଚାରିତ କର୍ମପାଇଁ ସେ ନରହତ୍ୟା କରିଛି । ସେହି ପାପର କ୍ଷମା କ'ଣ ନାହିଁ ଭଗବାନ ? ମୁହଁ ତ ଖୋଲି ହେବନାହିଁ, ସତ୍ୟ ପ୍ରକାଶ ସେ କରି ପାରିବ ନାହିଁ, କଅଣ କଲେ ପାପର ପ୍ରାୟଶ୍ଚିତ୍ତ ସେ କରି ପାରିବ ?

କ୍ଷିପ୍ରା ହାତ ପିଠିରେ ଲୁହ ପୋଛେ । ଯେଉଁମାନେ ତାର ସେବା କରନ୍ତି, ଯତ୍ନ ନିଅନ୍ତି, ତାର ମୁଣ୍ଡର କେଶ ସାଉଁଳି ଦିଅନ୍ତି, ତାକୁ ସାନ୍ତ୍ୱନା ଦେବାକୁ ମମତାବୋଳା କଅଁଳ କଣ୍ଠରେ କହନ୍ତି, କାନ୍ଦୁଛ କାହିଁକି କ୍ଷିପ୍ରା, ଖୁସୀ ହୁଅ, ଠାକୁରଙ୍କୁ ଧନ୍ୟବାଦ ଦିଅ ଯେ ସେ ତମର ଜୀବନ ରକ୍ଷା କରିଛନ୍ତି । ଅସାବଧାନ ମଦୁଆ ଡ୍ରାଇଭରଟା ପାଇଁ

କ୍ଷିପ୍ରା ମୁଣ୍ଡ ଏପାଖ ସେପାଖ କରେ । କିଏ ଜାଣେ ସେ ଯନ୍ତ୍ରଣାରେ ଅସ୍ଥିର ହେଉଛି । ଆଉ କିଏ ଜାଣିବ ଡ୍ରାଇଭରର ମୃତ-ଆତ୍ମାକୁ ଦୋଷଦେବା ସେ ପସନ୍ଦ କରୁନାହିଁ । ସେ କହେ, ଦୁର୍ଘଟଣା ତ କାହାର ଦୋଷ ଦେଇହେବ ନାହିଁ । ବିନା କାରଣରେ ମଣିଷ ମାରିବାକୁ ଅବା ନିଜେ ମରିବାକୁ କିଏ ବା କାହିଁକି ଚାହିଁବ ? ରାସ୍ତା ଉପରେ ଯଦି ସେହି ଖଜୁରୀ ଗଛଟି ଠିଆହୋଇ ନ ଥାନ୍ତା —

( ୪ )

ବିଜୟ ଦାସ ରୋଗ-ଶଯ୍ୟାରେ ଦିନାକେତେ ମୂକ ହୋଇ ପଡ଼ି ରହିଲେ । ସେ କେବଳ ଆଖି ଖୋଲି ଜୁଳୁ ଜୁଳୁ କରି ସମସ୍ତଙ୍କର ମୁହଁକୁ ଚାହୁଁଥିଲେ, ଆଉ ବିଚାରୁଥିଲେ, କାହିଁକି ଭଗବାନ ତାଙ୍କୁ ଅକର୍ମଣ୍ୟ କରି ବଞ୍ଚାଇ ରଖିଲେ; ଚଞ୍ଚଳ ମହାପାତ୍ର ତ ମରିଗଲେ, ତରିଗଲେ, ସାରା ଜୀବନ ତାଙ୍କପରି ଚଞ୍ଚଳ ହନ୍ତସନ୍ତ ଦହଗଞ୍ଜ ହୋଇ ବେଳ କାଟିବେ ନାହିଁ । ମୃତ୍ୟୁ-କାଳୀନ ବିବୃତିରେ ମାଜିଷ୍ଟ୍ରେଟଙ୍କର ପ୍ରଶ୍ନଗୁଡ଼ିକର କି ଉତ୍ତର ସେ ଦେଇଛନ୍ତି, ତାଙ୍କର ମନେ ନାହିଁ । ଜ୍ଞାନ ହେଲାପରେ ଯନ୍ତ୍ରଣାରେ କଲବଲ ହୋଇ ମରଣକୁ ପ୍ରତି ମୁହୂର୍ତ୍ତରେ ଅପେକ୍ଷା କରୁଥିବା ଅବସ୍ଥାରେ ସେ ଅବଶ୍ୟ ସତ୍ୟ ପ୍ରକାଶ କରିଥିବେ —

ପଛ ସିଟ୍‌ର ବାଁ ପାଖରେ ଦରଜାକୁ ଲଗି ସେ ବସିଥିଲେ, ସେହିପରି ଡାହାଣ ପାଖରେ କ୍ଷିପ୍ରା, ଦୁହିଁଙ୍କ ମଝିରେ କ୍ଷିପ୍ରାଙ୍କର ଗ୍ରେଟ ଚମଡ଼ା ସୁଟ୍‌କେସ୍ ଓ ତା' ଉପରେ କେତେଖଣ୍ଡି ବହି ରଖା ହୋଇଥିଲା । ଭିତରେ ଏତେ ଜିନିଷ ଗଦା ହୋଇଥିଲା ଯେ ଗୋଡ଼ ସଳଖି ବସିବାର ଉପାୟ ନ ଥିଲା ।

ମଉଜିଆ ମଣିଷ କ୍ଷିପ୍ରାଙ୍କୁ ହସାଇବା ପାଇଁ ସେ କଅଣ ନବକଥା ହସକଥା କହୁଥିଲେ ଓ କ୍ଷିପ୍ରା ନିଜର ମୌନ ପ୍ରକୃତି ଭୁଲି ଖିଲଖିଲ ହସୁଥିଲେ । ନିଜେ ସେ ହସର ଉତ୍ତର ଦେଇଥିଲେ । ମନରେ ଫୁର୍ତ୍ତି, ସେ ଫୁର୍ତ୍ତିରେ ଉଷୁମ ଉତ୍ତେଜନାର ଶିହରଣ ।

ଜାଣି ଜାଣି ସେ ଡାହାଣ ହାତରେ ସୁଟ୍‌କେସ୍‌କୁ ତଳକୁ ଠେଲିଦେଲେ । ମୁହଁ ଖୋଲିଲେ, ଆହା ପଡ଼ିଗଲା ?

କ୍ଷିପ୍ରା ନଇଁପଡ଼ି ତାକୁ ତଳୁ ଉଠାଉଣୁ ଆଗ ସିଟ୍‌ଆଡ଼ୁ ଥଣ୍ଡା ପବନ ମାଡ଼ି ଆସିଲା । ସେ ଯେଉଁ ମୁହୂର୍ତ୍ତରେ କ୍ଷେଣିକ ଦୃଷ୍ଟି ନିକ୍ଷେପିଲେ, ଦେଖିଲେ ଚଞ୍ଚଳ ଷ୍ଟିଅରିଂ ଉପରେ ଢଳି ପଡ଼ିଲେ ଓ କ୍ଷଣକର ବ୍ୟବଧାନରେ ବଜ୍ରାଘାତର ଶବ୍ଦ, ଆଖିରେ ହାଲୋଜନ-ମୟ ଆଲୁଅ, ସେଇଠୁ ଅନ୍ଧାର—

ଏବେ ସେ ଭାବୁଛନ୍ତି, କାହିଁକି ସେପରି ହେଲା, ଚଞ୍ଚଳ ସହସା ଢଳି ପଡ଼ିଲେ କାହିଁକି ? ପାଖକୁ ଲାଗି ତ କ୍ଷିପ୍ରା ବସିଥିଲା, ଆଗେ କ୍ଷିପ୍ରା ଆଗ ସିଟ୍‌ର ସେ ଆସନ ବାଛି ନେଇ ନ ଥିଲା, କ୍ଷିପ୍ରାର ମା ଚାହୁଁଥିଲେ ସେ ପଛ ସିଟ୍‌ରେ ସୁସ୍ଥରେ ବସିବ । ଚଞ୍ଚଳ ଆଗରୁ ଆଗ ସିଟ୍‌ରେ ଆସନ ଜମାଇ ଦେଇଥିଲା । ଭାବୁଛନ୍ତି ବିଜୟ ଦାସ, କ'ଣ ଏପରି ଘଟିଲା ଯେ ସୁଦକ୍ଷ ଡ୍ରାଇଭରର ହାତ ଟହଲିଲା ? କିଏ ଏହାର କଇଫତ୍ ଦେବ ? କ୍ଷିପ୍ରା, ସେ ବଞ୍ଚିଲେ ତ ?

କ୍ଷିପ୍ରା ଅନ୍ୟ କେଉଁ ପ୍ରକୋଷ୍ଠରେ ଅଛି, ବାମ ହାତଟି ତାର କଟା ହୋଇଛି, ଦାନ୍ତଗୁଡ଼ିଏ ଓପଡ଼ା ହୋଇଛି, ତଥାପି ସେ ବଞ୍ଚିଛି ଓ ତାର ମରିବାର ସମ୍ଭାବନା ନାହିଁ, ଏ ସବୁ ସମ୍ବାଦ ପାଇ ବିଜୟ ଆହୁରି ବ୍ୟଥିତ ହେବା ସଙ୍ଗେ ଆଶ୍ୱସ୍ତ ହେଲେ । କ୍ଷିପ୍ରାଙ୍କର ଆଖିଟିଏ ଚଡ଼ା ହୋଇଛି, ଦଉଡ଼ି ପିଞ୍ଜରା-କାଠି କଡ଼ା ହୋଇଛି, ସେ ନିଜ ଘରକୁ ଚାଲିଗଲେଣି ଓ ସେ ସୁସ୍ଥହୋଇ ଆସୁଛନ୍ତି, ବିଜୟ ଦାସ ଏ ଖବର ଶୁଣି ମନେ ମନେ ଖୁସି ହୋଇଛନ୍ତି ।

ତାଙ୍କର ମୌନ-ବ୍ରତ ଭାଙ୍ଗିଛି । ବନ୍ଧୁମାନଙ୍କର ମୁହଁକୁ ସେ ଚାହିଁ, ସେମାନଙ୍କର ସାନ୍ତ୍ୱନା-ବାଣୀ ଶୁଣି ସେ ହସୁଛନ୍ତି, ଉତ୍ତର ବି ଦେଉଛନ୍ତି, ଦୁର୍ଘଟଣା ଘଟି ସାରିଲା ପରେ ଦୋଷାଦୋଷର ବିଚାର କରିବା ଗୋଟାଏ ଗତାନୁଗତିକ ଖିଆଲରେ ଖାଲି, ସେଥିରେ ମୃତ ଓ ଆହତଙ୍କର ଲାଭକ୍ଷତି ହୁଏନାହିଁ । ଦୁର୍ଘଟଣାକୁ ଫେରାଇ ଆଣି ହେବନାହିଁ । ମଣିଷ ନିଜେ ନିଜର ଦୁର୍ଗତିକୁ ସର୍ଜନା କରେ, ତମର ଏ ଉଦ୍ଧୃତ ସତ ହୋଇପାରେ; କିନ୍ତୁ ଜାଣି ଜାଣିକା ସେ ଦୁର୍ଗତିକୁ ନିମନ୍ତ୍ରଣ କରେନାହିଁ । ସମସ୍ତେ ନିଶ୍ଚିନ୍ତ ହେବେ, ଦୋଷ ଯାହା ତାକୁ ଲଦିଆଯାଇପାରେ ରାସ୍ତା କଡ଼ର ମେଞ୍ଚା ଖଜୁରୀ ଗଛଟି ଉପରେ, କାଗଜରେ ଯାହାର ଫଟୋ ବାହାରିଛି ।

( ୬ )

ତାହା ହିଁ ହୋଇଛି । ମୂକ ଖଜୁରୀ ଗଛଟି ସବୁ ଦୋଷ ମୁଣ୍ଡାଇ ମଣିଷ-ହାତର କୁରାଢ଼ୀଚୋଟରେ ରାସ୍ତାକଡ଼ର ସନ୍‌ସନ୍‌ଆ ଅରମା ଉପରେ ମୁଣ୍ଡକୋଡ଼ି କଚୁଡ଼ି ହୋଇ ପଡ଼ିଛି । କେତେ ଡାଳ ତାର ଭଙ୍ଗି-ରୁଜି ଛତର ଛାଉଳ ହୋଇଛି, ଓଦା ମାଟିରେ ଗେଞ୍ଚ ହୋଇଯାଇଛି । ଉପରକୁ ଉଠିଥିବା ବାହୁଙ୍ଗା ଉପରେ ଫୁକୁର୍ ଫୁକୁର ହେଉଁ ବାଇଆ-ଚଢ଼େଇ ଗୁଡ଼ିଏ ଚିଁ ଚିଁ ରାବ ଦୁଃଖ ପ୍ରକାଶ କରୁଛନ୍ତି । ବସା ଭିତରୁ ଛିଟ୍‌କି ପଦାରେ ପଡ଼ିଛନ୍ତି ଗ୍ଲେଟ ଗ୍ଲେଟ ଶାବକଗୁଡ଼ିଏ, ଆଖି ଫିଟିନାହିଁ, ପକ୍ଷୀ ଉଠିନାହିଁ, ତାକୁ ଗୋଟାଇ ନେବାକୁ ପାଖ ଆମ୍ବଗଛ ଉପରୁ ବାଦବୁଦିଆ ହୋଇ ପଲେ କାଉ ବଗୁଲ୍ଲଡ଼ି ଝପଟି ଆସୁଛନ୍ତି ।

ରାସ୍ତାକଡ଼ରେ ଠିଆହୋଇ ଚାହିଁ ରହିଛନ୍ତି କେତେ ହଗୋଡ଼ିଆ ବୁଦ୍ଧିଆ ଜୀବ ମଣିଷ, ଭାବୁଛନ୍ତି ପରା, ଗଲା ବିପଦ ଗଲା, ଟଳି ପଡ଼ିଲା ସେହି ଅବେଇଜ ଖଜୁରୀ ଗଛଟା, ଆଉ ଦୁର୍ଘଟଣା ଘଟିବ ନାହିଁ ।

---

# ॥ ଗୋପାଳ ପ୍ରହରାଜଙ୍କ ରଚନାରେ ହାସ୍ୟରସ ॥

## କାଳୀଚରଣ ପଟ୍ଟନାୟକ

[ ଓଡ଼ିଆ ନାଟକର ସ୍ରଷ୍ଟା କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ଏକାଧାରରେ ସେ ଜଣେ ନାଟ୍ୟକାର, କବି ଓ ପ୍ରାବନ୍ଧିକ । ତାଙ୍କ ରଚିତ ନାଟକ ଚକ୍ରୀ, ଭାତ, ଚୁମ୍ବନ, ଜୟଦେବ, ଅଭିଯାନ, ରକ୍ତ ମନ୍ଦାର କାହାରିକୁ ଅଗୋଚର ନାହିଁ । ଜରାଜୀର୍ଣ୍ଣ ବୃଦ୍ଧ ଅବସ୍ଥାରେ ମଧ୍ୟ ତାଙ୍କ ଲେଖନୀ ବନ୍ଦ ହୋଇ ନାହିଁ । ସେ ଲେଖୁଛନ୍ତି ଲେଖା ତାଙ୍କର ପ୍ରାଣ, ଆତ୍ମା ଓ ଜୀବନ । ଏହି ଲେଖା ହିଁ ତାଙ୍କୁ ଅମର କରିଛି ଓ କରିବ ଚିରଦିନ । ସ. ବନଫୁଲ ]

କଥାଟାକୁ ସତ ମଣ ଅବା ମିଛ ମଣ, ସବୁକଥାକୁ ବାଛି କାଢ଼ିଲ ନାଏ ଯୋଗ, ଯାହାକୁ ଆମର ସାଧାରଣ କଥାରେ ଲୋକେ କହୁଥାଆନ୍ତି—ବିବାଦ । ସ୍ୱର୍ଗତ ପ୍ରହରାଜ ବା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଜୀବନରେ, ତାଙ୍କର ଲେଖାଲିଖି ଭିତରେ ଜଣାଶୁଣା ହେବା ପରି, ସେହିଭଳି କେତେକ ଘଟଣା ମୁଁ ଜାଣିଛି, ଶୁଣିଛି । ମୋତେ ସତର ବର୍ଷ ବୟସ ବେଳେ ସେ ଥିଲେ ମୋର ମୁରବି । ଏ ମୁରବିପଣିଆ ଭାର ତାଙ୍କ ଉପରେ ଲଦି ଦେଇଥିଲେ ମୋ ବାପା, ପ୍ରହରାଜଙ୍କ ସାଥୀ ପଢ଼ୁଆ, ପ୍ରିୟ ସାଥୀ । ଏଇ ସୂତ୍ରରେ କିଛି କିଛି ଜାଣିଥିଲି, ପରେ ଅବଶ୍ୟ ତାଙ୍କ ଭାଷାକୋଷ ଲେଖାବେଳେ ଆଉ ନିକଏ ପାଖଲଗା ହୋଇଗଲି । ସେଇ କଥାରୁ କିଛି ବଖାଣୁଛି:—

ପ୍ରହରାଜେ ସେତେବେଳକୁ ଟୋକା । ବି. ଏ. ପଢ଼ୁଥାଆନ୍ତି, ବୋଡିଂରେ ଥାଇ । ସିଦ୍ଧେଶ୍ୱରପୁରରେ ପ୍ରହରାଜଙ୍କ ଘର, ତାଙ୍କ ବଡ଼ବଡ଼ଆଙ୍କ କାଳରୁ ଡାକବକା ଜମିଦାର ବଂଶ । ଧନ ତ ଥାଏ । ତେଣୁ ସେ ବଡ଼ ସାହାଖର୍ଚ୍ଚି ଥିଲେ । ଉତ୍କଳ ସାହିତ୍ୟର ନାମଜାଦା ସାହିତ୍ୟ-ରଥୀ ସ୍ୱର୍ଗତ ବିଶ୍ୱନାଥ କରେ ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କର ବନ୍ଧୁବାନ୍ଧବ ସୂତ୍ରରୁ ପ୍ରହରାଜଙ୍କ ଖବର ନେଉ ନେଉ, ଥରେ ତାଙ୍କ ଦେହ ବଡ଼ ଅସୁଖ ଥିବାର ଶୁଣିଲେ । ତହୁଁ କେଜାଣି କାହିଁକି ସାହିତ୍ୟ ପ୍ରେସର ଚପରାଶି ଲଛମନ ହାତ ପ୍ରହରାଜଙ୍କୁ ଡକାଇ ପଠାଇଲେ । ଅସୁସ୍ଥ ଖବର ଜାଣି, ପାଖରେ ରଖାଇ, ଡାକ୍ତର ଡକାଇ ଚିକିତ୍ସା କରାଇଲେ । ପ୍ରହରାଜେ ସୁସ୍ଥ ହେବାପରେ ତାଙ୍କୁ କୁହାଗଲା ଯେ ରବିବାର ଦିନ ସେ ଆସିବେ । ବିଶ୍ୱନାଥବାବୁଙ୍କ ଘରେ ଖାଇବେ, ରହିବେ, ରାତିକି ବୋଡ଼ିଂକୁ ଯିବେ । ପ୍ରହରାଜଙ୍କ କଥାଭାଷା, ଚାଲିଚଳଣୀ, ଢଙ୍ଗରଙ୍ଗ ଭିତରେ ଗୋଟାଏ ପ୍ରତିଭା ଲୁଚକାଳି ଖେଳୁଥିବାର କର ମହାଶୟ ବାରି ପାରିଥିଲେ ।

ଏଇମିତି କିଛିଦିନ ପରେ କଲେଜର ଗୋଟାଏ କି ଛୁଟିଦିନ ଆସିଗଲା । ବିଶ୍ୱନାଥବାବୁ ପ୍ରହରାଜଙ୍କୁ କହିଲେ, ସେ. ଗାଆଁକୁ ଯାଇ ବୁଢ଼ାବୁଢ଼ୀମାନଙ୍କଠାରୁ ଗପ ଶୁଣିବେ, ଆଉ ସେଇ ଗପକୁ ଯେତେଦୂର ସମ୍ଭବ, ସେଇମାନଙ୍କ ଭାଷାରେ ସଜାଡ଼ି ଲେଖିଆଣି ଦେଖାଇବେ । ବିବାଦ ମୁତାବକ କାମ କଲେ ପ୍ରହରାଜେ । ଲେଖାହେଲା କାହାଣୀ । ଉତ୍କଳ ସାହିତ୍ୟରେ

ଛପାହେଲା । ତାକୁ ସବୁଁ ଠୁଳେଇ ବିଶ୍ୱନାଥବାବୁ ବହି ରୂପରେ ପ୍ରକାଶ କଲେ । ପ୍ରହରାଜଙ୍କର ଏଇ ବହିର ନାମ ହେଲା 'ଉତ୍କଳ-କାହାଣୀ' ।

ତେଣୁ ଏକଥା ଅବଶ୍ୟ ମାନିବାକୁ ହେବ ଯେ ପ୍ରହରାଜଙ୍କ ଜୀବନରେ କବି ବନିକ ରଖାଇ ଦେବା ମହତ୍ତ୍ୱ ବ୍ୟକ୍ତି ହେଉଛନ୍ତି ଉତ୍କଳ ସାହିତ୍ୟର ପ୍ରତିଷ୍ଠାତା ସ୍ୱର୍ଗତ ବିଶ୍ୱନାଥବାବୁ ।

ସରଳ, ସହଜ, ସରସ-ସୁନ୍ଦର ଗାଉଁଲି କଥା ସଜାଇ ଗୁନ୍ଥିଲି ପ୍ରହରାଜଙ୍କ ଉତ୍କଳ କାହାଣୀ ଲୋକରେ ଖୁବ୍ ସମାଦର ପାଇଲା ପରେ ସେ ଲେଖିଲେ:—

"ଧୋ' ରେ ବାଇଆ ଧୋ'
ତୋର କିଆବଣରେ ଗହଳ ମାଣ୍ଡିଆ
ସେଇ କିଆବଣରେ ଶୋ ।"

—ଏଇ ଛୋଟିଆ କବିତା ବହି ଖଣ୍ଡିକର ନାଆଁ 'ଧୋ'ରେ ବାଇଆ ଧୋ' । ସେ୍ୱ ମଧ୍ୟ ଆମ ଗାଆଁ ଗହଳର ଛବି । ଗାଉଁଲି ଭାଷା ତ ପ୍ରହରାଜଙ୍କ ଲେଖା ଭିତରେ ଖୁନ୍ଦି ହୋଇ ରହିଛି, ତା' ଛଡ଼ା ସେ ଏଭଳି କେତେଗୁଡ଼ିଏ ଶବ୍ଦ ନିଜେ ସର୍ଜନା କରି ଓଡ଼ିଆ ସାହିତ୍ୟର ଗନ୍ତାଘର ଶିରୀ ବଢ଼ାଇ ଦେଇଛନ୍ତି, ଯାହାର ଋଣ ଏ ଜାତି ଶୁଝି ପାରିବ ନାହିଁ ।

କଥା ଭାଷାରେ ସେ ବଡ଼ ରହସ୍ୟ ପ୍ରିୟ, ହାସ୍ୟ ରସିକ ଥିଲେ । କେତେକେତେ ଘଟଣା ତ ଜାଣିଛି, ଶୁଣିଛି ଆଉ ଅଙ୍ଗେ ନିଭାଇଛି । ବଖାଣି ବସିଲେ ପୁରାଣଟାଏ ହେବ । ଦିଓଟି ଗୋଟିଏ ଆଜି ବାଢ଼ିବି, ଟିକିଏ ପରେ । ଆଗେ ତାଙ୍କ ରଚିତ ବହି କଥାରୁ କିଛି କହିସାରେଁ ।

ପ୍ରହରାଜେ ବି: ଏ: ପାଶ କଲେ, ଓକିଲାତି ପଢ଼ି ଓକିଲ ହେଲେ । ସେ ଥିଲେ ପୁରୀରେ ସରକାରୀ ଓକିଲ । ବିବାହ କଲେ ସେଇ ପୁରୀରେ । ଗାଆଁ ଗଣ୍ଡା ସଙ୍ଗରେ ସଂପର୍କ ରଖିବାକୁ ସେ ବଡ଼ ସୁଖ ପାଉଥିଲେ । ବିଶେଷତଃ ତାଙ୍କ ଗାଉଁଲି ଭାଷାରେ ସରଳିଆ ଲେଖା ବହି ଦି' ତିନିଖଣ୍ଡ ତାଙ୍କୁ ନାଆଁ କରାଇଦେଇ ସାରି-ଥିବାରୁ, ମନ ସେଇ ଆଡ଼କୁ ବଳେବଳେ ଟାଣିହୋଇ ଯାଉଥିଲା । ତେଣୁ ଗାଉଁଲି ଚଳଣୀ, ଗାଆଁର ଜୀବନ-ଚିତ୍ର ଦେଖାଇବାକୁ ସେ ସବୁବେଳେ ଆଗ୍ରହର ହେଉଥିଲେ । ଏଇ କଥାରୁ ଗାଆଁ ଗୃହଚଳଣୀରେ ସଂସ୍କାର ଆଣିବାକୁ ସେ ମନପୋଷ କଲେ ।

ଗାଆଁର ଭାଗବତ ଘର ବା ଭାଗବତ ଟୁଙ୍ଗୀ ହେଲା ଗାଆଁ ଲୋକଙ୍କ ସୁଖ ଦୁଃଖ, ଭଲମନ୍ଦ, ନିତିବିଜ କଥା, ବିଚାର ଆଲୋଚନାର ପୀଠ । ଏଇଠି ସବୁରି ଘର ବେଭାର ଟିକିନିଖି ହୋଇ ପଞ୍ଚୁ ପରମେଶ୍ୱରଙ୍କ ଆଗରେ ବଢ଼ାହୁଏ । ପ୍ରହରାଜେ ସେହିଆଡ଼କୁ ଆଖି ପକାଇ ଲେଖିଲେ 'ଭାଗବତ ଟୁଙ୍ଗୀ'ରେ ସନ୍ଧ୍ୟା ! ଯେତେକ ରହସିଆ କଥା ସାଇତି ରଖିଛନ୍ତି ସେ ଏ ବହି ଖଣ୍ଡିକରେ । ନୂଆ ନୂଆ ଶବ୍ଦ ସର୍ଜନା ତ ମାଳ ମାଳ ହୋଇ ଖଞ୍ଜା ହୋଇଛି ଏ ଖଣ୍ଡିକରେ ।

ସେଇଠୁ ଲେଖା ହେଲା 'ନନାଙ୍କ ବସ୍ତାନି' । ଏ ବସ୍ତାନି ଭିତରେ ଓଡ଼ିଆ-ଜାତି ଜୀବନର ବହୁତ ଚିତ୍ର ରହସ୍ୟ ଜନକ ଭାବରେ, ରହସିଆ କଥା ଯୋଗାଣ ସହିତ ସାଇତା ହୋଇଛି । ସେ ବୁଝିଥିଲେ ଯେ 'ସଂସ୍କାର' ବା ସମାଜର ଅଳିଆ ଓଟାଇବାଟା ବଡ଼ ସହଜ ନୁହେଁ । ଲୋକଙ୍କ ମନଘେନା ହେଲାଭଳି ଭାଷା ହେବ, ପୁଣି ସେ ଭାଷା ଖଞ୍ଜା ହୋଇଥିବ କୌତୁକିଆ ଢଙ୍ଗରେ । ଲୋକେ ତାକୁ ରହସ୍ୟ ବୋଲି ମଣୁଥିବେ; କିନ୍ତୁ ତା' ଭିତରେ ଥିବ ତତ୍ତ୍ୱ-ଶିକ୍ଷା-ସଂସ୍କାରର ରାହା । ଅଭିଧାନ ସାଥୀ ସାହିତ୍ୟକୁ ସେ ଠିକେ ପସନ୍ଦ କରୁ ନ ଥିଲେ ସମ୍ୟକ୍—ହିତ ବା ସବୁରି ହିତ ଯେଉଁ-ଥିରୁ ବା ଯାହାଦ୍ୱାରା ସାଧିତ ହେବ, ସେଇ ସାହିତ୍ୟ ରଚନା କରିବା ଥିଲା ପ୍ରହରାଜଙ୍କ ଲକ୍ଷ୍ୟ ।

ପୁରୀରେ ତାଙ୍କର କାର୍ଯ୍ୟକାଳ ସରିଗଲା—ଆସି ରହିଲେ କଟକ, ସାହେବଜାଦା ବଜାରରେ । ସେତେବେଳେ ଡାକବଙ୍ଗଳା ପତ୍ରପତ୍ରିକାରେ ବରାବର ପ୍ରହରାଜ ଲେଖୁଥିଲେ । ଉତ୍କଳ ସାହିତ୍ୟ, ମୁକୁର ଓ ଉତ୍କଳଦୀପିକାରେ ସେଗୁଡ଼ିକ ପ୍ରକାଶ ପାଉଥିଲା । ଦୁଃଖର କଥା ଯେ, ତେବେ ବା ଏବେ; କେହି କେବେ ସେଗୁଡ଼ିକ ସାଇତା ସମଗ୍ର କରି ରଖିପାରି ନାହାନ୍ତି ।

'ରସଚକ୍ର' ବୋଲି ଖଣ୍ଡିଏ ମାସିକ ପତ୍ରିକା ପ୍ରକାଶ ପାଉଥାଏ । ତା'ର ସଂପାଦକ ଥିଲେ ଶ୍ରୀ ପ୍ରତାପ ସେନ ଆଉ ଶ୍ରୀ ନାରଣ ଷାଠିଯ଼ା । ଅତି ଦୁଃଖର କଥା ଯେ ମୋର ସହପାଠୀ ପ୍ରିୟ ବନ୍ଧୁ ଷାଠିଆଙ୍କର ସେ 'ରସଚକ୍ର' ସଂଗ୍ରହ ବନ୍ଧା ବହିଟି ତାଙ୍କଠାରୁ କେହିଜଣେ ବନ୍ଧୁ ମାଗିନେଲେ । ନେଲେ ଅର୍ଥ ନେଲେ । ଅର୍ଥାତ୍ 'ଗଲା ପୁଣ ବାହୁଡ଼ି ନଇଲା' । ତେଣୁ ତା'ର ଆଉ ବିଶେଷ ଆଲୋଚନା ସମ୍ଭବପର ନୁହେଁ ।

'ସ୍ୱପ୍ନରେ ରାଜଯୋଗ' ତାଙ୍କର ଏକ ଚଢ଼ଚଢ଼ିଆ ଅନୁଭବ କଥା । ରସଚକ୍ରରେ ଏହା ପ୍ରହରାଜଙ୍କ ଛଦ୍ମନାମ 'ଧୂର୍ମ୍ମୁ ଷଧର୍ମା' ନାମିତ ଲେଖକଙ୍କ କଲମରୁ ବାହାରୁଥିଲା । କୌତୁକ-ରଚନା ମଧ୍ୟରେ ମରମ କୁହାହେଉଥିଲା ଏହି 'ରାଜଯୋଗ' ଅଧ୍ୟାୟମାନଙ୍କରେ ।

କହୁଛି ତ ପ୍ରହରାଜଙ୍କ ଚୂଳଚଳଣୀ କୌତୁକ ଭରା । ଗୋଟିଏ ଅଧେ ଶୁଣନ୍ତୁ । କାର୍ତ୍ତିକ ମାସ, ୧୯୩୨-୩୩ ସାଲର କଥା ବୋଲି ମନେ ହେଉଛି । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ପ୍ରହରାଜେ ଥାଆନ୍ତି ଟ୍ରଷ୍ଟ ବୋର୍ଡ଼ର ମେମ୍ବର । ବଡ଼ି ପାହାନ୍ତାରୁ ଶ୍ରୀଲିଙ୍ଗରାଜଙ୍କ ଦର୍ଶନକୁ ବାହାରିଲେ, ମୋତେ ସାଥିରେ ନେଇ । କାର୍ତ୍ତିକ ହେତୁ କଟକ ରେଳ ଷ୍ଟେସନରେ ସେଦିନ ଭରି ଯାତ୍ରୀ ଭିଡ଼ । ସକାଳ ପ୍ରାୟ ଛ'ଟା ବା ସାଢ଼େ ଛଅରେ କଲିକତା ଆଡ଼ୁ ଗାଡ଼ି ଲାଗିଥାଏ । ଭିଡ଼ହେତୁ ଗାଡ଼ିରେ ସ୍ଥାନାଭାବ ହୋଇଥିଲା । ଖୋଜି ଖୋଜି ଗୋଟିଏ ମହିଳା ଡବା ମିଳିଲା । ଯୋଗକୁ କେହି ନାହାନ୍ତି ଡବାଟିରେ । ମୋତେ ସେ ଡବାରେ ଚଢ଼ି ଯିବାକୁ ନିର୍ଦ୍ଦେଶ ଦେଲେ ପ୍ରହରାଜ । ମୁଁ ଯାଇସାରିବା ପରେ, ସେ ଚଢ଼ୁଛନ୍ତି, ଏତିକିବେଳେ ଜଣେ ଟିକେଟ କଲେକ୍ଟର ତାଙ୍କୁ ଭିଡ଼ିଦେଲା—ଖୋରଟା କଥାରେ ଏ ବୁଢ଼ା; ତୁମ୍ କେସାଉଲୁ, ୟେ ଜନାନା ଡବା, ମାଲୁମ୍ ପଡ଼ତା ନାହିଁ । ଇତ୍ୟାଦି କହି । ପ୍ରହରାଜ ଗାଡ଼ିର ପାଉଁଦାନରୁ ତଳକୁ ପାଦ ରଖି ତଳେ ପାଟିକରି କାନ୍ଦିବା ପରି ଡକାପକାଇ କହିଲେ—"ଆହେ ଦେଖନ୍ତୁ, ଏ ମରଦ୍‌ଟା ମୋ ମହତ ହରିମତ ସାରୁଛି । ଲୋକ ଗଦା ହୋଇଗଲେ । ଗହଳି ଏପରି ହେଲା ଯେ ଖୋଦ୍ ଷ୍ଟେସନ ମାଷ୍ଟର ଆସିଲେ କଥାଟା ବୁଝିବାକୁ । ପଚାରିବୁଝି ନେଇ ଜାଣିଲେ ଯେ ସେ ହେଉଛନ୍ତି ରାୟ ବାହାଦୂର ଗୋପାଳଚନ୍ଦ୍ର ପ୍ରହରାଜ । ପ୍ରହରାଜେ କହିଲେ, ବାବା ୟେ ତ ଇଂରାଜୀ ସର୍କାର ଅମଳ । ଆମେ ଭାରତୀୟମାନେ ଅଯୋଗ୍ୟ ମାଇଚିଆ ହୋଇ ଥିବାରୁ ଆମ ଘରର ରଜା ସିଏ-ସେ ଏକା ମରଦ—ଆମେ ସଭିଏଁ ତ ମାଇକିନିଆ । ଜନାନାଙ୍କଠାରୁ ଆମେ କେଉଁ ଗୁଣରୁ ନିଆରା ? ଆମେ ତ ମାଇକିନିଆ—ଏ ବାବୁ ଆସି ମୋ ହାତ ଝାଣିଲେ ମରଦ ବୋଲାଇ । ତେଣୁ ମୋ ମହତ ଜୁରି କଲେ କି ନାହିଁ, ଆପଣମାନେ ବୁଝନ୍ତୁ । ଯାତ୍ରୀମାନେ ହସି ହସି ଲେଞ୍ଜରା କୋତରା ହୋଇଗଲେ । ଷ୍ଟେସନ ମାଷ୍ଟର ନମସ୍କାର କରି ପ୍ରହରାଜଙ୍କୁ ବସାଇ ଦେଇ ଚାଲିଗଲେ । ବିଚରା ଟିକେଟ୍ କଲେକ୍‌ଟର ଲାଜିରା ହୋଇ, ପଳାଇଲେ ।

ସବୁଥିରେ ପ୍ରହରାଜେ 'ରହସ୍ୟ'ରେ କାମ ହାସଲ କରିବାରେ ଧୁରନ୍ଧର ଥିଲେ । ତାଙ୍କ କଥା ଯେମିତି—ଲେଖା ସେମିତି । ଯେପରି କହନ୍ତି ସେହିପରି ଲେଖନ୍ତି । ଭାଷା ସୃଷ୍ଟି କରିବାରେ ତାଙ୍କର ଅଦ୍ୱିତୀୟ ସାମର୍ଥ୍ୟ ଥିଲା । ମୁଁ ତାଙ୍କ ସୃଷ୍ଟି ଭିତରୁ ଗୋଟିଏ ଶବ୍ଦ କହୁଛି । ସେଇଟି ହେଲା 'ଗୃହିଁ କି ଚକା'—ଅର୍ଥ ହେଲା ଗୃହିଁଲେ ଯାହା ଚକ୍ଷଣ ଦିଶେ । ଅର୍ଥାତ୍ ବାହାର ସୁନ୍ଦର

ଭିତର ପୋଡ଼ା ଅଙ୍ଗାର ବା ଦେଖା ସୁନ୍ଦର କଖାରୁ ବଡ଼ ବୋଲି ଯାହା ଆମ ଗାଉଁଲି କଥାରେ କୁହାଯାଇ-ଥାଏ । ଯଥା:—ମହାକାଳ ଫଳ । ପୁଣି ଏପରି ସ୍ଥାନରେ ସେ ଶବ୍ଦମାନ ଖଞ୍ଜି ଦେଇଛନ୍ତି, ଯାହାର ପ୍ରତି ବଦଳରେ ସେହି ମର୍ମ ପ୍ରକାଶ କରିବା ପକ୍ଷେ ସମର୍ଥ ହେବାଭଳି ଆଉ ଗୋଟିଏ ଶବ୍ଦ ବାଛି ଥୋଇବା କାଠିକର ପାଠ ।

କଥା କଥାକେ ତାଙ୍କର କୌତୁକ ବା ହାସ୍ୟ ରହସ୍ୟ ଭରିଥିଲା । ସରସତା ଓ ରସିକତା ଥିଲା ତାଙ୍କର ବଚନ ଏବଂ ରଚନ ମଧ୍ୟରେ ପରିପୂର୍ଣ୍ଣ । ସମାଜର କୁପ୍ରଥାକୁ ହସ ରହସିଆ କଥା ଭିତରେ ସଜାଡ଼ ପରଖିବା ଢଗରେ ଯୋଗାଲୋକ ଥିଲେ ସେ । ଏଇଭଳି ଖଣ୍ଡିଏ ବହି ତାଙ୍କର ବାଇ ମହାନ୍ତି ପାଞ୍ଜି । ବହିର ଲେଖକଙ୍କ ନାଆଁ ଦିଆ ହୋଇଛି—ଦୁର୍ମୁଖ ଶର୍ମା । ଓରଫ ରାୟ ବାହାଦୂର ଗୋପାଳଚନ୍ଦ୍ର ପ୍ରହରାଜ, ବି. ଏଲ୍. ସାହିତ୍ୟ ବିଶାରଦ ।

ବାଇଧର ମହାନ୍ତି, ଡାକ ନାମ ବାଇ ମହାନ୍ତିଙ୍କ ପାଞ୍ଜି ପଢ଼ାର ପାଠକୁ ପ୍ରହରାଜେ ଲିପିବଦ୍ଧ କରି ଥିବାର ଲେଖିଛନ୍ତି । ବହିର ପରିଚ୍ଛେଦ ବା ଅଧ୍ୟାୟ-ଗୁଡ଼ିକ ଦଫା ନାମରେ ନାମିତ । ବହିଟିରେ ଓଡ଼ିଶା ତଥା ଭାରତବର୍ଷକୁ ଲକ୍ଷ୍ୟ କରିଛନ୍ତି-ସେ କଥା ପାଞ୍ଜିରେ ଲେଖା ନାହିଁ ବୋଲି ପ୍ରହରାଜେ କହିଛନ୍ତି । ଏଥିରୁ ବୁଝାପଡ଼େ ସେ ସାରା ଦେଶର ଗତିବିଧିକୁ ଅନାଇଁ ବହିଟି ଲେଖିଛନ୍ତି । ପ୍ରତି ଦଫାରେ ସଂସ୍କାର ଦିଗର ଲେଖା ଭରି ରହିଛି । ସବୁଠି ପରିହାସ ଭିତରେ ମର୍ମ ଏଭଳି ସଜାଡ଼ି ଥୋଇଛନ୍ତି ଯେ, ପଢ଼ିବାକୁ କାହାରିକୁ ଯେପରି ଅସୁଖ ଲାଗିବ ନାହିଁ କି ମିଛ ବୋଲି ମଧ୍ୟ କହିବାକୁ କାହାରି ଜୁ ନ ଥିବ ।

କହିଛନ୍ତି ତ ନାନା ଦିଗରୁ ସେ ଆଲୋଚନା କରି-ଛନ୍ତି ବାଇ ମହାନ୍ତି ପାଞ୍ଜି ବହିରେ । ଦଉଟି ଗୋଟିଏ ନମୁନା ବାଢ଼ୁଛି । ସହର ମଫସଲ ତୁଳନା—ଦଶମ ଦଫା —

“ସହରର ଟାଉଆଇନ ଏକା ମଫସଲରେ ନାହିଁ । ଝାଡ଼ା ଫେରିବାକୁ-ପରିସ୍ରା କରିବାକୁ ଘୁଞ୍ଚା ସାଙ୍ଗେ ସାଙ୍ଗେ ଜଗୁଆଳୀ । ‘ଅଭିଆଣରେ, ଭିଆଣ ଦେଖ, ପେଜପିଆ ଠେଇଁ ବାଜୁଛି ଟଙ୍କ । ଏଥିରେ ସରକାର-ଙ୍କର ସହରରେ ଯାହା ଲାଭ, ମଫସଲରୁ ତହିଁରୁ କାଣିଚିଏ ନାହିଁ ।”

ସେ ଲେଖିଛନ୍ତି ପାଞ୍ଜିର କେତେକ ଅଂଶ ମନୋନୀତ କରି ବ୍ୟକ୍ତିଗତ କଥାଗୁଡ଼ିକ କାଟିଦେଇ ଭାଷାକୁ ମାର୍ଜିତ ରୁଚିବିଶିଷ୍ଟ କରିଦେଲୁଁ; ତହିଁରେ ଦେଖିବାର, ଶିଖିବାର, ଭାବିବାର ଓ ରଖିବାର ଅନେକ କଥା ଅଛି:—

ପ୍ରହରାଜଙ୍କ ଲେଖାରେ ହାସ୍ୟରସ ପୂର୍ଣ୍ଣମାତ୍ରାରେ ଠାବ ପାଇଛି ସତ; ମାତ୍ର ତାହାର ଜରିଆରେ ସେ ସମାଜକୁ ସଜାଡ଼ିବା ପାଇଁ ଚେଷ୍ଟା କରିଛନ୍ତି । ତାଙ୍କ ରଚିତ ପ୍ରତ୍ୟେକ ବହି ଆଲୋଚନା କରିବାର ବେଳ ନାହିଁ । ଏଣୁ ବିଦାୟ ମାଗୁଛି ଏତିକରେ ।

—✳—

# ॥ କଡ଼ମା ଜହ୍ନି ॥

## ରାଜକିଶୋର ପଟ୍ଟନାୟକ

[ ଆଧୁନିକ ଓଡ଼ିଆ ଗଳ୍ପ ଓ ଉପନ୍ୟାସ ସୌଧର ଅନ୍ୟତମ ନିର୍ମାତା ଶ୍ରୀ ରାଜକିଶୋର ପଟ୍ଟନାୟକ । ତାଙ୍କ ରଚିତ ଭସା ମେଘ, ଅଷ୍ଟମୀ ଚନ୍ଦ୍ର ଇତ୍ୟାଦି ଉପନ୍ୟାସ ଓ ନିଶାଣ ଖୁଣ୍ଟ ଇତ୍ୟାଦି ଗଳ୍ପ ସଙ୍କଳନ ଓଡ଼ିଆ ସାହିତ୍ୟର ଚମକପ୍ରଦ ସୃଷ୍ଟି ବୋଲି କୁହାଯାଇପାରେ । ନୂଆ ହୋଇ ପ୍ରକାଶ ପାଇଥିବା ତାଙ୍କ ରଚିତ 'କଳା ପରଦା' ଉପନ୍ୟାସ ଏକ ପରୀକ୍ଷାର ସୂଚନା ଦିଏ । ବହୁ ପ୍ରାଚୀନକାଳରୁ ସେ ଲେଖୁଛନ୍ତି, ଉତ୍କଳ ସାହିତ୍ୟ, ସହକାର, ନବ-ଭାରତ ଯୁଗରୁ ବନଫୁଲ ପର୍ଯ୍ୟନ୍ତ ତାଙ୍କ ଲେଖନୀର ଗତି ଅନିବାର । ସ. ବନଫୁଲ ]

ଦିନକର କଥା ନୁହେଁ—ପ୍ରତିଦିନର ଅଭ୍ୟାସ । ଗୋପାଳବାବୁ ସକାଳ ହେଲେ ତାଙ୍କର ଛୋଟିଆ ପାଚେରି ଘେରା ବାରିକୁ ଚାଲିଯାଆନ୍ତି । ସନ୍ଧ୍ୟାରେ ସେ ଯେପରି ଘରକରଣାର ସୁଖଦୁଃଖ ସ୍ତ୍ରୀ'ଙ୍କଠାରୁ ବୁଝନ୍ତି, ସେମିତି ସକାଳେ ସେ ଚାଲିଯାଆନ୍ତି ତାଙ୍କର ଅଗଣା ବାରିକୁ ।

ହାତେହାତେ ସବୁ କାମ । ଛୋଟ ଛୋଟ କିଆରି ହୋଇଛି । ପାଣି ମଡ଼ାଇବା ନାଳଠାରୁ ଆରମ୍ଭ କରି ରଞ୍ଜା ଓ ଭଣ୍ଡି ପର୍ଯ୍ୟନ୍ତ । ପଡ଼ୋଶୀ ଓ ବନ୍ଧୁମାନେ ଟାପରା କରନ୍ତି—ଏତେ ମିହନତ ନ କରି ଦି'ପୁଞ୍ଜା କୁକୁଡ଼ା-ବତକ ପୋଷିଲେ ବେଶି ଲାଭ ହୁଅନ୍ତା ।

—ଲାଭ ଲୋକସାନ ମଣିଷର ହିସାବକୁ ପଶିଲେ ସେ ଆଉ କାମ କରିବ ନାହିଁ । କାମ ଆରମ୍ଭ କଲା-ବେଳେ କିଏ କହିବ ମେହେନତ କେତେ ଲାଗିବ ଆଉ ଆମଦାନ କେତେହବ ? ଗୋପାଳବାବୁ ହସି ପଚାରନ୍ତି ସମସ୍ତଙ୍କୁ ।

—ଆଚ୍ଛା, ହିସାବ ରଖି କହିଲେ ମୂଲ କେତେ ଆଉ ମିଳିଲା କେତେ ?ଗଛ ହିଧାଉ ନାହିଁ । ସେଥିରେ ଧନ୍ଦାହେବା ଖାଲି ବଡ଼ଲୋକଙ୍କୁ ପୋଷାଏ ।

—ନାହିଁ, ବାବୁ, ଏଠିପରା ସହର । ଚାରିଆଡ଼େ କୋଠା । ଆଖ ପାଖରେ ବଡ଼ବଡ଼ ଗଛ । କୁହୁଡ଼ି କାକର କୁଆଡ଼ୁ ପାଇବ ଏଇ ବାରିଖଣ୍ଡିକ ? ସେଥିରେ ପୁଣି ଗଛପତ୍ର ଭିତରେ ଛୁଣିହୋଇ ଯେଉଁ ଖରା ଟିକକ ଆସୁଛି, ସେଥିରେ ଗଛ ଅବା କ'ଣ ହେବ ?

—ଆଉ ତେବେ ଗୋପାଳବାବୁ ବାଜି ଲଗାଇ କାମ କଲାପରି ଏମିତି ଛନ୍ଦ ହେଉଛନ୍ତି କାହିଁକି ?

—ଯାହା କହନ୍ତୁ ଆପଣ । ଏଇ ମାଟି ଅରାକ ମୋର ଭାରି ଆଦରର ଥାଳ ଖଣ୍ଡେ । କାହାକୁ କ'ଣ ମିଳିଥାଏ । ମତେ ମିଳିଛି ଏତିକି । ମୁଁ ଏଇ ଖଣ୍ଡିକର ସିନା ମାଲିକ । ମୋର କି ବଳ ଅଛି ଯେ ଆଖ ପାଖର କୋଠାବାଡ଼ି ଗଛବୃଛକୁ ଶୁଆଇ ଦେବି ମାଟିରେ । ଯା'କୁ ମନେକରେ ମୋର ପୁରୁଣା ଘଡ଼ି ଅବା ପୁରୁଣା ପୋଷାକ । ଯତ୍ନ କରୁଛି ବୋଲି ଚାଲିଛି ।

—କ'ଣ ସବୁ ଏ ବର୍ଷ ଫଳେଇଛନ୍ତି ?

—କିଛୁନାହିଁ ଦୁଇଟା ମଟକା, ଦି'ବୁଦା କଖାରୁ ଆଉ କେଇଟି ଜହ୍ନି ବୁଦା ।

—ସ୍ତ୍ରୀ'କୁ ବଜାରରୁ ଆଣିଲେ ଯାହା ଏଠି ଫଳବ ସବୁସାକ ହେଉ କୋଡ଼ିଏ ଟଙ୍କା। ନଇଲେ ବଢ଼ାଇ ଧରନ୍ତୁ ତିରିଶି ଟଙ୍କା। ଆପଣଙ୍କର ପରିଶ୍ରମର ମୂଲ୍ୟ କେତେ ?

ହସି ଗୋପାଳବାବୁ କହନ୍ତି—ମଣିଷରେ ପରିଶ୍ରମର ମୂଲ୍ୟ କରନ୍ତି ଉପରେ ଠାକୁର। ସେ କାହାକୁ ଘଣ୍ଟା ପ୍ରତି ଶହେ ପଚୁଶ ଟଙ୍କା ଯେମିତି ଦିଅନ୍ତି, ସେମିତି କାହାକୁ ଦଶ ପଚିଶି ପଇସା ବି ଦେଇଥାନ୍ତି। ଇଆ ବୋଲି କ'ଣ ଖଟିଖିଆ ସତ୍ୟାଗ୍ରହ କରିଛନ୍ତି କି ?

ହସ ହୁଏ ସମସ୍ତଙ୍କର। ବାବୁଙ୍କର କଥା ଖରି ଖର। ଗୃହକାମରେ ପ୍ରମୋଶନ ନ ପାଇଲେ ସେ ତାଙ୍କର ମହକୁମାକୁ ହୁଲଷ୍ଟୁଲ କରି ପକାନ୍ତି। ତାଙ୍କର କାମର ମଜୁରି ଓ ସନମାନ ଊଣା ହେଇଗଲା—ମେହନ୍ତୀ କର୍ମିକ ଓ ବସୁଧା ଅରିବ। କିନ୍ତୁ ନିଜର ବାରି ଅଗଣାରେ ଗଛର ଫଳ ଫୁଲରୀ ପାଇଁ ତାଙ୍କର ହେଲା ଯୁକ୍ତିତର୍କ।

ଜହ୍ନି ଭାଡ଼ ପାଖକୁ ଯାଇ ଗୋପାଳବାବୁ କହନ୍ତି —ମୋର ଇଜ୍ଜତ ରଖିବୁ। ବୁଢ଼ିଲୁରେ ଲଟା। ତୋର ଦାମ୍ ନାହିଁ ଏଇ ଆଜ୍ର-ପୋଟଳ ସମାଜରେ। ଭଲ ଫଳିବୁ। ଲୋକଙ୍କର ଆଖିକୁ ଟାଣିବୁ ନିଜପ୍ରତି।

ଭାଡ଼ରେ ପ୍ରଜାପତି ଓ ଭଅଁର ଉଡ଼ି ଯାନ୍ତି ଗୋପାଳବାବୁଙ୍କ ଗୁହାଁ ଗୁହାଁ। ଏତେ ବଡ଼ ମଣିଷ-ଟାଏ। ମଣିଷ ଭିତରେ ଏତେ ପ୍ରତାପୀ ହାକିମଟାଏ। ହାକିମଙ୍କ ମେଳରେ ଏତେ ଚଢ଼ଆଖିଆ ମାଡବର ଲୋକଟାଏ। ତାହାର ପୁଣି ବୁଦ୍ଧି ନଅଣ୍ଟ ପଡ଼ୁଛି ଯେ ସେ ସାମାନ୍ୟ ଜହ୍ନି ଭାଡ଼ ପାଖରେ ଠିଆହୋଇ ତା'କୁ ମନେ ମନେ ପ୍ରାର୍ଥନା କରୁଛି—ଫଳ ଦେବାକୁ।

ଭୋରୁଅ ସକାଳର ଝପଟା ପବନରେ ଜହ୍ନି ବୁଦା ଦୋହଲି ଯାଉଥିଲା। କଡି ଉପରର ଫୁଲ ଶୁଖି ଆସୁଛି। ପତରଗୁଡ଼ାକ କାକର ଝାଡ଼ାଇ କେମିତି ମୁଖୁରୀ ହସିଲେଣି।

—ଆରେ ଏତେ ଜହ୍ନି। ସବୁଗୁଡ଼ାକ ଗ୍ରେଟ। କଡ଼ମା ଜହ୍ନି ଭୁଲିଗଲଣି ତାହାର ଆଗୁଆ ଦି'ତିନି ମୁଅ ବଡ଼ ଜହ୍ନିମାନଙ୍କୁ। ଯେଉଁ ବୁଦା ଗୃହଖଣ୍ଡିରୁ ଊଣା ଜହ୍ନି ଦେଇ ନ ଥିଲା, ସେହି ବୁଦାରେ ଏବେ ଏତେ ଡେମ୍ପା ଡେମ୍ପା ଫଳ।

କ'ଣ ଅଲଗା ଗଛଟିକ ? ବୋଧହୁଏ ଦି'ପ୍ରକାରର ମଞ୍ଜି ମିଶିଥିଲା--ବଡ଼ ଜହ୍ନି ଆଉ ମେଣ୍ଟି ଜହ୍ନି।

ଭୁଲିଗଲେ ଅନ୍ୟ ବୁଦାକୁ। ପଚୁଆ ଲଟା-ଗୁଡ଼ାକରେ ଝୁଲୁଛି ସେହି ଗୃହଖଣ୍ଡିଆ ଫଳ। ଦି' ଦିନ ଦିନକରେ ସେ ନେଇଯାନ୍ତି ଗୋଟେଇ ଘର ପାଖକୁ।

ସେଠି ପନକା ମହାରାଣୀଙ୍କର ଅଧିଷ୍ଠାତ୍ରୀ ଦେବୀ ଭାବରେ ସ୍ତ୍ରୀ' ଦରବାର ଖୋଲିଥାନ୍ତି ପଢ଼ିବା ଟେବୁଲ-ଇକୁ ଆଗରେ ରଖି।

—ପୁଣି ଜହ୍ନି ଆଣିଲ ? ମନା କରିଥିଲି ପରା। ପିଲାମାନେ ଚିଡ଼ିଲେଣି ଜହ୍ନିଗିଲ ଖାଇବାକୁ। ବଡେ ସିନା ଅକାଳେ ସକାଳେ ଭଲ ଲାଗନ୍ତା।

—ଆମରି ଜହ୍ନି ପରା।

—ହେଲେ କ'ଣ ଗଲା ? ଏଇ ଜହ୍ନି ନିଜ ବାରିରେ ହେଲା ବୋଲି କ'ଣ ପୋଟଳ-କାଙ୍କଡ଼ର ସୁଆଦ ଦବ ?

—ବୁଢ଼ାହେଇ ଯାଉଥିଲା। ପାଚିରେ ଦେଇ ହୁଅନ୍ତା ନାହିଁ। ଜାଲି ହୋଇଗଲେ ପାଣିଚିଆ ଲାଗନ୍ତା।

—ବୁଢ଼ା ହେଲେ କି ପିଲା ରହିଲେ କ'ଣ ହେଲା ? ପୁଅ କହୁଛି ସେ ଜହ୍ନି ଦେଖିଲେ ସେ ଆଉ ଖାଇବ ନାହିଁ। ଭାତଥାଳି ଫୋପାଡ଼ି ଦବ।

—ପିଲାମାନେ ବୁଝି ନାହାନ୍ତି । ତମେ ତାଙ୍କର ମାଁ ହେଇ ପାଳିଆ ଧରୁନ୍ତୁ । ତମେ ଯେମିତି ଗୋଟିଏ ମା—ଜହ୍ନି ଲଟାଟି ସେମିତି ମା ।

—ହଉ ରଖିଦଅ ସେଇ ତତ୍ତ୍ୱଗୁଡ଼ାକ । ଜହ୍ନି ଲଟାକୁ କ'ଣ ଦୋହଲେଇ ହବ କି ? ଭରି ତ ପ୍ରୀତି କଥାଗୁଡ଼ାକରେ ।

ଗୋପାଳବାବୁ ଠିଆହୋଇ ରହିଲେ ସେହି ପରିବା ପାଖରେ । ହାତ ଯାଉଛି-ଆଳୁ ପୋଟଳ ପାଖକୁ । ସେମାନେ ସମସ୍ତେ ଉଚ୍ଚ ବଂଶର ଲୋକ । ଆଉ ଗୋପାଳବାବୁଙ୍କ ହାତ ଆଞ୍ଜୁଳାରେ କେଇଟି ଜହ୍ନି—କଡ଼ମା ଜହ୍ନି । ସେଗୁଡ଼ିକ ଅଦରକାରୀ ଅସ୍ପୃଶ୍ୟ ।

ଯାହାକୁ ହାତରେ ଯାଉରୁତ କରି ବଢ଼ାଉ ଥିଲେ ସିଏ ଅଦରକାରୀ । ଆଉ ଯାହାକୁ ନାକମା ହେଇ କଡ଼େଇ ଦେଇ ବଜାରରୁ କିଣିଥିଲେ ସେଇ ହେଲା ଉପକାରୀ·· ମନ୍ଦ କ'ଣ ? ପ୍ରକୃତରେ ନିଜ ଲୋକଙ୍କ-ଠାରୁ ପରମଣିଷ ବଡ଼ ।

କେଡ଼େ କୃତଘ୍ନ ଏଇ ମଣିଷ ସମାଜ ! ନ ହେଲେ ଏଠି ଶ୍ରେଣୀ-ନାମ-ଜନାକାରୀ ଏତେ ଅଧିକ ହୁଅନ୍ତା କେମିତି ?

—ଠିଆହେଲ ଯେ । ଯାଅ ଦେଖ ଗଛରେ ସଅଁ ବାଳୁଆ ହେବେଣି । ଏଣ୍ଡୁଅ ଆସିବଣି ଫୁଲଫଳ ନଷ୍ଟ କରିବାକୁ ।

—ଭାବୁଛି ଏଇ ଗଛ ଲଟାକୁ ଉଠାଇ ଦେଇ କୁକୁଡ଼ା ଆଠଟା ଆଣିବି । ତେବେ ଆଉ ଏଇସବୁ ଗୋଳମାଳ ରହିବ ନାହିଁ । ପିଲାମାନେ ଆନନ୍ଦରେ ଅଣ୍ଡାଖାଇ ମଟ୍ଟବୁତ୍ ହେବେ ।

ସ୍ତ୍ରୀ ଚାହିଁଲେ ଗୋପାଳବାବୁଙ୍କ ମୁହଁକୁ । ଆଖି ଦୁଇଟିରେ ଆଗ୍ରହ ନାହିଁ । ହତାଶାର କଳାଗାର ସେଠି ତେଇଁ ବୁଲୁଛି । ହାତରେ ଧରିଥିବା ଜହ୍ନି ପୁଞ୍ଜାକ ଉପଲକ୍ଷ୍ୟ ହେଇ ସେମିତି ଝୁଲୁଛନ୍ତି ।

—ହଉ ଆଣ । ଦେଖେଁ । ···ଏତେ ଶ୍ରେଷ୍ଠ କ'ଣ ?

—ଏଗୁଡ଼ାକ ସେଇ ଜହ୍ନି ଯେ, । କଡ଼ମା ହେଇ-ଗଲାଣି । ଗଛ ତାହାର ଯେଉଁ ଦ ମୁଥ ମୁଥେ ଭଲ ରସୁଆଳ ଓ ଶସିଅଳ ହେଇ ଫଳଗଲା, ଏବେ ସେ ଏତକ ଫଳେଇଛି । ମରିଯିବ ଏଥର ।

—କ'ଣ ? କେମ୍ପା, ପୋକରି······

—ସତେ ତ । ଗୋପାଳବାବୁ ଝୁଙ୍କିପଡ଼ି ଦେଖିଲେ···ହଁ, ହବନାହିଁ କେମିତି ? ଗଛ ପାକଳ ହେଇ ଗଲାଣି । ଆଉ ତାହାର ବଳ କାହିଁ ଏଣ୍ଡ ରୋଗ ବଇରାଗ ଏଡ଼ାଇବାକୁ । .

ଗୋପାଳବାବୁଙ୍କର ସ୍ତ୍ରୀଙ୍କ ମନରେ ସହାନୁଭୂତି ଆସିଲା—ନିଜପ୍ରତି । ବହୁତ ଦୂରରେ ସେହି ରୂପର ଆଲୁଅ ତ ଝଳ ଲାଭିଗଲାଣି । ଦିନେ ସେ ନିଜକୁ ଗୁହାଁ ଖୁସିରେ କହୁଥିଲେ—ଏଇ ଦେହ ମୋର ।

ଏବେ ସେ ବେଳେବେଳେ ନିଜକୁ ପଚାରନ୍ତି—ସତେ କ'ଣ ଏଇ ଖଣ୍ଡିଆ ଖାବୁରି ଦେହନେଇ ମୁଁ ଶାଶୁଘରକୁ ଆସିଥିଲି ? ଏଇ ଦେହ କ'ଣ ସୁନା ଅଳଙ୍କାର ପାଟ-ମଠାରେ ଶୋଭିଥିଲା···ଆହାରେ, କଡ଼ମା ଜହ୍ନିଗୁଡ଼ାକ । କେତେ ଗାଳିଦେଲି ତମକୁ··· ତମେ ବା କ'ଣ କରି ପାରନ୍ତ ?

ଭାତଥାଳି ପରଶିଲାବେଳେ ସ୍ତ୍ରୀ ତାଙ୍କୁ ପଚାରି-ଥିଲେ—କେମିତି ହେଇଛି ? ସେଇ ପୋକରି କଡ଼ମା-ଗୁଡ଼ାକ ।

—ସତେ ମ । ଭାରି ଭଲ । ଭାରି ସୁଆଦ ।

—ସତରେ,ନା ଆଣିଛ ବୋଲି ସୁପାରସ୍ କରୁଛ ?

—ତମେ ଖାଇଲେ ଜାଣିବ । ଭଗବାନ ଏଇ କଡ଼ମା ପୋକରି ଜହ୍ନିକୁ ବି ନୂଆ ସୁଆଦ ଦେଇଛନ୍ତି । ପହିଲି ଦୁସୁରି ମୁଥର ଫଳ ଆକାରରେ ବଡ଼; କିନ୍ତୁ ସୁଆଦରେ ଶ୍ରେଷ୍ଠ···

ଗୋପାଳବାବୁଙ୍କର ମନ ଭରି ଯାଇଥିଲା ସହାନୁଭୂତିର ନୂଆ ମୂଲ୍ୟାୟନରେ । ଆଖି ଦୁଇଟି ତେଜ ଉଠିଥିଲା ନୂଆ ଅନୁଭବର ପ୍ରଖରତାରେ ।

—*—

# ।। ଜାତୀୟ ଐକ୍ୟ ଓ ଆମ ପୁରାଣ ଶାସ୍ତ୍ର ।।

## ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

[ ଓଡ଼ିଆ ସାହିତ୍ୟ ରାଜ୍ୟରେ ଜଣେ ଖ୍ୟାତନାମା ସମାଲୋଚକ ଓ ପ୍ରାବନ୍ଧିକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, । ଜୀବନ-ବ୍ୟାପୀ ସାହିତ୍ୟ ସାଧନା କରି ସେ ଶେଷରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ତାଙ୍କ ରଚିତ 'ଓଡ଼ିଆ ସାହିତ୍ୟର ଇତିହାସ', 'ଓଡ଼ିଆ ସାହିତ୍ୟ ପରିଚୟ' ଇତ୍ୟାଦି ପୁସ୍ତକ ଓଡ଼ିଶାର ଜାତୀୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ବହୁ ପୁସ୍ତକର ରଚୟିତା । ଏପରି କି ସ୍ୱାଧୀନତା ସଂଗ୍ରାମୀ ବୀର ସୁରେନ୍ଦ୍ର ସାଏଙ୍କୁ କେନ୍ଦ୍ରକରି ମଧ୍ୟ ପୁସ୍ତକ ରଚନା କରିଛନ୍ତି । ସ. ବନଫୁଲ ]

ଆମ ଭାରତ ବର୍ଷ ଅତି ବିସ୍ତୃତ ରାଜ୍ୟ । ଏଠାରେ ଶତ-ଶତ କଥିତ ଭାଷା ଅଛି । ଭାଷା ଅନୁସାରେ ବିଭିନ୍ନ ଅଞ୍ଚଳକୁ ନାମ ମଧ୍ୟ ଦିଆ ଯାଇଛି । ଓଡ଼ିଆ ଭାଷା କହୁଥିବା ଲୋକଙ୍କ ଅଞ୍ଚଳକୁ ଓଡ଼ିଶା ବା ଉତ୍କଳ, ବଙ୍ଗଳା କହୁଥିବା ଲୋକଙ୍କ ଅଞ୍ଚଳକୁ ବଙ୍ଗ ବା ବଙ୍ଗଳା, ଆନ୍ଧ୍ର ଭାଷା କହୁଥିବା ଅଞ୍ଚଳକୁ ଆନ୍ଧ୍ର—ଏପରି ବହୁ ଅଞ୍ଚଳକୁ ବହୁ ପ୍ରାଚୀନ କାଳରୁ ପୁରାଣ-ମାନଙ୍କରେ ନାମ ଦିଆ ହୋଇଛି । ବହୁ ଭାଷା ଭାରତରେ ପ୍ରଚଳିତ ଥିଲେ ମଧ୍ୟ ପ୍ରାଚୀନ କାଳରେ ସଂସ୍କୃତ ଭାଷା ଅଞ୍ଚଳ ଅଞ୍ଚଳ ମଧ୍ୟରେ ସବୁ ଆଳାପ ଆଲୋଚନା କାରବାର ଚଳୁଥିଲା । ସମସ୍ତ ସମସ୍ତରେ ବହୁଲୋକ ବୁଝିପାରୁଥିବା ଭଳି ଭାଷା ମଧ୍ୟ ବ୍ୟବହାର କରାଯାଉଥିଲା । ପ୍ରାଚୀନ କାଳରୁ ସଂସ୍କୃତ ଭାଷା ଭାରତର ବିଭିନ୍ନ ଅଞ୍ଚଳକୁ ଏକତା ସୂତ୍ରରେ ବାନ୍ଧି ରଖିଥିଲା । ଏହି କାରଣରୁ ଆମର ପ୍ରାଚୀନ ପୁରାଣ ଶାସ୍ତ୍ରାଦି ସଂସ୍କୃତରେ ଲେଖା ହୋଇଥିଲା । ଏଥିରେ ଲେଖା ହୋଇଥିବା ଜ୍ଞାନସମୂହକୁ ଆମେ ଭାରତୀୟ ସମସ୍ତେ ସମାନ ଭାବରେ ଆଦର କରୁଛୁ । ଏଗୁଡ଼ିକ ସମସ୍ତ ଭାରତୀୟଙ୍କ କୋଠ ସମ୍ପତ୍ତି ବୋଲି ମନେ କରୁଛୁ । ଏହି ପୁରାଣ ଶାସ୍ତ୍ରାଦିରେ ଲେଖା ହୋଇଥିବା ତଥ୍ୟ ଓ ବାଣୀ ସବୁ ଅଞ୍ଚଳକୁ ସମାନ ଭାବରେ ପ୍ରଭାବିତ କରିଛି, କରୁଛି ମଧ୍ୟ । ଏ କାରଣରୁ ଆମ ଭାରତୀୟ ସମସ୍ତେ ଏକ ପରିବାର ଲୋକ, ଏକ ସମାଜର ଲୋକ ବୋଲି ଭାବୁଛୁ । ଏହି ଏକତା, ଏ ଭାତୃଭାବ କେବେ ଛିଣ୍ଡିବାର ନୁହେଁ ।

ଶରୀରର ବିଭିନ୍ନ ଅଙ୍ଗପରି ବିଭିନ୍ନ ଅଞ୍ଚଳ ଭାରତମାତାର ଶରୀରର ବିଭିନ୍ନ ଅଙ୍ଗମାତ୍ର । ଭାରତ ଏକ, ଏକ ଶରୀର, ଏହାର ମସ୍ତକ ହିମାଳୟ ହେଲେ ପାଦ କୁମାରିକା । ଏହି ଭାବ, ଏହି ଏକ ଶରୀର ଭାବକୁ ଆମମାନଙ୍କର ହୃଦୟରେ ବଦ୍ଧମୂଳ କରିବା ପାଇଁ ଆମ ପୁରାଣ ଶାସ୍ତ୍ରରେ ବାରଂବାର ଚେଷ୍ଟା କରାଯାଇଛି । ପ୍ରତ୍ୟେକ ଶୁଭ କାର୍ଯ୍ୟରେ, ନିତ୍ୟନୈମିତ୍ତିକ କର୍ମରେ ଆମେ ଆମର ଏକ ମାତା ଭାରତମାତାଙ୍କୁ ପ୍ରଥମେ ସ୍ମରଣ କରୁଛୁ । "ଗଙ୍ଗେଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁ କାବେରୀ ଜଲେ ସ୍ମିନ୍ ସନ୍ନିଧିଂ କୁରୁ" ବୋଲି ସକଳର ଆରମ୍ଭରେ ଉଚ୍ଚାରଣ କରୁଛୁ । ଏ ସପ୍ତ ନଦୀକୁ ଯେଉଁ ରାଜ୍ୟ ନିଜ ଅଙ୍ଗରେ ବହନ କରିଛି, ସେହି ଆମର ଦେଶ, ସେ ଆମର ଜନନୀ । ପୁଣି ପୁରାଣାଦିରେ ବିଭିନ୍ନ ତୀର୍ଥର କଳ୍ପନା ଏହି ଐକ୍ୟ ରକ୍ଷାପାଇଁ କରାଯାଇଥିବା ସ୍ପଷ୍ଟ । ଉତ୍ତରରେ ହିମାଳୟ ଉପରେ ବଦ୍ରିନାଥ, ଦକ୍ଷିଣରେ ରାମେଶ୍ୱର, ପୂର୍ବ ସମୁଦ୍ର-ତୀରରେ ପୁରୀ, ପଶ୍ଚିମ ତୀରରେ ଦ୍ୱାରକା—ଏହି ଚାରି ଧାମର କଳ୍ପନା ମଧ୍ୟ ଏହି ମହାଭାରତୀୟ ଜାତିର ଏକତାର ସୂଚନା ଦେଉଛି ।

ଭାରତବର୍ଷ ନାମଟିର ବିଶେଷତ୍ୱ କେବଳ ଭୌଗୋଳିକ ସ୍ଥିତି ବୁଝାଉ ନାହିଁ, ଏକ ଜାତିର ବାସସ୍ଥଳୀକୁ ବୁଝାଉଅଛି । ହିନ୍ଦୁ କହ, ମୁସଲମାନ୍ କହ, ଖ୍ରୀଷ୍ଟିଆନ୍ କହ, ସମସ୍ତେ

ଏହି ପୁଣ୍ୟଭୂମି ଭାରତର ସନ୍ତାନ, ସମସ୍ତେ ଭାଇ ଭାଇ ପରି ଏକ ପରିବାରର ଲୋକ । ଏ ସମସ୍ତଙ୍କ ଏହି ଜନ୍ମଭୂମି ଭାରତବର୍ଷ ଜନନୀ ପରି, ସ୍ୱର୍ଗ ଅପେକ୍ଷା ଶ୍ରେଷ୍ଠ । ଏଥିଯୋଗୁ ପୁରାଣ ଶାସ୍ତ୍ରରେ କୁହାଯାଇଛି—"ଜନନୀ ଜନ୍ମଭୂମିଶ୍ଚ, ସ୍ୱର୍ଗାଦପି ଗରୀୟସି ।"

ଏହି "ଜନନୀ ଜନ୍ମଭୂମି" କଳ୍ପନା ରାଜନୈତିକ ଐକ୍ୟର ମୂଳଭିତ୍ତି ହୋଇ ପଡ଼ିଛି । ଏହି ବିଶାଳ ଦେଶର ଅଧିପତି ସମ୍ରାଟ, ଏକରାଟ, ରାଜାଧିରାଜ, ସାର୍ବଭୌମ ପ୍ରଭୃତି ନାମରେ ପରିଚିତ ହୋଇଛନ୍ତି । ଏହି ସାର୍ବଭୌମତ୍ୱ ଏ ଭାରତୀୟ ଜାତୀୟ ଐକ୍ୟର ଭିତ୍ତି । ମହାଭାରତ ଜାତୀୟ ସାର୍ବଭୌମତ୍ୱ ସର୍ବ ଉନ୍ନତର ମୂଳ । ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଅଶ୍ୱମେଧ ଯଜ୍ଞ, ରାଜସୂୟ ଯଜ୍ଞ, ବାଜପେୟ ଯଜ୍ଞ ଏହି ସାର୍ବଭୌମତ୍ୱର ସୁପ୍ରତିଷ୍ଠା ନିମନ୍ତେ କଳ୍ପିତ ହୋଇଛି ।

ପୁରାଣଶାସ୍ତ୍ରମାନଙ୍କରେ ଏହି ରାଜନୈତିକ ଏକତାର ଆବଶ୍ୟକତା ଘୋଷିତ ହେବା ସଙ୍ଗେ ଜାତୀୟ ସାଂସ୍କୃତିକ ଏକତା ମଧ୍ୟ ଘୋଷିତ ହୋଇଛି । ମାନବିକ ଧର୍ମାଚରଣ, ଆଚାର, ବ୍ୟବହାର ବିଚାର ପ୍ରଭୃତି ଦେଶକାଳ ପାତ୍ରକୁ ଅତିକ୍ରମ କରିଛି । ଆଞ୍ଚଳିକ ବିଚାରର ସ୍ଥାନ ଥିଲେ ମଧ୍ୟ ବୃହତ୍ତର ଜାତୀୟ ବିଚାରକୁ ଘୋଡ଼ାଇ ପକାଇ ନାହିଁ । ଭାରତ ବାହାରେ ସପ୍ତସିନ୍ଧୁ, ବ୍ରହ୍ମର୍ଷିଦେଶ, ଆର୍ଯ୍ୟାବର୍ତ୍ତ, ବ୍ରହ୍ମାବର୍ତ୍ତ, ଜମ୍ବୁଦ୍ୱୀପ ପ୍ରଭୃତିର କଳ୍ପନା ମହାଭାରତୀୟ ଜାତୀୟତାରେ ଉଦାର ଦୃଷ୍ଟିକୋଣ ଓ ବ୍ୟାପକତାର ସୂଚନା ପୁରାଣମାନେ ଦେଇଛନ୍ତି ।

ପୁରାଣ ଶାସ୍ତ୍ରମାନଙ୍କରେ ଲେଖା ହୋଇଥିବା ତଥ୍ୟ ଓ ତତ୍ତ୍ୱସବୁ କୌଣସି ଏକ ଅଞ୍ଚଳରେ ଆବଦ୍ଧ ନୁହେଁ । ଏସବୁ ଭାରତର ପ୍ରତ୍ୟେକ ଅଞ୍ଚଳରେ ପ୍ରଚାରିତ ହୋଇଛି । ପ୍ରତ୍ୟେକ ଲୋକ ଭାବୁଛି, ଏସବୁ ମୋର ମନର ଭାବ । ମୋ ପାଇଁ, ମୋ ପରିବାର ପାଇଁ, ମୋ ଗ୍ରାମ ପାଇଁ ଏହା ଲିଖିତ ହୋଇଛି । ଏହି ସାର୍ବଜନୀନ ଚିନ୍ତାଧାରାର ଉତ୍ସ ହେଉଛି ଆମର ପୁରାଣ ଶାସ୍ତ୍ର । ଏହି ଚିନ୍ତାଧାରା ଆମ ଜାତୀୟ ଜୀବନକୁ ବଞ୍ଚାଇ ରଖିଛି ଏବଂ ପ୍ରେରଣା ମଧ୍ୟ ଦେଉଛି । ଆମ ଭାରତୀୟ ଜାତୀୟ ଐକ୍ୟକୁ ଉଜ୍ଜୀବିତ କରି ରଖିଛି ।

ମାନବ ଧର୍ମ ଓ ଧର୍ମାଚରଣକୁ ଭାରତୀୟ ସଂସ୍କୃତିରେ ବିଶିଷ୍ଟ ସ୍ଥାନ ଦିଆ ଯାଇଛି । ଭାରତୀୟ ଜାତୀୟ ଐକ୍ୟ ଏହାର ଏକ ପ୍ରଧାନ କାରଣ । ମହାତ୍ମା ବିବେକାନନ୍ଦ ସମଗ୍ର ଭାରତକୁ ଧର୍ମ ଏକତା ସୂତ୍ରରେ ଆବଦ୍ଧ କରି ରଖିଥିବା ବାରଂବାର ଉଚ୍ଚ, ଦୃଢ଼ କଣ୍ଠରେ ପ୍ରଚାର କରିଛନ୍ତି । ସେ କହିଛନ୍ତି, "ଧର୍ମ ହିଁ ଭାରତବାସୀଙ୍କର ଏକମାତ୍ର ପ୍ରାଣ ଓ ଆଗ୍ରହର ବସ୍ତୁ । ଏହି ଧର୍ମ ହିଁ ଆମ୍ଭମାନଙ୍କର ଜାତୀୟ ଜୀବନର ମେରୁଦଣ୍ଡ । ତାହାରି ଉପରେ ଆମ୍ଭମାନଙ୍କର ଜୀବନରୂପୀ ପ୍ରାସାଦର ମୂଳଭିତ୍ତି ସ୍ଥାପିତ । ଭଲ ହେଉ ବା ମନ୍ଦ ହେଉ, ସହସ୍ର ସହସ୍ର ବର୍ଷ ହେଲା ଭାରତରେ ଧର୍ମ ହିଁ ଜୀବନର ପରମ ଆଦର୍ଶ ହୋଇ ରହିଅଛି । ଶତ ଶତ ଶତାବ୍ଦୀ ହେଲା ଭାରତର ବାୟୁମଣ୍ଡଳ ଧର୍ମର ମହାନ୍ ଆଦର୍ଶମାନଙ୍କରେ ପୂର୍ଣ୍ଣହୋଇ ରହିଛି । ଏହି ଧର୍ମଭାବ ଆମ୍ଭମାନଙ୍କର ପ୍ରତ୍ୟେକ ଶିରା ଓ ଧମନୀରେ ରକ୍ତବିନ୍ଦୁ ସହିତ ମିଶି ରହିଅଛି । ଧର୍ମ ଆମ୍ଭମାନଙ୍କର ପ୍ରକୃତିଗତ ଓ ଜୀବନର ଜୀବନୀଶକ୍ତି ।" ସମଗ୍ର ଜଗତର କଲ୍ୟାଣ ଏହି ଧର୍ମ ଉପରେ ନିର୍ଭର କରୁଛି । ମନୁଷ୍ୟ ମନୁଷ୍ୟ ଭିତରେ ଭାତୃଭାବ, ଏକତା ପ୍ରତିଷ୍ଠା କରିଛି କେବଳ ଏହି ଧର୍ମ । ଉଦାର, ନିର୍ମଳ ଧର୍ମ ହିଁ ଧର୍ମ । ସଙ୍କୀର୍ଣ୍ଣତା, ଅହମିକା, ବିଦ୍ୱେଷ ଯେଉଁ ଧର୍ମରେ ପ୍ରବେଶ କରି ଯାଇଛି ସେ ଧର୍ମ କଳୁଷିତ ଧର୍ମ । ମାନବ ଜାତିର ମୁଷ୍ଟିମେୟ ଲୋକଙ୍କର ସାମୟିକ ଉପକାର ସାଧନ କରିବାରେ ଏହା ସମର୍ଥ ହୋଇ ପାରିଥାଏ; କିନ୍ତୁ ଏହାର ପ୍ରଭାବ ଚିରସ୍ଥାୟୀ ନୁହେଁ । ଏଥିପ୍ରତି ସତର୍କ କରିଦେଇ ବିବେକାନନ୍ଦ କହିଛନ୍ତି—ସମଗ୍ର ଜଗତର କଲ୍ୟାଣ ଧର୍ମ ଉପରେ ନ୍ୟସ୍ତ କରୁଥିବା ସ୍ପଷ୍ଟ । ଧର୍ମ ଗୁଡ଼ିଲେ ସଙ୍କୀର୍ଣ୍ଣତା ସମାଜରେ ବ୍ୟାପିଯିବ, ସମାଜକୁ କଳୁଷିତ କରିଦେବ, ମନୁଷ୍ୟତା ଲୋପ ପାଇବ । ମନୁଷ୍ୟତା ଲୋପ ହେଲେ, ଭାତୃଭାବ ଲୋପ ହେବ । ଭାତୃଭାବ ଲୋପହେଲେ ବିଭେଦର ପ୍ରଭାବ ବୃଦ୍ଧି ପାଇବ । ଐକ୍ୟ ଲୋପ ପାଇବ । ଜାତି ଧ୍ୱଂସ ହୋଇଯିବ । ଏହି ଜାତୀୟ ଐକ୍ୟ ଏହି କାରଣରୁ ଆମ ପୁରାଣମାନଙ୍କରେ ବିଶେଷ ପ୍ରାଧାନ୍ୟ ଅଧିକାର କରିଛି । ଏହାହିଁ ଭାରତୀୟ ସଂସ୍କୃତିର ମୂଳଭିତ୍ତି । ଏହାରି ଉପରେ ଆମର ଜାତୀୟ ବିଶାଳ ସୌଧ ନିର୍ମିତ ହୋଇଛି । ଏଥିରେ ଅଭାବ ହେଲେ ଜାତିର ମେରୁଦଣ୍ଡ ଭାଙ୍ଗି ପଡ଼ିବ । ଜାତୀୟ ସୌଧ ଧ୍ୱଂସ ହୋଇଯିବ ।

ପରହିତ, ପରୋପକାର ଜାତୀୟ ଐକ୍ୟ ସୌଧର ଏକ ଦୃଢ଼ସ୍ତମ୍ଭ । ଏହି କାରଣରୁ ଆମ ପୁରାଣମାନଙ୍କରେ ବାରଂବାର ଏହାର ଉଲ୍ଲେଖ ଦେଖାଯାଏ । ବିଷ୍ଣୁକେଶରୀ ପୁରାଣରେ ମହର୍ଷି ଦଧୀଚି ମାନବ ଜୀବନରେ, ଜାତୀୟ ଐକ୍ୟରେ ପରୋପକାରର

ସୁପ୍ରତିଷ୍ଠିତ ସ୍ଥାନର ସୂଚନା ଦେଇଛନ୍ତି । ମହର୍ଷି କହୁଛନ୍ତି— ପର ଉପକାର ଲାଗି ମୁଁ ଜୀବନ ତ୍ୟାଗ କରିବି । ମୋର ଧମନୀରେ ଯେତେ ରକ୍ତବିନ୍ଦୁ ବହୁଛି ସେ ସବୁ ପର ସକାଶେ ଉତ୍ସର୍ଗ କରି ଦେଇଛି । ପର ଉପକାର ପାଇଁ ମୁଁ ସର୍ବଭୋଗ ତ୍ୟାଗ କରିପାରେ । ପରପାଇଁ ସମଗ୍ର ବିଶ୍ୱ ଅବହେଳା କ୍ରମେ ବନ୍ଦୀହୋଇ ରହିଛି । ପରହିତ ପାଇଁ ମୁଁ ଏ ସ୍ଥିର ଜୀବନକୁ କାହିଁକି ଦାନ ନ କରିବି ?" ଏହି ମହାନ୍ ତ୍ୟାଗର ଭିତ୍ତି ଉପରେ ମାନବ ସମାଜର, ଜାତୀୟ ଜୀବନର ଯାବତୀୟ ଉନ୍ନତି ନିର୍ଭର କରୁଛି । ଏହିହେତୁ ମହର୍ଷି ଦଧୀଚି ନିଜର ଜୀବନକୁ ସମାଜର କଲ୍ୟାଣ ପାଇଁ, ସାମ୍ରାଜ୍ୟର ଐକ୍ୟପାଇଁ ଦାନ କରିଥିଲେ । ଆମର ପୁରାଣମାନଙ୍କରେ ଏହିପରି ମହାନ୍ ତ୍ୟାଗର ବହୁ ଉଦାହରଣ ଦିଆଯାଇଛି । ସମାଜର କଲ୍ୟାଣ, ସମାଜର ଐକ୍ୟ, ଦେଶର ଐକ୍ୟ ରକ୍ଷା ହିଁ ଏହି ଚରିତ୍ରଚିତ୍ରଣର ମୁଖ୍ୟ ଲକ୍ଷ୍ୟ । ସ୍ୱାର୍ଥତ୍ୟାଗ ଜାତୀୟ ଐକ୍ୟକୁ ବାନ୍ଧି ରଖିଛି କହିଲେ ଚଳେ । ଏହି ଲକ୍ଷ୍ୟରେ ବହୁ ମହାତ୍ମା ଆମର ପୁରାଣ ମାନଙ୍କର ପଦାଙ୍କଅନୁସରଣ କରି ସ୍ୱାର୍ଥତ୍ୟାଗ କରି ଯାଇଛନ୍ତି । ଉତ୍କଳମଣି ଗୋପବନ୍ଧୁଙ୍କ ବାଣୀ ଜାତୀୟ ଐକ୍ୟର ଭିତ୍ତିକୁ ସୁଦୃଢ଼ କରୁଛି । "ନିଜ ସ୍ୱାର୍ଥଲାଗି ଜାତ ନୁହେଁ ହିନ୍ଦୁ, ବିଶ୍ୱହିତେ ତାର ପ୍ରତି ରକ୍ତବିନ୍ଦୁ ।" ପୁଣି, "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ । ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼, ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।" ଏହି ଭାବ ଏହି ଆବେଗ ପୂର୍ଣ୍ଣ ନିଃସ୍ୱାର୍ଥ ପ୍ରାର୍ଥନା ଭାରତୀୟ ଜାତୀୟ ଐକ୍ୟର ବଳିଷ୍ଠ ବନ୍ଧନସୂତ୍ର । ସ୍ୱାମିଜୀ କହିଥିଲେ—ସମସ୍ତେ ସଦର୍ପେ କହ, "ଭାରତବାସୀ ସମସ୍ତେ ମୋର ଭାଇ, ଭାରତବାସୀ ମୋର ପ୍ରାଣ । କହ ଭାଇ ଭାରତର ମୃତ୍ତିକା ମୋର ସ୍ୱର୍ଗ, ଭାରତର କଲ୍ୟାଣରେ ମୋର କଲ୍ୟାଣ ।" ଏହି ଉଦ୍‌ବୋଧନ ଆମ ପୁରାଣମାନଙ୍କର ବାରଂବାର ପ୍ରଗୁରିତ ହୋଇଛି ।

---

# ॥ ଦଣ୍ଡକାର ଲୁହ ॥

## ସତ୍ୟାନନ୍ଦ ବେହୁରା

[ ଓଡ଼ିଆ ସାହିତ୍ୟର ଜଣେ କୃତିତ୍ୱ ସମ୍ପନ୍ନ ଔପନ୍ୟାସିକ ଓ ଗାଳ୍ପିକ ଶ୍ରୀ ସତ୍ୟାନନ୍ଦ ବେହୁରା, ତାଙ୍କ ରଚିତ ଅଗଣିତ ପୁସ୍ତକ ଓଡ଼ିଶାର ଘରେ ଘରେ ପଠିତ ଓ ପ୍ରଶଂସିତ କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନବ୍ୟାପୀ ସେ ସାହିତ୍ୟ ସାଧନା କରି କରି ଏବେ ଆଂଶିକ ଭାବେ ଶ୍ରାନ୍ତ ଓ କ୍ଲାନ୍ତ । ବିଶେଷ କରି ତାଙ୍କ ରଚିତ 'ସାବିତ୍ରୀ ମା', 'ଶ୍ରୀମତୀ ନାଏକଙ୍କ ବୈଠକଖାନା' ଇତ୍ୟାଦି ଉପନ୍ୟାସ ଓ 'ସ୍ୱର୍ଣ୍ଣ ପ୍ରଦୀପ' କ୍ଷୁଦ୍ରଗଳ୍ପ ସଂକଳନ ଓଡ଼ିଆ ସାହିତ୍ୟର ଚମତ୍କାରପ୍ରଦ ସୃଷ୍ଟି । ବର୍ତ୍ତମାନ କଟକଠାରୁ ବହୁ ଦୂରରେ କୋରାପୁଟ ଜିଲାର ଅନ୍ଧାରୀ ମୁଲକରେ ପଡ଼ିରହି ମଧ୍ୟ ସେ ସନ୍ନ୍ୟାସୀ ଭଳି ସାହିତ୍ୟ ସେବାରେ ଆତ୍ମୋତ୍ସର୍ଗ କରିଛନ୍ତି । ସଂ. ବନଫୁଲ ]

କୁନ୍ଦବଣି ଗ୍ରାମ୍ କେଲ । ନଦୀ ନୁହେଁ କିନ୍ତୁ ମଧ୍ୟପ୍ରଦେଶର ସୀମାରୁ ବାହାରିଥିବା ଏକ ନାଳ । ଦଣ୍ଡକାର ଅଶ୍ରୁ ବୋଲି ଜନଶ୍ରୁତି । ବର୍ଷାଦିନେ ତାହା ଉଚ୍ଛଳ । ବସନ୍ତରେ ତାର ଅଙ୍ଗ କୃଶ । ଦଣ୍ଡକାର ମୃତ୍ୟୁ ଘଟିଥିଲା ପୁଣି ଏହି ବସନ୍ତରେ । କୁନ୍ଦବଣି ବହିଆସେ ଅସମ୍ଭାଳ ହୋଇ ଗୈରିକ ବସନରେ, ବର୍ଷାର ସମ୍ଭାର ଧରି । ତାକୁ ବି ରୋକ ଦେଇଛି ଦଣ୍ଡକା ଯୋଜନା । ବନ୍ଧା ହୋଇଛି ଉମରକୋଟ-ଠାରୁ ଚଉଦ କିଲୋମିଟର୍ ଦୂରରେ । ତାହାରି କୂଳରେ ଭରଣ୍ଡି ଗାଁଟି । ରୋଜନା ଯାଏ ରାଇମନ, ଘସିଆ ଗଣ୍ଡାର ଝିଅ, ପୂରା କୂଳକୁ ଗାଈ-ଛେଳି ଧରି । ବେଉସା ତାର ଏଇଟା । ଗାଁର କେତେ ଲୋକଙ୍କ ଗାଈ-ଛେଳି ସେ ଚରାଏ । ସକାଳେ ଗୋଠ କରାଏ । ଜଙ୍ଗମଙ୍କୁ ଛାଡ଼ିଦେଇ ସାଙ୍ଗ ମେଳରେ ରହେ । ଗାଁର କେତେ ସ୍ତ୍ରୀ ପୁରୁଷ ପିଲା ଗୋଠ ନଅନ୍ତି । ହସ୍ତୁ ପିଲାଟା ସେହି ଗାଁର । ରାଇମନର ଦୋସ୍ତ ସିଏ । ଦୁହିଁଙ୍କର ମନ ମିଳେ । ଗୋଠ କରନ୍ତି ଏକାଠି । ସନ୍ଧ୍ୟାବେଳ ଜୀବନ ।

ପେଜ୍ ବେଳାକୁ ଏହି ଜଙ୍ଗମଙ୍କୁ ନେଇ ସେମାନେ ଘରକୁ ଫେରନ୍ତି । ପେଜ୍ ଖାଇ ଘଣ୍ଟାକ ପରେ ଫେର୍ ସେମାନଙ୍କୁ ଧରି ଦୋସ୍ର ଚରା ଭୂଇଁକି ଯା'ନ୍ତି । ସଞ୍ଜରେ ଫେରି ମାଲିକଙ୍କ ଘରକୁ ଯାଇ ତାଙ୍କ ଗୃହିଣୀମାନଙ୍କ ଠାରୁ ଭାତ, ଜାଉ, ଚାଉଳ, ମାଣ୍ଡିଆ ଆଦି ଧରି ଘରକୁ ଯା'ନ୍ତି । ମୂଲ ଇଏ ତାଙ୍କର ।

ନଈ ଅଡ଼ଡ଼ା ଉପରେ ଡଙ୍ଗର ଜମି । ଘସିଆ ବନେଇଛି କାହାଠୁ ଅନୁମତି ନ ନେଇ । ଢେର୍ ଦିନ ହୋଇ ଗଲାଣି । ଜଙ୍ଗଲ୍ ପଡ଼ିଛି-ଦଣ୍ଡକାରଣ୍ୟ । ଯିଏ ସଫାକରି ଜମି ବନେଇଲା, ସେଇଟା ତାର । ପରେ ରିଭିନେ ଆସିଲେ ତାକୁ ଜବର ଦଖଲ କରିଥିବା ଅପରାଧରେ ଜୋରିମନା କରିବ । ସେ କଥା ପଛେ ହେବ । ଆଗ ସିଏ ଫସଲ କରି ଖାଇବ । ଜମିହାନ ସିଏ ।

ରିକଣି କ ଫାରେଷ୍ଟ ଆସନ୍ତି । ଏମାନେ କ'ଣ ଟିକେ ତାଙ୍କର ହାତ ସୁଖ କରିଦେଲେ ଫେରିଯାନ୍ତି ।

ତାଙ୍କୁ କେହି ନଜର ଦିଅନ୍ତି ନାହିଁ । ଖଟ ଚଟୁଳ କେହି କାହା ନାଁରେ କରନ୍ତି ନାହିଁ । ସଚୋଟ ଲୋକ । ଛି, ସରସ୍ୱତୀ ଏକ ଠାକୁରାଣୀ ବୋଲି ଘସିଆ ଜାଣିଛି । ସିଏ କୁଆଡ଼େ ବିଦ୍ୟାଦାନ କରନ୍ତି । ଗାଁରେ ହାଇ ସ୍କୁଲ ହୋଇଛି । ପିଲାଙ୍କୁ ପାଠ ପଢ଼ିବାକୁ କେହି ପଠାନ୍ତି ନାହିଁ । ଯିଏ ବା ଯାଏ ସିଏ ହନୁପରି ଫେରି-ଆସେ । ଶିକ୍ଷକ ତାଙ୍କୁ ଦୁଇମାସ ପଢ଼ାଇଲେ । ବ୍ୟଞ୍ଜନାନ୍ତ ଅନେକ ଅକ୍ଷର ପରେ ର ଅକ୍ଷରଟି ପାଟିରେ ଜମା ପଶିଲା ନାହିଁ । ଶିକ୍ଷକ ଥରେ ଖୁନ୍ଦାଟିଏ ଦେଲେ ହରକ୍ତରେ । ହନୁଙ୍କର ସରସ୍ୱତୀ ଖୁନ୍ଦାଖାଇ ଖମଣ ଓ ଭାସ୍କେଲ୍ କୂଳରେ ଜାନୁଯୌବନ ଦେଖାଇ ବୁଲିବା ଆରମ୍ଭ ହେଲା । ଖେଟଡ଼୍ ହନୁ ।

ଆଉ ଗାଇମନ, ଘସିଆ ଗଣ୍ଡାର ଟୋକାଟା । ସିଏ ପାଠ କ'ଣ ପଢ଼ିବ ? ମାଷ୍ଟ୍ରେ ଓ ସାହି ସାହି ଘର ଘର ବୁଲି ପିଲାଙ୍କୁ ଡାକଲେ । ବାପ ମା'ଙ୍କୁ ଫୁସୁଲା ଫୁସୁଲି କଲେ । ନିରକ୍ଷରତା ଉପରେ ଟିକସ ବସୁଛି ବୋଲି ଧମକାଇଲେ । କିଏ ଶୁଣିଲା କାହିଁ ? ଟୋକାଟା ପାଠ ସିନା ପଢ଼ିଲା ନାହିଁ । ପିଲାଟି ଗୁଣର, ବୁଦ୍ଧିମନ୍ତ । ଏବେ ତ ଅଦୃଷ୍ଟ ରଜା । ବୟସ ହେଲେ ନିଶ୍ଚୟ ସୁଗୃହିଣୀ ହେବ । ସବୁ କଥାରେ ସେ ହଁ ଭରିବ । ହଗୁରବନ୍ତ ଟୋକାଟା ।

ହନୁ ଆଉ ସିଏ ଭାରି ସାଙ୍ଗ । ହସଖେଳରେ ମାତନ୍ତି । ଭାସ୍କେଲ୍ ନଈରେ ଯେଉଁଠି ଗୁଡ଼ିଏ ଅଣ୍ଟୁଏ ପାଣି ଥାଏ, ସେଠି ବୁଡ଼ନ୍ତି । କି ଆନନ୍ଦ ! ସିଏ କ'ଣ ପାଇବେ ଆର୍ମଷ୍ଟ୍ରଙ୍ଗ୍ ଚନ୍ଦ୍ରରେ ପହଞ୍ଚି ମାଟି ପଥର ଗୋଟେଇଲା କି ନବାଡ କକ୍ସ୍ ଚନ୍ଦ୍ରକୁ କାଖରେ ଜାକି ବୁଲିଲା ? ସ୍ୱପ୍ନର ଧାର ଧାରନ୍ତିନି ସିଏ । ଚନ୍ଦ୍ରରେ ବସତି କରିବାକୁ ଯଦି କିଏ ନିମନ୍ତ୍ରଣ କରେ ସିଏ କହିବେ ଓଲଟି—ତମେ ଯାଅ, ହେଲେ ଦେଖିବ । ଯେମିତି ତମେ ନବାଡର ହାବୁଡ଼େ ନ ପଡ଼ । ଦଣ୍ଡକା କୁଆଡ଼େ ସେହି ବଂଶର ଜଣେ ।

ଏଇ ଗାଇମନର ବାପ ଘସିଆ ଗଣ୍ଡା ହାତରେ ତାର ନଅାଁ ଖଣ୍ଡା, କାନରେ ଗଅାଁ ଠେଙ୍ଗୁଛି ଅରୁଆଗଞ୍ଜେଇ ଫୁଲ, ଧୂପ ଆଉ ପାରୁଆ ଚଅାଁ ଖଣ୍ଡେ । ପୂଜା କରିବ । ମାହାପ୍ରଭୁଙ୍କୁ ଚଅାଁଟାକୁ ବଳିଦେଇ ମନାସିବ—ହନୁର ବୁଅାର ଗାଈ ରକତ ଛେରୁ, ଦୁଧରେ ରକତ ବାହାରୁ । ସେ ମରୁ । ମୋର ଦୁଃଖେକଷ୍ଟେ ପଡ଼ କମାଣି କରିଥିବା ମାଣ୍ଡିଆ କସର କାହିଁକି ତା' ଗାଈ ଖାଇ-ଦେଲା ! ଏଇଟା କପଟ ବୁଦ୍ଧି ତମେ ମାହାପ୍ରଭୁ ବୁଝିବ । ଦୋଷୀକି ତ ତମେ ଦଣ୍ଡଦିଅ । ମୋ ପିଲା ଟୋକାଙ୍କ ବିଷୟ ତମକୁ ମୁଁ କ'ଣ ବା କହିପାରିବି ? ତମେ ତ ସବୁ ବୁଝୁଛ । ତମର ନ୍ୟାୟରେ ଏ ପୃଥିବୀ ଚଳୁଛି ।

ଭାସ୍କେଲ୍ ନଈରୁ ଚଳନାଟାକରେ ପାଣି ଆଣୁ-ଥିଲାବେଳେ ଗାଇମନ ଅଦୂରରେ ରହି ତାହା ଲକ୍ଷ୍ୟ କରୁଥିଲା । ପୂଜା ସରି ନ ଥିଲା । ସିଏ ଆସି କହିଲା—ବାବା, ତୁ କସ୍ ପାଇଁ ପୂଜା କରୁଛୁ ?

ତୋର କସ୍ ହେଲା ?

ନାଇଁ ବାବା, ତୁ ହନୁଘର ଗାଈ ଆମ ମାଣ୍ଡିଆ କସର ଖାଇଗଲା ବୋଲି ପୂଜା କରୁଛୁ ନା !

ସେଟା ବାବା ତୁ କରନା । ହନୁ ମତେ କହୁଥିଲା—ତା ବାବା ସେଇ ଗାଈଟାକୁ ଗୁବ୍‌ଗ୍ରାଁର ବଙ୍ଗାଳୀଟାକୁ ବିକି ଦେଲାଣି । ସିଏ ପରା ଆଜି ତାକୁ ଟରେଇବାକୁ ଆଣିନି । ତୁ ମାହାପ୍ରଭୁଙ୍କୁ କହ—ଏ ବର୍ଷ ଆମର ପାଚ ଭଲ ଆସୁ । ଆମେ ଭଲରେ ରହିବା ।

ଏଁ ଏ ବଙ୍ଗାଳୀକି ବିକିଲା !!

କାଲି ତ ବିକିଲା । ପାଞ୍ଚକୁଡ଼ି ଦଶ୍‌ଟଙ୍କାକୁ ବିକିଛି ପୁଣି !

ମୁଣ୍ଡରେ ହାତଦେଇ ବସିଲା, ପାଣିଚଳନାଟାକୁ ତଳେ ରଖିଦେଇ ଘସିଆ ।

ହେମିତି କଅାଁ ବସିଲୁ ବାବା ! ମାହାପ୍ରଭୁକୁ ପୂଜା ଦେ । ଏ ବର୍ଷ ଆମର ପାଚ ଭଲ ଆସିବ । ପାଣି ଭଲ ମାରୁଛି । ମାହାପ୍ରଭୁ ଦୟାକଲେ ତୁ ଆମପାଇଁ

ଏଥର ନୂଆଁଖାଇ କ ଖଦାପଠା ଦିନ ଆସିବୁ । ଗୋଟାଏ ବକଡ଼ା ଦିନଦା କ'ଣ କହୁଛୁ ?

ଅଚ୍ଛା ଅଚ୍ଛା, ତୁ ଯା । ଛେଲମାନେ କାହାର ଖନ୍ଦ ଖାଇଯିବେ ।

ସତକୁ ସତ ସନ୍ଧ୍ୟସ୍ନାତ ଘସିଆ ପୂଜାକଲା । ବଳି ଦେଇସାରି ମୁଣ୍ଡିଆ ମାରି କହିଲା—ମାହାପ୍ରୁ, ଆମର ଭଲ ଫାଟ ଆସୁ । ଯାହା ମନଭେଁପାଞ୍ଚ ଘରୁ ଆସିଥିଲି, ତା'ହା ତମେ ଶୁଣିବନି । ମୋ ଭୁଣ୍ଡର କଥା ଏକା ଶୁଣ । ମୋ ଠେକାଠା କଥା ତମେ ଶୁଣିବ । ସିଏ ମୋଠୁ ଜନମ ହେଲେ କ'ଣ ହେଲା ମତେ ବୁଝି ବଢାଏ ସିଏ । ତମେ ଆଉ ବଲୁର ଗାଈକ ପାଙ୍ଗିବନି । ସେ ରକତ ଛେଣବନି । ରକତ ଦୁଧ ତା'ଠୁ ବାହାରିବନି । ପ୍ରଭୁ, ତୁମେ ମୋ କଥା ଶୁଣିବ ।

ବଲୁ ଯିବ ଚନ୍ଦ୍ରକୁ ? ଆର୍ମଷ୍ଟ୍ରଙ୍ଗ୍‌ର ସାଥି ହେବ ? ଦଣ୍ଡକାରଣ୍ୟର ଦାୟାଦ, ନବାତର ବଂଶଧର ଏଇ ବଲୁ । ସିଏ ବି ଚନ୍ଦ୍ରକୁ କାଖରେ ଜାକି ବୁଲିବ ଛୁଃ ଛୁଃ । ଏମିତି କ'ଣ କରିବ ମ !

ଏଇ ନବୀର୍ଯ୍ୟ ହୀନପ୍ରଭ ବଲୁ ପାଇଁ ଯେ ଘସିଆ ମାହାପ୍ରୁକୁ ଡାକିଲା । ସିଏ କ'ଣ ବୁଝିଲା ନାହିଁ । ସେଦିନ ଆଜି ନାହିଁ ? ଯାଇଛି ଦଣ୍ଡକା, ଯାଇଛି ନବାତ । ତାଙ୍କର ରାଜ୍ୟରେ ଭରପୂର ଏବର ଏଇ ଜଙ୍ଗଲ । କେନ୍ଦ୍ର ସରକାରଙ୍କ ଦୟାରୁ ତାହା ପୂର୍ବବଙ୍ଗର ଶରଣାର୍ଥୀଙ୍କ ପାଇଁ ଆବାଦ୍ କରାଯାଉଛି । ଜଙ୍ଗଲ ଅଛି । ହେଲେ ଏଇ ଜଙ୍ଗମଙ୍କର ଅବସୂବ ଅଛି । ନାହିଁ ପ୍ରଜ୍ଞା, ନାହିଁ ବୀର୍ଯ୍ୟ, ନାହିଁ ଉନ୍ମାଦନା, ନାହିଁ କର୍ମ କରିବାର ଉତ୍ସାହ ।

ହସ୍ତୁ, ଏ ହସ୍ତୁ, ତୋ ବାବାକୁ କହିଦବୁ—ମୋ ବାବା, ତା ନାଁରେ ପୂଜା କଲାନି । ଦେଖ, ଆଉ କେବେ ତମର ଗାଈ ବଇଲା ଯେମିତି ଆମ ଖନ୍ଦ ନ ଖା'ନ୍ତି ।

ସତେ ?

ହଁ ରେ । ମୁଁ ଜମା ମିଛକଥା କହୁନି । ସତ କହୁଛି । ମୋ ବାବା ଘରି ଭଲଲୋକ । ତାର କିଏ ନୋକ୍‌ସାନ୍ କଲେ ସିଏ ମାହାପ୍ରୁଙ୍କୁ ଜଣାଏ ।

ଭଲ କଥା ତୁ କହିଲୁ ରାଇମନି । ମୋ ବାବା ତ ଗୁନିଆ ହୋଇ ଶସ୍ତାରେ ସେ ବଙ୍ଗାଳୀଙ୍କ ବିକଦେଲା । ଭଲ ଗୁର୍ସ ସେ ଦଉଥିଲା । ଦାମୁଡ୍‌ଠା ଭଲ ଥିଲା । ତୋ ବାବା ପାଙ୍ଗିଦବ ବୋଲି ଫର ଦେଇଦେଲା । ମୋ ବାବା ତ ଆଜ କୁକୁଡ଼ା ଚଆଁ ଖୋଜି ଯାଇଛି । ସିଏ ବି ପୂଜା କରିବ । ଗାଈଟା ଭଲ ରହୁ । ନ ହେଲେ ବଙ୍ଗାଳି ଫେରେଇ ଦବବୋଲି କହି ଯାଇଛି ।

ଦୁର୍ନଯୂ ବର୍ଷା । ଏଭଳି ବର୍ଷା ସଚରାଚର ହୋଇ ନ ଥାଏ । ଏକା ଘଣ୍ଟାକେ ଦଶ ବାର ଇଞ୍ଚ ବର୍ଷା ।

ମାଟିବନ୍ଧା ଷ୍ଟେକେଲ୍ ଗମ୍ । ସମ୍ଭାଳିବ ଦଣ୍ଡକାର ଅଶ୍ରୁକୁ ? ସିଏ ତ ବେଶୀ କାନ୍ଦିଲା ଖାସ୍ ଏଇ ଆର୍ମଷ୍ଟ୍ରଙ୍ଗ ଯୋଗୁଁ । ଭୁଷ୍‌ଡ଼ିଲା, ଘଳଆ ପଡ଼ିଲା ଠାକୁ ଠା । ଅନଉଁ ଅନଉଁ ମଣିଷର ମର୍ମାନ୍ତିକ ଉପହାସ କରି, ଆପୋଲୋ-୧୧ର ଗତିକ ବିଦ୍ରୂପ କରି ପାଣିସ୍ରୋତ ପ୍ରବଳ ବେଗରେ ଧାଇଁଲା । ଘସିଆର ପାରୁଆ ଚଆଁ ଖାଇ ଷ୍ଟ୍‌କେଲ୍‌ର ହାଇଜା ହେଲା । ଆଉ ବଲୁର ପାରୁଆ ଚଆଁଟା ଆୟୁଷ ଥିଲା ବୋଲି ବଞ୍ଚିଗଲା ।

ଘସିଆର ଫସଲ ଉପରେ ଆଣୁଏ ବହଳରେ ବାଲିଚର ।

—*—



ଭାରି ଭଲ ଲାଗୁଛି ବାପା

ଏହି ମଣିରାଜ ବିସ୍କୁଟ-ଲଜେଞ୍ଜ
ମୋ ପାଇଁ ଆଉ ଆଣିବ













# ।। ରାୟ ରାମାନନ୍ଦ ।।

## ଡକ୍ଟର ଶ୍ରୀ କୃଷ୍ଣଚରଣ ବେହେରା

[ ଡକ୍ଟର ବେହେରା ଏକାଧାରେ ଜଣେ ଗବେଷକ, ପ୍ରାବନ୍ଧିକ, ସମାଲୋଚକ, କବି, ଗାଳ୍ପିକ ଓ ନାଟ୍ୟକାର । ତାଙ୍କ ରଚିତ ଗବେଷଣା ପୁସ୍ତକ, 'ଓଡ଼ିଆ ଉପନ୍ୟାସ', ସମାଲୋଚନା ପୁସ୍ତକ 'ପ୍ରଜାତି ସାହିତ୍ୟ', କବିତା ପୁସ୍ତକ "ଗ୍ରୀ' କପରେ ଝଡ଼" '୫୪ ଘରବାଇ ଲେନ୍' ଓ ଅନ୍ୟାନ୍ୟ ଯଥା ଅଶ୍ଳୀଳତା ବିପକ୍ଷରେ, ଯଥା ନଳସ୍ୟ ଦମୟନ୍ତୀ ଇତ୍ୟାଦି ବହୁ ଜନପ୍ରଶଂସିତ ଓ ପଠିତ । ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କର ଯତ୍ନ, ଅଧ୍ୟବସାୟ, ସାଧନା ବାସ୍ତବିକ ପ୍ରଶଂସନୀୟ । ସ. ବନଫୁଲ ]

ମଧ୍ୟଯୁଗର ଭାରତୀୟ ସଂସ୍କୃତିକୁ ଯେଉଁ କେତେଜଣ ମନୀଷୀ ଆପଣା ପ୍ରତିଭା ଓ ସାଧନା ବଳରେ ସମୃଦ୍ଧ କରି ଯାଇଛନ୍ତି, ସେମାନଙ୍କ ମଧ୍ୟରୁ ଉତ୍କଳ-ଖଣ୍ଡର ରାୟ ରାମାନନ୍ଦ ଅନ୍ୟତମ । ତାଙ୍କଠାରେ ପାଣ୍ଡିତ୍ୟ ଓ ଭକ୍ତି ଭାବର ଅପୂର୍ବ ସମନ୍ୱୟ ସାଧିତ ହୋଇଥିଲା । ସଂସ୍କୃତ ଓ ବ୍ରଜବୋଲି ଭାଷାରେ ସେ ଥିଲେ ଜଣେ ଉଚ୍ଚ କୋଟୀର ସାହିତ୍ୟ-ସ୍ରଷ୍ଟା । ବୈଷ୍ଣବ ଧର୍ମ ଓ ରସତତ୍ତ୍ୱ ବିଶ୍ଳେଷଣରେ ତାଙ୍କର ଥିଲା ଅସାଧାରଣ ଦକ୍ଷତା । ଷୋଡ଼ଶ ଶତାବ୍ଦୀର ଏହି ଯୁଗଜନ୍ମା ପୁରୁଷ କେବଳ ଆମ ଉତ୍କଳ-ଖଣ୍ଡରେ ନୁହେଁ, ସମଗ୍ର ଭାରତ-ବର୍ଷରେ ଥିଲେ ସୁପରିଚିତ । 'ରାୟ ରାମାନନ୍ଦ' ଗ୍ରନ୍ଥ-ଲେଖିକା ଶ୍ରୀମତୀ ସରଳା ଦେବୀଙ୍କ ଭାଷାରେ— "ଓଡ଼ିଶାରେ ରାମାନନ୍ଦ ଜନ୍ମି ନ ଥିଲେ, ଚୈତନ୍ୟ ପରବର୍ତ୍ତୀ ଓଡ଼ିଆ ବୈଷ୍ଣବ କବିମାନେ ରାଗ-ମାର୍ଗୀୟ କାବ୍ୟ ଗ୍ରନ୍ଥ ଲେଖିବାର ପ୍ରଣାଳୀ ପାଇ ନ ଥାନ୍ତେ । × × × ଓଡ଼ିଶାରେ ଚୈତନ୍ୟ ଧର୍ମର ମୂଳ-ବ୍ୟାଖ୍ୟାକାର ଥିଲେ ରାୟ ରାମାନନ୍ଦ ।"

ପୁରୀଜିଲା ବ୍ରହ୍ମଗିରି ଅଞ୍ଚଳରେ ବେଣ୍ଟପୁର ନାମକ ଗ୍ରାମରେ ଯୁବରାମାନନ୍ଦଙ୍କର ଜନ୍ମ ହୋଇଥିଲା, ପଞ୍ଚଦଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ । ତାଙ୍କର ପିତା ଭବାନନ୍ଦ ପଟ୍ଟନାୟକ ଜଣେ ବିଷ୍ଣୁଭକ୍ତ ଓ ପଣ୍ଡିତ ବ୍ୟକ୍ତି ଥିଲେ । ଶ୍ରୀଚୈତନ୍ୟଙ୍କର ମଧ୍ୟ ସେ ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ଶ୍ରୀଚୈତନ୍ୟ ଭବାନନ୍ଦଙ୍କୁ 'ପାଣ୍ଡୁରାଜ' ଏବଂ ରାମାନନ୍ଦ, ଗୋପୀନାଥ ପ୍ରମୁଖ ତାଙ୍କର ପାଞ୍ଚ ପୁଅଙ୍କୁ 'ପଞ୍ଚପାଣ୍ଡବ' ବୋଲି ଆଖ୍ୟାତ କରିଥିଲେ । ତତ୍କାଳୀନ ମାଦଳାପାଞ୍ଜିର ଅନ୍ୟତମ ଲେଖକ, ପରମ ବୈଷ୍ଣବ ଶିଖି ମହାନ୍ତି ଥିଲେ ରାମାନନ୍ଦଙ୍କର ଖୁଡ଼ୁତା ପୁଅ ଭାଇ ଏବଂ ବିଦୁଷୀ ମାଧବୀ ଦାସୀ ଥିଲେ ତାଙ୍କର ଖୁଡ଼ୁତା ଝିଅ ଭଉଣୀ । ଏଇଥିରୁ ଜଣାପଡ଼େ—ରାମାନନ୍ଦଙ୍କ ବୁନିଆଦି ପରିବାରରେ ଶାସ୍ତ୍ର ଚର୍ଚ୍ଚା ଓ ବୈଷ୍ଣବ ଦର୍ଶନ ଆଲୋଚନାର ମୂଳଦୁଆ ପୂର୍ବରୁ ଦୃଢ଼ୀଭୂତ ହୋଇଥିଲା । ପରବର୍ତ୍ତୀ କାଳରେ ରାମାନନ୍ଦ ସେହି ଉନ୍ନତ ପରିବାରର ଉପଯୁକ୍ତ ଦାୟାଦ ରୂପେ ନିଜକୁ ପ୍ରତିଷ୍ଠିତ କରିଥିଲେ ।

କେବଳ ଶାସ୍ତ୍ର-ସାଧନାରେ ନୁହେଁ, ଅସ୍ତ୍ର ସାଧନାରେ ମଧ୍ୟ ରାମାନନ୍ଦ କୃତିତ୍ୱ ଅର୍ଜନ କରିଥିଲେ । ବୀର୍ଯ୍ୟ, ବିଦ୍ୟା ଓ ବସ୍ତୁ-ବିଭୂତିରେ ସେ ଥିଲେ ସମୃଦ୍ଧ ଓ

ସମାଶ୍ରିତ । ଗୁଣ ଶବ୍ଦେ ଗୁଣିଆ । ସେଥିପାଇଁ ସୂର୍ଯ୍ୟ ବଂଶୀୟ ଉତ୍କଳ-ସମ୍ରାଟ ଗଜପତି ପ୍ରତାପରୁଦ୍ରଦେବ ଉଚ୍ଚ, ଦାୟିତ୍ୱ ପୂର୍ଣ୍ଣ ରାଜକାର୍ଯ୍ୟରେ ନିଯୁକ୍ତ କରିବା ଲାଗି ତାଙ୍କୁ ମନୋନୀତ କରିଥିଲେ । ଯୁଦ୍ଧବିଦ୍ୟା ଓ ଶାସନ-କାର୍ଯ୍ୟରେ କୃତିତ୍ୱ ଦର୍ଶାଇ ରାମାନନ୍ଦ, ଗଜପତି ପ୍ରତାପରୁଦ୍ରଦେବଙ୍କଠାରୁ 'ରାୟ' ଉପାଧି ଲାଭ କରିଥିବାର ଜଣାପଡ଼େ । ସେତେବେଳେ ଉତ୍କଳ ସାମ୍ରାଜ୍ୟର ଦକ୍ଷିଣପ୍ରାନ୍ତ ବିଦ୍ୟାନଗର ବା ବିଜୟ-ନଗରର ସେ ଥିଲେ ଶାସନ-କର୍ତ୍ତା । ଗୋଦାବରୀ ନଦୀ କୂଳରେ ରାଜମହେନ୍ଦ୍ରୀ ନଗରରେ ତାଙ୍କର କାର୍ଯ୍ୟାଳୟ ଅବସ୍ଥିତ ଥିଲା ।

ରାୟ ରାମାନନ୍ଦ ଥିଲେ ଗୃହୀ ଓ ସଂସାରୀ । କିନ୍ତୁ ପଦ୍ମପତ୍ର ଉପରେ ଜଳବିନ୍ଦୁ ଭଳି ସେ ଥିଲେ ଅନାସକ୍ତ ଓ ଉଦାସୀନ । ତେଣୁ ଗୃହ ସଂସାର ମଧ୍ୟରେ ସନ୍ନ୍ୟାସୀ ପରି ସେ ଜୀବନ ଯାପନ କରୁଥିଲେ । ଭୁମାୟ ଆନ-ନ୍ଦରେ ତାଙ୍କର ମନପ୍ରାଣ ପରିପୂର୍ଣ୍ଣ ଥିଲା । କେତେ-କାଳ ପରେ ଅବସ୍ଥା ଏପରି ହେଲା ଯେ—ଶାସନ କାର୍ଯ୍ୟରେ ସେ ମନୋନିବେଶ କରି ପାରିଲେ ନାହିଁ । ଏହି ପରିସ୍ଥିତିରେ ପ୍ରେମାବତାର ଶ୍ରୀଚୈତନ୍ୟଙ୍କ ସହିତ ସାକ୍ଷାତ ଫଳରେ ତାଙ୍କ ଜୀବନର ଏକ ନୂତନ ଦିଗନ୍ତ ଉନ୍ମୋଚିତ ହୋଇଗଲା । ସେ ରାଜକାର୍ଯ୍ୟ ତ୍ୟାଗ କରି ନୀଳାଚଳ ପୁରୀ କ୍ଷେତ୍ରକୁ ଆସି ଶ୍ରୀ ଚୈତନ୍ୟଙ୍କ ସାନ୍ନିଧ୍ୟରେ ଅବସ୍ଥାନ କଲେ ।

୧୫୧୦ ମସିହାରେ ଶ୍ରୀଚୈତନ୍ୟ ଯେତେବେଳେ ପୁରୀଧାମକୁ ଆଗମନ କରନ୍ତି, ସେତେବେଳେ ଗଜପତି ପ୍ରତାପରୁଦ୍ରଦେବଙ୍କର ସଭା-ପଣ୍ଡିତ ମନୀଷୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିଲେ । ଦୁହିଁଙ୍କ ମଧ୍ୟରେ ଧର୍ମ-ଦର୍ଶନ ସମ୍ପର୍କରେ ଆଲୋଚନା ହୋଇଥିଲା । ସାର୍ବଭୌମଙ୍କ ପରାମର୍ଶ-କ୍ରମେ ଶ୍ରୀଚୈତନ୍ୟ ନିଜର ଦାକ୍ଷିଣାତ୍ୟ ଭ୍ରମଣ କାଳରେ ରାଜମହେନ୍ଦ୍ରୀଠାରେ ରାମାନନ୍ଦଙ୍କ ସହ ସାକ୍ଷାତ କରିଥିଲେ । ସେତେବେଳକୁ ରାମାନନ୍ଦ ରସିକ ବୈଷ୍ଣବ-ଭକ୍ତ ଭାବରେ ସମଗ୍ର ଦେଶରେ ସୁପରିଚିତ ହୋଇ ସାରିଥିଲେ । ସେତେବେଳକୁ ସେ ସଂସ୍କୃତରେ ପ୍ରସିଦ୍ଧ 'ଶ୍ରୀଜଗନ୍ନାଥବଲ୍ଲଭ ନାଟକ' ଏବଂ ବ୍ରଜବୋଲି ଭାଷାରେ ବହୁ ସଙ୍ଗୀତ ରଚନା କରି ସାରିଥିଲେ । ତେଣୁ ମଣି-କାଞ୍ଚନ ସଂଯୋଗ ସଦୃଶ ଶ୍ରୀଚୈତନ୍ୟ ଓ ରାମାନନ୍ଦଙ୍କର ମିଳନ ଭାରତୀୟ ଭକ୍ତି ଧାରାରେ ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା ! ବୈଷ୍ଣବର ସାଧ୍ୟତତ୍ତ୍ୱ ନିର୍ଣ୍ଣୟ, ରାଧାକୃଷ୍ଣ ତତ୍ତ୍ୱ, ପ୍ରେମବିଳାସ ବିବର୍ତ୍ତ, ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ପ୍ରଭୃତି ବିଷୟରେ ଶ୍ରୀଚୈତନ୍ୟ ଓ ରାମାନନ୍ଦଙ୍କ ମଧ୍ୟରେ ଯେଉଁ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ହୋଇଥିଲା, ତାହା ବୈଷ୍ଣବ ସାହିତ୍ୟ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ରାୟ ରାମାନନ୍ଦ ଥିଲେ ବକ୍ତା—ଶ୍ରୀଚୈତନ୍ୟ ଶ୍ରୋତା । ସମସ୍ତ ଶୁଣି ସାରିଲା ପରେ ଶ୍ରୀଚୈତନ୍ୟ କହିଲେ --ରାମାନନ୍ଦ, ରାଧାକୃଷ୍ଣ-ପ୍ରେମରସ ଜ୍ଞାନରେ ତୁମେ ସିଦ୍ଧିଲାଭ କରିଛ । ଜୀଇଥିବା ପର୍ଯ୍ୟନ୍ତ ମୁଁ ତୁମର ସଙ୍ଗ ଛାଡ଼ି ପାରିବି ନାହିଁ । ଚାଲ, ନୀଳାଚଳରେ ଆମେ ଦୁହେଁ ଏକା ସାଙ୍ଗରେ ରହି କୃଷ୍ଣଲୀଳା ରସରେ କାଳ ଯାପନ କରିବା !

ରାୟ ରାମାନନ୍ଦ ଶ୍ରୀକ୍ଷେତ୍ରରେ ଜଗନ୍ନାଥବଲ୍ଲଭ ମଠରେ ଅବସ୍ଥାନ କରୁଥିଲେ । କେତେବେଳେ ଉକ୍ତ ମଠର ଉଦ୍ୟାନରେ ଶ୍ରୀଚୈତନ୍ୟଙ୍କ ସହିତ କୃଷ୍ଣ କୀର୍ତ୍ତନ କରି, ଆଉ କେତେବେଳେ ରାଜଗୁରୁ କାଶୀ ମିଶ୍ରଙ୍କ ଗୃହର ଗମ୍ଭୀରା ମଧ୍ୟରେ ମହାଭାବର ଲୀଳା-ବିନୋଦ କରି, ଆଉ କେତେବେଳେ ବା ଭକ୍ତ ପାର୍ଷଦମାନଙ୍କ ସହିତ ଶାସ୍ତ୍ରଚର୍ଚ୍ଚା ଓ ନାଟ୍ୟାଭିନୟ କରି ସେ ନିଜର ଶେଷ ଜୀବନ ପରମ ସୁଖରେ ଅତିବାହିତ କରିଥିଲେ । ଶ୍ରୀଚୈତନ୍ୟଙ୍କ ସହିତ ଗଜପତି ପ୍ରତାପରୁଦ୍ରଦେବଙ୍କର ମିଳନ ସଂଘଟନରେ ରାମା-ନନ୍ଦଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ସେତେବେଳେ ଗୌର-ପାର୍ଷଦ ବୈଷ୍ଣବ ଭକ୍ତମାନଙ୍କ

ମଧ୍ୟରେ ରାୟ ରାମାନନ୍ଦ କିପରି ଶ୍ରେଷ୍ଠ ଆସନ ଅଧିକାର କରିଥିଲେ, ତାହା 'ଚୈତନ୍ୟ ଚରିତାମୃତ' ଅନ୍ତ୍ୟ-ଲୀଳାରେ ବର୍ଣ୍ଣିତ ଗୋଟିଏ ଘଟଣାରୁ ସ୍ପଷ୍ଟ ଜଣାପଡ଼େ । ଭକ୍ତ ପ୍ରଦ୍ୟୁମ୍ନ ମିଶ୍ର ଥରେ କୃଷ୍ଣକଥା ଶୁଣିବା ଲାଗି ନିବେଦନ କରିବାରୁ ଶ୍ରୀଚୈତନ୍ୟ କହିଲେ—ମୁଁ କୃଷ୍ଣକଥା ଜାଣେନା । ତାହାସବୁ ରାମାନନ୍ଦଙ୍କୁ ଜଣା । ତୁମେ ତାଙ୍କର ପାଖକୁ ଯାଅ ! ପ୍ରଦ୍ୟୁମ୍ନ ମିଶ୍ର ରାମାନନ୍ଦଙ୍କ ଘରକୁ ଯାଇ ଶୁଣିଲେ--ଦୁଇଜଣ ପରମା ସୁନ୍ଦରୀ ଦେବଦାସୀଙ୍କୁ ନିଜେ ରାମାନନ୍ଦ ନୃତ୍ୟଗୀତ ଶିଖାଉଛନ୍ତି । ମିଶ୍ରଙ୍କ ମନରେ ସନ୍ଦେହ ଜାତହେଲା—ରାମାନନ୍ଦ କ'ଣ ପ୍ରକୃତରେ ବୈଷ୍ଣବ ଭକ୍ତ ? ତା'ହେଲେ ସାଧୁସଙ୍ଗ ନ କରି ସେ ରୂପସୀ ଯୁବତୀଙ୍କ ମେଳରେ ରହିଛନ୍ତି କିପରି ? ଶ୍ରୀଚୈତନ୍ୟଙ୍କ ନିକଟକୁ ବାହୁଡ଼ି ଆସି ପ୍ରଦ୍ୟୁମ୍ନ ମିଶ୍ର ସବୁକଥା କହିଲେ । ଶ୍ରୀଚୈତନ୍ୟ ଉତ୍ତର ଦେଲେ —ରାମାନନ୍ଦଙ୍କ ଦେହ ସିଦ୍ଧ; ମନ ନିର୍ବିକାର ଓ ଅପ୍ରାକୃତ । ରାଗାନୁଗା ମାର୍ଗରେ ସେ ଭଜନ କରନ୍ତି । ଯଦି କୃଷ୍ଣ କଥା ଶୁଣିବା ପାଇଁ ତୁମର ଇଚ୍ଛା ତା' ହେଲେ ପୁଣି ତୁମେ ତାଙ୍କ ପାଖକୁ ଯାଅ ! ପ୍ରଦ୍ୟୁମ୍ନ ମିଶ୍ର ପୁଣି ରାମାନନ୍ଦଙ୍କ ନିକଟକୁ ଗଲେ ଏବଂ ତାଙ୍କଠାରୁ ବିସ୍ତାରିତ ଭାବରେ କୃଷ୍ଣକଥା ଶୁଣି ହୃଦୟଙ୍ଗମ କଲେ ଯେ—ରାମାନନ୍ଦ ସାଧାରଣ ମନୁଷ୍ୟ ନୁହଁନ୍ତି; ସେ 'କୃଷ୍ଣଭକ୍ତ-ରସମୟ' ।

ଶ୍ରୀଚୈତନ୍ୟ, କୃଷ୍ଣ-ଲୀଳା ବିଷୟକ ଯେଉଁ ଗ୍ରନ୍ଥର ରସାସ୍ୱାଦନ କରୁଥିଲେ, ତାହା ପ୍ରଥମେ ରାମାନନ୍ଦଙ୍କ ଦ୍ୱାରା ପରୀକ୍ଷିତ ହେଉଥିଲା ଏବଂ ତାଙ୍କର ସୁପାରିସ୍ କ୍ରମେ ଶ୍ରୀଚୈତନ୍ୟଙ୍କ ନିକଟକୁ ପ୍ରବେଶାଧିକାର ଲାଭ କରୁଥିଲା । ରୂପ ଗୋସ୍ୱାମୀଙ୍କ ଲିଖିତ 'ବିଦଗ୍ଧ-ମାଧବ' ଓ 'ଲଳିତ ମାଧବ' ନାମକ ଦୁଇଖଣ୍ଡି ନାଟକ ଏହି ରୀତିରେ ଶ୍ରୀଚୈତନ୍ୟଙ୍କ ଦୃଷ୍ଟିପଥକୁ ଆସିଥିବାର ଜଣାପଡ଼େ । ଏହିଥିରୁ ରାମାନନ୍ଦଙ୍କର ଗୁଣଗ୍ରାହିତା ଏବଂ ଶାସ୍ତ୍ର-ମୂଲ୍ୟାୟନ ଶକ୍ତି ପ୍ରମାଣିତ ହୋଇଥାଏ ।

ରାୟ ରାମାନନ୍ଦଙ୍କ ଲିଖିତ 'ଶ୍ରୀଜଗନ୍ନାଥ ବଲ୍ଲଭ ନାଟକ'ଟି ଶ୍ରୀଚୈତନ୍ୟଙ୍କର ଅତି ପ୍ରିୟ ଥିଲା । ରାଧାକୃଷ୍ଣ-ଲୀଳା ବିଷୟକ ଏହି ପଞ୍ଚାଙ୍କ ନାଟକକୁ ରାମାନନ୍ଦ, ଗଜପତି ପ୍ରତାପରୁଦ୍ରଦେବଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏହି ନାଟକଟି ସେତେବେଳେ ବାରମ୍ବାର ଅଭିନୀତ ହୋଇଥିବାର ପ୍ରମାଣ ମିଳେ ଏବଂ ତହିଁରେ ନିଜେ ରାମାନନ୍ଦ ଅଭିନୟ କରିଥିବାର ଜଣାପଡ଼େ । ଏହା ବ୍ୟତୀତ ରାମାନନ୍ଦ 'ଟୀକା ପଞ୍ଚକମ୍', 'ଧର୍ମ ନିରୂପଣ'; 'ଦଣ୍ଡାତ୍ମିକାଳିକା', 'ଗୌରପଦ ତରଙ୍ଗିଣୀ' ପ୍ରଭୃତି ଗ୍ରନ୍ଥ ଲେଖି ଯାଇଛନ୍ତି । ସେ ମଧ୍ୟ ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ଥିଲେ । ତାଙ୍କର 'ଶ୍ରୀଜଗନ୍ନାଥ ବଲ୍ଲଭ ନାଟକ'ରେ ବିଭିନ୍ନ ରାଗର ସଙ୍ଗୀତମାନ ରହିଛି ! ତାହା ସଙ୍ଗେ ସଙ୍ଗେ ରାଧାକୃଷ୍ଣ-ଲୀଳାର ବିଶିଷ୍ଟ ବିଭାବଗୁଡ଼ିକ ଘେନି ବ୍ରଜବୋଲି ଭାଷାରେ ସେ ଅପୂର୍ବ ସଙ୍ଗୀତମାନ ରଚନା କରି ଯାଇଛନ୍ତି । ତନ୍ମଧ୍ୟରେ ଗୋଟିକରୁ କିୟଦଂଶ ଶ୍ରୋତାମାନଙ୍କପାଇଁ ଏଠାରେ ଉଦ୍ଧାର କରାଯାଉଛି :—

"ପହିଲହି ରାଗ ନୟନ ଭଙ୍ଗ ଭେଲ ।
ଅନୁଦିନ ବାଢ଼ଲ, ଅବଧି ନା ଗେଲ ॥
ନା ସୋ ରମଣ, ନା ହାମ ରମଣୀ ।
ଦୁହୁଁ ମନ ମନୋଭବ ପେଷଲ ଜନି ॥

× × ×

ବର୍ଦ୍ଧନ ରୁଦ୍ର-ନରାଧିପ-ମାନ ।
ରାମାନନ୍ଦ ରାୟ କବି ଭାଣ ॥"

ଅର୍ଥାତ୍—ପ୍ରଥମେ ନୟନଭଙ୍ଗୀରେ ଅନୁରାଗ ଜନ୍ମିଲା । ଦିନକୁ ଦିନ ତାହା ବଢ଼ିବାରେ ଲାଗିଲା; ଶେଷହେଲା ନାହିଁ । ସେ ପ୍ରେମିକ କିମ୍ବା ମୁଁ ପ୍ରେମିକା ନୁହେଁ । ମନ୍ମଥ ଦୁଇଜଣଙ୍କ ମନ ପିଷ୍ଟିକଲା । × × ପ୍ରତାପରୁଦ୍ର ରାଜାଙ୍କର ମାନବର୍ଦ୍ଧନ କରି କବି ରାମାନନ୍ଦ ରାୟ ଏହା ଭଣୁଛି ।

ପୁରୀଧାମରେ ଶ୍ରୀଚୈତନ୍ୟଙ୍କର ସାଢ଼େ ତିନିଜଣ ଅନ୍ତରଙ୍ଗ ଗିରି-ପାର୍ଷଦ ଥିଲେ । ସେମାନେ ହେଉଛନ୍ତି—ସ୍ୱରୂପ ଦାମୋଦର ଗୋସ୍ୱାମୀ, ରାୟ ରାମାନନ୍ଦ, ଶିଖି ମହାନ୍ତି ଏବଂ ମହାନ୍ତିଙ୍କ ଭଗିନୀ ମାଧବୀ ଦାସୀ । ତେଣୁ ବୈଷ୍ଣବ ଧର୍ମ ତଥା ସାହିତ୍ୟ କ୍ଷେତ୍ରରେ ରାମାନନ୍ଦଙ୍କର ସ୍ଥାନ ସୁନିର୍ଦ୍ଦିଷ୍ଟ ଏବଂ ସୁପ୍ରତିଷ୍ଠିତ । ଶ୍ରୀଚୈତନ୍ୟଙ୍କ ତିରୋଧାନର ପ୍ରାୟ ବର୍ଷକ ପରେ ୧୫୩୫ ମସିହାରେ 'ଅନର୍ଗଳ ରସବେତ୍ତା', 'ମହା ଭାଗବତ ପ୍ରଧାନ' ଏହି ମହାତ୍ମାଙ୍କର ଦେହାବସାନ ହୋଇଥିଲା । 'ଚୈତନ୍ୟ ଚରିତାମୃତ'ର ବଙ୍ଗ ଲେଖକ କୃଷ୍ଣଦାସ କବିରାଜ ଯଥାର୍ଥରେ କହିଛନ୍ତି :—

"ରାମାନନ୍ଦ ରାୟେ ମୋର୍ କୋଟି ନମସ୍କାର୍ ।
ଯାର୍ ମୁଖେ କୈଲ ପ୍ରଭୁ ରସେର୍ ବିସ୍ତାର୍ ॥"

---

# ଗ୍ରନ୍ଥ ପ୍ରବେଶ

## ଖୋଲା ଝରକା

ଲେଖକ—ଶ୍ରୀ ଲକ୍ଷ୍ମୀଧର ନାୟକ
ମୂଲ୍ୟ—ତିନିଟଙ୍କା
ପ୍ରକାଶକ—ସବୁଜ ପ୍ରକାଶନୀ

ଖୋଲା ଝରକା ଓଡ଼ିଆ ବାଣୀଭଣ୍ଡାରର ବାସ୍ତବିକ ଏକ ଖୋଲା ଝରକା । କବି, ଔପନ୍ୟାସିକ, ନାଟ୍ୟକାର ଓ ଗାଳ୍ପିକ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କର ନୂତନ ଆତ୍ମପ୍ରକାଶ ।

ସୁପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ ନାୟକ ଜୀବନର ଏଇ ସୀମିତକାଳ ମଧ୍ୟରେ ଅସଂଖ୍ୟ ପୁସ୍ତକର ରଚୟିତା । ତାଙ୍କ ରଚିତ ଉପନ୍ୟାସ 'ସର୍ବହରା', ଉଦ୍‌ଭ୍ରାନ୍ତ, 'ବର୍ଷାର ଶେଷ', ସୁକାନ୍ତର ସ୍ତ୍ରୀ, ହା'ରେ ଦୁର୍ଭାଗା ଦେଶ, ମୋ ସ୍ୱପ୍ନର ସହର, ଚିରସହୀନାର ଚିଠି, ଆସିବ କେବେ ପ୍ରିୟ, ଭୁଲିଲି ସତେ ସଖୀ, କବିତା ପୁସ୍ତକ, 'ସେ', ବିରହିଣୀ, ମଧୁଛନ୍ଦା, ନାଟକ ଧର୍ମପତ୍ନୀ, ଜମିଦାର, ଲାଲଗୁରୁଜ ଇତ୍ୟାଦି ବହୁଜନ ପ୍ରଶଂସିତ । ସେ ଜଣେ ଆଜୀବନ ବିପ୍ଳବୀ । ୧୯୩୨ ମସିହାରେ ସେ ଗୃହତ୍ୟାଗ କରନ୍ତି ଟାଟାରେ । ଏଇ ଗୃହତ୍ୟାଗ ଜୀବନ-କାଳରେ ବିଚ୍ଛିନ୍ନାଞ୍ଚଳର ମୁଖପତ୍ରରୂପେ ଜାମସେଦପୁରରୁ ସେ ପ୍ରକାଶ କରନ୍ତି 'ବିଚ୍ଛିନ୍ନା' । କମ୍ପାନୀ ପରିଚାଳକଙ୍କର ଶ୍ରମିକ ଶୋଷଣ ନୀତି ବିରୁଦ୍ଧରେ ସେ ସ୍ୱର ତୋଳନ୍ତି । ଫଳରେ ମଜଦୁର କବିତା ରଚନା-ଯୋଗୁ ହୁଅନ୍ତି ବରଖାସ୍ତ । କିନ୍ତୁ କବି ଶ୍ରୀ ନାୟକଙ୍କର ପ୍ରତିଭା ଏତିକରେ ରୁଦ୍ଧହୋଇ ଯାଏନାହିଁ । ୧୯୩୪ ମସିହାରେ ଗଞ୍ଜାମ କବି ସମ୍ମିଳନୀରୁ ବିରହିଣୀ କବିତା ପାଇଁ ଶ୍ରେଷ୍ଠ ବିବେଚିତ ହୋଇ ସେ ପାଆନ୍ତି ସ୍ୱର୍ଣ୍ଣପଦକ । ସମୟକ୍ରମେ ସେଇ ୧୯୩୪ ମସିହାରେ ତାଙ୍କ ରଚିତ 'ଉଦ୍‌ଭ୍ରାନ୍ତ ଓ 'ଭୁଲିଲି ସତେ ସଖୀ' ଉପନ୍ୟାସ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ସଂପାଦିତ ଭାରତୀରେ ପ୍ରକାଶ ପାଏ । ୧୯୪୦ ମସିହାରେ ତାଙ୍କ ନାଟକ ଧର୍ମପତ୍ନୀ ପରୀକ୍ଷାମୂଳକଭାବେ ଅଭିନୀତ ହୁଏ ଅନ୍ନପୂର୍ଣ୍ଣା ଏ ଗ୍ରୁପର ରଙ୍ଗମଞ୍ଚରେ । ପରେ ପରେ ଶ୍ରୀ ନାୟକଙ୍କର ସାହିତ୍ୟିକ ପ୍ରତିଭା ବିଚ୍ଛୁରିତ ହୁଏ ବହୁ ଭାବରେ ଏବଂ ଶେଷରେ ତାହା ସମନ୍ୱିତ ହୋଇ ଆତ୍ମପ୍ରକାଶ କରେ 'ଖୋଲା ଝରକା'ରେ । ଏଇ ଖୋଲା ଝରକା ପୋଲିସ ଜୁଲମ ଓ ଅତ୍ୟାଚାରର ଏକ ନିଷ୍ଠୁର ସମାଲୋଚନା କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୫୪ ମସିହାରେ ଜାମସେଦପୁରଠାରେ ବିହାରୀ ପୋଲିସମାନଙ୍କର ଶ୍ରୀ ନାୟକଙ୍କ ଉପରେ ଯେଉଁ ଜୁଲମ ଚାଲିଥିଲା ଏହା ତାହାର ପଦଧ୍ୱନି । ଦୀର୍ଘ ୨୦ ଦିନ ଧରି ଥାନା ଭିତରେ ନିର୍ମମ ପ୍ରହାରକୁ ଶବ୍ଦମୟ, ଧ୍ୱନିମୟ ଓ ସ୍ପର୍ଶମୟ କରି ରଖିଥିଲା ଏଇ ଖୋଲା ଝରକା । ଖୋଲା ଝରକାରେ ଆଧୁନିକ କବିତାର ଶୈଳୀଗତ ତ୍ରୁଟି ସାମାନ୍ୟ ପରିଦୃଷ୍ଟ ହେଉଥିଲେ ମଧ୍ୟ ଅନୁଭୂତ ବୈପ୍ଳବିକ ଚେତନା, ସ୍ୱାଧୀନତାର ସ୍ୱାଦ ଓ ଆଙ୍ଗୀକ ଆତ୍ମୀକ ପ୍ରକାଶ ପାଇଁ ନିଜ ଗୁଣରେ ନିଜେ ପୁଷ୍ଟ ଓ ପରିପୂର୍ଣ୍ଣ । ସ. **'ବନଫୁଲ'**

# ।। ଶ୍ୟାମଳୀଃ ତୁମକୁ ।।

## ଅଧ୍ୟାପକ ନୃସିଂହ କୁମାର ରଥ

[ ଓଡ଼ିଶାର ଜଣେ ସୁପରିଚିତ ଓ ସୁବିଖ୍ୟାତ ତରୁଣ କବି ଅଧ୍ୟାପକ ଶ୍ରୀ ନୃସିଂହ କୁମାର ରଥ । ପ୍ରାୟ ୧୯୫୦ ମସିହାରୁ ଆଜଯାଏ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଉଚ୍ଚକୋଟୀର କବିତାଗୁଡ଼ିକ ଧାରାବାହିକ ଭାବେ ପ୍ରକାଶ ପାଇ ଆସୁଛି । ସେଗୁଡ଼ିକର ସମନ୍ୱିତ ସଙ୍କଳନ "ମଞ୍ଜୁଦୁବା", "ଦୃଷ୍ଟି ଓ ଦିଗନ୍ତ", "ଛବି ଓ ଛାୟା", "ଶ୍ରୁସ୍ତୁତାମ୍" ଇତ୍ୟାଦି ଏହାର ଚମକପ୍ରଦ ସୁସ୍ପଷ୍ଟ ପ୍ରମାଣ । ଓଡ଼ିଆ କବିତା ରାଜ୍ୟରେ ଅଧ୍ୟାପକ ଶ୍ରୀ ରଥଙ୍କର ସ୍ଥାନ ସ୍ୱତନ୍ତ୍ର । ସ. ବନଫୁଲ ]

ଆଜି ତୁମେ ଶୁଣିବନି ପୁରାତନ ସିଡ଼ିରେ ତୁମର
କା ଆସିବା ପାଦ ଶବ୍ଦ, ବିପର୍ଯ୍ୟସ୍ତ ଚେତନା ଭିତରେ,
ବ୍ୟସ୍ତ ଯେତେ ବେଶ ବାସ, ଅସଂଯତ ଭାରି ତ୍ରୁଟି, ପ୍ରଲାପିତ ପ୍ରାଣ
ତୁମର ଆସିବ ନାହିଁ ହାତ ଧରି ନେବାକୁ ପାଶ୍ରେଛି
ସେ ନିର୍ଜନ ପ୍ରକୋଷ୍ଠରେ ଯେଉଁଠାରେ ପୂର୍ବପୁରୁଷଙ୍କ
ଅନେକ ଛବିର ଭିଡ଼ ଓ କାକୁସ୍ଥ ବିକଳ ଗୃହିଣୀ
ତୁମକୁ ପାଶରି ଛୁଇଁ, ସେ ଏକ ସ୍ୱତନ୍ତ୍ରସ୍ଥିତ, କାମନାର ଉଦଗ୍ର ଯୌବନ ।।

ପତନ ! ସେ ପୁଣି କଣ ? ଭସ୍ମ ! ଭ୍ରାନ୍ତି ! କେବଳ ଛଳନା
ନିଜକୁ ଅନ୍ୟର ପାଖେ ଭିନ୍ନ ରୂପେ ହୋଇଥିବା ପ୍ରୟାସ
ସିଏ ଅତି ବାଜେ କଥା ତୁମେ ଜମା ଜାଣି ନାହିଁ କହୁ
ତୁମେ ତ ରହିଛ ମୁଗ୍ଧ ନିଜର ସେ ପରିଧି ଭିତରେ
ଆତ୍ମରୂଷା, ଅଭିମାନ ଭିତରେ ଯା ଦେହର ଦୃଢ଼ତା
ଜାହିର କରିଛ ତୁମେ ସେଇ ତୁମ ବଞ୍ଚିବା ଲକ୍ଷ୍ୟ ସତ ।।

କେତେ କିଏ ଆସିଛନ୍ତି କେତେ କିଏ ଯାଇଛନ୍ତି ଅବା
ସେ ସବୁ ସମସ୍ତ ପରି, ବୋହିଗଲା ପାଣି ସୁଅ ପରି
ହୁଏ ତ ସେ ସବୁ ସତ ସେ ଏକାନ୍ତ ଆଦିମ ମୁହୂର୍ତ୍ତ
ତାହାଂର ଭିତରେ ତୁମେ ଅର୍ଥବାନ କରିଛ ଜୀବନ
ଆଉସବୁ ମିଥ୍ୟା ଖାଲି ଦ୍ୱିଧାଗ୍ରସ୍ତ ମନର ବିକାର ।।

ତୁମର ସ୍ୱତନ୍ତ୍ର ସ୍ଥିତି । ଆଜି ସେଇ ନିର୍ଜନ ବଖରା
ଅନେକ ପାଦର ଶବ୍ଦେ ଅତର୍କିତେ ଚମକି ରହିଛି

ଅନେକ ଦେହର ବାସ୍ନା, ମୁହଁର ହସରେ ତୁମେ ନିଜକୁ ଖୋଜୁଛ
ତେଣୁ ତୁମେ ବୁଝିନାହଁ କିଏ ସେ ଆସିଲା ଖୋଜି ମନ ଆଉ ଆତ୍ମାର ଦରଦ,
କିଏ ସେ ଆସିଲା ଅବା ଛଳନାରେ ଛୁଇଁଦେଇ ଦେହ ଏବଂ ମନର ପରଶ ॥

ତୁମେ ଆଉ ଆସିବନି ଲୁହର ସମୁଦ୍ର ଡେଇଁ, ଭସାଇ ସେ
ଏକାକିନୀ ଅସହାୟ ନାଆ!
ମୁଁ ଆଉ ସେଠାରେ ନାହିଁ, ଯେଉଁଠାରେ ବନ୍ଧୁ ବ୍ୟସ୍ତ କଥାର ତର୍ଜମା
ଯେଉଁଠି ଅସ୍ପଷ୍ଟ ଏକ ଆଲୋକରେ ଅନେକ ଛୁଇଙ୍କ
କାନ୍ଥେ ବାଡ଼େ କଥାବାର୍ତ୍ତା ଯେଉଁଠାରେ ତୁମେ ନିର୍ବିକାର;
ଅଥବା ଯେଉଁଠି ମୁହିଁ ଭଙ୍ଗୁଥିଲି ଟୁକୁରା ଟୁକୁରା
କେବେ ତୁମ ଅଜ୍ଞାତରେ ଏବଂ ବନ୍ଧୁ ଅକଥ୍ୟ ଦୁଃଖରେ
କାହାର ଦୁର୍ବଳ ଏକ ବିବ୍ରତ ହାତରୁ ଖସି
ଥର ଥର ବାଷ୍ପାକୁଳ ଭରା ଏକ ଗୃହାଧାନ ଚୂନା ହେଲାପରି ॥

ତୁମେ ରୁହ ନିଶ୍ଚିନ୍ତରେ ଆତ୍ମତୃପ୍ତା ହେ ବନ୍ୟ ବଲାକା
ଅନେକ ଆକାଶ ଦେହେ ପିଟି ପିଟି ଯାଅ ତୁମେ ଡେଣା
ଅନେକ ପୃଥିବୀ ହେଉ ପ୍ରଜ୍ୱଳିତ, ମୁଁ ଆତ୍ମସ୍ଥ ରହିବି ଏକାକୀ
ଯେମିତି ବରଫ ହ୍ରଦ, ଘନୀଭୂତ ଅଜସ୍ର ବ୍ୟଥାରେ ।
ଆଉ ମୁଁ ଦେଖିବି ନାହିଁ, ଦୁଃଖ ମୋର, ସେ ନିଷ୍ପ୍ରଭ ମୁହଁ
ନିଜେ ଯାହା ଜଳି ଜଳି ଅନ୍ୟପାଇଁ ଫୁଟାଏ ବି ହସ
ଯେ ଆଖିରେ ଭରିଥାଏ ଅନ୍ୟପାଇଁ ଅନେକ ପ୍ରତ୍ୟୟ,
ଜୀବନ ଝଲକ ଆଣେ ଭୟଙ୍କର ମୃତ୍ୟୁ ମୁଲକରେ ॥

---

# ଐତିହାସିକ ଗ୍ରନ୍ଥ

## ରାଜତରଙ୍ଗିଣୀ ମାଦଳା ପାଞ୍ଜି ଓ ବୁରୁଞ୍ଜି

ବିନୋଦଚନ୍ଦ୍ର ନାୟକ

[ ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ସ୍ରଷ୍ଟା ଅଧ୍ୟାପକ ଶ୍ରୀ ବିନୋଦଚନ୍ଦ୍ର ନାୟକ। ଦୀର୍ଘଦିନ ଧରି ତାଙ୍କ ପରୀକ୍ଷା ମୂଳକ କବିତାଗୁଡ଼ିକ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଆସୁଛି। ତାଙ୍କ ରଚିତ କବିତା ପୁସ୍ତକ 'ନୀଳ ଚନ୍ଦ୍ରର ଉପତ୍ୟକା' ଏକ ଚମକପ୍ରଦ ଓ ବିସ୍ମୟକର ସୃଷ୍ଟି। ଶ୍ରୀ ନାୟକ ମଧ୍ୟ ଜଣେ ଉଚ୍ଚକୋଟୀର ପ୍ରବୀଣ ପ୍ରାବନ୍ଧିକ, ରାଜତରଙ୍ଗିଣୀ, ମାଦଳା ପାଞ୍ଜି ଓ ବୁରୁଞ୍ଜି ଇତ୍ୟାଦି ଉପରେ ତାଙ୍କଦ୍ୱାରା ଯେଉଁ ସୁଚିନ୍ତିତ ମତାମତ ପ୍ରଦତ୍ତ ହୋଇଛି, ତାହା ହିଁ ଏହାର ଜ୍ୱଳନ୍ତ ପ୍ରମାଣ ପ୍ରଦାନ କରେ। ସ. ବନଫୁଲ ]

ପ୍ରାଚୀନ ଭାରତରେ ଧାରାବାହିକ ଇତିହାସ ଲିପିବଦ୍ଧ ହୋଇ ନ ଥିଲେ ହେଁ ବିଭିନ୍ନ ରାଜବଂଶ ଦ୍ୱାରା ସେମାନଙ୍କର ଇତିବୃତ୍ତ ସଂଗୃହୀତ ହୋଇ ପୁରୁଷାନୁକ୍ରମେ ସୁରକ୍ଷିତ ହୋଇ ଆସୁଥିଲା, ସେହି ରାଜବଂଶର ପ୍ରାଚୀନ ଐତିହ୍ୟ ଉପରେ ଆଧୁନିକ ଭାରତବର୍ଷର ଇତିହାସ ଦଣ୍ଡାୟମାନ।

### ରାଜତରଙ୍ଗିଣୀ—

ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଐତିହାସିକ ଗ୍ରନ୍ଥ ସଂଖ୍ୟା ମୁଷ୍ଟିମେୟ—ଏଥିମଧ୍ୟରେ ବାଣଭଟ୍ଟ ହର୍ଷଚରିତ, ପଦ୍ମଗୁପ୍ତ ବା ପରିମଳକୃତ ନବସାହସାଙ୍କ ଚରିତ ବିହ୍ଲଣକୃତ ବିକ୍ରମାଙ୍କ ଦେବଚରିତ, ସନ୍ଧ୍ୟାକର ନନ୍ଦୀକୃତ ରାମଚରିତ ଏବଂ ପ୍ରସିଦ୍ଧ କାଶ୍ମୀରୀ ପଣ୍ଡିତ କାହ୍ଲଣକୃତ ରାଜତରଙ୍ଗିଣୀ ଉଲ୍ଲେଖ ଯୋଗ୍ୟ।

ମହାକବି ବାଣଭଟ୍ଟ ସ୍ୱୀୟ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ ଶୈଳୀରେ ନିଜ ପୃଷ୍ଠପୋଷକ ଭାରତ ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ କୀର୍ତ୍ତିଗାଥା ବର୍ଣ୍ଣନା କରିଛନ୍ତି। ପରିମଳଗୁପ୍ତ ସ୍ୱୟଂ ନବସାହସାଙ୍କ କାବ୍ୟରେ ଧାରାର ଅଧିପତି ପରମାର ବଂଶୀୟ ସିନ୍ଧୁରାଜଙ୍କ ବର୍ଣ୍ଣନା କରିଛନ୍ତି। ଏହି ଗ୍ରନ୍ଥରେ ବିଶେଷ କଳ୍ପନା ବିଳାସ ଓ ମହାକାବ୍ୟ ସୁଲଭ ବର୍ଣ୍ଣନାବୈଭବ ପରିଲକ୍ଷିତ ହୁଏ।

କାଶ୍ମୀରବାସୀ ବିହ୍ଲଣକୃତ 'ବିକ୍ରମାଙ୍କ ଦେବ ଚରିତ'ର ଶେଷ ଅଧ୍ୟାୟରେ କେତେକ ଐତିହାସିକ-ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ। କିନ୍ତୁ ଅଧିକାଂଶରେ କାବ୍ୟ ସୁଲଭ ବର୍ଣ୍ଣନାରେ ପରିପୂର୍ଣ୍ଣ। ଗ୍ରନ୍ଥକର୍ତ୍ତା ସ୍ୱ ପୃଷ୍ଠପୋଷକ ଚାଲୁକ୍ୟ ବଂଶୀୟ ବିକ୍ରମାଦିତ୍ୟ ତ୍ରିଭୁବନ ମଲ୍ଲଙ୍କ କୀର୍ତ୍ତି କେତେକ ସର୍ଗରେ ବର୍ଣ୍ଣନା କରିଛନ୍ତି। ଗୌଡ଼ଦେଶୀୟ ସନ୍ଧ୍ୟାକର ନନ୍ଦୀକୃତ ରାମଚରିତ ଏକ ଦ୍ୱିସନ୍ଧାନ କାବ୍ୟ, ଏଥିର ପ୍ରତ୍ୟେକ ଶ୍ଲୋକରେ ମହାବୀର ରାମଚନ୍ଦ୍ର ଏବଂ କବିଙ୍କ ପୃଷ୍ଠପୋଷକ ପାଳବଂଶୀୟ ରାମପାଳଙ୍କ ବୀରତ୍ୱ ଗାଥା ବର୍ଣ୍ଣିତ ହୋଇଅଛି। କିନ୍ତୁ ଏହା ଆକାରରେ କ୍ଷୁଦ୍ର ଏବଂ ବିଷୟବସ୍ତୁ ସଂକ୍ଷିପ୍ତ।

ଉପରେ ଆଲୋଚିତ ହର୍ଷ ଚରିତ, ନବସାହସାଙ୍କ ଚରିତ, ବିକ୍ରମାଙ୍କ ଦେବଚରିତ ଓ ରାମଚରିତ ତୁଳନାରେ ପ୍ରସିଦ୍ଧ କାଶ୍ମୀରୀ ପଣ୍ଡିତ କହ୍ଲଣକୃତ ରାଜତରଙ୍ଗିଣୀର କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । କହ୍ଲଣ କୌଣସି ବ୍ୟକ୍ତିଗତ ପୃଷ୍ଠପୋଷକ ପରିବର୍ତ୍ତେ ସମଗ୍ର କାଶ୍ମୀର ରାଜ୍ୟର ପ୍ରାଚୀନ ରାଜବଂଶର ଇତିହାସ ଧାରାବାହିକ ଭାବରେ ଲିପିବଦ୍ଧ କରିବା ପାଇଁ ଉଦ୍ୟମ କରିଛନ୍ତି । ଦ୍ୱିତୀୟରେ ସେ ସ୍ୱଗ୍ରନ୍ଥ ସଂକଳନ ପାଇଁ ତାଙ୍କ ପୂର୍ବରୁ ରଚିତ ଏଗାରଖଣ୍ଡି ଗ୍ରନ୍ଥରୁ ଉପାଦାନ ଗ୍ରହଣ କରିଥିବା କଥା ସ୍ୱୀକାର କରିଛନ୍ତି । ତୃତୀୟରେ ସେ ସ୍ୱଗ୍ରନ୍ଥକୁ ପ୍ରାମାଣ୍ୟ ରୂପରେ ପ୍ରତିଷ୍ଠିତ କରିବା ପାଇଁ ବହୁ ଶିଳାଲିପି, ତାମ୍ରଶାସନ, ମୁଦ୍ରା ଓ ପ୍ରାଚୀନ ଗ୍ରନ୍ଥ ଉପଯୋଗ କରିଛନ୍ତି । ଏ ବିଷୟ ବିଚାର କଲେ ତାଙ୍କର ଗବେଷଣାତ୍ମକ ମନୋବୃତ୍ତିର ସ୍ପଷ୍ଟ ପରିଚୟ ମିଳେ । ପ୍ରଥମ ତିନି ଉଲ୍ଲାସରେ ଯୁଧିଷ୍ଠିରଙ୍କଠାରୁ ଆରମ୍ଭ କରି ୫୨ ଜଣ ପୌରାଣିକ ରାଜାମାନଙ୍କର ବୃତ୍ତାନ୍ତ ଦେଇଛନ୍ତି । ଏ ରାଜାମାନଙ୍କ ମଧ୍ୟରେ ଅଶୋକ, ହୁଷ୍କ, ଜୁଷ୍କ, କନିଷ୍କ, ମିହିରକୁଳ, ମେଘବାହନ ପ୍ରଭୃତି ରାଜାଙ୍କ ନାମ ଉଲ୍ଲେଖ କଲେ ମଧ୍ୟ ସେମାନଙ୍କ ସମୟ ସମ୍ବନ୍ଧରେ ଅପ୍ରାମାଣିକ ମତ ଦେଇଛନ୍ତି । ଚତୁର୍ଥ, ପଞ୍ଚମ, ଷଷ୍ଠ ଓ ସପ୍ତମ ଉଲ୍ଲାସରେ ସେ କାଶ୍ମୀରରେ ରାଜତ୍ୱ କରୁଥିବା କର୍କୋଟ ବଂଶ ଓ ଲୋହାର ବଂଶୀୟ ରାଜାମାନଙ୍କର ବିଶେଷ ବିବରଣୀ ପ୍ରଦାନ କରିଛନ୍ତି । ଅଷ୍ଟମ ବା ଶେଷ ଭାଗରେ, ୩୪୪୯ ଶ୍ଳୋକରେ ସେ ତାଙ୍କର କିଞ୍ଚିତ୍ ପୂର୍ବବର୍ତ୍ତୀ ଓ ସମସାମୟିକ ହର୍ଷଦେବ, ସୁଶଲ ଓ ଜୟସିଂହ ପ୍ରଭୃତି ରାଜାଙ୍କ ବହୁଳ ବର୍ଣ୍ଣନା କରିଛନ୍ତି ।

ଏ ଗ୍ରନ୍ଥଟି ୧୦୭୦ ଶକାବ୍ଦ ବା ୧୧୪୮ ଖ୍ରୀଷ୍ଟାବ୍ଦରେ ଆରମ୍ଭ କରାଯାଇ ଚତୁର୍ଥର ବର୍ଷ ସମାପ୍ତ ହୋଇଥିଲା । ଏଥିରେ ରାଜବଂଶର ଇତିହାସ ସଙ୍ଗେ ସଙ୍ଗେ ବିଭିନ୍ନ ନଗର, ଗ୍ରାମ, ମନ୍ଦିର, ପ୍ରାସାଦ ଓ ଚୈତ୍ୟ ପ୍ରଭୃତିର ଆକର୍ଷଣୀୟ ବର୍ଣ୍ଣନା ରହିଅଛି । ରାଜସଭା ଓ ରାଜପରିଷଦମାନଙ୍କର ଚରିତ୍ର ଚିତ୍ରଣ ଅତି ଚମତ୍କାର । ଏହି ବୈଶିଷ୍ଟ୍ୟ ଯୋଗୁଁ ସଂସ୍କୃତ ସାହିତ୍ୟର ଇତିହାସରେ ଏହାର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ।

**ମାଦଳାପାଞ୍ଜି** — ଉତ୍କଳର ଗଜପତି ରାଜବଂଶର ଇତିହାସର ନାମ । ଗଙ୍ଗ ସମ୍ରାଟ ଅନନ୍ତବର୍ମନ୍ ଚୋଡଗଙ୍ଗଦେବଙ୍କ ଦ୍ୱାରା ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ରରେ ୧୧୧୨ ଖ୍ରୀଷ୍ଟାବ୍ଦରୁ ୧୧୪୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା । ତାଙ୍କ ପୌତ୍ର ଅନଙ୍ଗଭୀମଦେବଙ୍କ ସମୟରେ ଶ୍ରୀଜଗନ୍ନାଥଙ୍କ ସେବା ପୂଜାକୁ ଶୃଙ୍ଖଳାବଦ୍ଧ କରିବା ପାଇଁ ଛତିଶାନିଯୋଗ ପ୍ରଥା ପ୍ରଚଳିତ ହୋଇଥିଲା । ଏହି ଛତିଶାନିଯୋଗ ମଧ୍ୟରୁ ଦେଉଳ-କରଣ ନିଯୋଗ ଉପରେ ମନ୍ଦିର ଓ ରାଜବଂଶ ସମ୍ବନ୍ଧୀୟ ଘଟଣାବଳୀ ଲିପିବଦ୍ଧ କରିବା ଭାର ଅର୍ପିତ ହୋଇଥିଲା । ଏହି ଲିଖିତ ରଚନାବଳୀଗୁଡ଼ିକ ମାଦଳାକୃତି ପାଞ୍ଜି ଆକାରରେ ରଖା ଯାଉଥିବାରୁ ଏହା ଲୋକମୁଖରେ ମାଦଳାପାଞ୍ଜି ନାମରେ ପ୍ରସିଦ୍ଧ । ଏଥିରେ କାଶ୍ମୀର ରାଜତରଙ୍ଗିଣୀ ପରି ଯୁଧିଷ୍ଠିରଙ୍କଠାରୁ ଆରମ୍ଭ କରି ଓଡ଼ିଶାର ପ୍ରାଚୀନ ରାଜବଂଶମାନଙ୍କ ଉଲ୍ଲେଖ ଦେଖାଯାଏ । ଏଥିମଧ୍ୟରେ କେଶରୀବଂଶ, ସୂର୍ଯ୍ୟବଂଶ, ଗଙ୍ଗବଂଶ ଓ ଖୋର୍ଦ୍ଧାର ଭୋଇବଂଶ ଏହି ଚାରି ବଂଶର ବିବରଣ ବିଶଦ ଭାବରେ ବର୍ଣ୍ଣିତ ଅଛି । ଆଧୁନିକ ଗବେଷକମାନଙ୍କ ମଧ୍ୟରେ ମାଦଳାପାଞ୍ଜିର ରଚନାକାଳ ଓ ଐତିହାସିକ ମୂଲ୍ୟ ସମ୍ବନ୍ଧରେ ମତଦ୍ୱୈଧ ଦେଖାଯାଏ । ଅନେକଙ୍କ ମତରେ ଖୋର୍ଦ୍ଧା ଭୋଇବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ରଙ୍କ ସମୟରେ ମାଦଳାପାଞ୍ଜି ଲେଖା ଆରମ୍ଭ ହୋଇଥିଲା । ଅନ୍ୟମାନଙ୍କ ମତରେ ଏଥିରେ ଗଜପତି ରାମଚନ୍ଦ୍ରଦେବଙ୍କ ପୂର୍ବବର୍ତ୍ତୀ ବହୁ ଘଟଣା ଅଭ୍ରାନ୍ତ ଭାବରେ ଲିପିବଦ୍ଧ ହୋଇଥିବାରୁ ମାଦଳାପାଞ୍ଜି ଲେଖିବା ପ୍ରଥା ଗଙ୍ଗବଂଶ ଯୁଗରେ ପ୍ରଚଳିତ ହୋଇଥିଲା । କିନ୍ତୁ କଳାପାହାଡ଼ର ଶ୍ରୀଜଗନ୍ନାଥଦେବଙ୍କ ଆକ୍ରମଣ ସମୟରେ

ମନ୍ଦିରସ୍ଥିତ ପୁରୁଣା ପାଞ୍ଜି ନଷ୍ଟହୋଇ ଯିବାରୁ ଗଜପତି ରାମଚନ୍ଦ୍ର ଦେବ ପୁନର୍ବାର ସଂକଳନ ଆରମ୍ଭ କରାଇଥିଲେ । ଏହି ଦିଗରୁ ମତର ଯୁକ୍ତିସଂଗତ ମନେହୁଏ ।

ମାଦଳାପାଞ୍ଜି ପୂର୍ଣ୍ଣାଙ୍ଗ ଇତିହାସ ନୁହେଁ । ପାଞ୍ଜିକାର ଶ୍ରୀଜଗନ୍ନାଥଙ୍କର ସେବାପୂଜା, ଆୟ, ଅଳଙ୍କାର, ଧୂପ, ଅବକାଶ ମହାପ୍ରଭୁଙ୍କ ବେଶ ଓ ଯାନଯାତ୍ରା ବିଷୟରେ ଯେଉଁ ବିବରଣ ଦେଇଛନ୍ତି ତାହା ଅତୀବ ଉପାଦେୟ । ପଠାଣ, ମୋଗଲ ଓ ମରହଟ୍ଟା ରାଜତ୍ୱ ସମ୍ପର୍କୀୟ ଘଟଣାବଳୀ ପ୍ରାୟ ସତ୍ୟ ମୂଳକ; ଏ ବିଷୟରେ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ପ୍ରଣୀତ ଖୋରଧା ଇତିହାସ ନାମକ ପୁସ୍ତକ ଦ୍ରଷ୍ଟବ୍ୟ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଓଡ଼ିଶାର ପ୍ରାଚୀନ ଇତିହାସ ରଚନା ପାଇଁ ମାଦଳା ପାଞ୍ଜି ଏକ ଅପରିହାର୍ଯ୍ୟ ଉପାଦାନ । ଏହାର ଅନୁକରଣ ପରବର୍ତ୍ତୀ କାଳରେ ବାରବାଟୀ କୈଫିୟତ୍, ଜଗନ୍ନାଥ କୈଫିୟତ୍, ଲିଙ୍ଗରାଜେଶ୍ୱର କୈଫିୟତ୍ ପ୍ରଭୃତି ବହୁ ଗ୍ରନ୍ଥ ତେଲୁଗୁ ଭାଷାରେ ରଚିତ ହୋଇଥିଲା । ଓଡ଼ିଆ ଭାଷାରେ ଚୈନ ଚକଡ଼ା, ଚକଡ଼ା ବଖାଣ, କଳାହାଣ୍ଡି ମାଦଳା, ମୟୂରଭଞ୍ଜର ଭଞ୍ଜ ବଂଶମାଳିକା, ଘୁମୁସର ଭଞ୍ଜବଂଶାବଳୀ, ପଟିଆ ରାଜବଂଶାବଳୀ ପ୍ରଭୃତି ବହୁ କ୍ଷୁଦ୍ର ଗ୍ରନ୍ଥ ବିଭିନ୍ନ ରାଜ-ଦରବାରରେ ରଚିତ ହୋଇଥିଲା । ଏ ସଂପର୍କରେ କୁହାଯାଇପାରେ ଯେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ମାଦଳା ପାଞ୍ଜି ସମ୍ପୂର୍ଣ୍ଣ ନୁହେଁ କିମ୍ବା ଏହା ବୈଜ୍ଞାନିକ ପ୍ରଣାଳୀରେ ସଂକଳିତ ହୋଇନାହିଁ । ଏଣୁ ମାଦଳା ପାଞ୍ଜିର ବିଭିନ୍ନ ପୋଥି ସଂଗ୍ରହ କରି ତାହାର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା ସର୍ବାଦୌ ଆବଶ୍ୟକ ।

ବୁରୁଞ୍ଜି —

ପ୍ରାଚୀନ ରାଜବଂଶର ଇତିହାସମାନଙ୍କ ମଧ୍ୟରୁ ଆସାମ ରାଜବଂଶର ଇତିହାସ ଅନ୍ୟତମ ।

ପ୍ରାଚୀନ କାମରୂପ ରାଜ୍ୟ ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ଆହାମ ବଂଶୀୟ ରାଜାମାନଙ୍କ ଦ୍ୱାରା ଅଧିକୃତ ହେଲା । ସେମାନଙ୍କ ନାମାନୁସାରେ ଉକ୍ତ ରାଜ୍ୟର ନାମ ହେଲା 'ଆହମ' । ଏହି ଆହମର ଅପଭ୍ରଂଶ 'ଆସମ' ପରେ ଆସାମରେ ପରିଣତ ହେଲା । ଏହି ଆହମ ରାଜାମାନଙ୍କର ରାଜତ୍ୱ କାଳରେ ପ୍ରଥମେ ଆହମ ଭାଷାରେ ଓ ପରେ ଆସାମୀ ଭାଷାରେ ବହୁ ବୁରୁଞ୍ଜି ସଂକଳିତ ହୋଇଥିଲା । ଏଗୁଡ଼ିକ ପ୍ରଚଳିତ ଗଦ୍ୟରେ ଲିଖିତ । ଉଚ୍ଚ ପଦସ୍ଥ ରାଜ କର୍ମଚାରୀ, ସେନାପତି ଓ ପଣ୍ଡିତମାନଙ୍କ ଦ୍ୱାରା ବୁରୁଞ୍ଜି ସଂକଳିତ ହୋଇଥିଲା । ବୁରୁଞ୍ଜି ରଚନା ସେ ସମୟରେ ଏକ ପବିତ୍ର କାର୍ଯ୍ୟରୂପେ ବିବେଚିତ ହେଉଥିଲା । ତେଣୁ ପ୍ରତ୍ୟେକ ବୁରୁଞ୍ଜିର ଆଦ୍ୟରେ ସ୍ୱ ଇଷ୍ଟ-ଦେବତାଙ୍କ ଉଦ୍ଦେଶ୍ୟରେ ମଙ୍ଗଳାଚରଣ ଲେଖା ହୋଇଛି । ଏଗୁଡ଼ିକର ଭାଷା ଶାନ୍ତ, ସରଳ ଓ ପ୍ରାଞ୍ଜଳ । ଐତିହାସିକ ତଥ୍ୟଗୁଡ଼ିକ ଧାରାବାହିକ ଭାବରେ ଲିପିବଦ୍ଧ ହୋଇଥିବାରୁ ଆସାମର ସମସାମୟିକ ଇତିହାସ ସଂକଳନ ପାଇଁ ଏ ବୁରୁଞ୍ଜି ଅତ୍ୟନ୍ତ ଉପାଦେୟ । ଏ ବୁରୁଞ୍ଜିମାନଙ୍କ ମଧ୍ୟରୁ କେତେକ ଆସାମ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ପ୍ରକାଶିତ ହୋଇଛି । ଆସାମ ବୁରୁଞ୍ଜି, କାଛାରି ବୁରୁଞ୍ଜି, ପୁରାଣୀ ଆସାମ ବୁରୁଞ୍ଜି, ପାଦସାହ ବୁରୁଞ୍ଜି ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

## ଭାରତ-ଭାରତୀ (ବଙ୍ଗଳା)

# ॥ ଭାରତ-କଣ୍ଠ ॥

### ବିମଳଚନ୍ଦ୍ର ଘୋଷ

### ଭାଷାନ୍ତର : ସୁଜାତା ପ୍ରିୟଂବଦା

[ କୁମାରୀ ସୁଜାତା ପ୍ରିୟଂବଦା ଜଣେ ପ୍ରତିଷ୍ଠିତା କବି । ବିଭିନ୍ନ ଭାଷାରୁ ଓଡ଼ିଆରେ କବିତା ଅନୁବାଦ କରିବାରେ ତାଙ୍କର ଯଥେଷ୍ଟ ସୁନାମ ରହିଛି । ସମସ୍ତ ବିଶେଷରେ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କରିଁ କବିତା ପ୍ରକାଶ ପାଇଥାଏ । ସ. ବନଫୁଲ ]

ଇଡ଼ା ସରସ୍ୱତୀ ମହୀ ତିସ୍ରୋ ଦେବୀର୍ମୟୋଭୁବଃ ବର୍ହିଃ ସୀଦନ୍ତ୍ୱସ୍ରିଧଃ ॥
ଋଗ୍‌ବେଦ : ଆଗ୍ନେୟ ସୂକ୍ତ ୧ । ୧୩ । ୯

ହେ ଭାରତ,
ମୁଁ ତୁମର ଯୁଗୋତ୍ତୀର୍ଣ୍ଣ କଣ୍ଠସ୍ୱର,
ମୁଁ ତୁମର ଯୁଗଯୁଗାନ୍ତରିତ ରକ୍ତ-ସମୁଦ୍ରର ସୃଜନୋଲ୍ଲାସ !
ତୁମର କାଞ୍ଚନଜଂଘାର ଅନ୍ଧକାୟ ତୁଷାର-ପଦ୍ମରେ
ଅଗ୍ନିପକ୍ଷ ଭ୍ରମର ଭଳି ମୁଁ ଗାଇଚି ଗୀତ
ପ୍ରଥମ ସୂର୍ଯ୍ୟରଶ୍ମିର ବୀଣା ବଜାଇ
ଶତ ଶତାବ୍ଦୀର ଅମିତାଭ ଉଦ୍ଦୀପନାରେ ।
ମୁଁ ତୁମର ପାର୍ବତୀ-ପରମେଶ୍ୱର ଆତ୍ମାର ମହାସଙ୍ଗୀତ !
ମୁଁ ତୁମର ସାରସ୍ୱତ-ଚେତନାର ପ୍ରବାହନର୍ତ୍ତୀ ପ୍ରାଣ-ଝଙ୍କାର ।

ଅଣୁର ଅଣୀୟାନ
ମହତ୍ତରୁ ମହୀୟାନ
ଔପନିଷଦିକ ଉଚ୍ଚାଭିଳାଷର ଗୀତ
ମୋର ଚେତନାର ଆକାଶକୁ ଆଚ୍ଛନ୍ନ କରି ରଖିଥିଲା
ରହସ୍ୟମୟ ଆତ୍ମାନୁସନ୍ଧାନର ଅଶ୍ରୁମୁଖିତାରେ,
ଏଁଶୀ କରୁଣା ଲଭାର ମନ୍ଦ୍ର-ଗାମ୍ଭୀର୍ଯ୍ୟରେ !

ଜରା-ମୃତ୍ୟୁ-ଶୋକ ପାଶୋର ସେଇ ଗୈରିକ ତମସାରେ
ମୁଁ ଦେଖି ପାରିନ ତୁମର ସ୍ୱର୍ଗାଦପି ଗରୀୟସୀ ରୂପ,
ଶୁଣି ପାରିନ ତୁମର ବିଶାଳ ମାଟିର ସ୍ପନ୍ଦନ,
ଅରଣ୍ୟର ମର୍ମର ଧ୍ୱନି,
ଉଦ୍‌ବେଳିତ ନଦ-ନଦୀର କ୍ରନ୍ଦନ;
ଶୁଣି ପାରିନ ଦକ୍ଷିଣ ସମୁଦ୍ର ମନ୍ଥିତ ମୌସୁମୀ ପବନର ଦୀର୍ଘଶ୍ୱାସ !
ସେଦିନ ସୁର ନ ଥିଲା ତୁମର କଣ୍ଠରେ,
ବାଣୀ ନ ଥିଲା ତୁମର ଭାଷାରେ
ପ୍ରାଣ ନ ଥିଲା ତୁମର ଆସମୁଦ୍ର-ହିମାଚଳ ପ୍ରସାରିତ ଅବୟବରେ ।

ସେଦିନ ମୁଁ ଖୋଜିଚି ଦିଗ୍‌ଦିଗନ୍ତ ଉଦ୍ଭାସିତକାରୀ
ତୁମର ସେଇ ରୂପ,
ମୁହଁରେ ଯା'ର ଅଗ୍ନିର ଆଭା !
ପାଦରେ ଯା'ର ପର୍ବତ-ଚୂର୍ଣ୍ଣକାରୀ ଆଘାତର ପ୍ରଚଣ୍ଡତା !
ଦୁଇ ବାହୁରେ ଯା'ର ନିଖିଳ ବିଶ୍ୱକୁ ଆଲିଙ୍ଗି ନେବାର ବିରାଟତ୍ୱ
ଶାନ୍ତି ସୁଖ ସ୍ୱାଧୀନତାର ସ୍ନେହବିଡ଼ ବନ୍ଧନରେ ।
ତା'କୁ ମୁଁ ଖୋଜିଚି ମୋର ବିନିଦ୍ର ଚିନ୍ତାର ଚତୁଃସୀମାରେ
ମୋର ସମ୍ଭ୍ରମଦୀପ୍ତ ଚେତନାର ଆନ୍ତର୍ଜାତିକ ଶାଳୀନତାରେ
କାବ୍ୟ-ସାହିତ୍ୟ-ଶିଳ୍ପ-ଲଳିତକଳାର ମୃତ୍ୟୁଞ୍ଜୟୀ ସାମଞ୍ଜସ୍ୟରେ !
ହେ ଭାରତ,
ତୁମେ ମୋର ନବଜାଗ୍ରତ ବସ୍ତୁ-ଜିଜ୍ଞାସାର ଉଦୟାଚଳ ।

ମୁଁ ତୁମର ସେଇ ଅମିତା ରୂପ ଦେଖିଚି
ହେ ମୋର ଜନନୀ ଜନ୍ମଭୂମି,
କାରାଗାରର ପ୍ରାଚୀର ଯାହାକୁ ବେଢ଼ି ରଖିପାରି ନାହିଁ
ଶୃଙ୍ଖଳ ଯାହାକୁ ବାନ୍ଧି ରଖିପାରି ନାହିଁ
ଫାଶିକାଠ ଭାଙ୍ଗି ପଡ଼ିଚି ଯା'ର ପାଦ ତଳରେ !
ଦେଖିଚି ତୁମର ସେଇ ମହିମାନ୍ୱିତା ରୂପ
ପଞ୍ଜାବ, ସିନ୍ଧୁ, ଗୁର୍ଜର, ମରାଠ, ଦ୍ରାବିଡ଼, ଉତ୍କଳ, ବଙ୍ଗରେ,
ଦେଖିଚି ତୁମର ଜ୍ୟୋତିର୍ମୟୀ ଭବିଷ୍ୟତ,
ଅନନ୍ତବୀର୍ଯ୍ୟରୂପିଣୀ ଆତ୍ମପ୍ରତିଷ୍ଠାର ମହାସ୍ୱପ୍ନରେ ।

ହେ ଭାରତ,
ଆଜି ତୁମେ ଜାଗି ଉଠିଚ
ମୋର ଯୁଗୋତ୍ତୀର୍ଣ୍ଣ କଣ୍ଠସ୍ୱରର ଉଦାତ୍ତ ଗମ୍ଭୀରତାରେ,
ମୋର ରକ୍ତ-ସମୁଦ୍ରର ସୃଜନୋଲ୍ଲାସରେ ।।

---

# ॥ ଓଡ଼ିଆ ଭାଷାରେ ଆଦିବାସୀ ଭାଷାର ପ୍ରଭାବ ॥

**ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି**

**ଓ**

ଅଧ୍ୟାପକ **ହେମନ୍ତ କୁମାର ଦାସ**

[ ପୁରାତନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ସଫଳ ଗବେଷକ ଓ ସମାଲୋଚକ ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି । ଆଜୀବନ ସାଧନା ଫଳରେ ସେ ତାଙ୍କ ଜୀବନକାଳ ମଧ୍ୟରେ ବହୁ ପୁସ୍ତକ ରଚନା କରିଅଛନ୍ତି । ବିଶେଷ କରି ଆଦିମ ଓଡ଼ିଆ ନାଥ ସାହିତ୍ୟ ଉପରେ ତାଙ୍କ ଗବେଷଣା ଏକ ସ୍ୱତନ୍ତ୍ର ଆସନ ଦାବୀକରିବସେ । ଏତଦ୍‌ବ୍ୟତୀତ ସାରଳା ଓ ଉପେନ୍ଦ୍ର-ଭଞ୍ଜଙ୍କ ସାହିତ୍ୟ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ବିଭିନ୍ନ ସମାଲୋଚନା ପୁସ୍ତକରେ ଆତ୍ମପ୍ରକାଶ କରିଛି । କେବଳ ସେତିକି ନୁହେଁ, ଓଡ଼ିଆ ଭାଷା ଓ ଆଦିବାସୀ ଭାଷା ସମ୍ପର୍କୀୟ ତାଙ୍କ ପ୍ରବନ୍ଧଗୁଡ଼ିକ ମଧ୍ୟ ଜୀବନ୍ତ ପ୍ରାଣବନ୍ତ । ଶ୍ରୀ ମହାନ୍ତି ଜଣେ ମୌଳିକ ପ୍ରାବନ୍ଧିକ, ଜଣେ ପ୍ରତିଷ୍ଠିତ ସମାଲୋଚକ ଓ କୃତୀ ଗବେଷକ ।

ଓଡ଼ିଶାର ଆଦିବାସୀ ଭାଷା ଓ ସଂସ୍କୃତି ସମ୍ବନ୍ଧୀୟ ଜଣେ ସଫଳ ଗବେଷକ ଅଧ୍ୟାପକ ଶ୍ରୀ ହେମନ୍ତ କୁମାର ଦାସ । ଜୀବନରୁ ଅଧିକାଂଶ ସମୟରେ ସେ ଏହି ଗବେଷଣା କାର୍ଯ୍ୟରେ ହିଁ ଲିପ୍ତ । ତାଙ୍କର ବହୁ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ସ. ବନଫୁଲ ]

ଯେଉଁମାନେ ବଣ ଜଙ୍ଗଲ ଓ ପାହାଡ଼ ଅଞ୍ଚଳରେ ଲକ୍ଷ ଲକ୍ଷ ସଂଖ୍ୟାରେ ବାସ କରୁଥିବା କୋହ୍ଲ, କନ୍ଧ, ସାନ୍ତାଳ, ଶବର, ମୁଣ୍ଡା ଓ ଗଣ୍ଡ ପ୍ରଭୃତି ଲୋକମାନଙ୍କୁ ଅସଭ୍ୟ, ବର୍ବର ବା ଜଙ୍ଗଲୀ ବୋଲି ଭାବନ୍ତି, ସେମାନଙ୍କର ଭାବିବା ମଧ୍ୟ ଉଚିତ ଯେ, ଏହି ଜଙ୍ଗଲୀ-ମାନେ ହିଁ ହେଉଛନ୍ତି ଏ ଦେଶର ଆଦିମ ଅଧିବାସୀ । ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କ ଆଗମନର ବହୁ ହଜାର ବର୍ଷ ପୂର୍ବରୁ ସେମାନେ ପୃଥିବୀର ବିଭିନ୍ନ ଦେଶ ମହାଦେଶରେ ନିରଙ୍କୁଶ ପ୍ରତିପତ୍ତି ସ୍ଥାପନ କରିଥିଲେ । ଭାଷାତତ୍ତ୍ୱବିତ୍‌ଗଣ ଏହି ଆଦିମ ଅଧିବାସୀମାନଙ୍କୁ ଅଷ୍ଟ୍ରିକ୍, ମୁଣ୍ଡା ବା କୋଲାରିଆନ୍ ଗୋଷ୍ଠୀ ନାମରେ ନାମିତ କରିଅଛନ୍ତି । ଏକ ସମୟରେ ଏହି ଆଦିମ ଅଧିବାସୀ ବା ଆଦିବାସୀମାନଙ୍କର ଜୀବନ ପ୍ରବାହ କେବଳ ଭାରତ ନୁହେଁ, ଇଣ୍ଡୋଚୀନ, ବ୍ରହ୍ମଦେଶ, ମାଳୟ, ନିକୋବର, ଇଣ୍ଡୋନେସିଆ, ମେଲାନେସିଆ ଓ ଅନ୍ୟାନ୍ୟ ଶ୍ରେଷ୍ଠବଡ଼ ଅନେକ ପ୍ରଶାନ୍ତ ମହା-ସାଗରୀୟ ଦ୍ୱୀପପୁଞ୍ଜ ଲଗାଏତ୍ ସୁଦୂର ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ବ୍ୟାପିଥିଲା । ଭାରତ ଓ ପ୍ରଶାନ୍ତ ମହାସାଗ-ରୀୟ ଆଦିମ ଅଧିବାସୀମାନଙ୍କର ଭାଷା ସହିତ ଅଷ୍ଟ୍ରେଲିଆରେ ବାସ କରୁଥିବା ନିଗ୍ରୋ ଓ ମୁଣ୍ଡା ଜାତୀୟ ଅଧିବାସୀମାନଙ୍କର ଭାଷାରେ ସାମ୍ୟ ଲକ୍ଷ୍ୟକରି ଭାଷାତତ୍ତ୍ୱବିତ୍‌ଗଣ ସେହି ବିରାଟ ଛିନ୍ନବିଚ୍ଛିନ୍ନ ଭୂଖଣ୍ଡର ଆଦିମ ଅଧିବାସୀମାନଙ୍କୁ ଅଷ୍ଟ୍ରିକ୍ (Austric) ନାମରେ ନାମିତ କରିଅଛନ୍ତି । ଅନ୍ୟାନ୍ୟ କେତେକ ଭାଷାତତ୍ତ୍ୱ-ବିତ୍ ସେମାନଙ୍କୁ ମୁଣ୍ଡାରୀ, (Mundarian) ଓ କୋହ୍ଲଜାତୀୟ (Kolarian), ଏହିପରି ବିଭିନ୍ନ ନାମ

ପ୍ରଦାନ କରିଅଛନ୍ତି । ଭୌଗୋଳିକ, ଐତିହାସିକ ପ୍ରଭୃତି ବିଭିନ୍ନ ବିଭବର ବଶବର୍ତ୍ତୀ ହୋଇ ସେମାନେ ବହୁକାଳରୁ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା କେବଳ ଭାଷାଗତ ନୁହେଁ, ସେମାନଙ୍କର ରୀତିନୀତି, ଚାଲିଚଳଣି ପ୍ରଭୃତିରେ ମଧ୍ୟ ଅନେକ ସୌସାଦୃଶ୍ୟ ପରିଲକ୍ଷିତ ହୋଇଥାଏ । ବହୁଶତ ବର୍ଷ ପୂର୍ବେ ଏହି ମୁଣ୍ଡା ଶ୍ରେଣୀୟ ଲୋକମାନଙ୍କ ଦ୍ୱାରା ଓଡ଼ିଶା, ବ୍ରହ୍ମଦେଶ ଓ ମାଳୟର ଉପକୂଳ ଅଞ୍ଚଳ ଅଧ୍ୟୁଷିତ ହୋଇଥିଲା ବୋଲି ନୃତତ୍ତ୍ୱ ଓ ଭାଷାତତ୍ତ୍ୱବିତ୍‌ଗଣ ଅନୁମାନ କରନ୍ତି । ଆଜିମଧ୍ୟ ଭାରତୀୟ ପୂର୍ବ ଦ୍ୱୀପପୁଞ୍ଜ ଓ ମାଳୟର ସିମ୍ବିରିଂ (Simbiring) ଶ୍ରେଣୀର ଆଦିମ-ଅଧିବାସୀମାନେ ଏହି ମୁଣ୍ଡାଜାତୀୟ ଲୋକ ଭାବରେ ପରିଗଣିତ । ସେମାନଙ୍କର ବିଶ୍ୱାସ ଯେ, ସେମାନେ ବିଦେଶାଗତ କ୍ଲିଂ (Kling) ନାମକ ଜାତିରୁ ଉଦ୍ଭୂତ । ଏହି କ୍ଲିଂ ଶବ୍ଦ କଳିଙ୍ଗ ଶବ୍ଦର ଅପଭ୍ରଂଶ ରୂପ ବୋଲି ଅନେକ ମନେ କରିଥାନ୍ତି । ପୁଣି ମଧ୍ୟ ଦେଖାଯାଉଛି ଯେ ମାଳୟ, ସେଗୁ ପ୍ରଭୃତି ଅଞ୍ଚଳରୁ ମିଳୁଥିବା ପ୍ରାଗୈତିହାସିକ ଯୁଗର ଅନେକ ପ୍ରସ୍ତର ନିର୍ମିତ ଅସ୍ତ୍ରଶସ୍ତ୍ର ସହିତ ଓଡ଼ିଶାର କେନ୍ଦୁଝର ପ୍ରଭୃତି ବଣଜଙ୍ଗଲରେ ବାସ କରୁଥିବା ନଗ୍ନ ଜୁଆଙ୍ଗ ଜାତିର ଅସ୍ତ୍ରଶସ୍ତ୍ରର ଆକାରପ୍ରକାରରେ ଅନେକ ମେଳ ରହିଛି । ଏହା-ଛଡ଼ା ଢେଙ୍କାନାଳ, ତାଳଚେର, ଅନୁଗୋଳ ଓ ପର୍ଯ୍ୟାପ୍ତ ଭାବରେ ମୟୂରଭଞ୍ଜରୁ ମିଳିଥିବା ପ୍ରାଚୀନ ଓ ନୂତନ ପ୍ରସ୍ତରଯୁଗର ଅନେକ ପ୍ରସ୍ତରାସ୍ତ୍ର ସହିତ ସେହି ମାଳୟର ସିମ୍ବିରିଂ ବ୍ରହ୍ମଦେଶ ଓ ପୂର୍ବ ଦ୍ୱୀପ-ପୁଞ୍ଜର ଆଦିମ ଅଧିବାସୀ ତଥା ଆସାମର ଖାସି ଅଞ୍ଚଳର ଆଦିମ ଅଧିବାସୀମାନଙ୍କଠାରୁ ବା ସେହି ଅଞ୍ଚଳରୁ ମିଳିଥିବା ପ୍ରସ୍ତରାସ୍ତ୍ରସମୂହ ଏକପ୍ରକାର ଅସ୍ତ୍ରଶସ୍ତ୍ର ବୋଲି ଜଣାଯାଇଛି । ପ୍ଲିନି ଓ ଟଲେମିଙ୍କ ଭାଷାରେ ଯଥାକ୍ରମେ ସୁରାଇ (Surai) ଓ ଶବରାଇ (Sabarai) ଅଞ୍ଚଳ ହେଉଛି ଏହି ମୁଣ୍ଡା ଗୋଷ୍ଠୀର ଦେଶ । ଏହି ମୁଣ୍ଡା ଗୋଷ୍ଠୀର ଭାଷା ମଧ୍ୟ ବିଭିନ୍ନ ଉପଭାଷା ଓ ଉପଗୋଷ୍ଠୀରେ ବିଭକ୍ତ । ଏହି ମୁଣ୍ଡା ଗୋଷ୍ଠୀର ଦଳଗୁଡ଼ିକ ହେଉଛନ୍ତି ସାନ୍ତାଳ, ଭୂମିଜ ବା ଭୂୟାଁ, ସାଓରା, କୋଡ଼ା, ହୋ, ଅସୁର, କରୱା, କୁରୁଖ୍, ଖଡ଼ିଆ, ଜୁଆଙ୍ଗ, ଶବର, ଗଦବା ଓ ପରଜା ପ୍ରଭୃତି ବିଭିନ୍ନ ଦଳ, ବିଭିନ୍ନ ସ୍ଥାନରେ ବାସ କରୁଥିବା ଏହି ମୁଣ୍ଡା ଗୋଷ୍ଠୀର ଅଧିବାସୀମାନଙ୍କର କଥିତ ଭାଷା ରହିଛି; କିନ୍ତୁ ସେମାନଙ୍କର କୌଣସି ସ୍ୱତନ୍ତ୍ର ଲିପି ନାହିଁ । ସୁପ୍ରାଚୀନ ବୈଦିକଯୁଗରେ ମଧ୍ୟ ଏକ ସମୟରେ ଆର୍ଯ୍ୟଭାଷା ବେଦର କୌଣସି ଲିପି ନ ଥିଲା । ସେଥିପାଇଁ ଆର୍ଯ୍ୟମାନଙ୍କର ବେଦ ଶ୍ରୁତି ନାମରେ ପ୍ରସିଦ୍ଧି ଲାଭ କରିଥିଲା । ବଣଜଙ୍ଗଲର ଏହି ଆଦିମମାନଙ୍କର ଆଦିମ ନିବାସ ବଣଜଙ୍ଗଲର ନିର୍ଜନ ପରିବେଶ ମଧ୍ୟରେ ଆବଦ୍ଧ । ସମୟ ଥିଲା ଏମାନେ ମଧ୍ୟ ବଣଜଙ୍ଗଲର ପରିସୀମା ଅତିକ୍ରମ କରି ପୁରାଣ ବର୍ଣ୍ଣିତ ସେମାନଙ୍କର ବିଶାଳ କରାଳ ରାଜ୍ୟ, ଅସୁର ରାଜ୍ୟ, ନିଷାଦ ରାଜ୍ୟ ଓ ନାଗ ରାଜ୍ୟ ପ୍ରଭୃତି (Asura Institution J. B. O. R. S 1926) ପ୍ରତିଷ୍ଠା କରିଛନ୍ତି ଓ ଅସୀମ ସମୁଦ୍ରର ପରପାରରେ ବହୁଦୂର ବିଦେଶର ରାଜ୍ୟମାନଙ୍କରେ ସେମାନଙ୍କର ପ୍ରଭାବ ବିସ୍ତାର କରିଅଛନ୍ତି । ଏହି ମୁଣ୍ଡା ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଅଦ୍ୟାପି ଅସୁର ନାମରେ ଏକ ସ୍ୱତନ୍ତ୍ର ଦଳର ଲୋକ ରହିଛନ୍ତି । ପାଟଣା ଜିଲ୍ଲାର ଅସୁରଗଡ଼ ଆଜି ମଧ୍ୟ ଅତୀତ ସ୍ମୃତିର ଉଦ୍‌ବୋଧକ ହୋଇ ରହିଛି । କିନ୍ତୁ ପରେ ଏହି ଆଦିମ ଅଧିବାସୀ-ମାନଙ୍କ ଉପରେ ସୁମେରୁ ଅଞ୍ଚଳ ବା ଦ୍ରାବିଡ଼ ଓ ବିଦେଶୀୟ ଆର୍ଯ୍ୟମାନଙ୍କର ଶକ୍ତିଶାଳୀ ପ୍ରଭାବ ବିଶେଷ ଆଘାତ ଦେଇଛି । ଆର୍ଯ୍ୟ, ଅନାର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ମଧ୍ୟରେ ପରସ୍ପର ସଂଘର୍ଷ ଓ ଆକ୍ରମଣ ଫଳରେ ଏହି ଅନାର୍ଯ୍ୟ ଆଦିବାସୀଗଣ ସେମାନଙ୍କର ପ୍ରାଚୀନର ବିଶାଳ ଗୌରବମୟ ଐତିହ୍ୟ ହରାଇ ପୁଣି ଫେରି-ଯାଇଛନ୍ତି ସେମାନଙ୍କ ପୂର୍ବର ଆଦିମ ବାସସ୍ଥାନ

ସେହି ବଣ-ଜଙ୍ଗଲ-ପାହାଡ଼ର ଅନ୍ଧକାରମୟ ପ୍ରଦେଶକୁ ।

ଓଡ଼ିଶା ପ୍ରସଙ୍ଗରେ ଏହି ଅଷ୍ଟ୍ରିକ ଓ ମୁଣ୍ଡା-ଗୋଷ୍ଠୀର ଅଧିବାସୀମାନଙ୍କର ବିଷୟ ବିସ୍ତୃତ କଲେ ଜଣାଯାଏ ଯେ, ଏହି ମୁଣ୍ଡାଗୋଷ୍ଠୀର ଲୋକସଂଖ୍ୟା ଓଡ଼ିଶାର ସମଗ୍ର ଲୋକସଂଖ୍ୟାର ପ୍ରାୟ ଏକ-ତୃତୀୟାଂଶ ହେବ । ଓଡ଼ିଶାର ସଂସ୍କୃତି ଓତଃପ୍ରୋତ ଭାବରେ ଏହି ଆଦିମ ଅଧିବାସୀମାନଙ୍କର ସଂସ୍କୃତି ସହିତ ବିଜଡ଼ିତ । ନାମକୁ ଆର୍ଯ୍ୟ ବୋଲାଉଥିବା ଓଡ଼ିଶାର ଆର୍ଯ୍ୟ-ମାନଙ୍କର ଆଚାରବ୍ୟବହାର, ରୀତିନୀତି ପ୍ରଭୃତି ଏହି ଆଦିବାସୀ ସଂସ୍କୃତିର ଅନେକ ଉପାଦାନ ଗ୍ରହଣ କରିଛି । ଓଡ଼ିଆର ଲୋକସଙ୍ଗୀତ, ଲୋକକଥା, ଲୋକବିଶ୍ୱାସ, ପୂଜା-ପର୍ବ, ଓଷାବ୍ରତ, ଶିଳ୍ପବାଣିଜ୍ୟ ପ୍ରଭୃତି ଦୈନନ୍ଦିନ ବିଭିନ୍ନ କ୍ରିୟାର ବିଭିନ୍ନ ବିଭାବରେ ଏହି ଅନାର୍ଯ୍ୟ ସଂସ୍କୃତିର ପ୍ରଭାବ ଅନେକାଂଶରେ ରହିଛି ଓ ତାହା ଆଲୋଚନାସାପେକ୍ଷ । ଭାରତ ପ୍ରସିଦ୍ଧ ଶ୍ରେଷ୍ଠ ଧର୍ମପୀଠ ଜଗନ୍ନାଥ ମନ୍ଦିରର ସୁଦୃଢ଼ ଭିତ୍ତି ଓ ବିରାଟ ଜଗନ୍ନାଥ ବିଗ୍ରହ ଏହି ଅନାର୍ଯ୍ୟ-ମାନଙ୍କର । ମଧ୍ୟପ୍ରଦେଶର ବିଳାସପୁର ଲାଗିଏତ ଓଡ଼ିଶାର ଶବରମାନଙ୍କର ଉତ୍ପତ୍ତି ଆଖ୍ୟା ମୂଳରେ ପ୍ରାଚୀନ ସାରଳା ମହାଭାରତର ଶବରୀନାରାୟଣ ( Castes & Tribes of C. P. page 503) ବିଦ୍ୟମାନ । ମହାଭାରତ ଯୁଦ୍ଧରେ ନିଷାଦ, କିରାତ, ଆଭୀର ପ୍ରଭୃତି ଅନାର୍ଯ୍ୟଗଣ ଏକ ପ୍ରଧାନ ଅଂଶ ଗ୍ରହଣ କରିଛନ୍ତି । ସେହିପରି ସାରଳା ମହାଭାରତରେ ମଧ୍ୟ ଶବରୀ ରାଜା, ଭୂୟାଁ ରାଜା, କନ୍ଧରାଜା ପ୍ରଭୃତି ଓଡ଼ିଶାର ଅନାର୍ଯ୍ୟ ରାଜାମାନଙ୍କର ମହାଭାରତ ଯୁଦ୍ଧରେ ସେମାନଙ୍କର ବିଶାଳ ସେନାବାହିନୀ ସହିତ ଅଂଶଗ୍ରହଣ ଓ କାଳଜୟବାଷସୀ ପ୍ରଭୃତିର ବର୍ଣ୍ଣନା ପ୍ରସଙ୍ଗରେ ଓଡ଼ିଶାର ଅନାର୍ଯ୍ୟ ସଭ୍ୟତାର ଯଥେଷ୍ଟ କିଛି ସୂଚନା ମିଳିଥାଏ । ଆଗରୁ କୁହାଯାଇଛି ଯେ, ଓଡ଼ିଆ ସଭ୍ୟତା ସଂସ୍କୃତିର ମୂଳ ଏହି ଅନାର୍ଯ୍ୟ ସଭ୍ୟତା । ଆମ୍ଭେମାନେ ଆଜିସୁଦ୍ଧା ଓଡ଼ିଆ ସଭ୍ୟତାର ପ୍ରକୃତ ସ୍ୱରୂପ ଦେଖି ପାରୁନାହୁଁ । କିନ୍ତୁ ବିଶେଷ ଭାବରେ ଅନାର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ବିଶ୍ଳେଷଣା-ତ୍ମକ ପର୍ଯ୍ୟାଲୋଚନାରେ ଆମେ ପ୍ରକୃତରେ ପାଇ ପାରିବା ପ୍ରାଚୀନ ଓଡ଼ିଆ ସଂସ୍କୃତି ଓ ସଭ୍ୟତାର ପ୍ରକୃତ ପ୍ରକାଶ ।

ଭାଷାପ୍ରସଙ୍ଗ ଆଲୋଚନାରେ ଦେଖାଯିବ ଯେ, ଓଡ଼ିଆ ଭାଷାର ମୂଳରେ ମଧ୍ୟ ଏହି ଅନାର୍ଯ୍ୟ ବା ଆଦିବାସୀମାନଙ୍କ ଭାଷାର ଅପ୍ରତିହତ ପ୍ରଭାବ ରହିଅଛି । ପ୍ରାଚୀନରେ ଏମାନଙ୍କର ଭାଷା ବିଭାଷା ନାମରେ ସଂସ୍କୃତ ଅଳଙ୍କାରଗ୍ରନ୍ଥ ଓ ନାଟ୍ୟଗ୍ରନ୍ଥ ସମୂହରେ କଥିତ । ଭରତ ନାଟ୍ୟଶାସ୍ତ୍ରରେ—

"ଶବରାଭୀର ଚଣ୍ଡାଳ ସଚର ଦ୍ରାବିଡ଼ୋଡ୍ରଜାଃ
ହୀନା ବନେ ଚରଣାଞ୍ଚ ବିଭାଷା ନାଟକେ ସ୍ମୃତା ।"
· ନା: ଶ୍ଳୋ: ୩୬

ସଂସ୍କୃତ ଅଳଙ୍କାରଶାସ୍ତ୍ରରେ ବର୍ଣ୍ଣିତ ସତେଇଶ ପ୍ରକାରର ଅପଭ୍ରଂଶ ମଧ୍ୟରେ ଔଡ୍ରୀ ଓ କାଳିଙ୍ଗ୍ୟ ଅପଭ୍ରଂଶ ଭାଷାର ନାମୋଲ୍ଲେଖ ରହିଛି । ଓଡ଼ିଶାର ସପ୍ତଦଶ ଶତାବ୍ଦୀର ଅନ୍ୟଜଣେ ବିଶିଷ୍ଟ ସଂସ୍କୃତ ଆଳଙ୍କାରିକ ମାର୍କଣ୍ଡେୟ ତାଙ୍କର 'ପ୍ରାକୃତସର୍ବସ୍ୱ'ରେ ଔଡ୍ରୀ ଅପଭ୍ରଂଶ ସମ୍ବନ୍ଧରେ କହିଅଛନ୍ତି ଯେ ଔଡ୍ରୀ ଓ ଶୌରସେନୀର ସମ୍ମିଶ୍ରଣରେ ସାବର ଔଡ୍ରୀ ନାମକ ଶବରର ଭାଷାର ଉତ୍ପତ୍ତି ଘଟିଛି । ପୁଣି ପୁରୁଷୋତ୍ତମ-ଦେବଙ୍କ ପ୍ରାକୃତାନୁଶାସନ ନାମକ ଗ୍ରନ୍ଥରେ (Prakrit Prakash edited by D. C. Sarkar, Appendix) ଔଡ୍ରୀ ଅପଭ୍ରଂଶର ଲକ୍ଷଣ ସ୍ୱରୂପ ପ୍ରଦତ୍ତ ହୋଇଛି । ଔଡ୍ରୀ ବା କାଳିଙ୍ଗ୍ୟ ଅପଭ୍ରଂଶ ଭାଷା ଯାହାହେଉ ନା କାହିଁକି ତାହାର ମୂଳରେ ଅନାର୍ଯ୍ୟ ବା ଆଦିମ ଅଧିବାସୀମାନଙ୍କର ପ୍ରଭାବ ବିଶେଷ ଭାବରେ ଦେଖାଯାଇଥାଏ । ପ୍ରାଚୀନ ଓଡ଼ିଶା ଦେଶର କଳିଙ୍ଗ ନାମକରଣରେ ମଧ୍ୟ ଏହି ଅନାର୍ଯ୍ୟ ପ୍ରଭାବ ରହିଛି ବୋଲି ଅନେକ ଐତିହାସିକ ଓ

ଭାଷାତତ୍ତ୍ୱବିତ୍‌ମାନଙ୍କର ମତ । କୁଇ ବା କୁଲି (Kuli) ଭାଷାରେ ଧାନକୁ କୁଇଙ୍ଗ (Kuing) ଓ ବଳଦ ଏବଂ ଗାଈଗୋରୁଙ୍କୁ କୁଡ଼ଙ୍ଗ (Koding) କୁହାଯାଏ । 'ଙ୍ଗ' ଏହି ବହୁବଚନ ପ୍ରତ୍ୟୟଟି କେବଳ କୁଇଭାଷାରେ ବହୁ ପରିମାଣରେ ଦେଖିବାକୁ ମିଳିଥାଏ ଯେପରି କୋଡ଼ଙ୍ଗ, ବଡ଼ଙ୍ଗ, କୁଇଙ୍ଗ ପ୍ରଭୃତି ଶବ୍ଦ । କୁଇ ବା କୁଲି ଜାତିର ଲୋକସମୂହ (କୁଇ ବା କୁଲି+ଙ୍ଗ) ଶବ୍ଦରୁ କୁଳିଙ୍ଗ ବା କଳିଙ୍ଗ ଶବ୍ଦର ସୃଷ୍ଟି ଓ ତାହାର ମୂଳରେ ଆଦୌ ଆର୍ଯ୍ୟଭାଷାର ସମ୍ବନ୍ଧ ନାହିଁ (*I. A. 1925 P. 221*) ବୋଲି ଜାଣିବାକୁ ହେବ । କୁଇ ଭାଷାର ଅନୁସନ୍ଧାନରେ ଅନେକ ଶବ୍ଦ ଦେଖିବାକୁ ମିଳିଥାଏ, ଯେଉଁ ଶବ୍ଦଗୁଡ଼ିକ ସେହି ଅର୍ଥ ବା ସାମାନ୍ୟ ପରିବର୍ତ୍ତିତ ଅର୍ଥରେ ଓଡ଼ିଆ ଭାଷାକୁ ଆସିଥିବାର ମନେହୁଏ ।

| କୁଇ | ଓଡ଼ିଆ |
|---|---|
| ଆବା (ବାପା) | ଆବୁ, ବୁ |
| ଇଅ (ମା) | ଆଇ |
| କୋଡ଼ଙ୍ଗ (ବଳଦ) | କଳିଙ୍ଗା ବଳଦ |
| ବଡ୍ରେ (ବାଡ଼ି) | ବାଡ଼ (*stick*) |
| କୋଡ଼ (କୋଡ଼ିଏ ସଂଖ୍ୟା) | କୋଡ଼ି |
| ପଗ୍ (ବିଭକ୍ତ କରିବା) | ପଗ (ଅଂଶ) |
| ଡ଼ୋ (ଛାଦ) | ଡୋଳ (ଘୁମେଇବା) |
| ପଡ଼ (ଗାଁ) | ପଡ଼ା (ଗାଁ) |
| ପଣ୍ଡି (ଘୁଷୁରି) | ପଣ୍ଡା(ମଇଁଷି ପଣ୍ଡା) |

ମୁଣ୍ଡାରି ଭାଷାରେ ଅନେକ ଶ ରହିଛି । ସେଗୁଡ଼ିକର ତାଲିକା ଏଠାରେ ପ୍ରଦାନ କରିବା ଅସମ୍ଭବ । 'ଚିରଗୁଣୀ' ଶବ୍ଦଟି ଓଡ଼ିଆ ଭାଷାରେ ବିଶେଷଭାବରେ ପ୍ରଚଳିତ । ଗାଁ-ଗଣ୍ଡାରେ ଲୋକବିଶ୍ୱାସ ଏପର୍ଯ୍ୟନ୍ତ ରହିଛି ଯେକୌଣସି ସ୍ତ୍ରୀଲୋକ ଯଦି ଗର୍ଭାବସ୍ଥାରେ ମରିଯାଏ, ତାହାହେଲେ ସେ ଚିରଗୁଣୀ ପାଲଟିଯାଏ । କେବଳ ମୁଣ୍ଡା ନାହିଁକି ଅଧିକାଂଶ ଅନାର୍ଯ୍ୟ ଭାଷାରେ ଏହି ଶବ୍ଦଟି ବିଭିନ୍ନ ସ୍ୱରୂପ ନେଇ ପ୍ରଚଳିତ ଓ ପୂର୍ବୋକ୍ତ ଅର୍ଥରେ ମଧ୍ୟ ବ୍ୟବହୃତ । ଯେପରି, ମୁଣ୍ଡାରି = ଚୁରିନ୍, ସାନ୍ତାଳୀ = ଚୁରିନ୍, କୁରୁଖ୍ – ଚୁରିଲ୍ ଇତ୍ୟାଦି । ମୁଣ୍ଡାରି ଭାଷାରେ 'ଓରା' (*Ora*) ଶବ୍ଦଟି ଘର ଅର୍ଥରେ ପ୍ରଯୁକ୍ତ; କିନ୍ତୁ ଓଡ଼ିଆରେ ତାହା ଘରକୁ ନ ବୁଝାଇ ଘର ଗୃହ ନିମିତ୍ତ ବଡ଼ କାଠଖଣ୍ଡକୁ ବୁଝାଇଥାଏ । ସେହି ଓରା ଶବ୍ଦର ଏହିପରି ବିଭିନ୍ନ ରୂପ ବିଭିନ୍ନ ଅନାର୍ଯ୍ୟ ଭାଷାରେ ଘର ଅର୍ଥରେ ହିଁ ବ୍ୟବହୃତ ହେଉଛି ।

ମୁଣ୍ଡାରି = ଓରା, ସାନ୍ତାଳୀ = ଓର, କରଓ୍ୱା = ଓରାଇ, ଖଡ଼ିଆ = ଓ, ହୋ = ଓଆ, କୋଡ଼ା = ଉରା ଇତ୍ୟାଦି ।

| ମୁଣ୍ଡାରୀ | ଓଡ଼ିଆ |
|---|---|
| କୁଡ଼ (କୋଡ଼ିଏ) | କୋଡ଼ି |
| ଆଙ୍ଗ (ଆଁ କରି ରହିବା) | ଆଁ |
| କୁରି (ସ୍ତ୍ରୀ) | ଖୁଡ଼ି (ବାପର ସ୍ତ୍ରୀ) |
| ଗୃଡ଼ଲ | ଗୃଡ଼ଲ |
| ଠୁଙ୍କିଓ | ଠୋକେଇ |
| ମୋଟୋ | ମୋଟା |
| କଜି (କହିବା) | କଜିଆ (କଳହ) |

ଚେନ୍‌ରେ (କ୍ଷୁଦ୍ର ପକ୍ଷୀବିଶେଷ) ଚେମଣି—

ଓଡ଼ିଆରେ ହେଟା ଶବ୍ଦ କୁକୁର ପରି ଏକ ପଶୁକୁ ହେଟାବାଘ ବୁଝାଇଥାଏ; କିନ୍ତୁ ପରିବର୍ତ୍ତିତ ହେଟା ଶବ୍ଦଟି ଆଦିମଅଧିବାସୀମାନଙ୍କ ଭାଷାରେ ସାଧାରଣ କୁକୁରକୁ ବୁଝାଇଥାଏ । ଶବ୍ଦଟିର ରୂପ ହେଉଛି—

ମୁଣ୍ଡାରି—ସେଟା, ସାନ୍ତାଳୀ—ସେଟା, ଜୁଆଙ୍ଗ—ସେଟାରା, ହୋ—ସେଟା, କୋଡ଼ା—ସେଟ ଇତ୍ୟାଦି ଓ ଅନାର୍ଯ୍ୟ ଭାଷାରେ ଲକ୍ଷିତ 'ସ'ଓଡ଼ିଆରେ 'ହ' ରେ ପରିଣତ ହୋଇ 'ହେଟା' ଶବ୍ଦରେ ପରିଣତ ହୋଇଛି । 'ଲଙ୍କା' ଶବ୍ଦ ଜୁଆଙ୍ଗ ଭାଷାରେ ଦୂର ବାଟକୁ ବୁଝାଇଥାଏ । ଆଦିମ ଅଧିବାସୀମାନଙ୍କ ଭାଷାରେ ଏହି ଲଙ୍କା ଶବ୍ଦର ବହୁ ପ୍ରଚଳନ ରହିଛି । କୋରଓ୍ୱା ଭାଷାରେ ଲଙ୍କା ଶବ୍ଦ

ଲଙ୍ଗକାର (*Langkar*) ଓ ଗଣ୍ଡ ଭାଷାରେ ତାହା ଲକ୍ (*Lak*) ଭାବରେ ପୂର୍ବୋକ୍ତ ଅର୍ଥରେ ପ୍ରଚଳିତ । ଓଡ଼ିଆ ଭାଷାରେ ସେହି ଏକ ଅର୍ଥରେ ପ୍ରୟୋଗ ରହିଛି 'ପଗୁରି ପଗୁରି ଲଙ୍କା ଯିବା' । ଅସୁର ବା ଅନାର୍ଯ୍ୟ-ମାନେ ନୌ-ବାଣିଜ୍ୟରେ ବିଶେଷ ଦକ୍ଷ ଓ ପ୍ରାଚୀନରେ ଓଡ଼ିଶାର ସିଂହଳ ପ୍ରଭୃତି ଦେଶ ସହିତ ନୌ-ବାଣିଜ୍ୟର ସଂକ୍ଷିପ୍ତସାର ଇତିହାସ ଯେ ଏହି ବଣଜଙ୍ଗଲର ନଗ୍ନ ଆଦିବାସୀମାନଙ୍କଠାରେ ପ୍ରଚ୍ଛନ୍ନ ଭାବରେ ରହିଛି, ଏହା କଦାପି ଅସ୍ୱୀକାର କରିହେବ ନାହିଁ ।

ଗଣ୍ଡ, ସାନ୍ତାଳୀ ପ୍ରଭୃତି ଆଦିବାସୀ ଭାଷାରୁ ମଧ୍ୟ ବହୁ ସଂଖ୍ୟାରେ ଅନେକ ଶବ୍ଦ ସମସୂତ୍ରମେ ଓଡ଼ିଆ ଭାଷାରେ ସ୍ଥାନଲାଭ କରିଛି । ଆମ ଓଡ଼ିଆ ଭାଷାରେ ଅନେକ ଶବ୍ଦ ଅନାଲୋଚିତ ଭାବରେ ରହିଛି, ଯାହାର ସମ୍ବନ୍ଧ ଅନାର୍ଯ୍ୟ ଭାଷାସମୂହରେ ନିବଦ୍ଧ । ଆଜିକାଲି ଏପରି ଅନେକ ଶବ୍ଦର ଆଲୋଚନା କେବଳ 'ଦେଶଜ' ସଂଜ୍ଞାରେ ହିଁ ସମାପ୍ତି ଲାଭ କରୁଛି । ଗଣ୍ଡ ଓ ସାନ୍ତାଳୀ ଭାଷାର ଆଲୋଚନାରେ ମଧ୍ୟ ଅନେକ ଶବ୍ଦ ଓଡ଼ିଆ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବାର ଦେଖାଯାଏ ।

| ଗଣ୍ଡ | ଓଡ଼ିଆ |
|---|---|
| ଖୂରସ୍ | ଖୂରଙ୍ଗ |
| ଗୁଧି ( ଭାଲୁ ) | ଗୋଧିସାପ |
| ନଇଁଆ (ଫଳ) | (କଇଁଆ ତେନ୍ତୁଳି ଫଳ) |
| ଘୁଷରି | ଘୁଷୁରି |
| ଝୁଲ୍ | ଝୁଡ଼ଳ |

| ସାନ୍ତାଳୀ | ଓଡ଼ିଆ |
|---|---|
| ଅଡ଼ା | ଅଡ଼ା (ଘେରା) |
| ବଚା | ବଚା (ବାଉଁଶ ଫାଳ) |
| ଅରମ୍ [ଖାମ୍ଭଲଗଛ] | ଅରମ (ଜଙ୍ଗଲଆ) |
| ଝୁଲ | ଝୁଲ (ଛପର) |
| ବାଓରା, ବାଉରି (ଗେଡ଼ା) | ବାଉରି (ଜାତିବିଶେଷ) |
| ଚୂୟା [ଝରଣା] | ଚୂଆ [ଶ୍ରେଷ୍ଠପୋଖରୀ] |

ଏହାଛଡ଼ା ଜୁଆଙ୍ଗ ଭାଷାର ଅନେକ ଶବ୍ଦ ଓଡ଼ିଆ ଶବ୍ଦ ସହିତ ସାମ୍ୟ ଅଛି । ଜୁଆଙ୍ଗ ଭାଷାର ଅନେକ ଶବ୍ଦ ଓଡ଼ିଆ ଭାଷାରେ ଅନେକ ଦିନରୁ ମିଶିଅଛି । ଯେପରି:—

| ଜୁଆଙ୍ଗ | ଓଡ଼ିଆ |
|---|---|
| ବା (ବାଘ) | ବା |
| କା (ଭାଇ) | କାକା |
| ମେରମ୍ (ଛେଳି) | ମେଣ୍ଢା |
| ବୁଆ (ଧାନ) | ବୁଆ [ଶ୍ରେଷ୍ଠଧାନ] |
| ଅଣ୍ଡିଆ (ପୁରୁଷ) | ଅଣ୍ଡିରା (ପୁରୁଷ) |

କୁରୁଖମାନଙ୍କର ଭାଷାରେ ମଧ୍ୟ ସେହିପରି ଅନେକ ଶବ୍ଦ ଦେଖାଯାଏ, ଯାହାର ପ୍ରଭାବ ଓଡ଼ିଆ ଭାଷା ଉପରେ ପଡ଼ିଅଛି ।

| କୁରୁଖ୍ | ଓଡ଼ିଆ |
|---|---|
| ପଡ଼ା (ଘର) | ପଡ଼ା (ଗାଁ) |
| ଅଣ୍ଡା [ବଳଦ] | ହଡ଼ା |
| ଆଖରନା ଆଖଡ଼ା] | ଆଖଡ଼ା |
| ଅଣ୍ଡା | ଅଣ୍ଡିରା |
| କୋନ (ଶ୍ରେଷ୍ଠ) | କୁନ |
| ଓଲ୍ଲା [ଧନ] | ଓଳ, ଓଳା |
| ଆଡ଼ (ବନ୍ଧ) | ଆଡ଼ |
| ବେଲ (ଭୂମି) | ବିଲ |
| ବଣ୍ଡି | ବଣ୍ଡା |
| ଭୁସ୍ସୁ [କୁଶ] | ଭୁଷି [ଭୁଷିକଣ୍ଟା] |
| ଝୁଳୀ [ଶ୍ରେଷ୍ଠଘର] | ଝୁଳୀ |
| ପୋକ | ପୋକ |
| ଚୈପା | ଚୈପା |
| ଚୁଟ୍ଟି | ଚୁଟି |
| ଚେରଙ୍ଗା | ଛେଳି |
| ଡାହିୟା | ଡାହି (ଶ୍ରେଷ୍ଠଡାଳ) |
| ଦାଣ୍ଡି (ଗୀତ) | ଦାଣ୍ଡି 'ମହାଭାରତ ଓ ରାମାୟଣ' ପ୍ରଭୃତି |

| କୁରୁଖ୍ | ଓଡ଼ିଆ |
|---|---|
| ଡେବ୍‌ବା (ବାମ) | ଡେବର (ହାତ) |
| ଡୋଙ୍ଗା | ଡଙ୍ଗା |
| ଡ଼ପ୍ପା | ଡପ୍‌ପା (ଗୀତ) |
| ଢୋକ | ଢୋକ |
| ପୋଙ୍କା | ପେଟ |
| ଢେକ୍‌କା (ଟେକା) | ଟେକା |
| ଢିଙ୍କି | ଢିଙ୍କି |
| ଢୁଲକ | ଢୋଲକ |
| ଫସ୍‌କା | ଫସ୍‌କା (ଫସ୍‌କାମାଟି) |
| ଗଇଣ୍ଡା | ଗଣ୍ଡା |
| ଗିଙ୍ଗଟି | ଗେଙ୍ଗୁଟି |

ଗୋଟା—ଗୋଟା, ଗୁଣ୍ଡା—ଗୁଣ୍ଡା (ଘଡଗୁଣ୍ଡା), ଜାଗୁ (ପଖାଳ)—ଜାଉ, ଯୋବ୍ରା—(ଧନ୍ଦସନ୍ଦିଆ ଜାଗା) ଯୋବ୍ରା, ଝମ୍‌ବ (ବହୁତ ଲୋକ ଜମା ହେବା) —ଝାମଲ, ଝପି (ଟୋକେଇ ଯୋଡ଼ଣୀ)—ଝାମ୍ପି, ଝବ (ଝରଣା)—ଝରଣା, ଝଟା (ବଣ)—ଝଟା, କାବୁ (ପୋଷା)—କାବୁ (ବଶ କରିବା), କଚରନା (ପକେଇ ଦେବା) କଚୁଡ଼ିବା, କକା—କକା, କାକ୍କା—କାକ୍କା, କରଖା (ଚୁଞ୍ଚୀ)—ଖଡ଼କା (ନଡ଼ିଆପତ୍ରର ଡାଙ୍ଗ), କୁନା (ଶ୍ରେଷ୍ଠ)—କୁନ (କୁନପୁଅ, କୁନଝିଅ), କେନ୍ଦ୍ରା (ବାଦ୍ୟଯନ୍ତ୍ର)—କେନ୍ଦରା, କୋକୋ (କୁକୁଡ଼ା)— କୁକୁଡ଼ା, କୋସା (ପଣସ ଫଳ)—କୋସା, ଖୋସା, କୁଡ଼ା (ଗଦା) କୁଡ଼ାଇବା, କୁଡ଼, କୁଉଡ଼—କୋଡ଼, [ହାଣିବା ନିମିତ୍ତ କୋଡ଼], କୁଣ୍ଡୋ (କୁଣ୍ଡା, ଧାନଚୋପା) —କୁଣ୍ଡା, କୁରଆ—କୁଡ଼ଆ, କୁଟା—କୁଟା, କୁଟଣୀ (ଦୁଷ୍ଟଚରିତ୍ରା ସ୍ତ୍ରୀ)—କୁଟୁଣୀ, ଖଲି—ଖଲ,ଖସି—ଖାସି ଖୋଲପା (ଗାତ, ଗାଡ଼)—ଖୋଲପା, ଖୋଳ, ଖାଲ (ଚଷା ହୋଇଥିବା ଜମି, ବିଲ)—ଖାଲ (ଗହଡ଼ିଆ ଜମି), ଖାର୍ (ନଦୀ, ପାଣିଜାଗା)—ଖାଲ, ଖରସୁଆଁ —(ଖରସ୍ରୋତା), ଲୁଣ୍ଡି (କଣ୍ଡା)—ଲୁଣ୍ଡି, ମଧା, (ତୈଳବୀଜ)—ମାଘି ତଳ, ମହୁ (ଦହି)—ମହୁ (ଦହି ପକାଇବା ନିମିତ୍ତ ପୂର୍ବରୁ ରଖାଯାଇଥିବା..ଦହି) ମହୁଗ୍ (ବିଷ) ମହୁର, ମଣ୍ଡି (ରନ୍ଧାଭାତ)—ମଣ୍ଡ, ଟୋଙ୍ଗେ (କୁରାଡ଼ି)—ଟାଙ୍ଗିଆ (ଶ୍ରେଷ୍ଠ କୁରାଡ଼ୀ)— ମେର୍‌ହୋ—ମେଣ୍ଢା, ମେଢ଼ା, ମିଟକ (ଆଖିମାରିବା) —ମିଟ୍‌କା, ଓଣ୍ଡି (ସ୍ତ୍ରୀ)—ଅଣ୍ଡିରୀ, ଯେପରି ଅଣ୍ଡିରଚଣ୍ଡୀ, ମୁରହି—ମୁଢ଼ି, ଓର୍—ଓର (ଠାବ) ପଗା (ପଗଲ)—ପାଗ, ପାଦା(ଦଉଡ଼)—ପଦା, ପାଇକ—ପାଇକ, ପାଳ (ସମସ୍ତ)—ପାଳ (ଥର), ଦାଣ୍ଡି ପାରନା (ଗୀତ ବୋଲିବା)—ଦାଣ୍ଡିପରିପୂରଣ ଅର୍ଥାତ୍ ଦାଣ୍ଡିପୁରଣ ବୋଲିବା, ପସର୍ (ଦୋକାନ)— ପସରା (ହାଣ୍ଡି, ମାଠିଆ ଅର୍ଥରେ), ବନ୍ତ ପେଲ, (ଝିଅ)—ପିଲ, ପିଣ୍ଡା—ପିଣ୍ଡା, ପିଟନା—ପିଟିବା, ପୋଙ୍କା—ପେଟ, ପୁଡ଼ା (ଶ୍ରେଷ୍ଠ)—ପୁଡ଼ଆ, ଅରଖା (ଗୋଟାଏ ପ୍ରକାର ଗଛ), ଅରଖ ଗଛ, ସରୁଆ— ସରୁଆ, ସୋଗ— ସୋହାଗ, ସୋଗ, ଛଡ଼୍ଡା (ବାଡ଼)—ଛଡ଼ା (ବାଡ଼ ଅର୍ଥରେ), ଟୋପର (ଛତା) —ଟୋପ, ଟୁଙ୍କି (ଟୋକେଇ)—ଟୋକେଇ, ଟାଙ୍ଗି (ଟାଙ୍ଗିବା ଭୂଇଁ)—ଟାଙ୍ଗରା, ଟାଙ୍ଗର, ଟାଟି—ଟାଟି, ଠେକ୍‌କା (ମାଟିର ଶ୍ରେଷ୍ଠଘଡ଼)—ଠେକ ।

ଏହି କୁରୁଖ୍ ଭାଷାରେ ମଧ୍ୟ ଆହୁରି ଅନ୍ୟ ନାମ ଅନେକ ଓଡ଼ିଆ ଶବ୍ଦ ରହିଛି । କୁରୁଖ୍ ଭାଷାର ଅନ୍ୟ ନାମ ଓରାଓଁ ଭାଷା ।

ଶବରମାନେ ଓଡ଼ିଶାର ପ୍ରାଚୀନ ଅଧିବାସୀ । କେତେକ ଓଡ଼ିଶାର ସଭ୍ୟତାକୁ ଶବର ସଭ୍ୟତା ବୋଲି ମଧ୍ୟ କହିଥାଆନ୍ତି । ବହୁ ପ୍ରାଚୀନ କାଳରୁ ଓଡ଼ିଆର ପ୍ରାକୃତ ବୈୟାକରଣିକମାନେ କହିଛନ୍ତି ଯେ, ଓଡ଼ିଆ ଭାଷାରେ ଶବର ବା ଆଦିବାସୀ ଭାଷାର ସମ୍ମିଶ୍ରଣ ଘଟିଛି । ଆମ୍ଭେମାନେ ଶବର ଭାଷାରେ ଅନେକ କିଛି ପ୍ରାଚୀନ ଓଡ଼ିଆ ଶବ୍ଦ ରୂପରେଖ ପାଇପାରିବା । ତାହାର କେତେକ ନମୁନା ଏଠାରେ ଦିଆଗଲା । ଶବର ଓ ଓଡ଼ିଆ ଭାଷାର କ୍ରମରେ:—

ଭଗା (ଗାଳଦେବା)—ଉଦେଇବା, ଧାଙ୍ଗଡ଼ା—ଧାଙ୍ଗଡ଼ା, ଗୋଡ୍ଡେନ (ଅଞ୍ଚଳ)—ଗଡ଼ (ଦୁର୍ଗ) । ଚୃଷ ଅର୍ଥରେ ଶବର ଭାଷାରେ 'ଓର୍' ଶବ୍ଦଟି ବହୁଳ ଭାବରେ ପ୍ରଚଳିତ । ସେମାନେ ଚୃଷକୁ 'ଅର୍' ଓର୍‌ସୋନ୍' କହନ୍ତି ଓ ଚୃଷୀକୁ ସେମାନେ 'ଅନ୍ଓର୍-ଗେମାରେନ୍' ବୋଲି କହିଥାଆନ୍ତି । ଏହି ଶବର ଭାଷାର 'ଓର୍'ରୁ "ଓଡ୍ର" ଦେଶ ଓ ଓଡ଼ିଆ ପ୍ରଭୃତି ଶବ୍ଦର ଉଦ୍ଭବ ହୋଇଥିବା ସମ୍ଭବ ।

ସିଣ୍ଡି (ମଦଦୋକାନ)—ଶୁଣ୍ଡୀ, କଡ୍ନ୍ (ଖଡ୍ଗ)—ଖଡ୍ଗ, ଠାଙ୍କେଲେନ୍ ଠୋକେଇ)—ଠୋକେଇ, ଫଡ୍ଆ (ଡଙ୍ଗା)—ଫଡ୍ଆ, ଜୋଡନ୍ (ଝରଣା)—ଜୋଡ଼ (ପାଣିଜାଗା), କକୁନ୍ (କକା)—କକା, ଗୁଡ଼ନ୍ (ଠେଙ୍ଗା)—ଗୋଡ଼, ଗଡନ—ଗଡ଼ (ଦୁର୍ଗ), ଏଡ଼ିନ (ଭୁଲା) ଏଣ୍ଡି, ଶଗଡ଼ନ୍—ଶଗଡ଼, ପିପାନ୍—ପିମ୍ପା, କଡ୍ଡୁ ବୁଡ୍ଡେନ୍ (ସାଁବାଲୁଆଁ)—ବୁଡ଼ିଆଣୀ (ପୋକ), କଜନ୍ (ଗାଳିଦେବା)—କଜିଆ, ଗଡ଼୍ ଗଡ଼୍ (ଖଣ୍ଡ)—ଗଡ଼ (କାଠଗଡ଼), ଖୁଖୁନ୍ (କଫ)—ଖଁ ଖଁ, କୁକୁ (କୋଇଲି)—କୋଇଲି, କେ-କେ-କେ—କେକା (ସ୍ୱ), ଓର୍, ଓର୍-ଓର୍... ଧାନ ଚଷିବା, ଓଡ଼ିଆରେ ଓରେ ବା ଓଡ଼େ ଚୃଷ, ଓଡ଼ଚଷା ପ୍ରଭୃତି ଶବର ମୌଳିକ ଧାତୁ ଏହି 'ଓର୍' ଓରେନ୍—ଚୃଷ, ଓରେମାରେନ୍—ଚୃଷୀ ଓ ଓଡ଼ଚଷା, କୁମ୍ପିନ୍ (ଗ୍ରେଟପାତ୍ର)—କୁମ୍ପି, କୁମ୍ଭା, କଲ୍ଲନ୍—କାଲ୍, କାଲି, ଓମ୍ଡା—ଅମଡ଼ା, କେଲ୍ତାରେନ୍ (ଅନାବୃଷ୍ଟି)—କାଲ୍ତାର, କୋଡ଼ଏ—କୋଡ଼, କୁଣ୍ଡୁ (ଆଲିଙ୍ଗନ ଅର୍ଥରେ)—କୁଣ୍ଢେଇବା, ଡ୍ଆନେନ୍ (ଡାଆଣୀ)—ଡାଆଣୀ, ଅଡେଡ୍ଡା (ବାଜେ)—ଅଗାଡ଼, ଫଡ଼ିଆ, ଶରବେ ମାରେନ୍ (ମାରେନ୍—ଲୋକ—ଚୃଷୀ, 'ଶବର' ଶବ୍ଦ ବର୍ଣ୍ଣ ବିପର୍ଯ୍ୟୟରେ 'ଶରବେ' ହୋଇଥିବା ସମ୍ଭବ, ଶର୍‌ବୋନ୍—ଚୃଷଜମି, ରେଡ୍ଡାଇଟ୍ଡେନ୍ (ରଡ଼-ନିଆଁ)—ରଡ଼ନିଆଁ, ଉମ୍ନାଏନ୍—ଉମ୍‌ହେଇ ବେଣ୍ଟିବଡ୍ (ଚଟ୍ଟେଇମଗାଳ)—ବେଣ୍ଟକାର, ରଡ଼୍ ରଡ଼୍ ମଡ଼୍ (ରାଗରେ ରଡ଼ମଡ଼ ହେବା)—ରଡ଼ମଡ଼, ଚୋଡ୍ଡେନ୍ (ପାଟି ଆଁ କରିବା)—ଚୋଡ଼ିବା (ଗାଲ ଚୋଡ଼ିବା), କୁରୁନ୍ (ମୁଣ୍ଡବାଳ)—ଓ· କୁରୁଳ, ଲଙ୍କାନ୍ (ଉଚ୍ଚ)—ଦୂରତା ଓ ବଡ଼ ଅର୍ଥରେ ଅନ୍ୟାନ୍ୟ ଆଦିବାସୀ ଭାଷାରେ ଲଙ୍କା ଶବ୍ଦ ମଧ୍ୟ ବ୍ୟବହୃତ । ବେଣ୍ଟାନ୍ (ଶିକାରୀ)—ବେଣ୍ଟକାର, କୁଣ୍ଢେଇ (ଖେଳନା)—କୁଣ୍ଢେଇ, ଏତେନ୍ ଏତେନ୍ (ଏତେ ଏତେ)—ଏତେ ଏତେ, ବୁଡ୍‌ବୁଡ୍ଡେନ୍ (କାଠପତଙ୍ଗ)—ବୁଡ଼ିଆଣୀ କୁଲ୍ଲାକ [ଶୃଗାଳ]—କୁଲ୍ଲିଆ (ସମ୍ବଲପୁରୀ) କୋଙ୍ଗିଶିରେନ୍ (କଇଁଫୁଲ) କଇଁ, କଲ୍ଲାଇ ବଲ୍ଲାଇ (ଅଡୁଆ)—କଲିବଲି, କଣ୍ଟେ—(ଜଡ଼ା)—କାଣ୍ଟି [ତେଲର ମଇଳା], ଓରେମାରେନ୍—ଚୃଷୀ, ପୋ—(ଫୁଟେଇବା, ଫୋଡ଼ିବା)—ଫୋଡ଼ିବା, ଓର୍, ଓର୍‌ରେ, (ଲଙ୍ଗଳ), ଲଙ୍ଗଳ ସିଆର—ଅର୍ ଓର୍‌ରେ ସବୁ 'ଓର୍' ଧାତୁନିଷ୍ପନ୍ନ ଏବଂ ଏହି ଶବ୍ଦରୁ ଓଡଆ ବା ଓଡ୍ର ଶବ୍ଦ ହୋଇଛି ।

ଡାଙ୍ଗ୍ନ୍—ଡାଙ୍ଗ, ଗାରିଲେନ୍ (ଗୁହ)—ଗରି (ଘର ଛପରରେ ଗରି ଶବ୍ଦ ଓଡ଼ିଆରେ ବ୍ୟବହୃତ) । ସରୁ—ସରୁ, ଓରେନ୍-ଓଇ ବା ଓଡ଼, ମାଡ଼େ (ଝିଙ୍କିବା, ମୋଡ଼ିବା)—ମୋଡ଼ିବା, କେଣ୍ଡାରନ୍ (କେଣ୍ଡା, ପେନ୍ଥ)—କେଣ୍ଡା, ଫଲ୍ଲେନ୍ (ଫଲ୍ଲା,ଫଲ୍ଲୀ)—ଫଲ୍ଲା, ଫଲ୍ଲୀ ।

ପେଲ୍ଲନ୍—ପେଡ଼ା, କଇଟ—କଇତ୍ଥ, ଛାଟିଆ—ଛାଟିଆ ଇତ୍ୟାଦି ।

ହୋ :—ପାଡ଼ଶୋ—ପଣସ, ଗୁଉଳି—ଗୁଉଳି, ଥାଡ଼୍ଡ଼—ଥାଳି, ଡିବାଶ-ଡିବି, ଠୁକି—ଠୋକେଇ, କଳା—କଳା, ଢୋଲ୍ଲ—ଢୋଲ, ହଡ଼ା—ହଡ଼ା, ଗେଣ୍ଡା—ଗେଣ୍ଡା, ବାଦୁଡ଼—ବାଦୁଡ଼, ନଇ—ନଇ (ଲଟା), ପାଇଟି—ପାଇଟି, ବୋକା—ବୋକା, କାଲ୍—କାଲ୍ଲ, ଦୋଲିଆ—ଦଉଆ ।

ସାନ୍ତାଳୀ ଭାଷାର ପ୍ରଭାବ ମଧ୍ୟ ଓଡ଼ିଆ ଭାଷାରେ ବହୁ ପ୍ରମାଣରେ ପଡ଼ିଛି । ସାନ୍ତାଳୀମାନେ ଓଡ଼ିଆ ଭାଷାରୁ ଓ ଅନ୍ୟାନ୍ୟ ଭାଷାରୁ ଅନେକ ଶବ୍ଦ ଗ୍ରହଣ କରିଅଛନ୍ତି । ଓଡ଼ିଆ ଭାଷାରେ ଅନେକ ଶବ୍ଦ ଯାହାର ମୌଳିକ ଧାତୁ ସଂସ୍କୃତ ବା ଅନ୍ୟାନ୍ୟ ଭାଷାରେ ମିଳେ ନାହିଁ, ତନ୍ମଧ୍ୟରୁ ଅନେକ ଶବ୍ଦ ସାଁଓତାଳି ଭାଷାରେ ରହିଛି । ଅନ୍ୟାନ୍ୟ ଆଦିବାସୀ ଭାଷାରେ ଯେତେ ଓଡ଼ିଆ ଶବ୍ଦ ଦେଖାଯାଏ ନାହିଁ ତନ୍ମଧ୍ୟରେ ଅନେକ ଶବ୍ଦ ସାନ୍ତାଳୀ ଭାଷାରେ ରହିଥିବାର ଦେଖାଯାଏ । ଓଡ଼ିଆ ଭାଷା ଅନେକାଂଶରେ ସାନ୍ତାଳୀ ଭାଷାରୁ ଶବ୍ଦ ଗ୍ରହଣ କରିଥିବା ଓ ଓଡ଼ିଆ ସାନ୍ତାଳୀକୁ ପ୍ରଭାବିତ କରିଥିବା ସାନ୍ତାଳୀ ଭାଷା ଆଲୋଚନାରେ ସ୍ପଷ୍ଟଭାବରେ ପ୍ରତୀୟମାନ ହୁଏ । ସାନ୍ତାଳୀ ଓ ଓଡ଼ିଆ କ୍ରମରେ କେତେକ ଶବ୍ଦର ଉଦାହରଣ ଦିଆଗଲା ।

ଅଡ଼ (ଗୋରୁ ରହିବା ନିମିତ୍ତ ଘେରା)--ଅଡ଼ା, ଅଡ଼ାଅଡ଼ (ଶବ୍ଦ ଛା)—ଅଡ଼ାଅଡ଼, ଅଦଉତ୍ତ (ଶବ୍ଦ ଛା)—ଅଦଉତ୍ତ, ଅଗର (ଧାନବିଶେଷ)—ଅଗର, ଅଝଟ—ଅଝଟା, ଅକାବକାଓ—ଅକାବକା, ଆଖଡ଼ା—ଆଖଡ଼ା, ଅଲନ୍ଧା—ଅଳନ୍ଧୁ, ବଟା—ବଟା, ଅଣ୍ଡିଆ ଅଣ୍ଡିରା, ଅଲ୍—ଅଓଲ, ଅଡ଼୍—ଅଡ଼ିବା (ବାଜିବା) ଅର—ଅକ (ଚକର ଅର), ଅରମୁ—ଅରମା, ଅରଣା—ଅରଣା (ବଣୁଆ), ଅସ୍ନଆ—ଅସନା, ଅସରଙ୍ଗି—ଅସରପି, ଅସକେଟ୍—ଅସକତ (ଅଳସୁଆ ଲାଗିବା), ଅସୁର (ପେଟ୍)—ଅସୁର, ଅଟ—ଅଟେଇ, ଗୁଳ—ଗୁଳ, ଅଟକୁର—ଆଣ୍ଠୁକୁଡ଼ା, ଅଉଳକାଉଳ—ଆଉଳକାଉଳ, ବଉ୍ଡେଇ—ବଡ଼େଇ ବାଜୁ (ଅଳଙ୍କାର)—ବାଜୁ, ବନ୍ଧା—ବନ୍ଧି, ବାଓର (ବାଗରା)—ବାଉର (ଜାତି), ବାଗ—ବାଗ (ଘର-ବାଗ), ବଉସି—ବଡ଼ଶୀ, ମଗା—ମଢ଼ା (ମୁର୍ଦ୍ଦାର), ବସନ—ବାସନ, ବତର (ଠିକ୍ ସମୟ)—ବତର, ବାଟି—ବାଟି (ପାତ୍ର), ବଟକଗ—ବଟକରା, ବତରାଓ—ବତୁରେଇବା, ବଟୁ (ଗ୍ରୋଟଥାଳ)—ବଟୁଆ, ବେଠିବେଗାର—ବେଠି ବେଗାର, ବେକେ ବେଂକେ—ବକ ବକ, ବେଳ—ବେଳ, ଭଲ—ଭଲ, ଭଣ୍ଡୁର (ଅକାମି)—ଭଣ୍ଡୁର, ଭାଉ—ଭାଉ, ଖୁଣ୍ଟି—ଖୁଣ୍ଟି, ବାଉଟିଆ—ବାଉଟିଆ (ହରଣ), ଭେଡ଼—ଭେଡ଼ା, ଭେଲ (ମୁଣ୍ଡାଏ ଗୁଡ଼—ଭେଲି (ଗୁଡ଼), ଭିଟ୍ (କାନ୍ଥ)—ଭିଟା (ମାଟି), ଭୋଗଡ଼ୋ (ମୋଟା)—ବଗଡ଼ା (ଗୁଉକ), ଭୋଜାକୋଟୋ—ଭଜକଟ (ଅଖାଡ଼ୁଆ, ଗୋଳମାଳ), ଭୋଷ—ଭୁଷିବା, ଫୋଟ—ଫେଟ, ଭୋସୋଣ୍ଡୋନ୍—(ମଇଳା, ଅସନା)—ଭୁଷୁଣ୍ଡା, ଭୁଆ—ଭୁଆଁ (ବୁଲିବା), ଭୁମ୍ରି—ଘିମିର, ଭୁସ୍ (ହଠାତ୍)—ଭୁସ୍ଭୁସ୍, ବୁଟେଲ—ଭୋଟା, ବଲ୍ବଳାଉ [ଉତ୍ପୀଡ଼ିତ ହେବା]—ବଲବଲେଇବା, ବଣ୍ଡ—ବଣ୍ଡା, ବୋଡ଼—ବୋଦା, ବୁଦ—ବୁଦା, ଡୁଙ୍ଗି—ଡୁଙ୍ଗା, ଗୁଳ—ଗୁଳ, ଗୁଉଳି—ଗୁଉଳି, ଚପ—ଚମଡ଼ା—ଘୁମୁଣ୍ଡିଆ, ଚର୍ ଚର୍—ଚର୍ ଚର୍, ଛେଗ୍ରେର (ଅବାଧ)—ଛେଚଡ଼ା, ଚେମେନ୍ (ନେଉଳ)—ଚେମଣି, ଚେମ୍ଡ଼, ଚକମକ—ଝକମକ, ଚକମକ—ଚକ୍ମକ୍, ଛପର (କୁଡ଼ିଆ)—ଛପର, ଛଟିପଟାଓ—ଛଟପଟ ହେବା, ଚଟ୍କାଉ—ଚିଟକାଇବା, ଚୁଣ୍ଡୀ (ଝିଅ)—ଚଣ୍ଡୀ, ବଟ—ବଟା (ବାଉଁଶ ଫାଳ), ଚଉ (ଭୟ)—ଚଉ୍ଚରେଇବା, ଚିତ୍ତବନ୍ (ଚିତ୍ତସାପ)—ଚିତିସାପ ଚଟୋଲ ଚଳେ (ମାଛ), ଚଟ୍—ଚଟ୍ (ଶୀଘ୍ର), ଚୁଆ (ଝରଣା)—ଚୁଆ (ଗ୍ରୋଟ ପୋଖରୀ), ଚୁହ୍ଲା—ଚୂହ୍ଲା, ଚୁନ (ଗ୍ରୋଟ)—ଚୁନ; ଚୁର—ଚୁଡ଼, ଚୁରନ୍—ଚରୁଗୁଣୀ; ଚୁଟିଆ (ମୂଷା)—ଚୁଟିଆ; ଚୁଟକ (ଗ୍ରୋଟଖଣ୍ଡ)—ଚୁଟକ; ଡହଲ—ଡାହାଳ କୁକୁର; ଡାହାଲ ସେଟା—ଡାହାଳ ହେଟା, ଡହପ୍ ଡହପ୍—ଡପ୍ ଡପ୍, ଡାକ୍—ଡାକିବା, ଡଲ—ଡାଲି, ଡାର୍—ଡାଳ, ଦାରେ (ଗଛ)—ଦାରୁ, ପୁସି (ବିଲେଇ)—ପୁସି, ଜଗରନାଥ (ଏକପ୍ରକାର ଧାନ) ଜଗନ୍ନାଥ, ଚଉଁରୀ—ଚଉଁରୀ (ଅଳଙ୍କାର), ଧଡ୍ରା—ଧଡ଼ରା, ଡକ୍—ଡକ୍କା, ଡଙ୍ଗ—ଡେଙ୍ଗା, ଢେଲ୍କ୍—ଢେଲା,

ଢେଙ୍କ (ଏକପ୍ରକାର ବଗ)—ଢେଙ୍କିଆବଗ, ଢେଙ୍କି—ଢିଙ୍କି, ଢିପ—ଢିପ, ଧୂଣ୍ଠାଓ (କଳଆଢେଖାର)—ଧୂଣ୍ଠ (ଗାଳ), ଢୋଲ—ଢୋଲ (ବାଜା), ଢୋଲେ (ମୋଟା)—ଢୋଲ, ଢୋଣ୍ଡ—ଧଣ୍ଡ (ସାପ) ଧୂଆଁ ଲଡ—ଧୂଆଁ ଲଡଆ, ଢୂଲ (ଧାନ ରଖିବା ନିମିତ୍ତ ବଡ଼ ପାତ୍ର)—ଡୋଲି, ଢୂଲକ—ଢୁଲକ (ବାଦ୍ୟଯନ୍ତ୍ର), ଡିହୁ (ଗାଁ)—ଡହୁ (ଗାଁ)—ଡିହ, ଡିଙ୍ଗର, ଡଙ୍ଗୁ (ବଦ୍‌ଚୂର, ଦୁର୍ବଳ, ଅଳସୁଆ)—ଡିଙ୍ଗର, ଡୋହର—ଦୋଅର, ବାଟି—ବାଟି (ଛାଟିଆ), ଡୁଭ—ଡବ, ଡବର, ବୋଡ଼—ବୋଡ଼ାସାପ, ଡୁଙ୍ଗି (ଛୋଟଡଙ୍ଗା)—ଡଙ୍ଗା, ଦୁର (ମାଛ)—ଢୋଡ଼, ଦୁରଆ—ଡୋରଆ (ଲୁଗା); ଗଡ଼େଲ୍ (ଗୁଡ଼ାଏ) ଗୁଡ଼ାଏ, ଗଗ୍ରା—ଗଗ୍ର ଇତ୍ୟାଦି ।

ଏହାଛଡ଼ା ଦେଖିବାକୁ ମିଳେ ଯେ, ଆଦିବାସୀ ଭାଷାଗୁଡ଼ିକ ମଧ୍ୟରେ ବହୁ ସାଦୃଶ୍ୟ ରହିଛି । ଆମର ଓଡ଼ିଆ, ବଙ୍ଗଳା, ଆସାମୀ, ହିନ୍ଦୀ, ପଞ୍ଜାବୀ ପ୍ରଭୃତି ବିଭିନ୍ନ ଭାଷା ମଧ୍ୟରେ ଅନେକ ଶବ୍ଦ ସାଦୃଶ୍ୟ ଥିବାପରି କନ୍ଧ, କୋହ୍ଲ, ହୋ, ମୁଣ୍ଡାରୀ ପ୍ରଭୃତି ଭାଷା ଭିତରେ ମଧ୍ୟ ଅନେକ ସାଦୃଶ୍ୟ ରହିଛି । ଆଦିବାସୀ ଭାଷାରେ ତୁଳନାତ୍ମକ ଭାଷା ବିଜ୍ଞାନ ଏପର୍ଯ୍ୟନ୍ତ ଭଲ ଭାବରେ ଠିକ୍ କରାଯାଇନାହିଁ । ତଥାପି ଆଦିବାସୀମାନଙ୍କର ଭାଷା ଭାଷାମଧ୍ୟରେ ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏଠାରେ ତହିଁର କେତେକ ଉଦାହରଣ ଦିଆଗଲା ।

| ମୁଣ୍ଡାରୀ | ଓରାଓଁ (କୁରୁଖ୍) |
|---|---|
| କୁଡ଼ି (ଝୁଡ଼ି) | ଖୁଦ୍ଆ (ସ୍ତ୍ରୀ) |
| ହଡ଼ା (ବଳଦ) | ଅଡ୍ଡ଼ା |
| ମଗା (ଡଳ) | ମଘା (ମାଘିତଳ) |
| ଗୋଟା | ଗୋଟା (ପୂର୍ଣ୍ଣ) |

| ମୁଣ୍ଡାରୀ | ସାନ୍ତାଳୀ |
|---|---|
| ହିସି (୨୦) | ଇସି |
| ମୋଚ୍ଚୁ (ମୁହଁ) | ମୋଚ୍ଚ |
| ଆପୁ (ପିତା) | ଆପୁ |
| କୁଡ଼ି (ଝୁଡ଼ି) | କୁଡ଼ି |
| ଓଡ଼ା (ଘର) | ଓଡ଼ା (ଘର) |
| ପୁସି | ପୁସି |
| ସେଟା (କୁକୁର) | ସେଟା |
| ସଣ୍ଡିଆ | ଅଣ୍ଡିଆ ହୋ ସଣ୍ଡିଆ |

ଏହିସବୁ ଭାଷାର ଆଲୋଚନାରେ ଜଣାପଡ଼େ ଯେ, ଏହି ଆଦିବାସୀ ଭାଷାର ସାମ୍ୟ, ଆସାମର ଖାସୀ ଭାଷା, ବ୍ରହ୍ମଦେଶର ମନ୍ ଭାଷା ଓ ଆଣ୍ଡାମାନ, ନିକୋବର ପ୍ରଭୃତି ଭାଷା ସହିତ ସାମ୍ୟ ରହିଛି । ଏପରିକ ନିଗ୍ରୋମାନଙ୍କର ଭାଷାରେ ଯେଉଁ ବ-ଦୁ-ଡ ଶବ୍ଦଟି ପକ୍ଷୀ ଅର୍ଥରେ ପ୍ରଚଳିତ, ସେହି ଶବ୍ଦଟି 'ବାଦୁଡ଼ି' ଭାବରେ ବଙ୍ଗଳା ତଥା ଓଡ଼ିଆ ଭାଷାରେ ମଧ୍ୟ ପ୍ରଚଳିତ ।

ପୁଣି ଦେଖାଯାଏ ଯେ ତେଲଗୁ, ତାମିଲ, କାନାଡ଼ୀ, ମାଲୟାଲମ୍ ଓ ତୁଳୁ ପ୍ରଭୃତି ଭାଷା ଉପରେ ଏହି ଆଦିବାସୀ ଭାଷାର ବହୁତ ପ୍ରଭାବ ପଡ଼ିଛି ।

ଆଗରୁ କୁହାଯାଇଛି ଯେ, ଆମ ସଂସ୍କୃତି କହିଲେ ହିଁ ସେହି ପ୍ରାଚୀନର ଆଦିବାସୀ ସଂସ୍କୃତିକୁ ପ୍ରଧାନ ଭାବରେ ବୁଝାଏ । ଆମ ସଂସ୍କୃତିର ମୂଳଦୁଆ ବା ଭିତ୍ତିହେଲା ବହୁ ଅତୀତର ସେହି ଆଦିବାସୀ ସଭ୍ୟତା । ଆମ ଦେଶର ନାମ 'କଳିଙ୍ଗ' ପଛରେ ସେହି କୁଳି, କୁଇ ବା କନ୍ଧ ସଭ୍ୟତାର ପ୍ରଚ୍ଛନ୍ନ ପ୍ରଭାବ ରହିଛି । କୁଇ ଭାଷାରେ ବୃଷ ସମ୍ବନ୍ଧୀୟ 'ବଳଦ' ଅର୍ଥରେ 'କୋଡିଙ୍ଗ' ଶବ୍ଦ ପ୍ରଚଳିତ ଥିବାର ଆଜି ମଧ୍ୟ ଜଣାଯାଇଥାଏ ।

କୋଡଗ, କୋରଗ, କୋଳ, କୁଳି, କୁରୁବ ଓ କୁଇ ପ୍ରଭୃତି ଶବ୍ଦ ସେହି କୁଳିଙ୍ଗ, କୁଳିନ୍ଦ ବା କଳିଙ୍ଗ ଶବ୍ଦ ସହିତ ସଂପୃକ୍ତ । କଳିଙ୍ଗ ଶବ୍ଦକୁ ଯେଉଁମାନେ ସାଂସ୍କୃତିକ ଶବ୍ଦ ଗୁଚ୍ଛରେ ପକାଇଥାନ୍ତି ଓ ନୂତନ ଅର୍ଥ ପ୍ରତିପାଦନ କରିଥାନ୍ତି, ସେମାନେ ମୌଳିକ ଆଦିବାସୀ ଭାଷାର ମହତ୍ତ୍ୱକୁ ଭୁଲିଯାଇଥାନ୍ତି ।

ଆଗରୁ କୁହାଯାଇଛି ଯେ, ଯେଉଁ କନ୍ଧମାନେ ପାର୍ବତ୍ୟ ଭୂମିରେ ବାସ କରନ୍ତି, ସେମାନଙ୍କୁ ମାଳିଆ କୋଇଙ୍ଗ ଓ ସମତଳ ଅଞ୍ଚଳରେ ବାସ କରୁଥିବା କନ୍ଧମାନେ ସାସି କୋଇଙ୍ଗ ଭାବରେ ପରିଚିତ । ଯେକୌଣସି କନ୍ଧ ମଧ୍ୟ କୁଇଙ୍ଗ ଭାବରେ ପରିଚିତ । 'ଙ୍ଗ' କନ୍ଧ ଭାଷାରେ ବହୁବଚନାନ୍ତ ପ୍ରତ୍ୟୟ । କନ୍ଧ ଭାଷାରେ ମାରଙ୍ଗ (ଗଛସମୂହ), ଗୋଗୋଡ଼ୁଙ୍ଗ (କୁକୁଡ଼ାସମୂହ), କୋଡ଼ିଙ୍ଗ (ବଳଦସମୂହ), ବଡ଼ିଙ୍ଗ (ଝିଲାସବୁ) ପ୍ରଭୃତି ଶବ୍ଦରେ (ଙ୍ଗ) ବହୁବଚନ ପ୍ରତ୍ୟୟ ପ୍ରଚଳିତ । ମନେହୋଇଥାଏ ଯେ, 'କଳଙ୍ଗ' ଶବ୍ଦ ସେହି କୁଳଙ୍ଗ ଶବ୍ଦରୁ ଆସିଅଛି ।

ଶବର ଭାଷାର ଆଲୋଚନାରେ ମଧ୍ୟ ଆମେ ଦେଖିଛୁ ଯେ, 'ଓର', 'ଓର୍‌ଗେ' ପ୍ରଭୃତି ଶବ୍ଦ ଚଷା, କୃଷୀ, ହଳ ପୁଣି ଭୂମି ଅର୍ଥରେ ବ୍ୟବହୃତ । ଆମର 'ଓଡ଼ଚଷା', 'ଓଟ୍ରେକୃଷ', 'ଓଡ଼ିଶା', 'ଓଡ଼ିବାଷ', 'ଓଡ୍ର', 'ଉଡ୍ର', 'ଉଡ଼୍', 'ଓଡ଼ିଆ' ପ୍ରଭୃତି ଶବ୍ଦ ସେହି ପ୍ରାଚୀନର ଆଦିବାସୀ ଶବରମାନଙ୍କୁ ବୁଝାଇଥାଏ । ଓଡ଼ିଶାର ଜଗନ୍ନାଥ ସଂସ୍କୃତି ମୂଳରେ ସେହି ଓଡ଼ିଆ ସଂସ୍କୃତି ବା ଶବର ସଂସ୍କୃତି ରହିଅଛି ।

ମନୁଙ୍କର ଧର୍ମଶାସ୍ତ୍ରରେ ଓଡ୍ରମାନେ ଏକ ସ୍ୱତନ୍ତ୍ର ଜାତି ଭାବରେ ପରିଚିତ । ରାମାୟଣ, ମହାଭାରତ ଓ ବିଭିନ୍ନ ପୁରାଣରେ 'ଓଡ୍ର' ଜାତି ଓ ଦେଶ ଭାବରେ ମଧ୍ୟ ଖ୍ୟାତିଲାଭ କରିଛି । ଭରତ ନାଟ୍ୟଶାସ୍ତ୍ରରେ 'ଓଡ୍ର' ବିଭାଷା ନାମରେ ବା ଅନାର୍ଯ୍ୟ ଭାଷା ଭାବରେ ପରିଚିତ । ପୁଣି ମାର୍କଣ୍ଡେୟଙ୍କର ପ୍ରାକୃତସର୍ବସ୍ୱ ଗ୍ରନ୍ଥରେ ଔଡ୍ରୀ ଅପଭ୍ରଂଶରେ ଶବର ଭାଷାର ପ୍ରଭାବ ପଡ଼ିଛି ବୋଲି ସେ କହିଅଛନ୍ତି । ପୁରୁଷୋତ୍ତମଦେବଙ୍କର ପ୍ରାକୃତାନୁଶାସନ ନାମକ ପ୍ରାକୃତ ବ୍ୟାକରଣରେ ଔଡ୍ରୀ ଅପଭ୍ରଂଶର ସୂଚନା ଦିଆଯାଇଛି ।

ମାଦ୍ରାଜ ପ୍ରଦେଶରେ 'ଓଡ଼ିଆ' ବା 'ଓଡ୍ଡେ' ନାମରେ ସ୍ୱତନ୍ତ୍ର ଭାବରେ ବହୁ ଲୋକ ଆଜିପର୍ଯ୍ୟନ୍ତ ମଧ୍ୟ ବାସ କରୁ ଅଛନ୍ତି । ଏହାଛଡ଼ା ଗଞ୍ଜାମରେ 'ଡାଲଞ୍ଜି' ନାମରେ ମଧ୍ୟ ଆଜିକାଲି କେତେକ ବାସ କରୁଛନ୍ତି । ଏମାନେ ପ୍ରାୟ ସେହି ପ୍ରାଚୀନ 'ଓଡ୍ର' ଓ 'କଳିଙ୍ଗ' ଜାତିର ଅବଶେଷ । ଏମାନଙ୍କର ସଭ୍ୟତା ଓ ସଂସ୍କୃତିକୁ ବିଶ୍ଳେଷଣ କରିବା ଦୂରେଥାଉ, ଏହି ଶବ୍ଦର ବିଶ୍ଳେଷଣରେ ଜଣାଯାଇଥାଏ ଯେ, ଏମାନଙ୍କର ମୌଳିକ ସଂସ୍କୃତି ସେହି ଆଦିବାସୀ ସଂସ୍କୃତି ।

ପ୍ରାଚୀନ ତାମିଲ ଭାଷାରେ 'ଓର୍' କହିଲେ 'ଏକ' ବା ଥରକୁ ବୁଝାଏ । ଆମର ଓଡ଼ିଆ ଭାଷାରେ ଏହି ଥରେ ଚଷିବାକୁ ମଧ୍ୟ ଆଜି କୁହାଯାଏ 'ଓଡ଼େ ବା ଓରେଚଷ' । ଚଷ ସମ୍ବନ୍ଧୀୟ ଏହି 'ଓର' ଶବ୍ଦଟି ବହୁ ପ୍ରାଚୀନ ଶବର ଭାଷାରୁ ତାମିଲକୁ ଯାଇଛି । ମାଲୟାଲମ୍ ଭାଷାରେ ତାହା ଓରୁ, ଓର, କାନାଡ଼ୀ ଭାଷାରେ 'ଓର୍' ଓ ଟୁଲୁ ଭାଷାରେ ମଧ୍ୟ ସେହି 'ଓର୍' ଭାବରେ ବ୍ୟବହୃତ । ତେଲୁଗୁ ଭାଷାରେ 'ଉରୁ' ଅର୍ଥ ହଳ କରିବା ଓ ହଳ କରିପାରିବା ଅର୍ଥରେ 'ଉରୁଚୁ' ଶବ୍ଦ ବ୍ୟବହୃତ ହୋଇଥାଏ । ତାମିଲ ଭାଷାରେ କୃଷୀକୁ 'ଉରବେର' ମଧ୍ୟ କୁହାଯାଇଥାଏ । ସମ୍ଭବତଃ ସେହି ଶବ୍ଦରୁ 'ଉର୍' ଗ୍ରାମ ବା ଦେଶ ଅର୍ଥରେ ତାମିଲ ଭାଷାରେ ଶବ୍ଦଟି ବ୍ୟବହୃତ ହୋଇଅଛି ।

କୁରୁଖ୍ ଭାଷା ବା ଓରାଓଁ ଭାଷାରେ 'ଉର୍' ଅର୍ଥ କୃଷୀ । ଶବର ଭାଷାରେ 'ଓବେମାରେନ୍' ଅର୍ଥ ମଧ୍ୟ ସେହି କୃଷୀ ।

ଏହି 'ଓଡ଼' ବା 'ଓର୍' ଶବ୍ଦଟି 'ଓଡ୍ର' ଭାବରେ ସଂସ୍କୃତ ରୂପ ଧାରଣ କରିଛି । ମନୁଙ୍କ ପରେ 'ଓଡ୍ର'-ମାନେ କ୍ରମେ ଆର୍ଯ୍ୟ ସଂସ୍କୃତିର ପ୍ରଭାବରେ ଆସିଯାଇ ଅଛନ୍ତି । ତଥାପି ସେମାନେ ଅନାର୍ଯ୍ୟ ଓ ସେମାନଙ୍କର ଭାଷା ବିଭାଷା ଭାବରେ କଥିତ । ପଞ୍ଜାବୀ ଭାଷାରେ

'ଓଡ଼' ଶବ୍ଦର ଅର୍ଥ ହେଉଛି ଘର ତୋଳିବା ଜାତି । ସିନ୍ଧି ଭାଷାରେ 'ଓଡ' ସେହି ମାଟିଘର ତୋଳାଳୀ ଅର୍ଥରେ ଓ ଗୁଜରାଟୀ ଭାଷାରେ 'ଓଡ଼' ମଧ୍ୟ ସେହି ମାଟି ତୋଳାଳୀ ଓ ମାଟିଘର ତୋଳାଳୀ ।

ଏହି ଓଡ଼ମାନେ ଯେ ପ୍ରାଚୀନରେ ବହୁ ଉନ୍ନତ ଥିଲେ, ମାଟିକାମ ବିଶେଷ ଭାବରେ ଗୃହବାସ ଓ ମାଟି କାମରେ ଦକ୍ଷତା ଅର୍ଜନ କରିଥିଲେ ତାହା ଏହି ତୁଳନାତ୍ମକ ଆଦିବାସୀ, ଦ୍ରାବିଡ଼ ଓ ଆର୍ଯ୍ୟ ଭାଷା-ସମୂହର ବିଚାରରୁ ଜଣାପଡ଼ିଥାଏ । ମୂଳ ଶବ୍ଦଟି ସେହି ଶବର ଭାଷାର ଦେ 'ଓର' ସହିତ ଯେ ସଂପୃକ୍ତ, ତାହା ସହଜରେ ଜଣା ପଡ଼ିଥାଏ । ତେଣୁ ଓଡ଼ିଆ ସଭ୍ୟତାର ବିଚାରରେ 'ଓଡ଼ିଆ' ଶବ୍ଦ ମୂଳରେ ଯେ ଶବର ବା ଆଦିବାସୀ ସଭ୍ୟତାର ସ୍ପଷ୍ଟ ପ୍ରକାଶ ରହିଅଛି—ତାହା କହିବା ବାହୁଲ୍ୟ ହେବ ।

---



ସବୁବେଳେ ବାମ ଦିଗକୁ ମାଡ଼ି ଚାଲନ୍ତୁ ।



ଘର ଅଗଣା ସଫା-ସୁତୁରା ରଖନ୍ତୁ । ରାସ୍ତାକୁ ଭଙ୍ଗାକାଚ, ଲୁହା, ଅଳିଆ ଇତ୍ୟାଦି ପକାନ୍ତୁ ନାହିଁ ।

# ମୋ ଦୁର୍ଦ୍ଦଶା ଦୁର୍ଦ୍ଦିନରେ...!!!

## କେନାକବି ମୁରାରିମୋହନ

[ ତରୁଣ କବି ଓ ସମାଲୋଚକ ଶ୍ରୀ ମୁରାରିମୋହନ ଜେନା ଓଡ଼ିଆ ସାହିତ୍ୟର ଜଣେ ବିପ୍ଳବୀ କବି ତଥା ଅନୁଭୂତି ସର୍ବସ୍ୱ କାବ୍ୟ ଶିଳ୍ପୀ । ଆଜୀବନ ସାହିତ୍ୟ ସାଧନା ଦ୍ୱାରା ସେ ଆଜି ଅନେକ ପୁସ୍ତକ ରଚନା କରି ସ୍ୱନାମଧନ୍ୟ ହୋଇ ପାରିଛନ୍ତି । ତାଙ୍କ ରଚିତ ଓଡ଼ିଆ ସାହିତ୍ୟରୁ କିଛି, ସାହିତ୍ୟିକ ବାଳକୃଷ୍ଣ, ଓଡ଼ିଆ ସାହିତ୍ୟରେ ସବୁଜ ମୁଁ, ଖରା ଓ ଛାଇ, ହେ ଡ଼ାକ୍ତର କୋରାମିନ୍ ବନ୍ଦ୍ କର, ଉଣେଇଶଟି ଶ୍ରମ କବିତା, ଭଗବାନ ମୁଁ ତୁମକୁ ଠିଆ ଫାଡ଼ିଦେବି ଓ ଅନ୍ୟାନ୍ୟ ବହୁ ଶ୍ରମ ପୁସ୍ତକ ଓଡ଼ିଆ ସାରସ୍ୱତ ସମ୍ପଦ ହୋଇପାରିଛି । ଶ୍ରୀ ଜେନା ଜଣେ ଉଦାସ, ଶାନ୍ତ ଆଧୁନିକ ବିପ୍ଳବୀ ସାହିତ୍ୟିକ । ଓଡ଼ିଆର ସ୍ମରଣିକା ସାହିତ୍ୟ ଓ ସଙ୍କଳନ କ୍ଷେତ୍ରରେ ତାଙ୍କର ଦାନ ଅତୁଳନୀୟ । ସ. ବନଫୁଲ ]

॥ ଏକ ॥

ମୋ ଦୁର୍ଦ୍ଦଶା ଦୁର୍ଦ୍ଦିନରେ
ଏ ଜୀବନ ପଶାଖେଳେ
ମୁଇଁ ଯଦି ବାର ବାର ହାରେ
ଯଦି ପୁଣି ସେତେବେଳେ,
କେହି ମୋତେ ପଚାରଇ ଆନ୍ତରିକତାରେ...
ସେତେବେଳେ ମୁଁ କହିବି...
ଆରେ ବନ୍ଧୁ ଏ ଜୀବନ ବନ୍ଧୁର ପଥରେ...
ଜୀବନରେ ବଞ୍ଚିବାର ଏ କରୁଣ କୋହ
କେବଳହିଁ ମରଣରେ ମର୍ମନ୍ତୁଦ ମୋହ...

॥ ଦୁଇ ॥

ଜୀବନଟା ସରିଯାଏ
ଜୀବନଟା ଝରିଯାଏ
ବିଳାପ ଓ ବ୍ୟର୍ଥତାର ଛନ୍ଦେ ଛନ୍ଦେ
ମରଣର ପନ୍ଦେ ପନ୍ଦେ...
ନୂତନ ଓ ପୁରାତନ ଓଲଟ ପାଲଟ
ଜୀବନର ଯାତାପଥ ହେଉପଚେ,
ଦୂର ଓ ନିକଟ...
ଦୀର୍ଘଶ୍ୱାସେ ମାରେ ଖାଲି ହାଇ
ପୁରାତନ ବିନମ୍ରେ,
ନୂତନର ଆବାହନୀ ଗାଇ...

॥ ତିନି ॥

ଏ ନୂତନ ପୁରାତନ
ଏ ଜୀବନ ଯଉବନ
ସବୁ ମିଛ ମାହାଳିଆ
ମରଣରେ ସକଳ ସଜଳ ପୁଣି
ସମସ୍ତ ସମାଧି...
ଏ ଜୀବନ ବଞ୍ଚେ ଏଠି
ଚତୁର୍ଦ୍ଦିଗେ ଗୋଟାଇ ଗୋଟାଇ ତାର
ସାଙ୍ଗ ସାଥିଭାଇ...
ବ୍ୟସ୍ତ ବ୍ୟତିବ୍ୟସ୍ତର ବ୍ୟାଧି ଆଉ ଆଧି...

॥ ଚାରି ॥

ଏଇପରି ବ୍ୟାଧି ଆଉ ଆଧିଗ୍ରସ୍ତ
ଜୀବନଟା କହ ସତେ କେଉଁକି କୁତ୍ସିତ ?

ଜୀବନଟା ଏଠି ବନ୍ଧୁ ବଞ୍ଚିବାରେ ପ୍ରବଞ୍ଚନା
ବଞ୍ଚିବାର ସୁଖ ଯାହା, କେବଳ ବଞ୍ଚିତ···
ସେଥିପାଇଁ ମୁଁ ଭାବୁଚି···
ବଞ୍ଚିବାର ଲଭ ନାଇଁ···ଲୋଭ ନାଇଁ
ମାସଇ କଞ୍ଚିତ···
ଯେଉଁଠାରେ ମରଣରେ
ସବୁ ସୁଖ···ସବୁ ଶାନ୍ତି
ସମୂଳେ ସଞ୍ଚିତ··· !!!

## ॥ ପାଞ୍ଚ ॥

ସିଏ ସିଏ ହେଉ ପଛେ
ଦେହଧାରୀ···ଅଦେହଧାରୀ ବା
କେହି ଭଗବାନ···
ଯାହାଯୋଗୁଁ ଏ ଜୀବନ···ଏ ସଂସାରେ
ହେଉଅଛି ଖାଲି ଆତଯାତ···
ଦୁଇ ହାତେ ତା'ର ଆଜି ଦୁଇ କାନଧରି
ତା'ପଛରେ ଚାବୁକ ଗୋଇଠା ମାରି
ନର୍ଚ୍ଚାତ···ନର୍ଚ୍ଚାତ···
ପଚ୍ଚରିବ୍ କୁହ ତୁମେ···?
ମୋତେଇ ଯବାବ ଦିଅ
ମୋତେ ଆଜି କିଆଁ କହ···??

ବଞ୍ଚାଇଛ ମରଣର ଫୁଟବଲ୍ କରି···?
ଏ ଜୀବନ-ଜଞ୍ଜାଳରେ···
ଦୁଃଖ ଆଉ ଦୁର୍ଦ୍ଦଶାର
ଘମ୍ପମର୍ ପବନକୁ ଭରି···???
ଯଦି ତୁମ ଆନ୍ତରିକ ଇଚ୍ଛା ଥିଲା
ବଞ୍ଚିବାଟା କେବଳ ମରଣ···
କିଆଁ କହ ଜୀବନକୁ କଲ ତୁମେ
ପଦ୍ମ କୋରକତ···? ଜୀବନର ଜୟଯାତ୍ରା
ସକଳ ଓ ସଫଳ ବର୍ତ୍ତିକ···??

## ॥ ଛଅ ॥

ଏଇ ମୋର ଦାରୁଣ ଓ କରୁଣ ଉକତି
ଏଇ ମୋର ଚରମ ଓ ପରମ ଉକତି
କୁହ ତୁମେ କୁହ ମୋତେ···
କେହି ଯଦି ଅଛ ଭଗବାନ···
ମୁଁ ଚାହୁଁନି···ମୋତେ ପଛେ ବଞ୍ଚିବାର
ନ ଦିଅ ସମ୍ମାନ···
କିନ୍ତୁ ମୋତେ ବଞ୍ଚିବାରେ···ତିଳ ତିଳ ମରଣର
ଦିଅ ନାହିଁ କଳା ଆଉ କାଳିମାର
ସିଛ ଆଜ ମୃତ୍‌ଫର୍ଦ୍ଦା,
ମୁମୂର୍ଷୁ ଏ ସମାଜର···
ମନଚଢ଼ା ଯେତେ ଅପମାନ··· !!!

—*—



# ॥ ସଂସ୍କୃତି ଓ ସାହିତ୍ୟ ॥

ଅଧ୍ୟାପକ—ଶ୍ରୀ ବୈଷ୍ଣବ ଚରଣ ସାମଲ

[ ଅଧ୍ୟାପକ ବୈଷ୍ଣବ ଚରଣ ସାମଲ ଜଣେ ପ୍ରବୀଣ ସମାଲୋଚକ ଓ ପ୍ରାବନ୍ଧିକ । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କ ପ୍ରବନ୍ଧଗୁଡ଼ିକ ପ୍ରକାଶ ପାଇଥାଏ । ସଭ୍ୟତା ଓ ସଂସ୍କୃତି ସହିତ ସାହିତ୍ୟର ସମ୍ପର୍କ ପ୍ରତି ସେ ସଚେତନ । ଏହି ସଂସ୍କୃତି ଓ ସାହିତ୍ୟ ପ୍ରବନ୍ଧ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ । ସ. ବନଫୁଲ ]

କୌଣସି ଦେଶ ବା ଜାତିର ଅନ୍ତଃପ୍ରକୃତିକୁ ହିଁ ସେହି ଦେଶ ବା ଜାତିର ସଂସ୍କୃତି କୁହାଯାଇଥାଏ । ବହିର୍ବିକାଶହିଁ ସଭ୍ୟତା । ଏହାର ଆତ୍ମିକ ବିଦ୍ୟୋତନା ଓ ଚେତନାହିଁ ସଂସ୍କୃତି । ଅନ୍ତଃସ୍ରୋତା ଫଲ୍‌ଗୁ ଭଳି ସଭ୍ୟତାର ଅନ୍ତଃସ୍ଥଳରେ ଦ୍ରୁତ ସଳିଳା ଫଲ୍‌ଗୁ ଭଳି ସଂସ୍କୃତି ଚିରପ୍ରବାହମାନା । ସଂସ୍କୃତିଦ୍ୱାରାହିଁ ସଭ୍ୟତା ବିକଶିତ ହୁଏ । ସଂସ୍କୃତି ବ୍ୟତିରେକେ ସଭ୍ୟତାର ସମସ୍ତ ବାହ୍ୟ-ବିକାଶ "ଦୃଢ଼ତଃ ଶୋଭତେ ମୂର୍ଖଃ ଲମ୍ବ ଶାଟ ପଟାବୃତଃ" ଭଳି ମୂଲ୍ୟହୀନ ହୋଇପଡ଼େ । ହୃଦୟ ବା ଆତ୍ମାର ବିକାଶ ବ୍ୟତିରେକେ ଭୌତିକ କଳେବର ଯେପରି ମୂଲ୍ୟହୀନ, ସଂସ୍କୃତିର ବିକାଶ ବିନା ସଭ୍ୟତା ସେହିପରି ନିରର୍ଥକ । ସଭ୍ୟତା ବା ସମାଜର ସ୍ଥୂଳ ଗଣ୍ଡି ଭିତରୁ ଯୁଗେ ଯୁଗେ ସଂସ୍କୃତି ନୂତନ ଭାବରେ ଉନ୍ମେଷିତ ହୋଇ ଉଠିଛି । ନୂତନ ଆଲୋକ ବିକୀର୍ଣ୍ଣ କରି ସମାଜର ଅନ୍ଧକାରକୁ ଦୂରୀଭୂତ କରିଛି । କାଳର କ୍ରୂର ରଥଚକ୍ରତଳେ ସଂସ୍କୃତି ଚିର ନିଷ୍ପେଷିତ ହୋଇଯାଏ ନାହିଁ ବରଂ ତାର ପଦଚିହ୍ନ ଭାସ୍ୱର ହୋଇଉଠେ । ପରିବର୍ତ୍ତିତ ସମାଜ ସହିତ ତାଳ-ଦେଇ ସଂସ୍କୃତି ନୂତନ ଦିଗନ୍ତର ସୂଚନା ଦିଏ । ସଂସ୍କୃତି ସମୟାନୁବର୍ତ୍ତୀ । ବହୁ ସମୟରେ ସଂସ୍କୃତି ହୁଏତ ସମୟ ସହିତ ତାଳଦେଇ ରୂପାନ୍ତରିତ ହୋଇପାରେ ନାହିଁ । ପରିବର୍ତ୍ତିତ ସମାଜର ଆତ୍ମିକଚେତନା ସହିତ ନିଜକୁ ଖାପ ଖୁଆଇ ପାରେନାହିଁ । ପାରମ୍ପରିକ ସାଂସ୍କୃତିକ ଚେତନା ଓ ନୂତନ ସୃଷ୍ଟି ପରିବର୍ତ୍ତିତ ଅନୁକୂଳ ଚେତନା ମଧ୍ୟରେ ସଂଘର୍ଷ ଦେଖାଦିଏ । ଯୁଗର ତାଡ଼ନାରେ ସଂସ୍କୃତି ପୁଣି ରୂପାନ୍ତରିତ ହୁଏ । ଯୁଗର ସେ ହୁଏ ସମନ୍ୱୀ । ସମାଜର ଆବର୍ଜନାମୟ ବଦ୍ଧ ପଲ୍ୱଳକୁ ସ୍ୱଚ୍ଛ ସଳିଳରେ ଉଦ୍‌ବେଳିତ କରାଇ ସ୍ୱାଧୀନଭାବରେ ସଂସ୍କୃତିର ଧାରା ଚତୁର୍ଦ୍ଦିଗରେ ପ୍ରବାହିତ ହୁଏ । ସେତେବେଳେ ଜାତିହୁଏ ଚଳଚଞ୍ଚଳ । ସମାଜ ହୁଏ ଜାଗ୍ରତ-ଦେଶ ହୁଏ ଉଦାର । କବି-କଣ୍ଠରୁ ଝରିଆସେ ସଂସ୍କୃତିର ମର୍ମସ୍ପର୍ଶୀ ଜୟବାଣୀ ।

ସଂସ୍କୃତି ନିତ୍ୟ ବା ଅପରିବର୍ତ୍ତନୀୟ ନୁହେଁ । ପରିବର୍ତ୍ତନହିଁ ସଂସ୍କୃତିର ପ୍ରାଣକେନ୍ଦ୍ର । ଅନ୍ତରକୁ ପରିଷ୍କୃତ ଓ ମାର୍ଜିତ କରିବାରେହିଁ ଏହାର ସାର୍ଥକତା । ସଂସ୍କୃତିର ବୈଶିଷ୍ଟ୍ୟ ଅନ୍ତର୍ଦୃଷ୍ଟିରେ । ବାହ୍ୟଦୃଷ୍ଟି ପ୍ରତି ଏହାର ଲକ୍ଷ୍ୟ ନ ଥାଏ । ଏହା ବିବେକଧର୍ମୀ । ଆରିଷ୍ଟଟଲଙ୍କ ଭାଷାରେ ବିବେକ ହିଁ ମଣିଷର ମୁଖ୍ୟ ଲକ୍ଷଣ । ଅତଏବ ବିବେକାନୁମୋଦିତ ଓ ହୃଦୟ

ସମ୍ବଳିତ ହୋଇ ସଂସ୍କୃତି ରୂପାନ୍ତରିତ ହୋଇଥାଏ । ସଂସ୍କୃତି ପ୍ରାକୃତିକ ଜୀବନର ବିରୋଧ କରେନାହିଁ ବରଂ ଏହା ଉତ୍କର୍ଷସାଧକ ଏବଂ ପରିଷ୍କାରକ ଅଟେ । ରୁଷୋ ଏହି ପ୍ରାକୃତିକ ଜୀବନ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି, "ମଣିଷ" ସ୍ୱାଧୀନ ଭାବରେ ଜନ୍ମହୁଏ, ମାତ୍ର ଜନ୍ମହୋଇ ସାରିଲାପରେ ସେ ଯେଉଁଠି ସବୁ କ୍ଷେତ୍ରରେ ଶୃଙ୍ଖଳାବଦ୍ଧ ।" କେତ୍ତି ଓ. କୋରଡାକୁ କୌଣସି ସଂସ୍କୃତି ପ୍ରଶ୍ରୟ ଦେଇନାହିଁ ବରଂ ତାର ମଧ୍ୟ ଦେଇ ମଣିଷର ପ୍ରାକୃତିକ ଜୀବନକୁ ଉଦ୍ଦୀପ୍ତ କରାଇବାର ଚେଷ୍ଟା କରିଛି ।

## ମନୋଗତ ଓ ବସ୍ତୁମୁଖୀ ସଂସ୍କୃତିର ରୂପରେଖ—

ଆତ୍ମିକ ଚେତନା ହିଁ ସଂସ୍କୃତି । ବସ୍ତୁମୁଖୀ (Material Culture) ଓ ମନୋଗତ ବା ଆତ୍ମିକ ସଂସ୍କୃତି (Spiritual Culture) ଭାବରେ ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ବସ୍ତୁମୁଖୀ ସଂସ୍କୃତିକୁ ଜୈବିକ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବନାହିଁ । ଫ୍ରାନ୍ସରେ ଏହି ସଂସ୍କୃତି ପ୍ରଥମେ ମଣିଷର ମନକୁ ସ୍ପର୍ଶକଲା । "The growing point of a self creative person"— ହେଲା ଏ ଯୁଗର ଧର୍ମ । ମଣିଷର ଜୈବିକ ଆକାଂକ୍ଷା ଉନ୍ମୋଚିତ ହେଲା । ଜୀବନ ହେଲା ଯାନ୍ତ୍ରିକ, ଆତ୍ମା ବା ହୃଦୟର ସ୍ଥାନ ଦୂରେଇ ଗଲା । ଉନ୍ମତ୍ତ ଜୈବିକ ଆକାଂକ୍ଷା କ୍ରମେ ବ୍ୟାପକ ହେଲା, ମଣିଷ ହେଲା ଭୋଗବାଦୀ । ଧର୍ମହେଲା ଅଫିମର ନିଶା । ଦୂରେଇଗଲା ଧର୍ମ, ଯୁଗ ଯୁଗର ଈଶ୍ୱରାନୁଭବ । ଏହା କ୍ରମେ ସମଗ୍ର ପାଶ୍ଚାତ୍ୟ ଦେଶରେ ବିସ୍ତାର ଲାଭକଲା । ବହୁଭାବରେ ରୂପାନ୍ତରିତ ହୋଇ କାର୍ଲମାର୍କସ୍‌ଙ୍କ ହାତରେ ନୂତନ ରୂପ ନେଲା । ରୁଷିଆରେ ଅକଷ୍ଟ ବିପ୍ଲବ (୧୯୧୭) ପୃଥିବୀକୁ ଦେଖାଇ ଦେଲା ଏଇଟିକୁ । ସଂସ୍କୃତି ହେଲା ରାଷ୍ଟ୍ରୀୟୃତ । ସଂସ୍କୃତିର ବନ୍ଧନରୁ ମୁକ୍ତ ହେଲା ରାଷ୍ଟ୍ର, ମାତ୍ର ସଂସ୍କୃତି ହେଲା ରାଷ୍ଟ୍ରଦ୍ୱାରା ଶୃଙ୍ଖଳିତ । ମଣିଷହିଁ ଏଠି ସବୁକିଛି । ଏ ଯୁଗ ହେଲା "age of reason" ଏହାର ଧର୍ମ ହେଲା "anti-God feeling" । ସେଉଁଥିପାଇଁ ଫ୍ରାନ୍ସର ବିପ୍ଳବୀ ନେତା ଭୋଲଟେୟାରଙ୍କର ସାମାଜିକ, ବୌଦ୍ଧିକ ଏ ରାଜନୀତିକ ଜୀବନକୁ. ଜେସସ୍ ଖ୍ରୀଷ୍ଟଙ୍କ ସହିତ ମଧ୍ୟ କେତେକ 'ତୁଳନା କରନ୍ତି । ବିଶେଷକରି ବିଂଶଶତାବ୍ଦୀରେ ଡାରଉଇନ୍, ମାର୍କସ ଏବଂ ଫ୍ରଏଡ୍ ହେଲେ ଯଥାକ୍ରମେ ଜୈବିକ, ଐତିହାସିକ ଓ ମନସ୍ତାତ୍ତ୍ୱିକ କ୍ଷେତ୍ରରେ ହେଲେ ଶାସନକାରୀ ଭଗବାନ (Ruling-God) । ଏହି ବସ୍ତୁବାଦୀ ସଂସ୍କୃତି ସେ ଭାରତରେ ନଥିଲା ତାହା ନୁହେଁ । ଋଷିକ୍ ପ୍ରଭୃତି ମନୀଷୀଙ୍କ ଉଦାର କଣ୍ଠରୁ ଝରି ଆସିଥିଲା "ଯାବତ୍ ଜୀବେତ୍ ସୁଖମ୍ ଜୀବେତ୍, ଋଣଂ କୃତ୍ୱା ଘୃତମ୍ ପିବେତ୍ । ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ" ଏହା କିନ୍ତୁ ରହି ପାରିଲା ନାହିଁ । ବାହ୍ୟ ସଂସ୍କୃତି ଯେତେ ଆକର୍ଷଣୀୟ ହେଲେହେଁ, ବାହ୍ୟ କଳେବର ଯେତେ ରମଣୀୟ ହେଲେହେଁ, ଆତ୍ମାର ବିକାଶ, ହୃଦୟର ସମ୍ବେଦନଶୀଳତା ଏବଂ ମନନଶୀଳତା ବ୍ୟତିରେକେ ସେ ସଂସ୍କୃତିର କିଛି ମୂଲ୍ୟ ନାହିଁ । ସେ ଶରୀରର କିଛି ମର୍ଯ୍ୟାଦା ନାହିଁ । ରକ୍ତାଭ କିଂଶୁକ କୁସୁମ ଭଳି ଲୋଭନୀୟ ମାତ୍ର ଗନ୍ଧହୀନ । ଏହା ମନୋରଞ୍ଜନକାରୀ ମାତ୍ର ଚିତ୍ତୋଲ୍ଲାସକାରୀ ନୁହେଁ । କ୍ଷୟରୋଗର ଜୀବାଣୁ ଭଳି ସମାଜରେ ଏହା ପ୍ରବେଶ କରି ମାନବିକ ମୂଲ୍ୟବୋଧକୁ ଏହା ସମ୍ପୂର୍ଣ୍ଣ ନଷ୍ଟ କରିଦିଏ । ସମାଜ ହୁଏ ପ୍ରାଣହୀନ, ପଙ୍ଗୁ । ଏହି ଦୃଷ୍ଟିରୁ ଆତ୍ମିକ ସଂସ୍କୃତି [Spiritual Culture] ହେଉଛି କାଳଜୟୀ । ଏହା ଆତ୍ମାକୁ ସ୍ପର୍ଶକରେ । ହୃଦୟକୁ ଉଦ୍ଦୀପିତ କରେ । ମାନବିକ ସମ୍ବେଦନଶୀଳତାକୁ ଜାଗ୍ରତ କରାଏ । "ବସୁଧୈବ କୁଟୁମ୍ବକମ୍" "universal brotherhood"ର ଭାବ ସୃଷ୍ଟିକରେ । ତେଣୁ ଦାର୍ଶନିକ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଭାଷାରେ

Religion is a social cement, a way in which men express their aspirations and find solace for their frustrations" ଜୈବିକ ପ୍ରବୃତ୍ତିର ଚରିତାର୍ଥରେ ପୁରୁଷାର୍ଥ ସାର୍ଥକ ହୁଏନାହିଁ । ଗୀତାରେ ଯେଉଁ ପୁରୁଷାର୍ଥ କଥା ବର୍ଣ୍ଣନା କରାଯାଇଛି ତାହା ହେଉଛି ଆତ୍ମାର ବିକାଶ । ମଣିଷର କ୍ରମ-ବିବର୍ତ୍ତନ ହୋଇଛି ଏବଂ ହେବ । ଏହାର ଲକ୍ଷ୍ୟ ଊର୍ଦ୍ଧ୍ୱକୁ । ମଣିଷର ଲକ୍ଷ୍ୟ ଅଧୋମୁଖୀ ହେଲେ ସେ ହୁଏ ପଶୁ । ଜୈବିକ ପ୍ରବୃତ୍ତି ତାର ଜାଗ୍ରତ ହୁଏ । ପଶୁର ସଂସ୍କୃତିକୁ ସେତେବେଳେ ସେ ସ୍ୱାଗତ ଜଣାଏ । ଯେଉଁଥିପାଇଁ ଜର୍ମାନ ଦାର୍ଶନିକ ଫାଇଲେମୋନ କ୍ଷୋଭରେ କହିଛନ୍ତି "ମଣିଷ ହେଉଛି ପଶୁ ଏ ଦୁଇ-ଗୋଡ଼ରେ ସିଧା ଭାବରେ ଚାଲିଲେ ମଧ୍ୟ ଏହା ମଧ୍ୟରେ ପାଶବିକ ପ୍ରବୃତ୍ତି ଚିର-ବର୍ତ୍ତମାନ । ଏପରି କି ଏ ପଶୁଠାରୁ ଭୟଙ୍କର ।" ଅତଏବ ଯେତେ ଭୌତିକ ସଂସ୍କୃତିର ବିଜୟ ଘୋଷଣା କରୁଥିଲାବେଳେ, ଆହୁରି କୋଟି କୋଟି ଲୋକ ଆଧ୍ୟାତ୍ମିକ ସଂସ୍କୃତି ବା ମନୋଗତ ସଂସ୍କୃତିକୁ ସ୍ୱାଗତ ଜଣାଉଛନ୍ତି । ଆମର ଧର୍ମ ବର୍ତ୍ତମାନ ପରିପ୍ରେକ୍ଷୀରେ ନୈରାଶ୍ୟ ଜର୍ଜରିତ ହୋଇ ପଡ଼ିଥିଲେ ହେଁ ସେହି ଧର୍ମହିଁ କେବଳ ନୂତନ ଜଗତର ସନ୍ଧାନ ଦେବ । Our religion is still in desperate need of that which religion alone can give."

## ସାହିତ୍ୟରେ ଏହାର ଆଲେଖ୍ୟ—

କୌଣସି ଦେଶ ବା ଜାତିର ସାଂସ୍କୃତିକ ପୃଷ୍ଠ-ଭୂମିରେ ଗଢ଼ିଉଠେ ସାହିତ୍ୟ । ସାଂସ୍କୃତିକ ଚିନ୍ତା, ଚେତନା ଓ ସମସାମୟିକ ପରିପ୍ରେକ୍ଷୀର ସାଂସ୍କୃତିକ ସଂକଟ ଓ ସଂଘର୍ଷ ସବୁକିଛି ପ୍ରତିଫଳିତ ହୁଏ ସାହିତ୍ୟର ଉଦାର ବକ୍ଷରେ । ଯୁଗଚେତନାକୁ ଦ୍ୟୋତିତ କରାଏ ସାହିତ୍ୟ ଏବଂ ସଂସ୍କୃତିକୁ ମର୍ମିତ କରାଏ ନିଜର ସୁକୁମାର କଳେବର । ସାହିତ୍ୟ ମଣିଷର ସମ୍ବେଦନଶୀଳତାକୁ ବ୍ୟାପକ କରାଏ । ମନନ-ଶୀଳତାକୁ ପ୍ରଖର ଓ ତୀକ୍ଷ୍ଣ କରାଏ । ସୌନ୍ଦର୍ଯ୍ୟ ଚେତନାକୁ ଝଂକୃତ ଓ ପରିଷ୍କୃତ କରାଏ ଏବଂ ନୈତିକବୋଧ ଓ ଆଧ୍ୟାତ୍ମିକ ଚେତନାକୁ ଉଦ୍ଦୀପ୍ତ କରାଏ । ସାହିତ୍ୟ ହିଁ ସର୍ବୋତ୍ତମ ସାଧନ କ୍ଷେତ୍ର, ଯେଉଁଠାରେ କି ସାଂସ୍କୃତିକ ଚେତନା ମାର୍ଜିତ ଓ ପରିଷ୍କୃତ ହୋଇ ପରିବର୍ତ୍ତିତ ନୂତନ ରୂପରେଖ ନିଏ । ଦେଶ ବା ଜାତିର ସାଂସ୍କୃତିକ ଉପଲବ୍ଧିର ପ୍ରାମାଣିକ ଆଲେଖ୍ୟ ହେଉଛି ସାହିତ୍ୟ । ସାହିତ୍ୟର ଦ୍ୱାର ଚିର-ଉନ୍ମୁକ୍ତ । ତାର ଦ୍ୱାର ରୁଦ୍ଧ ନୁହେଁ । ସେ କୃପଣ ନୁହେଁ, ସେ ଉଦାର । ସମସ୍ତ ଚିନ୍ତାଧାରାକୁ ସେ ସ୍ୱାଗତ ଜଣାଏ । ଜାତିଧର୍ମ ଓ ବିଭିନ୍ନ ରାଜନୀତିକ ମତବାଦ ନିର୍ବିଶେଷରେ ସେ ସମସ୍ତଙ୍କୁ ଆପଣାର କରିନିଏ । ନିଜ ଭିତରେ ମିଶାଇ ଦେଇ ନୂତନ ଭାବରେ ଆତ୍ମପ୍ରକାଶ କରେ । ସେ କୌଣସି ସଂସ୍କୃତିକୁ ଘୃଣା କରେନାହିଁ । କୌଣସି ପରିବର୍ତ୍ତନକୁ ଉପେକ୍ଷା କରେନାହିଁ । ସମସ୍ତଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଏ । ସମାଜ ଶୃଙ୍ଖଳା ବିକାରଗ୍ରସ୍ତ ହିପିଜ୍ ସ୍ୱାଧୀନ ଯୌନ-ଲୀଳା ପ୍ରମତ୍ତ ଉଲଗ୍ନ ଇପିଜ୍ ଓ ବିଟ୍‌ଦଳ ପ୍ରଭୃତିଙ୍କୁ ସେ ଘୃଣା କରେନାହିଁ ବରଂ ସଂବେଦନା ଜଣାଏ । ପ୍ରାଚୀନ ସଂସ୍କୃତିକୁ ସେ ଖଣ୍ଡନ କରେନାହିଁ କିମ୍ବା ଅବଜ୍ଞା କରେନାହିଁ । ଏପରି କି ବିଜ୍ଞାନ କିମ୍ବା ମନୋବୈଜ୍ଞାନିକ ଚିନ୍ତାଧାରାକୁ ସେ ଅବମାନନା କରେନାହିଁ । ସାହିତ୍ୟ ନୂତନତାକୁ ସ୍ୱାଗତ ଜଣାଏ । ମାତ୍ର ପ୍ରାଚୀନତାକୁ ଘୃଣା କରେନାହିଁ । ପ୍ରାଚୀନ ପରିବର୍ତ୍ତିତ ହୋଇ ରୂପନିଏ ନୂତନ ଭାବରେ । ସାହିତ୍ୟ ବର୍ତ୍ତମାନର ସମସ୍ୟାକୁ ଅତୀତର ଆଲୋକରେ ସମା-ଧାନ କରେ । ବର୍ତ୍ତମାନର ଚିତ୍ରପଟ୍ଟ ଉପରେ ଭୂତ କାଳର ସମ୍ଭାବ୍ୟକୁ ଅଙ୍କନ କରିବାକୁ ଚେଷ୍ଟାକରେ । ସାହିତ୍ୟର ସାକ୍ଷୀ ହେଉଛି ଅତୀତ, କର୍ମକ୍ଷେତ୍ର ବର୍ତ୍ତମାନ ଏବଂ ଲକ୍ଷ୍ୟ ହେଉଛି ଭବିଷ୍ୟତ । ସାହିତ୍ୟ ଏହି ତିନୋଟିକୁ ନେଇ ଆତ୍ମପ୍ରକାଶ କରେ । ସାହିତ୍ୟ ସଂସ୍କୃତିର ବାହକ ଓ ସଂରକ୍ଷକ ଅଟେ । କୌଣସି

ଦେଶର ସଂସ୍କୃତି ହିଁ ସେହି ଦେଶର ସାହିତ୍ୟରୁ ଜଣାଯାଏ । ଅତଏବ ସାହିତ୍ୟ ସଂସ୍କୃତିର ରକ୍ଷାକର୍ତ୍ତା । ମାତ୍ର ସାହିତ୍ୟର ନିଜ ସ୍ୱରୂପ ଏବଂ ପ୍ରେରଣା ହିଁ ସଂସ୍କୃତିରୁ ଉତ୍ସରିତ ହୋଇଥାଏ । ଅର୍ଥାତ୍ ସଂସ୍କୃତିର ରକ୍ଷାପାଇଁ ସାହିତ୍ୟ ଯେପରି ଦାୟୀ, ସାହିତ୍ୟର ସୃଷ୍ଟି ଓ ବିକାଶ ପାଇଁ ସଂସ୍କୃତି ସେହିପରି ଦାୟୀ । ଏକର ଅଭାବରେ ଅନ୍ୟର ସୃଷ୍ଟି ବିକାଶ ଓ ସ୍ଥିତି ଅସମ୍ଭବ ହୋଇଉଠେ । ଉଭୟେ ପରିବର୍ତ୍ତନକୁ ସ୍ୱାଗତ ଜଣାନ୍ତି । ପରିବର୍ତ୍ତିତ ପୃଷ୍ଠଭୂମିରେ ଉଭୟେ ପଦଚିହ୍ନକୁ ଭାସ୍ୱର କରି ଯାଆନ୍ତି ।

## ଏ ନିୟମ ସବୁବେଳେ ସମାନ ନୁହେଁ—

ସାହିତ୍ୟ ସଂସ୍କୃତିର ସର୍ବଦା ଅନୁବର୍ତ୍ତୀ ବା ସହବର୍ତ୍ତୀ ନୁହେଁ । କେତେବେଳେ ଏହା ସଂସ୍କୃତିକୁ ନିଜର ମହାପ୍ଲାବନ ସହିତ ମିଶାଇ ଦେଇ ଏକାତ୍ମ ହୋଇ ଗତିକରେ । ପୁଣି କେତେବେଳେ ଏହା ସଂସ୍କୃତିର ଧାରାସହିତ ସମାନ୍ତରାଳ ଭାବରେ ଗତିକରି ନିଜର ସ୍ୱକୀୟତାକୁ ବଜାୟ ରଖେ । ସମୟ ସମୟରେ ସାହିତ୍ୟର ଧାରା ସଂସ୍କୃତିର ବିପରୀତମୁଖୀ ହୋଇ ଗତିକରେ । ଯେତେବେଳେ ସଂସ୍କୃତି ସହିତ ସାହିତ୍ୟ ଏକାତ୍ମ ହୋଇ ଗତିକରେ, ସେତେବେଳେ ସାହିତ୍ୟ ହୁଏ ସତ୍ୟଶିବ ସୁନ୍ଦର । ସଂସ୍କୃତିକୁ ତ୍ୟାଗକରି ସାହିତ୍ୟ ଯେତେବେଳେ କେବଳ ବର୍ତ୍ତମାନର ମାନ-ଦଣ୍ଡକୁ ନେଇ ଗଢ଼ିଉଠେ, ସେତେବେଳେ ସାହିତ୍ୟ ଅସଂଲଗ୍ନ ଓ ଅସମ୍ବନ୍ଧ ଚିନ୍ତାଧାରାରେ ପୂରିଉଠେ । କେବଳ ଯନ୍ତ୍ରଣା, ହାହୁତାଶ, ଅବକ୍ଷୟକୁ ନେଇ ସାହିତ୍ୟର ସୁକୁମାର କଳେବର ଶ୍ରୀହୀନ ହୋଇ-ପଡ଼େ । ଐତିହ୍ୟହୀନତା ହେତୁ ଯୁଗ ଯନ୍ତ୍ରଣାର ବିଲୋପ ପାଇଁ ସମାଧାନର ମାଧ୍ୟମ ଖୋଜି ପାଏନାହିଁ । ଏହି ସାହିତ୍ୟ ବସ୍ତୁତାନ୍ତ୍ରିକତାର ମନୋବୃତ୍ତିକୁ ପ୍ରଚାର କରାଏ । ବ୍ୟକ୍ତି ସର୍ବସ୍ୱ ଚିନ୍ତାଧାରାକୁ ଉଜ୍ଜୀବିତ କରାଏ । ମଣିଷକୁ ଯାନ୍ତ୍ରିକଭାବାପନ୍ନ କରାଏ । ଆଧୁନିକ ଜଗତରେ ପରିବର୍ତ୍ତିତ ସଂସ୍କୃତିର ଏହି ଚିନ୍ତାହିଁ ଦେଖିବାକୁ ମିଳେ । ଧାର୍ମିକତା, ନୈତିକତା ଓ ମାନବିକତା ଆଜି ପ୍ରହସନରେ ପରିଣତ ହୋଇଛି । ମଣିଷ ହୋଇଛି ଅନ୍ତର୍ଗ୍ରାସଜର୍ଜ୍ଜ । ସେ ନିଜ ଶକ୍ତିରେ ଉନ୍ମତ୍ତ ଓ ପ୍ରମତ୍ତ । ସେ ଆଜି ବ୍ୟକ୍ତିବାଦୀ, ଜଡ଼ବାଦୀ । ବାହ୍ୟାଡ଼ମ୍ବରର ସେ ପୃଷ୍ଠପୋଷକ । T. S. Eliot ସେଥି-ପାଇଁ ତାଙ୍କର pattern of culture ରେ ଲେଖିଛନ୍ତି "The Sophisticated modern culture has made of social relativity…a doctrine of despair. It has pointed out its incongruity with the òrthodox dreams of permanence and ideality and with the individual's illusions of autonomy."

## ସାହିତ୍ୟ ସଂସ୍କୃତି ଓ ଐତିହ୍ୟମୁଖୀ ହେବା ଉଚିତ କି ?

ସାହିତ୍ୟ ସଂସ୍କୃତିର ରକ୍ଷକ ଏବଂ ସଂସ୍କୃତି ସାହିତ୍ୟର ସ୍ରଷ୍ଟା । ତେଣୁ ପ୍ରଶ୍ନ ଆସେ ସାହିତ୍ୟ ସଂସ୍କୃତିମୁଖୀ ହେବା ଉଚିତ କିମ୍ବା ସଂସ୍କୃତି ଯେତେ-ବେଳେ ଶାନ୍ତ ସୁନ୍ଦର ଶୋଭାମୟ, ସେତେବେଳେ ସାହିତ୍ୟ ହୁଏ କାନ୍ତକୋମଳ କମନୀୟ । ସଂସ୍କୃତି ଯେତେବେଳେ ସଂକଟମୟ ଓ ସଂଘର୍ଷମୟ ସାହିତ୍ୟରେ ସେତେବେଳେ ଦେଖାଦିଏ ସଂକଟ । ସଂସ୍କୃତିରେ ଘୂର୍ଣ୍ଣିବାୟୁ ଦେଖାଦେଲେ ସାହିତ୍ୟରେ ତାର ପ୍ରଚଣ୍ଡ ଆବର୍ତ୍ତର ପ୍ରତିଫଳନ ହୁଏ । ଅତଏବ ସାହିତ୍ୟ ସଂସ୍କୃତିକୁ ଭିତ୍ତିକରି ରୂପ ପରିବର୍ତ୍ତନ କରେ । ମାତ୍ର ଯେତେବେଳେ ସଂସ୍କୃତିରେ ସଂକଟ ଦେଖାଯାଏ, ସେତେବେଳେ ସାହିତ୍ୟ ସଂସ୍କୃତିକୁ ମାର୍ଜିତ କରି ନୂତନ ରୂପରେଖ ପ୍ରଦାନ କରେ । ସଂସ୍କୃତି ହୁଏ ସାହିତ୍ୟମୁଖୀ । ବିସ୍ମୃତ ସଂସ୍କୃତି ପୁଣି ମାର୍ଜିତ ହୋଇ ବିକାଶଶୀଳ ହୁଏ । ସଂସ୍କୃତି ସାହିତ୍ୟର ସମ୍ବଳ ଅଟେ । ସାଂସ୍କୃତିକ ତତ୍ତ୍ୱ ବା ଉପଲବ୍ଧି ସାହିତ୍ୟରେ ଗୁମ୍ଫିତ ହୋଇଉଠେ । ସଂସ୍କୃତିର ବିନାଶ ବା ବିସ୍ମରଣ ସାହିତ୍ୟର ଧର୍ମ ନୁହେଁ । ଏହାର ଧର୍ମ ସଂସ୍କୃତିକୁ ବିକାଶଶୀଳ କରାଇବା । ଏହା ସତ୍ୟ ଯେ

ଅତୀତର ଆଲୋକରେ ବର୍ତ୍ତମାନ ଆଲୋଚିତ ହୁଏ ଏବଂ ନିର୍ମିତ ହୁଏ । ମାତ୍ର ସମୟରେ ସାମୟିକ ପ୍ରଶ୍ନ ବା ଘଟଣା ଏପରି ମହତ୍ତ୍ୱପୂର୍ଣ୍ଣ ହୁଏ ଯେ ଯାହାର ଆଲୋକ ଦ୍ୱାରା ସ୍ୱୟଂ ସଂସ୍କୃତି ପୁନର୍ମୂଲ୍ୟାଙ୍କନ ଆବଶ୍ୟକ କରେ । ସାହିତ୍ୟ ଏ କ୍ଷେତ୍ରରେ ସଂସ୍କୃତିକୁ ଆଲୋକ ପ୍ରଦାନ କରେ । କିନ୍ତୁ ସଂସ୍କୃତିକୁ ବା ଐତିହ୍ୟକୁ ସଂପୂର୍ଣ୍ଣ ଭାବରେ ତ୍ୟାଗକଲେ ସାହିତ୍ୟ ଯେ ଯୁଗାନ୍ତକାରୀ ହୋଇ ଉଠିବ, ଏଭଳି ଭାବନା ଉଚିତ ନୁହେଁ । ଅବଶ୍ୟ ଆମେରିକାର ତରୁଣ କବି ହାର୍ଡ଼୍ କ୍ରେନ ଏଭଳି ମତବ୍ୟକ୍ତ କରନ୍ତି । ତାଙ୍କ ମତରେ ସଂସ୍କୃତିକୁ ଅତିମାତ୍ରାରେ ଜାବୁଡ଼ି ଧରିଲେ ସାହିତ୍ୟିକର ସ୍ୱାଧୀନ ଚିନ୍ତାଧାରାରେ ବାଧାସୃଷ୍ଟି ହୁଏ । ପ୍ରାଚୀନ ସଂସ୍କୃତି ପ୍ରତି ଆକୃଷ୍ଟ ସାହିତ୍ୟିକମାନଙ୍କର ଲେଖାରେ ମୌଳିକତା ଦେଖାଯାଏ ନାହିଁ । ଏହି ଦୃଷ୍ଟିରୁ ଜଣେ ଆମେରିକାନ୍ କବି ଜଣେ ଭାରତୀୟ କବି ଅପେକ୍ଷା ଅଧିକ ସ୍ୱାଧୀନ ଓ ମୌଳିକ ଚିନ୍ତା ସୃଷ୍ଟି କରିବାରେ ଅଧିକ ପାରଙ୍ଗମ । ଏଭଳି ଏକ ମତବ୍ୟକ୍ତ କରିବା ସବୁବେଳେ ନିରାପଦ ନୁହେଁ । ନୂତନ ସଂସ୍କୃତି ସୃଷ୍ଟ ଏକ ଜାତି ପ୍ରାଚୀନ ସଂସ୍କୃତି ପ୍ରସୂତ ଏକ ଜାତିପ୍ରତି ଏଭଳି ଉକ୍ତି ପ୍ରକାଶ କରିବାରେ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଅସମୀଚୀନ ନୁହେଁ । ସାହିତ୍ୟିକ ଏକ ସମାଜର ଜଣେ ବ୍ୟକ୍ତି । ଏହି ସମାଜକୁ ସେ କେବେ ତ୍ୟଜି ନ ପାରେ । ଏହାର ସଂସ୍କୃତିକୁ ଉପେକ୍ଷା କରି ନ ପାରେ । ହୁଏତ ନୂତନ ସ୍ୱରଦେଇ ପତନୋନ୍ମୁଖୀ ସଂସ୍କୃତିର ପୁନରୁଦ୍ଧାର କରିବାର ପ୍ରେରଣା ଦିଏ କିମ୍ବା ନୂତନ ସଂସ୍କୃତି ସୃଷ୍ଟି କରିବାର ଇଙ୍ଗିତ ଦିଏ । ମଣିଷ ତାର ଅତୀତ ପରମ୍ପରାକୁ ଭୁଲିଗଲେ ସେ ଧ୍ୱଂସ ହୋଇଉଠେ । ସେଥିପାଇଁ ଟି. ଏସ୍. ଇଲିଅଟ୍ ଯଥାର୍ଥରେ କହିଛନ୍ତି—"The people who ceases its literary inheritance becomes barbaric"

ଉପସଂହାରରେ ଏତିକି କୁହାଯାଇପାରେ ଯେ ସାହିତ୍ୟ ଓ ସଂସ୍କୃତି ଅଙ୍ଗାଙ୍ଗୀଭାବେ ଜଡ଼ିତ । କେତେବେଳେ ସାହିତ୍ୟ ସଂସ୍କୃତିର ଅନୁବର୍ତ୍ତୀ ହେଲେ ତ' ସଂସ୍କୃତି ପୁଣି କେତେବେଳେ ସାହିତ୍ୟର ଅନୁବର୍ତ୍ତୀ ହୁଏ । ମୋଟଉପରେ ବିଜ୍ଞାନର ଜୟଯାତ୍ରା ସଙ୍ଗେ ସଙ୍ଗେ ଆମର ଯୁଗ ଯୁଗର ଚିନ୍ତା ମଧ୍ୟ ବଦଳିବାକୁ ଯାଉଛି । ସେହି ଅନୁସାରେ ଆମର ସାଂସ୍କୃତିକ ଚେତନା ମଧ୍ୟ ବଦଳୁଛି । ଏହି ଚିନ୍ତା ବଦଳିବା ଅନିବାର୍ଯ୍ୟ । ସାହିତ୍ୟ ମଧ୍ୟ ଏହି ପରିବର୍ତ୍ତନକୁ ସ୍ୱାଗତ ଜଣାଉଛି । ସଂସ୍କୃତି ଯେପରି ଆଜି ଦେଶ କାଳ ସୀମା ଅତିକ୍ରମକରି ଆନ୍ତର୍ଜାତୀୟତାକୁ ଗ୍ରହଣ କରୁଛି, ସାହିତ୍ୟ ମଧ୍ୟ ଆଜି ତଦ୍ରୂପ ରୂପ ଗ୍ରହଣ କରୁଛି । ଆଜି ସଂସ୍କୃତି ଧର୍ମର ସଂସ୍କୃତି ନୁହେଁ, ନୂତନ ମାନବିକତାର ସାହିତ୍ୟର ମୂଳ ସ୍ୱର । ସବୁଦେଶରେ ଆଜି ଏହି ଭାବ ସାହିତ୍ୟରେ ଦେଖା ଦେଉଛି । ମଣିଷ ହିଁ ସାହିତ୍ୟରେ ପ୍ରାଧାନ୍ୟ ବିସ୍ତାର କରୁଛି । "Either way the human person loses his priority". ସାହିତ୍ୟ ଓ ସଂସ୍କୃତିର ସମନ୍ୱୟରେ ଯୁଗମାନବର ବିକାଶ ଯେ ନିଶ୍ଚିତ ଏଥିରେ ସନ୍ଦେହ ନାହିଁ ।

—*—

Source: KC Dash, Digitized by PPRACHIN, SOA

# ॥ ଓଡ଼ିଆ ସାହିତ୍ୟ ଓ ଯଦୁମଣି ॥

ଅଧ୍ୟାପକ—କମଳାକାନ୍ତ ଲେଙ୍କା

[ ଅଧ୍ୟାପକ ଶ୍ରୀ କମଳାକାନ୍ତ ଲେଙ୍କା ଜଣେ ପ୍ରତିଷ୍ଠିତ ତରୁଣ କବି ଓ ସମାଲୋଚକ । ପରୀକ୍ଷା ମୂଳକ ଆଧୁନିକ କବିତା ରଚନାରେ ସେ ସିଦ୍ଧହସ୍ତ । ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ଧାରାବାହିକ ଭାବରେ ତାଙ୍କ ଲେଖା ପ୍ରକାଶ ପାଇଥାଏ । ବୁଦ୍ଧିଜୀବୀ ମହଲରେ ସେ ବିଶେଷ ପ୍ରଶଂସିତ । ତାଙ୍କ ରଚିତ ପୁସ୍ତକ ଗୁଡ଼ିକ ପ୍ରଗତିଶୀଳ ଓ ପରୀକ୍ଷାମୂଳକ । ] (ସ. ବନଫୁଲ)

୧୭୮୧ ମସିହାରେ ଆଠଗଡ଼ ତାଲୁକାରେ ଏକ ଶିଳ୍ପୀକର ବଂଶରେ କବି ଯଦୁମଣିଙ୍କ ଜନ୍ମ । ମନ୍ଦିର-ମାନଙ୍କରେ ସୁନ୍ଦର ସୁନ୍ଦର ଦେବମୂର୍ତ୍ତି ଚିତ୍ରଣ ଓ କାଷ୍ଠ-ପାଷାଣରେ ମୂର୍ତ୍ତି ନିର୍ମାଣ କରିବା ସ୍ୱର୍ଗତ ମହାପାତ୍ରଙ୍କ ବଂଶର କୌଳିକ ବୃତ୍ତିଥିଲା । କବିଙ୍କ ପିତା ମୁକୁନ୍ଦ ମହାପାତ୍ର ଆର୍ଥିକ ସଙ୍କଟର ଆଶୁ ସମାଧାନ ନିମିତ୍ତ ନୟାଗଡ଼ର ତତ୍କାଳୀନ ରାଜା ବିନାୟକ ସିଂହମାନଧାତାଙ୍କ ଅନୁରୋଧ କ୍ରମେ ଗଞ୍ଜାମସ୍ଥ ଆଠଗଡ଼ରୁ ଆସି ନୟାଗଡ଼ରେ ବିଗ୍ରହ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ଏତେବେଳକୁ କବିଙ୍କୁ ମାତ୍ର ଆଠବର୍ଷ । ନୟାଗଡ଼ ନିକଟସ୍ଥ ଇଟାମାଟି ଗ୍ରାମରେ ଅବସ୍ଥାନ କଲା ଉତ୍ତାରେ କବି ଯଥାବିଧି ବିଦ୍ୟାଧ୍ୟୟନ ଆରମ୍ଭ କଲେ । ୧୭୯୭ ବର୍ଷ ବେଳକୁ କବି ପ୍ରତିଭାର ସ୍ଫୁରଣ ହେଲା । କବିଙ୍କ ମାତା ସାଧ୍ୱୀ ଦେବୀ ପୁତ୍ରକୁ ସନ୍ମାର୍ଗରେ ପରିଚାଳିତ କରିବା ପାଇଁ ମଧ୍ୟ ନାନାବିଧ ଯତ୍ନ କରିଥିଲେ ।

କେତେକ ଆଲୋଚକ କବିଙ୍କ ପାଣ୍ଡିତ୍ୟ ଓ ବହୁ-ଶାସ୍ତ୍ରଦର୍ଶିତା ସମ୍ପର୍କରେ ନାନା ମତ ପୋଷଣ କରନ୍ତି । କେହି କେହି କହନ୍ତି, କବି ମୂର୍ଖ ଥିଲେ । ନୀଚ କୁଳରେ ଜନ୍ମହୋଇ ହଳକର ଜୀବିକା ନିର୍ବାହ କରୁଥିଲେ । କିନ୍ତୁ କବିଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଓ 'ରାଘବ ବିଳାସ' ଅଧ୍ୟୟନ କଲେ ଏ ପ୍ରକାର ପ୍ରତିକୂଳ ମତ ଖଣ୍ଡିତ ହୋଇଥାଏ । କବି ପ୍ରତିଭାର ବିକାଶ ନିମିତ୍ତ ସାଧାରଣତଃ କବିମାନେ ଦେବଦେବୀଙ୍କ ଆଶିଷ ଉପରେ ଆସ୍ଥା ପୋଷଣ କରିଥାନ୍ତି । ନିରବଚ୍ଛିନ୍ନ ସାଧନା ଓ ଅଧ୍ୟବସାୟ ସୁପ୍ତ ପ୍ରତିଭାକୁ ଜାଗରୂକ କରେ ସତ; କିନ୍ତୁ ବିଭୁକଲ୍ୟାଣ ବା ଇଷ୍ଟଦେବତାର ଆଶୀର୍ବାଦ ବିନା ପ୍ରତିଭାର ସମ୍ୟକ୍ ବିକାଶ ହେବା ସମ୍ଭବ ନୁହେଁ । ଏ କଥା ଯଦୁମଣି ପ୍ରାପ୍ତବୟସରେ ହୃଦୟଙ୍ଗମ କରିଥିଲେ । କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ କବି ପ୍ରତିଭାର ଉନ୍ମେଷ ମୂଳରେ 'ରାମତାରକ ମନ୍ତ୍ର'ର ପ୍ରଚ୍ଛନ୍ନ ଆଶୀର୍ବାଦ ଥିଲାପରି କବି ଯଦୁମଣିଙ୍କ 'ହୟଗ୍ରୀବ ମନ୍ତ୍ର' ସାଧନ ତାଙ୍କ ପ୍ରତିଭା ବିକାଶର ଅନ୍ୟତମ କାରଣ ଥିଲା । କବି ନିଜେ କହିଛନ୍ତି—

ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେଁ ଲୋଡ଼ା କରନ୍ତି ଭୂପେ
ଯୋଡ଼ା ହେବା ମୋ ପ୍ରୋଢ଼ା କବିତାକୁ
କଳି କଳି ରସ ଦାଆ କର୍ଣ୍ଣିକୁ
ଭଲେ ଭଲ ଖଣ୍ଡେ ଖଣ୍ଡେ ଯେ
ନବ ଦୁର୍ବାଦଳ ଶ୍ୟାମଳ କୃପାରୁ
ମୋନାମ ଉତ୍କଳ ପଣ୍ଡେ ଯେ ।

କବିଙ୍କ 'ରାଘବବିଳାସ', ଧନଞ୍ଜୟ ଭଞ୍ଜଙ୍କ ରଘୁନାଥ ବିଳାସ, ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ଅନୁରୂପ ଏକ ଉଚ୍ଚକୋଟିର କାବ୍ୟ । ବିଷୟ-ବସ୍ତୁ ସମାନ ହେଲେହେଁ ଏ ଗ୍ରନ୍ଥରେ କବି ଯଦୁମଣିଙ୍କ ପ୍ରତିଭାର ଉନ୍ମେଷ ଘଟିଛି । ଗ୍ରନ୍ଥଟିର ପ୍ରତ୍ୟେକ ଛାନ୍ଦରେ ନୟାଗଡ଼ର ରାଜା ବିନାୟକ ସିଂହମାନଧାତାଙ୍କ ନାମର ଭଣିତା ରହିଛି । ଏଥିରୁ କବିଙ୍କ ପ୍ରତି ରାଜାନୁଗ୍ରହ କିପରି ଅପ୍ରତିହତ ତାହା ସ୍ପଷ୍ଟ ଅନୁମେୟ । ସଂସ୍କୃତ ଶାସ୍ତ୍ର ପଦ୍ଧତି ଅନୁଯାୟୀ କବି ନମସ୍କ୍ରିୟା ଓ ବସ୍ତୁ ନିର୍ଦ୍ଦେଶ ଆଦି ମାତ୍ର ଅନୁସରଣ କରିବା ସଙ୍ଗେ ସଙ୍ଗେ ନିଜର ହୀନତା ପ୍ରକାଶ କରିଛନ୍ତି—

କଳ୍ପି କଳ୍ପି କେତେ କଳ୍ପିଲି ଶିଳ୍ପକାର କୁମର
କଳ୍ପେ କଳ୍ପତରୁ ଭଜିଲି ଦୁଃଖ ନଗଲି ମୋର ।

ସନ୍ନିବେଶିତ ୩୬ଟି ଛାନ୍ଦ ମଧ୍ୟରୁ କବିଙ୍କର ରାମସ୍ତୁତି, ଚିତ୍ରକୂଟ ବିହାର, ସୂର୍ପଣଖାର ନାଶାକର୍ଣ୍ଣ-ଛେଦ, ରାମଙ୍କ ଋଷ୍ୟମୂକ ପ୍ରବେଶ, ବିଭୀଷଣ ଶରଣ, ମାୟାସୀତାବଧ ଆଦି ଛାନ୍ଦର ଲୋକପ୍ରିୟତା ସର୍ବଜନ ସ୍ୱୀକୃତ । ସୀତାଙ୍କ ଅନୁପସ୍ଥିତି ଜନିତ ବେଦନା ରାମଙ୍କୁ କିପରି ବିବ୍ରତ କରିଛି ଦେଖନ୍ତୁ—

ସଲକ୍ଷଣ ଲକ୍ଷଣ ସଙ୍ଗେ ଯେନି ଦୂଷଣ
ଗମୁଁ ଇକ୍ଷଣୁ ବୁହେ ଲୁହ
ଆହା ମୋ ସୀତାମୃତା—ଧରି ଦେଲୁ କି ଚିନ୍ତା
ଧାତା ଲେଖନ ହେଲା ଗହି ଗୋ ସୁଶୋଭାଙ୍ଗୀ ।
ତୋ ବିନା ବି-ନାରେ ନବୀନା !
ଆଉ ମୋ କାମନା ନାହିଁ ନା,
ଭୁବନ ଭାବ ଯେତେ ଭାବି ଭାବି ନିରତେ
ତେଜିଲୁ ଯେନି କାହା ମନା ଗୋ ସୁଶୋଭାଙ୍ଗୀ ।

ସେହିପରି ସୂର୍ପଣଖାର ନାଶାକର୍ଣ୍ଣ ଛେଦ ଛାନ୍ଦରେ କବିଙ୍କର ବର୍ଣ୍ଣନାପାଟବ ଓ ଶବ୍ଦ ଗୁମ୍ଫନର କଳାଶ୍ରୀ-ପୂର୍ଣ୍ଣ ଅଭିବ୍ୟକ୍ତି ଘଟିଛି । ଅନୁପ୍ରାସ, ଯମକର ବହୁଳ ପ୍ରୟୋଗ ସତ୍ତ୍ୱେ କବିଯୁଗରୁ ଚିର ଅନୁରୋଧ ଦମେ ଏ କାବ୍ୟଟିକୁ ସରସ ଓ ମନୋଜ୍ଞ କରି ପାରିଛନ୍ତି—

ରାମରେ ରାମରେ ରାମ-ବଇରୀ
ରାମ ରାମ ରାମନେତ୍ରୀ ବିହରି
ରାମ ରାମା ରାମ ପ୍ରସିଦ୍ଧି ବଶ
ରାମ ରାମା ଧାମ ଯେନିବ ତୋଷ
ବନି-ବନ ବନ
ସୁମନା ସୁମନା ସୁମନା ! ଯେନ ।

ଏହିପରି ବହୁ ଶ୍ରୁତିମଧୁର ପଂକ୍ତି ଆଲୋଚନା ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ । 'ରାଘବବିଳାସ' କବି ପ୍ରତିଭାର ଆଦି ଉନ୍ମେଷ ହୋଇଥିବାରୁ ଏଥିରେ କବିଙ୍କର ନିଜସ୍ୱ ମୌଳିକତା ବିଶେଷ ନାହିଁ । ଅନୁସରଣ ଓ ଅନୁକରଣର ଭାରରେ ଏ ଗ୍ରନ୍ଥଟି ଅନେକାଂଶ ଭାରାକ୍ରାନ୍ତ । କିନ୍ତୁ 'ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର'ରେ କବି ପ୍ରତିଭାର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ବାରି ହୋଇପଡ଼େ ।

ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କ ବିବାହ 'ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର'ର ବିଷୟବସ୍ତୁ । ଏହାର ଛାନ୍ଦ ସଂଖ୍ୟା ଆଠ । ଦ୍ୱାରକାର ବର୍ଣ୍ଣନାଠାରୁ ରୁକ୍ମଣୀ ହରଣ ପର୍ଯ୍ୟନ୍ତ ଆଠଗୋଟି ଛାନ୍ଦରେ କବି ଯଥାସାଧ୍ୟ ନିଜ ପ୍ରତିଭା ଓ ବହୁ ଶାସ୍ତ୍ର ଦର୍ଶିତାର ସୂଚନା ଦେଇଛନ୍ତି । ପାଠକମାନଙ୍କୁ ନିଜ କାବ୍ୟ କଳା ସମ୍ପର୍କରେ କବି ସଚେତନ କରି କହିଛନ୍ତି ।

ମନ ମଗନ କରି ଅନଳ୍ପକେ
ଏ କଳା କଳ୍ପନା କରି କଳ୍ପକେ···

× × ×

କଳ୍ପକ କଳ୍ପିବାରେ ଏ କଳା କଳ୍ପନାରେ
ମଜ୍ଜା ମଜାଅ ସରଧାରେ···

× × ×

ପ୍ରବନ୍ଧକାର-ବାର ବିସ୍ମୟ ଚିତ୍ତେ
ଏ କଳା କଳ୍ପନାରେ ବୃତ୍ତିରି ଯେତେ···

× × ×

ପ୍ରଧାନ ଗୁଣ ନିଧାନ ଜନମାନ

ମାନସ କର ସାବଧାନ
ଏ କଳାରେ କବ କଳ୍ପି କଳ୍ପି କର
ଜନ୍ମିଅଛୁ ଯେତେ ବଧାନ···୧ମ ପଦ

ଏଭଳି ୪ଟି ଗ୍ରନ୍ଥରେ କାବ୍ୟକଳା ସମ୍ପର୍କରେ ଅବହିତ ହେବାପାଇଁ କମ୍ବା ଏକାଗ୍ରତା ସହକାରେ କବ କଳ୍ପନାକୁ ଅନୁଧ୍ୟାନ କରିବାପାଇଁ ଅଥବା ଗ୍ରନ୍ଥ ରଚନା-ସୌନ୍ଦର୍ଯ୍ୟର ଗୁରୁତ୍ୱକୁ ସ୍ୱୀକାର କରିବା ପାଇଁ କବ ନଜର ରସଜ୍ଞ ପାଠକମାନଙ୍କୁ ଅନୁରୋଧ କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ କବ ନିଜର ଶ୍ରମସାଧ୍ୟ ରଚନାର ଲୋକପ୍ରିୟତା ସମ୍ପର୍କରେ ହୁଏତ ସନ୍ଦିହାନ ଥିଲେ କମ୍ବା ଯୁଗରୁଚିର ଅନୁରୋଧରେ କବ ଏ ପ୍ରକାର ମତ ଅନୁସରଣ କରିଥିଲେ । ତେବେ ଗ୍ରନ୍ଥପାଠରୁ ଜଣାଯାଏ ଯେ କବ ଏ କାବ୍ୟରେ ଅନେକକ ଦ୍ୱିଅର୍ଥ ବଶିଷ୍ଟ ପଦମାନ ସନ୍ନିବେଶ କରିବା ସଙ୍ଗେ ସଙ୍ଗେ ଜ୍ୟୋତିଷ ଶାସ୍ତ୍ର, ପୁରାଣ, ଆୟୁର୍ବେଦ, ସଙ୍ଗୀତଶାସ୍ତ୍ର ଓ ନଜ ଆଧ୍ୟାତ୍ମିକ ଜ୍ଞାନର ସାହାଯ୍ୟ ନେଇଛନ୍ତି । ଫଳରେ ଏ ଗ୍ରନ୍ଥଟି ବୁଦ୍ଧିଗ୍ରାହ୍ୟ ହୋଇଛି । ଏହାଛଡ଼ା କବଙ୍କ କଳ୍ପନା-ବଳାସ ଓ ଅତ୍ୟଧିକ ଅଳଙ୍କାର ପ୍ରିୟତା କାବ୍ୟର ପ୍ରସାଦଗୁଣ ନଷ୍ଟ କରୁଛି । ପ୍ରଥମ ଛାନ୍ଦରେ ଦ୍ୱାରକାପୁର ବର୍ଣ୍ଣନା ପ୍ରସଙ୍ଗରେ କବ କହୁଛନ୍ତି —

ଧାଇଁ କର ଅଙ୍କୁରଙ୍କୁ ଖାଇବେ
ଝଟି ଜ୍ୟୋତିକ ଚନ୍ଦ୍ର ଦେଖାଇବେ
ପ୍ରତାପ ଦ୍ରୋପ ପାଇ ଆଦର
ଆଚରଣ କ ଆତରେ ଇଶ୍ୱର ?
ନଷାଦେ ଅତର ଭୟ
ଗାଢ଼ ବନ୍ଧନୁ ଶ୍ୱାନକୁ ନ ଛାଡ଼ନ୍ତ
ଥିବାଯାକେ ଚନ୍ଦ୍ରୋଦୟ ॥

ଚନ୍ଦ୍ରୋଦୟ ଥିବାଯାଏ ଶିକାରୀ ଜାତିର ଲୋକମାନେ ଦୃଢ଼ ବନ୍ଧନରୁ ଶ୍ୱାନକୁ ଫିଟାନ୍ତ ନାହିଁ । କାରଣ କୁକୁରମାନେ ଧାଇଁଯାଇଁ ଚନ୍ଦ୍ରଙ୍କ ଅଙ୍କରୁ ଘଙ୍କୁ ବା ମୃଗକୁ ଖାଇଯିବେ । ପୁଣି ବଦର୍ଭନଗର ବର୍ଣ୍ଣନା ପ୍ରସଙ୍ଗରେ କବ କହୁଛନ୍ତ—ଚଣ୍ଡୀମନ୍ଦରର କଳସର ଛାଇ ଚନ୍ଦ୍ରଙ୍କ ଉପରେ ପଡ଼ି କଳଙ୍କ ସୃଷ୍ଟି କରିଛି । ପୁଣି ଭଗବାନଙ୍କ ପଦକୁ ସୂଚି କରିବା ଉଚତ, ପଦ୍ମକୁ ନୁହଁ । ଯଦୁମଣି ମୁଖ୍ୟତଃ ତାର୍କିକ ସବୁକଥାକୁ ଯୁକ୍ତିତର୍କର ମାନଦଣ୍ଡରେ ବଶ୍ୱର କରିବାର ଅଭ୍ୟାସ ତାଙ୍କର ଥିଲା । ତେଣୁ ମନେହୁଏ, ତାଙ୍କର ସ୍ୱଭାବସୁଲଭ ରୁଚିର ଫଳସ୍ୱରୂପ ଏଭଳି ଚନ୍ତା ଆସିଥିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଶୃଙ୍ଗାରରସର ଅବତାରଣା କରିବାକୁ ଯାଇ କବ ବଦର୍ଭ ନଗର ବର୍ଣ୍ଣନା ସମୟରେ ବଟ ପୁରୁଷ ଓ ବଟପୀ ନାରୀଙ୍କ କଥୋପକଥନ ପ୍ରକାଶ କରିଛନ୍ତି । କବଙ୍କ ମନରେ ଏହା ମଧୁର ଆଳାପ । ମାତ୍ର ପ୍ରେମାନୁରାଗର ଶୁଦ୍ଧତାକୁ ସାମାନ୍ୟ ଇଙ୍ଗିତରେ କବ ଫୁଟାଇଛନ୍ତି—

ଅବରୋଧ ପ୍ରିୟ ସଙ୍ଗୀ ସଙ୍ଗରେ
ଭୃଙ୍ଗ-ଅଞ୍ଚଳ ଉତ୍ସଙ୍ଗେ ରଙ୍ଗରେ
ଥିଲେ ଯେ ରୁକ୍ମଣୀ କର୍ଣ୍ଣେ ବାଜଲା
ଉଲ୍ଲାସ ତା' ଭ୍ରୂଲତାରେ ସାଜଲା
ସଉପ୍ୟେ ସନ୍ଧକ
ଶୁଣି କର୍ଣ୍ଣାମୃତ କଲେ ଅଧିକ

କବଙ୍କର ଲକ୍ଷ୍ୟ ପୂର୍ଣ୍ଣାବତାର ଓ ଆଧ୍ୟାତ୍ମିକ ପୂର୍ଣ୍ଣଚନ୍ଦ୍ର ଶ୍ରୀକୃଷ୍ଣଙ୍କ ସହ ଭୌତିକ ରୁକ୍ମଣୀଙ୍କର ମିଳନ କରିବା । ପାରମାତ୍ମିକ ଜ୍ଞାନତତ୍ତ୍ୱ ଓ ପ୍ରେମତତ୍ତ୍ୱରେ କବ ନମଜ୍ଜିତ ଥିବାରୁ କବ ଲୌକିକ ପ୍ରେମର ଚତ୍ର ଦେଇ ନାହାନ୍ତି କମ୍ବା ଭଞ୍ଜଙ୍କ ଶୃଙ୍ଗାର ପ୍ରିୟତାର ଅଧିକାର ପଟ୍ଟଣରି ଜାଣି କବ ସତର୍କତା ଅବଲମ୍ବନ କରିଛନ୍ତି ।

'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଏକ ଶ୍ରମସାଧ୍ୟ କ୍ଲିଷ୍ଟ ରଚନା । ବହୁ ଚମତ୍କାର ସୂକ୍ତି, ବିଚିତ୍ର ଉପମା, ବର୍ଣ୍ଣନାର ବିଚିତ୍ରତା, ଉଦ୍ଭଟ କଳ୍ପନା ଓ ସ୍ୱକୀୟ ଅଭିଜ୍ଞତାର ପ୍ରକାଶ ଏଥିରେ ପରିଦୃଷ୍ଟ । ବହୁ ସମାସାନ୍ତପଦର ବ୍ୟବହାରରେ ପୂର୍ଣ୍ଣଚନ୍ଦ୍ର ମଳିନ । ବାକ୍‌ଆଡ଼ମ୍ବର, ପାଣ୍ଡିତ୍ୟ ଓ ବହୁଶାସ୍ତ୍ର ଦର୍ଶିତା ସ୍ୱତଃସ୍ଫୂର୍ତ୍ତି ଭାବାବେଗର ଅଭାବରୁ କାବ୍ୟଟିକୁ ସୁଖପାଠ୍ୟ କରିପାରିନାହିଁ । ଭାବ ଓ ଭାଷାର କସରତ ଭିତରେ ପାଠକ ନାସ୍ତାନାବୁଦ ହେବାର ଯଥେଷ୍ଟ ସମ୍ଭାବନା ରହିଛି ।

ଲୋକେ କହନ୍ତି—କବି ତୁଣ୍ଡ, ମେଣ୍ଢା ମୁଣ୍ଡ । ମେଣ୍ଢା ମୁଣ୍ଡପରି କବିର ତୁଣ୍ଡ କ'ଣ ଏମିତି ଟାଣ ! ଯଦୁମଣିଙ୍କ କବିତୁଣ୍ଡ ସତରେ ଏମିତି ଥିଲା । ତାଙ୍କ ତୁଣ୍ଡ ଖୁରଧାର ପରି ଶାଣିତ । ଆଘାତର ପ୍ରତିଆଘାତ ଦେବା ଓ ହାସ୍ୟରସର ପରିବେଶ ଭିତରେ ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ବ୍ୟଙ୍ଗ ବିଦ୍ରୂପର ବାଣରେ ନାସ୍ତାନାବୁଦ କରିବା କବି ଯଦୁମଣିଙ୍କ ପ୍ରତିଭାର ଏକ ବିଶିଷ୍ଟ ଦିଗ ଥିଲା । ମୁହେଁ ମୁହେଁ କବିତା ବୋଲି ସୁଧୀ ସମାଜକୁ ଚକିତ କରିବା ଯଦୁମଣିଙ୍କ କବିତ୍ୱର ଅନ୍ୟତମ ବିଶେଷତ୍ୱ । ତାଙ୍କର ଲୋକପ୍ରିୟତା ଅସଂଖ୍ୟ ଚଉପଦୀ, ଭଜନ ଓ ସରସ, ହାସ୍ୟରସ ପରିପୂର୍ଣ୍ଣ କାହାଣୀମାନଙ୍କରେ ଅଛି । ସେ ବଡ଼ ଧୂର୍ତ୍ତ, ଅଥଚ ଏ ଧୂର୍ତ୍ତତାରେ ମୂର୍ଖତା ନାହିଁ । ସେ ରସିକ, ଅଥଚ ଫଟାରସିକ ନୁହଁନ୍ତି । ଉଦାହରଣ ସ୍ୱରୂପ—

ମନଭେଦୀ ସିନା କୁସୁମ ଶର
କାହିଁ ହର, କାହିଁ ଭେଦିଲା କର
ଏମନ୍ତ ଧୀଷଣା ହୃଦୟେ ରଖି
ହରଗଉରୀ ଏକଠାବେ ଦେଖି
ବନ୍ଧିଛି କି ମାର
ଟେଣୁ କରି ରକ୍ତିବନ୍ଦୁ ବାହାର ।

କୌଣସି ଏକ ନର୍ତ୍ତକୀ ଗଣିକାର ହରଗୌରୀରଞ୍ଜିତ ହସ୍ତକୁ ଲକ୍ଷ୍ୟକରି କବି ଯଦୁମଣି ଜନୈକ କବି ହରେକୃଷ୍ଣ ପଟ୍ଟନାୟକଙ୍କ କବିତାର ନିକୃଷ୍ଟତାବୋଧ କରି ଏହି କବିତାଟି ବୋଲିଥିଲେ । ଏଥିରୁ କବିଙ୍କ ରସିକତା ଓ ଆଶୁକବିତ୍ୱ ସ୍ପଷ୍ଟ ଜଣାପଡ଼େ । ଏହିପରି ବହୁ କବିତା, ଚଉପଦୀ 'ଯଦୁମଣି ରହସ୍ୟ'ରେ ଲିପିବଦ୍ଧ । ତାର ଉଦାହରଣ ରସିକ ଯଦୁମଣିଙ୍କ ରସଗ୍ରାହିତାକୁ ଦେବାର ଆବଶ୍ୟକ ମନେକରୁ ନାହିଁ ।

କବି ବହୁ ଦୁଃଖ, ଦୈନ୍ୟ ଓ ଅଭାବର କଷାଘାତରେ ସର୍ବଦା ଜର୍ଜରିତ ହେଉଥିଲେ । ଏ ପ୍ରକାର ପ୍ରତିକୂଳ ପରିସ୍ଥିତି କବିଙ୍କ ବ୍ୟକ୍ତିତ୍ୱକୁ ରୁଜୁ ଓ ବଳିଷ୍ଠ କରିଥିଲା । କବି ଯଦୁମଣିଙ୍କ ରସିକତା ଓ ମୁହେଁ ମୁହେଁ କବିତା ବୋଲିବାର ଅପୂର୍ବ ଧୀଶକ୍ତି ତାଙ୍କୁ ଅଧିକ ଜନପ୍ରିୟ କରିଛି । କିନ୍ତୁ ତାଙ୍କ କବି-ପ୍ରତିଭାର ଉପଯୁକ୍ତ ବିଚାର ପାଇଁ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରରୁ ଏକ ସାର୍ଥକ ପଦ ଉଦ୍ଧାର କରାଯାଇପାରେ:—

ଶୁଦ୍ର ମୂର୍ଖ ଏ ହୋଇଛି ବାହାର
ଶୈବିଦ୍ରତା ବିଶ୍ୱ ନ କର ବିଗୁର,
ବିଧି ବିଧିନୁଦ-ଉଚ୍ଛିଷ୍ଟ ଜଣା,
ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା,
ପଦ୍ମାପତିଙ୍କର ପଦ-
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ
ମଣିବାର ଅପବାଦ

# ॥ ହିରୋ ॥

## ବିଭୂତି ପଟ୍ଟନାୟକ

[ ଶ୍ରୀ ବିଭୂତି ପଟ୍ଟନାୟକ ଓଡ଼ିଆ ସାହିତ୍ୟର ଜଣେ ପ୍ରଖ୍ୟାତ ଔପନ୍ୟାସିକ ଓ ଗାଳ୍ପିକ । ତାଙ୍କ ଉପନ୍ୟାସଗୁଡ଼ିକ ଏବେ ଘରେ ଘରେ ପଠିତ କହିଲେ ଅତ୍ୟୁକ୍ତି ହେବନାହିଁ । ଜୀବନ ଓ ଆତ୍ମିକତାର ସନ୍ଧାନ କରି ସେ ଉପନ୍ୟାସ ଓ ଗଳ୍ପ ରଚନା କରନ୍ତି । ତାଙ୍କ ରଚିତ ବିଭିନ୍ନ ଉପନ୍ୟାସଗୁଡ଼ିକ ମଧ୍ୟରେ ନାୟିକାର ନାମ ଶ୍ରାବଣୀ, ଚପଳ-ଛନ୍ଦା, ତୁମେ ତୃଷ୍ଣାର ଜଳ, କେଶବତୀ କନ୍ୟା, ବଧୂ ନିରୂପମା, କମ୍ବୁଦନ୍ତୀର ନାୟକ, ତୃତୀୟ ପୁରୁଷ ଇତ୍ୟାଦି ଯୁଗାନ୍ତକାରୀ ସୃଷ୍ଟି । ଛାତ୍ର ଜୀବନରୁ ଆରମ୍ଭ କରି ଅଧ୍ୟାପକ ଜୀବନ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ସେ ସାଧନା ରତ । ସଂ ବନଫୁଲ ]

ବୃନ୍ଦାବନ ମତେ ଦେଖି ଏକ ପ୍ରକାର ଆର୍ତ୍ତନାଦ କରି ଉଠିଥିଲା, ଏ ଭାଗ୍ୟକ୍ରମ ଯେ !

ହେମନ୍ତର ମ୍ଳାନ ଗୋଧୂଳି ଫଟୋ ଷ୍ଟୁଡ଼ିଓର ଲନ୍ ଉପରେ ପ୍ରାୟ ମୂର୍ଚ୍ଛିତ ହୋଇ ପଡ଼ିଥିଲା । ଲନ୍‌ରେ ଥିବା କେତୋଟି ଫୁଲକୁଣ୍ଡ ଉପରେ ସେହି ମୂର୍ଚ୍ଛିତ ଗୋଧୂଳିର ଈଷତ୍ ଫିକା ଲାଲ୍ ଖରା ଏଇ ଲିଭିଯିବ—ଲିଭିଯିବ—ଏମିତି ଏକ ଅସହାୟ କାରୁଣ୍ୟରେ ତଳ ତଳ ହେଉଥିଲା । ମୁଁ ସେ ନିଷ୍ପ୍ରଭ ଗୋଧୂଳିର ଆଲୋକ ଆଡ଼ୁ ଦୃଷ୍ଟି ଫେରାଇ ବୃନ୍ଦାବନକୁ ଚାହିଁଥିଲି ଏବଂ ଆକସ୍ମିକ ଭାବରେ ତାକୁ ସେ ଫଟୋ ଷ୍ଟୁଡ଼ିଓ ଭିତରୁ ଆବିଷ୍କାର କରି ଚକିତ ବିସ୍ମୟରେ ଉଲ୍ଲସିତ ହୋଇଥିଲି ।

ସେ ମୋର ଅପ୍ରତିଭ ଭାବକୁ ଲକ୍ଷ୍ୟକରି ମତେ ସ୍ମରଣ କରାଇ ଦେଇଥିଲା, ଆମର ସେ କଲେଜ ସାଂସ୍କୃତିକ ଉତ୍ସବ କଥା ମନେଅଛି ନା ! ସେଦିନ ଆପଣ ମୋ ଉପରେ ଯେମିତି ରାଗି ଯାଇଥିଲେ ନା···!

ସ୍ମୃତିର ସମୁଦ୍ରରେ ସବୁ ଢେଉଗୁଡ଼ାକ ରଙ୍ଗୀନ୍ ଦେଖା ଯାଆନ୍ତି । ମୁଁ ତାକୁ ଆଶ୍ୱାସନା ଦେଇଥିଲି ଯେ, ମୁଁ କୌଣସି କଥା ଭୁଲି ନାହିଁ । ମନେ ଅଛି, ଅନେକ ଦିନ ତଳେ ତାଙ୍କ କଲେଜର ସାଂସ୍କୃତିକ ଉତ୍ସବରେ ନିମନ୍ତ୍ରିତ ହୋଇ ମୁଁ ମୋର କଣ୍ଠ ସଙ୍ଗୀତ ପରିବେଷଣ କରିବାକୁ ଯାଇଥିଲି । କଲେଜ ପୁନର୍ମିଳନର ଜଣେ ବିଶିଷ୍ଟ କର୍ମକର୍ତ୍ତା ଭାବରେ ତା' ସହିତ ମୋର ଘନିଷ୍ଠ ପରିଚୟ ହୋଇଥିଲା । ସାଂସ୍କୃତିକ ଉତ୍ସବର କାର୍ଯ୍ୟକ୍ରମ ବିଳମ୍ବ ହେବା ଯୋଗୁ ଫେରିବା ପାଇଁ ଟ୍ରେନ୍ ନ ପାଇବାର ଆତଙ୍କରେ ଶଙ୍କିତ ହୋଇ ସତରେ ମୁଁ ସେଦିନ ଭୀଷଣ ରାଗିଥିଲି । କିନ୍ତୁ ସେଥି-ପାଇଁ ବ୍ୟକ୍ତିଗତ ଭାବରେ ତାକୁ ମୁଁ ଭୁଲ୍ ବୁଝି ନାହିଁ ।

ସେହି ସାଂସ୍କୃତିକ ଉତ୍ସବରେ ବୃନ୍ଦାବନ ସହ ମୋର ପ୍ରଥମ ପରିଚୟ; କିନ୍ତୁ ତାହା ଶେଷ ପରିଚୟ ନୁହେଁ । ମୋ କଣ୍ଠ ସଙ୍ଗୀତର ଜଣେ ବିଶେଷ ଅନୁରାଗୀ ଭାବରେ ଉତ୍ସବ ପରେ ମଧ୍ୟ ମୋ ସହିତ ସାମୟିକ ଭାବରେ ସେ ସମ୍ପର୍କ ରକ୍ଷା କରିଥିଲା । ମୁଁ ଖବର ରଖିଥିଲି, ବି· ଏ· ପାସ୍ କଲା ପରେ ବୃନ୍ଦାବନ ଆଇନ୍ କଲେଜରେ ନାମ ଲେଖାଇ ଥିଲା । କିନ୍ତୁ ହଠାତ୍ କୁଆଡ଼େ ସେ ସହରରୁ ଗୁଡ଼ ଗୁଡ଼ିଗଲା ଯେ ତା'

ସମ୍ଭବତ ଆଜି ଅନେକ ଦିନ ପର୍ଯ୍ୟନ୍ତ ଦେଖାହୋଇ ନ ଥିଲା । ଅନେକ ଦିନର ବ୍ୟବଧାନରେ ତା' ସହିତ ପୁଣି ଏଇ ଆକସ୍ମିକ ଦେଖା—

କୌଣସି ପରିଚିତ ବନ୍ଧୁଙ୍କ ସହିତ ଅନେକ ଦିନ ପରେ ଦେଖା ହୋଇଗଲେ ତାର ବର୍ତ୍ତମାନ ସ୍ଥିତି ଓ ପାରିବାରିକ କୁଶଳ ଜିଜ୍ଞାସା କରିବା ମୋର ବହୁ ଦିନର ସଂସ୍କାରଗତ ଅଭ୍ୟାସ । ବୃନ୍ଦାବନକୁ ସେହି ଅଭ୍ୟାସର ବଶବର୍ତ୍ତୀ ହୋଇ ମୁଁ ପ୍ରଶ୍ନ କରିଥିଲି, ତମେ ବର୍ତ୍ତମାନ କଅଣ କରୁଛ ?

ପ୍ରଶ୍ନଟି ଶୁଣି ଖୁବ୍ ଏକ ମର୍ମନ୍ତୁଦ ଦୁଃସମ୍ବାଦ ଶୁଣିଲା ଭଳି ବୃନ୍ଦାବନର ମୁହଁ ମଳିନ ହୋଇଗଲା । ମୁଁ ଆଶ୍ଚର୍ଯ୍ୟ ହୋଇ ତା' ମୁହଁର ଭଙ୍ଗୀ ପରିବର୍ତ୍ତନକୁ ଲକ୍ଷ୍ୟ କରୁଥିଲି । କିଛି ସମୟ ପରେ ସେ ପକେଟରୁ ଗୋଟିଏ ସ୍ଥେଟ ଫଟୋ କାଢ଼ି ଦେଖାଇଲା । କହିଲା ରାଜୁ ଭାଇ ! ଦେଖନ୍ତୁ ନା — ଫଟୋଟା କେମିତି ବାଜେ ଉଠାଛନ୍ତି !

ଅଳ୍ପ ଦୂରରୁ ଫଟୋଟି ଦେଖି ମୋର ମନେ ହୋଇଥିଲା, ତା ହୁଏତ କୌଣସି ହିନ୍ଦୀ ଫିଲ୍ମର ନାୟକଙ୍କ ଛବି—ଯତ୍ନରେ ବୃନ୍ଦାବନ ତାକୁ ଗୁଡ଼ି ପକେଟରେ ସାଇତି ରଖିଛି – ନିଜର ପ୍ରିୟ ଅଭିନେତା ପ୍ରତି ଅନୁରକ୍ତ ଦୃଷ୍ଟିରୁ । କିନ୍ତୁ ସେ ଯେତେବେଳେ ବାରମ୍ବାର ଜଣେ ସ୍ଥାନୀୟ ଫଟୋଗ୍ରାଫରକୁ ଫଟୋ ବାଜେ ଉଠାଇଥିବା ଅଭିଯୋଗରେ ଗାଳି ଦେବାକୁ ଲାଗିଲା, ମୁଁ ସେତେବେଳେ ନିଜର ଅନୁମାନକୁ ସନ୍ଦେହ କରିବାକୁ ଲାଗିଲି ଏବଂ ଟେବୁଲ ଉପରକୁ ଝୁଙ୍କିପଡ଼ି ଫଟୋଟିକୁ ନିରୀକ୍ଷଣ କରି ଦେଖିଲି ।

ହିନ୍ଦୀ ଫିଲ୍ମର କୌଣସି ହିରୋଙ୍କ ଛବି ନୁହେଁ— ସ୍ୱୟଂ ବୃନ୍ଦାବନର ପ୍ରତିକୃତି—ଛବିଟି ଦେଖିବା ମାତ୍ରେ ମୁଁ ହସି ପକାଇଥିଲି ଏବଂ ଅପ୍ରତିଭ ହୋଇ ବୃନ୍ଦାବନ ମଧ୍ୟ ମୁଣ୍ଡ ତଳକୁ କରି ଦେଇଥିଲା ।

ମୁଁ ବୃନ୍ଦାବନକୁ ତାର ସାଂପ୍ରତିକ ଜୀବନଧାରଣ ପ୍ରଣାଳୀ ସଂପର୍କରେ ପ୍ରଶ୍ନ କରିଥିଲି । କିନ୍ତୁ ସେ ପ୍ରଶ୍ନର ଉତ୍ତର ନ ଦେଇ ହଠାତ୍ କାହିଁକି ନିଜର ହିରୋମାର୍କା ଫଟୋ ଦେଖାଇଲା, ତାହା ବୁଝିବାକୁ ମତେ କିଛି ସମୟ ଲାଗିଗଲା । ମୋର ମାନସିକ ଅସ୍ୱସ୍ତି ଲକ୍ଷ୍ୟକରି ସେ କହିଲା, ମୁଁ ବର୍ତ୍ତମାନ ଫିଲ୍ମ ଲାଇନ୍‌କୁ ଆସି ଯାଇଛି । ସେଥିପାଇଁ ଆଇନ୍ ପରୀକ୍ଷା ଦେଇନାହିଁ—ଗୋଟାଏ ଫିଲ୍ମ ସୁଟିଂରେ ମତେ ଯିବାକୁ ହେଲା ।

ବୃନ୍ଦାବନ ଯେଉଁ ଫିଲ୍ମ ସୁଟିଂ କଥା କହୁଥିଲା, ମୁଁ ଭଲକରି ଜାଣେ, ସେ ଫିଲ୍ମ କେବେହେଲେ ମୁକ୍ତି ପାଇବ ନାହିଁ । ଓଡ଼ିଶାର ଚଳଚ୍ଚିତ୍ର ସଂପର୍କରେ ମୋର ଧାରଣା ଖୁବ୍ ବେଶି ପ୍ରଗାଢ଼ ନ ହେଲେବି, ବୃନ୍ଦାବନ ଯେଉଁ ଫିଲ୍ମ କଥା କହୁଥିଲା, ସେ ଫିଲ୍ମ ପ୍ରଯୋଜକଙ୍କୁ ମୁଁ ଜାଣିଥିଲି । ତାଙ୍କର ଆର୍ଥିକ ସମ୍ବଳ ଅତି ଶୋଚନୀୟ ହୋଇ ଉଠିଥିଲା ଏଥିମଧ୍ୟରେ । ତେଣୁ ତାଙ୍କର ଫିଲ୍ମରେ ଅଭିନେତା ହେବାପାଇଁ ବୃନ୍ଦାବନ ପାଠପଢ଼ା ଛାଡ଼ିଦେଲା, ଏକଥା ଶୁଣିବା ମାତ୍ରେ ମୋ ମନ ଅକାରଣରେ କରୁଣ ହୋଇ ଉଠିଥିଲା ।

ସଂସାରରେ ଅନେକ ଲୋକଙ୍କର ଅନେକ ପ୍ରକାର ସଉକ ଅଛି । ବୃନ୍ଦାବନର ଯଦି ସିନେମା ହିରୋ ହେବାରେ ସଉକ ହୋଇଥାଏ, ସେଥିରେ ମୋର ଚକିତ ହେବାର କିଛି କାରଣ ନ ଥିଲା । ବୃନ୍ଦାବନର ସ୍ୱାସ୍ଥ୍ୟ ଓ ଚେହେରା ସୁନ୍ଦର । ବୟସ ଅଳ୍ପ । ବରଂ ଅନ୍ୟ କୌଣସି ଦିଗ ଅପେକ୍ଷା ସିନେମା ଆଡ଼କୁ ତାର ଝୁଙ୍କ୍ ହେବା ସ୍ୱାଭାବିକ୍ ।

ମୁଁ ମନେ ମନେ ବୃନ୍ଦାବନକୁ ହିରୋ ମନେକରି ଆଶ୍ୱସ୍ତ ହେଲି ଏବଂ ସ୍ଥାନ ପରିତ୍ୟାଗ କରି ଆସିବା ଆଗରୁ ତାକୁ କଥା ପ୍ରସଙ୍ଗରେ ପ୍ରଶ୍ନ କଲି, ତମେ ବିବାହ କଲଣି ବୃନ୍ଦାବନ !

ସେ 'ହଁ' କି 'ନାହିଁ' କିଛି କହିବା ଆଗରୁ ମୁଁ ଉଠିବାକୁ ଚେଷ୍ଟା କରୁଛି, ହଠାତ୍ ସୁନନ୍ଦା ନାମ କହି ସେ ମତେ ଚମକାଇ ଦେଲା ।

ସୁନନ୍ଦା ସହିତ ମୋର ବ୍ୟାହାଘର ପ୍ରାୟ ସ୍ଥିର ହୋଇସାଇଛି ମୋର ଏଇବର୍ଷ ବିବାହ ହେବ । — କଥା ଶେଷକରି ସଲଜ୍ଜ ହସରେ ନିଜ ମୁହଁର ରେଖା-ଗୁଡ଼ିକୁ ସ୍ପନ୍ଦିତ କଲା ବୃନ୍ଦାବନ ।

ମୁଁ ବିସ୍ମୟର ପ୍ରଥମ ଧକ୍କା ସମ୍ଭାଳି ନେଇ ସୁନନ୍ଦାର ପରିଚୟ ବିଷୟରେ ନିଃସନ୍ଦେହ ହେବାକୁ ଚେଷ୍ଟା କଲି । ନା—ମୋର ଅନୁମାନ ଭୁଲ୍ ନୁହଁ । ଅବସରପ୍ରାପ୍ତ ଆଇ. ସି. ଏସ୍. ନିଶିକାନ୍ତ ବାବୁଙ୍କ ଝିଅ ସୁନନ୍ଦା—ଯାହା ସହିତ ମୋର ଏକ ସଙ୍ଗୀତ ସମାରୋହରେ ପ୍ରଥମ ପରିଚୟ ହୋଇଥିଲା । ଚମତ୍କାର ସୀତାର ବଜାଏ ସୁନନ୍ଦା । କିନ୍ତୁ ତାର ସୀତାର୍ ଶୁଣିବା ଅପେକ୍ଷା ତାର ଲାବଣ୍ୟମୟୀ ରୂପ ଦେଖିବା ପାଇଁ ହିଁ ସବୁ ସଙ୍ଗୀତ ସମାରୋହରେ ବେଶୀ ଭିଡ଼ ହୁଏ । ହଠାତ୍ ତା' ସହିତ ବୃନ୍ଦାବନର ବିବାହ··· !

ସେତେବେଳକୁ ମେନ୍‌ରୋଡ୍‌ରେ ବିଜୁଳି ଆଲୁଅ ଜଳି ଉଠିଲାଣି । ଅଫିସ୍ପ ଅନେକବେଳୁ ଅଫିତ ହୋଇସାଇଛି । ବୃନ୍ଦାବନ ସହିତ ଗଳ୍ପ କରିବାକୁ ମୋ ହାତରେ ଆଉ ବିଶେଷ ସମୟ ନାହିଁ । ମୁଁ ଉଠିବାର ଉପକ୍ରମ କଲି । ବୃନ୍ଦାବନ କହିଲା, ଚାଲନ୍ତୁ ମୋର ବି ସେଣେ କାମଅଛି । ସାଙ୍ଗହୋଇ ଯିବା ।

ପଥ ପରିକ୍ରମା କଲାବେଳେ ବୃନ୍ଦାବନ ଅସ୍ପଷ୍ଟ, ସାଙ୍କେତିକ ଭାଷାରେ ସୁନନ୍ଦା ସମ୍ପର୍କରେ ମତେ ଯେଉଁ-ସବୁ କଥା କହୁଥିଲା, ସେଥିରୁ ମୁଁ ବେଶ୍ ବୁଝିପାରୁ ଥିଲି, ଘଟଣାଟା ସମ୍ପୂର୍ଣ୍ଣ ପ୍ରେମ-ଘଟିତ । ନିଜର ପ୍ରଣୟ ଉପରେ ଯେହେତୁ ତାର ଅପରିମିତ ଆସ୍ଥା, ସେଥିପାଇଁ ସୁନନ୍ଦା ସହିତ ବିବାହ ସମ୍ପର୍କରେ ମଧ ସେ ସମ୍ପୂର୍ଣ୍ଣ ନିଃସନ୍ଦେହ । କିନ୍ତୁ ସୁନନ୍ଦା ସହିତ ସେ ନିଜର ଘନିଷ୍ଠତାର କାହାଣୀ ମୋ ଆଗରେ ଯେତେ ବିସ୍ତୃତ ଭାବରେ ବର୍ଣ୍ଣନା କରୁଥିଲା, ମୋ ଦେହ ସେତେ କଣ୍ଟକିତ ବୋଧ ହେଉଥିଲା । କାରଣ ସୁନନ୍ଦାକୁ ମୁଁ ଭଲକରି ଜାଣେ । ତା ଭଳି ସୁନ୍ଦରୀ, ଲାବଣ୍ୟମୟୀ ସୁଶିକ୍ଷିତା ଝିଅ ବୃନ୍ଦାବନ ଭଳି ଲୋକକୁ ବିବାହ ନ କରି ଆଉ କୌଣସି ସତ୍‌ପାତ୍ରକୁ ବିବାହ କରିବା ଉଚିତ ଥିଲା ବୋଲି ମୋର କାହିଁକି ବାରମ୍ବାର ମନେ ହେଉଥିଲା ।

ବୃନ୍ଦାବନ ହଠାତ୍ ବାଟ ମଝିରେ କହିଲା, ଗଜୁଭାଇ ! ଯେଉଁଦିନ ମତେ ଶର୍ଟ ପାଇଜାମା ଆଉ ଅଦ୍ଧପଞ୍ଜାବୀ ପିନ୍ଧିଥିବା ଅବସ୍ଥାରେ ପ୍ରଥମେ ସୁନନ୍ଦା ଦେଖିଥିଲା, ସେଦିନ ମନ୍ତବ୍ୟ କରିଥିଲା, ଲୋଫାର୍ ! କିନ୍ତୁ ଯେଉଁଦିନ ତାଙ୍କର ଦୁଇ ମାହାଲ କୋଠାରେ ଆମ ଫିଲ୍ମର ସୁଟିଂହେଲା, ତା' ଆରଦିନ ତା' ଦୁଇ ଆଖିକୋଣ ଭଲ ପାଇବାର ନିଶାରେ ଚକ୍ ଚକ୍ କରି ଉଠିଲା । ବିବାହ ପ୍ରସ୍ତାବଟା ତାଙ୍କ ଘର ତରଫରୁ ଆସିଛି, ଆଉ ସେଥିପାଇଁ ଦାୟୀ ସୁନନ୍ଦା—

ମୁଁ କିଛି ମନ୍ତବ୍ୟ କରି ନ ଥିଲି । କାରଣ ସୁନନ୍ଦା ସହିତ ବୃନ୍ଦାବନର ବିବାହ କଥାଟା ସେ ପର୍ଯ୍ୟନ୍ତ ମୁଁ ବିଶ୍ୱାସ କରିପାରୁ ନ ଥିଲି । କିନ୍ତୁ ମୁଁ ଜାଣିଥିଲି, ସଂସାରରେ କୌଣସି କଥା ଅସମ୍ଭବ ନୁହେଁ; ବିଶେଷ କରି ପ୍ରଣୟ ବ୍ୟାପାରରେ ଯେକୌଣସି କଥା ସମ୍ଭବ ହୋଇପାରେ । ପ୍ରଥମେ ବୃନ୍ଦାବନ ଭଳି କୃଷ୍ଣସୁନ୍ଦର ସିନେମାରେ ହିରୋ ହେବାପାଇଁ ପାଠପଢ଼ା ଛାଡ଼ିଦେବା କଥାଟା ମତେ ଯେମିତି ଖାପଛଡ଼ା ଲାଗିଥିଲା, ସୁନନ୍ଦା ସହିତ ତାର ବିବାହ ପ୍ରସ୍ତାବ ମଧ ମତେ ସେମିତି ଅଡୁଆ ଲାଗିଲା । ମୁଁ ପଚାରିଲି, ତମେ ତ କିଛି ଚାକିରୀ କରୁନାହଁ । ଚଳୁଛ କେମିତି ?

ବୃନ୍ଦାବନ ପ୍ରଶ୍ନଟା ଶୁଣି ସାମାନ୍ୟ ଇତସ୍ତତଃ ହେଲା । ତା'ପରେ ବଡ଼ ଅନ୍ୟମନସ୍କ ଭାବରେ ଉତ୍ତର

ଦେଲ, ବାପା ଘର କଥା ବୁଝୁଛନ୍ତି । ଗୁଡ଼ାଏ ଚାଷଜମି ଅଛି ତ—ମୋର ତେଣୁ କିଛି ଅସୁବିଧା ହେଉନାହିଁ ।

ତାର ସେ ଉତ୍ତରରେ ମୁଁ ବେଶି ଉଦ୍‌ବିଗ୍ନ ହୋଇ ପଡ଼ିଲି । କାରଣ ବୃନ୍ଦାବନ ଯେତେବେଳେ ଘରେ ଥିଲା, ସେତେବେଳେ ଅନେକ ଥର ସେ ନିଜ ଆର୍ଥିକ ଅସୁବିଧା କଥା ମତେ କହିଥିଲା । ମୋର ସନ୍ଦେହ ହେଲା, ନିଜ ଘରର ଆର୍ଥିକ ସ୍ୱଚ୍ଛଳତା ସମ୍ପର୍କରେ ସେ ମତେ ବୋଧହୁଏ ମିଛ କହିଲା ।

ଉପାର୍ଜନ ହୀନ ବୃନ୍ଦାବନର ନିଜ ଆର୍ଥିକ ସମ୍ବଳ ସମ୍ପର୍କରେ ମିଥ୍ୟା ଭାଷଣ ସହିତ ସୁନନ୍ଦାର ବିବାହ କଥାକୁ ମନେ ମନେ ଯୋଗକରି ମୁଁ ଭୀଷଣ ଅସ୍ୱସ୍ତି ବୋଧକଲି ।

କିଛି ସମୟ ପରେ ସେ ମତେ ବିଷଣ୍ଣ କଣ୍ଠରେ କହିଲା, ରଜୁଭାଇ ! ଆପଣ ତ ଅନେକ ଫିଲ୍ମରେ ସଙ୍ଗୀତ ନିର୍ଦ୍ଦେଶକ ହେଉଛନ୍ତି । ସେ ଭଳି ଫିଲ୍ମରେ ମତେ ଆକ୍‌ଟିଂ ପାଇଁ ଗୋଟାଏ ସୁଯୋଗ ଦେଲେ ହୁଅନ୍ତା ନାହିଁ !

ଏଥର ବୃନ୍ଦାବନର କଣ୍ଠ ସ୍ୱରରେ ଗଭୀର ଆତ୍ମ-ପ୍ରତ୍ୟୟ ବଦଳରେ ଦୁଃସହ ବ୍ୟାକୁଳତାର ସ୍ପର୍ଶ ମୁଁ ଅନୁଭବ କଲି । ସେ ଯେଉଁ ଫିଲ୍ମରେ ଆକ୍‌ଟିଂ କରିଛି, ସେ ଫିଲ୍ମ ଯେ ଅସମାପ୍ତ ଅବସ୍ଥାରେ ରହି-ଯିବ, ସେ କଥା ସମ୍ଭବତଃ ବୃନ୍ଦାବନ ଏଥିମଧ୍ୟରେ ବୁଝି ପାରିଛି । ସେଥିପାଇଁ ସେ ଆଉଏକ ଫିଲ୍ମରେ ଆତ୍ମପ୍ରକାଶ କରିବାର ଉପାୟ ଖୋଜୁଛି ।

ମୁଁ ତାକୁ ମୋର ନିଃସହାୟତା କଥା ବୁଝାଇଲି । ଓଡ଼ିଆ ଫିଲ୍ମର ଯାହା ଅବସ୍ଥା, ମୁଁ କହିଲେ ବି ତା' ଭଳି ଜଣେ ନୂତନ ଅଭିନେତାକୁ ନେଇ କୌଣସି ଚିତ୍ର ପ୍ରଯୋଜକ ସେ କ୍ଷତି ସହିବାର ଝୁଙ୍କି ନେବାକୁ ରାଜି ହେବେନାହିଁ, ସେ କଥା ଉଦାହରଣ ଦେଇ ତାକୁ ବୁଝାଇଲି ।

ଆମେ ସେତେବେଳେ ଗୋଟାଏ ଝଙ୍କା ବରଗଛ ମୂଳେ ଠିଆହୋଇ କଥାବାର୍ତ୍ତା ହେଉଥିଲୁ ଏବଂ ବତୀର ଅସ୍ପଷ୍ଟ ଆଲୋକରେ ବୃନ୍ଦାବନର ମୁହଁ ନୈରାଶ୍ୟରେ ମତେ ରକ୍ତହୀନ ଦେଖା ଯାଉଥିଲା ।

ସେ ଗୋଟାଏ ଲମ୍ବା ଦୀର୍ଘଶ୍ୱାସ ଟାଣି କହିଲା, ପ୍ରଧାନ ନାୟକ ଭୂମିକା ନ ଦେଇ କେହି ଯଦି ମତେ ଉପନାୟକ ଭୂମିକା ମଧ୍ୟ ଦିଏ, ମୁଁ ବିନା ପାରି-ଶ୍ରମିକରେ ଅଭିନୟ କରିବାକୁ ରାଜିଅଛି । ରଜୁଭାଇ ! ଆପଣ ଟିକିଏ ଚେଷ୍ଟାକଲେ ନିଶ୍ଚୟ ହୋଇଯିବ··· ।

ବୃନ୍ଦାବନର କଥା ଶୁଣି ମୁଁ ଭୀଷଣ ବ୍ୟଥିତ ହୋଇଥିଲି । ହଠାତ୍ ପ୍ରଧାନ ନାୟକର ଭୂମିକାରୁ ଉପନାୟକର ଭୂମିକାକୁ ସେ ଯେପରି କଥାରେ କଥାରେ ତଳ ପାହାଚକୁ ଓହ୍ଲାଇ ଆସିଲା, ସେଥିରେ ତାର ବ୍ୟକ୍ତିତ୍ୱ ଉପରୁ ମୋର ଆସ୍ଥା କମିଗଲା । ସୁନନ୍ଦା ତାକୁ ପ୍ରେମ କରୁଛି, ସେ ସୁନନ୍ଦାର ଉପଯୁକ୍ତ ହେବାକୁ ଚେଷ୍ଟା କରିବା ଉଚିତ । ସେ ସୁନନ୍ଦାର ଯୋଗ୍ୟ ହେଉ, ଏକଥା ମୁଁ ସର୍ବାନ୍ତଃକରଣରେ ଆଶା କରୁଥିଲି । ସେଥିପାଇଁ ତାକୁ ମୁଁ କ୍ଷୁବ୍ଧ କଣ୍ଠରେ କହିଲି, ବାପାଙ୍କ ଚାଷଜମି ଉପରେ ନିର୍ଭର ନ କରି ତମ ନିଜ ଉପାର୍ଜନ କ୍ଷମତା ଉପରେ ତମେ ନିର୍ଭର କରିବା ଉଚିତ । ବିନା ପାରିଶ୍ରମିକରେ ସିନେମା ଅଭିନୟ ପାଇଁ ଝୁଙ୍କି ନ ନେଇ ତମେ ଯାହା ହେଲେବି କିଛି ଅର୍ଥ ଉପାର୍ଜନର ଉଦ୍ୟମ କର । ସୁନନ୍ଦାକୁ ତମେ ଯେତେବେଳେ ବିବାହ କରିବାକୁ ଯାଉଛ, ତମେ ତାର ଯୋଗ୍ୟହେବା ଦରକାର । ପ୍ରଣୟ ଯୁଗେ ଯୁଗେ ଅନ୍ଧ । ତାର ଭାବପ୍ରବଣତାର ସୁଯୋଗ ନେଇ ତମେ ତାକୁ ପ୍ରତାରିତ କରିବାକୁ ଚେଷ୍ଟା କରନାହିଁ··· ।

ବୃନ୍ଦାବନ ଏଥର ମୋ ମୁହଁକୁ ଚାହିଁଲା । ପକେଟରୁ ଗୋଟାଏ ପ୍ଲାଷ୍ଟିକ୍ ପାନିଆ କାଢ଼ି ରାସ୍ତା କଡ଼ରେ ଠିଆହୋଇ ମୁଣ୍ଡ କୁଣ୍ଡାଇଲା । ତା' ପରେ କେଉଁ ହିନ୍ଦୀ ଫିଲ୍ମର ପାର୍ଶ୍ୱ ନାୟକର ଭଙ୍ଗୀରେ କହିଲା, ସୁନନ୍ଦା ମୋର ପୌରୁଷକୁ ଭଲ ପାଉଛି; ମୋର ଆର୍ଥିକ ସମ୍ବଳ ପାଇଁ ତାର ଚିନ୍ତା ନାହିଁ । ତେଣୁ ମୁଁ ତାକୁ ପ୍ରତାରିତ କରୁନାହିଁ···

ପୌରୁଷ କହିଲେ ବୃନ୍ଦାବନ ଚେହେରାକୁ ବୁଝୁଥିଲା । ଚେହେରା ନାରୀପାଇଁ ଜୀବନ ଧାରଣର ପୁଞ୍ଜି ହୋଇପାରେ, ପୁରୁଷ ପକ୍ଷରେ ଚେହେରାର ସେ ସେଭଳି କୌଣସି ମୂଲ୍ୟ ନାହିଁ, ସେ କଥା ଚେଷ୍ଟାକରି ମଧ୍ୟ ମୁଁ ବୃନ୍ଦାବନକୁ ବୁଝାଇ ପାରି ନ ଥିଲି । ମୋର ମନେ ହେଉଥିଲା, ସୁନନ୍ଦା ନୁହେଁ; ବୃନ୍ଦାବନ ନିଜେ ବୋଧହୁଏ ନିଜ ଚେହେରାର ପ୍ରେମରେ ପଡ଼ି ଯାଇଛି । ସେଥିପାଇଁ ରାସ୍ତାକଡ଼ରେ ଠିଆହୋଇ ପ୍ଲାଷ୍ଟିକ୍ ପାନିଆରେ ମୁଣ୍ଡ କୁଣ୍ଡାଇବାକୁ ତାକୁ ଲଜ୍ଜା ଲାଗୁ ନ ଥିଲା ।

ମୋ ମୁହଁର ଭାବାନ୍ତରରୁ ବୃନ୍ଦାବନ ବୋଧହୁଏ ଭାବିଲା, ସୁନନ୍ଦା ସହିତ ତାର ପ୍ରେମକୁ ମୁଁ ଅବିଶ୍ୱାସ କରୁଛି । ସେଥିପାଇଁ ଅପ୍ରତ୍ୟାଶିତ ଭାବରେ ଛାତି ପକେଟରୁ ସଯତ୍ନରେ ସାଇତି ରଖିଥିବା ଖଣ୍ଡେ ଚିଠି କାଢ଼ି ସେ ମୋ ହାତକୁ ବଢ଼ାଇଦେଲା । ଅକ୍ଷର ଦେଖି ମୁଁ ଚିହ୍ନି ପାରିଲି, ତାହା ସୁନନ୍ଦାର ହସ୍ତାକ୍ଷର । ସେ ଚିଠିରେ ସମ୍ବୋଧନ ନ ଥିଲା କିମ୍ବା ଶେଷରେ ସୁନନ୍ଦାର ନାମ ନ ଥିଲା । କିନ୍ତୁ ଚିଠିରେ ଭରି ରହିଥିଲା, ପ୍ରଣୟୀ ପ୍ରତି ପ୍ରଣୟିନୀର ଗଭୀର ଅନୁରକ୍ତିର କଥା । ସେ ଚିଠି ଯଦି ପ୍ରକୃତରେ ସୁନନ୍ଦା ବୃନ୍ଦାବନ ପାଖକୁ ଲେଖିଥାଏ, ତାହାହେଲେ ସୁନନ୍ଦାର ପ୍ରଣୟକୁ ବୃନ୍ଦାବନର ସନ୍ଦେହ କରିବାର କିଛି କାରଣ ନାହିଁ । ଚିଠିର ଗୋଟିଏ ସ୍ଥାନରେ ଲେଖାଥିଲା, "ପାଖରେ ପାଇଲେ ତମେ ମୋ ପ୍ରତି ନିଜର ପ୍ରେମର ଗଭୀରତା ଦେଖାଇବା ପାଇଁ ଏପରି ସବୁ ଏଣୁତେଣୁ ଖୁସାମଦିଆ କଥା କୁହ, ଶୁଣିଲେ ଭଲ ଲାଗିବା ବଦଳରେ ଲଜ୍ଜା ଲାଗେ ।"

ଚିଠିର ସେହି ଅଂଶପ୍ରତି ବୃନ୍ଦାବନର ଦୃଷ୍ଟି ଆକର୍ଷଣ କରି ମୁଁ କହିଲି, ବୃନ୍ଦାବନ ! ନାରୀର ପ୍ରଣୟ ପୁରୁଷର ଜୀବନରେ ଗଭୀରତା ଆଣିଦିଏ । ତାର ଗାମ୍ଭିର୍ଯ୍ୟ ବଢ଼ାଏ । କିନ୍ତୁ ତମଠାରେ ତାହା ଭିନ୍ନ ପ୍ରତିକ୍ରିୟା ସୃଷ୍ଟି କରୁଛି କାହିଁକି ?

ବୃନ୍ଦାବନ ହସିଲା । କିଛି କହିଲା ନାହିଁ ।

ମୋର ଅନ୍ୟତ୍ର କାର୍ଯ୍ୟଥିଲା । ତେଣୁ ବୃନ୍ଦାବନଠାରୁ ବିଦାୟ ନେଇ ମୁଁ ଅନ୍ୟ ରାସ୍ତାରେ ବାଟ ଭାଙ୍ଗିବାକୁ ଉଦ୍ୟତ ହେଉଥିଲି । ବୃନ୍ଦାବନ ପଛରୁ ଡାକିଲା, ରଜତ୍ଭାଇ ! ଟିକିଏ କଥା ଥିଲା ।

ମୁଁ ପ୍ରଶ୍ନିଳ ଦୃଷ୍ଟିରେ ତା' ଆଡ଼କୁ ଚାହିଁଲି ।

ସେ କହିଲା, ପାଖରେ ଟଙ୍କା ଅଛି କି ?

ମୋ ପାଖରେ ଟଙ୍କା ଦୁଇଶହ ଖଣ୍ଡେ ଥିଲା । ବୃନ୍ଦାବନ କାଳେ ତା' ଠାରୁ ଅଧିକ ଟଙ୍କା ମାଗିବ, ସେଥିପାଇଁ ମୁଁ ଅପ୍ରତିଭ ବୋଧକଲି । ସୁନନ୍ଦାର ସ୍ୱାମୀ ହେବ ବୃନ୍ଦାବନ । ହୁଏତ ସୁବିଧା ପାଇଲେ ହେବ ଓଡ଼ିଶାର ବିଶିଷ୍ଟ ଚଳଚ୍ଚିତ୍ର ଅଭିନେତା । ଏହା ବ୍ୟତୀତ ଏକଦା ସେ ଥିଲା ବିଶିଷ୍ଟ ଛାତ୍ରନେତା, କୃତୀ ଛାତ୍ର । ତା' ସହିତ ମୋର ବନ୍ଧୁତ୍ୱ ଦୀର୍ଘଦିନର । ତାକୁ ଯଦି ମୁଁ ଟଙ୍କା କେତେଶହ ଦେଇ ନ ପାରେ, ତାହାହେଲେ ସେ ମନେ ମନେ କଅଣ ଭାବିବ ?

ବୃନ୍ଦାବନ ମୋ ଆଡ଼କୁ ଉତ୍ତର ପାଇବା ଆଶାରେ ଚାହିଁ ରହିଥିଲା । ମୁଁ କହିଲି, ଅଛି । କେତେ ଟଙ୍କା ?

ଦୁଇଟଙ୍କା ହେଲେ ଚଳିଯିବ । ପାଖରେ ମୋଟେ ପଇସା ନାହିଁ । କଟକ ଫେରିଯିବ ଯେ—।

ବୃନ୍ଦାବନର କଣ୍ଠସ୍ୱର ସୁନନ୍ଦାର ସ୍ତ୍ରୀ-ସ୍ୱାମୀ ଭଳି ନୁହେଁ, ଓଡ଼ିଶାର ଭବିଷ୍ୟତ ଚଳଚ୍ଚିତ୍ର ଅଭିନେତା ପରି ନୁହେଁ, ଏପରି କି ଏକଦା ଜ୍ୱାଳାମୟୀ ଭାଷଣ ଦେଉଥିବା ସ୍ତ୍ରୀଲୋକଟିର କଣ୍ଠସ୍ୱର ଭଳି ମଧ୍ୟ ନୁହେଁ, ତାର କଣ୍ଠସ୍ୱର ଶୁଭା ଯାଉଥିଲା ଏକ ଭୟଙ୍କର କଣ୍ଠସ୍ୱର ଭଳି। ମତେ ମାଗିଥିଲେ ମୁଁ ତାକୁ ଦୁଇଶହ ଟଙ୍କା ଆନନ୍ଦରେ ଦେଇପାରି ଥାଆନ୍ତି। କିନ୍ତୁ ସେ ଯେପରି ଭାବରେ ମତେ ମାତ୍ର ଦୁଇଟା ଟଙ୍କା ମାଗିଲା, ସେଥିରେ ମୋର କଣ୍ଠନଳୀ ରୁଦ୍ଧହୋଇ ଆସୁଥିଲା। ମୁଁ ଶ୍ୱାସରୋଧ ହେବାଭଳି ଯନ୍ତ୍ରଣା ଅନୁଭବ କରୁଥିଲି। କାରଣ ତାର କୃତ୍ରିମ ଅଭିନୟ ବଡ଼ ଶୋଚନୀୟ ଭାବରେ ଧରା ପଡ଼ିଯାଉଥିଲା।

ଟଙ୍କା ଦୁଇଟା ନେଇ ବୃନ୍ଦାବନ ଚାଲିଗଲା ପରେ ମଧ୍ୟ ମୁଁ ଅନେକ ସମୟ ତାର ଯିବା ବାଟକୁ ଚାହିଁ ରହିଥିଲି। ମୁଁ ମନେ ମନେ ଚିତ୍କାର କରି କହିବାକୁ ଚାହୁଁଥିଲି, ବୃନ୍ଦାବନ! ତମେ ସୁନନ୍ଦାର ଉପଯୁକ୍ତ ହେବା ଦରକାର···ତାର ଯୋଗ୍ୟ ହେବାପାଇଁ ଉଦ୍ୟମ କରିବା ଦରକାର···ରୂପେଲି ପରଦାରେ ଅଭିନୟ କରାଯାଏ; କିନ୍ତୁ ନିଜ ସ୍ତ୍ରୀ-ସନ୍ତାନର ଜନନୀ ପାଖରେ ଅଭିନୟ କରାଯାଏ ନାହିଁ—ତାହା ପୌରୁଷ ନୁହେଁ।

ମୁଁ ଯେହେତୁ ସେକଥା ମନେ ମନେ ଚିତ୍କାର କରି କହୁଥିଲି, କଟକ ବସ୍‌ରେ ବସିବା ପର୍ଯ୍ୟନ୍ତ ସେ କଥା ନିଶ୍ଚୟ ଶୁଣିପାରି ନ ଥିବ ବୃନ୍ଦାବନ।



# ॥ ଜୟୀରାଜଗୁରୁ ॥

## ଶ୍ରୀ ଚନ୍ଦ୍ରଧର ମହାପାତ୍ର

[ ଖ୍ୟାତନାମା ଔପନ୍ୟାସିକ, ସମାଲୋଚକ ଓ ପ୍ରାବନ୍ଧିକ ଶ୍ରୀ ଚନ୍ଦ୍ରଧର ମହାପାତ୍ର ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କ ରଚିତ ଉପନ୍ୟାସ ମଧ୍ୟରେ 'ବଳାଙ୍ଗୀ' ଏକ ଚମକପ୍ରଦ ସୃଷ୍ଟି । ଉପନ୍ୟାସର ଆଦ୍ୟ କାଳରେ 'ବଳାଙ୍ଗୀ' ଯେ ଅନେକ ଔପନ୍ୟାସିକ ଗଢ଼ିବାରେ ସହାୟକ ହୋଇଛି—ଏଥିରେ ସନ୍ଦେହ ନାହିଁ । ଠିକ୍ ସେହିପରି ଶ୍ରୀ ମହାପାତ୍ର 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ଗବେଷଣା ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟର ଅପୂରଣୀୟ ଅଭାବ ଦୂର କରିବାକୁ ସକ୍ଷମ ହୋଇଛନ୍ତି । କେବଳ ଏତିକି ନୁହେଁ—ଲୋକଗୀତ ସଚୟନ, ଲୋକଗଳ୍ପ ସଚୟନ ଦିଗରେ ମଧ୍ୟ ତାଙ୍କ ଦାନ ଯଥେଷ୍ଟ । ସ. ବନଫୁଲ ]

ସମଗ୍ର ଭାରତରେ ସ୍ୱାଧୀନତାକାମୀମାନଙ୍କ ମଧ୍ୟରେ ଏକତମ ତେଜସ୍ୱୀ, ଓଡ଼ିଶାର ସ୍ୱାଧୀନତା ସଂରକ୍ଷଣରେ ଇଂରେଜ ବିରୋଧରେ ପ୍ରଥମ ବିଦ୍ରୋହୀ, ଓଡ଼ିଶାର ପ୍ରଥମ ଗୌରବାସ୍ପଦ ଶହିଦ୍, ମହାମନା, ଉତ୍କଳ ସାମ୍ରାଜ୍ୟର ଶେଷ ପ୍ରଧାନ ମନ୍ତ୍ରୀ ଜୟୀରାଜଗୁରୁ (ପୂର୍ବ ନାମ—ଜୟକୃଷ୍ଣ ରାଜଗୁରୁ ମହାପାତ୍ର) ଙ୍କୁ ସ୍ୱାର୍ଥାନ୍ଧ ନିର୍ମମ ଇଂରେଜ ମେଦିନୀପୁରରେ ୧୮୦୫ରେ ଯେପରି ହତ୍ୟାକଲେ, ଏପରି ହତ୍ୟା ଖ୍ରୀଷ୍ଟଙ୍କ କ୍ରୁଶବିଦ୍ଧଠାରୁ ବଳି ଯାଇଥିଲା । ବାସିତୋଟାରେ ଏ ବେପାରୀ ଦଳ ନିଜର ଆସ୍ଥାନ ଜମାଇ ବିଚାର କଲେ । ଗୋଟିଏ ସାକ୍ଷ୍ୟକୁ ସମ୍ବଳ କରି ରାଜଗୁରୁଙ୍କୁ ମୃତ୍ୟୁଦଣ୍ଡ ଆଦେଶ ହେଲା । ପାର୍ଶ୍ୱବର୍ତ୍ତୀ ବରଗଛର ବିଶାଳ ବିଶାଳ ଦୁଇଟି ଡାଳକୁ ଦୁର୍ଦ୍ଦାନ୍ତ ସିପେଇମାନେ ଟାଣି ଜୋଡ଼ି ରଖିଲେ । ହୁକୁମ ଶୁଣାଇ ଦିଆଗଲା—

ଖୋର୍ଦ୍ଧାରାଜା ମୁକୁନ୍ଦଦେବଙ୍କ ସାକ୍ଷ୍ୟରୁ ଜଣାଗଲା ଯେ ମୁଦାଲି କଂପାନୀ ସରକାରର ସୁଶାସନ ବିରୁଦ୍ଧରେ ଅନ୍ୟାୟ ଷଡ଼ଯନ୍ତ୍ର କରିଥିବା ଯୋଗୁଁ ତାଙ୍କ ଦ୍ୱାରା ବହୁ ନରହତ୍ୟା ସଂଘଟିତ ହୋଇଛି । ତେଣୁ ତାକୁ ଫାଶି ହୁକୁମ ଦିଆଗଲା ।

ସାତଟି ବର୍ଷ ମାତ୍ର ପ୍ରଧାନ ମନ୍ତ୍ରୀ ରହିବା ପରେ ୫୭ ବର୍ଷ ବୟସ୍କ ରାଜଗୁରୁ ତା' ହେବବୋଲି ଜାଣି ପାରିଥିଲେ । କିନ୍ତୁ ହତ୍ୟାର ଏ ବିଭୀଷିକା ତାଙ୍କୁ ସ୍ତମ୍ଭିତ କରିଥିଲା । ସେ ମୃତ୍ୟୁ ପୂର୍ବରୁ କହି ଉଠିଲେ—

ଯାତେ ତନୂର୍ବାଚି ପ୍ରତିଷ୍ଠିତା ଯା ଶ୍ରୋତ୍ରେ ଯା ଚ ଚକ୍ଷୁଷି,
ଯା ଚ ମନସି ସନ୍ତତା ଶିବାଂ ତାଂ କୁରୁମୋତ୍କ୍ରମୀଃ ।

ହେ ପ୍ରାଣ ! ତୁମର ଯେଉଁ ତନୁ ବାକ୍ୟରେ, ଶ୍ରୋତ୍ରରେ, ଚକ୍ଷୁରେ ପ୍ରତିଷ୍ଠିତ ରହିଅଛି, ଯାହା ମନରେ ବ୍ୟାପ୍ତ ରହିଅଛି, ସେହି ତନୁକୁ ଶାନ୍ତକର । ତୁମେ ଉତ୍କ୍ରାନ୍ତ ହୁଅନାହିଁ ।

ଦୁର୍ବୃତ୍ତମାନେ ତାଙ୍କର ଦୁଇଟି ପାଦକୁ ସେହି ବରିଷ୍ଠ ବଟ ଡାଳରେ ଦୃଢ଼ଭାବେ ବାନ୍ଧିଥାନ୍ତି । ସେ ଏପରି ଅବସ୍ଥାରେ ବିପ୍ରକୁଳପ୍ରଦୀପ ପ୍ରଧାନ ମନ୍ତ୍ରୀ ପରମ ଲକ୍ଷ୍ମୀ ରାଜଗୁରୁ ମହାପାତ୍ରଙ୍କ ବୀରସପ୍ତପଦୀରୁ ଶ୍ଳୋକଟିଏ ଗାଇ ଚିତ୍ତ ଦୃଢ଼ କଲେ ।

ସୀମାନଂ ତାତଭୂମେ ରିପୁରତିମହତଂ ରକ୍ଷିତୁଂ ଯେ ଚ ଯୁଦ୍ଧା
ବ-ଶାନ୍ ସ୍ୱାନ୍ ଲୁପ୍ତବନ୍ତଃ ପ୍ରଣମତ ଖଲୁତାନ୍ କୋଟି
ଶ୍ରୋଜାତିରେଷା
ତେ'ସ୍ମାକଂ ବନ୍ଦନୀୟାଃ ପ୍ରତିଦିନମବଲା ଯତ୍କୃତେ ବାସୟନ୍ତି
ସାୟଂ ଦୀପାନ୍ ବହିର୍ନେଷୁ ଚ ଲଘୁଷୁ ନିଧାୟାପ୍ୟୁତାନ୍ ଭାସୟନ୍ତି ।

ପିତୃଭୂମିର ସୀମାସରହଦ. ସହିତ ସ୍ୱାଧୀନତା ଅକ୍ଷୁଣ୍ଣ ରଖିବାରେ ଯେଉଁମାନେ ସଂଗ୍ରାମ କରି ନିଜର ପାରଂପରିତା ବଂଶ ଏକାବେଳେ ଲୋପକରି ଦେଇଛନ୍ତି, ସେମାନଙ୍କୁ ଏ ଜାତି କୋଟି କୋଟି ବାର ନମସ୍କାର କରେ, ସେମାନେ ଆମର ନିତ୍ୟ

ଚନ୍ଦନୀୟ । ତାଙ୍କପାଇଁ ବନ୍ଦିତା ନାରୀ ସମାଜ ମସ୍ତ-ଦୀପ ବସାଏ, ତାଙ୍କ ସ୍ମୃତିରେ କ୍ଷୁଦ୍ର କ୍ଷୁଦ୍ର ବୋଇତରେ ଦୀପଥୋଇ ସ୍ରୋତ ମୁଖରେ ଭସାଇ ଥାଏ ।

ସ୍ୱସତ୍ତ୍ୱଂ ରକ୍ଷିଷ୍ୟାମଃ,
ସ୍ୱସତ୍ତ୍ୱଂ ରକ୍ଷିଷ୍ୟାମଃ ।

ସତ୍ୟମେବ ଜୟତେ ନାନୃତଂ, କିନ୍ତୁ କିନ୍ତୁ ଫାଶ କାଟି ଦିଆଗଲା ।

ଏ ପୈଶାଚିକ କାଣ୍ଡ ଘଟୁଥିବାବେଳେ ମୂର୍ଖ କାପୁରୁଷ କେତୋଟି ଦାରହସିତ ବଦନରେ ଦେଖି ଖାଉଥିଲେ ଖାସଣ ଏକ ଶବ୍ଦ ଗଲା । ରାଜଗୁରୁ ଦୁଇଫାଳ ହୋଇ ଚିରହୋଇଗଲେ । ତାଙ୍କ ଶବ କୁଆ ଶାଗୁଣାଙ୍କ ଆହାର ହେଲା ।

ଏହି ଲେଖକଙ୍କର ପ୍ରକାଶିତ—'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ବହିଟି ପାଠକଲେ ଜଣାଯିବ ଯେ, ଉତ୍କଳ ଇତିହାସରେ କାଳ କାଳ ଧରି ବତ୍ସସ ବଂଶୀୟମାନେ ପ୍ରଧାନ-ମନ୍ତ୍ରୀ ବା ରାଜଗୁରୁ ହୋଇ ଆସୁଥିଲେ । ଘଟଣାଚକ୍ରରେ କ୍ଷୋଭ ଦିବ୍ୟସିଂହ ଦେବଙ୍କ ରାଜତ୍ୱ ୧୭୧୭ ଖ୍ରୀଷ୍ଟାବ୍ଦରେ କବି ଡିଣ୍ଡିମ ଜଗଦେବଙ୍କ ୨ୟ ପୁତ୍ର ବର୍ଦ୍ଧନ ରାଜଗୁରୁ ମହାପାତ୍ରଙ୍କ ଚତୁର୍ଥ ପୁରୁଷ ଭାନୁଦେବ ରାଜଗୁରୁ ମହାପାତ୍ରଙ୍କଠାରୁ ରାଜଗୁରୁ ପିଢ଼ି କାଢ଼ି ଦିଆଗଲା । ଫଳରେ ଗଦାଧର ପଦ୍ଧତି ରଚୟିତା ଜଣେ ପୁରୋହିତ ବଂଶଧର ତାଙ୍କର ସ୍ମୃତି-ଶାସ୍ତ୍ରରେ ପ୍ରଖର ପାଣ୍ଡିତ୍ୟ ଦେଖି ରାଜଗୁରୁ କରାଗଲା । କିନ୍ତୁ ଗଦାଧରଙ୍କ ଅନ୍ତେ ପୁଣି ବତ୍ସସମାନେ ତିନିପୁରୁଷ ଧରି ରାଜଗୁରୁ ହେଲେ । ପରମଲକ୍ଷ୍ମୀ-ନରସିଂହ-ଚନ୍ଦ୍ରଶେଖର । ଚନ୍ଦ୍ରଶେଖର ରାଜଗୁରୁ ମହାପାତ୍ର ୨ୟ ଦିବ୍ୟସିଂହ ଦେବଙ୍କ ଆଦେଶ ନ ମାନି ଖୋର୍ଦ୍ଧାରେ ନ ରହିବାରୁ ଉକ୍ତ ଗଦାଧରଙ୍କ ୨ୟ ପୁତ୍ର ବୃନ୍ଦାବନଗୁରୁଙ୍କ ପୁଅ ଜୟକୃଷ୍ଣଙ୍କୁ ଉକ୍ତ ଦିବ୍ୟସିଂହଙ୍କ ପୁଅ ମୁକୁନ୍ଦ ଦେବ (୩ୟ) ରାଜଗୁରୁ କଲେ ।

ତେଣୁ ଜୟକୃଷ୍ଣ କୌଶିକ ବଂଶୀୟ ଥିଲେ । ତାଙ୍କ ପୂର୍ବଜ-ମାନଙ୍କପରି ପୌରୋହିତ୍ୟର ସ୍ମୃତି ସଂହିତା ଉପରେ ନିର୍ଭର ନ କରି ପାରମ୍ପରିକ ରାଜଗୁରୁମାନଙ୍କର ମାନବିକତା ଏବଂ ରଣ ବିଦ୍ୟାରେ ପାରଙ୍ଗମତା, ବେଦରେ ସୁପାଣ୍ଡିତ୍ୟ, ସୁମନ୍ତ୍ରଣା-ବାଦିତା, ଚାତୁର୍ଯ୍ୟ ପ୍ରବୀଣତା, ଲୋକବାର୍ତ୍ତା ଓ ଦଣ୍ଡନୀତିଜ୍ଞତା, ନୀତିଶାସ୍ତ୍ର ବିଦ୍ୱତ୍ତା ଆଦି ସଦ୍‌ଗୁଣରେ ଅଳଙ୍କୃତ ଥିଲେ ।

୧ମ ବୀରକେଶରୀ ଦେବଙ୍କ ଅଳ୍ପବୟସରେ ପ୍ରଧାନ ମନ୍ତ୍ରୀ ପରମଲକ୍ଷ୍ମୀ ରାଜଗୁରୁ ମହାପାତ୍ର ଦେହାନ୍ତରୀ ହେବାରୁ ତାଙ୍କ ବନ୍ଧୁ ପାରଳାଖେମୁଣ୍ଡି ରାଜା ନାରାୟଣଦେବ ସଜ ଉଣ୍ଡି ଖୋର୍ଦ୍ଧା ଆକ୍ରମଣ କଲେ । ବୀରକେଶରୀ ନିରୁପାୟ ହୋଇ ବାରମ୍ବାର ଆକ୍ରମଣରେ ବ୍ୟଥିତ ହୋଇ ମରହଟ୍ଟାଙ୍କ ଶରଣ ପଶିଲେ । ମରହଟ୍ଟାମାନେ ଅର୍ଥଗୃଧ୍ନ । ସେମାନେ ବହୁ କଷ୍ଟରେ ନାରାୟଣଦେବଙ୍କୁ ଅବଶ୍ୟ ପରାସ୍ତ କଲେ । କିନ୍ତୁ ଯୁଦ୍ଧର ଖର୍ଚ୍ଚ ଏତେ ଦାବିକଲେ ଯେ ବୀରକେଶରୀ ସେ ଧନ ଦେଇ ନ ପାରି ବାଧହୋଇ ପୁରୀ ସଦର, ଲେମ୍ବାଇ, ରାହାଙ୍ଗ ରଣ୍ଡି ହାଣ୍ଡି ପ୍ରଗନ୍ନାମାନ ଛାଡ଼ିବାକୁ ବାଧହେଲେ । ଏପରି ହେଲା ଯେ କାଳକ୍ରମେ ଗଜପତିମାନେ ଦେବାଧିଦେବଙ୍କୁ ଦର୍ଶନ କରିବାକୁ ମଧ୍ୟ ନିଜ ମରଜିରେ ସୁଯୋଗ ପାଇ ପାରିଲେ ନାହିଁ ।

କଥିତ ୩ୟ ମୁକୁନ୍ଦଦେବଙ୍କ ରାଜତ୍ୱ ୧୮୦୩ରେ ବିଦେଶୀ ଇଂରେଜମାନେ ଗଂଜାମ-ଖୋର୍ଦ୍ଧା ମଧ୍ୟଦେଇ ମାନ୍ଦ୍ରାଜରୁ କଲିକତାର ବାଟପାଇଁ ଗଜପତି ଦରବାରରେ ପ୍ରାର୍ଥୀ ହେଲେ (୧୮୦୩ ସେପ୍‌ଟେମ୍ବର) । ଜୟୀରାଜଗୁରୁ ଏପଥ ଦେବାଦ୍ୱାରା ବିଦେଶୀ ଆମ ବଳ କଳିନେବ ଏବଂ ଆମେ ଦୁର୍ବଳ ହୋଇଯିବା ଯୁକ୍ତି ବାଢ଼ିଲେ । କିନ୍ତୁ ପ୍ରଧାନ ସେନାପତି ବକ୍‌ସି ଜଗବନ୍ଧୁ ବିଦ୍ୟାଧର ଏକ ସର୍ତ୍ତ ଥୋଇଲେ—ଯେବେ ଇଂରେଜମାନେ ଆମକୁ ମରହଟ୍ଟା ଦଖଲରେ ଥିବା ଆମର ପ୍ରଗନ୍ନାମାନ ଆମକୁ ଦେଇ ପାରିବେ ଏବଂ ଏକଲକ୍ଷ ଟଙ୍କା ସଲାମୀ ଦେବେ, ଆମେ ବାଟ ଛାଡ଼ିଦେବୁଁ । ମରହଟ୍ଟାଙ୍କ ଦୌରାତ୍ମ୍ୟରେ ମୁକୁନ୍ଦଦେବ ଅସହ୍ୟ ହେଉଥିଲେ । ଏ ପ୍ରସ୍ତାବଟିକୁ ହମହମ ହୋଇ ମାନିଗଲେ । ଚୁକ୍ତିହେଲା । ସେମାନେ ସେ ପଥରେ ଗଲେ ଏବଂ ମରହଟ୍ଟାମାନଙ୍କୁ ହଟାଇ ପ୍ରଗନ୍ନାଗୁଡ଼ିକ ନିଜେ ଦଖଲ କରିଗଲେ । କିନ୍ତୁ ଚୁକ୍ତି ମାନିଲେ ନାହିଁ । ଆଚ୍ଛା କଥା ହେଲା ।

ଦୁର୍ଯ୍ୟୋବିବାଦେ ତୃତୀୟଃ ଲଭଃ ।

ଜୟୀରାଜଗୁରୁ ମହାରାଜାଙ୍କ ଆତୁରତା ନ ସହି କଟକ ଆସି ଇଂରେଜ ସହିତ ଭେଟିଲେ । ସାମରିକ କର୍ମଚାରୀ କର୍ଣ୍ଣେଲ ମେଭିଲ ଏବଂ କମିଶନର କର୍ଣ୍ଣେଲ ହାରକୋର୍ଟଙ୍କୁ ପୂର୍ବ ପ୍ରତିଶ୍ରୁତି ସ୍ମରଣ କରାଇଲେ । ସେମାନେ କହିଲେ ଆମେ ମରହଟ୍ଟାଠୁ ଜୟକରି ସେ ପ୍ରଗନ୍ନାମାନ ପାଇଛୁଁ । ସେଥିରେ ତୁମର କ'ଣ ଅଛି ? ଚୁକ୍ତିରେ ଥିବା ଲକ୍ଷେ ଟଙ୍କାରୁ ଅଧା ଟଙ୍କା ପଠାଇ

ଦେଲେ । କିନ୍ତୁ ଜୟୀରାଜଗୁରୁ ଘୁଞ୍ଚିବାବାଲା ନୁହଁନ୍ତି । ସେ ପୂର୍ବ ବଂଶଧର ରାଜଗୁରୁମାନଙ୍କ ପରି ବହୁଭାଷା ପ୍ରବୀଣ ଥିଲେ । ପ୍ରତ୍ୟୁତ୍ପନ୍ନ ଭିଙ୍ଗଘେନି ଯୁକ୍ତି ବାଢ଼ିଲେ । ଯୁକ୍ତିରେ ଇଂରେଜ ପରାସ୍ତ ହୋଇ ରାଜାଙ୍କୁ ଖବର ଦେଲେ ବାକି ଯେ ଅଧା ଟଙ୍କା, ତାହା ରାଜଗୁରୁଙ୍କୁ ପଦଚ୍ୟୁତ କଲେ ଯାଇ ଦିଆଯିବ । ରାଜା ତା' ନ କରନ୍ତେ ସେମାନଙ୍କ ଅକ୍ତିଆରରେ ପୁରୀ ମନ୍ଦିର ଥିବାରୁ ସେଠାରେ ରାଜାଙ୍କ ଆମଂପା ବନ୍ଦ କରିଦେଲେ ।

ଏହି ଅପମାନ ଘେନି ଜୟୀରାଜଗୁରୁ ଗଡ଼ଜାତ ରାଜାମାନଙ୍କୁ ଧରି ପ୍ରକାଶ୍ୟ ବିଦ୍ରୋହ କରିବାକୁ ଗୋପନରେ ମନ୍ତ୍ରଣା କରି ବସିଲେ । ଭବିଷ୍ୟତରେ ଯେଉଁମାନେ ନିମକହାରାମ ଜାଗିର ଲଭିଥିଲେ, ସେମାନେ ଭେଦିଆ ହୋଇ ଏ ସମ୍ବାଦ ଇଂରେଜଙ୍କୁ ଜଣାଇ ଦିଅନ୍ତେ, ସେମାନେ ଅକସ୍ମାତ୍ ଅନ୍ଧକାର ରାତିରେ ଖୋର୍ଦ୍ଧା ଦଖଲ କରିଗଲେ ଏବଂ ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କଲେ (୧୮୦୪ ଡିସେମ୍ବର ମାସରେ) ।

ଜୟୀରାଜଗୁରୁ ହଠାତ୍ ଯୁଦ୍ଧକ୍ଷେତ୍ରକୁ ନ ଆସି ବିଶ୍ୱାସଘାତକମାନଙ୍କୁ ଉପଯୁକ୍ତ ଶିକ୍ଷାଦେବାକୁ ପ୍ରତି ମୌଜାର ମକଦ୍ଦମମାନଙ୍କୁ ସ୍ୱାଧୀନ ଭାବରେ କର ଅସୁଲ କରି ନେବାକୁ ଆଦେଶ ଦେଲେ । ଚଉବିଶକୁଦ, ବାଣଗାଁ ପ୍ରଭୃତି ମକଦ୍ଦମମାନେ ଇଂରେଜଦ୍ୱାରା ନିର୍ବାଚିତ ସର୍ବରାକାରଙ୍କୁ ମାନିଲେ ନାହିଁ । ହତ୍ୟାକଲେ । ଫଳରେ ଇଂରେଜ କଟକରୁ ବହୁ ସଂଖ୍ୟାରେ ସୈନ୍ୟଆଣି ପହଞ୍ଚାଇଲେ । ପ୍ରଧାନ ସେନାପତି ବକ୍ସି ଛକି ରହିଲେ କେଉଁ ପାଣି କେଉଁଠିକି ଯାଉଛି ଜାଣିବାକୁ । ସେ ପ୍ରତ୍ୟକ୍ଷଭାବେ ଯୋଗଦେଲେ ନାହିଁ । ରାଜା ଏବଂ ରାଜଗୁରୁଙ୍କ ହୁକୁମନାମାରେ ଯେତିକି ପାଇକ ଯୁଦ୍ଧରେ ଯୋଗଦେଲେ । ପିପିଲିଠାରେ ଯୁଦ୍ଧହେଲା । ଏହି ଯୁଦ୍ଧରେ ମୁକୁନ୍ଦଦେବଙ୍କ ସୈନ୍ୟଗଣ ଓ ଜୟୀରାଜଗୁରୁ ହାରିଲେ ସତ୍ୟ; କିନ୍ତୁ ନିର୍ମମଭାବେ ଇଂରେଜମାନଙ୍କୁ ଏପରି ହତ୍ୟାକଲେ ଯାହାଯୋଗୁଁ ଇଂରେଜ ଉତ୍କଳବାସୀଙ୍କର ଚିରଶତ୍ରୁ ହୋଇଗଲେ ।

ଇଂରେଜ ସୈନ୍ୟ ମୁକୁନ୍ଦଦେବ ଓ ଜୟୀରାଜଗୁରୁଙ୍କୁ ବନ୍ଦୀକରି କଟକ ନେଲେ । ସେଠାରେ ରଖିବା ନିରାପଦ ନ ମଣି ମେଦିନୀପୁର ନେଲେ । ଏଣେ ପାଇକମାନଙ୍କ ମଧ୍ୟରେ ବିଦ୍ରୋହ ଉତ୍ପାବନ୍ଧ ହେବାରୁ ଇଂରେଜ ମନେକଲେ ଯେ ମୁକୁନ୍ଦଦେବ ଓ ଜୟୀରାଜଗୁରୁ ବନ୍ଦୀ ଥିବାରୁ ଏ ଦୁର୍ଦ୍ଦଶା ଘଟୁଛି । ଏ ଉଭୟଙ୍କୁ ମୃତ୍ୟୁଦଣ୍ଡ ଦେବାକୁ ଧମକାଇଲେ । ନଜରବନ୍ଦୀରେ ଥାଇ ଦୁର୍ବଳ ରାଜା ମୁକୁନ୍ଦଦେବ ନିଜକୁ ବଞ୍ଚାଇବାପାଇଁ ଏକ ଲେଖା ଲେଖିଦେଲେ ଯେ—ଏ ସବୁ ବିଦ୍ରୋହ ଜୟୀରାଜଗୁରୁଙ୍କ ପ୍ରରୋଚନାରେ ହୋଇଛି । ସେ ଏଥିରେ ଦୋଷୀ ନୁହଁନ୍ତି । ପ୍ରାର୍ଥନା ପତ୍ର ଉପରେ ତାଙ୍କୁ ମୁକ୍ତି ଦିଆଗଲା । କିନ୍ତୁ ସେ ପୂର୍ବ ପ୍ରଗର୍ଣ୍ଣାମାନ ଫେରି ପାଇଲେ ନାହିଁ । କିନ୍ତୁ କିଛି ଟଙ୍କା ଭତ୍ତା ପାଇଲେ ଏବଂ ପୁରୀ ମନ୍ଦିରର ପରିଚାଳନା ଭାର ପାଇଗଲେ ।

କିନ୍ତୁ ଜୟୀରାଜଗୁରୁ ବନ୍ଦୀ ଅବସ୍ଥାରେ ପ୍ରକାଶ କଲେ— ରାଜାଙ୍କ ମଙ୍ଗଳପାଇଁ ପ୍ରଧାନ ମନ୍ତ୍ରୀ ହିସାବରେ ସେ ଏ ବିଦ୍ରୋହ କରିଛନ୍ତି ଏବଂ ଏଥିପାଇଁ ସେ ସମ୍ପୂର୍ଣ୍ଣ ଦାୟୀ । ଏଥିରେ ମୁକୁନ୍ଦ ଦେବ ଆଦୌ ସଂପୃକ୍ତ ନୁହଁନ୍ତି । ନିଜ ଦେଶର ସ୍ୱାଧୀନତା ରକ୍ଷା କରିବା ପାଇଁ ସେ କାହିଁକି ଏହା ଯେକୌଣସି ସାଧାରଣ ନରନାରୀ ମଧ୍ୟ କରି ପାରନ୍ତି । ଏହା ଇଂରେଜର ରାଜ୍ୟ ନୁହେଁ, ଏହା ପଠାଣ ବା ମୋଗଲର ରାଜ୍ୟ ନୁହେଁ, ଏହା ମରହଟ୍ଟାର ରାଜ୍ୟ ନୁହେଁ, ଏହା ପୁରୁଷ ପୁରୁଷ ଧରି ଆମର ନିଜ ରାଜ୍ୟ । ଆମେ ଏ ଭୂଇଁର ମୃତ୍ତି ବାହାରିଛୁ । ଆମର ପୂର୍ବପୁରୁଷ ରକ୍ତ ଢାଳି ଏ ରାଜ୍ୟ ଗଢ଼ିଛନ୍ତି । କଥିତ ଅଛି ସ୍ୱାଧୀନତାର ଜୀବନ୍ତ ବିଗ୍ରହ, ଉନ୍ନତ ନାସା, ପଦ୍ମପଲାଶ ଲୋଚନ ସାହସିକ ଏହି ବୀରେନ୍ଦ୍ର କେଶରୀର ମୂର୍ତ୍ତିକୁ ଇଂରେଜ ସେନାପତିମାନେ ଦେଖି ସ୍ତବ୍ଧ ହେଉଥିଲେ । ଶେଷକୁ ହୁକୁମ ଶୁଣାଇ ଦିଆଗଲା— ରାଜଦ୍ରୋହ ଅପରାଧରେ ଫାଶି ଦିଆଯିବ । ସେ କ୍ଷମା ପ୍ରାର୍ଥନା ନ କରି ତାହା ବରଣ କରି ନେଇଥିଲେ । ଫଳରେ ରକ୍ତଧୌତ ଗାଦି ତାଙ୍କ ପୂର୍ବଜନମାନଙ୍କୁ ଅନୁସରଣ କରିଥିଲେ । ଏ ବରେଣ୍ୟ ଶହିଦର ପୂଜା ଏଯାଏ ଉତ୍କଳୀୟ କରି ନାହାନ୍ତି । ତାଙ୍କର ସ୍ମୃତିପାଇଁ କିଛିଟିକେ ସ୍ମାରକ ମଧ୍ୟ ସ୍ୱାଧୀନତାର ଦୀର୍ଘ ବର୍ଷ ମଧ୍ୟରେ ଦେଖା ପଡ଼ିନି । କାହାକୁ କହିବା, କପାଳରେ ସିନା କର ମାରିବା ।

—*—

# ଆସିବି ମୁଁ ପୁଣି ସୂର୍ଯ୍ୟରଥେ

## ବିପ୍ଳବ ସକାଳ

### ଡକ୍ଟର କୁଞ୍ଜବିହାରୀ ଦାଶ

[ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶ ଜଣେ ଖ୍ୟାତନାମା କବି, ପ୍ରାବନ୍ଧିକ ଓ ଗବେଷକ । ଜୀବନକାଳ ମଧ୍ୟରେ ସେ ଅସଂଖ୍ୟ କବିତା ରଚନା କରିଛନ୍ତି । ତାଙ୍କ କବିତାଗୁଡ଼ିକ ମୁଖ୍ୟତଃ ଜଞ୍ଜାଳମୟ ଜୀବନର ଯନ୍ତ୍ରଣାରୁ ଆତ୍ମିକତାକୁ ଖୋଜି ଖୋଜି ଆତ୍ମ ପ୍ରକାଶ କରିଛି । ଅନ୍ୟ ଦିଗରେ ସେ ଜଣେ ଗଭୀର ପ୍ରକୃତି ପ୍ରେମୀ ଓ ଜାତୀୟବାଦୀ ।

ଠିକ୍ ସେହିପରି ତାଙ୍କ ରଚିତ ସମାଲୋଚନା ପୁସ୍ତକଗୁଡ଼ିକ ଗଭୀର ଗବେଷଣା ପୂର୍ଣ୍ଣ । 'ସାହିତ୍ୟକ' 'ସମାଲୋଚନା' 'ଲୋକଗୀତ ସଞ୍ଚୟନ' ଲୋକଗଳ୍ପ ସଞ୍ଚୟନଗୁଡ଼ିକରେ ଏହାର ଯଥେଷ୍ଟ ପ୍ରମାଣ ସୁସ୍ପଷ୍ଟ । ଆଜୀବନ ସାଧନା ଫଳରେ ସେ ଓଡ଼ିଶାର ଲୋକଗୀତ, ଲୋକ ଗଳ୍ପକୁ ବିଶ୍ୱ ଦରବାରରେ ପରିଚିତ କରାଇବାର ଗୌରବ ଅର୍ଜ୍ଜନ କରିଛନ୍ତି । ସ. ବନଫୁଲ୍ ]

ଶତବାର୍ଷିକୀ; କୋଟି କୋଟି ନମସ୍କାର, ଫୁଲର ଫୁଆରା, ଦୀପାଳୀ
ତରଙ୍ଗି ଉଠେ—ଜୟ ଜୟ ଗାନ୍ଧୀଜୀଙ୍କ ଜୟ, ଚନ୍ଦନ ଅଗୁରୁ ସୁବାସିତ
ଚତୁର୍ଦ୍ଦିଗ—ଗଦ୍‌ଗଦ ଭାଷଣ ପୂଜା ପ୍ରାର୍ଥନା ପ୍ରବାହେ
ଗାନ୍ଧୀଜୀଙ୍କ ତପୋଭଙ୍ଗ—ସହସା ଜାଗିଲା ଇଚ୍ଛା କରିବେ ସେ ଭାରତ ଦର୍ଶନ ।
"ଆଲ୍‌ପନା" ଅଙ୍କା, କୁସୁମ ସୁରଭିମଖା ପହ୍ୱଲେ ସେ
ପହଞ୍ଚିଲେ ଶାନ୍ତିନିକେତନ ।
ଜାତୀୟ ସଙ୍ଗୀତ, ବିସ୍ମୃତ ଦିନର ସବୁ—ସଙ୍ଗୀତ ଭବନ
ଦେଉଅଛି ନବ ସ୍ୱରଲିପି; 'ନନ୍ଦନର' କାନ୍ଥେ ଦାଣ୍ଡିଯାତ୍ରା,
ନନ୍ଦଲାଲ୍ ! ତାଙ୍କର ମର୍ମର କଥା ଫୁଟିଥିଲା ଯେଉଁ
ଗୀତେ—କାହିଁ ଆସେ ଭାସି ?
'ଯଦି ତୋର ଡାକ୍ ଶୁନେ କେଉ ନା ଆ...ସେ
ତବେ ଏକ୍‌ଲା ଚଲୋରେ
ଏକଲା ଚଲୋ ଏକଲା ଚଲୋ ଏକଲା ଚଲୋରେ'...
ଗୁରୁଦେବ, ନମସ୍ତୁତେ; ନାଟକରେ
ଅଭିନୟ କଲାପରି ବୃଳାନ୍ତ ଯୁବକ, ସ୍ୱପ୍ନର ବାଳକାବଧୂ
ଇଏସବୁ ହେବେ କି ମଣିଷ ? ଜୀବନ ସଂଗ୍ରାମ-ହୀନ,
କାବ୍ୟିକ, ଉନ୍ମନ ।

|| ବନଫୁଲ ||

ସଉଧରେ ସେ ସହରରେ ନାଇଲନ୍ ହିଲ୍ଲୋଳରେ
କିଏ ଜଣେ ଖଦଡ଼ ପିନ୍ଧିଛି ? ଚଳଚ୍ଚିତ୍ର ଅଭିନେତା !
ଚରଖା ଘଡ଼ୁଛି ଆହା ଯାଦୁଘର କଣେ, ଆମ୍ର କୁଞ୍ଜ ଗୁମ୍ଫାତଳେ
କହନ୍ତି କାହାଣୀ, ଶ୍ରେଣୀର ଶିକ୍ଷକ, ଗାନ୍ଧୀ ବୋଲିଥିଲେ ଏଥି
ମହାତମା ଜଣେ; ଆଣିଲେ ସ୍ୱରାଜ୍, ମୁକ୍ତ-ବିହାନ, କୋଟି
କୋଟି ହୃଦୟର ମହା ମହାରାଜ୍ !
ବିଦ୍ୟୁତ୍ ଗତିରେ ଚାଲିଲା ସାବରମତି,
ବୁଲିବୁଲି ସାରାଦେଶ ତୀର୍ଥ କରିଥିଲେ-- ଚାଲିଲେ ସେ ଗ୍ରାମୁଁ ଗ୍ରାମେ,
ନିଃସ୍ୱ, ନିରାନନ୍ଦ ସବୁ— ହଜିଛି ବିଶ୍ୱାସ, ମଣିଷର ଗୁମ୍ଫାରେନ
ବୁଲିଛନ୍ତି ଅର୍ଦ୍ଧଭୁକ୍ତ କେତେ ଯେ ହତାଶ !
ବେକାର, ବେକାର ! ବୁଭୁକ୍ଷିତ କି ପାପ ନ କରେ ?
ଘଡ଼ୁଛନ୍ତି ଶତ ଶତ ପଥ ଧୂଳିଧାରେ, ସ୍ୱାଧୀନତା ପରେ ।
କୁଷ୍ଠରୋଗୀ, ଅନ୍ଧ, ଖଞ୍ଜ ଚତୁର୍ଦ୍ଦିଗେ ଭିକାରୀର ଦଳ,
ଜଳବତ୍ ମଦର ବୋତଲ୍, ଦ୍ୱିଧା ଦ୍ୱନ୍ଦ୍ୱହୀନ କିଣୁଛନ୍ତି ଭଦ୍ରଗଣ,
ମହାତ୍ମାଙ୍କ ଚେଲା ଦିଅନ୍ତି ଭାଷଣ— ନିଶା ନିବାରଣ,
ଫେନିଳ ଉଚ୍ଛ୍ୱାସେ, ନାଇଲ୍ ନେଟେ ନିଦ୍ରା ଜମିଆସେ ।
ସୌଧ ପରି ସୌଧ ଉଠେ; ଶୋଇଛି କୁଟୀର
କାଲିର ସେ ମଧ୍ୟବିତ୍ତ ଆଜି ମଜଦୁର, କଙ୍କାଳର ପଟୁଆରେ ଚାଲେ
ନକ୍ସାଲପନ୍ଥୀ ଡାକେ, ଅଶ୍ରୁରେ ଯା ହୋଇନାହିଁ, ରକ୍ତରେ ତା ହୋଇବ
ଷାଲିତ; କି ପାପ ନ କରେ ବୁଭୁକ୍ଷିତ !
ସତ୍ୟର ଗଭୀର ତଥ୍ୟ ବୁଝାଉଛି ମିଥ୍ୟାଚାରୀ,
ଅହିଂସା ମହିମା ବୁଝାଏ ହିଂସ୍ରକ; କେ ଗଢ଼ିବ ନିତି ନିତି
ଲକ୍ଷ ଲକ୍ଷ ଜନ୍ମର ଜାତକ ? ଉଦର ବଢ଼ିଛି ବହୁ, ବଢ଼ିଅଛି ମୁଖ,
ବଢ଼ିଅଛି ବକ ଗ୍ରୀବା ମୀନ ହାହାକାରେ, କେଉଁ ଗ୍ରହ ଉପଗ୍ରହ
ଉପନିବେଶରେ ତୁମର ଆଧାର ଅଛି, ଆରେ ଆରେ ହତଭାଗ୍ୟ
ନବଜନ୍ମା ? କି ସବୁ ସ୍ଲୋଗାନ୍ ଦିଅ ଆରେରେ କଙ୍କାଳ ?
ଭାବିଲେ କାପୁଣି
ଦୁର୍ଦ୍ଦିନର ଦିଗ୍‌ବଳୟେ—
ଆସିବ ମୁଁ ପୁଣି ସୂର୍ଯ୍ୟରଥେ ବିପ୍ଳବ ସକାଳ ।

( ଆକାଶବାଣୀ )

—*—

# ॥ ସାମ୍ପ୍ରତିକ ଅନୁଭୂତି ॥

## କାଳନ୍ଦୀ ଚରଣ ପାଣିଗ୍ରାହୀ

[ ସବୁଜ ଯୁଗର ଅନ୍ୟତମ ଶ୍ରେଷ୍ଠ ସାରଥି ଓ ସ୍ରଷ୍ଟା ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ । ଏକାଧାରରେ ସେ ଜଣେ ଔପନ୍ୟାସିକ କବି, ଗାଳ୍ପିକ ଓ ପ୍ରାବନ୍ଧିକ । ତାଙ୍କ ରଚିତ ମାଟିର ମଣିଷ, ଅମରଚିତା, ଲୁହାର ମଣିଷ, ମୁକ୍ତାଗଡ଼ର କ୍ଷୁଧା ଇତ୍ୟାଦି ଉପନ୍ୟାସ ଓଡ଼ିଆ ଉପନ୍ୟାସ ରାଜ୍ୟକୁ ପ୍ରସାରିତ ଓ ପ୍ରଭାବିତ କରିବାରେ ସହାୟକ ହୋଇଛି । ସେହିପରି ବିଭିନ୍ନ ଗଳ୍ପ ମଧ୍ୟରେ ମାଂସର ବିଳାପ, କବିତାଗୁଡ଼ିକ ମଧ୍ୟରେ ଗାନ୍ଧୀଜୀର ଆଶୀର୍ବାଦ ବାସ୍ତବିକ ଚମକପ୍ରଦ ସୃଷ୍ଟି । ଜୀବନର ପ୍ରାରମ୍ଭରୁ ଆଜିଯାଏ, ନିରବଚ୍ଛିନ୍ନ ଭାବେ ସେ ସାହିତ୍ୟ ସାଧନାରତ । "ସାମ୍ପ୍ରତିକ ଅନୁଭୂତି" ପ୍ରବନ୍ଧ ହିଁ ତାଙ୍କର ଏକ ଉଲ୍ଲେଖଯୋଗ୍ୟ କଳାପ୍ରାଣତାର ପ୍ରମାଣ । ]

( ସ ବନଫୁଲ )

ଚଳିତବର୍ଷ ମାର୍ଚ୍ଚମାସ ୧୨ ତାରିଖ ସକାଳ । ଟ୍ରଙ୍କ୍ ଟେଲିଫୋନ୍ ଆସିଲା ରାଜଧାନୀ ଦିଲ୍ଲୀରୁ । ସଂପୂର୍ଣ୍ଣ ଅପ୍ରତ୍ୟାଶିତ । ଟେଲିଫୋନ୍ କରିଛନ୍ତି ଅଖିଳ ଭାରତୀୟ ହିନ୍ଦୀସଂସ୍ଥା ସଂଘର କର୍ମକର୍ତ୍ତା । ଏହି ସଂସ୍ଥାର ଆନୁକୂଲ୍ୟରେ ଏକ ସାହିତ୍ୟିକ ସଦ୍‌ଭାବନା ମଣ୍ଡଳ ବା ଶୁଭେଚ୍ଛା ଦଳ ଅର୍ଥାତ୍ ଇଂରାଜୀ ଭାଷାରେ ଯାହାକୁ କହନ୍ତି—Goodwill mission ଉତ୍ତର-ପ୍ରଦେଶର ଚାରିଗୋଟି ପ୍ରସିଦ୍ଧ ଐତିହାସିକ ନଗର ପରିକ୍ରମା କରିବେ—ଆଗ୍ରା, ଆଲ୍ଲାହାବାଦ, ବାରାଣସୀ, ଲକ୍ଷ୍ନୌ ।

ସେଥିଲାଗି ମାର୍ଚ୍ଚମାସ ୧୮ ରୁ ୨୭ ତାରିଖ ପର୍ଯ୍ୟନ୍ତ ନବଦିନ ଯାତ୍ରାର ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇ ସାରିଛି । ଏହି ଶୁଭେଚ୍ଛା ଦଳରେ ଦକ୍ଷିଣ ଭାରତର ଦୁଇଜଣ ଶ୍ରେଷ୍ଠ ସାହିତ୍ୟିକଙ୍କ ସହିତ ମୋତେ ମଧ୍ୟ ଯୋଗ ଦେବାକୁ ହେବ ଓଡ଼ିଶାର ସଦସ୍ୟ ଭାବରେ । ସମୟ ଅଳ୍ପ; ତେଣୁ ମୋର କଟକରୁ ଦିଲ୍ଲୀ ଯିବାପାଇଁ ଆକାଶଯାନରେ ଟିକେଟ୍ କଣା ସରିଛି । ଏକ ସ୍ମାରିକା ପତ୍ରରେ ମଧ୍ୟ ମୋର ଫଟୋ ସମେତ ଦୀର୍ଘ ପରିଚୟ ବିବରଣ ଛପା ସରି ବିତରଣ କରାଗଲାଣି । ଅତଏବ ଆଉ ଇତସ୍ତତଃ ହୋଇ ହଁ ନା ନାହିଁ କରିବା ଅବକାଶ ନାହିଁ । କେବଳ ୧୭ତାରିଖରେ ଭୁବନେଶ୍ୱର ଯାଇ କଲିକତା ପ୍ଲେନ୍ ଧରିବା ଓ ସେଠାରୁ ଦିଲ୍ଲୀ ପ୍ଲେନ୍‌ରେ ଉଠି ଭାରତର ରାଜଧାନୀରେ ଓହ୍ଲାଇବା ମୋର କାମ । ତାହା ପରଠାରୁ ସବୁ ଦାୟିତ୍ୱ ବହନ କରିବେ ଅଖିଳ ଭାରତୀୟ ହିନ୍ଦୀସଂସ୍ଥା ସଂଘ ।

ଟେଲିଫୋନ୍‌ରେ ଦିଲ୍ଲୀ ସଙ୍ଗେ ମାତ୍ର ତିନି ମିନିଟ୍ କଥାହେଲେ ଖର୍ଚ୍ଚ ପଡ଼େ ଦଶଟଙ୍କା । ଛଅ ମିନିଟ୍‌କୁ କୋଡ଼ିଏ ଟଙ୍କା । ତେଣୁ ମୋ ପକ୍ଷରେ ଉଁ ଚୁଁ ହେବା କି ହଁ ନାହିଁ କରିବା ପାଇଁ ଫୁରସତ୍ ନେବାକୁ ଟିକିଏ କାହିଁ ଫାଙ୍କ୍ ନ ଥିଲା ।

୧୭ ତାରିଖ ମଧ୍ୟାହ୍ନ ଭୋଜନ ପରେ ବାହାରିଲି ଭୁବନେଶ୍ୱର । ସେଠାରୁ କଲିକତା ବାଟେ ଦିଲ୍ଲୀ ପ୍ଲେନ୍ ଧରି ସନ୍ଧ୍ୟାରେ ଦିଲ୍ଲୀ ପହଞ୍ଚିଲି । ଆକାଶଯାନ ପୁଣି ଆକାଶବାଣୀ । ପୃଥିବୀ ଗୋଟାକୁ ଆଜି ଏତେ ଛୋଟ କରି ପକାଇଲାଣି ଯେ ତାହା ଫଳରେ ନିଜ ନିଜ

ଭାରତରେ ବୁଝାମଣାର ପ୍ରଚୁର ସୁଯୋଗ ଘଟିଛି । ପୁଣି "ସାହିତ୍ୟ" ଶବ୍ଦଟିର ଅସଲ ମର୍ମ ହେଲା ଶୁଭେଚ୍ଛା ଓ ପରସ୍ପର ସହିତ ମିଳନ ସାହିତ୍ୟର ଜନ୍ମ, କର୍ମ ଓ ଏକମାତ୍ର ଧର୍ମ ହେଲା ବିଶ୍ୱର କଲ୍ୟାଣ—'ବହୁଜନ ହିତାୟ—ବହୁଜନ ସୁଖାୟ—ଲୋକା ସମସ୍ତା ସୁଖିନୋଽଭବନ୍ତୁ । ଉତ୍ତରପ୍ରଦେଶ ପରି-ଭ୍ରମଣରେ ଶୁଭେଚ୍ଛା ଦଳର ଏହାହିଁ ହେଲା ସୁମହାନ୍ ଲକ୍ଷ୍ୟ ।

ଉତ୍ତର ଭାରତର ପୁଣି ଉତ୍ତରପ୍ରଦେଶ ! ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା । ସେହି ଉତ୍ତର ଦିଗରେ ହିଁ ପୃଥିବୀର ସର୍ବୋଚ୍ଚ ନଗାଧିରାଜ ହିମାଳୟ । —ମହାଭାରତୀୟ ସଂସ୍କୃତିର ସର୍ବ ପ୍ରାଚୀନ ସର୍ବୋଚ୍ଚ ସାକ୍ଷୀ ଆଧୁନିକ ଭାରତର ରାଜନୈତିକ ପ୍ରାଣକେନ୍ଦ୍ର ଉତ୍ତରପ୍ରଦେଶ, ସ୍ୱାଧୀନୋତ୍ତର ଭାରତକୁ ଯାହା ଆଜି ପର୍ଯ୍ୟନ୍ତ ଯୋଗାଇ ଆସିଛି ନେତୃତ୍ୱ । ସ୍ୱାଧୀନୋ-ତ୍ତର ଭାରତର ତିନି ମହାନ୍ ନେତା, ତିନିଜଣଯାକ ପ୍ରଧାନମନ୍ତ୍ରୀଙ୍କର ଜନ୍ମସ୍ଥାନ ସେହି ଉତ୍ତରପ୍ରଦେଶ ।

ଭାରତ ଇତିହାସର ଅତୀତ ଓ ବର୍ତ୍ତମାନର ଜାଜ୍ୱଲ୍ୟମାନ ଜୀବନ୍ତ ଅଧ୍ୟାୟ ଉତ୍ତରପ୍ରଦେଶ । ବୈଦେ-ଶିକ ଆକ୍ରମଣ ଆଗମନ ଓ ବିତାଡ଼ନର ପ୍ରଧାନ ପଥ ଉତ୍ତରପ୍ରଦେଶ । ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ଆଶ୍ଚର୍ଯ୍ୟ ତାଜମହଲ ନିର୍ମାତା ଉତ୍ତର-ପ୍ରଦେଶ । ବୌଦ୍ଧ, ଖ୍ରୀଷ୍ଟାନ୍, ହିନ୍ଦୁ, ମୁସଲମାନ ଓ ପ୍ରାଚ୍ୟ ପାଶ୍ଚାତ୍ୟ ସଂସ୍କୃତିର ପ୍ରଧାନ ମିଳନ ପୀଠ ପୁଣି ଭାରତର ବିଦ୍ୟାନଗରୀ କାଶୀ ଓ ଭାରତୀୟ ସଂସ୍କୃତିର ସଙ୍ଗମ ସ୍ଥଳ ପ୍ରୟାଗର ସମୁଜ୍ଜ୍ୱଳ ସଙ୍କେତ ଏହି ଉତ୍ତରପ୍ରଦେଶ । ସଦ୍‌ଭାବନା ଯାତ୍ରାରେ ଯୋଗ ଦେଇ-ଥିବା ତିନିଜଣ ସାହିତ୍ୟିକଙ୍କର ଖଣ୍ଡିଏ ସଚିତ୍ର ପରିଚୟ ପତ୍ରର ଦ୍ୱିତୀୟପୃଷ୍ଠରେ ମୁଦ୍ରିତ ହୋଇଥାଏ—

"ଉତ୍ତରପ୍ରଦେଶ ମେଁ ଆଗରା, ଇଲାହାବାଦ, ବାରାଣସୀ ତଥା ଲକ୍ଷ୍ନୌ ନଗରୀକେ ସଦ୍‌ଭାବନା ଯାତ୍ରା । ହିନ୍ଦୀତରଭାଷୀ ପ୍ରାନ୍ତୋଁକେ ତୀନ୍ ମୂର୍ଦ୍ଧନ୍ୟ ସାହିତ୍ୟକାରୋଁ କେ ସଦ୍‌ଭାବନା ମଣ୍ଡଳକେ ସଦସ୍ୟୋଁ" କା ସଂକ୍ଷିପ୍ତ ପରିଚୟ—

ମୋର ସହଯାତ୍ରୀ ଅନ୍ୟ ଦୁଇଜଣ ହେଲେ:— ତେଲୁଗୁ ସାହିତ୍ୟର ସୁବିଖ୍ୟାତ କବି, ଔପନ୍ୟାସିକ ନାଟ୍ୟକାର ଓ ସମାଲୋଚକ ଶ୍ରୀ ବିଶ୍ୱନାଥ ସତ୍ୟ-ନାରାୟଣ। ଏବଂ ତାମିଲ ଭାଷାର ସୁପ୍ରତିଷ୍ଠିତ ଔପନ୍ୟାସିକ, ଆଲୋଚକ ଓ ଅନୁବାଦକ ଶ୍ରୀ କା. ନା. ସୁବ୍ରମଣ୍ୟମ୍ । ଶ୍ରୀ ସୁବ୍ରମଣ୍ୟମ୍‌ଙ୍କ ସଙ୍ଗେ ଆଗରୁ ପରିଚୟ ଥିଲା ଲକ୍ଷ୍ନୌ ପି. ଇ. ଏନ୍. କନ୍‌ଫରେନ୍ସ ସମୟରୁ । ଉଭୟଙ୍କ ସହିତ ମୋର ଭେଟହେଲା ମାର୍ଚ୍ଚ ୧୮ ତାରିଖ ସକାଳେ ନୂଆଦିଲ୍ଲୀ ଷ୍ଟେସନରେ । ହିନ୍ଦୀ ସଂସ୍ଥା ସଂଘର ଅଧ୍ୟକ୍ଷ ମୋର ପୂର୍ବ ପରିଚିତ ଶ୍ରୀ ଗଙ୍ଗାଚରଣ ସିଂ ଓ ପ୍ରଖ୍ୟାତ ହିନ୍ଦୀକବି ଶ୍ରୀ ରାମଧାରୀ ସିଂ "ଦିନକର" ମଧ୍ୟ ଆମର ସହଯାତ୍ରୀ ।

ନୂଆ ଦିଲ୍ଲୀରୁ ଆଗ୍ରା ପର୍ଯ୍ୟନ୍ତ ଗଲେ "ତାଜ୍ ଏକସ୍‌ପ୍ରେସ୍" । ଚେୟାର କାର୍ ବ୍ୟବସ୍ଥା ବେଶ୍ ଆରାମଦାୟକ । ଦିନ ଦଶଟାରେ ଆଗ୍ରା ଷ୍ଟେସନ । ଷ୍ଟେସନରୁ ପାଛୋଟି ନେବାକୁ ପ୍ରଚୁର ପୁଷ୍ପମାଲ୍ୟ ଘେନି ଉପସ୍ଥିତ ଥାଆନ୍ତି ଆଗ୍ରାର ବିଶିଷ୍ଟ ଲେଖକ ଓ ହିନ୍ଦୀସଂସ୍ଥା ସଂଘର କର୍ମକର୍ତ୍ତାବୃନ୍ଦ । ଉତ୍ତର-ପ୍ରଦେଶ ସରକାରଙ୍କ କୁଣିଆ ହୋଇ ସର୍କିଟ ହାଉସ୍‌ରେ ରହଣି । ପ୍ରତି ନଗରରେ ଉତ୍ତରପ୍ରଦେଶ ସରକାରଙ୍କ ବିଦ୍ୟାନ ଆତିଥେୟତା ।

ଆଗ୍ରାର ସର୍ବପ୍ରଥମ କାର୍ଯ୍ୟକ୍ରମ ଯାହା ହେବାର କଥା ତାହାହିଁ ସ୍ଥିର କରାଯାଇଛି—ତାଜମହଲ । ବହୁତ ଥର ଦେଖିଛି ବିଶ୍ୱବିଶ୍ରୁତ ଏହି ଅକ୍ଷୟ ପ୍ରେମର ପ୍ରତୀକ ତାଜମହଲ । ମାତ୍ର ଯେତେ ଦେଖୁଥିଲେ ନୂଆ ଦିଶୁଥାଇ । ତାଜମହଲର ସୌନ୍ଦର୍ଯ୍ୟ ଚିରନ୍ତନ ।

ସରକାରୀ ଅତିଥି ହେଲେହେଁ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ମଧ୍ୟାହ୍ନ ଓ ରାତ୍ରିଭୋଜନର ବିପୁଳ ବ୍ୟବସ୍ଥା

କରାଯାଇଥାଏ । ସନ୍ଧ୍ୟାରେ ଆଗ୍ରାର ନଗରପାଳଙ୍କ-ଦ୍ୱାରା ସମ୍ବର୍ଦ୍ଧନା କରାଯାଇ ମାନପତ୍ର ଦିଆଗଲା । ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଯେଉଁସଂଖ୍ୟକ ଫୁଲ, କର୍ପୂର ଓ ଜରିମାଳ୍ୟ ଅର୍ପଣ କରାଗଲା, ତାହା ଧାରଣ କରିବାକୁ କୌଣସି ଏକ ଜିରାଫର ଦୀର୍ଘତମ ଗ୍ରୀବାରେ ମଧ୍ୟ ସ୍ଥାନାଭାବ ଘଟିବ ବୋଲି ମନେହୁଏ ।

ଆମ୍ଭେମାନେ ନିଜ ନିଜ ମାତୃଭାଷାରେ ସମ୍ବର୍ଦ୍ଧନାର ଉତ୍ତର ଦେଇଥାଉଁ । ସଙ୍ଗେ ସଙ୍ଗେ ତାହାର ହିନ୍ଦୀ ତର୍ଜମା କରିଦିଅନ୍ତି ଆଗ୍ରା କେନ୍ଦ୍ରୀୟ ହିନ୍ଦୀ ସଂସ୍ଥାନରେ ଟ୍ରେନିଂ ପାଉଥିବା ବିଭିନ୍ନ ଭାଷାଭାଷୀ ହିନ୍ଦୀ ଶିକ୍ଷକମାନେ । ସେମାନେ ଭାରତର ସବୁ ଭାଷାଭାଷୀ ଅଞ୍ଚଳରୁ ଆସି ଏହି ଅନୁଷ୍ଠାନରେ ଶିକ୍ଷାଲାଭ କରନ୍ତି । ଓଡ଼ିଶାରୁ ଆସିଥିବା ସର୍ବଶ୍ରୀ ଫକୀରମୋହନ ପାଠୀ ଦିଗମ୍ବର ମିଶ୍ର, ଯୁଧିଷ୍ଠିର ଦାସ ଓ ଭୂତନାଥ ବଳଙ୍କ ସଙ୍ଗେ ମୋର ଭେଟହୁଏ । ଅନ୍ୟାନ୍ୟ ରାଜ୍ୟର ଶିକ୍ଷାର୍ଥୀଙ୍କ ତୁଳନାରେ ଓଡ଼ିଶାର ଶିକ୍ଷାର୍ଥୀମାନଙ୍କ ଅଭାବ ଅଭିଯୋଗ ଅଧିକ । କିନ୍ତୁ ମୋ ହାତରେ ତା'ର ପ୍ରତିକାର ନାହିଁ । କେନ୍ଦ୍ରୀୟ ହିନ୍ଦୀ ସଂସ୍ଥାନରେ ଯୋଗ ଦେବାର ସୁଯୋଗ ମଧ୍ୟ ଆମର ଘଟିଥିଲା ।

ମୁଁ ଏଠାରେ ମୋର ଛାତ୍ରାବସ୍ଥାରେ ହିନ୍ଦୀ ଶିକ୍ଷାର ଅଭିଜ୍ଞତା ବର୍ଣ୍ଣନା କରିଥିଲି । ହିନ୍ଦୀ ଭାଷାରେ ଲିଙ୍ଗ-ପ୍ରତ୍ୟୟ କିପରି ଦୁଷ୍କର, ତାହାର କେତେକ ଉଦାହରଣ ଶ୍ରୋତାମାନଙ୍କ ସମକ୍ଷରେ ଅତ୍ୟନ୍ତ ହାସ୍ୟୋଦ୍ଦୀପକ ହୋଇଥିଲା । ମୋର ଓଡ଼ିଆ ଭାଷଣ କିନ୍ତୁ ଶ୍ରୋତାମାନଙ୍କ ପକ୍ଷରେ କୁଆଡ଼େ ଏପରି ସୁବୋଧ ହୋଇପଡ଼ିଥିଲା ଯେ, ହିନ୍ଦୀସଂସ୍ଥା ସଙ୍ଘର ଅଧ୍ୟକ୍ଷ ତାହାର ହିନ୍ଦୀ ରୂପାନ୍ତର ଅନାବଶ୍ୟକ ବୋଲି ମତ ଦେଲେ । ଏହାପରେ ବନାରସ ଓ ଲକ୍ଷ୍ନୌରେ ମୁଁ କେବଳ ଓଡ଼ିଆରେ ଭାଷଣ ଦେଇ ଓ ନିଜ କବିତା ପାଠକରି ପ୍ରଚୁର କରତାଳି ଅର୍ଜନ କରିଥିଲି ।

ଶୁଭେଚ୍ଛା ଦଳର ଯାତ୍ରାରମ୍ଭ ହୁଏ ଆଗ୍ରାରୁ, ପୁଣି ତାହାର ପରିସମାପ୍ତି ଲକ୍ଷ୍ନୌରେ । ଏଇ ଦୁଇଟି ସ୍ଥାନରେ ହିଁ ମୁସଲମାନ୍ ସଂସ୍କୃତିର ପ୍ରାଧାନ୍ୟ ପ୍ରତିଷ୍ଠିତ । ତାହାର ପ୍ରାଚୀନ ପ୍ରତୀକ ତାଜମହଲ ଓ ଇମାମବାଡ଼ା । ଉଭୟ ସ୍ଥାନରେ ଗଜଲ୍‌ର ଖ୍ୟାତି । ଉର୍ଦ୍ଦୁର ପ୍ରତିଷ୍ଠା ଏକାଧିକ ଶତାବ୍ଦୀରୁ ପ୍ରଚଳିତ । ସାଧାରଣ ଆଗ୍ରାର ବ୍ୟବହାର ମଧ୍ୟରେ ଆଜିସୁଦ୍ଧା ତାହା ଲକ୍ଷିତ ହୁଏ । ସେଥି ସଙ୍ଗେ ସଙ୍ଗେ ଲକ୍ଷିତ ହୋଇଥାଏ ହିନ୍ଦୁ-ମୁସଲିମ୍ ସଂସ୍କୃତିର ସମ୍ମିଶ୍ରଣରେ ଏକ ପ୍ରାଣବନ୍ତ ସୁମାର୍ଜିତ ସଂସ୍କୃତି । ସାଧାରଣ ବ୍ୟବହାର ଓ କଥାବାର୍ତ୍ତାରେ ମଧ୍ୟ ତାହା ସୁସ୍ପଷ୍ଟ । ପଥଘାଟର ଶ୍ରମିକ ବା କୃଷକର ଭାଷା ସୁଦ୍ଧା ମାର୍ଜିତ ଓ ସମ୍ମାନିତ ବୋଲି ସହଜରେ ଧାରଣା ଜନ୍ମେ । କେଉଁ ସୁଦୂର ଅତୀତରୁ ଆଜିସୁଦ୍ଧା ଆଗ୍ରା ଏକ ଜୈନପୀଠ ରୂପେ ସୁପରିଚିତ । ଆଜି ମଧ୍ୟ ଜୈନମଠ, ଜୈନଧର୍ମର ଦିଗମ୍ବର ଓ ଶ୍ୱେତାମ୍ବର ସମ୍ପ୍ରଦାୟ ଆଗ୍ରାର ସୁପ୍ରାଚୀନ ପ୍ରାଣକେନ୍ଦ୍ର ହୋଇ ରହିଛି । ଜୈନମଠରେ ଶ୍ରୀଉପାଧ୍ୟାୟ ଅମରମୁନିଙ୍କ ସହିତ ସାକ୍ଷାତ୍କାର ସୁଯୋଗ ଆମର ଘଟିଲା । ତାହାଙ୍କ ଦ୍ୱାରା ବୈଦିକ, ଜୈନ ଓ ବୌଦ୍ଧଧର୍ମର ସାରତତ୍ତ୍ୱରୂପେ ସଂଗୃହୀତ ସୂକ୍ତିତ୍ରିବେଣୀ ଗ୍ରନ୍ଥରୁ ସେ ଆମ୍ଭମାନଙ୍କୁ ଖଣ୍ଡିଏ ଲେଖାଁ ଉପହାର ଦେଲେ । ସ୍ୱର୍ଗତ ରାଷ୍ଟ୍ରପତି ଡକ୍ଟର ଜାକିରହୁସେନ୍ ଓ ତଦାନୀନ୍ତନ ଉପରାଷ୍ଟ୍ରପତି ତଥା ବର୍ତ୍ତମାନ ରାଷ୍ଟ୍ରପତି ଶ୍ରୀ ଗିରିଙ୍କ ଅଭିମତ ସହ ଏହି ଗ୍ରନ୍ଥଟି ପ୍ରକାଶିତ ହୁଏ ୧୯୬୮ରେ ।

ଆଗ୍ରାରୁ ପ୍ରୟାଗ, ପ୍ରୟାଗରୁ କାଶୀ ପୁଣି କାଶୀରୁ ଲକ୍ଷ୍ନୌ । ପ୍ରତ୍ୟେକ ପ୍ରସିଦ୍ଧ ନଗରୀରେ ଦୁଇଟି ଦିନ ଅବସ୍ଥାନ । ପ୍ରତ୍ୟେକ ନଗରୀରେ ପୌର ସମ୍ବର୍ଦ୍ଧନା, ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧନା, ବିପୁଳ ସଂଖ୍ୟାରେ ଜରି ଓ ଫୁଲମାଳ, ବିଶିଷ୍ଟ କବି ସାହିତ୍ୟିକମାନଙ୍କ ସଙ୍ଗେ ମିଳନ, ପ୍ରତି ମୁହୂର୍ତ୍ତରେ ଉତ୍ସବମୟ ଜୀବନ ।

ଯମୁନା ତୀରବର୍ତ୍ତୀ ଆଗ୍ରା ଥିଲା ସମ୍ରାଟ ଶାହା-ଜାହାନଙ୍କ ପର୍ଯ୍ୟନ୍ତ ଭାରତର ରାଜଧାନୀ । ଗୋମତୀ ତୀରରେ ଲକ୍ଷ୍ନୌ । ଆଜି ଉତ୍ତରପ୍ରଦେଶର ରାଜଧାନୀ ।

ଅଷ୍ଟାଦଶ ଲକ୍ଷ୍ମଣପୁର ଆଜି ଲକ୍ଷ୍ନୌ ନାମରେ ଅଭିହିତ । ୧୭୮୪ ଖ୍ରୀଷ୍ଟାବ୍ଦରେ ଆସଫ୍ ଉଦ୍ଦୌଲାଙ୍କ ଦ୍ୱାରା ନିର୍ମିତ ଇମାମ୍‌ବାଡ଼ା ପ୍ରାସାଦ । ବିନା ସ୍ତମ୍ଭରେ ନିର୍ମିତ ବିରାଟ ପ୍ରାସାଦ ଦୀର୍ଘରେ ୧୬୨ ଫୁଟ, ପ୍ରସ୍ଥରେ ୫୩ ଫୁଟ ଓ ଉଚ୍ଚତାରେ ୫୦ ଫୁଟ । ସିଡ଼ିରେ ଉଠିଲେ ଓହ୍ଲାଇବାକୁ ବାଟ ପାଇବା କଠିଣ ।

ଆଗ୍ରା ଥିଲା ଉର୍ଦ୍ଦୁ ଗଜଲର ମହାକବି ଗାଲିବଙ୍କର କର୍ମକେନ୍ଦ୍ର । ଲକ୍ଷ୍ନୌ ସେହିପରି ମୁସ୍‌ଲିମ୍ ସଂସ୍କୃତିର ଶ୍ରେଷ୍ଠ ପ୍ରଶସ୍ତ । ବନାରସ୍‌ରୁ ଆସି ଲକ୍ଷ୍ନୌ ରେଳ-ଷ୍ଟେସନରେ ଓହ୍ଲାଇବା ମାତ୍ରେ ପୁଷ୍ପମାଲ୍ୟର ବିପୁଳ ସମ୍ବର୍ଦ୍ଧନା । ତାହାର ଭିତରୁ ଗୌରକାନ୍ତି କବି ଶ୍ରୀ ଅମୃତଲାଲ ନାଗରଙ୍କର ସହାସ୍ୟ ମୁଖ । ବିଖ୍ୟାତ ଲେଖକ ଶ୍ରୀ ଭଗବତୀଚରଣ ବର୍ମା ଓ ଯଶପାଲଙ୍କ ସହିତ ପୁନର୍ମିଳନ । ବିଭିନ୍ନ ଅନୁଷ୍ଠାନରେ କବିତା ପାଠୋତ୍ସବ, ପୁସ୍ତକାବଳୀ ଉପଢୌକନ ।

ରାଜଭବନରେ ରାଜ୍ୟପାଳ ଶ୍ରୀ ଗୋପାଳ ରେଡ୍ଡିଙ୍କ ଦ୍ୱାରା ଦିବା ଭୋଜନକୁ ନିମନ୍ତ୍ରଣ । ଅନ୍ୟ ଏକ ଭୋଜିରେ ମୁଖ୍ୟମନ୍ତ୍ରୀ ଶ୍ରୀ ଚନ୍ଦ୍ରଭାନୁ ଗୁପ୍ତଙ୍କ ସହ ମିଳନ ।

ସରକାର ପରିଚାଳିତ ଲକ୍ଷ୍ନୌର କଳା ଓ ହସ୍ତକର୍ମ ଶିକ୍ଷାର ମହାବିଦ୍ୟାଳୟଟି ଅନ୍ୟତମ ଦର୍ଶନୀୟ ସ୍ଥାନ । ଏହିଠାରେ ବିଖ୍ୟାତ ସ୍ଥପତି ଶ୍ରୀଧର ମହାପାତ୍ରଙ୍କ ସହିତ ଭେଟହୁଏ; ଆହୁରି ମଧ୍ୟ ଭେଟହୁଏ ଚାରୁ-କଳାର ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସଙ୍ଗେ । ଉଭୟେ ପୁରୀର ସନ୍ତାନ । ଶ୍ରୀଧର ହେଲେ ଶାନ୍ତି-ନିକେତନର ଶିକ୍ଷକ ସ୍ୱର୍ଗତ ଗିରିଧାରୀ ମହାପାତ୍ରଙ୍କ ପୁତ୍ର ।

ଲକ୍ଷ୍ନୌ କଳାମହାବିଦ୍ୟାଳୟର ବ୍ୟାବସାୟିକ କଳା, ବ୍ୟକ୍ତିଚିତ୍ର, ଦୃଶ୍ୟଚିତ୍ର, ଭାରତୀୟ ପଦ୍ଧତି, ମୂର୍ତ୍ତିକଳା ଆଦି ଏକାଧିକ ବିଭାଗ କେବଳ ଦେଖିବା ପାଇଁ ଗୋଟିଏ ଦିନ ବି ଯଥେଷ୍ଟ ନୁହେଁ, ଅଥଚ ଆମକୁ ଗୋଟିଏ ଘଣ୍ଟାଦେବାକୁ ସୁଦ୍ଧା ସମୟ ନ ଥିଲା । ତେଣୁ ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କୁ ନିରାଶ କରି ଆମକୁ ମଧ୍ୟ ନିରାଶ ହେବାକୁ ପଡ଼ୁଥାଏ ।

ସବୁଠାରୁ ବେଶୀ ନିରାଶ ହେବାକୁ ପଡ଼ୁଥାଏ ଏତେ ସ୍ନେହ ଏତେ ପ୍ରାଣପ୍ରାଚୁର୍ଯ୍ୟର ପ୍ରତିଦାନ ଦେବାରେ ନିଜର ଅସାମର୍ଥ୍ୟ ଅନୁଭବ କରି ଲକ୍ଷ୍ନୌରେ ସବୁଠାରୁ ମୋତେ ଅଧିକ ବିସ୍ମୟକର ବୋଧହେଲା, ରାଜଭବନରୁ ଆରମ୍ଭ କରି ବିଭିନ୍ନ ଅନୁଷ୍ଠାନରେ ମୋର ଓଡ଼ିଆ ଭାଷଣ ଓ ସ୍ୱରଚିତ କବିତାବୃତ୍ତି ହିନ୍ଦୀ ବା ଉର୍ଦ୍ଦୁରେ ରୂପାନ୍ତରିତ ନ ହୋଇ ସୁଦ୍ଧା ଲକ୍ଷ୍ନୌ ଭଳି ଉର୍ଦ୍ଦୁ ପ୍ରଧାନ ନଗରୀରେ ସର୍ବଜନ ସୁବୋଧ ହେବା ।

ମନେହେଲା, ଭାଷାଭେଦ କେବଳ ଗୋଟାଏ ବାହ୍ୟିକ ଆବରଣ । ସେ ଭାଷା ଯେବେ ହୃଦୟର ଭାଷା ବା ପ୍ରାଣର ଭାଷା ହୋଇପଡ଼େ, ସେତେବେଳେ ତାହାର ବାହ୍ୟ ଆବରଣଟା ଆପେ ଆପେ ମିଳାଇ ଯାଏ । ପ୍ରାଣ ସହିତ ପ୍ରାଣର, ଅନ୍ତର ସହିତ ଅନ୍ତରର, ମଣିଷ ସହିତ ମଣିଷର ମନକୁ ସେଇ ଭାଷା ଏକଜୁଟ କରେ । ସେଇ ଭାଷାର ନାମହିଁ ହେଲା ସାହିତ୍ୟ ।

( ଆକାଶବାଣୀ )

# ॥ ଭଉଁରିଆ ଶ୍ରାବଣ ॥

## ଫତୁରାନନ୍ଦ

[ଏ ଯୁଗର ଶ୍ରେଷ୍ଠ ହାସ୍ୟରସିକ ଓ ବ୍ୟଙ୍ଗକାର ଶ୍ରୀ ଫତୁରାନନ୍ଦ ଓଡ଼ିଶାର ଘରେ ଘରେ ସୁପରିଚିତ । ସ୍ୱତନ୍ତ୍ରତା ଯୋଗୁଁ ହିଁ ସେ ବନଫୁଲ ଅନୁଷ୍ଠାନ ତରଫରୁ ସ୍ୱର୍ଣ୍ଣପଦକ ପ୍ରାପ୍ତ । ଶ୍ରୀ ଫତୁରାନନ୍ଦ ଓଡ଼ିଶାର ପ୍ରତ୍ୟେକ ପତ୍ର ପତ୍ରିକାରେ ହାସ୍ୟରସ ପରିବେଷଣ କରି ଏକ ଯୁଗର ସୂତ୍ରପାତ କରିବାକୁ ସକ୍ଷମ ହୋଇ ପାରିଛନ୍ତି । ନିଚ୍ଛକ ହାସ୍ୟରସ ଓ ବ୍ୟଙ୍ଗ ପରିବେଷଣରେ ସେ ଶ୍ରେଷ୍ଠ, ବଳିଷ୍ଠ । ତାଙ୍କ ରଚିତ ନାଟିକା ଚିତ୍ରକର ଉପନ୍ୟାସ, ମଙ୍ଗଳବାରିଆ ସାହିତ୍ୟସଂସଦ, ହେରେସା, ବିଦୁଷକ ଇତ୍ୟାଦି ପୁସ୍ତକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ଜୀବନର ସବୁକିଛି ହରାଇ ଶ୍ରୀ ଫତୁରାନନ୍ଦ କେବଳ ଲେଖନୀକୁ କରି ନେଇଛନ୍ତି ନିଜର । ଚକ୍ଷୁ, ଅଙ୍ଗ ଓ ଭାଗ୍ୟର ବିକୃତି ତାଙ୍କୁ ହତୋତ୍ସାହ କରି ପାରିନାହି । "ଫତୁରାନନ୍ଦ" ଛଦ୍ମନାମ ହିଁ ତାଙ୍କୁ ପ୍ରତିଷ୍ଠିତ କରିଛି ସାହିତ୍ୟ ଦରବାରରେ । ସଂ. ବନଫୁଲ ]

ଭୃଗୁବାବୁଙ୍କ ମୁଖଚନ୍ଦ୍ରମାକୁ ସହଜରେ କେହି ଦେଖି ପାରନ୍ତି ନାହିଁ । ସେକ୍ରେଟେରି ଥିଲାବେଳେ ମୁହଁଟା ସବୁବେଳେ ତଳକୁ ହୋଇ ଫାଇଲ ଉପରେ ଲାଖି ରହିଥାଏ । କଏ କେମିତି କେତେବେଳେ କଅଣ ପଚାରିଲେ ସେହି ଫାଇଲ ସାଙ୍ଗରେ କଥାବାର୍ତ୍ତା କଲା-ପରି ଉତ୍ତର ଦିଅନ୍ତି । ତାଙ୍କ ମୁହଁଟା ଉପରକୁ ଉଠେନି କି କେହି ସେ ମୁହଁର ଶୋଭାଟିକୁ ଦର୍ଶନ କରି ପାରନ୍ତି ନାହିଁ । ଯାହାବି ଟିକିଏ କଉତୁଟିଆ ଦେଖିବାକୁ ମିଳୁଥିଲା, ପେନ୍‌ସନ ପରେ ସେତକ ଗଲା । ଯେତେବେଳେ ଯିଏ ଯେମିତି ତାଙ୍କ ଘରକୁ କଥାବାର୍ତ୍ତା ହେବାକୁ ଗଲା ସେତେବେଳେ ସେ ଦେଖିଲା ଭୃଗୁବାବୁଙ୍କ ମୁହଁ ହୁଏତ ଖବର କାଗଜ, ମ୍ୟାଗାଜିନ୍ ବା କୌଣସି ବହିରେ ରାହୁଗ୍ରସ୍ତ ଚନ୍ଦ୍ରମାପରି ସମ୍ପୂର୍ଣ୍ଣ ଆବୃତ । ସେ ବସିଥାଆନ୍ତି ଗୋଟିଏ ଆରାମ ଚଉକିରେ ଆଉ ମେଲା ବହି, ପତ୍ରିକା ବା ଖବରକାଗଜ ମୁହଁଟାକୁ ପୂରାପୂରି ଢାଙ୍କି ଦେଇଥାଏ । ଜଣେ ଲୋକ ଯେପରି ଖାଇଲାବେଳେ ପିଠି କୁଣ୍ଡେଇ ହୋଇପାରେ ଓ ସେହି କୁଣ୍ଡେଇ ହେବା କାର୍ଯ୍ୟ ଯେପରି ଖାଇବା କାର୍ଯ୍ୟରେ କିଛି ବ୍ୟାଘାତ ସୃଷ୍ଟି କରେ ନାହିଁ ସେହିପରି ଭୃଗୁବାବୁଙ୍କର ବନ୍ଧୁମାନଙ୍କ ସହିତ କଥାବାର୍ତ୍ତା ହେବା କାର୍ଯ୍ୟ ବହିପଢ଼ାରେ କୌଣସି ପ୍ରକାର ବ୍ୟାଘାତ ସୃଷ୍ଟି କରି ପାରୁ ନ ଥାଏ, ଫଳରେ ଖବର-କାଗଜ ପଛରୁ ମୁହଁପଦାକୁ ବାହାରୁ ନଥାଏ କି ବନ୍ଧୁ-ମାନେ ମୁହଁ ଦେଖିବାର ସୁଯୋଗ ପାଉ ନ ଥାନ୍ତି ।

ଏପରି ପଢ଼ିବା ନିଶା ଭୃଗୁବାବୁଙ୍କର ଏତେ ପ୍ରବଳ ହୋଇ ଉଠିଲା ଯେ ସେ ଖବର କାଗଜଟିଏ ପାଇଲେ ତାହାର ନାମଠାରୁ ଆରମ୍ଭ କରି ଅମୁକ ପ୍ରେସ୍‌ରେ ତମୁକଙ୍କ ଦ୍ୱାରା ପ୍ରକାଶିତ ଓ ମୁଦ୍ରିତ ପର୍ଯ୍ୟନ୍ତ ନ ପଢିଲା ଯାଏ ତାକୁ ଛାଡ଼ୁ ନ ଥିଲେ । ତାଙ୍କ ପଢ଼ିବା ନିଶା ଅଫିମ ନିଶାକୁ ବଳିଗଲା । ତାଙ୍କୁ ଅନ୍ୟ କୌଣସି ବିଷୟରେ ଚିନ୍ତା କରିବାକୁ ପଡ଼ୁ ନ ଥିଲା । ପିଲାମାନେ ସେତେ-ବେଳକୁ ପାରି ଯାଇଥିଲେ । ସମସ୍ତେ ଭଲ ଭଲ ବଡ଼ ବଡ଼ ଚାକିରିରେ ନିଯୁକ୍ତ ହୋଇ ସାରିଥିଲେ । ମାସକୁ

ମାସ ଯେ ଯାହାର ଦରମା ଟଙ୍କା ଆଣି ବୁଢ଼ାଙ୍କ ପାଦ ପାଖରେ ଦ୍ଥାଇ ଦେଉଥିଲେ । ବୁଢ଼ା ବି ବେଳ ଉଣ୍ଡି ବୋହୂମାନଙ୍କୁ ଡାକି ସେମାନଙ୍କ ହାତରେ ସେମାନଙ୍କ ସ୍ୱାମୀମାନଙ୍କ ଦରମା ଟଙ୍କା ଗୁଞ୍ଜି ଦେଉଥିଲେ । ବୋହୂମାନେ ବି ଶଶୁରଙ୍କ ମନ ଜାଣି ସବୁକାମ କରି ଯାଉଥିଲେ । ତାଙ୍କୁ କିଛି ମାଗିବାକୁ ପଡ଼ୁ ନ ଥିଲା । ଯେତେବେଳେ ଯାହା ଲୋଡ଼ା ତା ପୂର୍ବରୁ ପୁଅ ବୋହୂ-ମାନେ ପାଖରେ ଆଣି ଥୋଇ ଦେଉଥିଲେ । ଏଥିରେ ଭଗୁବାବୁଙ୍କ ଆଉ ଚିନ୍ତା ରହିବ କଅଣ ? କେବଳ ଗୋଟିଏ ଚିନ୍ତା ରହିଲା—ସେଇଟା ହେଉଛି ପଢ଼ିବା । କୁକୁଡ଼ାର ଗୋଟିଏ ଛୁଆ ଗୁଡ଼ାଏ ଅନ୍ୟ ସବୁ ଛୁଆ ମରିଗଲେ ହେଇଟି ଯେମିତି ଗୁହୁଁ ଗୁହୁଁ ଥାକୁଲ ହୋଇଯାଏ ଭଗୁବାବୁଙ୍କ ଏହି ପଢ଼ିବା ଚିନ୍ତାଟା ଅନ୍ୟ ସବୁ ଚିନ୍ତାର ଅଭାବରେ ବେଶ୍ ମୋଟେଇ ଉଠିଲା । ପିଲାମାନେ ବହି, ପତ୍ରିକା, ଖବରକାଗଜ କେତେ ଆଣି ତାଙ୍କ ଆଗରେ ଗଦେଇଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଆଖିର ଜ୍ୟୋତି କମିଯାଏ । ଭଗୁବାବୁଙ୍କର ବାଁ ଆଖିର ଜ୍ୟୋତି କ୍ରମେ କମିବାକୁ ଲାଗିଲା । ହେଲେ ଡାହାଣ ଆଖି କାମଟା ଚଳେଇ ନେଉଥାଏ । ପଢ଼ିଲେ ପଢ଼ିଲେ ଭଗୁବାବୁ ଏଇକି ଠଉରେଇ ପାରି ନ ଥିଲେ, ଯେଉଁଦିନ ସେ ପରୀକ୍ଷା ମୂଳକ ଭାବେ ଏ ଆଖି ବୁଜି ସେ ଆଖିରେ ଓ ସେ ଆଖି ବୁଜି ଏ ଆଖିରେ ପଢ଼ିବାକୁ ଚେଷ୍ଟାକଲେ ସେଇଦିନ ସେ ଜାଣିପାରିଲେ ଯେ ତାଙ୍କ ବାଁ ଆଖି ଆଉ କାମ କରୁନି । ବାପା ଚୁକିଲେ ପୁଅମାନେ ଡାକ୍ତର ପାଖକୁ ଦଉଡ଼ୁଥିଲେ । ବାପାଙ୍କ ବାଁ ଆଖିକୁ ଦିଶୁନି, ଏଥିରେ କି ଆଉ ସମ୍ଭାଳା ପଡ଼େ ! ଗୋରୁ ଅଡ଼େଇ ଗୁହାଳରେ ପୂରେଇଲା ପରି ଡାକ୍ତର ଦଳ ଆଣି ଘରେ ଭର୍ତ୍ତି କଲେ ।

ଆଗେ ଡାକ୍ତର ଜଣେ ଯେମିତି ଯୋଚା ସିଲେଇ ଠାରୁ ଚଣ୍ଡୀପାଠ ପରି ସବୁକାମ ଅର୍ଥାତ୍ ସବୁ କିଛି ରୋଗର ଚିକିତ୍ସା ଏକୁଟିଆ କରି ପାରୁଥିଲେ । ଆଜିକାଲି ତାହା ସାତ ସପନ ହେଲାଣି । ଜାତିଭେଦରେ ଡାକ୍ତର ହରେକରକମର ହେଲେଣି; ଯଥା—ଆଖି ଡାକ୍ତର, କାନ ଡାକ୍ତର, ନାକ ଡାକ୍ତର, ଦାନ୍ତ ଡାକ୍ତର, ଗଳା ଡାକ୍ତର, ଚମ ଡାକ୍ତର, ନଖ ଡାକ୍ତର, ବାଳ ଡାକ୍ତର, ହାଡ଼ ଡାକ୍ତର, ମଗଜ ଡାକ୍ତର, ହାର୍ଟ ଡାକ୍ତର, ଫୁସ୍ ଫୁସ୍ ଡାକ୍ତର, ରକ୍ତ ଡାକ୍ତର, ଧାତୁ ଡାକ୍ତର, ଛୁଆ ଡାକ୍ତର ଓ ମାଆ ଡାକ୍ତର ଏମିତି ଅସଂଖ୍ୟ କିସମର ଡାକ୍ତର । ଗୋଟିଏ ଡାକ୍ତର ଅନ୍ୟ ଡାକ୍ତରର ଫାଇଦା ମାଡ଼େନି । ଯାହାର ଯେଉଁଟା ସେ ସେଇଟାକୁ କେବଳ ଜକଟି ମକଟି ଧରି ରହିବ ।

ଭଗୁବାବୁଙ୍କ ରୋଗଟାର ସମ୍ପର୍କ ଥିଲା ଆଖି ସହିତ । ତେଣୁ ସମସ୍ତେ ତାଙ୍କୁ ଆଖି ଡାକ୍ତରଙ୍କ ମାର-ଫତରେ ଗୁଡ଼ାଏ ନିଜ ନିଜ ବାଟ ଦେଖିଲେ । ଆଖି ଡାକ୍ତର ଆଖି ଚନ୍ନ ଚନ୍ନ କରି ପରୀକ୍ଷା କରି ସାରି ସଂକ୍ଷେପରେ ସବୁ ବୁଝାଇ ଦେଲେ—"ଦେଖନ୍ତୁ ଏଇଟା ବାଁ ଆଖିଟାରେ ମୋତିଆବିନ୍ଦୁ ହୋଇଛି । ଡାହାଣ ଆଖିଟା ଠିକ୍ ଅଛି । ବାଁ ଆଖିର ମୋତିଆବିନ୍ଦୁଟି ପାକଳ ହୋଇଗଲାଣି ତେଣୁ ସେ ଆଖିରେ ଅସ୍ତ୍ରୋପଚାର କରାଗଲେ ପୁଣି ଦୃଷ୍ଟିଶକ୍ତି ଫେରି ଆସିବ । ଗୋଟିଏ ଆଖିକୁ ଦିଶୁଛି ବୋଲି ଅନ୍ୟ ଆଖିଟାର ଅପରେସନ କରା ନ ଗଲେ କାଳକ୍ରମେ ଦୃଷ୍ଟିଶକ୍ତି ଏକଆଖିଆ ହୋଇଯିବ । ପରେ ବାଁ ଆଖିଟା ସମ୍ପୂର୍ଣ୍ଣ ଅକାମୀ ହୋଇଯିବ । ପଛନ୍ତେ ଅପରେସନ୍ କଲେ ବି ଆଉ କିଛି ଫଳ ମିଳିବନି । ଏଣୁ ଅପରେସନ୍‌ଟା ଯେତେ ଶୀଘ୍ର ହୋଇଯାଏ ସେତେ ଭଲ ।"

ଭଗୁବାବୁ ପଚାରିଲେ—"ଆଜ୍ଞା ମୋର ତ ଡାହାଣ ଆଖିଟା ଭଲ ଅଛି । ବାଁ ଆଖି ଅପରେସନ ହୋଇଥିଲା ବେଳେ ଡାହାଣ ଆଖିରେ ପଢ଼ିବା ପାଇଁ କିଛି ଅସୁବିଧା ହେବ ନାହିଁ ତ ? ମୁଁ ସବୁ ସହ୍ୟ କରି ପାରିବି; କିନ୍ତୁ ବହି ପଢ଼ା ବନ୍ଦ କରିବା ମୋ ପକ୍ଷେ ଅସହ୍ୟ । ତା ବନ୍ଦ କରି ପାରିବିନି ।"

ସାନ୍ତ୍ୱନା ଦେଇ ଡାକ୍ତର କହି ଲାଗିଲେ—"ଆଜ୍ଞା ଗୋଟିଏ ଆଖି ଅପରେସନ ହେଲେ ବି ୩।୪ ଦିନ ଯାଏ ଦୁଇଟିଯାକ ଆଖି ବନ୍ଦ କରିବାକୁ ପଡ଼ିବ । ଭଲ ଆଖିର ବ୍ୟବହାରଦ୍ୱାରା ଅପରେସନ ହୋଇଥିବା ଓ ପୂର୍ଣ୍ଣ ବିଶ୍ରାମ ଲୋଡ଼ୁଥିବା ଆଖିଟି ଉପରେ ଚାପ ପଡ଼େ । ଏଣୁ ୩।୪ ଦିନ ପାଇଁ ଦୁଇଟି ଯାକ ଆଖିରେ ପଟି ଭିଡ଼ି ଦେବାକୁ ପଡ଼େ । ଏହାପରେ ଭଲ ଆଖିଟି ଖୋଲି ଦିଆଯିବ । ଆପଣ ଏ ଆଖିରେ ଦେଖାଶୁଣା କରି ପାରିବେ ହେଲେ ଆଉ ଆଖିଟି ସମ୍ପୂର୍ଣ୍ଣ ସୁସ୍ଥ ନ ହେବା ପର୍ଯ୍ୟନ୍ତ କହୁଚ୍ଛି ପଢ଼ାପଢ଼ି କରିବା ଅନୁଚିତ ।"

ପଢ଼ାପଢ଼ି ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ କରିବାକୁ ହେବ ବୋଲି ଶୁଣିବା ମାତ୍ରେ ଭୃଗୁବାବୁ ଚମକି ଉଠି କହିଲେ—"ଥାଉ ଥାଉ ଡାକ୍ତର ବାବୁ ! ମୋର ଆଖି ଅପରେସନ ଲୋଡ଼ା ନାହିଁ । ବଞ୍ଚି ଥାଉ ଥାଉ ମୁଁ ପଢ଼ାପଢ଼ି ବନ୍ଦ କରି ପାରିବିନି । ଏବେ ତ ମୋର କାମ ଚଳୁଚ୍ଛି । ମୋ ମଲା ପରେ ପଛେ ସେ ଆଖିଟା ଅପରେସନ୍ କରିବ, ଧନ୍ୟବାଦ ।"

ବାପାଙ୍କର ଏପରି ଅଦ୍ଭୁତ ଜିଗର ଦେଖି ପୁଅମାନେ ଚାଟକା ହୋଇଗଲେ । ଯେତେ ପ୍ରକାର ବୁଝାଇଲେ ବି ବାପାଙ୍କର ସେହି ଗୋଟାଏ ଜିଗର—ସେ ପଢ଼ା ବନ୍ଦ କରି ପାରିବେନି କି ଆଖି ଅପରେସନ୍ କରିବେନି । ବେଶି ବୁଝାବୁଝି କଲାରୁ ସେ ସାଫ୍ ସାଫ୍ ଶୁଣାଇ ଦେଲେ ଯେ ମଣିଷ ଯେପରି ଖାଇବା ପିଇବା ଛାଡ଼ି ଫେରିବା ଓ ପ୍ରସ୍ରାବ କରିବା ବିନା ବଞ୍ଚି ପାରେନି ସେ ସେହିପରି ପଢ଼ିବା ବିନା ବଞ୍ଚି ପାରିବେନି, ଆଉ ତାଙ୍କୁ ସେଥିରେ ବଳେଇବା ନିଷ୍ପ୍ରୟୋଜନ ।

ବଡ଼ପୁଅ ଶେଷରେ ମୁଣ୍ଡ ଖେଳେଇ ଗୋଟାଏ ଉପାୟ ସ୍ଥିର କଲା । ସେ କହିଲା—"ଆଚ୍ଛା ବାପା ! ଅପରେସନ ବେଳେ ତୁମ ପାଖରେ ବହି, ପତ୍ରିକା, ଖବରକାଗଜ ପଢ଼ିବାପାଇଁ ଆମେ ଲୋକ ଖଞ୍ଜି ଦେବା । ସେ ସବୁ ପଢ଼ୁଥିବ ଆଉ ତୁମେ ସବୁ ଶୁଣୁ ଥିବ । ଏତିକି ହେଲେ ତ ଆଉ ତୁମର କିଛି ଅସୁବିଧା ରହିବନି ।"

କଥାଟା ଭୃଗୁବାବୁଙ୍କ ମନକୁ ପାଇଗଲା । ସେ ସନ୍ତୋଷ ପ୍ରକାଶ କରି କହିଲେ, "ହଁ ସେତିକି ହୋଇ ପାରିଲେ ଆଉ ମୋ ଚିନ୍ତା କିଛି ରହିବ ନାହିଁ । ପଢ଼ିବା ଶୁଣିବା ଏକାକଥା । ଜଣେ ଯଦି ମୋତେ ଶୁଣାଇ ପାରିବ ଆଉ ମୋର ପଢ଼ିବାରେ କି ଦରକାର ?"

ବାସ୍, ଏତିକିରେ ସବୁ ନେଣ୍ଟିବି ଛିଣ୍ଡିଗଲା । ଶୁଭଦିନ ବାଛି ଭୃଗୁବାବୁ ଡାକ୍ତରଖାନାକୁ ଗଲେ । ସେଠି ଖଟିଆରେ ରହିବା ପରେ ଦେଖାଗଲା ଯେ ତାଙ୍କର ଲେଖା ଯୋଖାରେ ନାରୁଣୀ ସ୍ୱାମୀସ୍ତ୍ରୀ କେତେ ଜଣ ଷ୍ଟାଫ୍ ନର୍ସ ସେଠି ଅଛନ୍ତି । ଧଡ଼ାପଡ଼ା ହୋଇ ସେମାନେ ଅଜାଙ୍କ ଯତ୍ନ ନେବାକୁ ବାହାରି ଆସିଲେ । ଏଥିରେ ପୁଅମାନେ ଗଭୀର ଆଶ୍ୱସ୍ତି ଲାଭକଲେ ! ବାପାଙ୍କ ଅଭ୍ୟାସ ମେଣ୍ଟେଣ ପାଇଁ ଗୋଛା ଗୋଛା ବହି, ପତ୍ରିକା, ଖବରକାଗଜ ଆଣି ଜମାଇଦେଲେ । ଅପରେସନ ପରେ ଭୃଗୁବାବୁଙ୍କ ପାଖରେ ବସି ବହି ପତ୍ରିକାଦି ପଢ଼ିବାପାଇଁ ପାଠକ ଖୋଜା ହେଉଥିବାର ଜାଣି ସିଷ୍ଟର ଦିଜଣ କହିଲେ—"କାହିଁକି ? ଆମେ ଦୁଇଜଣ ତ ଅଛୁ । ଆମର ବି ଏଇ ଓ୍ୱାର୍ଡରେ ଡିଉଟି । ଆମେ ପାଳିକରି ଅଜାଙ୍କୁ ପଢ଼ି ଶୁଣାଇବା । ଅଜାଙ୍କୁ ଆନନ୍ଦ ଦେବା, ଆମର ବି କିଛି ଜ୍ଞାନ ଲାଭ ହୋଇଯିବ ।"

ଭୃଗୁବାବୁଙ୍କ ପୁଅମାନେ ନିଶ୍ଚିନ୍ତ ହୋଇ ପଢ଼ିଲା-ବାଲା ଖୋଜିବାରୁ ବିରତ ହେଲେ । ଅପରେସନ୍ ଘରକୁ ବାହାରିବା ପର୍ଯ୍ୟନ୍ତ ଭୃଗୁବାବୁ ବହି ଛାଡ଼ି ନ ଥିଲେ । ଶେଷକୁ ଅପରେସନ୍ ସରିଲା । ତାଙ୍କୁ ଖଟିଆରେ ଶୁଆଇ ଦେଇ ମୁଣ୍ଡ ଦୁଇ ପାଖରେ ପ୍ୟାକିଂ କଲାପରି ଦୁଇଟା ବାଲିମୁଣି ଗୁଞ୍ଜି ଦିଆଗଲା, ମୁଣ୍ଡ ଯେପରି ଟିକିଏ ହେଲେ ନ ହଲେ । ତିନି ଦିନ ଯାଏ ମୁଣ୍ଡ କି ଦେହ କିଛି ନ ହଲେଇବାକୁ ତାଗିଦ୍ କରି ଦିଆ ହୋଇଥିଲା । ଫଳରେ ସେ କାଠ ଗଡ଼ପରି ନିଶ୍ଚଳ ହୋଇ ପଡ଼ି ରହିଥାନ୍ତି । ଅବସାଦକ ଇଞ୍ଜେକ୍ସନ ଯୋଗୁଁ

ପହିଲେ ଘମ୍‌ଘୋଟ ନାଦ ହୋଇଗଲା । ସନ୍ଧ୍ୟାବେଳକୁ ନାଦ ବିଲ୍‌କୁଲ 'ସଫା' ହୋଇଗଲା । କୁଁ କାଁ ଶବ୍ଦ କରିବାରୁ ନାଗୁଣୀ ନର୍ସଟି ପାଖକୁ ଆସି ଖବର ଅନ୍ତର ନେଲା । ଘଗୁବାବୁ ଧୀରେ ଧୀରେ କହିଲେ—"ଭଲ ଲାଗୁନି, କଅଣ ଟିକିଏ ପଢ଼ିଲେ ଶୁଣନ୍ତି ।"

"ହଉ ଅଜା ପଢ଼ୁଛି" କହି ନର୍ସଟି ଚଟାପଟ କାମ କେତୋଟି କରିଦେଲା ଓ ଘଗୁବାବୁଙ୍କ ପାଖରେ ବସି ପଢ଼ିବାପାଇଁ ଶିକାର ବହିଟିଏ ଧରିଲା । ସେ ବହିଟି ବି ଘଟୁବାବୁଙ୍କର ପସନ୍ଦ ହୋଇଗଲା । ନାଗୁଣୀ ନର୍ସ ପଢ଼ା ସୁରୁ କଲା । × ×

× × ଘାଇଲା ବାଘଟା ଲଟି ଭିତରେ ଲୁଚିଗଲା । ଲୋକେ ଯେତେ ଟିଣ ଓ ଢୋଲ ବାଡ଼େଇଲେ, ଯେତେ ହୋ ହା କଲେ ଯେତେ ଢେଲା ବୋଲିଅ ଲଟି ଭିତରକୁ ଫିଙ୍ଗିଲେ ବାଘ କିଛି ଶୁଣିଲା ନାହିଁ । ଶେଷକୁ—"ଆରେ ହେ ଏଙ୍ଗେନା ! ୧୫ ନମ୍ବରକୁ ମୁତ ଡବାଟା ଦେ ବିଚରା କେତେ କୁନ୍ଥେଇଲାଣି ତୋତେ ଶୁଭୁନି ।"

'ଘଗୁବାବୁ ଝାଳେଇ ଝାଳେଇ କହିଲେ, "କଅଣ କହିଲୁ, କଅଣ କହିଲୁ ଲଟିରେ ପୁଣି କିଏ କାହାପାଇଁ ମୁତଡବା ଦେବାକୁ କହିଲା ମ ? ନମ୍ବର କଅଣ ମ ? ବାଘ ଦେଖି କିଏ ମୁତି ପକାଇଲା କି ?"

"ନାହିଁ ଅଜା ସେସବୁ କିଛି ନୁହେଁ, ଇଆଡ଼େ ଟିକିଏ କହିଦେଲି, ଏବେ ଶୁଣ ।" ଶେଷରେ ମୁଁ ଦୋନଳିଆ ବନ୍ଧୁକ ନେଇ ଲଟିରେ ଗୁରୁଣ୍ଡି ଗୁରୁଣ୍ଡି ପଶିଲି । ଲଟି ଭିତର କିଟି କିଟି ଅନ୍ଧାର, ମନ ଦବି ଯାଉଥାଏ । ୪୦ ଗଜ ଗୁରୁଣ୍ଡି ଗୁରୁଣ୍ଡି ଯିବା ପରେ ଗୋଟାଏ ଗର୍‌ର୍ ଗରର୍ ଶବ୍ଦ ଶୁଭିଲା ।

"ଆରେ ହେ ଓଲୁ ! ୨୦ ନମ୍ବରକୁ ବେଡ଼ ପ୍ୟାନ ଦେ, କୁଆଡ଼େ ଗୃହିଁଛୁ ?"

ଘଗୁବାବୁ କହି ଉଠିଲେ—"ଏଁ ଏଁ ଶିକାରୀକୁ ସାଙ୍ଗେ ସାଙ୍ଗେ ଝାଡ଼ା ତଲବ ହେଇଗଲା ନା କଅଣ ମ ?"

"ନାହିଁ ନାହିଁ, ଏବେ ପଢ଼ୁଛି ଶୁଣ" କହି ନର୍ସ ପୁଣି ପଢ଼ି ଲାଗିଲା—ଗର୍‌ର୍ ଗର୍‌ର୍ ଶବ୍ଦ ଶୁଣି ଚାରି-ଆଡ଼କୁ ଚାହିଁଲି । କୁଆଡ଼େ କିଛି ଦେଖାଗଲା ନାହିଁ, ହେଲେ ମୋର ଆଗେଇବା ସଙ୍ଗେ ସଙ୍ଗେ ଗର୍‌ର୍ ଗର୍‌ର୍ ଶବ୍ଦ ବଢ଼ିଗଲା । ଶବ୍ଦ ଆଡ଼କୁ ନିରେଖି ଚାହିଁଲି । ପ୍ରାୟ ୨୦ ହାତ ଦୂରରେ ନିଳୁ ଜୁଳୁ ହୋଇ ଦୁଇଟା ଜଳନ୍ତା ଆଖି ଦିଶିଲା ।—"ଆରେ ହେ ! ୨୨ନମ୍ବର ମୁଣ୍ଡରୁ ଆଇସ୍ ବ୍ୟାଗ୍ ଖସିଗଲା, ଲଗେଇ ଦେ ।"—

ଅବାକ୍ ହେଲାପରି ଘଗୁବାବୁ ପଚାରିଲେ—"ଲଟି ଭିତରେ କାହା ମୁଣ୍ଡରେ ଆଇସ୍ ବ୍ୟାଗ୍ ? କିଏ ଆଇସ୍ ବ୍ୟାଗ୍ ଦେବାକୁ କହିଲା ? ବାଘ ସନ୍ଧାନରେ କାହାର ଦିହ ତାତି ବଢ଼ିଗଲା ? କି ଅଡ଼ୁଆ କଥା !"

"ନାହିଁ ନାହିଁ, ହଁ ଅଜା ପଢ଼ୁଛି ଶୁଣ" କହି ନାଗୁଣୀ ନର୍ସ ପୁଣି ପଢ଼ି ଲାଗିଲା—ଏଥରକ ପରିଷ୍କାର ମୁଁ ଜାଣି ପାରିଲି ବାଘ ମୋର ଆଡ଼କୁ ଚାହିଁ ଗର୍‌ର୍ ଗର୍‌ର୍ ହେଉଛି । ଆଗରେ ଘାଇଲା ବାଘ । ମୋ ରୁମ ଟାଙ୍କୁରି ଉଠିଲା । ନଳି ତାରି ଆଡ଼କୁ ଲକ୍ଷ୍ୟ କରି ରଖି ଘୋଡ଼ାଆରେ ଆଙ୍ଗୁଠି ରଖିଲି । ଏତେ ଦୂରରେ ହୁଏତ ଗୁଳି ଦୁଇଟା ବାଜି ନ ପାରେ କିମ୍ବା ଲଟିରେ ବାଜି ଅନ୍ୟ ଆଡ଼କୁ ଛିଟିକି ଯାଇପାରେ । ଏହା ଭାବି ଘୋଡ଼ଆ ଟିପିଲି ନାହିଁ । ବାଘଟା ଯେମିତି ମୋ ପାଖକୁ ଛୁଟି ଆସିବ ସେଥିପାଇଁ ଗୋଟାଏ ଢେଲା ତା ଉପରକୁ ଫୋପାଡ଼ିଲି । ଓଃ ବାଘଟା ବିକଟ ଗର୍ଜନ କରି ଚମକି ଆସିଲା—"ହା ଓଲୁ ! ଆଇସ୍ ବ୍ୟାଗ୍‌ଟା ଠିକ୍ କରି ଦେଇ ପାରୁନି । ରହ ରହ ହୁଣ୍ଡା କୋଉଠିକାର ।"—

ପଢ଼ା ମିନିଟିଏ ରହିଗଲା । ଏଣେ ଘଗୁବାବୁ ବିରକ୍ତ ହୋଇ ପଚାରିଲେ—"କଅଣ ଯେ ପାଗଳୀଙ୍କ ପରି ପଢ଼ି ଯାଉଛୁ ତାହା ତାକୁ ଜଣା । ଆଲୋ ଲଟିରେ ପୁଣି କାହା ମୁଣ୍ଡରେ ଆଇସ୍ ବ୍ୟାଗ୍ ? ପୁଣି ସେଠି କୋଉ ହୁଣ୍ଡାକୁ କାହା ମୁଣ୍ଡରେ ଦେଇ ଆସୁ ନ ଥିଲୁ ? କିଲୋ କିଛି କହୁନୁ କାହିଁକି ? ଚୁପ୍ ରହିଲୁ ଯେ—ଏଁ—"

ନର୍ସ ବକ୍ସଟାକୁ ଥୋଇଦେଲେ ରୋଗୀ ମୁଣ୍ଡରେ ଆଇସ୍ ବ୍ୟାଗ୍‌ଟି ଠିକ୍ ଭାବରେ ରଖି ଭଗୁବାବୁଙ୍କ ପାଖକୁ ପୁଣି ଧାଇଁ ଆସିଲା ଓ ବକ୍ସଟା ଧରି ପୁଣି ଆରମ୍ଭ କଲା—ଗର୍ଜନ କରି ଚମକ ଆସିଲା । ଏତେ ପାଖକୁ ଆସିଗଲା ଯେ ତାର ନାଲି ପାଟି ଓ ଉପୁଙ୍କର ଧଳା-ଧଳା ଦାନ୍ତ ମୁଁ ପରିଷ୍କାର ଦେଖି ପାରିଲି । ଦୋ ନଳ ବନ୍ଧୁକର ମୁହଁ ଠିକ୍ ତା ମୁଣ୍ଡକୁ ଲକ୍ଷ୍ୟ କରିଥାଏ । ଘଡ଼ଘଡ଼ ପରି ତା ହେଣ୍ଟାଳ ମୋ କାନକୁ ତାବ୍‌ଦା କରିଦେଲା । ଜୀବନ ଓ ମରଣର ଠିକ୍ ସନ୍ଧି ସ୍ଥଳ । ରାଗରେ ପାଚ ଯାଇଥିବା ଯାଉଳ ବାଘଟା ପନ୍ଝା, ନଖ, ଦାନ୍ତକୁ ବଡ଼ାଇ ଡାଳିକରି ମୋ ଉପରକୁ —"ହେଇ ସାର୍ ଆସିଲେଣି"—

ଭଗୁବାବୁ ବିରକ୍ତ ହୋଇ କହିଲେ—"ରଖ ତୋ ସାର୍‌ଙ୍କୁ । ବାଘଟା ଶିକାରି ଉପରକୁ କୁଦିଲା ବେଳକୁ ସାର୍ ଆସିଗଲେ । ଓଃ କ ଉତ୍କଣ୍ଠା ବେଳକୁ କଅଣ ଆସି ପହଞ୍ଚୁଛି । ହେଉ୍ ଏମିତିଆ ପଢ଼ା ମୋର ଲୋଡ଼ା ନାହିଁ ।"

ସେତେବେଳେ ଭଗୁବାବୁଙ୍କ ସେ କଥା ଶୁଣିବାକୁ ନାତୁଣୀ ନର୍ସଟି ବିଚରା ସେଠାରେ ନ ଥିଲା । ଅଖି ରୋଗ ପ୍ରଫେସରଙ୍କ ସେହି ଲମ୍ବା ଓ୍ୱାର୍ଡରେ ପଶିବା ଦେଖି ସେ ବହି ଛୁଡ଼ ଦେଇ ତାଙ୍କ ପାଖକୁ ଚାଲି-ଗଲା । ଡାକ୍ତର, ହାଉସ୍‌ସର୍ଜନ ଓ ନର୍ସ ସଦଳବଳେ ପ୍ରତ୍ୟେକ ରୋଗୀଙ୍କ ଖଟିଆ ପାଖରେ ୫।୧୦ ମିନଟ ଲେଖାଏଁ ରହି ପଚରାଉଚରା କରୁଥାନ୍ତି । ଏଡକ ବେଳେ ଭଗୁବାବୁଙ୍କ ବଡ଼ ପୁଅ ଆସି ପହଞ୍ଚିଗଲେ । ବଡ ଡାକ୍ତର ଭଗୁବାବୁ ଆଉ ତାଙ୍କ ପୁଅଙ୍କ ସଙ୍ଗେ କଥାବାର୍ତ୍ତା କରି ଚାଲିଗଲେ । ଓ୍ୱାର୍ଡରୁ ଯିବା ପର୍ଯ୍ୟନ୍ତ ନର୍ସ ବିଚରା ବାଧ ହୋଇ ତାଙ୍କ ପାଖେ ରହିଲା । ଏହି ସମସ୍ତ ଭିତରେ ଭଗୁବାବୁଙ୍କ ପୁଅ ତାଙ୍କ ପାଖକୁ ଯାଇ ଥରି ଥରି କ ଣ ପଚାରିଲେ—"ବାପା ! ମେ ଭୁମ ପାଖରେ ପଢ଼ୁଥିଲା ?"

ଭଗୁବାବୁ ବିରକ୍ତ ହୋଇ କହିଲେ—"ଲୋଡ଼ା-ନାହିଁ ସେ ପଢ଼ା । ନିଜ ଆଖି ଗଲା ଆଉ ପର ଅଖି ପଡ଼ାରେ ଥିବା ଚଡ଼୍‌ଭଟା ଏବେ ମୁଁ ବୁଝିଲି । ନିଶ୍ଚିନ୍ତ ନହେଲେ ଜଣେ ଲୋକ କେବେହେଁ ଠିକ୍ ଭାବରେ ପଢି ପାରିବନି । ବିଚରୀ ତା'ର କାମ ଉପରେ କାମ । ତା'ଠୁଁ ଶୁଣିବା ଅର୍ଥ ଛଟ ପଟ ହେବା । ଆଉ କଣେ କାହାକୁ ଦେଖ । ମୋତେ ପ୍ରତି ମିନଟ ଗୋଟାଏ ଦିନ ପରି ଲାଗୁଛି । ଅନ୍ୟ ବ୍ୟବସ୍ଥା କରିବା ପର୍ଯ୍ୟନ୍ତ ଭଗୁବାବୁଙ୍କ ପୁଅ ସାମୟିକ-ଭାବେ ତାଙ୍କ ପିଅନକୁ ଖବର କାଗଜ ପଢ଼ିବା ପାଇଁ ବସେଇ ଦେଇଗଲେ । ନର୍ସଟି ମଧ୍ୟ ଆଶ୍ୱସ୍ତ ହୋଇ ତାହା ଅନୁମୋଦନ କଲା । ପିଅନଟି ଖବରକାଗଜ ଧରି ଆରମ୍ଭ କଲା— × × ×

× × × ଉତ୍କଳ ଜନା ପୂର୍ଣ୍ଣିମ୍ନେ ଗାନଦେଇକ ନଚାଆ ଗେଇଲା । ଅଟି ସପା ଝଡରେ କୋଲ ପଟାଏ ପକା ଇଦେଇଗୋ ଲଶମାନେ ଲୁଦବୁ ହାଗ୍ୟାସ ସେଲଧ ରିପ୍ରସ୍ତୁ ଉହୋଇର ଛିଲେ—

ଭଗୁବାବୁ ଗାଟି କରି ଉଠିଲେ "ଆରେ ହେ ! କ ଭାଷାଟା ପଢ଼ୁଛୁ । ମୋର ଜାଣିଥିବା ୬୫ଟା ଭାଷାରୁ ଏଇଟା ତ କେଉଁଟା ହେଲେ ନୁହଁ ।—"

"ଆଜ୍ଞା ଏଇଟା ତଗ ଓଡ଼ିଆ ସମାଜ ।" ବୋଲି ଗରିବା ଭଣନ ମାନିଜ ନଡା କୋଲ ପଟାକୁ ଭାଙ୍ଗିଦେଲେ ଓପ ଶିଗଲେ । ପୁଲ ଶବା ଧହୋଇ ଲୁଦବୁ ହାଗ୍ୟାସ—

"ରଖ ରଖ ତୋ ହାଗ୍ୟାସ ମୃତ୍ୟାସ । ଏ ଗୁଡ଼ାକ ଶୁଣିଲା ବେଳକୁ ମୋର ଦେହ ଶିରି ଶିରି ହେଉଛି । ଯା ଯା ତୁ ତୋ କାମରେ ଯା । ଆଉ ପଢ଼ିବା ଦରକାର ନାହିଁ । ପୁଅଟା କ ବାହଗଞ୍ଜ କଲା ।"—

ଡରି ମରି ପିଅନଟି ପଢ଼ା ବନ୍ଦ କରି ଚୁପ ହୋଇ ରହିଲା ।

ଭଗୁବାବୁଙ୍କ ପୁଅ ଏପରି ଅବସ୍ଥା ଦେଖି ତରତର ହୋଇ ନିଜ ପୁଅକୁ ସ୍କୁଲ ଯିବାରୁ ବନ୍ଦ କରିରେ ବୁଢ଼ା

ବାପାଙ୍କ ପାଖରେ ... କାଗଜ ପଢ଼ିବା ପାଇଁ ବସାଇ ଦେଲେ । ଆଜିକୁ ଭୃଗୁବାବୁ ପଢ଼ାଟା ଭଲ ହେବ ଭାବି ଅଶ୍ୱସ୍ତ ହେଲେ । ନାତି ଖବର କାଗଜଟା ଧରି ପଢ଼ି ଚାଲିଲା—ନିରାପତ୍ତାପରିଷଦରେଇସ୍ରାଇଲ (ହେକ୍) ପ୍ରଶ୍ନଗତକାଲିସୁଏଜ (ହେକ) ଅଞ୍ଚଳରେ ଆରବଇସ୍ରାଇଲ (ହେକ୍) ଉପେଜିଁଲଢ଼େଇହୋଇ ଗଲାଆରଜନ୍ତ୍ରିବଗ୍ରର (ହେକ୍) ପାଲିଁନରାପତ୍ତା ପରିଷଦରବୈଠକବସିଥିଲା ଆରବରପ୍ରତିନଧି (ହେକ୍) ଇସ୍ରାଇଲ (ହେକ୍)—

ଭୃଗୁବାବୁ ପଢ଼ା ବନ୍ଦ କରାଇ କହିଲେ—"ଆରେ ଗିଲାସେ ପାଣି ପିଇଦେ । ଦୁଇପଦ ପଢ଼ିବା ପରେ ହେକୁଟି ମାରିଲେ ମୁଁ କଅଣ ବୁଝିବି ।"—

ବୁଢ଼ାପାଙ୍କ କଥା ମାନି ନାତି ଗିଲାସେ ପାଣି ଟେଣ୍ଡି ଦେଲା ଓ ହେକୁଟିଟା ବନ୍ଦ ହେବାରୁ ପୁଣି ଆରମ୍ଭ କଲା—ଆରବପ୍ରତିନଧିଇସ୍ରାଇଲ୍‌କୁଦୋଷୀସାବ୍ୟସ୍ତ କରିବାପାଇଁନାନାତଥ୍ୟଦେଇଥିଲେଇସ୍ରାଇଲ୍‌ତାହା ଖଣ୍ଡନକରିଆରବଆଗଭସୁକାଇଛନ୍ତିବୋଲିକହିଲେ ଶେଷରେସଭାପତିଙ୍କଅନୁରୋଧକ୍ରମେଉଭୟେଯୁଦ୍ଧ ବନ୍ଦରପ୍ରତିଶ୍ରୁତିଦେଲେସଭାପତିପର୍ଯ୍ୟବେକ୍ଷକ—

ଭୃଗୁବାବୁ ପାଟି କରି ଉଠିଲେ—"ଆରେ ହେ ଏକ୍ସପ୍ରେସ୍ ଗାଡ଼ି ତୁ ବୋଧହୁଏ ପୁରୀରୁ ଏକାଥରକେ ହାବଡ଼ାରେ ଉଠିବୁ । ହଇରେ ଯେତକ ପଢ଼ିଲୁ ସେଥିରେ କଅଣ ଗୋଟିଏ ହେଲେ କମା ପୂର୍ଣ୍ଣଚ୍ଛେଦ ନାହିଁ ? ଟିକଏ ଥୟ ହୋଇ ପଢ଼ ।"

"ହଉ ଆସ୍ତେ ଆସ୍ତେ ପଢ଼ୁଛି କହି ନାତି ପୁଣି ଆରମ୍ଭ କଲା— ଉଁ— ଉଁ— ଉଁ— ପର୍ଯ୍ୟବେକ୍ଷକ ଦଳ—ଏଁ ଏଁ ଏଁ ଏଁ—ପଠାଇବାର ଉଁ ଉଁ ଉଁ—ବ୍ୟବସ୍ଥା ଏଁ ଏଁ ଏଁ କଲେ । ଉଁ ଉଁ ଉଁ—

ଭୃଗୁବାବୁ ରଡ଼ି ଛାଡ଼ିଲେ—"ଥାଉ ଥାଉ ତୋ ଏଁ ଏଁ ଉଁ ଉଁ । ନିଜ ଆଖିକୁ କଣ୍ଟା ପାଏନାହିଁ ପରା ! ଓଃ ! କେହି ଧାଡ଼ିଏ ପଢ଼ିପାରୁ ନାହାନ୍ତି ।"

ଭୃଗୁବାବୁଙ୍କ ପୁଅର ଜଣେ ବନ୍ଧୁ କହିଲେ—"ଯାହାର ସବୁବେଳେ ପଢ଼ିବାର ଅଭ୍ୟାସ ଥିବ ସେହି ଏକା ତାଙ୍କ ପାଖରେ ପଢ଼ି ପାରିବ ।" ବହୁ ଅନୁସନ୍ଧାନ ପରେ ଗୋଟାଏ ବଡ଼ ପ୍ରେସର ଜଣେ କପି ହୋଲଡର୍‌ଙ୍କୁ ରଖାଗଲା । ନିତି ବଡ଼ ପାଟିରେ ଗଦା ଗଦା କପି ପଢ଼ୁଥିବାରୁ ସେ ଯେ ଏ କାମ ସୁରୁଖୁରୁରେ ତୁଲାଇ ପାରିବେ ସେ ଆସ୍ଥା ସମସ୍ତଙ୍କର ଥିଲା । କପି ହୋଲଡର ଜଣକ ଭୃଗୁବାବୁଙ୍କ ପାଖରେ ବସି କବିତା ବହି ଖଣ୍ଡିଏ ପଢ଼ି ବସିଲେ ।—ହେଡ଼ିଂ ଚଉଦ ପଏଣ୍ଟ କଳା—ଶତାବ୍ଦୀର ଅଶ୍ରୁ—ନେକ୍ସ୍ଟ ଲାଇନ୍—ହେ ଶତାବ୍ଦୀ ସମ୍ବୋଧନ ଦୁଇ· ଏମ୍ ସ୍ପେସ୍ ଝରାଅ ନୟନ ହାଇଫେନ୍ ଅଶ୍ରୁ ସ୍ପେସ୍ ନିରବେ ସ୍ପେସ୍ କପାଇଁ ପ୍ରଶ୍ନ ଚିହ୍ନ—ନେକ୍ସ୍ଟ ଲାଇନ—ଉପ୍ସ କି ଲାଗଇ ଦେଖି ସ୍ପେସ୍ ପଟା ହାଇଫେନ୍ ପନ ଢୋର—ନେକ୍ସ୍ଟ ଲାଇନ—ଆକୁଳେ ସ୍ପେସ୍ ଖୋଜ କ ସ୍ପେସ୍ ମନେ ସ୍ପେସ୍ ଜଗନ୍ନାଥଙ୍କୁ ଛେଦ—

ଭୃଗୁବାବୁ ଅସମ୍ଭାଳ ହୋଇ ଉଠି ରଡ଼ି ଛାଡ଼ିଲେ-"ପୋଡ଼ ସେ ବହିକୁ । ଜଗନ୍ନାଥଙ୍କୁ ଛେଦିବ ? ଅନାର୍ଯ୍ୟ, ବିଧର୍ମୀ । ଅଜବ କବିତା, ଅଗ ନାହିଁ କି ମୂଳ ନାହିଁ—ନା ମୋର ଆଉ ଶୁଣିବା ଦରକାର ନାହିଁ, ଢେର ହେଲାଣି ।

ପୁଅ, ନାତି ଓ ନାତୁଣୀ ନର୍ସ ସମସ୍ତଙ୍କ ପାମ୍ପଲା ପାମ୍ପଲ ସତ୍ତ୍ୱେ ଭୃଗୁବାବୁ ତାଙ୍କ ଜିଦର ବଜାଏ ରଖିଲେ । "ନା ଆଉ ଶୁଣିବିନି"। ଆଖି ଭଲ ହୋଇଗଲା ପରେ ବି ପଢ଼ିବା ନିଶା ଖୁବ୍ କମି ଯାଇଥିଲା ।



# ॥ ସାଲିସ୍ ନାହିଁ ॥

## ରବୀନ୍ଦ୍ରନାଥ ସିଂହ

[ବିପ୍ଳବୀ କବି ରବୀନ୍ଦ୍ରନାଥ ସିଂହ ଏକାଧାରରେ ଜଣେ କବି, ଅନୁବାଦକ ଓ ଗାଳ୍ପିକ । ତାଙ୍କ ରଚିତ ଅସଂଖ୍ୟ କବିତା ବହ୍ନିଶିଖା ଭଳି ପ୍ରଜ୍ଜ୍ୱଳିତ ହୁଏ ସମାଜ, ଶାସନ ଓ ସଂସ୍କାର ପାଇଁ । ସେ ଜଣେ ଓଜସ୍ୱିନୀ ବକ୍ତା ଓ ଜାତୀୟତାପ୍ରେମୀ ବୀର, ବିଭିନ୍ନ ପୁସ୍ତକରେ ଏହି ମହାନ୍ ସତ୍ୟର ଅନୁସନ୍ଧାନ କରି ସେ ଏକ ପାଠକ ସମାଜ ସୃଷ୍ଟି କରିବାକୁ ସକ୍ଷମ ହୋଇଛନ୍ତି । ତାଙ୍କ ରଚିତ ବହ୍ନିଶ୍ରୀ, ପାଦଟୀକା, ଚରମପତ୍ର, ଭ୍ରୂକୁଟି, ନାସ୍ତିକ ଆମ ସମସ୍ୱର, ଅପ୍ରୀତିକର କବିତା ଇତ୍ୟାଦି ଯୁଗାନ୍ତକାରୀ ସୃଷ୍ଟି । କବିତା ରାଜ୍ୟରେ ଛନ୍ଦ ଓ ଅନୁଭୂତିକୁ ସ୍ୱୀକାର କରି ସେ ଅହରହ ଯୁଦ୍ଧରତ । ଜୀବନର ସାଧନା ଫଳରେ ସେ ସୋଭିଏଟ୍ ସାହିତ୍ୟ ଅନୁବାଦ କରି ପୁରସ୍କୃତ ହୋଇଛନ୍ତି । ସ. ବନଫୁଲ]

ସାଲିସ୍ ନାହିଁ, ସାଲିସ୍ ନାହିଁ, ସହିତ ତମ କହିତ ଦେଲୁ,
ସାଲିସ୍ ଆମେ ହୋଇଛୁ ଦଳି, ଜଳୁଛି ସୂର୍ଯ୍ୟ ଦଗ୍ଧ-ଶଲ୍ୟ ।
ଚାହୁଁନା ଆମେ ଦୟାର ଦାନ
ଛାତିରେ ପରିପୂର୍ଣ୍ଣ ପ୍ରାଣ
ବହ୍ନି ସମ ସେଇଥିପାଇଁ ଆମେ ତ ଜଳୁ, ଆମେ ତ ଜଳୁ ।

ଆମେ ତ ଜନ-ସମୁଦ୍ରରେ, ହୃଦୟେ ଆମ ପ୍ରଳୟ ଶିଖା
ସୂର୍ଯ୍ୟସମ ଅନାବୃତ, ଅନାଦୃତ ଦେଉଛୁ ଦେଖା ।
ସୃଷ୍ଟି ପାଇଁ ଧ୍ୱଂସ କରୁ
ଜୀବନ ପାଇଁ ମୃତ୍ୟୁ ବରୁ
ଚାହୁଁନା ଆମେ ସ୍ୱର୍ଗବାସ, ମର୍ତ୍ତ୍ୟେ ଆମେ ଇନ୍ଦ୍ର ଏକା ।

ଈଶ୍ୱରର ଅଂଶଧର, ମଣିଷ ଆମେ ସଂଖ୍ୟାଧିକ
ବିଶ୍ୱ ଆମ ମନ୍ଦିରରେ, କାହିଁକି ଏଠି ଦୁଃଖ, ଶୋକ ?
ଅସାମ୍ୟ ଓ ଅନୀତି ନିଆଁ
କିଏ ସେ ଏଠି ଜାଳିଛି ଆହା !
ଛାତିକୁ ତାର ଚିରିବୁ ଆମେ, ମୋଡ଼ିବୁ ତାର ମୋଡ଼ିବୁ ବେକ ।

ସାରିବୁ ସବୁ ଦୁଃଖ-ରାତି, ଆଣିବୁ ଡାକି ଯାମିନୀ-ଉଷା
ଜାଳିବୁ ଯେତେ ଜଞ୍ଜାଳରେ, କହିବୁ ଆମେ ନୂତନ ଭାଷା ।
ନଥିର ହୃଦ-ପଲ୍ଲବରେ
ଆମେ ତ ମହା କଲ୍ଲୋଳରେ
ବିଦ୍ରୋହୀର ବଂଶ ଆମେ, କଣ୍ଠେ ଆମ ମୁକ୍ତି-ହ୍ରେଷା ।

# ॥ ବନଫୁଲ ॥

ଚେଷ୍ଟା ଆମେ କରିଲୁ ବହୁ ବଞ୍ଚିବାକୁ ମଣିଷ ଭଳି
ସହିଲୁ ଘାତ, ପାଇଲୁ ନାତ, ମାଇଲୁ ଲାଠି, ଖାଇଲୁ ଗୁଳି ।
ଏଥର ଆମେ ଯେତେକ 'ପଶୁ'
ଟେକିଛୁ ମଥା ନରକ ଦେଶୁଁ
ଯାହା ତ ଥିଲା ଯାଇଛି ସବୁ, ହାତରେ ଅଛି ଶୂନ୍ୟଥାଳି ।

ଦେହରେ ରୋଗ, ହୃଦୟେ ଶୋକ, ଗଳାରେ ଝୁଲେ ଜ୍ୱାଳାର ମାଳା
କୋଠରେ ଆଖି, ପେଟରେ ଭୋକ, ଯାହାପଥେ ବଂଧୀଶାଳା ।
ସହିବୁ ପ୍ରାକୁ ଦିନେ ନା ଦିନେ
ବିଦ୍ରୋହର ବହ୍ନିଗାନେ
ଆଣିବୁ ଡାକ ପ୍ରଭଞ୍ଜନେ, ମୁକ୍ତ ହେବୁ ଭାଙ୍ଗି ତାଲା ।

ପରାଣ ଭରି କାନ୍ଧ ଉଠି ସେଦିନ ଆମେ ଦେବୁରେ ହସି
ପୁଞ୍ଜିବାଦ କବର ତଳୁ ଉଇଁବ ଯେବେ ସାମ୍ୟ ଶଶୀ ।
ଆମରି ପାଦେ ଲୋଟିବ ଶିର
ବିଶ୍ୱ ଧନତଂତ୍ରିର
ସେଦିନ ଆମେ ଶାନ୍ତ ହେବୁ ସଂଖ୍ୟାଧିକ ବିଶ୍ୱବାସୀ ।

ବଂଧୁ ଆମ ବଂଧୁକରେ, ସାଲିସ୍ ନାହିଁ, ସାଲିସ୍ ନାହିଁ
ମରଣ ଆମ ମରମୀ-ବନ୍ଧୁ ଜୀବନ ପାଇଁ, ଜୀବନ ପାଇଁ ।
ଜାଗୃତିର ଶଂଖନାଦେ
ହୋଇଛୁ ଆମେ ହୋଇଛୁ ଉଦେ
ଯୁଦ୍ଧ ଆମେ ଚାହୁଁରେ ଚାହୁଁ, ଯୁଦ୍ଧ ବିନା ଶାନ୍ତି କାହିଁ ?

ତା ୧୦।୭।୬୯
॥ ମଧ୍ୟରାତ୍ରି ॥

# ॥ ଜୀବନର ଏକ କୈଫିୟତ ॥

(ସତ୍ୟର ସଂଧାନେ)

ଅଧ୍ୟାପକ ଡକ୍ଟର **ଗୋପାଲ ଚନ୍ଦ୍ର ମିଶ୍ର**

[ଅଧ୍ୟାପକ ଡକ୍ଟର ଗୋପାଲ ଚନ୍ଦ୍ର ମିଶ୍ର ଓଡ଼ିଆ ସାହିତ୍ୟର ଜଣେ ପ୍ରତିଷ୍ଠିତ କବି, ପ୍ରାବନ୍ଧିକ ଓ ଗବେଷକ । ସେ ସଂଖ୍ୟାଧିକ ପୁସ୍ତକର ରଚୟିତା । ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ଦୀର୍ଘ ୬୦ ବର୍ଷରୁ ଊର୍ଦ୍ଧ୍ୱ କାଳ ହେଲା ସେ ଲେଖୁଛନ୍ତି । ତାଙ୍କ କବିତ୍ୱର ବ୍ୟଞ୍ଜନା ରସଗ୍ରାହୀ ପାଠକ ମାନଙ୍କୁ ମୁଗ୍ଧ କରିଥାଏ । ବିଶେଷ କରି ପ୍ରକୃତି ଚିତ୍ରଣ, ଦେଶାତ୍ମବୋଧକ ରଚନାରେ ସେ ସିଦ୍ଧହସ୍ତ । ତାଙ୍କ ପ୍ରବନ୍ଧ ଓ ସମାଲୋଚନା ନୂତନ ଦିଗନ୍ତର ସୂଚନା ପ୍ରଦାନ କରେ । ସଂ. ବନଫୁଲ । ]

ଏହା ଜଣାଶୁଣା କଥା ଯେ ମଣିଷ ସୁଖର ସନ୍ଧାନରେ ବ୍ୟସ୍ତ ରହେ । ବ୍ୟକ୍ତି ନିଜ ପାଇଁ ଓ ନିଜର ପାଖରେ ଥିବା ଲୋକମାନଙ୍କ ପାଇଁ ସୁଖ ଓ ଶାନ୍ତି ଲୋଡ଼େ । ଏହା ବ୍ୟକ୍ତିଗତ ଦୁର୍ଘଟଣା ଓ ମୃତ୍ୟୁ ସମସ୍ତଙ୍କର ଜୀବନରେ ଦିନେ ନା ଦିନେ ଆସିବ । ଯୁଗ ଯୁଗ ଧରି ପ୍ରତ୍ୟେକ ନରନାରୀ ଏହି ବିଶ୍ୱାସ ଓ ଆବେଗର ଅଧୀନ ହୋଇଛନ୍ତି; ଶେଷରେ ଜୀବନର ଏହି ପରସ୍ପର ବିରୋଧୀ ଅବସ୍ଥାର ମୁକାବିଲା ପାଇଁ ଚେଷ୍ଟା ମଧ୍ୟ କରିଛନ୍ତି । କିନ୍ତୁ ସେମାନଙ୍କ ଉଦ୍ୟମ କେବେ ସଫଳ ହୋଇନାହିଁ । ମଣିଷ ଏହି ଜୀବନରେ ସୁଖଶାନ୍ତି ପାଇଁ ଝୁରି ଝୁରି ନିରାଶ ହୋଇଯାଏ, ସେ ସେତେବେଳେ ଏହି ଜୀବନର ପରପାରରେ ସୁଖଶାନ୍ତି ଲାଭ କରିବା ପାଇଁ ଆଶା କରେ ଜୀବନର ଅସହାୟତା ଓ ନୈରାଶ୍ୟ ଅବଶ୍ୟମ୍ଭାବୀ ବୋଲି ଜାଣିବା ପରେ ବ୍ୟକ୍ତିର ଆଉ ଲୋଡ଼ା କଣ ।ʼ ସେ ନୂଏଁ ସୁଖଶାନ୍ତି ପାଇଁ ଜୀବନର ସଂଗ୍ରାମ କରି ପାରିବ କିମ୍ବା ନିଜକୁ ନୈରାଶ୍ୟ ସାଗରରେ ଭସାଇ ଦେବ । ଏହି ବିଶ୍ୱାସରୁ ପୃଥିବୀରେ ବିଭିନ୍ନ ସମୟରେ ବିଭିନ୍ନ ମତବାଦ ଦେଖାଦେଇଛି । ଦୁନିଆଁରେ ରହିବାକୁ ହେଲେ ଆମକୁ ବଂଚିବାକୁ ପଡ଼ିବ ଏବଂ ବଂଚି ରହିବାକୁ ହେଲେ ଆମକୁ ସୁଖ ଶାନ୍ତିର ପଛରେ ଝାଳ ନାଳ ହୋଇ ଧାଇଁବାକୁ ପଡ଼ିବ । କିନ୍ତୁ ବାସ୍ତବ ଅବସ୍ଥା ତାହା କରାଇ ଦିଏନାହିଁ । ଶାନ୍ତି ଓ ସୁଖର ଅଭିଳାଷ କେବଳ ମରୀଚିକା । ପଶୁ ଜୀବନରେ ଭୋଗବିଳାସ, ସୁଖଶାନ୍ତି ନ ମିଳିଲେ ଆମେ ପରସ୍ପର ମଧ୍ୟରେ ଅଶାନ୍ତି ଘଟାଇ ବସୁ । ଏହାପରେ ଜୀବନରେ ସମସ୍ତ ପ୍ରକାର ଦୁଃଖ, ଦୁର୍ଦ୍ଦଶା ଓ ଯନ୍ତ୍ରଣାର ପାଳି ପଡ଼େ । ବେଳେ ବେଳେ ଆମେ ନିଜକୁ ପଶୁପକ୍ଷୀଙ୍କ ସହିତ ତୁଳନା କରୁ । ଆମେ ଜୀବନର ସୁଖ ଅଭିଳାଷକୁ ପଶୁର ଅଭିଳାଷ ବୋଲି ବିଚାର କରୁ । ଏହାପରେ ଆମ ମନ ମଧ୍ୟରେ ଦ୍ୱନ୍ଦ୍ୱ ଆରମ୍ଭ ହୁଏ । ଆମେ ଏସବୁର ଲୋଡ଼ୁଁ ସମାଧାନ । ସମାଧାନର ବାଟ ମିଳେନାହିଁ । ସେତେବେଳେ ପୁନର୍ଜନ୍ମ କଥା ଭାବୁ । ଏହିପରି ଚିନ୍ତା ଓ ଦୁଃଶ୍ଚିନ୍ତାର ଜାଲରେ ମଣିଷ ଛନ୍ଦି ହୋଇଯାଏ । ସେଥିରୁ ବାହାର-

ବାକୁ [illegible]ନାହିଁ [illegible] ତେବେ ଜଣ ବ୍ୟକ୍ତିଗତ ଜୀବନର ମୂଲ୍ୟ [illegible] ତେବେ ଜଣ ବ୍ୟକ୍ତିର ସମସ୍ତ ଉଦ୍ୟମ [illegible] ଅଧିବସାଧି[illegible] ଖାଲି ଜାତି ପାଇଁ । ଜାତି କଣ ? ଜାତି [illegible]ବ୍ୟକ୍ତିମାନଙ୍କୁ ନେଇ ଗଠିତ । ଯଦି ବ୍ୟକ୍ତି ଜୀବନରେ କିଛି ସ୍ୱାତନ୍ତ୍ର୍ୟ ରହିଲା ନାହିଁ, ତାହେଲେ ଜାତିର ସ୍ୱାତନ୍ତ୍ର୍ୟ ଆସିଲା କେଉଁଠୁ ? ଏହିସବୁ ଅବସ୍ଥା ପାଇଁ ଆମର ପରିବେଷ୍ଟନୀ ଓ ପରିସ୍ଥିତି [illegible] ହିଁ ଦାୟୀ । ଜୀବନର ଦୁଇଟି ଇଚ୍ଛାରୁ ଯେତେବେଳେ ଗୋଟିଏ ଇଚ୍ଛା ପୂର୍ଣ୍ଣ ହୁଏନାହିଁ ସେତେବେଳେ ଦୁଃଖ ଅଶାନ୍ତିର ମାତ୍ରା ବଢ଼ିଯାଏ । ଆମର [illegible] ଭୁଲ୍ କେଉଁଠି ? ସମ୍ଭବତଃ ଆମର ଧାରଣା ପ୍ରଥମରୁ ଭୁଲ୍ । ଆମର ପଶୁଜୀବନ ଓ ଆମର ଆଧ୍ୟାତ୍ମିକ ଜୀବନ ଏପରି ଆମ ମଧ୍ୟରେ ପରସ୍ପର ବିରୋଧୀ ଦୁଇଗୋଟି ପ୍ରବୃତ୍ତି ଅଛି । ଗୋଟିଏ ହେଉଛି "ମୁଁ" ଅନ୍ୟଟି ହେଉଛି ମୋ ଭିନ୍ନ ସମସ୍ତେ । ତେବେ ଏଥିମଧ୍ୟରୁ କେଉଁଟି ସତ୍ୟ ? ପଶୁ ଜୀବନ ସହିତ ଆମର ବାସ୍ତବ ଜୀବନ ଅର୍ଥାତ୍ ଆଧ୍ୟାତ୍ମିକ ଜୀବନକୁ ମିଳାଇ ଦେଖିଲେ ଆମର ଏହି ଭୁଲ୍ ଜଣାପଡ଼େ । ଆମେ ଉଭୟର ସ୍ଥିତି ସମ୍ପର୍କରେ ଅବହିତ ହେଲେ ମଧ୍ୟ ପ୍ରକୃତ ସମାଧାନରେ ପହଞ୍ଚି ପାରୁ ନ ଥାଉ ।

ଆମ ଶରୀରର ପ୍ରୟୋଜନ ଯେତେବେଳେ ଅନୁଭବ କରୁ ସେତେବେଳେ ପଶୁଜୀବନର ସଙ୍କେତ ପାଇପାରୁ । ନିତାନ୍ତ ଅସହାୟ ଶିଶୁ ଅବସ୍ଥାରେ ମଧ୍ୟ ଆମେ ଏହି ଶାରୀରିକ ସ୍ଥିତି ସମ୍ପର୍କରେ ଅବହିତ ହୋଇଥାଉ । ଆଧ୍ୟାତ୍ମିକ ଜୀବନର ସ୍ଥିତି ସେହିପରି ଆମେ ଉପଲବ୍ଧି କରିଥାଉଁ । ଉଦାହରଣ ସ୍ୱରୂପ ଜଣେ ଜଣକୁ ଭଲ ପାଇଲା ।

ଜୀବନରେ ଏହି ଦ୍ୱନ୍ଦ୍ୱ ଓ ମାନସିକ ସଂଘର୍ଷ ବରାବର ଲାଗି ରହିଛି । ଦୁଇଟି ଆଙ୍ଗୁଠି ଏକାଠି କରି ତା ମଧ୍ୟରେ ଗୋଟିଏ ପେନ୍ସିଲ୍‌କୁ ବୁଲାଇଲେ ଆମର ଯେପରି ପେନ୍ସିଲ୍ ସଂପର୍କରେ ଦ୍ୱୈତ ଧାରଣା ହୁଏ, ଠିକ୍ ସେହିପରି ଆମର ପଶୁ ଜୀବନ ଓ ଆଧ୍ୟାତ୍ମିକ ଜୀବନ ଭିନ୍ନ ଭିନ୍ନ ଆବେଗ ଓ ଅବସ୍ଥାକୁ ନେଇ ଗଠିତ । ବ୍ୟକ୍ତିଗତ ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ ଉନ୍ନତ ଜୀବନର ଅନୁସନ୍ଧାନ କରିବା ଆମ ପକ୍ଷେ ନିତାନ୍ତ ସ୍ୱାଭାବିକ । ପକ୍ଷୀ ଆକାଶରେ ଉଡ଼ିବା ଯେପରି ସତ୍ୟ ଏହା ଆମ୍ଭମାନଙ୍କ ପକ୍ଷେ ସେହିପରି ଅଭ୍ରାନ୍ତ । କିନ୍ତୁ ଆଶ୍ଚର୍ଯ୍ୟର କଥା ଆମେ ଯେଉଁଥିପାଇଁ ସଂଘର୍ଷ କରୁ, ତାହାକୁ ସ୍ୱଚକ୍ଷୁରେ ଦେଖି ନ ଥାଉ । ସତେ ଅବା ସଂଘର୍ଷର ଧୂଳିପଟଳ ସତ୍ୟକୁ ଆମଠାରୁ ଲୁଚାଇ ରଖେ । ଧରାଯାଉ ଆକାଶର ଗୋଟିଏ ପକ୍ଷୀ ସ୍ଥଳଭାଗରେ ଧାଇଁବା ପାଇଁ ଇଚ୍ଛା କରେ । ଏହାର ଅର୍ଥ ନୁହେଁ ଯେ ଉଡ଼ିବାପାଇଁ ତାର ସ୍ୱାଭାବିକ ଶକ୍ତି ନାହିଁ । ମଣିଷ ଜୀବନରେ ଏହି କଥାଟି ମଧ୍ୟ ସତ୍ୟ । ମଣିଷ ଦୈହିକ ଜୀବନରେ ବ୍ୟସ୍ତ ରହିଲେ ମଧ୍ୟ ତାର ପାଇଁ ଏକ ମହତ୍ତର ଜୀବନ ଅଛି ଏହା ଅସତ୍ୟ ନୁହେଁ । ସର୍ବଦା କ୍ଷୁଧା ଓ ତୃଷାଦ୍ୱାରା ଚାଳିତ ହୋଇ ପଶୁ ତାର ଜୀବନର ଧର୍ମରକ୍ଷା କରେ । କୌଣସି ଜନ୍ତୁ ସୃଷ୍ଟିର ଏହି ସାଧାରଣ ନିୟମ ପ୍ରତି ମଧ୍ୟ ଉଦାସୀନ ନୁହେଁ । ମଣିଷ ମହୋତ୍ତର ଲକ୍ଷ୍ୟ ସାଧନରେ ଏହିପରି ବରାବର ବାଧାପ୍ରାପ୍ତ ହୁଏ । କିନ୍ତୁ ଥରେ ସେ ତାର ସନ୍ଧାନ ପାଇଲେ ସେଥିରୁ ନିବୃତ୍ତ ହୁଏନାହିଁ । ମଣିଷର ସତ୍ୟ ଓ ମହତ୍ତର ଲକ୍ଷ୍ୟ ପାଇଁ ଏହି ଯେଉଁ ପ୍ରବଳ ବାସନା ତାହାହିଁ ତାର ଆଧ୍ୟାତ୍ମିକ ଇତିହାସର ସୂକ୍ଷ୍ମ ସୂଚନା ।

ମଣିଷ କିନ୍ତୁ ଉଭୟ ଲକ୍ଷ୍ୟ ପ୍ରତି ଦୃଷ୍ଟି ଦେବା ସମ୍ଭବ ନୁହେଁ । ହୁଏତ ଗୋଟିକୁ ଛାଡ଼ି ଅନ୍ୟ ଏକ ଲକ୍ଷ୍ୟକୁ ଧରିବାକୁ ହେବ । ଜୀବନର ସମନ୍ୱୟ ଆଣିବାକୁ ହେଲେ ଗୋଟିଏ ଲକ୍ଷ୍ୟର ସାଧନ ଓ ପୂର୍ଣ୍ଣତା ଆବଶ୍ୟକ ।

ମହାତ୍ମାଗାନ୍ଧିଙ୍କର ଏହି ସମ୍ପର୍କରେ ଯାହା ଚିନ୍ତା ତାହା ବିଚାର କରାଯାଉ । ସେ କହନ୍ତି ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ ହେଉଛି ଅନ୍ୟର ସେବା କରିବା । କେବଳ

ଅନ୍ୟର କଲ୍ୟାଣ ସାଧନ ଉଦ୍ଦେଶ୍ୟରେ ନୁହେଁ ବରଂ ମଣିଷ ସମାଜର ମୂଳଭିତ୍ତିର ପ୍ରଧାନ ନିୟମ ସ୍ୱରୂପ ଏହା କରୁଥିବା ଉଚିତ । ଆମେ ପ୍ରତ୍ୟେକ ବ୍ୟକ୍ତି ସମାଜ ଓ ରାଷ୍ଟ୍ର ପାଇଁ ନିଜ ନିଜ ଶକ୍ତି ଅନୁଯାୟୀ କାର୍ଯ୍ୟ କରିବା ଉଚିତ୍ । ଯେଉଁମାନେ କେବଳ ନିଜ ନିଜର ମଙ୍ଗଳ ଓ ଉନ୍ନତି ପାଇଁ ଦାୟୀ ବୋଲି ବିଚାର କରନ୍ତି ସେମାନେ କଦାପି ଆଦର୍ଶବାଦୀ ବ୍ୟକ୍ତି ନୁହନ୍ତି । ପୁନଶ୍ଚ ଯେଉଁବ୍ୟକ୍ତି ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ପ୍ରଥମେ ଦୃଷ୍ଟି ଦିଏନାହିଁ ସେ ମଧ୍ୟ ଯେ ଜଣେ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ଏହା କୁହାଯାଇ ନ ପାରେ । ନିଜର କର୍ତ୍ତବ୍ୟ ସାଧନରେ ଯେ ବ୍ରତୀ ସାମୂହିକ ଉନ୍ନତି ପାଇଁ ଯେ ଅଗ୍ରସର ତା ଜୀବନରେ କଦାପି ପରାଜୟ ଦେଖାଦିଏ ନାହିଁ । ବରଂ ଏପରି ନିଃସ୍ୱାର୍ଥପର ବ୍ୟକ୍ତିମାନଙ୍କ ଉପରେ ଭଗବାନଙ୍କର ଦୃଷ୍ଟି ସଦାବେଳେ ପଡ଼ିଥାଏ । ଜୀବନର କୈଫିୟତ ଦେବାକୁ ଯାଇ ମହାତ୍ମା ଗାନ୍ଧି ସମଗ୍ର ସମାଜ ଓ ଜାତିରେ ବ୍ୟକ୍ତିର ସ୍ଥାନ ଏହା ସୂଚାଇଛନ୍ତି ।

Our existence as embodied beings is purely momentary; What are a hundred years in eternity ? But if we shatter the chains of egotism, and melt into the ocean of humanity, we share its dignity. To feel that we are something is to setup a barrier between God and ourselves; to cease feeling that we are something is to become one with God. A drop in the ocean partakes of the greatness of its parent, although it is unconscious of it. But it is dried up as soonas it enters upon an existence independent of the ocean. We do not exaggerate, when we say that life is a mere bubble.

A life of service must be one of humility. He, who could sacrifice his life for others, has hardly time to reserve for himself a place in the sun. Inertia must no[illegible]ken for humanity, as it h[illegible]ndusim. True humility means most strenuous and constant endeavour entirely directed towards the service of humanity. God is continuously in action without resting for a single moment. If we would serve Him or, become one with Him, our activity must be as unwearied as His. There may be momentary rest In store for the drop which is separated from the ocean, but not for the drop in the ocean, which knows no rest,

The same is the case with our selves. As soon as we become one with the ocean in the shape of god, there is no more rest for us, nor indeed do we need rest any longer. Our very sleep is action; for we sleep with-thought of God, in our hearts.

This restlessness constitutes true rest. This never ceasing agitation holds the key to peace in effable. This supreme state of total surrender is difficult to describe, but not beyond the bounds of human exp rience. It has been attained by many dedicated souls and may be attained by our selves as well. This is the goal which we of the Satyagraha Ashram set before our selves; all our observances and activities are calculated to assist us in reaching it. We shall reach it some day all unawares if we have truth in us.

(Pnge 9-10 Selections from Gandhi)

ଏହାର ମର୍ମ ହେଉଛି, ଜୀବ ହିସାବରେ ଆମ୍ଭମାନଙ୍କର ଅସ୍ତିତ୍ୱ ପୁରାପୁରି କ୍ଷଣସ୍ଥାୟୀ । ସମଗ୍ର ଚିରନ୍ତନ ସୃଷ୍ଟିରେ ଶହେ ବର୍ଷର ଅର୍ଥ କଣ ? ଆମ୍ଭେମାନେ ଯଦି ଅହଂ ଭାବକୁ ଖଣ୍ଡନ କରୁ ଏବଂ ଜନତା ସମୁଦ୍ରରେ

ନିଜକୁ ମିଶା [illegible] ଲି ଆମେ ଏହାର ମର୍ଯ୍ୟାଦା ଉପଳ [illegible] ପାରିବା, ଆମ୍ଭେମାନେ ସ୍ୱତନ୍ତ୍ର ବୋଲି ଅନୁଭବ କରି [illegible] ଅର୍ଥ ଭଗବାନ ଓ ଆମ୍ଭମାନଙ୍କ ମଧ୍ୟରେ ଗୋ [illegible] ବ୍ୟବଧାନ ଛିଆଡ଼ି କରିବା ଭଗବାନଙ୍କ ସହିତ ଆମ୍ଭେମାନେ ଏକ ହୋଇ ପାରିବା। ଏହି ଭାବରେ ଆମ୍ଭେମାନେ ଚିନ୍ତା କରିବା ସମୁଦ୍ରର ଏକ ବିନ୍ଦୁ ଜଳ ମଧ୍ୟରେ ସମଗ୍ର ସମୁଦ୍ରର ମହାନ୍ ସତ୍ତା ନ ଥାଏ କି ଅବଶ୍ୟ ଜଳ ବିନ୍ଦୁର ସେ ଧାରଣା ନ ଥାଏ । ଏହା ଯେତେବେଳେ ସମୁଦ୍ରଠାରୁ ଅଲଗା ହୋଇଯାଏ ସେତେବେଳେ ମଙ୍ଗେ ସଙ୍ଗେ ଶୁଖିଯାଏ ! ଜୀବନ ଗୋଟାଏ ବୁଦ ବୁଦ୍ ବୋଲି ଆମ୍ଭେମାନେ ଯେତେବେଳେ ଜାଣୁ ସେତେବେଳେ ପ୍ରକୃତରେ ଆମ୍ଭ ମାନଙ୍କ ମନରେ କୌଣସି ଅହଂଭାବ ନ ଥାଏ।

ସେବା ପ୍ରଣୋଦିତ ଜୀବନ ଏକ ବିନମ୍ର ଜୀବନ ହେବା ଉଚିତ । ଯେ ଅନ୍ୟମାନଙ୍କ ପାଇଁ ଜୀବନ ଉତ୍ସର୍ଗ କରିପାରେ, ତାର ନିଜ ପାଇଁ ଟିକିଏ ସ୍ଥାନ ରଖିବା ଲାଗି ସମୟ ନ ଥାଏ । ଆଳସ୍ୟ ଅର୍ଥ ନୁହେଁ ନମ୍ରତା, ଯାହା କି ହିନ୍ଦୁ ଧର୍ମରେ ଦେଖାଦେଇଛି । ମାନବ ସମାଜର ସେବା ଉଦ୍ଦେଶ୍ୟରେ ନିରନ୍ତର କଠିନ ଓ ବିଶ୍ରାମହୀନ ଉଦ୍ୟମ କରିବାହିଁ ପ୍ରକୃତ ନମ୍ରତା । ଗୋଟିଏ ମୁହୂର୍ତ୍ତ ସୁଦ୍ଧା ବିଶ୍ରାମ ନ କରି ଭଗବାନ ନିରନ୍ତର କର୍ମବ୍ରତୀ । ଆମେ ଯେବେ ତାଙ୍କର ସେବା କରିବା କିମ୍ବା ତାଙ୍କ ସହିତ ଏକ ହୋଇ ମିଶିଯିବା ତାହାଲେ ଆମର କାର୍ଯ୍ୟକଳାପ ତାଙ୍କ ପରି ଶାନ୍ତ ଓ ନିଶ୍ଚିନ୍ତ ହେବା ବିଧେୟ । ଯେଉଁ ଜଳବିନ୍ଦୁ ସମୁଦ୍ରରୁ ବିଚ୍ଛିନ୍ନ ହୋଇଛି ତାହା ପାଇଁ ସାମୟିକ ବିଶ୍ରାମ ଥାଇ ପାରେ । କିନ୍ତୁ ଯେଉଁ ଜଳବିନ୍ଦୁ ସମୁଦ୍ର ଗର୍ଭରେ ସ୍ଥିତ ତାହାର ବିଶ୍ରାମ ନାହିଁ । ଆମ୍ଭମାନଙ୍କ ପକ୍ଷେ ସେହି କଥା ମଧ୍ୟ ପ୍ରଯୁଜ୍ୟ, ଆମ୍ଭେମାନେ ଭଗବାନଙ୍କ ରୂପରେ ସମୁଦ୍ର ସହିତ ଯେତେବେଳେ ମିଶିଯିବା ସେତେବେଳେ ଆମ୍ଭମାନଙ୍କ ପାଇଁ ବିଶ୍ରାମ ନ ଥିବ କି ଆମ୍ଭେମାନେ ମଧ୍ୟ ବିଶ୍ରାମ ଦରକାର କରିବୁ ନାହିଁ । ଆମର ନିଦ୍ରାହିଁ କର୍ମ । କାରଣ ଆମ୍ଭେମାନେ ହୃଦୟ ରାଜ୍ୟରେ ଭଗବାନଙ୍କ ଚିନ୍ତାରେ ନିଦ୍ରା କରିଥାଉଁ । ଏହି ପ୍ରକାର ବିଶ୍ରାମହୀନ । ତାହିଁ ଯଥାର୍ଥରେ ବିଶ୍ରାମ। ଏହି ଅବିଶ୍ରାନ୍ତ ଆନ୍ଦୋଳନ ହିଁ ପ୍ରକୃତ ଅବ୍ୟର୍ଥ ଶାନ୍ତିର ମୂଳମନ୍ତ୍ର ସ୍ୱରୂପ। ସାମୂହିକ ଆତ୍ମସମର୍ପଣର ମହାନ୍ ଅବସ୍ଥା ବର୍ଣ୍ଣନା କରିବା କଠିନ ମାତ୍ର ଏହା ମଣିଷର ଅନୁଭୂତି ସୀମାର ବହିଃର୍ଭୁତ ନୁହେଁ । ଏହା ବହୁ ଉତ୍ସର୍ଗୀକୃତ ଜୀବନଦ୍ୱାରା ପ୍ରାପ୍ତ ହୋଇଅଛି ଏବଂ ଆମ୍ଭ ମାନଙ୍କ ଦ୍ୱାରା ମଧ୍ୟ ପ୍ରାପ୍ତ ହୋଇପାରେ । ସତ୍ୟାଗ୍ରହ ଆଶ୍ରମର ଅନ୍ତେବାସୀ ମାନଙ୍କ ସମ୍ମୁଖରେ ଏହି ଉଦ୍ଦେଶ୍ୟହିଁ ରଖିଅଛୁ । ଆମର ସମସ୍ତ ଆଚାର ଓ କ୍ରିୟା କଳାପ ଆମର ଏହି ଲକ୍ଷ୍ୟସାଧନରେ ସାହାଯ୍ୟ କରିବା ପାଇଁ ଉଦ୍ଦିଷ୍ଟ । ଆମେ ସମସ୍ତେ ଦିନେ ଅତର୍କିତ ଭାବରେ ଏହି ଲକ୍ଷ୍ୟରେ ପହଞ୍ଚି ପାରିବା ଯେବେ ଆମ୍ଭ-ମାନଙ୍କ ହୃଦୟରେ ସତ୍ୟ ଥାଏ ।

ପ୍ରତ୍ୟେକ ନରନାରୀଙ୍କର ମୁଖ୍ୟ କର୍ତ୍ତବ୍ୟ ହେଉଛି ବୃହତ୍ତର ଜୀବନର ଲକ୍ଷ୍ୟ ସାଧନ । ସମଗ୍ର ମଣିଷ ସମାଜ ମହାତ୍ମାଙ୍କ ଦୃଷ୍ଟିରେ ଏକ ଅଖଣ୍ଡ ପରିବାର । ପ୍ରତ୍ୟେକ ନରନାରୀ ଯେତେ ଦୁର୍ବଳ ହୁଅନ୍ତୁ ପଛକେ ସେମାନେ ନିଜ ନିଜର ଆତ୍ମା ଓ ମୁକ୍ତିର ପ୍ରକୃତ ପ୍ରହରୀ । ମହାତ୍ମାଗାନ୍ଧିଙ୍କ ବିଚାରରେ ଜୀବନର ଅଭିମୁଖ୍ୟ କେବଳ ଅଧ୍ୟାତ୍ମିକ, କେବଳ ଭଗବତ ବିଶ୍ୱାସହିଁ ସମସ୍ତଙ୍କର ମାନ୍ୟତା । ଏହି କ୍ଷଣଭଙ୍ଗୁର ଶରୀରର ଅବସାନ ସୁନିଶ୍ଚିତ; କିନ୍ତୁ ଆତ୍ମାର ବିନାଶ ନାହିଁ । ତେଣୁ ଆମର ସ୍ୱାଭାବିକ ମୃତ୍ୟୁ ହେଉ କିମ୍ବା ଆତତାୟୀ ହାତରେ ଆମର ପ୍ରାଣ ଯାଉ ଆମେ ନିରନ୍ତର ହସି ହସି ଜୀବନକୁ ଗ୍ରହଣ କରିବା ଉଚିତ୍ । ସେଥିପାଇଁ ଜୀବନରେ ଭଗବତ ପ୍ରାର୍ଥନାହିଁ ଆମର ଏକମାତ୍ର ସହାୟ । ସତ୍ୟନିଷ୍ଠ ଜୀବନ ଯାପନ ହିଁ ଆମର କାମ୍ୟ । ଆତ୍ମାର ଉତ୍ସର୍ଗ ବ୍ୟକ୍ତିର ଧ୍ୟେୟ ।

# ॥ ହୁସିଆର ! ହୁସିଆର ! ॥

## ସଚ୍ଚି ରାଉତରାୟ

[ଓଡ଼ିଆ ସାହିତ୍ୟର ଜଣେ ନବଯୁଗ ପ୍ରବର୍ତ୍ତକ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ । ବିଶେଷ କରି ପାଶ୍ଚାତ୍ୟ ଦେଶରେ କବିତା କ୍ଷେତ୍ରରେ ଯେଉଁ ନୂତନ ଦିଗନ୍ତ ଆତ୍ମପ୍ରକାଶ କଲା ତାକୁ ଓଡ଼ିଆ କବିତାରେ ପରୀକ୍ଷାମୂଳକ ଭାବେ ପ୍ରୟୋଗ କରିବାରେ ସେ ଅଗ୍ରଣୀ । ବିମ୍ବ ଓ ଚିତ୍ରକଳ୍ପର ସମନ୍ୱିତ ସଂଯୋଜନା ଶ୍ରୀ ରାଉତରାୟଙ୍କୁ କରିଛି ମହାନ୍ ଓ ବିରାଟ । ତାଙ୍କ ରଚିତ କବିତା ପୁସ୍ତକ ପାଣ୍ଡୁଲିପି, ପଲ୍ଲୀଶ୍ରୀ, ଅଭିଯାନ, ଅଭିଜ୍ଞାନ, ଭାନୁମତୀର ଦେଶ, ବାଜିରାଉତ, କବିତା ୧୯୬୨ ସ୍ୱଗତ, ଗଳ୍ପ ପୁସ୍ତକ ମଶାଣିର ଫୁଲ, ଉପନ୍ୟାସ ପୁସ୍ତକ ଚିତ୍ରଗ୍ରୀବ ଇତ୍ୟାଦି ଏ ଜାତିର ଜାତୀୟ ସମ୍ପଦ । ସେ ୧୯୬୨ ମସିହାରେ ପଦ୍ମଶ୍ରୀ, ୧୯୬୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ୧୯୬୫ ମସିହାରେ ସୋଭିଏତ୍ ନେହେରୁ ପୁରସ୍କାର ପାଇ ସ୍ୱନାମଧନ୍ୟ ହୋଇଛନ୍ତି । ଜୀବନବ୍ୟାପୀ ସାଧନା ଫଳରେ ଶ୍ରୀ ରାଉତରାୟ ଓଡ଼ିଆ ସାହିତ୍ୟକୁ ବିଶ୍ୱଦରବାରରେ ପରିଚିତ କରାଇବାରେ ଅନ୍ୟତମ ଯୋଦ୍ଧା । ଶ୍ରୀ ରାଉତରାୟଙ୍କ ଜନ୍ମ ୧୯୧୬ ମସିହାରେ । ସ. ବନଫୁଲ ।]

—୧—

ଘରେ ଘରେ ଯିଏ ନିଭାଇଲା ଦୀପ, ଭରିଦେଲା ହାହାକାର,
ତାହାର ପାଇଁକି ଲେଖନୀ ଆଜି ମୋ ପାଲଟିଛି ହତିଆର ।
ମଣିଷର ବେଶେ ରହିଛୁ ଯେଉଁଠି ଯେତେ ଯେତେ ଜାନୋଆର,
ତମ ପାଇଁ ମୁହିଁ ସଜାଏ ଆଜି ମୋ ଝଙ୍କାରଇ ତରୱାଲ ।
ହୁସିଆର, ହୁସିଆର ॥

—୨—

ସାବଧାନ ହୁଅ ଉଜାଣି ସୁଅର ନଷ୍ଟ କୀଟାଣୁ ଦଳ !
ଆଗୁଆନ ମୋର ଝଡ଼ର ହାଓ୍ୱା ଧ୍ୱଂସର ହଳାହଳ
ମାରେ ପିଚକାରୀ ବିଦ୍ୟୁତ୍ ପରି ନୀଳ ବିଷେ ଧରଣୀର
ଗର୍ଭେ ନାଶିବ ଅଛୁ ଯେତେ ଭ୍ରୂଣ ପାପ ଆଉ ଅନାଚାର ।
ହୁସିଆର, ହୁସିଆର ॥

—୩—

ହୁସିଆର ହୁଅ ପଚୁଆ ସୁଅର ଯେତେ ସବୁ କୁଟା କାଠି,
ତମ ଗୁଳ ଗୁଳା ଗ୍ୟାସ ଗୁଣ୍ଡଣି, ତମ ବାରୁଦର କୋଠି
ଉଡ଼େ ଫରଫର, ଉଡ଼ିଯାଏ ତମ ଲାଠିଆଳ ଆଉ ଲାଠି,
ସବୁ ଗିଳିଦିଏ ଏଇ ଜନତାର ବିଶ୍ୱରୂପର ପାଟି ॥

[illegible] ଆଁଖୁ ତୁ ସ୍ପୃହାଁ ଭଲ କରି ଦେଖିବୁ ସେଠାରେ ଲୀନ
ହୋଇ ଯାଇଅଛି କେତେ ସଭ୍ୟତା, କେତେ ସମ୍ରାଟମାନ ।
ସେଠି ଲୋଟିଅଛି କେତେ ସେ ମୁକୁଟ, କେତେ ସେ ଶାସନ ଅଂକ
[illegible] ସାଗର ତଳେ ଲୁଚିଥିବା ହୀରା ମାଣିକର ପଂକ
ପରି ସେଠି ଇତିହାସ
ମଣିଷକୁ କହେ ଆଗକୁଇ ବଢ଼, ହୁଅନା ପଛର ଦାସ
ପଛକୁ ଫେରିଲେ ମୃତ୍ୟୁ ଇ ପାର, ପାରନ୍ତି ଅଂଧକାର ।
ହୁସିଆର, ହୁସିଆର ।

—୪—

ହୁସିଆର ହୁଅ ଯେତେ ଆତତାୟୀ ମଣିଷ ପଦତ ଚିହ୍ନ
ଲିଭାଉଛି ଯିଏ, ଲିଭାଉଛି ପାପ, କରୁଅଛି ଯିଏ ଛିନ୍ନ
ଜୀବନର ଚିର ସବୁଜ ସନଦ, ଗଢ଼ିଛି ଜୟର ଡଂକା,
ତମ ପାଇଁ ଅଛି ବିଷର ହାଓ୍ୱା, ମରଣର ମରୁ ଶଂକା ।
ଆଜିର ରେ ନଷ୍ଟ ସ୍ୱର !
ତମ ପାଇଁ ଅଛି ଝଡ଼ର ଆବାଜ, ହୁସିଆର, ହୁସିଆର ॥

ତା ୧୬ । ୯ । ୬୯



---

# ॥ ଅନ୍ଧାରର ବିଳାପ ॥

## ଲକ୍ଷ୍ମୀଧର ନାୟକ

[ଓଡ଼ିଆ ସାହିତ୍ୟର ଜଣେ ଯଶସ୍ୱୀ ସାଧକ ଶ୍ରୀ ଲକ୍ଷ୍ମୀଧର ନାୟକ । ଏକାଧାରରେ ସେ ଜଣେ ଔପନ୍ୟାସିକ, ନାଟ୍ୟକାର, ଗାଳ୍ପିକ ଓ କବି । ଜୀବନର ଆରମ୍ଭରୁ ସଂଗ୍ରାମ ମଧ୍ୟରେ ଥିବା ନ ଥିବା (haves and have-nots)ଙ୍କ ପାଇଁ ଯୁକ୍ତି ବାଢ଼ି ବାଢ଼ି ଏକ ଶ୍ରମିକ ସ୍ୱପ୍ନିଳ ଦୁନିଆଁ ଗଠନ କରିବାରେ ସେ ଆଗ୍ରହୀ । ତାଙ୍କ ରଚିତ ହାୟରେ ଦୁର୍ଭାଗା ଦେଶ, ବର୍ଷାର ଶେଷ, ସବହରା, ଭୁଲିଲ ସତେ ସଖୀ, ଆସିବ କେବେ ପ୍ରିୟ, ଚିରନ୍ତନତାର ଚିଠି ଇତ୍ୟାଦି ଉପନ୍ୟାସ, ଲାଲ ଗୁଣ୍ଡୁକ, ଧର୍ମପତ୍ନୀ, ଜମିଦାର ଇତ୍ୟାଦି ନାଟକ ଗୋଟିଏ ଟଙ୍କାର ସାଥୀ, କଙ୍କାଳ ଇତ୍ୟାଦି ଗଳ୍ପ ପୁସ୍ତକ ଓ ଖୋଲି ଝରକା, ସେ, ଉତ୍ତର ବସନ୍ତ ଇତ୍ୟାଦି କବିତା ପୁସ୍ତକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ସଦ୍ୟ ଲିଖିତ ଏହି ଅନ୍ଧାରର ବିଳାପ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକଙ୍କର ଚରମ ସାଫଲ୍ୟର ପ୍ରମାଣ ପ୍ରଦାନ କରେ । ସ.—ବନଫୁଲ]

ଗୋଟିକ ପରେ ଗୋଟିଏ କବିତା ଆବୃତ୍ତି କରି ଚାଲିଥିଲି ଶୁଭେନ୍ଦୁ ।

ସେପ୍ଟେମ୍ବରର ଅପରାହ୍ନ । ବାହାରେ ଝିପିଝିପି ବର୍ଷା । ମେଘୁଆ ପାଗର ଅନ୍ଧାର ଘର ଭିତରେ । ଟ୍ୟୁବ୍ ଲାଇଟର ଉଜ୍ଜ୍ୱଳ ଆଲୁଅରେ ନିଭୃତ କୋଠରୀର ପରିବେଶ କିନ୍ତୁ ଉଷ୍ମ ଆଉ ସ୍ନିଗ୍ଧ ।

ଘଣ୍ଟାଏ ଆଗରୁ ଖିଆପିଆ ସାରି ଶୁଭେନ୍ଦୁ ବିଶ୍ରାମ ନେଉଥିଲା ଖଟ ଉପରେ । ପାଖକୁ ଲାଗି ଲାଗି ପଡ଼ିଥିଲା ମନୀଷା । ଚିତ୍ ହୋଇ ଶୋଇ ମୁହଁ ସାମନାରେ ସଦ୍ୟ ପ୍ରକାଶିତ କବିତା ବହିଟି ଧରି ଗଦ୍ ଗଦ୍ କଣ୍ଠରେ ପଢ଼ି ଯାଉଥିବା ଅବସ୍ଥାରେ ମନୀଷା ବେଶି ତନ୍ମୟ ବିମୁଗ୍ଧ ଭଙ୍ଗୀରେ କାନ ଡେରି ଥାଏ ଆବୃତ୍ତିର ଛନ୍ଦ ଆଡେ ।

ହଠାତ୍ ଗୋଟାଏ ଜାଗାରେ ଖପ୍ କରି ବହିଟା ଟାଣି ନେଇ ଫିଙ୍ଗିଦେଲା ତଳକୁ ମନୀଷା । ପାଟିକରି ଉଠିଲା—ଥାଉ, ଥାଉ, ଆଉ ପଢ଼ିବାକୁ ହବନି ଏ ସବୁ । ଶସ୍ତା ପାଇଛ ମତେ ନାଁ ? ଯାହା ତା' ସାଙ୍ଗରେ ଭାବ ଯୋଗି କରି କବିତା ଲେଖିବ—ଆଉ ଏଠିକି ଆସିବ ଦି' ଦିନ ଫୁର୍ତ୍ତି ଫାଜିଲାମି ପାଇଁ ? କୁହ, କାହା ନାଁରେ ଲେଖିଚ ଏ ସବୁ ?

ଆଶ୍ଚର୍ଯ୍ୟରେ ଉଠି ବସିଲା ଶୁଭେନ୍ଦୁ—କ'ଣ ହେଲା ତୁମର ?

—ହବ କାହିଁକି କ'ଣ ? ମତେ ଲୁଚେଇଚ ଏ ସବୁ କାହିଁକି ? ସେଆଡେ ରହି ଏ ସବୁ ନବରଙ୍ଗ କରୁଚ···ନାଁ ?

—କି ନବରଙ୍ଗ ? କାହା ସାଙ୍ଗରେ ? ବେଶ କଠିନ ଗଳାରେ କହିଲା ଶୁଭେନ୍ଦୁ···ଏ ତ ଗୋଟାଏ କବିତା । ସମ୍ପୂର୍ଣ୍ଣ କଳ୍ପନା ପ୍ରସୂତ ।

—କଳ୍ପନା ? ଖଟରେ ହେଲି ପରି ମୁହଁ ବିକୃତ କରି କହିଲା ମନୀଷା, ମୁଁ କିଛି ବୁଝି ପାରୁନି ଭାବୁଚ ନାଁ ?

—କ'ଣ ସବୁ କହୁଚ ? ଶୁଭେନ୍ଦୁ ଟିକିଏ ସହଜ ହବାକୁ ଚେଷ୍ଟା କରି କହିଲା···ଏଇଁ ସ୍ମୃତିର ସୁରଭି' ?

—ହଁ, ଛେନ୍ଦା ଗୁଡ଼ା ପୂରଉ, କିଏ ସେ ତୁମର ? ଆ ଗୁଡ଼ାକୁ ପୋପାଡ଼ିଲା ପରି କହିଲା ମନୀଷା, କ'ଣ ସମ୍ପର୍କ ତୁମର ତା' ସାଙ୍ଗରେ ?

—ସମ୍ପର୍କଟା ତିରିଶ ବର୍ଷ ତଳେ ଯାହା ଥିଲା··· ସେଇ ଟିକକର ଆସ୍ତ୍ରେଷ ମୋହ ଏଇ କବିତାରେ । ତା'ଠୁ ଆଉ ବେଶୀ କିଛି ନୁହେଁ, ବିଶ୍ୱାସ କର ।

—ବେଶୀ ଯଦି କିଛି ନୁହେଁ, ଆଜି ପର୍ଯ୍ୟନ୍ତ ସେଇଆକୁ ମନେ ରଖି ଏମିତି ଦରଦଭରା କବିତା ଲେଖିଚ ଆଉ ଆବୃତ୍ତି କଲାବେଳେ ବି ଏକାବେଳେ ମସ୍‌ଗୁଲ୍ । ମନ ଭିତରେ ସେଇସବୁ ନାରୀମାନଙ୍କର ସ୍ମୃତିକୁ ଜପାମାଳି କରି ଏଠିକି ଆସ କାହିଁକି ତମେ ? ତମେ ଏତିକି କପଟି ?

—ମିଛରେ ଭୁଲ୍ ବୁଝୁଚ ତମେ, ଶୁଭେନ୍ଦୁ କହିଲା । ସବୁ କଥା କହିଚି ମୁଁ । ଅନ୍ୟମନସ୍କ ରହି କିଛି ମନେ ରଖିନ । ତା' ଛଡ଼ା ଗୋଟାଏ ସ୍ତ୍ରୀ ସହିତ ଯେତେ ମନର ଆକର୍ଷଣ ଥାଉ ନା କାହିଁକି, ଯଦି ଦେହର ମିଳନ ନ ହୋଇଚ···ତେବେ ସେ କ'ଣ ପ୍ରେମ ? ଗୋଟାଏ ଦୁଃସ୍ୱପ୍ନ ଛଡ଼ା···

—ଦୁଃସ୍ୱପ୍ନ ? ଦାନ୍ତ ନିକୁଟି ପୁଣି ମିଛି ଆସିଲା ମନୀଷା । ବଡ଼ ବଡ଼ ଆଖି ଡୋଳା ଭିତରେ ଯେମିତି ନିଆଁର ସ୍ଫୁଲିଙ୍ଗ । କହିଲା—ଦୁଃସ୍ୱପ୍ନ ଯଦି, ସେ ସ୍ମୃତିକୁ ଅମର କରି ରଖିଚ କାହିଁକି ଏ କବିତା ବହିରେ ? ନିଷ୍ଠପ୍ତ ତୁମର ପୁଣି ଦେଖାହୁଏ। ହଉଚି ଭିତରେ ଭିତରେ । ତା' ନ ହେଲେ ପଚାଶ ତିରିଶ ବର୍ଷ ତଳର ଗୋଟାଏ ଘଟଣାକୁ କବିତାରେ ଲେଖି ଏମିତି ତନ୍ମୟ ହୋଇ ଆବୃତ୍ତି କରି ପାରନ୍ତ କେମିତି ?

—କାହିଁକି ? ତୁମ ସମ୍ବନ୍ଧରେ ଲେଖା କବିତାକୁ ମୁଁ କ'ଣ ଉନ୍ମାଦ ହୋଇ ଆବୃତ୍ତି କରୁନାହିଁ ? ଶୁଭେନ୍ଦୁ ପଚାରିଲା ।

—କ'ଣ ଲେଖିଚ ଯେ ମୋ ସମ୍ବନ୍ଧରେ ଆବୃତ୍ତି କରିବ ? ଲେଖିଚ ତ ମୁଁ ଗୋଟାଏ ମାଷ୍ଟ୍ରାଣୀ, କାଳ, ଅପରିଚ୍ଛନ୍ନ । ଖଟି କରି ଖାଏ । ମୁଁ ବୁଝି ପାରୁନ କିଛି ଯେମିତି, କହି ଖଟ ଉପରୁ ତଳକୁ ଡେଇଁପଡ଼ି ବହି-ଟାକୁ ଉଠେଇ ଆଣି ଗର୍ଜି ଉଠିଲା ମନୀଷା—ମତେ ନେଇ ଲେଖା କବିତା ଗୁଡ଼ାକର ପୃଷ୍ଠା ଚିରି ଫାଡ଼ି ଦେବି ଆଣ । ଆଣ ସବୁ ପୋଡ଼ି ପାଉ ନିଆଁ ଲଗେଇ ଦେବି ।

ଫାଡ଼ିବାକୁ ଉଦ୍ୟତ ହଉଚି ମନୀଷା, ଶୁଭେନ୍ଦୁ ଯାଇଁ ଛଡ଼େଇଲା ବହିଟା । କହିଲା ଏ ବହିର ଗୋଟାଏ ପୃଷ୍ଠା ଯଦି ଚିରିଯାଏ···

—କ'ଣ କରିବ ଚିରିଦେଲେ ? ବ' ହାତରେ ଏକପ୍ରକାର ବହିର ମଲାଟ ଧରି ଫାଡ଼ିବା ଭଙ୍ଗୀରେ ଠିଆ ହେଲା ମନୀଷା ।

ଖପ୍ କରି, କାଇଦାରେ ବହିଟା ଝିଙ୍କି ନେଲା ଶୁଭେନ୍ଦୁ ମନୀଷା ହାତରୁ ।

କିନ୍ତୁ ଗୋଟାଏ ଅତର୍କିତ ମୁହୂର୍ତ୍ତରେ ଶୁଭେନ୍ଦୁ ଉପରକୁ ଝାମ୍ପି ପଡ଼ିଲା ମନୀଷା । ବହି ଟାଣି ନବାକୁ ଯାଇଁ ଶୁଭେନ୍ଦୁର ହାତକୁ ଏମିତି ଜୋର୍‌ରେ ଝିଙ୍କି ଦେଲା ····ତଳେ ମୁହଁ ମାଡ଼ି କଚୁଡ଼ି ହୋଇ ପଡ଼ିଲା ଶୁଭେନ୍ଦୁ ।

—କାହିଁକି, କାହିଁକି ମତେ କହିନ ଏ ସବୁ ? ଏତେ ଗାର୍ତ୍ତିକଳାପ ଅଛି ଜାଣିଥିଲେ ମୁଁ କେବେ-ହେଲେ ତୁମ ପାଲରେ ପଡ଼ି ନ ଥାନ୍ତି ।

—ପାଲରେ ମୁଁ ତୁମକୁ ପକେଇଚି ? ଶୁଭେନ୍ଦୁ କଠିଣ ଗଳାରେ ପଚାରିଲା ।

—ହଁ, ହଁ, ତୁମେ···ତୁମେ ପକେଇଚ । ସମୁଦ୍ର କୂଳରେ ହାତ କିଏ ଟାଣିଥିଲା ମୋର ?

—ସମୁଦ୍ର କୂଳକୁ ଡାକି ନେଇଥିଲା କିଏ ? ପଚାରିଲା ଶୁଭେନ୍ଦୁ ।

ନିଆଁ ବାଣ ପରି ଜଳି ଉଠିଲା ମନୀଷା । ମୁଁ ଡାକିଲେ ବି ତୁମେ ଗଲ କାହିଁକି ?

—ଯାଇଥିଲି ଭଦ୍ରତା ଦୃଷ୍ଟିରୁ ।

—ଭଦ୍ର ! ଖଚେଇ ହେଇ କହିଲା ମମ୍ପାଷା, କ ଭଦ୍ରରେ ! ଲୋଫରଙ୍କ ପରି ଦଶ ଗଣ୍ଡାଙ୍କୁ ନେଇ ଥଟ୍ଟା-ତାମସା-ଅଡ୍ଡାର ଶେଷ ନାହିଁ, ମନକୁ ମନ ଭଦ୍ର ଶିରୋମଣି ! ! କୁହ ମତେ ସବୁ ଖୋଲି କରି— କାହାକୁ ନେଇ କ'ଣ କ'ଣ ସବୁ କରୁଚ କୋଉଠି ?

—ଅଶାଚକୁ ଆଉ ଆଲୋଚନା କରି କ'ଣ ହବ, ଶୁଭେନ୍ଦୁ କହିଲା ।

—ଅଶାଚ କାହିଁକି ? ବର୍ତ୍ତମାନ ବି ତ କରି ଚାଲିଚ । ସେଇ ସବୁରେ ମସ୍‌ଗୁଲ ରହିଚ ବୋଲି ତ ଖଣ୍ଡେ ଭଲ କରି ଚିଠି ଦବାକୁ ବି ଫୁରସତ୍ ନାହିଁ ତମକୁ ।

—ଯେତକି ଚିଠି ଦେଇଚ···ସେତକି ଆଗେ ପଢ଼ ।

—କାହିଁ, କେଉଁଟା ଚିଠି ? ସେଇ ବାରପଦାରେ ଥିଲାବେଳେ ଯାହା ଦଶ ବାର ଖଣ୍ଡ—ସେତକ । ଆଉ କାହିଁ ?

ସେଇ ଚିଠି ବି କ'ଣ ତୁମପରି ସ୍ତ୍ରୀକୁ ଦବା କଥା ? ଶୁଭେନ୍ଦୁ ବିଦ୍ରୂପ ଗଳାରେ କହିଲା—

—ଦବା କଥା ନୁହେଁ ଯଦି, ନେଇଯାଅ ତୁମ ନଆଁ-ଚଡ଼ ଚିଠି ସବୁ···ନେଇଯାଅ, କହି ତମ ତମ ହେଇ ସୁଟ୍‌କେଶ୍‌ଟା ଖୋଲି ବାଉଁଶିଆଏ ଖଣ୍ଡେ ଚିଠି ଆଉ ଲଫାପା ଆଣି ଫିଙ୍ଗିଦେଲା ତଳେ ମମ୍ପାଷା । ପଙ୍ଖା ହାଓ୍ୱାରେ ଘରଯାକ ଖେଳେଇ ହେଇ ପଡ଼ିଲା ଚିଠି ଗୁଡ଼ାକ ।

ଦିନ ଛିନଟାରୁ ଅଧି ରାତି ନଅଟା ହେଲାଣି । ହିଁକା ଓଟବ, ଟଣାଟଣି, କଥାର ବରଷା ଚାଲିଚି ଅବିରାମ, ଘର ଭିତରେ । ବାହାରେ ନାସିମ୍ ଵିବି ମୁଣ୍ଡରେ ହାତ ଦେଇ ବସିଚି, ଅଉ ମଝିରେ ମଝିରେ ହୁଇରେ କହୁଚି···ବନ୍ଦ କରନା···କେତେ ବକ୍ ବକ୍ କରୁଚ ବାବୁ ସାଥିରେ ? ରାତିରେ କ'ଣ ଖେଉଁଷେଇ ହବନି ?

ଚିଠି ଗୁଡ଼ାକ ଆଉକୁ ଫିକିଏ ବିଭୋଳ ଦୃଷ୍ଟିରେ ଗୁହିଁଲା ଶୁଭେନ୍ଦୁ । ତାପରେ କ୍ଷଣ ଧୀର ସବୁ ଚିଠିଙ୍କୁ ଏକାଠି ଗୋଟିଆଗୋଟି କରି ରୁଲ କଲା । ଚଉତା-ଚଉଡ଼ି କରି ଚମଡ଼ା ବ୍ୟାଗ ଭିତରେ ଭରତି କଲା । ତା'ପରେ ଉଠି ଯାଇଁ ଲୁଗା ପିନ୍ଧିଲା । ଗେଞ୍ଜି ପିନ୍ଧସାରି ପଞ୍ଜାବୀଟାକୁ ଆଣି ଯେ ଧରିଚି···ଅଗଣାପଟୁ ପୁଣି ବାଘୁଣୀ ପରି ମିଶି ଆସିଲା ମମ୍ପାଷା—କୁଆଡ଼େ ଯାଉଚ ?

—ମାର୍କେଟରୁ ମୁଁ ଆସେ ଟିକେ ।

—ନାଁ, ତମେ ଯାଇ ପାରିବନି ।

—ଅଲବତ୍ ଯିବି ।

—ନାଁ, ଯାଇ ପାରିବନି । ମୋ ଜୀବନଟାକୁ ପୋଡ଼ି ଜାଳି ଭସ୍ମକରି ତୁମେ ନିଶ୍ଚିନ୍ତ ହେଇ ବସିବ ଭାବିଚ ?

—ନିଶ୍ଚିନ୍ତ ଅଛି ? ହୁଁ···ଶୁଭେନ୍ଦୁ ଅର୍ଦ୍ଧସ୍ୱଗତ ଗଳାରେ କହିଲା—ତୁମେ ମତେ ନିଶ୍ଚିନ୍ତ ରହିବାକୁ ଦବ ?

—ନାଁ ଦେବ ନି । କାହିଁକି ଦେବ ? ପୁଅ ମାଇପ, ନେଇ ବ୍ୟବସାୟ କରି ଫୁର୍ତ୍ତିରେ ରହିବ ତମେ, ଆଉ ମୁଁ ଏଣେ ବାଟ ଗୁହିଁ ବସିଥିବି । ଖଟି ଖଟି ମରୁଥିବି ଦିନ ରାତି । କେବେ ମାସେ କି ମାସକେ ଥରେ ଅଧେ ପାଇଁ ଆସିବ···ସେଥିରେ ଯାହା ଇଚ୍ଛା ତା' କହିବ ମତେ ! ଆଜ ଫଏସଲା କର—କ'ଣ ତୁମ ମତଲବ । ମତେ ନେଇ କ'ଣ କରିବ ତମେ ?

—ତମକୁ ନେଇ ମୁଁ କିଛି କରିବାକୁ ଚାହେଁନି । ଏ ସମ୍ପର୍କ ବି ମୁଁ ରଖିବାକୁ ଚାହେଁନି ଆଉ ।

—ଆଚ୍ଛା ! ଚାହୁଁନାହିଁ ? ନ ଚାହୁଁ ଯଦି ଆଜ ପର୍ଯ୍ୟନ୍ତ ଅଧବାଟରେ ମତେ ଠିଆ କରେଇଚ କାହିଁକି ?

—ମୁଁ ଠିଆ କରେଇନି । ନିଜେ ଠିଆ ହେଇଚ ତମେ ଏବଂ ବେଶୀ ଯଦି ବିରକ୍ତ କରିବ ମତେ, ତା'ହେଲେ ତୁମଠୁ ପ୍ରତିଶୋଧ ନେବାକୁ ବି ମୁଁ ପଛେଇବ ନାହିଁ ।

—ତାହେଲେ ମୋ ପ୍ରତି ଆଉ ତୁମର ମାୟା-ମମତା କିଛି ନାହିଁ । ମନୀଷା ପଚାରିଲା, ଏଥର ଟିକିଏ କାନ୍ଦେଇ ଗଳାରେ ।

—ଯୋଉ ସ୍ତ୍ରୀ ଏତେ ସନ୍ଦେହୀ, ତାକୁ ନେଇ ମୋ ପରି ଲୋକ ଚଳି ପାରିବନି । ମୁଁ ସବୁ ସମ୍ପର୍କ ଛିନ୍ନ କରିବାକୁ ଚାହେଁ ।

—ଛିନ୍ନ କରିବ ଯଦି କର । କିନ୍ତୁ ଭାବିଚ ଥରେ, ଯେ ତୁମର ଚିନ୍ତାରେ ଗଲା କୋଡ଼ିଏ ବର୍ଷ ଧରି ଛଟପଟ ହଉଚି···ସେ ଯଦି ଜାଣେ ତା ମନର ପୁରୁଷ, ତା'ର ପାଶୋରା ଅତୀତର ମାନସୀକୁ ନେଇ ଭାବନା ରାଜ୍ୟରେ ଘୂରି ବୁଲୁଚି···

କଥା ମଝିରେ ବାଧାଦେଲେ ଶୁଭେନ୍ଦ୍ର । କହିଲେ

—ବିଶ୍ୱାସ କର, ହେମାଙ୍ଗିନୀ ସହିତ କିଛି ବି ସଂପର୍କ ନ ଥିଲା ମୋର ।

—ଯେତିକି ଥିଲା ସେତିକି ମତେ କହିନ କାହିଁକି ? ମନୀଷାର ପୁଣି ସେଇ ପ୍ରଶ୍ନ ।

—କି ଆଶ୍ଚର୍ଯ୍ୟ, କେତେବେଳେ କହିବି ? ଗଲା କୋଡ଼ିଏ ବର୍ଷ ଧରି ତୁମ ସହିତ ସେଇ ପ୍ରଥମ ଦିନର ସୋହାଗଠୁ ଦୁହେଁ ଆମେ ଯେ ଭାସି ଚାଲିଥାଇଁ ପ୍ରେମର ଉଜାଣି ତରଙ୍ଗରେ ! ନିସ୍ତରଙ୍ଗ ହେଇ ରହିଲେଇଁ କେତେବେଳେ ଯେ ଅତୀତକୁ ମୁଁ ବଖାଣିଥାନ୍ତି ତୁମ ଆଗରେ । ଆଉ ତା ଛଡା···ତୁମେ ନିଜେ ବି କ'ଣ ତୁମ ଅତୀତର ଅନୁଭୂତିମୟ କାହାଣୀ କିଛି କହିଚ ମୋ ଆଗରେ ?

—ମୋ'ର କି ଅତୀତ ଅଛି ଯେ ଅନୁଭୂତିମୟ କାହାଣୀ କହି ଥାଆନ୍ତି ? ମନୀଷା ନିର୍ଲିପ୍ତ ଗଳାରେ ପଚାରିଲା ।

—କାହିଁକି ଅତୀତ ନାହିଁ ତୁମର ? ଶିକ୍ଷୟିତ୍ରୀ ଜୀବନର ଅତୀତ ଯେ ସବୁଠୁ ବଳି ରୋମାଞ୍ଚକର ।

—କ'ଣ ସବୁ କହୁଚ ଯାହା ତା' ! ମନୀଷା ପୁଣି ଥରେ ରାଗରେ ଜଳି ଉଠିଲା । ଟିକିଏ ରହିଯାଇ ଚଡ଼ା ଗଳାରେ କହିଲା···ଜାଣିଥିଲି ଯଦି ଶିକ୍ଷୟିତ୍ରୀଙ୍କ ଅତୀତ ରୋମାଞ୍ଚକର···ହାତ ଭିଡ଼ୁଥିଲ କାହିଁକି । ସବୁ ନିଜେ କରେଇ ଏବେ ତେବେ ଏତେବେଳକୁ ଭଦ୍ରଲୋକ !

ଖଟ ଉପରେ ଗୁମ୍ ହୋଇ ବସିପଡ଼ିଲେ ଶୁଭେନ୍ଦ୍ର !

—ବସିଲ କ'ଣ ? ଜବାବ ଦିଅ, ନିଜ ଦୋଷକୁ ଛପେଇବା ପାଇଁ ମୋ ଉପରେ ଦୋଷ ଲଦି ପାରି ହେଇଯିବ ଭାବୁଚ ? କୁହ, ତୁମ ମତଲବ୍ କଣ ! ତା' ପରେ ଶୁଭେନ୍ଦ୍ରର ମୁହଁକୁ ହାତରେ ଧରି ବୁଲେଇ ଦେଲା ମନୀଷା ନିଜ ଆଡ଼କୁ ।

—ଛାଡ଼ କହୁଚି, ମନୀଷା ହାତକୁ ଠେଲିଟାଏ ଦେଲେ ଶୁଭେନ୍ଦ୍ର ।

ପୁଣି ବଙ୍କେଇ ଧରିଲା ମନୀଷା ଶୁଭେନ୍ଦ୍ରର ମୁଣ୍ଡଟାକୁ—ଦିଅ ଜବାବ ଦିଅ ।

ଏଥର ଜୋରଟାଏ ନିର୍ଘୂମ ଧକ୍କା ଦେଲେ ଶୁଭେନ୍ଦ୍ର, ମନୀଷାକୁ ।

ଗୁଳି ଖେଳରେ ଘାଏଲ୍ ବାଘୁଣୀଠୁ ବଳି ଆତୁର ଜୋର୍‌ରେ ରଡ଼ି ଛାଡ଼ିଲା ମନୀଷା । ନଖରେ ଆମ୍ପୁଡ଼ି-କାମ୍ପୁଡ଼ି ଭିଡ଼ି-ବିଦାରି ଲହୁ ଲୁହାଣ କରିଦେଲା ଶୁଭେନ୍ଦ୍ରର ମୁହଁ, ବେକ, ପିଠି, ହାତ, ଦେହର ଚାରିଆଡ଼ ।

ପ୍ରତ୍ୟାଘାତ କରିବାର ଇଚ୍ଛା ହେଲାନାହିଁ ଶୁଭେ-ନ୍ଦ୍ରର । ସବୁ ଅତ୍ୟାଚାରକୁ ସହ୍ୟ କରି ନେବାର ଏକ ଗୁରୁଗମ୍ଭୀର ଶକ୍ତ ମନ ନେଇ ସେ ଯେମିତି ଅଟଳ ମହାମେରୁ ପରି ବସି ରହିଲେ ।

ଡରିଗଲା ମନୀଷା । ଶୁଭେନ୍ଦ୍ରର ଏଇ ହଠାତ୍ ଗମ୍ଭୀର ହେଇଯିବା ସ୍ତବ୍ଧ ନିଶ୍ଚଳ ଚେହେରାଟା ହିଁ ବଡ଼ ଆଘାତକ ତା' ପକ୍ଷରେ ।

କିଛି ସମୟ ଗୁମ୍ ସୁମ୍ ହେଇ ବସି ରହିଲା ପରେ ଶୁଭେନ୍ଦ୍ର ଉଠିଯାଇଁ ଦର୍ପଣ ଆଗରେ ଠିଆହେଲେ । ବେକ, ଗାଲ, କାକରେ ଶାଣିତ ନଖର ଆଞ୍ଚୁଡ଼ା

ଦାଗ । କଚଟି ପାଖରେ ଚେନାଏ ଚମଡ଼ା ଉଠି-ଯାଇଚ । ହାଉ ହାଉ ପୋଡ଼ୁଚି ଗୁରୁଆଡ଼ ।

ହଠାତ୍ କ'ଣ ଭାବ ମନୀଷା ଉଠି ଶୁଭେନ୍ଦୁ ପାଖକୁ ଲାଗିଗଲା । କହିଲା—ରୁହ ଟିକିଏ ଅମୃତାଞ୍ଜନ ଲଗେଇ ଦିଏଁ ।

—ଦର୍କାର ପଡ଼ିବନି ଅମୃତାଞ୍ଜନର । ଦର୍ପଣ ପାଖରୁ ଫେରିଆସି, କାମିଜଟା ପିନ୍ଧି ଶୁଭେନ୍ଦୁ ପୁଣି ବାହାରିଲା ମାର୍କେଟ ଯିବାକୁ ।

—ଲଗେଇଦିଏ ନାଁ ଟିକିଏ ! ନରମ ଗଳାରେ ଜିଦ୍ କଲା ପରି ମନୀଷା ଅମୃତାଞ୍ଜନ ଶିଶି ଖୋଲି ଟିପରେ ଟିକିଏ ଧରିଲା ।

ପଛକୁ ଘୁଞ୍ଚି ଠିଆହେଲା ଶୁଭେନ୍ଦୁ । ଯାଅ, ଯାଅ ମୋ ସାମ୍ନାରୁ । ମନେରଖ, ଆଜି ରାତି ଏ ଘରେ ମୋର ଶେଷ୍ ରାତି ।

—ଓଃ, ଏଇ ଧମ୍କାଣଟା ଖୁବ୍ ଦେଇ ଜାଣ । ଯାଉନ ଯିବ ଯଦି, କିଏ ତୁମ ସାଙ୍ଗରେ ଗୋଡ଼େଇଚ ।

—କାହିଁକି ଗୋଡ଼େଇବ ? ତୁମର କ'ଣ ଅଭାବ ?

—ହଁ, ଅଭାବ କାଇଁକି ହବ ? ଯାଅ ତୁମେ, ଗଲେ ମୁଁ ସ୍ୱାସ୍ଥ୍ୟ ପାଇବ । କହି ହଠାତ୍ ଗୋଟାଏ କ କୋହର ଉଚ୍ଛ୍ୱାସକୁ ଚପି ରଖିବାପାଇଁ ଖଟ ଉପରକୁ ଉଠିଯାଇ ମୁହଁ ମାଡ଼ି ଶୋଇଲା ତକିଆ ଉପରେ । ବୋଧହୁଏ ସୁଁ ସୁଁ କରି କାନ୍ଦିଲା ମନୀଷା ।

ବାହାରକୁ ଯିବା ଆଉ ହେଲାନାହିଁ ଶୁଭେନ୍ଦୁର । ସୁଇଚ୍ ଅଫ୍ କରି ଆଲୁଅ ଲିଭେଇ ଦେଇ ଖୁର୍ଚି ଉପରେ ବସି ପଡ଼ିଲା । ଅନ୍ଧାର ଭିତରେ ଘଡ଼ିଟାର ଉଜ୍ଜ୍ୱଳ ଦାଗ ଚକ୍ ଚକ୍ କଲା ସାମ୍ନାରେ । ରାତି ପ୍ରାୟ ବାରଟା ।

ନିଶୁତି ରାତିର ପ୍ରହର ଗଡ଼ି ଚାଲିଲା-ମିନିଟ ପରେ ମିନିଟ ।

ଟେବଲ୍ ଉପରେ ମୁହଁ ମାଡ଼ି ଶୁଭେନ୍ଦୁ ଖୁବ୍ ଚେଷ୍ଟାକଲା ଗୁଡ଼ାଏ ଦୁଶ୍ଚିନ୍ତାକୁ ମନ ଭିତରୁ ଆଡେଇ ଦବାକୁ । କିନ୍ତୁ ସବୁ ହେଲା ବ୍ୟର୍ଥ ! ମନସ୍ତାପ ଆଉ ଆତ୍ମବାଦ ! ଛି, ଛି, କାଇଁକି ସେ ଜୀବନରେ ଏତେବଡ଼ ଭୁଲ୍ କଲା ?

କିଛି ସମୟ ପରେ ମନୀଷାର ନିଃଶ୍ୱାସ ଶବ୍ଦ ବାରିହେଲା ନିର୍ଜନ ଘରର ଅନ୍ଧକାର ଭିତରେ । ଖୁବ୍ ନିଦ ହେଇଯାଇଚ ମନୀଷାକୁ । ଦିନ ତିନିଟାରୁ ବାଜେଇ ପିଟି ହେଇ ଶେଷକୁ ହାଲିଆ ହେଇ ଶୋଇପଡ଼ିଚ ମନୀଷା ।

ଏଇ ହଉଚ ମୁହୂର୍ତ୍ତ !

ଲୁଚି ପଳେଇବ ଘର ଭିତରୁ ଶେଷ ଥର ପାଇଁ ? ଶୁଭେନ୍ଦୁ ଭାବିଲା ମନକୁ ମନ । ଏଘରୁ ତା'ର ବିଦାୟ ହନେ ନାଁ ହନେ ଯଦି ଅନିବାର୍ଯ୍ୟ, ତେବେ ଆଜି ବା ଏଇ ରାତିର ନିର୍ଜନ ପ୍ରହର ଭିତରେ ନ ହେବ କାହିଁକି ?

ପଙ୍ଖାଟା ଚାଲିଚ । ତେବେ ବି ଅସମ୍ଭବ ଗରମ । ବାହାରେ ମେଘ ଘୋଡ଼େଇ ରଖିଚ ଆକାଶକୁ । ଗୋଟାଏ ଭୂମିକା ଝଡ଼ ତୋଫାନ ଆସିବାର ପ୍ରସ୍ତୁତ ଚାଲିଚ ଦୂର ଦିଗ୍‌ବଳୟରେ ।

ନିଦ ତ ଲାଗୁନି । କ'ଣ କରିବ ତେବେ ? ମନୀଷା ପାଖରେ ଶୋଇବାକୁ ଦେହ ଯେପରି କଣ୍ଟକିତ ହେଇ ଉଠୁଚ ଘୃଣାରେ । ମନ ଭିତରେ ଅନୁ-ଶୋଚନାର ବୃଶ୍ଚିକ ଦଂଶନ । ହଁ, ମନୀଷା ସହିତ ସମସ୍ତ ସମ୍ପର୍କ ଛିନ୍ନ କରିବାକୁ ହିଁ ହେବ । ଶୁଭେନ୍ଦୁ ଏକ କଠିନ ପ୍ରତିଜ୍ଞାରେ ଯେପରି ନିଜକୁ ଶକ୍ତ କରି ନେଲା । ତା' ପରେ ସେଇ ଶପଥର ପ୍ରଥମ ପଦ-କ୍ଷେପ ସ୍ୱରୂପ···ମନୀଷା ପାଖକୁ ତା'ର ଲିଖିତ ଚିଠି ଗୁଡ଼ାକ ଆଗେ ପୋଡ଼ି ଜାଳି ଭସ୍ମ କରି ଦିଆଯାଉ, ତା'ପରେ ଆଉ ଯାହା ।

ଖୁବ୍ ସନ୍ତର୍ପଣରେ ପାଦ ଚପି ଚପି ଯାଇଁ ଦୁଆର ଖୋଲିଲା ଶୁଭେନ୍ଦୁ । ସୁଇଚ୍ ଟିପି ବାରଣ୍ଡାର ବତି ଜାଳିଲା । ତାପରେ ଲଗେଇଲା ଇଲେକ୍‌ଟ୍ରିକ୍ ହିଟର୍ । ସନ୍ଧ୍ୟାବେଳେ, ମମତା ଯେଉଁ ଚିଠି-ଗୁଡ଼ାକ ଫିଙ୍ଗି ଦେଇଥିଲା ତଳେ ସେ ଗୁଡ଼ାକୁ ସେ ଗୋଟେଇ ପୋଟେଇ ରଖିଥିଲା ଚମଡ଼ା ବ୍ୟାଗ ଭିତରେ । ସେ ଗୁଡ଼ାକ କାଢ଼ିଲା ଗୋଟି ଗୋଟି କରି । ଇସ୍ ଦଶ-ବାରଫାଳର କି ଲମ୍ବା ଚଉଡ଼ା ଚିଠି ! ଗଲା କୋଡ଼ିଏ ବର୍ଷ ଭିତରେ କି ପାଗଳାମି ବା ନ କରିଚି ସେ ! କି ନିର୍ଲଜ୍ଜ କବିତ୍ୱ

ଖଣ୍ଡିକ ପରେ ଖଣ୍ଡିଏ କରି ଚିଠି କାଢ଼ି ଟିକିଏ ଏପାଖ ସେପାଖ ଦେଖି ହିଟର୍‌ରେ ଅଗ୍ନି ସଂଯୋଗ କରି ନେଇ ତଳେ ରଖି ଜଳେଇବାରେ ଲାଗିଲା ଶୁଭେନ୍ଦୁ ।

ମିନିଟ ମିନିଟ ହେଇ ଗଡ଼ି ଚାଲିଲା···ରାତି ଆହୁରି ଗମ୍ଭୀର ହେଲା । ନିଶ୍ଚିନ୍ତ ଆରାମରେ ଶୋଇଛି ମମତା । ଶୋଉ, ଶୋଉ, ଏଇ ସୁଯୋଗ, ତା'ର ସବୁ କିଛି ମାୟା ମମତା ମୁହଁରେ ନିଆଁ ଲଗେଇ ଧ୍ୱଂସ କରିଯିବା ପାଇଁ ଏଇ ହଉଚି ମାହେନ୍ଦ୍ର ସୁଯୋଗ ।

·ଚିଠିର ସେ ଅସରନ୍ତି ଭଣ୍ଡାର ! ଖଣ୍ଡ ଖଣ୍ଡି କରି ପୋଡ଼ି ବସିଲେ ସେ ଦି' ତିନ ରାତି ଅଣ୍ଟିବନି । କ'ଣ ବା ଆଉ ଦେଖିବାର. ଅଛି ମୁଦା ଚିଠି ଗୁଡ଼ାକ ଖୋଲି ଖାଲି ପୁଣି ଥରେ ଆମୂଳଚୂଳ ପଢ଼ିବା ! ସେଇ ବିରହ, ସେଇ ବେଦନା, ସେଇ ଅଭିମାନର ତ ପୁନରାବୃତ୍ତି । ଅଧିକା କ'ଣ ! ସମସ୍ତ ନଷ୍ଟ କରି ଲାଭ କଣ ? ଏଇତ ଜଳୁଚି ନିଆଁ···ସବୁ ଗୁଡ଼ାକ ଏକ ସଙ୍ଗରେ ପକେଇଦେଲେ ତ ଯାଏ ।

ଗୋଟାଏ ଉତ୍ତେଜନାରେ ସବୁ ଚିଠିଗୁଡ଼ାକ ଦି ହାତ ମୁଠାରେ ସାଉଁଟି ଧରି ନିଆଁ ରେ ପକେଇ-ବାକୁ ଯାଉଚି; ହଠାତ୍ ଖଣ୍ଡେ ନେଳିଆ ରଙ୍ଗର କାଗଜ ଖସି ପଡ଼ିଲା ତା' ଭିତରୁ । ନେଳିଆ କାଗଜରେ ·ଚିଠି ଲେଖି କେବେ ମମତାକୁ ଦେଇଚି ବୋଲି ତ ମନେ ପଡ଼ୁନି ତା'ର । ତେବେ, ଏଇଟା କ'ଣ ଏ ଭିତରେ ? କୌତୂହଳ ହେଲା ଶୁଭେନ୍ଦୁର । ହାତ ମୁଠାରୁ ଧରିଥିବା ଚିଠି ମେଞ୍ଚାକ ନିଆଁ ଉପରକୁ ଫିଙ୍ଗି ଦେଇ ସେଇ ନେଳିଆ କାଗଜ ଖଣ୍ଡିକୁ ଆଲୁଅ ଆଗରେ ବେଶ୍ ପରିଷ୍କାର ମେଲେଇ ଦେଖିଲା ଶୁଭେନ୍ଦୁ । ହଁ, ମମତା ହାତର ଲେଖା । କିନ୍ତୁ ଏ ଚିଠି ମମତା ଲେଖିଥିଲା କାହା ପାଖକୁ ? କ'ଣ ମୋ'ରି ପାଖକୁ ? କିନ୍ତୁ ନାଁ ତ ! ଚିଠିର ପ୍ରଥମ ସମ୍ବୋଧନ ସେ ଅଦ୍ଭୁତ ଢଙ୍ଗରେ । 'ଆଦରର କବି' ଜାଗାରେ ସମ୍ପୂର୍ଣ୍ଣ ବିଚିତ୍ର ଦୁଇଟି ଅକ୍ଷର ।

ଗୋଟାଏ ପ୍ରବଳ ଉତ୍ତେଜନା ନେଇ ସମସ୍ତ ଚିଠିଟି ପଢ଼ି ଚାଲିଲା ଶୁଭେନ୍ଦୁ । ମମତା ଲେଖିଥିଲା ଚିଠି ନ ଲେଖି ରହି ପାରିଲି ନାହିଁ । କୋଡ଼ିଏ ବର୍ଷ ପରେ ଦେଖିଲି ତୁମକୁ ଭଦ୍ରକ ବସ୍ ଷ୍ଟାଣ୍ଡରେ । ଏକା ସାଙ୍ଗରେ ବି ଆସିଲି । ତୁମେ ବସିଲ ମୋ ପଛ ସିଟ୍‌ରେ । ମତେ ଦେଖି ପଚାରିଲ କୁଆଡ଼େ ଯାଉଚ ? କୁଆଡ଼େ ଯାଉଚି କ'ଣ ଜାଣି ନ ଥିଲ ? ତେବେ ବି କଥାର ସୂତ୍ର ଆରମ୍ଭ କରିବାକୁ ପ୍ରଥମେ ଚେଷ୍ଟାକଲ ତମେ । ବାରିପଦାରେ ଓହ୍ଳେଇ ଚା' ଖାଇବାକୁ ବି ଡାକିଲ···

ସାରା ରାସ୍ତାଟାଯାକ ମନେ ପଡ଼ୁଥାଏ ତୁମ ସାଙ୍ଗରେ ମୋର ସେଇ ସ୍କୁଲ ପଢ଼ାଦିନର କିଶୋରୀ ଜୀବନର ସମସ୍ତ ଘଟଣା । ମତେ ସନ୍ଧ୍ୟାବେଳେ ପଢ଼େଇବାକୁ ଆସି, ତୁମେ ଯୋଉ ଜିଦ୍ ଧରି ବସ ଗୀତ ଗାଇ ଶୁଣାଇବାକୁ । ସେଇ ପ୍ରିୟ ଗୀତଟି ତୁମର "ଏଖନୋ ତାରେ ଚୋଖେ ଦେଖିନି ଶୁଧୁ ବାଁଶି ଶୁନେଚି···" ସବୁ ମନେ ପଡ଼ିଲା । ରାସ୍ତାଟାଯାକ ଭାବି ଭାବି ଆସି ଘରେ ପହଞ୍ଚିଲି । ଘରେ ବି ରାତିରେ ଶୋଇ ଶୋଇ ଭାବିଲି ସେଇ କୋଡ଼ିଏ ବର୍ଷ ତଳେ, ଏଇ ଘରେ ତୁମେ ଯେତେବେଳେ ଏକାନ୍ତରେ ମତେ ପାଇ ଅସ୍ଥିର ହେଇ ଉଠିଥିଲ···

ହଠାତ୍ ଦୁଆର ଖୋଲିବାର ଶବ୍ଦ । ପେଡ଼ା ବନ୍ଦ ଲଗିଲ । ଚମକି ଉଠିଲ ଶୁଭେନ୍ଦୁ । ଏ ଯେ ଷା ଠିଆ ହୋଇଛି ଆସି ସାମ୍ନାରେ । ଓରରେ ଚିଠିଟାକୁ ଲୁଚେଇବାକୁ ଚେଷ୍ଟା କରୁ କରୁ ଶୁଲେଇ ନେଲି ବାଙ୍କା କେଶୁଟା ଧାଡ଼ ଉପରେ । । ଚଳକୁ ଲେଖାହୋଇଛି ଇତି, ତୁମର 'ମେନ ।'

—କ'ଣ ହେଉଛି ଏସବୁ ? ପ୍ରଶ୍ନ କଲି ମନୀଷା ।

—ଚିଠି ଗୁଡ଼ାକ ପୋଡ଼ୁଛି ।

—କଏ କହିଲା ତୁମକୁ ମୋ ଚିଠିଗୁଡ଼ା ପୋଡ଼- କଏ କହିଲା ? ବାଘୁଣୀ ପରି ଗର୍ଜି ଉଠିଲା

—ଏ ଚିଠି ମୋର, ତୁମର ନୁହେଁ । ମୁଁ ଲେଖିଛି । ମୋ'ର ଯାହା କିଛି ଅଛି ଏ ଘରେ ମୁଁ କରିବାକୁ ଚାହେଁ ଏଇ ମୁହୂର୍ତ୍ତରେ ।

ତୁମେ ପାରିବନି, ପାରିବନି କହି ତଳେ ଥିବା ବାକି ଚିଠି ଗୁଡ଼ାକୁ ଜାବୁଡ଼ି ଧରିଲା ମନୀଷା । ଉଠି ଠିଆ ହୋଇ ପଡ଼ିଲା ଶୁଭେନ୍ଦୁ । ହାତରେ ଇ ନେଇ କାଗଜର ଚିଠିଟାକୁ ଶକ୍ତ କରି ମୁଠେଇ ଆ ହୋଇ ପଡ଼ିଲା ।

—ହାତରେ କ'ଣ ସେଇଟା···

—ଏଇଟା ତୁମ ଚିଠି । ଏଇଟା ଉପରେ ମର ଦାବୀକୁ ମୁଁ ସ୍ୱୀକାର କରୁଛି । ନିବ ଟାକୁ ?

—କ'ଣ ସେଇଟା ?

—ଏଇଟା ବି ପ୍ରେମପତ୍ର ।

—କାହାର ?

—ଦେଖିଲେ ଜାଣି ପାରିବ । କିନ୍ତୁ ମୁଁ ଯ୍ୱାକୁ ହାତରେ ଦେବନି ।

—ଅଲବତ୍ ଦେବ । ମନୀଷା ଛଡ଼େଇବାକୁ ଚେଷ୍ଟାକଲା ଚିଠିଟାକୁ ।

—ବୃଥା ଚେଷ୍ଟା । ଏ କାଗଜ ତୁମେ ଜବରଦସ୍ତ ପାଠ ନେଇ ପାରିବନି ମନୀଷା । ମୁଁ ହୁଏତ ସ୍ୱଇଚ୍ଛାରେ ଦେଇଦେବି । କିନ୍ତୁ ଗୋଟାଏ ସର୍ତ୍ତରେ କେବେ ଯଦି ଦର୍କାର ପଡ଼େ···କୋର୍ଟରେ ମୋର ଆତ୍ମ ସମ୍ମାନ ରକ୍ଷା କରିବାପାଇଁ ଏ ଚିଠିଟି ତମେ ମତେ ଦେବ···ଏଇ ପ୍ରତିଶ୍ରୁତି ଯଦି ଦିଅ । ଏ ଖଣ୍ଡି କ ମୋ ମର୍ଯ୍ୟାଦା ରକ୍ଷା କରିବାର ମହୌଷଧି ହେଲା !

—ହେଲା ! କ'ଣ ସେ ଦେଖିଲି ମୁଁ ଦେଖି- ବାକୁ ଚାହେଁ ।

—କହିଲି ତ ପ୍ରେମ ଚିଠି !

—କାହାର ?

—କାହାର ଆଉ ? ଜଣେ ଅବିବାହିତା ଶିକ୍ଷୟିତ୍ରୀର ! ତାକ ନାଁ ତା'ର 'ମେନ' ।

—ମେନ ?

—ହଁ, 'ମନୀଷା'ରୁ ମେନ ବା 'ମେନ'ରୁ ମନୀଷା ।

—କ'ଣ ଲେଖା ହୋଇଛି ? ମନୀଷା ଗମ୍ଭୀର ଗଳାରେ ପଚାରିଲା ।

—ମନେ ନାହିଁ ତୁମର କିଛି ନାଁ ? କୋଡ଼ିଏ ବର୍ଷ ଆଗରୁ ଚଉଦ ବର୍ଷର ସ୍ମୃତି ! ପୁଣି ସେଦିନ ହଠାତ୍ ଉତ୍କଳ ବାସ୍‌ରେ ଏକାଠି ଆସିବାର ରୋମାଞ୍ଚକର ଉତ୍ତେଜନା, କିଛି ମନେନାହିଁ ?

ରାଗରେ ପାଟିକରି ମେଦନୀ ଫଟେଇଲା ମନୀଷା ସେଇ ରାତିର ନିସ୍ତବ୍ଧ ପ୍ରହର ଭିତରେ । ଝାମ୍ପି ପଡ଼ିଲା ସିଧା ଶୁଭେନ୍ଦୁ ଉପରକୁ—ଦିଅ, ଦିଅ ସେ ଚିଠି···ମୁଁ ସବୁ କହିବି ତୁମକୁ ।

—କହିବ ତ ! ଚିଠି ଲେଖା କଥା ବି କହ କହିଥିଲ ? ଶୁଭେନ୍ଦୁ ପଚାରିଲା ?

—ଚିଠି ଲେଖିଥିଲି, ପକେଇନି ।

—ମନର ପାପଟା କ'ଣ ଚିଠି ନ ପକେଇ ବୋଲି କଟିଯାଇଛି ? ଚିଠି ଲେଖିଲାବେଳର ତୁ ବ୍ୟଭିଚାରିଣୀ ଚେହେରାଟା···ସେଇଟା କ'ଣ ଲୁ ରହି ପାରିଲା ଶେଷ ପର୍ଯ୍ୟନ୍ତ ? ନାଁ, ମୋ 'କହିବା ଭିତରେ ଯେଉଁ ବ୍ୟଭିଚାରୀ ଆତ୍ମାକୁ ତୁମେ ଖୋଜୁ

ଥିଲ···ସେ ଭୁମର ଏଇ ଶଠି ଭିତରେ ହିଁ ଛପି ରହିଚ···ନାଅ···ତମ ପଣତ କାନରେ ବାନ୍ଧରଖ ଏ ଶଠିଟି···କହି···ମମାଷାର ଶାଢ଼ୀ ପଣତରେ ଶଠିଟାକୁ ଖୁବ ପାଞ୍ଚଟା ଗଣ୍ଠି ପକେଇ ବାନ୍ଧ ଦେଲ ଶୁଭେନ୍ଦୁ । ତା'ପରେ ଘର ଭିତରକୁ ପଶିଯାଇଁ ଖଟ ଉପରେ ଶୋଇପଡ଼ିଲ ଶିର୍ ହେଇ

ବାହାରେ, ଘଞ୍ଚର ସେଇ ନିଶୁପ୍ତି ଅନ୍ଧାର ଭିତରେ ଅନେକବେଳଯାଏଁ ଠିଆ ହେଇ ରହିଲ ମମାଷା, ସେକଥା ଜାଣିବାକୁ ଶୁଭେନ୍ଦୁର ଆଉ ଆଗ୍ରହ ନଥିଲ । କେବଳ ଖୁବ୍ ଗଭୀର ଭାବରେ ନିଦ ଲାଗି ଲାଗି ଆସିବା ଆଗରୁ ଯୋଉ ଠିକିକ ସମସ୍ତ ଝାପ୍ସା ଝାପ୍ସା ହେଇ ଆସୁଥିଲ, ତା'ର ଭିତରେ ଆଖି ବୁଜ ବୁଜ ସେ ଗୋଟାଏ କଥା ଜାଣିପାରୁ ଖୁବ୍ କୌତୂହଳ ହେଇ ଉଠିଥିଲ—ପଣତ କାନିରେ ବନ୍ଧା ହେଇଥିବା ଶଠିଟାକୁ, ମମାଷା କ'ଣ ନିଆଁରେ ପକେଇ ଜାଳି-ପୋଡ଼ି ଭସ୍ମ କରିଦେଲ—ନାଁ, ତା' ଅବିବାହିତା ଜୀବନର ପ୍ରଥମ ପ୍ରଣୟୀ ସହିତ, ବହୁ ବର୍ଷ ପରେ ହଠାତ୍ ଦେଖା ହେବାର ଘଟଣାଟିକୁ ସ୍ମୃତି ସର୍ବସ୍ୱ କରି ସାଇତି ରଖିବା ପାଇଁ, ସେଇ ନେଳ କାଗଜର ଶଠିଟିକୁ ଶୁଭେନ୍ଦୁ ଦୃଷ୍ଟିରୁ ସବୁଦିନ ଲାଗି ଲୁଚେଇ ରଖିବା ପାଇଁ ଏକ ଶେଷ୍ ଚେଷ୍ଟା କଲ ଘରର ନିର୍ଜନ ନିଭୃତ ଭିତରେ !



# ॥ ଗାଆଁକୁ ॥

## ପ୍ରମୋଦ କୁମାର ମହାନ୍ତି

[ଜଣେ ତରୁଣ ଅତ୍ୟାଧୁନିକ କବି ଶ୍ରୀ ପ୍ରମୋଦ କୁମାର ମହାନ୍ତି । ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ତାଙ୍କ କବିତା ଗୁଡ଼ିକ ଧାରାବାହିକ ଭାବେ ପ୍ରକାଶିତ ହୁଏ । ରୂପକଳ୍ପ ଓ ଚିତ୍ରକଳ୍ପର ପ୍ରୟୋଗରେ କବିତାର ଶ୍ରୀଅଙ୍ଗକୁ ଶୋଭିବନ୍ତ କରି ବୌଦ୍ଧିକ ପ୍ରତୀକ ଓ ବିମ୍ବ ସୃଷ୍ଟି ତାଙ୍କର ନିଜସ୍ୱ, ତାଙ୍କ ରଚିତ 'କ୍ରମଶଃ' କବିତା ସଂକଳନ ଏହାର ଯଥେଷ୍ଟ ପ୍ରମାଣ । ସଂ. ବନଫୁଲ]

ଆମେ ଦୁହେଁ ଅଲଗା ଅଲଗା : ତେଣୁ ଇ ଅଜ୍ଞାତ ରକ୍ତ ମନେ ଅଛୁ ।
ତୋ ବୁକୁରେ କେତେ ସ୍ୱପ୍ନ ଇଡ଼ ନ ଦେଇଛୁ ଆପଣାର ପଞ୍ଜରାକୁ ସ୍ୱପ୍ନହୀନ କରି ?
କେତେ ସୁଖ ନ ପାଇଚ ତୋ ଗୋପଗୋଇଙ୍କୁ, ଚେଦେହିଙ୍କୁ ଭଗୁଆଳୀ କରି ?
ଗାଆଁରେ ତୋ ମାଳପରି ନୀରବ ଓ ଶବ୍ଦହୀନ ଶୀତଳ ଗାଲରେ
ଚେଉ ସବୁ ହଳଯାଏ ଗୀତଟିଏ ଗାଇଲେ ଚଢ଼େଇ । ତରଣୀଟି ବାହା
ଧୀରେ ଧୀରେ ରେ ନାଉରୀ ॥

ସମସ୍ତଙ୍କ ପ୍ରଥମ ଲଜ୍ଜାଠାରୁ ଚଚେ ଜନ୍ତୁ ଆହୁରି ଅଧିକ ଭଲ ପାଇଥୁଏ ।
ତୋଠାରୁ ତୋ ଗୋପର ଜନଆଁ ଜନ୍ତୁ ଅଧିକ କୃପଣ । ସୁନେଲି ରୁପେଲି
ଝୁଣ୍ଟରୁ ଭୁଣ୍ଟରୁ ମାଳ ଜୁରି କରି ଅଳ ତା'ର ବହୁତ ସହଳ । ଲଳତରେ
ତାହାର ମୁଁ କେତେ ନାଆଁ ଦେଲ । ଠଣ ସେ ସୁଂଦର ତା'ର ମାଳକଇଁ
ତୋଳା । କୁନାଳ ମୁଁ ବଇଁଶୀରେ ଗୋବିନ୍ଦ ଚନ୍ଦର ଗୀତ ଗାଇ
କେତେ ନ ଡାକିଚ ତାକୁ କହନ୍ତୁରେ ଶୁକଶାରୀ ଫୁଲଫଳ ହୋଇ
ଗଛ ଡାଳେ ଭରି ॥

ଭାବିଲି ମୁଁ ତାର ନଉଣିବ, କଶା ଗରଜବ, ମଳଣ ପଡ଼ିବ ଗ୍ରୀଂଦ ବଣ ।
କହିବ ଶ୍ରୀମତୀ : ମତେ ସଙ୍ଗକର ସଖୀ । କହ୍ନାଇକ ଯିବ ମୁଁ ଲୋ ଦେଖି ।
ଦୁହୁଁ ଠାରୁ ଥାଇ ଆଖି । ମୋର ଚରଣେ ଦିଅ ଅଳତା । ବନେ ଜଳୁଥିବ ଧାଉଡ଼ି ।
ନେତ ପିନ୍ଧାଅ ମଣ୍ଡା ପଡ଼ିଆ । କହ୍ନାଇଙ୍କ ଯିବ ଲୋଡ଼ପୁ । ଖଞ୍ଜି କର୍ଣ୍ଣେ ଚୂଡ଼
ଗୁଞ୍ଜର ବଂଧ ସମନାଥ ଗରଗଡ଼ିଆ । ଶ୍ରବଣେ ଭର ମୋ ଝଲକ ଚିହ୍ନ
ମୁକୁତା ପାଞ୍ଚ ଗୋଟିଆ । ଖଂଜଦେ ମୋର ନାସା ପୁଟିଆ । ମୋର କହ୍ନାଇ
ପାଖକୁ ବାଜଯାଉଥିବ ଝମକ ଝମକ ଝଂଟିଆ ॥

ଆମେ ଦୁହେଁ ଅଲଗା ଅଲଗା   ତେଣୁ ଇ ଅଜ୍ଞାତ ଋତୁ ମନେଅଛି ।
ମାରବରେ ଗରଜ ମରୁଛୁ କେତେ ? କେ କ କଲା ? ମୁଁ ନ କଲି ?
କେ କ ଦେଲା ? ମୁଁ ଅବା ନ ଦେବା ଯେନ ଏତେ ସତ ହେଲା ? ମହୁଗାରେ
କୁହୁଳାଇ କେଶ କେଶ ରାମଟେକଣଟିଏ ଶରଧା ବଢ଼ାଇବାକୁ ଦିନେହେଲେ
ନ ଆସିଲୁ ଗୋପର ଗୁଆଳ !

ଆଜ ଝୀଲ କଅଁଳା ବାଛୁରି ସ୍ମୃତି କୃଷକର ଆରତ ଡୋଳାରେ ।
ସବୁଆଡ଼େ ନର୍ଦ୍ଦମା ଅଖିଳ ପତ୍ତ ପିଲାଏ ଗାଆନ୍ତି । ପୋଖରୀରେ ସେମ୍ଫା କଇଁଫୁଲ ।
ଦେଖା ନ ହେବାର ଆଉ କେଉଁ ଗାଁ ଆଡେ ସବୁ କାଳକାଉ ଝିଅଙ୍କୁ
ମାଡ଼ୁଚି ଡର । ତଥାପି ଲୋ ଗାଆଁ ତୋ ଗୁଡ଼ର କେଉଁ ଏକ ପୁତୁପୁତୁ
ନରମ ଥାନରେ ବହେଇ ବସେଇ ଲୋତକର ଧୀର ଧାର କାଟୁଚି ପଥର ॥

ଗାଆଁ ମୋର ଆ'ଥରେ ସହରକୁ ! କଟକକୁ ବୁଲିଆ ଥରେ
ଗୋଟିଏ ପାପୁଲି ରଖି ଶାଳଗ୍ରାମ ଥନରେ ତୋହର । ଆର ହାତେ ବାଡ଼ିଧର
ରାସ୍ତାର ନର୍ଜନ ଦୁର୍ଘଟଣା ଓଳତଳେ ଠିଆହୋଇ ଧରମ ଦେବତା ଆଡେ
ଡୋଳାରୁ ବୁହାଇ ଗିନାଭରି ଲୁହ ଧାର ଧାର । ଗାଆଁ, ତୋର ଗୋଡ଼ତଳେ
ଶିରୁଡ଼ାଏ ବିଶ୍ୱାସ ସଦୃଶ ବଞ୍ଚିତ ମୁଁ । ଅଭ୍ୟାସ ପର ମୁଁ ବାଧ । ଦୁଃଖପର
ଚୁପଚାପ ଅତ୍ୟନ୍ତ ବିଶ୍ୱସ୍ତ । ତେଣୁ ତୁ ଆସିଲେ ଟେଳକର ତୋ ମୁହଁକୁ
ମନଭରି ଗଢ଼ିଦେବି ମୁଇଁ । ଜାଇଁଥିଲୁ ଯାଏ ଗାଆଁ ମୋ ଚିପ ଚହ୍ଲାରେ
ତୋର ଦୁଇ ମାଏ ଯଶୋବନ୍ତ ପାଦ ମାପୁଥିବ ମୁଇଁ ॥



# ॥ ସେ ଅଶ୍ରୁ ପ୍ରଳାପର ॥

## ଶ୍ରୀ ରାଜକିଶୋର ମିଶ୍ର

[ଓଡ଼ିଶାର ଜଣେ ତରୁଣ ନାଟ୍ୟକାର ଓ ଗାଳ୍ପିକ ଶ୍ରୀ ରାଜକିଶୋର ମିଶ୍ର । ପରୀକ୍ଷାମୂଳକ ବୌଦ୍ଧିକ ଏକାଙ୍କିକା ରଚନାରେ ସେ ସିଦ୍ଧହସ୍ତ । ତାଙ୍କ ରଚିତ ନୂତନ ସ୍ୱୟମ୍ବର ଓ ନୂତନ ପ୍ରଭାତ—ପୁସ୍ତକ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ । ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ଧାରାବାହିକ ଭାବେ ତାଙ୍କ ଗଳ୍ପଗୁଡ଼ିକ ପ୍ରକାଶିତ ହୋଇ ଆସୁଛି । ସଂ. ବନଫୁଲ]

ଆରବ ସାଗରର ନୀଳ ଜଳ ଉପରେ ଦୂର ଦିଗ୍‌ବଳୟ ଭେଦି ଫେନ୍‌ନିଭ ପ୍ରାସାଦ ଶ୍ରେଣୀର ଅସ୍ପଷ୍ଟ ଆଭାସ···ଭାରତର ଦ୍ୱାରଦେଶ, ବମ୍ବେ ସହର ।

ଡେକ୍ ଉପରେ ଏକାକିନୀ ଜଣେ ତରୁଣୀ ଏକନିଷ୍ଠ ଦୃଷ୍ଟିରେ ସେହି ଦିଗରେ ଚାହିଁ ରହିଥିଲେ । ତରୁଣୀଙ୍କର ବେଶରେ ପ୍ରାଚ୍ୟ ପାଶ୍ଚାତ୍ୟର ବେଶ୍ ଏକ ସମାବେଶ । ଉନ୍ନତ ଗ୍ରୀବାର ଦୁଇ ପାର୍ଶ୍ୱରେ ଘେରି ରହିଛି ଏକ ଉଜ୍ଜ୍ୱଳ ମୁକ୍ତାମାଳ । ଗୋଟିଏ ହାତରେ ପଟିଏ ସୁନାର କଙ୍କଣ—ଆର ହାତରେ ଓମେଗା କମ୍ପାନୀର ଏକ ସୂକ୍ଷ୍ମ ଲେଡିଜ୍ ୱାଚ । ବାମ ଦକ୍ଷିଣ ଅନାମିକାରେ ଦୁଇଟି ଅଙ୍ଗୁରୀୟ ଗୋଟିଏ ସୁନାର—ଖାଣ୍ଟି ଭାରତୀୟ । ଅନ୍ୟଟି ହୀରକର—ନିଶ୍ଚୟ ଏକ ଆମେରିକାନ୍ ଶିଳ୍ପୀର କୃତି ।

ମନ ଭିତରେ ଗଭୀର ଭାବରେ କିଛି ସେ ଆଲୋଡ଼ନ କରୁଥିଲେ ବୋଧହୁଏ । ହଁ···ଏ ତ ଏକାନ୍ତ ସ୍ୱାଭାବିକ । ମାତୃଭୂମି ଛାଡ଼ି ତିନି ବର୍ଷ ଧରି ସୁଦୂର ଆମେରିକାରେ ଅଧ୍ୟୟନରତ ରହିବାର ଅନୁଭୂତି । ଏକରକମ କଳା ପାଣିର ଅନୁଭୂତି ନୁହଁ ତ ଆଉ କ'ଣ ? ଏତେଦିନ ପରେ ପ୍ରିୟ ଜନ୍ମଭୂମି··· ସାଙ୍ଗ ସାଥୀ ଏ ସମସ୍ତଙ୍କ ପାଖକୁ ଫେରି ଆସିବାରେ ଯେ କେହି ଭାବପ୍ରବଣ ହୋଇ ଉଠିବା ସ୍ୱାଭାବିକ ।

କିନ୍ତୁ ଏ କ'ଣ ? ଆମେରିକା ଯିବା ଦିନର ସ୍ମୃତି ତାଙ୍କୁ ଏତେ ବିଚଳିତ କରୁଛି କାହିଁକି ? କିଛି ଯେମିତି ବୁଝି ପାରୁ ନ ଥିଲେ ରମିଳା ଦେବୀ । ଠିକ୍ କାଲି ପରି ମନେ ହେଉଛି । Trans Atlantic ଜାହାଜର ସେଇ ପ୍ରକୋଷ୍ଠ ଭିତରେ ତାଙ୍କ ଅଧରରେ ଏକ ଗାଢ଼ ଚୁମ୍ବନ ଆଙ୍କି ଦେଉ ଦେଉ ଅଧ୍ୟାପକ ଅମିତାଭ ଦାସ କହି ଉଠିଥିଲେ—ମୋର ଏଇ ବିଦାୟ ଚୁମ୍ବନଟି ତୁମର ତିନି ବର୍ଷର ପ୍ରବାସ ଜୀବନର କ'ଣ ଯଥେଷ୍ଟ ପାଥେୟ ହୋଇ ପାରିବ, ରମିଳା । ନିଜର ଅଜ୍ଞାନରେ ଦୁଇଧାର ଉତ୍ତପ୍ତ ଲୁହ ଦୁଇ ଆଖିରୁ ଝରି ଆସିଥିଲା ରମିଳା ଦେବୀଙ୍କର । ସେ ଚାହିଁଥିଲେ ଅନେକ କିଛି କହିବାକୁ । କିନ୍ତୁ କିଛି କହି ପାରି ନ ଥିଲେ ସେ ।

ରମିଳା ଦେବୀ ଭାବୁଥିଲେ, ସେ—ହିଁ ତାଙ୍କର ସ୍ୱାମୀ ଅଧ୍ୟାପକ ଅମିତାଭ ଦାସ—କାହିଁକି ଏ ବିଦାୟ ସମ୍ଭାଷଣ ଦେଇଥିଲେ ସେଦିନ ।

ହଠାତ୍ ଜଳ ପୋତର ଏକ ଘଣ୍ଟିନାଦରେ ବମ୍ବେ ଡକ୍ ଠିକ୍ ସମ୍ମୁଖରେ ରୂପାୟିତ ହୋଇ ଉଠିଥିଲା ରମିଳା ଦେବୀଙ୍କର । ଯାତ୍ରୀମାନେ ନିଜ ନିଜର ଜିନିଷ ସଜାଡ଼ି ନେବା ପାଇଁ ଜାହାଜର ସତର୍କ ଘଣ୍ଟି ବାଜି ଉଠିଥିଲା । ବମ୍ବେ ଡକ୍ ମାତ୍ର ଆଉ ପନ୍ଦର ମିନିଟରେ ବ୍ୟବଧାନ ।

ଆଉ ସମ୍ଭାଳି ହୋଇ ରହି ପାରି ନ ଥିଲେ ରମିଳା ଦେବୀ । ଗଳାରୁ ତାଙ୍କର ଅତର୍କିତ ଭାବରେ ଛିଙ୍କି ଆଣିଥିଲେ ମୁକ୍ତାର ହାରଟି । ହଠାତ୍ ସେ ହାରଟି ଆରବ ସାଗରର ଚଳମାନ ବକ୍ଷ ଉପରେ ଭାସି ଉଠିଥିଲା । ତାପରେ···ତାପରେ ସତେ ଯେପରି ନିଜର ମାତୃଭୂମି ପ୍ରତ୍ୟାବର୍ତ୍ତନର ଉତ୍କଣ୍ଠା ନେଇ ସେ ହୀରକର ମାଳଟି କ୍ଷଣକ ଭିତରେ ଅଦୃଶ୍ୟ ହୋଇ ଯାଇଥିଲା ।

ଡେକ୍ ଉପରର ସେଇ ଦୀର୍ଘକାୟ ଗୌର ଯୁବକଟି ବିସ୍ମୟକୁ ତାର ଚାପି ରଖି ପାରି ନ ଥିଲା

ବୋଧହୁଏ । ପାଟିରୁ ତାର ଆକସ୍ମିକ ସ୍ୱରରେ ବାହାରି ପଡ଼ିଥିଲା—"ଏମିତି କ'ଣ କଲେ ଯେ ମାଡ଼ାମ୍ !" ରମିଳା ଦେବୀ ଚମକିପଡ଼ି ସେଇ ଯୁବକଟି ଆଡ଼େ ଚାହିଁ ରହିଛନ୍ତି, ଜାହାଙ୍କଟି ଧୀରେ ଗଣ୍ଡରେ ଉକ୍ ଭିତରେ ପ୍ରବେଶ କରିବାକୁ ଆରମ୍ଭ କରିଥିଲା ।

"ଏ ଘଟଣାଟି କାହାରି ଆଗରେ ପ୍ରକାଶ ନ କରିବାର ପ୍ରତିଶ୍ରୁତି ତୁମେ ଦେଇ ପାରିବ ଯୁବକ ? ତାର ବିନିମୟରେ ଏ ହୀରକର ଅଙ୍ଗୁରୀୟଟି ମୁଁ ତୁମକୁ ପୁରସ୍କାର ଦେଉଛି ।"

ଯୁବକଟିର ବଙ୍କିମ ଅଧରରୁ ବାହାରି ଆସିଥିଲା ମାତ୍ର ଗୋଟିଏ ଉତ୍ତର—"ମାଡ଼ାମ୍"-କିନ୍ତୁ ମୋଟରେ ସେ କିଛି ବୁଝି ପାରୁ ନ ଥିଲା ।

ଜାହାଜରୁ ଓହ୍ଲାଇଚନ୍ତି କି ନା ସ୍ୱାମୀଙ୍କର ଉଚ୍ଛ୍ୱସିତ ଶୁଭ ସମ୍ଭାଷଣ ଭିତରେ ସେପରି ନିଜକୁ ହଜାଇ ଦେଇଥିଲେ ରମିଳା ଦେବୀ । କ୍ଷଣ ପୂର୍ବର ତାଙ୍କ ମାନସିକ ଆନ୍ଦୋଳନ, ହୃଦୟର ବ୍ୟଗ୍ରତା ସବୁ ଯେମିତି ତା ସାଙ୍ଗରେ ହଜି ଯାଇଥିଲା ତାଙ୍କର । କିନ୍ତୁ ହଠାତ୍ ପୁଣି ସେ ଗର୍ବିକାୟ ଗୌର ଯୁବକଟିକୁ ଉକ୍ ଉପରେ ଦେଖି ସେ କିପରି ଅସ୍ଥିର ହୋଇ ଉଠିଥିଲେ । ସେ ଯୁବକଟି ଅମିତାଭଙ୍କୁ ନମସ୍କାର କରିଥିଲା । "କ'ଣ ତୁମେ Agricultureରେ ଡକ୍ଟରେଟ୍ କରି ଫେରିଲ ତ, ମନୋଜ ।" ଅମିତାଭ ବାବୁ ପ୍ରତି ନମସ୍କାର କରୁ କରୁ ପ୍ରଶ୍ନ କରି ଉଠିଥିଲେ ।

ହଁ ସାର୍ କହି, ରମିଳା ଦେବୀଙ୍କୁ ନ ଜାଣିଲା ପରି ଏକ ନମସ୍କାରରେ ଅଭିବାଦନ ଜଣାଇ ସେ ଯୁବକଟି ପ୍ରସ୍ଥାନ କରି ଯାଇଥିଲା । କିନ୍ତୁ ତାର ଦକ୍ଷିଣ ହସ୍ତର ସେଇ ହୀରକର ଅଙ୍ଗୁରୀୟଟିକୁ ଅମିତାଭ ବାବୁ କେଜାଣି କାହିଁକି ଅତି ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହି-ଥିଲେ । ମନୋଜର ପ୍ରସ୍ଥାନ ପରେ ହସି ହସି ସେ କହି ଉଠିଥିଲେ—"ବୁଝିଲ ରମିଳା, ମୁଁ ଏବେ ବୁଝିଲି ଆମେରିକାରେ କେବଳ ପୁରୁଷ ନାରୀକୁ ହୃଦୟ ଦେଇ ଭଲ ପାଏନି—ନାରୀ ବି ପୁରୁଷକୁ ହୃଦୟ ଦେଇ ଭଲପାଏ ।"

"ଏଇ ହୀରାର ଅଙ୍ଗୁରୀୟ କଥା ତ କହୁଛ । ହୁଏତ ସେ ଠିକ୍ ମୋରି ପରି Part time ଅଧ୍ୟାପନା କରି ବେଶ୍ କିଛି ରୋଜଗାର କରି ପାରିଥାନ୍ତି ।"

"ଏବଂ..." କଥାଟି ଛଡ଼ାଇ ଆଣିଥିଲେ ଅମିତାଭ ବାବୁ ।

"ଏବଂ ଆମେରିକାନ୍ ଡୋଲାର ଆଣିବା ଅପେକ୍ଷା ଗୋଟାଏ ମୁକ୍ତାର ମାଳ ବା ହୀରାର ମୁଦି ଆଣିବା ଯେ ଏକାନ୍ତ ସୁବିଧାଜନକ, ଏକଥା କ'ଣ ତୁମକୁ ବୁଝାଇବାକୁ ପଡ଼ିବ ଅଧ୍ୟାପକ ।"

"କିନ୍ତୁ ମୁଁ କହିବାକୁ ଯାଉଥିଲି ରମିଳା, ଡୋଲାର ଦେଇ କେହି କେବେ ଇମିଟେସନ ହୀରାର ମୁଦି କିଣେ ନି ? ଏବଂ ମନୋଜର ଏ ମୁଦିଟି ଏକ perfect ଇମିଟେସନ ।"

"କିନ୍ତୁ...କିନ୍ତୁ ତୁମେ ସେ କଥା କହି ପାରିବ କିପରି ?" ହଠାତ୍ ରମିଳା ଦେବୀ ବିମର୍ଷ ହୋଇ ଉଠିଥିଲେ କାହିଁକି ।

"ମୁଁ କହି ପାରିବି—କାରଣ ମୁଁ ପଦାର୍ଥ-ବିଜ୍ଞାନର ମୁଖ୍ୟ ଅଧ୍ୟାପକ ରମିଳା । କିନ୍ତୁ...କିନ୍ତୁ ତୁମେ ହଠାତ୍ ଏମିତି ଅପ୍ରତିଭ ହୋଇ ଉଠିଲ କାହିଁକି ଯେ !"

"ମୁଁ...ନାଁ...ମୁଁ କାହିଁକି ଅପ୍ରତିଭ ହେବି ଶୁଣେ ? କିନ୍ତୁ...ତମେ ଠିକ୍ କହୁଛ ସେଟା ଇମିଟେସନ ହୀରକ ? ନାଁ...ତା କେବେ ହେଇ ପାରେନା...." କହୁ କହୁ କେଜାଣି କାହିଁକି ସ୍ୱାମୀଙ୍କୁ ସେଇ ଉକ୍‌ଯାର୍ଡ ଭିତରେ ଏକ ନିବିଡ଼ ଆଲିଙ୍ଗନ ଭିତରେ ବନ୍ଦୀ କରି ରଖିଥିଲେ ରମିଳା ଦେବୀ । ଠିକ୍ ବିଦାୟ ଦିନର ଉତ୍ତପ୍ତ ଅଶ୍ରୁ ପରି ଦୁଇଟି ଅଶ୍ରୁର ଧାର ତାଙ୍କର ଦୁଇ ଆଖିରୁ ଝରି ଆସିଥିଲା । କିନ୍ତୁ ସେ ଅଶ୍ରୁ ଆନନ୍ଦର ନା ବେଦନାର ଠିକ୍ କରି କହି ହେବନି । ସମ୍ଭବତଃ ସେ ଅଶ୍ରୁ ପ୍ରଜାପତିର ।

# ॥ ଉଡ଼ନ୍ତା ଏକ ଚୁମ୍ବନ ମୁଁ ॥

## ଶ୍ରୀ ଅନନ୍ତ ପଟ୍ଟନାୟକ

[ଅତ୍ୟାଧୁନିକ ଓଡ଼ିଆ କବିତାର ଅନ୍ୟତମ ପଥଦ୍ରଷ୍ଟା ଶ୍ରୀ ଅନନ୍ତ ପଟ୍ଟନାୟକ । କବିତାର ଆଂଶିକ ଆଙ୍ଗିକ ପରୀକ୍ଷାରେ ନିଜକୁ ଉତ୍ତୀର୍ଣ୍ଣ କରି ରୂପକଳ୍ପ ଓ ଚିତ୍ରକଳ୍ପର ପ୍ରସାର ତଥା ବୌଦ୍ଧିକ ଅନୁଖଣ୍ଡନରେ କବିତାର ସ୍ୱକୀୟତା ସ୍ୱୀକାର ତାଙ୍କର ନିଜସ୍ୱ । ସେ ଜଣେ ବିରାଟ ବିପ୍ଳବୀ, ସ୍ୱପ୍ନୀ ମାନବଧର୍ମୀ ସାହିତ୍ୟିକ । ସମାଜ ଓ ସାମ୍ୟବାଦର ପ୍ରତିଷ୍ଠାରେ ଭାବାବେଗର ସ୍ଫୂର୍ତ୍ତିକୁ ସେ ଗ୍ରହଣ କରିଛନ୍ତି, ତାଙ୍କ ରଚିତ ପିତାଉତ୍ତର, ଘୁଇର ଛୁଟା, ଅଲୋଡ଼ା ଲୋଡ଼ା, ଶାନ୍ତିଶିଖା, ରକ୍ତଶିଖା, କଞ୍ଚି ଓ, ମଦନ କୌମୁଦୀ ଏହାର ସ୍ପଷ୍ଟ ପ୍ରମାଣ ପ୍ରଦାନ କରେ । ସ. ବନଫୁଲ]

ମୁଁ କଣ କିଛି ନୁହେଁ ? ବିଦ୍ୟୁଷ୍ଣାନ ଗୋଟିଏ !
ହାତୁଡ଼ିର ଚିତ୍କାର ଯନ୍ତ୍ରଣାର ଶାସ୍ତିରେ ?
ଦାଆର ସର୍ ସର୍ ଅଶାନ୍ତ କାନ୍ଦରେ
ହସର ଶୂନ୍ୟତା ଝାଲି, ଲେଖମାର ?
ମୁଁ କ'ଣ କିଛି ନୁହେଁ ? ଋଣାତ୍ମକ ବିଦ୍ୟୁଷ୍ଣାନ ଗୋଟିଏ ?
ଖୁବ୍ ହେଲେ ତାରକସୀ ନ୍‌ଟ କି ଟାଇପିନ୍
ଆକାଶ–ଛିଆ କୋଠାରେ ଅଶ୍ଚତର ଜଡ଼ା ମୁଁ
ଦୁର୍ଗନ୍ଧର ଆଲୋକରେ ମସ୍ୱମାର ତୃଷା
ନହେଲେ ବା କଂକତିକା ମୁଁ କୈଶିକ ଆକର୍ଷଣୀକୁ
          ଉପହାସ କରି ତନ୍ୱୀର···?
କିଛି ତ ମୁଁ ନିଶ୍ଚୟ !!
ଅଭିବମାପୂ ବ୍ୟସ୍ତତାରେ ଅବଜ୍ଞାର ବୁଭୁକ୍ଷାରେ
କିଛି ତ' ମୁଁ ନିଶ୍ଚୟ,
ନିଜଠାରୁ ମୁଁ କ'ଣ ବିଚ୍ଛିନ୍ନ ଆଜି ସତେ···
ଶଙ୍କରଙ୍କ ଆତ୍ମା ପରି, ବିଲଗ୍ନ ମୁଁ ଲଗ୍ନରେ ?
ବିଜ୍ଞାନର ଭାବନାରେ ନିମଗ୍ନ ଏକ ସ୍ୱାର୍ଥର ଝାପ୍ସି ?
ନା, ନିଜକୁ ବିଚ୍ଛିନ୍ନ କରି ନିଜଠାରୁ ଅସହାୟ ମୁଁ ସବଳ,
ଗୋଟିଏ ବୋଲି ସ୍ୱର ମୁଁ ବିକୃତି'ର ମନୋଟନରେ
କିଛି ତ ମୁଁ ନିଶ୍ଚୟ ।
ଘୃଣାରେ ତାଚ୍ଛଲ୍ୟରେ ଉତ୍ପୀଡ଼ିତ ମୋ ଗତି
ରକ୍ତାକ୍ତ ମୋ ଛବି···
ଜୀବନର ଜ୍ୱାଳାରେ ଜର୍ଜର ମୁଁ
ଉଡ଼ନ୍ତା ଏକ ଚୁମ୍ବନ ଓ' ମୁଁ ?
ଚୁମ୍ବନ ! ! ! ଗସ୍ତାର ମଝିରେ—
ବିଯୋଗୀ ଏ ଯୁଗର !

★

# ॥ ଅରଣ୍ୟ ଓ ଉପବନ ॥

## ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

[ ତରୁଣ ଅଧ୍ୟାପକ ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର ଜଣେ ଶ୍ରେଷ୍ଠ ଆଧୁନିକ ଗାଳ୍ପିକ ଓ ଔପନ୍ୟାସିକ । ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ତାଙ୍କ ଗଳ୍ପଗୁଡ଼ିକ ଧାରାବାହିକ ଭାବେ ପ୍ରକାଶ ଲାଭ କରେ । ପାଶ୍ଚାତ୍ୟ ଜଗତରୁ ଉପାଦାନ ସଂଗ୍ରହ କରି ତାହାକୁ ପରୀକ୍ଷା ମୂଳକ ଭାବେ ସେ ଓଡ଼ିଆ ସାହିତ୍ୟରେ ସ୍ଥାନ ଦେଇ ପାଠକର ହାର୍ଦ୍ଦିକତା କାମନା କରନ୍ତି। ତାଙ୍କ ରଚିତ 'ସିଂହ କଟୀ' ଉପନ୍ୟାସ ଏକ ଚମକପ୍ରଦ ସୃଷ୍ଟି । ସେହିପରି 'କ୍ରୀତଦାସୀର କାବ୍ୟ' ଗଳ୍ପ ସଂକଳନ ଆଧୁନିକ ଓଡ଼ିଆ ସାହିତ୍ୟର ମାନ ନିର୍ଦ୍ଧାରଣ ପାଇଁ ଏକ ଜ୍ୱଳନ୍ତ ଉଦାହରଣ । ସ.—ବନଫୁଲ ]

ରାସ୍ତାଟା ଉପରେ ଆଖି । ଆଖି ଦୁଇ ପଟେ ବନାମ । ଘଣ୍ଟାକୁ ଅଶୀ କିଲୋମିଟର ବେଗରେ ପଛକୁ ପଡ଼ି ଯାଉ ଥାଆନ୍ତି । ଦୁଇ ପାଖର ଶାଳ, ପିଆଶାଳ, ସାଗୁଆନର ବନାନୀ । କିନ୍ତୁ ସେହି ଆରଣ୍ୟକ ଦ୍ରୁମ ଗୁଡ଼ିକୁ ଆହୁରି ଶୀଘ୍ର ପଛରେ ପକାଇ ପାରୁଥିବା ଟ୍ରକ୍‌ଟିଏ ପଛରୁ ଆସୁଛି । ଟ୍ରକ୍ ଆଗରେ ଅଭୟହସ୍ତ ଗୁରୁ ନାନକଙ୍କ ଛବି ଝୁଲୁଥିଲେ ବି ପଞ୍ଜାବୀ ଡ୍ରାଇଭରଙ୍କୁ ବିଶ୍ୱାସ ନାହିଁ, ହୋସ୍‌ରେ ନ ଥିବା ଅବସ୍ଥାରେ ହିଁ ସେମାନେ ଡ୍ରାଇଭିଂ କରନ୍ତି । ଯୋଗେଶ ଗାଡ଼ିଟିକୁ ସ୍ଲୋ କରି ଟ୍ରକ୍‌ଟିକୁ ରାସ୍ତା ଛାଡ଼ି ଦେଲା । କାଠ ବୋଝେଇ ଟ୍ରକ୍‌ଟି ବର୍ଣ୍ଣିଲ ଭିତରୁ ରିବନ୍ ଖୋଲିଯିବା ପରି ରାସ୍ତାକୁ ଆମ୍ବାସଡ଼ର ଗାଡ଼ି ଆଗରେ ଖୋଲି ଖୋଲି ଚାଲିଯିବା ପରେ ଆମ୍ବାସଡ଼ର୍ ପୁଣି ଅଶୀକୁ ଆସିଲା । ବିଶାଳ ଟ୍ରକ୍‌ଟା ଦୂରରେ ଛୋଟ ହୋଇ ଆସୁଥିବା ଦେଖି ଦେଖି ଯୋଗେଶ ରତ୍ନାଙ୍କୁ କହିଲା—ରତ୍ନା ! ତୁମେ ଟିକିଏ ଆଜିକାଲି ମୋଟା ଦିଶୁଛ ! ତୁମ ବ୍ଲାଉଜ୍ ଗୁଡ଼ାକ କେତେ ଟାଇଟ୍ ହେଉଛି ଲକ୍ଷ୍ୟ କରୁଛ କି ? ତୁମର କେହି ସାଙ୍ଗ ତୁମକୁ ଏ ବିଷୟରେ କିଛି କହି ନାହାନ୍ତି ?

ବାମପଟର ଝାଡ଼ ଜଙ୍ଗଲକୁ ଚାହିଁ ଚାହିଁ ରତ୍ନା କହିଲେ—ମୁଁ କଣ କରିବି କୁହ ? ପୁଅ ଜନ୍ମହେବା ପରେ ପରେ ଡାଏଟିଂ କରିଥାନ୍ତି କି ନାଁ କଣ ? ପ୍ରସବ ପରେ ପରେ ସ୍ତ୍ରୀମାନଙ୍କର କ୍ଷୁଧା ବଢ଼ିଯାଏ । ତହିଁରେ ବ୍ରେଷ୍ଟଫିଡ଼ିଂ କରିବାକୁ ହେଲେ ତୁମକୁ ତ ଛେନା, ଦୁଧ, ଦହି, ମାଛ, ମାଂସ କରି ଗୁଡ଼ାଏ ଖାଇବାକୁ ହେବ, ନ ହେଲେ ସ୍ତନରେ ଦୁଧ ଆସିବ କୁଆଡ଼ୁ ? ଆଉ ମଧ୍ୟ ମା ଡାଏଟିଂ କଲେ ତା ଦୁଧରେ ପ୍ରୋଟିନ୍ ଇତ୍ୟାଦି ଖାଦ୍ୟସାର ପର୍ଯ୍ୟାପ୍ତ ପରିମାଣରେ ରହିବ ବା କିପରି ?

ରାସ୍ତାରେ କାଠ ମଣ୍ଡାଇ କୌଣସି ସଙ୍ଗୀତମୟ ଛନ୍ଦତାଳ ପଡ଼ିପାରି ପରି ପାଦ ପକାଇ ଚାଲି ଯାଉଥିବା ଯୁବତୀ ଝିଅ ଗୁଡ଼ିକର ଉନ୍ନତ ସୁପୁଷ୍ଟ ସ୍ତନ ଗୁଡ଼ିକୁ ଚାହିଁ ଯୋଗେଶ କହିଲା—ତୁମକୁ ମୁଁ ବ୍ରେଷ୍ଟଫିଡ଼ିଂ କରିବା ପାଇଁ ମନା କରିଥିଲି । ଡାକ୍ତରାଣୀ ଲାବଣ୍ୟ ଦେବୀ ବି ଆସି ମୋ କଥାର ସତ୍ୟତା ଓ ଯଥାର୍ଥତା ନେଇ ତୁମ ପାଖରେ ଯୁକ୍ତି କରିଥିଲେ । ତଥାପି ତୁମେ ମାନୁନାହଁ । ତୁମେ ଓ ମୁଁ ବେଶ୍ ଅଛେ । ମଝିରେ ପିଲାଟି ଯାହା ଦୁର୍ବଳ ହୋଇ

ବଢ଼ୁଛି । ସ୍ତନବାଟେ ପ୍ରୋଟିନ୍ ଗୁଡ଼ାକ ପୁଅ ପାଖକୁ ନ ଆସି ତୁମର ଦେହରେ ଇ ରହି ଯାଉଥିବା ପରି ମୋର ମନେ ହେଉଛି !

ରତ୍ନା ବୁଲି ପଡ଼ି ପଛକୁ ଚାହିଁଲେ । ପଛ ସିଟ୍‌ରେ ପୁଅ ନିର୍ଦ୍ଦୋଷ ନିଦରେ ଶୋଇଥିଲା । ସତରେ ପିଲାଟା ବଡ଼ ଦୁର୍ବଳ ହୋଇ ବଢ଼ୁଛି । ବଡ଼ ରିକେଟି ! ରତ୍ନା ଦୀର୍ଘ ନିଃଶ୍ୱାସ ପକାଇ ଆଗକୁ ଚାହିଁଲେ ।

ମୁଁ କହୁଛି, ବେବି ଫୁଡ୍ ଦିଅ, ବଟଲ୍ ଫିଡ଼ିଂ କର, ଦେଖିବ ପିଲାଟାର ସ୍ୱାସ୍ଥ୍ୟ କିପରି ହୋଇଯିବ ! ମୁଁ ଦେଖିଛି ଜଣେ ବନ୍ଧୁଙ୍କର ପିଲାକୁ । ବେବି ମିଲ୍କ ଫୁଡ୍ ଆଶୀର୍ବାଦରେ ସେ ପୁଅ କଣ ହୋଇଛି···

ପିଲା ଜଞ୍ଜାଳ କିନ୍ତୁ ବଡ଼ ଜଞ୍ଜାଳ ସତେ !

ବହୁ ମୂଲ୍ୟବାନ ଶାଢ଼ୀରେ ସୁମନ୍ତ ପରିସ୍ରା କରି ଦେଇଥିବା, ବାନ୍ତି କରି ଦେଇଥିବା ଓ ରାତି ଅନିଦ୍ରାକୁ ମନେ ପକାଇ ରତ୍ନା କହିଲେ ।

ଦେଖ, ଆମର ଏଇଟା ପ୍ରଥମ ପିଲା । ଆଉ ଦଶ ବର୍ଷ ଭିତରେ ତୁମର ଦ୍ୱିତୀୟ ସନ୍ତାନ ହେଉନାହିଁ । ତୁମର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, ମାନସିକ ଶାନ୍ତି ଓ ମୋର କାର୍ଯ୍ୟରେ ବ୍ୟସ୍ତତା—ସବୁଥି ଦୃଷ୍ଟିରୁ ଆମେ ଆଉ ସନ୍ତାନ ଏଇଲେ ହେବାକୁ ଦେବାନାହିଁ । କିନ୍ତୁ ପିଲା—ଏଇ ଗୋଟିକୁ ଜଞ୍ଜାଳ ବୋଲି ନୁହେଁ, ଶଙ୍ଖାଳ ବୋଲି ଭାବି ଏହାର ଲାଳନ ପାଳନ କର ।

ଆମ୍ବାସଡ଼ର୍ ଦ୍ରୁତ ଗତିରେ ଚାଲିଥାଏ । ଦୁଇ ପାଖରେ ଭୟାନକ ଜଙ୍ଗଲ । ରତ୍ନା ଜଙ୍ଗଲର ନଗ୍ନ ସୌନ୍ଦର୍ଯ୍ୟ ଦ୍ୱାରା ଯେପରି ହିପ୍ନୋଟାଇଜଡ଼୍ ହୋଇ ଯାଇ ଥାଆନ୍ତି । ଯୋଗେଶ ହଠାତ୍ ରତ୍ନାଙ୍କୁ ତା ପାଖକୁ ଲାଗି ଆସିବାକୁ କହିଲା । ରତ୍ନା ଯୋଗେଶ କଥାରେ ବିରକ୍ତ ହେଲେ ମଧ୍ୟ କଥା ମାନି ତା ପାଖକୁ ଲାଗି ଆସି ତା କୋଳରେ ହାତ ରଖିଲେ ।

ଜଙ୍ଗଲ ଭିତରେ ଗଛ ଆଉ ଲତା ଅଲଗା ହୋଇ ରହନ୍ତିନ, ରତ୍ନା ।

ସିଧା ରାସ୍ତା ଓ ଆଗରେ କି ପଛରେ ଟ୍ରାଫିକ୍ ନ ଆସୁଥିବା ଦେଖି ଯୋଗେଶ ରତ୍ନାଙ୍କୁ ଟାଣି ନେଇ ଚୁମା ଦେଲା । ଗୋଟିଏ ହାତ ଥାଏ ଷ୍ଟିଅରିଂ ଉପରେ । ରତ୍ନା ଖୁସିରେ ହସିଲେ । ଯୋଗେଶ ତାଙ୍କ ଦେହରୁ ହାତଟିକୁ ଖସାଇ ନେଇ ଷ୍ଟିଅରିଂ ଉପରେ ରଖି ଆଗ ମୋଡ଼ ପାଇଁ ପ୍ରସ୍ତୁତ ହୋଇଗଲା । ରତ୍ନା ମୋଡ଼ରେ ତା ଦେହରେ ଲଦି ହୋଇଯିବା ବେଳେ ସେ କହିଲା—ମୁଁ ତୁମକୁ ସବୁବେଳେ ସୁଖୀ ରଖିବାକୁ ଚାହେଁ, ରତ୍ନା !

ତା'ର କଥା ସରି ନ ଥିବ ଜଙ୍ଗଲ ଭିତରୁ ଟାଙ୍ଗିଆଟିଏ ଧରି ଯୁବକଟିଏ ରାସ୍ତା ଉପରକୁ ଉଠିଲା । କ୍ଷଣକ ପାଇଁ ଯୋଗେଶ ସହିତ ତା'ର ଆଖି ମିଳିଗଲା, ପରେ ପରେ ଉଭୟଙ୍କ ଆଖି ଆଗରେ ଗଛଲତା, ଜଙ୍ଗଲ, ପାହାଡ଼ । ଦର୍ପଣରେ ଦେଖିବାକୁ ଚେଷ୍ଟାକଲା ଯୋଗେଶ । ପଛରେ ସେ ଯୁବକଟି ରହିଗଲାଣି, କିନ୍ତୁ ଯୁବକଟି ସମେତ ପଛ ଆଡ଼ର ସମସ୍ତ ସଂସାର ତା ପାଇଁ ହୋହଲୁଥିଲା ଯେପରି । ସେ ଅନ୍ୟମନସ୍କ ହୋଇଗଲା । ଏ ସ୍ତ୍ରୀ ଲୋକ ଗୁଡ଼ାକ ସମସ୍ତେ ସମାନ ଦିଶନ୍ତି ନା କଣ ? ଏକାପରି ଦେହ, ଏକାପରି ମୁହଁ, ଏକାପରି ସ୍ୱାସ୍ଥ୍ୟ ! ରତ୍ନା କିନ୍ତୁ ଯୋଗେଶର ଅନ୍ୟମନସ୍କତା ଆଡ଼କୁ ଧ୍ୟାନ ଦେଇ ନ ଥିଲେ । ହଠାତ୍ ଖରାଟା ଯୋଗେଶ ଆଖିକୁ କାଟିବାକୁ ଲାଗିଲା । ସେ ଲକର୍‌ର ଖୋଲି ତଳ ଥାକରୁ ନିଜ ଗଗଲ୍‌ସ୍‌ଟିକୁ କାଢ଼ି ପିନ୍ଧିଲା, ରତ୍ନାଙ୍କରଟା ବାହାର କରି ରତ୍ନାଙ୍କୁ ଦେଇ କହିଲା—ସୂର୍ଯ୍ୟ ଉପରକୁ ଉଠିଲେଣି । ଏଥର ଖରା ବଢ଼ିବ, ତୁମେ ତୁମର ଚଷମା ପିନ୍ଧି ପକାଅ ।

କିନ୍ତୁ ମୋତେ ଖାଲି ଆଖିରେ ଜଙ୍ଗଲର ରହସ୍ୟମୟ ସୌନ୍ଦର୍ଯ୍ୟ ଦେଖିବାକୁ ଭଲ ଲାଗୁଛି ।

କିନ୍ତୁ ତୁମର ଲମ୍ବା ସୁନ୍ଦର ଆଖି ଯୋଡ଼ାକ ଜଙ୍ଗଲଠୁ ମଧ୍ୟ ବେଶୀ ରହସ୍ୟମୟ ଓ ସୁନ୍ଦର ରତ୍ନା ! ସେହିମାନଙ୍କ କଥା ମୋତେ ବିଚାର କରିବାକୁ ହେବ ।

ସେମାନେ ଖରା ଧାରରେ କଷ୍ଟ ପାଇବେ, ତାହା ମୁଁ ସହିବି କିପରି ?

ରତ୍ନା ତାଙ୍କ ଗଗଲସ୍ ପିନ୍ଧି ପୁଣି ଜଙ୍ଗଲ ଦେଖିବାକୁ ଲାଗିଲେ । କିଛିକ୍ଷଣ ତଳେ ଝାଙ୍ଗିଆ ଧରି ଉଠି ଆସୁଥିବା ସେହି ଯୁବତୀଟିର କଥା ଯୋଗେଶର ମନେ ପଡ଼ିଗଲା । କିନ୍ତୁ ତା କଥା ଭୁଲିଥିଲା ସେ କେତେବେଳେ ? କେବଳ କିଛିକ୍ଷଣ ପାଇଁ ଯୁବତୀଟିକୁ ମନକୁ ନ ଆଣିବାକୁ ସେ ଯାହା ଚେଷ୍ଟା କରିଥିଲା ।

କାଲି ରାତିର ପଲଉ, କୁକୁଡ଼ା ଭୋଜି ପରେ ସେ ଡାକବଙ୍ଗଳାକୁ ଫେରିଆସି ରତ୍ନା ଓ ସୁମନ୍ତର ଶୋଇବା ବନ୍ଦୋବସ୍ତ କରି ଦେଇ ଜଙ୍ଗଲ ଇନ୍‌ସପେକ୍‌ସନ୍ ପାଇଁ ପୁଣି ବାହାରି ଯାଇଥିଲା । ଜଙ୍ଗଲ ଇନ୍‌ସପେକ୍‌ସନ ତ ଯେପରି ହେଲେ କରିବାକୁ ହେବ, ସେଇଥିପାଇଁ ତ ସେ ଏତେ ଦୂର, ଏତେ ପେଟ୍ରୋଲ, ପୋଡି ଆସିଥିଲା । ସାଥିରେ ଥିଲା ପୁରୁଣା ଚପରାସୀ ଦଣ୍ଡାସୀ । ଆଉ ସେହି ଚପରାସୀଟି ଠିକ୍ ସେହି ଝାଙ୍ଗିଆ ଧରି ଉଠି ଆସୁଥିବା ସ୍ତ୍ରୀ ଲୋକଟି ପରି ଯୁବତୀଟିଏକୁ ଆଣି କୁଡ଼ିଆରେ ପୂରାଇ ଦେଇଥିଲା ସେ ଜଙ୍ଗଲ ଭିତରେ କୁଡ଼ିଆଟିରେ ସେ ବିଶ୍ରାମ ନେଉଥିବାବେଳେ । ପ୍ରତିଥର ସେ ସେହି ଜଙ୍ଗଲ ଆଡ଼େ ଇନ୍‌ସପେକ୍‌ସନ ପାଇଁ ଆସିଲେ, ଦଣ୍ଡାସୀ ସେହି କଥା କରେ । ଏତକ ସବୁଥର ବଙ୍ଗଳାରେ ଇ ଏହିକଥା ହୋଇଥାଏ, ଏଥରକ ରତ୍ନା ଓ ସୁମନ୍ତ ଆସି ଯାଇ ଥିବାରୁ ବଙ୍ଗଳାଠୁ କିଛି ଦୂରରେ ଥିବା କୁଡ଼ିଆ ଘରଟିକୁ ଦଣ୍ଡାସୀକୁ ସଫା ସୁତୁରା କରିବାକୁ ପଡ଼ିଥିଲା ।

ଜଙ୍ଗଲର ସାନ୍ଦ୍ରତା ଟିକିଏ କମି ଆସିବାକୁ ଲାଗିଥାଏ । ଗଛଆଡ଼ କ୍ରମଶଃ ଜମି କଟା ହୋଇ ଫସଲ ପାଇଁ ପ୍ରସ୍ତୁତ ହୋଇ ଚାଲିଛି । କିନ୍ତୁ ଏସବୁ ଅଞ୍ଚଳରେ ବର୍ଷା ହୁଏ ନାହିଁ, ତେଣୁ ଭଲ ଫସଲର ପ୍ରଶ୍ନ କେଉଁଠି ?

ସେହି ସ୍ତ୍ରୀ ଲୋକଟିକୁ ମନପୂରା ଭୋଗ କରିବା ପରେ କୁଡ଼ିଆ ଘରଟାରୁ ବାହାରି ଯିବାକୁ ଯୋଗେଶ ବସିଛି, ଯୁବତୀଟି ତା ହାତଟିକୁ ଟାଣି ଧରି ପଚାରିଲା— ବାବୁ, ତୁ କୋଉଥରକ ହେଲେ ବି ମୋତେ କିଛି ଦେଉନୁ, ମୋ ପିଲାପିଲି ଚଳିବେ କେମିତି ? ତୋ ପିଲାପିଲି ଚଳିବେ କେମିତି ?

ଯୋଗେଶ କିଛି ବୁଝି ନ ପାରି ସ୍ତମ୍ଭୀଭୂତ ହୋଇ ଠିଆ ହୋଇଗଲା ସ୍ତ୍ରୀ ଲୋକଟିର କଥା ଶୁଣି । କୁଡ଼ିଆ ଘରଟାରେ ଡିବିଟାଏ ଜଳୁଥାଏ ଯାହା, ଜଙ୍ଗଲର ଅନ୍ଧକାର ସେହି ଡିବି ଆଲୁଅକୁ ଉପହାସ କରି କେବଳ ନିଜକୁ ହିଁ ଦେଖାଇବା ଛଡ଼ା ଆଉ କିଛି ଦେଖାଇ ଦେବାକୁ ଅନୁମତି ଦେଉ ନ ଥାନ୍ତି ଯେପରି । ଯୋଗେଶ ଯୁବତୀଟି ଆଡ଼କୁ ଚାହିଁଲା । ପୂରା ଲଙ୍ଗଳା, କଳା, ସ୍ତ୍ରୀ ଲୋକଟି ତା ପାଖରେ ସିଧା ହୋଇ, କିଛି ସଙ୍କୋଚ ନ ରଖି, ସେହିପରି ଠିଆ ହୋଇଥାଏ । ତା'ର ଗ୍ରେଟିଆ କସ୍ତାଟା କିଛି ଦୂରରେ ତଳେ ପଡ଼ିଥାଏ ମେଞ୍ଚାଏ ଅନ୍ଧାର ପରି । ଭଲ କରି ଦେଖିବା ପାଇଁ ଟର୍ଚ୍ଚ ଲାଇଟ୍‌ଟାକୁ ତା ମୁହଁକୁ ଦେଖାଇ ଯୋଗେଶ ଟିପିଦେଲା । ଟର୍ଚ୍ଚ ଆଲୁଅରେ ସେ ଆଖି ବନ୍ଦ କରିଦେଲା । ଯୋଗେଶ ତା ମୁହଁକୁ ତନ୍ନ ତନ୍ନ କରି ଦେଖି ଆଲୁଅ ଲିଭାଇ ଦେଇ ପଚାରିଲା—କେଉଁ ଥରକ, କି କଥା ତୁ କହୁଛୁ ? କାହା ପିଲା ?

ବାବୁ, ତୋର ପିଲା କଥା କହୁଛି । ତୁ ତ ଯେତେଥର ଆସୁଛୁ ସେତେଥର ମୁଁ ତୋ ପାଖକୁ ଆସୁଛି । ଡିଙ୍କି ଦେବେ, ବଗ ଦେବେ କହି ଦଣ୍ଡାସୀ ମୋତେ ସବୁଥର ଟାଣି ଆଣୁଛି । ଆଉ କାହାର ପିଲା କଥା କହିବି ? ମୋ ସ୍ୱାମୀ ସିନା ନିଶାପାଣି ଯୋଗୁଁ କିଛି ଜାଣି ପାରୁନି, ହେଲେ ସେ ପିଲାଗୁଡ଼ାକ ଯେତେବେଳେ ତୋ ପିଲା, ସେମାନେ ଭିକ ମାଗି ଚଳିବା ଠିକ୍ ହେବ କି ?

କୁଡ଼ିଆ ଦୁଆରକୁ ଜୋରରେ ଠେଲି ଦେଇ ସେହି ସମୟରେ ଦଣ୍ଡାସୀ ପଶିଗଲା । ପବନରେ ଡିବିଟା

ଲିଭିଗଲା ସେତେବେଳେ । ଦଣ୍ଡାସୀ ବାହାରେ ଠିଆ ହୋଇ ଯୋଗେଶଙ୍କୁ ଅପେକ୍ଷା କରୁଥିଲା, ସେମାନଙ୍କ କଥା ଶୁଣୁଥିଲା । ସେହି ସ୍ତ୍ରୀ ଲୋକର କଥା ଯେପରି ସେ ଆଉ ସହି ପାରିଲା ନାହିଁ । ବାବୁ ଗଲେ ବଣର ଝିଙ୍କାରି ରବ ପିଆଶାଳ ଗଣ୍ଡି ଉପରେ ପଡ଼ୁଥିବା କୁରାଢ଼ୀ ଶବ୍ଦ ପରି ଶୁଣା ଯିବାକୁ କେତେ ସମୟ ଲାଗିବ ?

ବଜ୍ଜାତ ମାଇପି, କଣ ମିଛ କହୁଛୁ ବେ ?

ସେ କୁଡ଼ିଆ ଭିତରେ ପଶି ତା'ର ବାହାକୁ ଝିଙ୍କାଇ ପକାଇ ପଚାରିଲା—କଣ ମିଛ କହୁଛୁ ତୁ ? ଶଳା, କେତେ ଲୋକଙ୍କ ପାଖରେ ଶୋଉଥିବୁ, କହୁଛୁ କ'ଣ ନା ବାବୁଙ୍କ ପିଲା ! ଏଠାରେ ମିଛ କହି ବାବୁଙ୍କୁ ହଇରାଣ କରିବାକୁ ବସିଛୁ ? ଚାଲ୍ ତୋ ଗେରସ୍ତ ପାଖକୁ ।

ସ୍ତ୍ରୀ ଲୋକଟି ଦଣ୍ଡାସୀ କଥାରେ ପୂରା ଡରିଗଲା ଯେପରି । ସେ ଅନ୍ଧାରରେ କେତେବେଳେ ତା କଣ୍ଠଟା ଚିପି ପକାଇଥିଲା ।

କିନ୍ତୁ ମୋର ବାକି ପଇସା···

ଚାଲ ବେ, ମୁଁ ତୋତେ ଦେବି ତୋର ବାକି ପଇସା···ମୁଁ ତ ତୋତେ କହିଥିଲି ସବୁ ଦେବି ବୋଲି । ବାବୁଙ୍କୁ ମାଗିବାକୁ ତୋତେ କିଏ କହିଲା ?

ସେ କଥାରେ ମଧ୍ୟ ପ୍ରତିବାଦ ନ କରି ଠିଆ ହୋଇ ରହିଥିବା ସ୍ତ୍ରୀ ଲୋକଟି ହାତରେ ଯୋଗେଶ ପାଞ୍ଚଟଙ୍କିଆ ନୋଟଟିଏ ଦେଇ ଧୀରେ କହିଲା—ହୁସିଆରରେ ରଖିବୁ । ପାଞ୍ଚ ଟଙ୍କା ଦେଲି ।

ଦଣ୍ଡାସୀ ଯୁବତୀଟିକୁ ତା ପରେ ଅନ୍ଧାରରେ ଝିଙ୍କି ଝିଙ୍କି ନେଇଗଲା ।

କଣେଇ ଚାହିଁଲା ଯୋଗେଶ ରତ୍ନାଙ୍କ ଆଡ଼େ । କିଛି ଶୁଣି ପାରି ନାହାନ୍ତି ତ ରତ୍ନା ! ଭାବୁ ଭାବୁ ସେ ବଡ଼ ପାଟିରେ କିଛି କହି ପକାଇ ନାହିଁ ତ ? ପବନରେ ରତ୍ନାଙ୍କ ଅଳକା ଗୁଡ଼ିକ ଫୁରୁ ଫୁରୁ ଉଡ଼ୁଥାଏ । ସେ ଢୁଳଉଥାନ୍ତି । ଅଳକା ଗୁଡ଼ିକୁ ସଜାଡ଼ି ଦେବାକୁ ଇଚ୍ଛା ହେଲା ଯୋଗେଶର । ସେହି ଗୋରା ଜଳ ଜଳ ସୁନ୍ଦରୀ ସ୍ତ୍ରୀଟିକୁ ସତରେ ସେ କେତେ ଭଲ ପାଉନାହିଁ ।

ଘଣ୍ଟା ଦେଖିଲା ଯୋଗେଶ । ଦଶଟା ବାଜିବାକୁ ଆହୁରି ପଇଁଚାଳିଶ ମିନିଟ ବାକି । ଦଶଟା ବାଜିଲେ ସେ ରତ୍ନା ଓ ସୁମନ୍ତକୁ ଉଠାଇବ । ଗାଡ଼ିକୁ ରାସ୍ତା କଡ଼ରେ ରଖି ସମସ୍ତେ ମିଶି ବ୍ରେକ୍‌ଫାଷ୍ଟ କରିବେ । ରାସ୍ତାକଡ଼, ଜଙ୍ଗଲ ଦାଡ଼, ଭାରି ମଜା ହେବ । ସବୁ ବୋଧେ ରେଡ଼ି ହୋଇ ମଟର ପଛରେ ଥୁଆ ହୋଇଛି । ଯାହା ଚା ଆଣିବାକୁ ସେମାନେ ଭୁଲି ଯାଇଛନ୍ତି । କିନ୍ତୁ କିଛି ଅସୁବିଧା ହେବନାହିଁ । ତିନିଖଣ୍ଡ ପଥର ପକାଇ, କେଟ୍‌ଲି ରଖି, ଶୁଖିଲା କାଠ ପତରରେ ନିଆଁ ଲଗାଇ ଦେଲେ ପାଣି ଗରମ ହେବ । ବରଂ ବ୍ରେକ୍‌ଫାଷ୍ଟ ସହିତ ସେପରି ଚା କରି ପିଇଲେ ବେଶୀ ମଜା ଲାଗିବ । ରତ୍ନା କଥାଟିକୁ ବହୁଦିନ ପାଇଁ ମନେ ରଖିବେ ।

ଯୋଗେଶର ଧୂଳି ଧୂସରିତ ଆମ୍ବାସାଡ଼ର୍ ଘରେ ପହଞ୍ଚିବା ବେଳକୁ ପ୍ରାୟ ଚାରିଟା ବାଜି ଯାଇଥିଲା । ଯୋଗେଶ ଗାଡ଼ିଟାକୁ ଫାଟକ ପାଖରେ ରଖି ଅଳସ ଭାଙ୍ଗିବା ପାଇଁ ହାତ ଟେକୁ ଟେକୁ ଦେଖେ, ଫାଟକଟା ପୂରା ମେଲା । ବଗିଚା ଭିତରେ ଦୁଇଟା ଖୁବ୍ ହୃଷ୍ଟପୁଷ୍ଟ ହରିଆନା ଗାଈ ତାର ଆରାକାରିଇନ୍ ଗଛଟାକୁ ଲଣ୍ଡି କରିବାରେ ଲାଗିଛନ୍ତି । ସେ କାର୍ ଦୁଆର ଖୋଲି ପାଗଳଙ୍କ ପରି ବଗିଚା ଭିତରକୁ ଦଉଡ଼ି ଗଲା । ଭୟଙ୍କର ଚିତ୍କାର କରି ସେ ତଳୁ ଇଟା ଖଣ୍ଡିମାନ ଉଠାଇ ସେହି ଗାଈ ଦୁଇଟି ଉପରକୁ ମାରିବାରେ ଲାଗିଗଲା । ଆଶ୍ଚର୍ଯ୍ୟ କଥା ତାର ପ୍ରଚଣ୍ଡ ରାଗ ସତ୍ତ୍ୱେ ଇଟା ଗୁଡ଼ିକ ଗାଈ ଦୁଇଟି ଦେହରେ ନ ବାଜି ଏଣେ ତେଣେ ପଡ଼ୁଥାଏ ଓ ଗାଈ ଦୁଇଟି ନିଶ୍ଚିନ୍ତ ହୋଇ ଖାଇବାରେ ଲାଗିଥାନ୍ତି । ଯୋଗେଶ ଆଖି ଆଗରେ, ତାର ବର୍ଷ ବର୍ଷର ସାଧନା ନଷ୍ଟ ହୋଇ ଯାଉଥାଏ । ତାର ବହୁ ବର୍ଷର ହେପାଜତ, ବହୁ ଅର୍ଥର ବିନିଯୋଗରେ ଗଢ଼ି ଉଠିଥିବା, ବହୁ ବନ୍ଧୁ ପତ୍ନୀଙ୍କ

ପ୍ରଶଂସା ପାଇଥିବା, ବର୍ଗିଙ୍କ ଚିନ୍ତ ନଷ୍ଟ ହେବାରେ ଲାଗିଥାଏ । ସେ ଗାଈ ଦୁଇଟିର ନିକଟ ହୋଇସିବା ପରେ କେତୋଟି ଇଟା ସେମାନଙ୍କ ଦେହରେ ବାଜିଲା ଓ ତା ପରେ ସେମାନେ ବଡ ସମ୍ଭ୍ରମ ସହକାରେ ରାସ୍ତାକୁ ଚାଲିଗଲେ । ହୃଷ୍ଟପୁଷ୍ଟ ଗାଈ ଦୁଇଟିଙ୍କୁ ରାସ୍ତା ଉପରକୁ ଉଠି ଆସୁଥିବା ଦେଖି ମଠର ଭିତରୁ ସୁମନ୍ତକୁ କାଖେଇ ବାହାର ଆସୁଥିବା ରତ୍ନା ପୁଣି ମଠରରେ ପଶିଯାଇ ଦୁଆର କିଳିଦେଲେ । ମଠର ଭିତରେ ବସି ସେ କାନ୍ଦିଲା ସ୍ୱରରେ କହିବାରେ ଲାଗିଥାନ୍ତି—କିଏ ସେ ବଦମାସ୍ ଫାଟକଟା ମେଲାଇ ଦେଇଥିଲା, କହିଲ ? କାହାର ଦେହ ସହିଲାନି ? କୁଆଡ଼େ ସେ ପୂଜାରୀ ଗଲା, କୁଆଡ଼େ ଗଲା ସେ ପଥିକ ! ଦୁହେଁ ତ ଶୋଇ ପଡ଼ିଥିବେ, ବର୍ଗି ଯୁ ଉଜୁଡ଼ି ଗଲେ ସେମାନଙ୍କର କଣ ଅଛି । ଦରମା ଗଣ୍ଡିକ ସେମାନଙ୍କୁ ମିଳୁଥିଲେ ହେଲା । ମଣିଷ ଚାକର ବାକରଙ୍କୁ ବିଶ୍ୱାସ କରି ଯାହା ଘର ଛାଡ଼ିଯାଏ ।

ଯୋଗେଶ ଉଦ୍‌ଭ୍ରାନ୍ତ ପରି ରତ୍ନାଙ୍କ ଆଡ଼କୁ ଚାହିଁ ଲଣ୍ଡି ହୋଇ ଯାଇଥିବା କୋଚପରସ୍ ଜାତୀୟ ତାର ଦୁର୍ଲଭ ଗଛଗୁଡ଼ିକୁ ଚାହିଁଲା । ମନ୍ଦାର ଗଛ ଗୁଡ଼ାକ ବି ଲଣ୍ଡି ହୋଇ ଯାଇ ଥାଆନ୍ତି । କନିଆ, ଡାଲିଆ ବେଡ଼୍‌ରେ ଗାଈ ଖୁରା ଚିହ୍ନ, ଏଣେ ତେଣେ ଗୋବର ।

× × ×

ଯୋଗେଶ ଗାଧୋଇ ପାଧୋଇ ବେଡ଼ ରୁମ୍‌ରେ ସେ ମାସର ଫେମିନାଟାକୁ କୋଳ ଉପରକୁ ନେଇ ବସିଥାଏ । ଘର ଭିତରଟା ଅନ୍ଧାର, ଟେବୁଲ୍ ଉପରେ ଯାହା ଟେବୁଲ ଲ୍ୟାମ୍ପଟା ଜଳୁଥାଏ । ଚଉକି ଉପରେ ଆଉଜି ଫେମିନାର ପୃଷ୍ଠାକୁ ଓଲଟାଉ ଓଲଟାଉ ଯୋଗେଶ ଟ୍ରାଞ୍ଜିଷ୍ଟରକୁ ଖୋଲି ଦେଇ କଟକ ଷ୍ଟେସନ ଦେଲା । ରତ୍ନା କିନ୍ତୁ ସେତେବେଳେ କଟକ ଷ୍ଟେସନରେ କିଛି ଗୀତ ନାହିଁ, ଖାଲି ଆଞ୍ଚଳିକ ସମ୍ବାଦ ବୋଲି ଶେଯ ଉପରେ ଶୋଇ ସୁମନ୍ତକୁ ସ୍ତନ ଦେଉ ଦେଉ ପ୍ରତିବାଦ କଲେ । ଆଞ୍ଚଳିକ ସମ୍ବାଦ ସେତେବେଳେ କହୁଥିଲା—ଓଡ଼ିଶାର ପଶ୍ଚିମାଞ୍ଚଳ ଜଙ୍ଗଲରେ ଅଭୂତପୂର୍ବ ଅଗ୍ନି ଯୋଗୁଁ ପ୍ରାୟ ଲକ୍ଷେ ଟଙ୍କାର ହେବ ବହୁ ମୂଲ୍ୟବାନ ଶାଳ, ପିଆଶାଳ, ସାଗୁଆନ କାଠ ପୋଡ଼ି ନଷ୍ଟ ହୋଇ ଯାଇଛି । ଅଗ୍ନି ଲାଗିବାର କାରଣ ଜଣା ପଡ଼ୁନାହିଁ । ବର୍ଷାହୋଇ ଯାଇ ପ୍ରବଳ ଭାବରେ ବ୍ୟାପି ଯାଉଥିବା ଅଗ୍ନି ଲିଭି ଯାଇ ନ ଥିଲେ······



## କ୍ଷମା ପ୍ରାର୍ଥନା

ବନଫୁଲର ଶାରଦୀୟ ସଂଖ୍ୟା ପାଇଁ ବହୁତ ମୂଲ୍ୟବାନ୍ ଲେଖା ଆମ ପାଖକୁ ଆସିଛି । ସ୍ଥାନାଭାବରୁ ତାହା ଦିଆଯାଇ ପାରିଲା ନାହିଁ । ସେ ସମସ୍ତ ଆସନ୍ତା ସଂଖ୍ୟାରେ ପ୍ରକାଶ କରିବାକୁ ଚେଷ୍ଟା କରୁଛୁ । ଏଥିପାଇଁ ଆମ୍ଭେ କ୍ଷମା ପ୍ରାର୍ଥନା କରୁଛୁ । ସମ୍ପାଦକ—ବନଫୁଲ

# ॥ ଗାନ୍ଧିଜୀ ସ୍ମରଣେ ॥

## ଶ୍ରୀ ବ୍ରଜନାଥ ରଥ

[ ଓଡ଼ିଶାର ଜଣେ ସୁନାମଧନ୍ୟ ବିପ୍ଳବୀ କବି ଶ୍ରୀ ବ୍ରଜନାଥ ରଥ । ଅସଂଖ୍ୟ କବିତା ରଚନା କରି ସେ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ । ତାଙ୍କ ରଚିତ ବିଭିନ୍ନ ପୁସ୍ତକ ଗୁଡ଼ିକ ମଧ୍ୟରେ ମରୁ ଗୋଲାପ, ନିଜସ୍ୱ ସଂଳାପ ଏକ ବଳିଷ୍ଠ ସୃଷ୍ଟି । ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ତାଙ୍କ କବିତା ଗୁଡ଼ିକ ପ୍ରକାଶିତ ହୁଏ । ସାଧନାରତ ଜୀବନରେ ସାହିତ୍ୟକୁ ସେ ଧରିଛନ୍ତି ନିଜର ସମ୍ପଦ କରି । ଓଡ଼ିଆ ଯୁବ ଲେଖକ ସମ୍ମିଳନୀର ସେ ଜଣେ କର୍ଣ୍ଣଧାର । ସ.—ବନଫୁଲ ]

॥ ଏକ ॥

ତୁମେ ଆଜି ମନେ ପଡ଼
ମର୍ମଦାହୀ ଜୀବନର ଅସହ୍ୟ ଉତ୍ତାପେ;
ତୁମେ ଆଜି ମନେ ପଡ଼
ରକ୍ତପାୟୀ ସଭ୍ୟତାର କ୍ରୂର ଅଭିଶାପେ;
ତୁମେ ଆଜି ମନେ ପଡ଼
ବିପର୍ଯ୍ୟସ୍ତ ବିବେକର ଖାଣ୍ଡବ ଦହନେ;
ମନେ ପଡ଼ ତୁମେ ପୁଣି
ଏ ଅଶାନ୍ତ ହୃଦୟର ଦଗ୍‌ଧ ଫୁଲବନେ—
ସ୍ତବ୍‌ଧ ଯେବେ ଶକ୍ତି ଓ ଚେତନା;
କେତେ ଦୂରେ କହ ତୁମେ
ହେ ପ୍ରିୟ ଗାନ୍ଧିଜୀ !
ତୁମର ସେ କଳ୍ପନାର ସ୍ୱର୍ଗରାଜ୍ୟ ?
କେତେ ଦୂରେ ଶାନ୍ତ-ସୌମ୍ୟ ସୁନାର ହସ୍ତିନା ? ?

॥ ଦୁଇ ॥

ସେ ଦିନର ମର୍ମ ଥରି
ରକ୍ତାକ୍ତ ସନ୍ଧ୍ୟାର ସ୍ମୃତି
ଆଜି ବି ରହିଛି ମନେ
ବିସ୍ମୃତିର ଶତ ଉଚ୍ଚାରଣେ,
ଆମେ ଯେବେ ଗାଉଥିଲୁଁ
ବସି ବସି ସୂର୍ଯ୍ୟାସ୍ତର ସ୍ତବ
ଦେଖିଥିଲୁଁ ସ୍ତବ୍‌ଧ ନେତ୍ରେ
ବିଭତ୍ସ ହତ୍ୟାର ଲୀଳା
ରକ୍ତର ଉତ୍ସବ,
ଏସିଆର୍ ନଭ ପଟେ
ଈଶ୍ୱର ଆଲୋକ ରେଖା
ହଜିଗଲ କେଉଁ ପରି
ଯମୁନାର ନୀଳ-ନୀର ଧାରେ
ଲିଭିଗଲ କେଉଁ ପରି
ମାନବିକତାର ଆହେ ଦୀପ୍ତ ଦୀପ ଶିଖା
ମଦ୍ୟପାୟୀ ଝଡ଼ର ଝଙ୍କାରେ
ମନେ ପଡ଼େ, ସବୁ ମନେ ପଡ଼େ ॥

॥ ତିନି ॥

ତୁମକୁ ମାରିଚୁ ଆମେ ତିଳ ତିଳ କରି
ଆମେ ଯେତେ ଛଦ୍ମବେଶୀ ମାରୀଚର ଦଳ;
ସତ୍ୟକୁ କରିଛୁଁ ହତ୍ୟା ଯୁଗ ଯୁଗ ଧରି
ମିଥ୍ୟା ଯେଣୁ ଆମର ସମ୍ବଳ,
ଶୂନ୍ୟର ସିଢ଼ିରେ ଚଢ଼ି ବିଜୟର ସ୍ପର୍ଦ୍ଧିତ ଗୌରବେ
ପୂର୍ଣ୍ଣତାର କରୁଛୁଁ ସନ୍ଧାନ;
ଅନ୍ଧକାର ମହୋତ୍ସବେ
ଅର୍ଦ୍ଧ୍ୟରାତ୍ରି ଘନ ତମିସ୍ରାର
ଆଲୋକର କରୁଁ ଆବାହନ,
ହାତେ ଧରି ମଦମତ୍ତ ଦୃପ୍ତ ତରବାରି
ଉଡ଼ାଉଛୁଁ ବେଗେ ବେଗେ ଶାନ୍ତିର କପୋତ;
ଘୂରି ଘୂରି ନରକର କଣ୍ଟକିତ ପଙ୍କିଳ ପଥରେ
ଖୋଜୁଅଛୁଁ କେତେ ଦୂରେ କାହିଁ ସ୍ୱର୍ଗପଥ ?
ଆପଣାକୁ ଆପେ ଭଣ୍ଡି
ଛଳନାର ବଳୟ ଭିତରେ

ଉତ୍‌ଫୁଲ୍ଲ ହର୍ଷର ବେଗେ
ମାରୁଅଛୁଁ ଯେବେ କରତାଳି
ତୁମେ କି ପଡ଼ନ ମନେ ସେତେବେଳେ
ଶତାବ୍ଦୀର ହେ ପ୍ରିୟ ସାରଥୀ !
ବିବେକର ହେ ସତର୍କ ଜାଗ୍ରତ ପ୍ରହରୀ ! !

॥ ଚାରି ॥

ଲକ୍ଷ୍ୟ ଆଜି ସାଧନାର ସିଦ୍ଧି ପଥେ
ହେ ଅନନ୍ତ ପଥଗାମୀ !
ହେ ଦୁରନ୍ତ ! ହେ ଉଦ୍ଦାମ ପାଦ ! !
ମୃତ୍ୟୁର ସଂଗ୍ରାମେ ଜିନି
ଲଭିଅଛ ତୁମେ
ଚିରନ୍ତନ ଜୀବନର ସ୍ୱାଦ ।
ସ୍ୱହ୍ନତ ସୀମାନ୍ତ ମଧ୍ୟେ
ତୁମେ ହିଁ ମିଳନ ସେତୁ
ଅପରୂପ ସମନ୍ୱୟ ପାଇଅଛ ଆଣି,
ସ୍ୱପ୍ନ ଆଜି ବାସ୍ତବର ଧ୍ରୁବ ରୂପାୟନେ
ହେ ନିପୁଣ ଦକ୍ଷ କାରିଗର
ଜୀବନର ମହାକାବ୍ୟେ
ବାକ୍ୟ ତବ ଅସରନ୍ତି କର୍ମର କାହାଣୀ ॥

॥ ପାଞ୍ଚ ॥

ସ୍ୱପ୍ନର କୋରକ ହେନେ
ଅବରୁଦ୍ଧ ଆମର ପ୍ରାଣର
ଥିଲା ଯେବେ ବନ୍ଦୀ ହୋଇ
ନିରାଶା କୁଜଝଟୀ ଘେରା ଘନ ଅନ୍ଧକାରେ
ତମେ ହିଁ ପ୍ରଥମ ସୂର୍ଯ୍ୟ
ଜୀବନର ନକ୍ଷତ୍ରଚୁମ୍ବୀ ଉତ୍ତୁଙ୍ଗ ଶିଖରେ
ନବ ଯୁଗେ ରଚି ତବ ଶୁଭ ଉଦୟନ
ଛିନ୍ନ କରି ରଜନୀର
ଘନ ଘୋର ତିମିର ବନ୍ଧନ
ଉଷାର ଉଜ୍ଜ୍ୱଳ ହାସେ
ଫୁଟାଇଲ ତାରେ
ଗନ୍ଧ ଭରା—ଛନ୍ଦ ଭରା
ବର୍ଣ୍ଣମୟ ବିଚିତ୍ର ସମ୍ଭାରେ ॥

॥ ଛଅ ॥

ଲୁହରେ ଲୁହ ଓ ପୁଣି
ଲହୁରେ ମିଶାଇ ଲହୁ
ତୁମେ ଇ ତ ଫୁଟାଇଲ
ଲକ୍ଷ ରକ୍ତ-ମାନସ-ଶାଖାରେ
ବିଶ୍ୱାସର ଆରକ୍ତ କରବୀ
ପ୍ରାଣରେ ପ୍ରାଣ ଓ ପୁଣି
ହସରେ ମିଶାଇ ହସ
ତୁମେଇ ତ ଫୁଟାଇଲ
ଅଗଣିତ ଜୀବନ-ବୀଣାରେ
ଲାସ୍ୟମୟୀ ଆଶାର ପୂରବୀ
ଶୀତାର୍ତ୍ତ ଧରାର ବୁକେ
ବସନ୍ତର କଳ ଆବାହନ
ମୃତ ନଦୀ ବୁକେ ତୁମେ ଆଣିଦେଲ
ଅଜସ୍ର ପ୍ଲାବନ;
ତେଣୁ ଆଜି ଶତାବ୍ଦୀର ଯାତ୍ରା ପଥେ
ଶକ୍ତିମାନ୍ ହେ ଅଗ୍ର ପଥିକ !
ସମୟର ମହାକାଶେ
ତୁମେ ଚିର ଯାତ୍ରିମାନ୍, ତୁମେ ଚିର ବହ୍ନିମାନ୍
ଅନିର୍ବାଣ ଜ୍ୱଳନ୍ତ ଜ୍ୟୋତିଷ୍କ ॥



(କଟକ ଆକାଶବାଣୀ ସୌଜନ୍ୟରୁ)

# ।। ମୁଁ ହୟଗ୍ରୀବ ମହାନ୍ତି ।।

## ବ୍ରଜମୋହନ

[ ଓଡ଼ିଆ ସାହିତ୍ୟର ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ ବ୍ରଜମୋହନ ମହାନ୍ତି । ଏକାଧାରରେ ସେ ଜଣେ ଔପନ୍ୟାସିକ, ସମାଲୋଚକ, କବି, ନାଟ୍ୟକାର ଓ ଗାଳ୍ପିକ । ଏହି ସୀମିତ ଜୀବନ ମଧ୍ୟରେ ତାଙ୍କର ବହୁ ପୁସ୍ତକ ପ୍ରକାଶିତ । ସେଗୁଡ଼ିକ ମଧ୍ୟରୁ ଓଡ଼ିଆ ଭାଷା ବିଜ୍ଞାନ, ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ, ଓଡ଼ିଆ ସାହିତ୍ୟରେ ଆଧୁନିକତାର ଦର୍ଶନ, ଜଗନ୍ନାଥ ପରିକ୍ରମା, ବନ୍ଧୁ ଏ ନିଅଁ, କାହାଣୀ ତିନି ବନ୍ଦର, ଅଗଣିତ କ୍ଷୁଧା ସମ୍ପର୍କରେ, ରକ୍ତଗଡ଼ର ସ୍ୱପ୍ନ, ଅମ୍ବାପାଲୀ, ସୀତା-ନାଥଙ୍କ ସଂସାର, କୁଆଁ ତାରାର କାବ୍ୟ, ଶୁଣ୍ୟା ପଥ ଇତ୍ୟାଦି ଉଲ୍ଲେଖଯୋଗ୍ୟ । କେବଳ ଲେଖା ନୁହେଁ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାକୁ ସେ ବହୁ ଭାବରେ ସାହାଯ୍ୟ କରି ଆସୁଅଛନ୍ତି । ଏପରିକି 'ବନଫୁଲ୍'କୁ ମଧ୍ୟ । ଆଧୁନିକ ପରୀକ୍ଷା ମୂଳକ ଦର୍ଶନ ତଥା ରୂପ କଳ୍ପ ଓ ଶବ୍ଦକଳ୍ପ ମଧ୍ୟରେ ବୌଦ୍ଧିକ ଚେତନାର ପରିବେଶ ସୃଷ୍ଟି କରି ସାହିତ୍ୟ ରଚନା କରିବାରେ ସେ ପକ୍ଷପାତି । 'ବନଫୁଲ୍' ପ୍ରତି ତାଙ୍କର ପ୍ରଗାଢ଼ ସଦିଚ୍ଛା ଥିବା ହେତୁ ଆମେ ତାଙ୍କ ନିକଟରେ କୃତଜ୍ଞ । ସଂ. ବନଫୁଲ୍ ]

ଅହମିକାର ଆତ୍ମା ମୋର ଦୌଡ଼ିବାରେ ଲାଗିଛି ଉତ୍ତେଜିତ ହୋଇ । ପୁଞ୍ଜିଭୂତ ବେଦନାର ସ୍ଫୁଲିଙ୍ଗ ପରି ଜଳିବାରେ ଲାଗିଛି ସୂକ୍ଷ୍ମ ଭାବାବେଗ···

ମୁଁ···

ମୁଁ ହୟଗ୍ରୀବ ମହାନ୍ତି ଝାସ ଦେଇଛି ଅନ୍ଧକାରର କଟିମିଟି ବିକଟାଳ ପାଟି ଭିତରେ ମୁକ୍ତିକୁ ଲୁଚାଇ ଲୁଚାଇ । ଲୀନ ହୋଇ ଯାଉଛି ପୁଞ୍ଜୀଭୂତ କାଳିମା ସଞ୍ଚିତ ନିଜର ସମସ୍ତ ସତ୍ତା ହଜାଇ । ସାଗରିକାର ନୀଳ ସୁଷମାରୁ ମୁଁ ଆହରଣ କରିବି ମୋ ମନରୁ ଅନେକ ସ୍ୱପ୍ନ···ଅନେକ କଳ୍ପନା··· ।

(ବନ୍ଧୁମା । ଏଇଠାରେ ବନ୍ଧୁମାର ଆରମ୍ଭ ହେଉ, ଜୀବନର ଉପୋଦ୍‌ଘାତରେ···ମୋ ବନ୍ଧୁମାର ଆରମ୍ଭ । ମୁଁ ଓ ସାଗରିକା । ଆମେ ଦୁଇଜଣ ଦୁଇଟି ଚନ୍ଦ୍ରବିନ୍ଦୁମାର ଆରମ୍ଭରେ ଓ ଶେଷରେ । ମଝିରେ ଆମର ଜୀବନ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସଞ୍ଚିତ ଏହି ବନ୍ଧୁମାର ମଧ୍ୟାନ୍ତର ନିବିଡ଼ ଭାବେ ସଂଶ୍ଳିଷ୍ଟ । ତା'ପରେ···)

ନାଁ···

ଆଜି ବନ୍ଧୁମାର ଆବଶ୍ୟକତା ନାହିଁ । ଜୀବନର ପ୍ରଥମ ପାଦ ଭଳି ସ୍ନେହ, ପ୍ରେମ, ପ୍ରଣୟର ଅଯୁମାରମ୍ଭ କରେ ମୁଁ··· । କିନ୍ତୁ ସାଗରିକା···? ?

ସେ ପ୍ରଥମ ପାଦର ପରେ ପରେ ଦ୍ୱିତୀୟ ପାଦ ଭଳି ସୃଷ୍ଟି କରେ ଆମ ଜୀବନର କମନୀୟ ଯତିପାତ । ଆମେ ଦୁହେଁ ମିଶିଯାଉ ଏକ ଓ ଅଭିନ୍ନ ହୋଇ ।

କିନ୍ତୁ···

ଆମେ ଭିନ୍ନମୁଖୀ । ଉତ୍ତର ଓ ଦକ୍ଷିଣ ମେରୁର ଆକର୍ଷଣୀ । ନେଗେଟିଭ···ପଜେଟିଭ୍··· ।

ତଥାପି···

କାମନାର ସଙ୍ଘର୍ଷରେ ଜ୍ୱଳମାନ ବହ୍ନି ଶିଖାର ଗୌରବ ନେଇ ଆମେ ଜୀବିତ । ଆମେ ନୀଳ ଚନ୍ଦ୍ରର ଉପତ୍ୟକାରେ ସୁନ୍ଦର ଜ୍ୟୋତ୍ସ୍ନା ଧୌତ ଖାପଛଡ଼ା ଶବ୍ଦମ୍ ।

ଆମେ···

ହଁ...ଆମେ ଦୁହେଁ

କୋଳାହଳମୟ ଅଶାନ୍ତକୁ ଛାଡ଼ିଆସିଛୁ ନିର୍ଦ୍ଦୟ ଭାବେ । ସେ ଅଶାନ୍ତକୁ ମାଡ଼ିଁଛି ଏବେ ଖେଳସାଥୀ କରିଛନ୍ତି ମୋର ସାନ ଭଉଣୀ...ସାଗରିକାର ଶ୍ରେଷ୍ଠ ଭାଇ । ସେଇ ନେଗେଟିଭ୍...ପଜେଟିଭ୍... । ପୁରୁଷ ସ୍ତ୍ରୀ । ମୁଁ ଓ ସାଗରିକା ।

ପାଦର ଗତି ଦ୍ରୁତରୁ ଦ୍ରୁତତର ହୋଇ ଉଠିଲା । ଆଶ୍ୱିନ ରାତିର ଶୁଭ୍ରତାରେ ଅଞ୍ଜୁଳା ଅଞ୍ଜୁଳା ଉଦ୍‌ବେଗ ଅଜାଡ଼ି ମୁଁ ଆଗେଇବାରେ ଲାଗିଥିଲି ନିରବଚ୍ଛିନ୍ନ ଭାବରେ । ମୋତେ ଉତ୍ସାହିତ କରୁଥିଲା ଜୀବନର ଅସଂଖ୍ୟ କାବ୍ୟମୟୀ ମୁହୂର୍ତ୍ତ... ।

ସେଇ ସାଗରିକା...

ବାସ୍ନାଣୀର ଗୁହାଣୀରେ କାତର ନାଗିଣୀର ପସରା ନେଇ ଦିନେ ଉଡ଼ି ବୁଲୁଥିଲା ରଙ୍ଗୀନ ପ୍ରଜାପତି ଭଳି ମୋର ଉନ୍ମୁକ୍ତ ଉଦ୍ୟାନରେ । ମୁଁ ତାକୁ ଆଦର କରୁଥିଲି.. ନିଜର କରୁଥିଲି । ତା'ର ପ୍ରେମର ତୂଳୀରେ ମୋର ରୂପ ଆଙ୍କି ଆଙ୍କି ମୁଁ ଥିଲି ପାଗଳ ।

ଆଜି ମଧ୍ୟ...

ଅସ୍ତ ସୂର୍ଯ୍ୟର ଶେଷ ରଶ୍ମିରେ ଉଚ୍ଚ ଉଚ୍ଚ ଗଛର ଛାଇ ଲମ୍ବରୁ ଲମ୍ବ ହେବା ଭଳି ସାଗରିକା ମୋ ନିକଟରେ ହୋଇ ଉଠିଲା କ୍ଷୁଦ୍ରରୁ ବିରାଟ । ବିନ୍ଦୁରୁ ବିଶ୍ୱ... । ଆଉ ତା'ର ରୂପ କଳନା କରି ହେଉ ନାହିଁ । ସତେ ଯେମିତି ଆକାଶକୁ ଲମ୍ବିଥିବା ଗଗଣର ସେ ଏକ ପରିକଳ୍ପିତ ସିଡ଼ୀ ।

ମୁଁ ସେଇ ସିଡ଼ୀ ଉପରେ ଚଢ଼ୁଛି ଚିରଞ୍ଜୀବ ମହାନ୍ତି । ପୁଣି ଚଢ଼ି ନ ପାରି ଓହ୍ଲାଉଛି ଆହତ ଆନନ୍ଦରେ । ବ୍ୟଥାର ଉତ୍ସାହରେ ।

ଆଗେଇବାରେ ଲାଗିଛି ସାଗରିକାର ଉଦ୍ଦେଶ୍ୟରେ... । ପୁଣି ଦୌଡ଼ିବାରେ ଲାଗିଛି ସାଗରିକାକୁ ଛୁଇଁ ଛୁଇଁ... ।

କିନ୍ତୁ...

ଦିନେ ମୁଁ ସାଗରିକା ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ ହୋଇ ଖେଳୁଥିଲି ନାନା ରଙ୍ଗର ଖେଳ... । ଆଜି ଉଡ଼ୁଛି ଆକାଶରେ ବୈମାନିକର ଭ୍ରମଣକାନ୍ତ ମନ ନେଇ । ଶବ୍ଦ ପକ୍ଷରେ ଆଉ ଏକ ଜେଟ୍‌ରେ ସତେ ଯେମିତି ଉଡ଼ିବାରେ ଲାଗିଛି ସାଗରିକା ।

ମୁଁ ଚିରଞ୍ଜୀବ ମହାନ୍ତି । ବିଶ୍ୱବିଦ୍ୟାଳୟର ଅନ୍ୟତମ କୃତି ଛାତ୍ର । ବର୍ତ୍ତମାନର ଖ୍ୟାତନାମା ଅଧ୍ୟାପକ । ପ୍ରେମ କରିବାର ବୟସ ମୋର ନାହିଁ । ଦୁଷ୍ଟାମୀ କରିବାର ସମୟ ମୋର ନାହିଁ । ମୁଁ ଭାବେଁ

ସାଗରିକାର ନିବିଡ଼ ସାନିଧ୍ୟ । ପ୍ରେମ, ପ୍ରଣୟ, ସ୍ନେହର ପରିଣତିରେ ଝାମ୍ପ ମାରିବାର ଯେଉଁ ସ୍ପୃହା... ତାହା ହିଁ ମୋ ଭିତରେ ସୃଷ୍ଟି କରିଛି ଏକ ଅଭିନବ ଆତ୍ମ ଚେତନା । ତେଣୁ । କାମୁକତାର ଉତ୍କର୍ଷରେ...ସୃଷ୍ଟିର ଚିରନ୍ତନ ପ୍ରଣ୍ଣେଦନାରେ ମୁଁ ପାଗଳ ।

ମୋ ବାସ୍ନାଣୀ ସାଗରିକା ସହିତ ମୁଁ ନାଚିବାକୁ ଚାହେଁ ପାଗଳ ହୋଇ......ମିଳନରେ......ପୁଣି ବିରହରେ ।

ସାଗରିକା ବଦଳି ନାହିଁ । ଶାନ୍ତ ଯୁଗୀୟ ନାୟିକା ଭଳି ସେ ଲୁଚିଛି ତା' ଅଶାନ୍ତକୁ ଘାଉଲି ବାଘୁଣୀ ହୋଇ । ହୁଏତ ନିଜର ଦେହ ମନ୍ଦିରରେ ସେ ଅନୁଭବ କରୁଛି ମୋ ଭଳି ଦାଅଁର ଚରାଚରିତ ନୈବେଦ୍ୟ ।

ଅନୈତିକ ମନ ତା'ର ଜପ୍‌ସି ପରି ବୁଲି ବୁଲି ଖୋଜୁଛି ନୈତିକତାର ଛୁରୁକ୍ ।

ହୁଏତ ସେ ଭାବୁଛି—ମୁଁ ଏକ ଛଟ୍ ଘୋଡ଼ା ଭଳି ଅଳଆ ଦଳ ଖାଇ ଖାଇ ତା'ର ପୋଷ ମାନନ୍ତି । ଏବଂ ତାକୁ ଘରବାହ୍ନି ପଶୁଭଳି ପିଠିରେ ବହି ବହି ଧାଇଁ ବୁଲନ୍ତି ସମଗ୍ର ବିଶ୍ୱ ।

ନାଁ...।

ଏଇଠି ମୋ ଅଭାଗ୍ୟ ମନର ଆଉ ଏକ ବିସ୍ମୃତ ଅଧ୍ୟାୟ ଉଦ୍ଧାର କରାଯାଉ । ଏଇଠି ରକ୍ତ ରେଖାରୁଢ଼ ହୋଇ ।

ସାଗରିକା ସହିତ ମୋର ସମ୍ପର୍କ ଆକସ୍ମିକ ନ ଥିଲା । ସେ ଥିଲା ଏକ ସହାନା ମନର ଅନୁପ୍ରବେଶ । ମୁଁ ସବଦା ଶ୍ରେଣୀ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲି । କିନ୍ତୁ ସାଗରିକା ଖୁବ୍ ପଛରେ ପଡ଼ଯାଉ ନ ଥିଲା । ମୋ ପଛକୁ ଧାଡ଼ି ଦେଇ ରହୁଥିଲା ସେ । ଦ୍ୱିତୀୟ ସ୍ଥାନକୁ ପଟା କରି ନେଇଥିଲା ନହେଲେ ଅଡୁଆ ହେବନାହିଁ । ଫଳରେ ପଡ଼ାପଡ଼ି ପାଇଁ ତା'ର ବାପା ମା ଓ ମୋର ବାପା ମା ଅବାଧ ସୁଯୋଗ ସୃଷ୍ଟି କରିଥିଲେ । ଏହି ସୁଯୋଗ ହିଁ ଆଣି ଦେଇଥିଲା ଦେହର ବାସ୍ନା ବାରିବାର ପ୍ରବୃତ୍ତି ।

ବେଶ୍, ଏହାଠାରୁ ଅଧିକ ରେଖାରୁଢ଼ ବାକ୍ୟର ଆବଶ୍ୟକତା ନାହିଁ ।

ପରବର୍ତ୍ତୀ ଜୀବନରେ ଆମେ ଦୁହେଁ ଗୃହିଁଙ୍କୁ ଦୁହିଁଙ୍କୁ । ହୁଏତ ପାପ ଓ ନିଷ୍ପାପର ସୀମାରେଖା ଦୂରେଇ ରହିଛି ଆମଠାରୁ ।

ଡାକ୍ତରୀ ଜୀବନର ନିରବଚ୍ଛିନ୍ନ ସାଧନା ଫଳରେ ଆଜି ହଠାତ୍ ଖବର ଦେଇଛି ସାଗରିକା । ମିଷ୍ଟର ଅଧ୍ୟାପକ ସାଗରିକାକୁ କ'ଣ ଭୁଲିଗଲ ? ଆଜି ଅବସନ୍ନ ଅଛି, ଆସିବ ଗାଡ଼ିରେ । ମୁଁ ଅପେକ୍ଷା କରିଥିବ, ସେଇଥିପାଇଁ ମୁଁ ଦୌଡ଼ୁଛି ପ୍ରାଣମୂର୍ଚ୍ଛା, ସାଗରିକା ଅପେକ୍ଷା କରିଥିବ । ଛଟପଟ ହେଉଥିବ । ଡାକ୍ତରୀ ଜୀବନରେ ମଧ୍ୟ ନେଗେଟିଭ ପଜେଟିଭର ଭୂମିକା ଯଥେଷ୍ଟ ।

ପୁଲକିତ ହୋଇ ଉଠିଲି ମୁଁ

ରିପୋର୍ଟ ନଇଟ୍ ପୋଷ୍ଟଗୁଡ଼ିକ ପଛେଇ ପଛେଇ ଯାଉଛନ୍ତି । ଆଗେଇ ଆସୁଛି ସାଗରିକାର ପୋର୍ଟିକୋ ମୋତେ ସ୍ୱାଗତ ଜଣାଇବା ପାଇଁ ।

ବେଳକୁ ବେଳ ଅଥୟ ହୋଇ ଉଠୁଥିଲି ମୁଁ । ମୀରବ ନିସ୍ତବ୍ଧ ସାଗରିକାର ଡାକ୍ତରୀ ଜୀବନ । ସପ୍ତାହରେ ଗୋଟାଏ ମାତ୍ର ବିଶ୍ରାମର ଦିନ । ହୁଏତ ଆନାଟୋମୀର ବିଭତ୍ସତାକୁ ମନରୁ ଦୂରେଇ ସେ ଅପେକ୍ଷା କରିଥିବ ତନ୍ଦ୍ରାଳସ ଛନ୍ଦରେ । ଜୀବନର ମାଦକତାରେ ପ୍ରଲୋଭିତ ହେଉଥିବ ସେ

ପାଉଛ ପରେ ପାଉଛ ଟପି ଆଗେଇ ଗଲି ଆଗକୁ ।

ଆର୍ତ୍ତନାଦ କରୁଛି ସାଗରିକାର ରୁଦ୍ଧ କୋଠରୀ ।

ହଠାତ୍ ଅଟକିଗଲା ମୋର୍ ପାଦର ନିରବଚ୍ଛିନ୍ନ ଗତି ।

ଏଁ...ତେବେ କ'ଣ ସାଗରିକା ନାହିଁ ତା...?

ବାତାୟନ ପଥ ଦେଇ ସନ୍ତର୍ପଣରେ ଦୃଷ୍ଟି ନିକ୍ଷେପ କଲି ମୁଁ ।

କମ୍ପି ଉଠିଲା ମୋର ସମଗ୍ର ଶରୀର ।

ସାଗରିକା ଯେ ପ୍ରାୟ ଉଲଗ୍ନ !!!

ସେହି ଉଲଗ୍ନ ଉପହାରରୁ କିଛି ଗୋଟେଇ ରଖିବାକୁ ଚେଷ୍ଟାକଲି ମୁଁ...

ତା' ପରେ...

ଏ କ'ଣ ? ନିଜର ଜୁଡ଼ା ଦେହରୁ ସାଗରିକା ବାହାର କରୁଛି ଗ୍ଲେଟ ଫରୁଆଟିଏ । ଗାଢ଼ କଳା-ରଙ୍ଗର ସୁନ୍ଦର ଫରୁଆଟି ଚକ୍ ଚକ୍ କରି ଉଠୁଛି ସତେ ।

ତା'ପରେ

ଉତ୍ସାହ, ଉଦ୍ଦୀପନା, କୌତୂହଳରେ ମୁଁ ଅପେକ୍ଷା କରି କହିଲି ପର ମୁହୂର୍ତ୍ତକୁ ।

ଗ୍ଲିରିଆଡ଼ ନିର୍ବିକାରରେ ଗୃହିଁ ଫରୁଆଟିକୁ ଖୋଲି-ଦେଲା ସାଗରିକା ।

ଅଥୟ ହୋଇ ଉଠିଲି ମୁଁ ।

ଏ କ'ଣ ? ମେଜକ୍ ଭଳି ଫରୁଆ ଦେହରୁ ଯେ ସୁନ୍ଦର ଯୁବକଟିଏ ଆତ୍ମପ୍ରକାଶ କରୁଛି, ଖିଲି ଖିଲି ହସରେ ଆତ୍ମହରା ହେଉଛି ସାଗରିକା ।

ତା'ପରେ......

ତା'ପରେ ମୁକ ହୋଇଗଲ ସାଗରକା । କଥା ଆରମ୍ଭ କଲ ସେ ଯୁବକ, ଅନେକ ଅଶାନ୍ତ ଓ ବର୍ତ୍ତମାନର କାହାଣୀ, ଉପକାହାଣୀରେ ରଞ୍ଜିତ କଲ ସାଗରିକାର ମନ ଉପବନ ।

ବ୍ୟଥିତା ହୋଇ ଉଠିଲ ସାଗରକା । ଆଉଜ ପଡ଼ଲ ଯୁବକଟିର ବକ୍ଷ ଦେଶରେ··· ।

ନିବଡ଼ ଆଶ୍ଳେଷରେ ବୋହଲ ଉଠିଲ ଯୁବକଟି । ସାଗରକା ସମ୍ପୂର୍ଣ୍ଣ ହଜ ଯାଇଥିଲ ଯୁବକର ବସ୍ତୃତ ବକ୍ଷ ଦେଶରେ ।

ଆଉ ସହ୍ୟ କର ନ ପାର ଦାନ୍ତ ଚପି ଆଖି ବୁଜଲ ମୁଁ ।

ସାଗରକା—

ଦୁଶ୍ଚରିତ୍ରା ସାଗରକା—

ମୋତେ ପ୍ରତାରିତ କରଛୁ । ପ୍ରତିଶୋଧ ଆବଶ୍ୟକ ।

ପ୍ରତିଶୋଧ···

ପ୍ରବଳ ଗତିରେ ମୁଁ ଆଘାତ କଲ ସାଗରିକାର ଦ୍ୱାର ଦେଶରେ······ ।

ହୁଏତ ଅନିଚ୍ଛାସତ୍ତ୍ୱେ ଦ୍ୱାର ଖୋଲଲ ସାଗରିକା ।

'ସାଗରିକା !!' ଗମ୍ଭୀର ହୋଇ ଉଠିଲ ମୁଁ । କନ୍ତୁ ସାଗରିକା ସେମିତ ହସୁଥିଲ ନାରସୁଲଭ ହସ···।

ରାଗରେ ନିଆଁ ଭଳ ଜଳ ଉଠିଲ । କଥା କହୁ କହୁ ଯାଚି ଖନି କାଜବାକୁ ଆରମ୍ଭ କଲ—

ତଥାପି କନ୍ତୁ ହସୁଥିଲ ସାଗରିକା ନିର୍ବୋଧ ଭଳ···

"ତୁମେ···ତୁମେ ଦୁଶ୍ଚରିତ୍ରା ସାଗରକା !!" କବାଟରେ ହାତ ବାଡ଼େଇ କହ ଉଠିଲ ମୁଁ ।

"ହଁ···କାରଣ ଏଇ ଚରିତ୍ର ହିଁ ଜୀବନର ସବୁଠାରୁ ବଡ଼ ଟ୍ରାଜେଡ଼ ।"

ଦୁଃଖାନ୍ତକ ନାଟକର ନାୟକ ଭଳ ମ୍ରିୟମାଣ ହୋଇ ପଡ଼ଲ । ସତେ ଯେମିତ ସାଗରକାର ଯୁକ୍ତି ଶୁଣିବାକୁ ମୋର ମୋଟେ ଧୈର୍ଯ୍ୟ ନ ଥିଲ । କାତର ହେବାପରି ଚରିତ୍ରର ଆଗରେ କହଲ— । "କନ୍ତୁ···! ତୁମ ଚରିତ୍ର ଯେ ଏତେ କଳଙ୍କିତ, ଏ ଧାରଣା ମୋର ନ ଥିଲ ।"

ପୁଣି ହସିଲ ସାଗରକା । କହଲ—"ଚରିତ୍ର ? ଚରିତ୍ର ବୋଲ ମଣିଷର କଛୁ ନାହିଁ । ସବୁ କେବଳ ଅଭ୍ୟାସ ।"

"କନ୍ତୁ···କନ୍ତୁ ମୋ ଚରିତ୍ର କଳଙ୍କହୀନ ସାଗରକା । ତୁମ ପାଇଁ ମୁଁ ଜଳ ପୋଡ଼ ପାଉଁଶ ହୋଇଯାଉଛୁ ।"

ଟିକେ ଉପରକୁ ଚାହିଁଲ ସାଗରକା । ହଠାତ୍ ମୁହଁ ବୁଲଇ ନେଇ କହଲ—"ବଳଦର କଳଙ୍କହୀନ ଚରିତ୍ର ଅପେକ୍ଷା ତୁମେ କ'ଣ ଆହୁରି ମହାନ୍ ?"

ସାଗରକାର ପ୍ରତ୍ୟେକ ପଦ କଥା ବାରବାର ଦାରୁଣ ଆଘାତ ଦେଉଥିଲ ମୋତେ । ଆଉ ନିଜକୁ ସମ୍ଭାଳ ନ ପାର ଚତ୍କାର କର ଉଠିଲ ମୁଁ ।

"କୁହ···କୁହ···ସାଗରକା ! ସେ ଯୁବକ କଏ ? ଯାହାକୁ ନେଇ ତୁମେ ଆବଦ୍ଧ କୋଠରୀରେ ରହୁଛ ମଦମତ୍ତ ହୋଇ ?"

କଛୁ ନ ଜାଣିଲ ପର କ୍ଷଣକ ପାଇଁ ଆଶ୍ଚର୍ଯ୍ୟ ହୋଇଗଲ ସେ ।

ଘରଆଡ଼ ଆଖି ବୁଲାଇ ମୁଁ ଖୋଜୁଥିଲ ସେ ଯୁବକକୁ । କନ୍ତୁ···

ନା···। ସାଗରକା ନିଶ୍ଚୟ ତାକୁ ପୁଣି ଲୁଚାଇ ରଖିଛୁ ତାହାର ଘରୁଆ ଭିତରେ । ତାକୁ ଆବିଷ୍କାର କରିବାକୁ ହେବ ।

ଏଥର ସାଗରକାକୁ ଆହତ କରିବା ଭଳ କହଲ—"ତୁମେ ଅନ୍ୟକୁ ଗୁପ୍ତରେ ଲୁଚ ଲୁଚ ପ୍ରେମ କରୁଛ । ଏତେ ମିଛ ଏତେ ସାଂଘାତିକ ତୁମେ ?"

ସାମାନ୍ୟ ବିରକ୍ତ ହୋଇ ଉଠିଲ ସାଗରକା । କହଲ—"ହଁ···ଠିକ୍ ତୁମର ଭଳ । ମନେ ନାହିଁ···

ଗତ ରବିବାର ଦିନ ମୁଁ ତୁମ କୋଠରୀକୁ ପଶିଗଲି ବେଳେ ତୁମେ କାହା ସହିତ ଆତ୍ମୀୟତା ସ୍ଥାପନ କରୁଥିଲ । ତୁମେ ଯଦି ପୁରୁଷ ହୋଇ ମୋତେ ଭୁଲି ଯାଇ ପାରିଲ—ମୁଁ ନାରୀ ହୋଇ ତୁମକୁ ନ ଭୁଲିବି କାହିଁକି ?"

ହଠାତ୍ ଆତ୍ମରକ୍ଷା କରିବାକୁ ଇତସ୍ତତଃ ହୋଇଗଲି ମୁଁ । କହିଲି—"କିନ୍ତୁ କାହିଁ··· ? ଗତ ରବିବାର ଦିନ ତୁମେ ମୋ କୋଠରୀକୁ ଗଲାବେଳେ ସେ ସେ କୋଠରୀରେ କେହି ନ ଥିଲେ ।"

"ହଁ ଥିଲେ···ତୁମେ ତାକୁ ତୁମ ଅଇନା ପଛପଟେ ରଖି ଦେଇଥିଲ ।"

"କିନ୍ତୁ···ସେଇଟା ସେ କୌଣସି ଝିଅ ନୁହେଁ ଗୋଟାଏ ଫଟୋ ମାତ୍ର··· ।"

"ହଁ ତାହାରି କଥା କହୁଛି···"

"ସେଇଟା ତୁମରି ଫଟୋ ସାଗରିକା ।"

"ମୁଁ ଜାଣେ··· । କିନ୍ତୁ ସାମାଜିକ ବନ୍ଧନ ପୂର୍ବରୁ ତୁମେ ସେ ଫଟୋ ଉପରେ ଅତ୍ୟାଚାର କରୁଥିଲ ।"

ବ୍ୟସ୍ତ ହୋଇ ଉଠିଲି ମୁଁ ।

ପ୍ରତିବାଦ କରି କହିଲି—"କିନ୍ତୁ ତୁମେ ସେ ପର ପୁରୁଷ ସହିତ···"

"ହଁ···ସମସ୍ତେ ପର ପୁରୁଷ । ହେଇ ଦେଖ··· ଏମାନେ କାନ୍ଥର ଏ ମୁଣ୍ଡରୁ ସେମୁଣ୍ଡ ଯାଏ କେମିତି ଶିକାରୀ ବାଘ ଭଳି ମୋତେ ଘେରି ବଲ ବଲ ଆଖିରେ ଅନାଇଛନ୍ତି ।"

କେବଳ କାନ୍ଥ ନୁହେଁ···ମୋର ଟେବୁଲ୍, ଫୁଲ୍‌ଦାନୀ, ଆଲମିରା, ସୁଟ୍‌କେଶ୍, ଭ୍ୟାନିଟ୍ ବ୍ୟାଗ, ଦେହ, ମନ, ଜୋତା ସବୁଠାରେ ସେମାନଙ୍କର ଆଡ୍ଡା । ସେମାନେ ଅଛନ୍ତି—ପୁଣି ଯୁକ୍ତି କରୁଛନ୍ତି ଅନନ୍ତ ସମୟ ପାଇଁ ରହିବାକୁ ।"

ଏଥର ଅଥୟ ହୋଇ ଉଠିଲି । ଆଖିରୁ ଝରିବାକୁ ଲାଗିଲା । ଅଗ୍ନିର ସ୍ଫୁଲିଙ୍ଗ । କାନ୍ଥ ଆଡ଼େ ଚାହିଁଲି ମୁଁ । ଝୁଲୁଥିଲା ମୋର ନବୋଧ ଫଟୋଟିଏ ।

ତାରୁଣ୍ୟ ରଥର ଘୋଡ଼ାଗୁଡ଼ିକ ସାରଥୀର ନିର୍ଦ୍ଦେଶ ନ ମାନି ଦୌଡ଼ିବାରେ ଲାଗିଥିଲେ ଏଣେ ତେଣେ··· ।

ତଥାପି···

ସ୍ୱେଚ୍ଛାଚାରିଣୀ ସାଗରିକା···

ଟେଥିସ୍ କୋପ୍ ଧରି ମଣିଷର ହୃଦସ୍ପନ୍ଦନ ମାପେ ନାହିଁ, ମାପେ ପ୍ରାଣବନ୍ତର ପ୍ରବଳ ଆବେଗ ।

ଡାକ୍ତରୀ ଜୀବନରେ ମଧ୍ୟ ସ୍ନେହ ପ୍ରେମର ଦୌରାତ୍ମ୍ୟ ।

ବେଳକୁବେଳ କାତର ତାରେ ଝଙ୍କି ପଡ଼ିଲି···ଏବେ ତାରକା ଚିହ୍ନ ଦେଇ ମୋ ଜୀବନର ପାଦଟିକା ପ୍ରଦାନ କରେ ମୁଁ··· ★ ।

ବେଶ୍, ଏତିକରୁ ସବୁ ସ୍ପଷ୍ଟ, ମୁଁ ସାଗରିକା ସହିତ ଯୁଦ୍ଧ କରୁଥିଲି ପୌରୁଷ ପାଇଁ ।

ସାଗରିକା । ଲେଡ଼ି ଡାକ୍ତର ସାଗରିକା, ଅନେକ ପୁରୁଷଙ୍କ ଗ୍ରନ୍ଥିରେ ମାନବିକତାର ଅବହେଳିତା ଆର୍ତ୍ତନାଦକୁ ଶୁଣିଛି । କିନ୍ତୁ···ଆଜ ସେ ବନ୍ଧୀର ହୋଇ ଉଠିଛି ମୋର ଅତ୍ୟାଚାରରେ । ତେଣୁ କାନ୍ଦିବାକୁ ଉପକ୍ରମ କରୁଛି ଆହତ ଆବେଗରେ, ସ୍ୱର୍ଗର ନନ୍ଦନ ବନରେ ସେ ଦେଖୁଛି ବ୍ୟଭିଚାରୀ ମଣିଷର ସ୍ୱାର୍ଥ ଲାଗି ସଂଗ୍ରାମ ।

କିନ୍ତୁ···

ନାଁ···ମୁଁ ବୁଝି ପାରୁ ନ ଥିଲି ସାଗରିକାକୁ ।

---

★ କିନ୍ତୁ ପ୍ରାଣ ଅସହ୍ୟ ଯନ୍ତ୍ରଣାରେ କମ୍ପି କମ୍ପି ଉଠିଲା । ମନର ସୂକ୍ଷ୍ମତନ୍ତ୍ରୀ ବାଜିପି ଉଠୁଥିଲା ହୃତୋତ୍ପାଦର ବେଦନାରେ । ମୁଁ ପୁରୁଷ, ଏ ପରାଜୟକୁ ସ୍ୱୀକାର କରି ନାଅନ୍ତୁ କେମିତି ? ତେଣୁ ପ୍ରତିଶୋଧର ଚୂଡ଼ାନ୍ତ ନଷ୍ଟିରେ ଝାମ୍ପ ମାରିଲି ସାଗରିକା ଉପରକୁ । ଡରି ଡରି ଆତଙ୍କିତ ହୋଇ ଉଠୁଥିଲା ସାଗରିକା । ନିର୍ଦ୍ଦୟ ହୋଇ ମୁଁ ଘାଉଲା କରିବାକୁ ଚେଷ୍ଟା କରୁଥିଲି ବାର ବାର ।

ସେ ନୀରବ ହୋଇ ଯାଇଛି ଅସମ୍ଭବ ଭାବେ ।

ସମାସାନ୍ତ ଶବ୍ଦର ଏକ ସୁନ୍ଦର ବ୍ୟାସବାକ୍ୟ ।
ମୁଁ ଓ ସାଗରିକା, ନେଗେଟିଭ୍ ··ପଜେଟିଭ୍

ବେଳକୁ ବେଳ ଅତ୍ୟାଚାର ବୃଦ୍ଧି ପାଇବାରେ ଲାଗିଲା । ଆଜି ଠିଆ ହୋଇ ପାରିଲାନି ସାଗରିକା । ହୁଏତ ରକ୍ତାକ୍ତ କ୍ଷତ ବିକ୍ଷତ ହୋଇ ଉଠିଛି ତା'ର ନୀଳ କୋମଳ ଚକ୍ଷୁର ନିଷ୍ପାପ ଦ୍ୟୋତି ।

ବିକଳ ହୋଇ ଆର୍ତ୍ତନାଦ କରିବାକୁ ଚେଷ୍ଟା କରୁଛି ସେ···

ଧୀରେ ଧୀରେ ତଳ ପଡ଼ୁଛି ସାଗରିକା ।

ଡାକ୍ତରୀ ଜୀବନର ଘୋର ପରାଜୟ···

ବଜ୍ରହସ୍ତରେ ମୁଁ ସାଗରିକାର ଗ୍ରୀବା ଧାରଣ କରି ଆକର୍ଷଣ କରିବାରେ ଲାଗିଛି ପାଶବିକ ବୁଭୁକ୍ଷାରେ···

କାନ୍ଦି ଉଠୁଛି ସାଗରିକା ।

ଘନୀଭୂତ ହେଉଛି ଲୋଚନର ଉତ୍ତପ୍ତ କାରୁଣ୍ୟ···

ପରାଜିତ···

ସମ୍ପୂର୍ଣ୍ଣ ପରାଜିତ ସାଗରିକା···

ବାଲ୍ୟ ସଙ୍ଗିନୀ ସାଗରିକା ଉପରେ ଏଇ ମୋର ପ୍ରଥମ ମଦମତ୍ତ ଅତ୍ୟାଚାର ।

ପୁରୁଷର ନିଷ୍ଠୁର ଅତ୍ୟାଚାରରେ ଉଦ୍ଭାସିତ ହୁଏ ନାରୀତ୍ୱର ଆବେଗମୟୀ ମୂର୍ତ୍ତି···

କିନ୍ତୁ···

ଆଜି ଜୀବନରେ ପରାଜୟର ଗ୍ଲାନିରେ ନିଜକୁ ଧିକ୍କାର କରୁଛି ସେ । ଆଜି ଠିଆ ହୋଇ ପାରିବନି ।

ଧୀରେ ଧୀରେ ତଳ ପଡ଼ିଲା ସାଗରିକା ।

ଉଦ୍ଭାସିତ ହୋଇ ତା'ର ଜୁଡ଼ାରୁ ମୁଁ ଖୋଜି ବସିଲି ସେ ଫରୁଆ···।

ନାଁ···, ଫରୁଆ କାହିଁ ? କିଛି ନାହିଁ ।

ସାଗରିକାର କେଶରାଶିକୁ ଆକର୍ଷଣ କରିବାରେ ଲାଗିଲି ମୁଁ । ଆମ୍ଭ ବିଦାୟୀ ଖୋଜି ବସିଲି ସେ ଫରୁଆ···

କିନ୍ତୁ···ଏ କ'ଣ ?

କିଛି ନାହିଁ । ସାଗରିକାର କେଶ ଭିତରେ କେବଳ ଅନ୍ଧକାର···ନିବିଡ଼ ଅନ୍ଧକାର······

ଆହତ ହୋଇ ସେହି ଅନ୍ଧକାରମୟ ଜୁଡ଼ା ଭିତରୁ ଖସିପଡ଼ିଲା ଗୋଟିଏ ଟ୍ୟାସେଲ ଓ ଜୁଡ଼ା ବନ୍ଧା ରିଂ···

ତେବେ···

ତେବେ···

ତେବେ କ'ଣ ମନ୍ତ୍ର ବଳରେ ଫରୁଆଟିକୁ ହରଣଚାଳ କରିଛି ସାଗରିକା ?

ନାଁ······

ନାଁ······

ସେହି ଷ୍ଟ୍ରେଟ ରିଂ ପଛରୁ ଯେ ମୁଁ ଆବିଷ୍କାର କରୁଛି ମୋତେ···

ମୋର ଏକ କ୍ଷୁଦ୍ର ଫଳାପମୟ ଚିଠି···

ତେବେ କ'ଣ ?

ମୃତ୍ୟୁର ବେଦନା ଭୋଗ କରୁ କରୁ ମଧ୍ୟ ହସି-ଉଠିଲା ସାଗରିକା । ଅଭିଯୋଗ କଲାଭଳି କହିଲା—"ଏବେ ସେ ଫରୁଆ ପାଇଲ ତ ? ଆବିଷ୍କାର କଲ ତ' ବନ୍ଦୀ ରାଜକୁମାରକୁ ?"

"ତୁମେ···ତୁମେ ସାଗରିକା !" ପାଟିରେ କଥା ଅଟକିଗଲା ମୋର ।

"ହଁ ମୁଁ ସାଗରିକା । ତୁମରି ପ୍ରତୀକ୍ଷାରେ ରହି ରହି ଆବୃତ୍ତି କରୁଥିଲି ତୁମର ଏକ ଫଳାପମୟ ଚିଠି । ସେଇଟିକୁ ଲୁଚାଇ ରଖିଥିଲି ଏଇ ଜୁଡ଼ା ଦେହରେ । କାହିଁକି ଜାଣ ?"

ଚକିତ ହୋଇ ଚାହିଁ ରହିଲି ମୁଁ

ମୋତେ ଅପେକ୍ଷା ନ କରି ଚିଠିଟିର ପ୍ରଥମ ଧାଡ଼ିଟି ଆବୃତ୍ତି କଲା ସାଗରିକା···"ଆଜି କେତେ ଦିନ ? ଜୀବନ ଯେ କ୍ଷଣିକ, ଡାକ୍ତରୀ ଜୀବନରେ କ'ଣ ଯୌବନ ଆସେ ନାହିଁ···?"

ମୋର ଭୂମିକାର ଅଭିନୟ କରୁଥିଲା ସାଗରିକା···

ସାଗରିକାର ଗ୍ରୀବା ଦେଶରୁ ହାତ ଖସାଇ ପରାଜିତ ସୈନିକ ଭଳି ଆତ୍ମସମର୍ପଣ କଲି ମୁଁ ।

ହସୁଥିଲା ସାଗରିକା···ବିକଳତାରେ ।

(ନିର୍ଜନ ମୁହୂର୍ତ୍ତରେ ନିଜକୁ ଆବିଷ୍କାର କରିବାର ଗୌରବରୁ ସାଗରିକା ବଞ୍ଚିତା ହୁଅନ୍ତା କିପରି ?)

# ॥ ସଭ୍ୟତାର ଗ୍ରାସ ॥

## ସୁରେନ୍ଦ୍ର ମହାନ୍ତି

[ ଓଡ଼ିଶାର ସୁପରିଚିତ ଓ ସୁପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି । ଏକାଧାରରେ ସେ ଜଣେ ଗାଳ୍ପିକ, ଔପନ୍ୟାସିକ ଓ ସମାଲୋଚକ । ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ତାଙ୍କ ରଚିତ ବିଭିନ୍ନ ଉନ୍ନତ ଲେଖା ଗୁଡ଼ିକ ସମୟ ବିଶେଷରେ ପ୍ରକାଶିତ ହୁଏ । ବିଶେଷ କରି ଓଡ଼ିଆ ସମ୍ବାଦ ସାହିତ୍ୟକୁ ମଧ୍ୟ ତାଙ୍କର ଅସୀମ ଦାନ ସ୍ୱୀକାର୍ଯ୍ୟ । ତାଙ୍କ ରଚିତ ପୁସ୍ତକ ଗୁଡ଼ିକ ଘରେ ଘରେ ପଠିତ ତଥା ଉଚ୍ଚ ପ୍ରଶଂସିତ ବୋଲି କୁହାଯାଇ ପାରେ । ବିଭିନ୍ନ ପୁସ୍ତକ ମଧ୍ୟରୁ ସଫଳ ଗଳ୍ପ କୃତି କୃଷ୍ଣଚୂଡ଼ା, ଯୁଗାନ୍ତକାରୀ ଉପନ୍ୟାସ ଅନ୍ଧ ଦିଗନ୍ତ, ନୀଳ ଶୈଳ । କ୍ରାନ୍ତିକାରୀ ସମାଲୋଚନା ପୁସ୍ତକ ଓଡ଼ିଆ ସାହିତ୍ୟର ଆଦି ପର୍ବ ଓ ମଧ୍ୟପର୍ବ ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ସୁରେନ୍ଦ୍ର ରଚନା, ଫକୀର ମୋହନ ସମୀକ୍ଷା ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିବାରେ ସକ୍ଷମ ହୋଇ ପାରିଛି । ଶ୍ରୀଯୁକ୍ତ ମହାନ୍ତି ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସ୍ୱୀକୃତ ହୋଇଛନ୍ତି । ଆଜୀବନ ସାଧନା ଫଳରେ ଓଡ଼ିଆ ଗଦ୍ୟ ସାହିତ୍ୟର ସେ ଏକ ନୂତନ ଯୁଗ ସୃଷ୍ଟି କରି ଆଙ୍ଗିକ ଓ ଆତ୍ମିକ ପ୍ରକାଶରେ ସ୍ୱୀୟ ଗଦ୍ୟ ସାମ୍ରାଜ୍ୟର ଅନ୍ୟତମ ଦ୍ରଷ୍ଟା ହେବାର ଗୌରବ ଅର୍ଜନ କରିଛନ୍ତି । ସଂ. ବନଫୁଲ ]

( ୧ )

ଫିରିଙ୍କପାଣି ଘଞ୍ଚ ମାଳ ମୁଲକରେ ଏକ କନ୍ଧଗାଁ । ଏହାର "ଜାକେଟ୍-ସ୍ତାନ୍" ତୋଠା ତଳକୁ ପାହାଡ଼ୀ ଝୋଲା ହଠାତ୍ ଦକ୍ଷିଣକୁ ଅଣ୍ଟା ନଇଁକେଇ ବାଙ୍କି ଯାଇଛି; ଗୋଟାଏ ଝୁପ୍‌ଝୁପ୍‌କିଆ ଜଙ୍ଗଲ ଆଢ଼େ ।

"ବନଲତା—ସେବାଶ୍ରମ"ର ଆଶ୍ରମ-ବାସିନୀ କନ୍ଧୁଣୀ ଝିଅ ପଦୁଆଁର ଲାସ୍ ସେଇ ଝୋଲା-ମୋଡ଼ରେ ସୁଅ ଉପରକୁ ନଇଁ ପଡ଼ିଥିବା ଗୋଟାଏ ବେଣାବୁଦା ତଳେ ପାଣିସୁଅରେ ଠାଏ ଅଟକି ଲାଗିଛି । ପଦୁଆଁର ଲମ୍ବା ବାଳ ସବୁ ପାଣି ସୁଅରେ ଭାସୁଛି ଶିଉଳିଲତା ପରି । ଅଣ୍ଟା ତଳୁ ଲେଙ୍ଗୁଟିଟା ଫିଟିଯାଇଛି···ଗୁଣ୍ଡିର ସ୍ତନ ଦୁଇଟା ପାଣି ଉପର୍‌କୁ ଭାସୁଛି ପାଣିଶିଉଳି ଫୁଲର କଢ଼ି ପରି ! ବାଁ ଗୁଣ୍ଡିର ସ୍ତନ ତଳେ ଗୋଟାଏ ଗହ୍ୱାଡ଼ା । ଷଡ଼···ଖାଷ୍ଣ ଦାନ୍ତରେ ଫୁଟାଇ ଗୋଟାଏ ଜାନୁଆର ଯେପରି ସେଇଠୁ ସବୁ ରକ୍ତ ଶୋଷି ନେଇଛି । ତା' ପରେ ତାକୁ ଫିଙ୍ଗି ଦେଇଛି ଏଇ ଝୋଲା ସୁଅକୁ । ଲାସ୍‌ଟା ସେଇଠୁ ଭାସି ଭାସି ଲାଗିଛି ଆସି ଏଇ ମୋଡ଼ରେ ।

ବୁଢ଼ୁ ଜାନି ସେଇ ଲାସ୍ ଆଡ଼କୁ ଚାହିଁ ମନକୁ ମନ କହିଲା "···କୋଉ ମାଉଲୀ ଅପଦେବତାର ଆଖି ପଡ଼ିଲା ଟୋକୀଟା ଉପରେ ! ଦାନ୍ତ ଫୁଟାଇ ରକ୍ତ ଶୋଷି ନେଲା !"

ବୁଢ଼ୁଜାନି ତାପରେ ବଡ଼ ବଡ଼ ହୋଇ ମନ୍ତ୍ର ବୋଲିଲା, ମାଉଲୀର କୋପଦୃଷ୍ଟିରୁ ନିଜ ଦେହ ଜଗିବା ପାଇଁ । ଫିରିଙ୍କପାଣି ଗାଁର କନ୍ଧ-ଗୁଣିଆଁ, ବୁଢ଼ୁଜାନି !

ପାହାଡ଼ୀ ଝୋଲା ଯେଉଁଠି ବାଙ୍କି ଯାଇଛି, ସେଇ ମୋଡ଼ରେ ଗୋଟାଏ ମଦଭାଟୀ···ମଦଭାଟୀ ଆଜି କାଲି ଶୂନ୍‌ଶାନ୍ । ଭାଟୀ ଠିକାଦାର ଧନସାଓ ଭାଟୀ ପାଖରେ ସେଇ ମହାଲମ୍ବ ଗଛ ମୂଳେ ଗୋଟାଏ

ଖଟିଆ ଉପରେ ବସି ଚିଲମରୁ ଗଞ୍ଜେଇ ଟାଣେ, କନ୍ଧୁଣୀମାନଙ୍କ ଆଡ଼କୁ ନଜର ପକାଏ, ଥଟ୍ଟା ପରିହାସ ହୁଏ ସୁବିଧା ପାଇଲେ । ଆଜି କିନ୍ତୁ ସେ ମଧ୍ୟ ଆଖିରେ ପଡ଼ୁନାହିଁ ।

ଫିରିକିପାଣି ଗାଁ ଦାଣ୍ଡରେ ଦିନ ଦିପହରଟାରେ ଓହ୍ଲାଇ ଆସିଛି ଯେପରି ଗୋଟାଏ ନିଝୁମ ଅଧରାତି !

'ବନଲତା-ସେବାଶ୍ରମ'ର ସୁପରିଟେଣ୍ଡେଣ୍ଟ ଦେବାନନ୍ଦ ଆଶଙ୍କା କରନ୍ତି ଏ ମୃତ୍ୟୁ ନୁହେଁ—ଆତ୍ମହତ୍ୟା ! କିନ୍ତୁ କୁସୁମପଙ୍ଗା ସରପଞ୍ଚ ଦଶମାଇଲ ଦୂରରେ ଭାଉଲଟର ଥାନା ଦାରୋଗାଙ୍କ ପାଖକୁ ପାଣ ଚଉକିଆଙ୍କୁ ପଠାଇ ସାରିଛନ୍ତି···ନାରୀ ଧର୍ଷଣ ଆଉ ହତ୍ୟାର ମାମଲା ଖଞ୍ଜି । ତାଙ୍କର ଅଭିଯୋଗ ଆଶ୍ରମର ଟୋକା ଦାଢ଼ିଆ ମାଷ୍ଟର କଲ୍ୟାଣ ଦାସ ବିରୁଦ୍ଧରେ; କୁସୁମୀର ଆତ୍ମହତ୍ୟାରେ ଜଡ଼ିତ କରି !

ଲାସ୍‌କୁ ହେଉଟକଦେକେ ଗୋଟାଏ ଗଛମୂଳେ ଜଗି ବସିଛି ବୁଦୁଜାନୀ ଗୁଣିଆ···କାଳେ ହେଟା ଟାଣିନେବ; ନୋହିଲେ ଶାଗୁଣା ପଲ ସଫା କରିଦେବେ ଲାସଟାକୁ । କିନ୍ତୁ ହେଟାର ଦେଖା ନାହିଁ ! ଶାଗୁଣାମାନେ ସୁଦ୍ଧା ନାହାନ୍ତି ! ନଗ୍ନଟିଆ ଖରାବେଳେ ପଦୁଆଁର ଲାସ୍ ପାଣି ସୁଅରେ ଚିତ୍ତ ହୋଇ ପହଁରୁଛି, ଜାହାଣୀର ସେଇ ମାଛ କନ୍ୟା ପରି !

ସେ ଆଉ ଆଖି ଫେରାଇ ବୁଦୁଜାନୀ ଚାହିଁଲା, ଗଡ଼ାଣି ଉପରେ ଫିରିକିପାଣି ଗାଁ ଆଡ଼କୁ ।

ପାହାଡ଼ୀ-ଝୋଲ୍ କଡ଼େକଡ଼େ ଗ୍ରେଟିଆ ପାହାଡ଼ । ଘାଟୀର ଉଠାଣି ଉପରେ "ବନଲତା-ସେବାଶ୍ରମ"ର ଖପରଲି-ଛୁଉଣୀ ଛପର ସେପାଖକୁ ଗୋଟାଏ ପାହାଡ଼ୀ ମୁଣ୍ଡିଆ ଉପରେ କାଥଲିକ୍ ମିସନ ଗୀର୍ଜାର କ୍ରସ୍ ପଛକୁ ସବନଜାର ପର୍ଦ୍ଦା ପରି ଢଞ୍ଚ ଶ ଲବଣି; ଟେଣିକ ପାହାଡ଼ ତଳରେ ଝୁମ୍ପୁରିଆ କେନ୍ଦୁ ଜଙ୍ଗଲ···ତା ମଝିରେ ମଝିରେ ବାବନାଭୂତ ପରି ଗୋଟାଏ ଗୋଟାଏ ନଗ୍ନଟିଆ ସଳପଗଛ ! ଗଡ଼ାଣିରେ ଝୋଲ୍ କଡ଼େ କଡ଼େ ଗ୍ରେଟିଆ କନ୍ଧବସ୍ତୀଟିଏ··· ଗୋଟାଏ ଗୋଟାଏ ମାଟି ଗୋବର-ଲିପା ଅଗଣା ଚାରିପଟକୁ ଘେରି ଶିମ୍ବ ଆଉ ନାଉଲତାର ଛଦଣି ମଦଣି ଭିତରେ ଗେରୁମାଟିଲିପା କେତେଟା ନୁଆଣିଆଁ ଚାଳଘର ! ପଲ ପଲ ଘୁଷୁରି, କେତେଟା ହାଡ଼ୁଆ ଗାଈ ଗୋରୁ, କଦବା କ୍ୱଚିତ୍ ଗୋଟାଏ ଦୁଇଟା କୁକୁଡ଼ା, ପଲେ ଲଙ୍ଗଳା ଚୁଆ, ପଣସଗଛ ମାନଙ୍କରେ ବିଲମ୍ବିତ ସ୍ତନ ପରି ଗଣ୍ଡା ଗଣ୍ଡା ପଣସ···ଆଉ ଦୁଆର ମୁହଁରେ ଅଧାମେଲା କବାଟ ଫାଙ୍କରେ ବେଳେ ବେଳେ ଉଙ୍କିମାରେ ସେହିପରି ଆବ୍ରୁହୀନ ପୁନରାବୃତ୍ତି ! ପଣସ ଗଛ ପରି ବିକାରହୀନ ଦେହ, ସଂକୋଚହୀନ ଆଖି ଆପଣା ଆପଣା ଭିତରେ ବେଳେ ବେଳେ କେଉଁ କଥାର ଲଥାରୁ ଖିଲିଖିଲି ହସ—ସେଇ ପାହାଡ଼ୀ ଝୋଲର ଝିଲିମିଲି ସୁଅ ପରି !

ଆଜି କିନ୍ତୁ ପୁଲିସ୍-ଦାରୋଗା ଭୟରେ ସବୁଆଡ଼େ ଶୁନଶାନ୍ ! ଘରେ ଘରେ ତାଟି କବାଟ ! ପୁରୁଷମାନେ ପଳାଇଛନ୍ତି ଜଙ୍ଗଲ ଭିତରକୁ । ସ୍ତ୍ରୀ ମାନେ ମଧ୍ୟ ! ଖାଲି ଆବର୍ଜନାକୁଡ଼ ମାନଙ୍କ ଚାରିପଟେ ଘୁଷୁରିଗୁଡ଼ା କେବଳ ଜନବସତିର ସଙ୍କେତ ବହନର ଦାୟିତ୍ୱ ନେଇ ଯେପରି ସଁ-ସାଁ ହୋଇ ଘୂରି ବୁଲୁଛନ୍ତି ।

ଗାଁମୁଣ୍ଡ ଆମ୍ବ-ତେନ୍ତୁଳୀ ତୋଟା ଭିତରେ, ଯୋଉ ତେନ୍ତୁଳୀ ଗଛ ମଥାନରେ—କେତେ ବର୍ଷର ଝଡ଼, ପବନ, ଖରାବର୍ଷା ଭିତରେ ଛିଣ୍ଡି, ଛିଣ୍ଡି ଖଣ୍ଡେ ଧଳା ପତାକାର ଅବଶେଷ ତଥାପି ଫର ଫର ଉଡ଼ୁଥିଲା, ତାରି ତଳେ "ଜାନକେଶ୍ୱସ୍ଥାନ୍" ! ଟାନା ପେନ୍ଥୁ, ସୋଥି ପେନ୍ଥୁ ପ୍ରଭୃତି କନ୍ଧ ଦେବାଦେବୀମାନେ ଖଣ୍ଡେ ଖଣ୍ଡେ ଶିଳାରୂପରେ ପଡ଼ି ଢୁଲାଉଛନ୍ତି ସେଠି ! ଅଶ୍ୱତରେ

ଅଗଣିତ ମେହୁଆ-ବଲ୍ଲୀର ଦୀର୍ଘଶ୍ୱାସ ତଥାପି ଯେପରି କେବେ କେବେ ମର୍ମରିତ ହୋଇଉଠେ, ସେହି ଆମ୍ବ ନେଳୁଳି ତୋଟାର ଗୁମ୍ଫାଘନ ଶାଖା ମାନଙ୍କରେ । ଚୈତ୍ର ପରବ ଓ ଅନ୍ୟ ପର୍ବ ପର୍ବାଣୀ ମାନଙ୍କରେ ଏହାର ମୌନ, ସ୍ଥବିର, ବିୟୋଗାନ୍ତ ଗୁମ୍ଫା, ସନ୍ତାପ, ମହୁଆ, ସଙ୍ଗୀତ, ନୃତ୍ୟ ଆଉ ଢୋଲମହୁରୀର ମାତାଲିମିରେ ଯୌବନ-ଚଞ୍ଚଳ ହୋଇଉଠେ । ମହୁରିଆର ତାଳମାନ ସଙ୍ଗରେ ତାଳ ରଖି ହାତରେ ହାତ ଛନ୍ଦି କନ୍ଧୁଣୀ ଡୋମ୍ବୀ ମାନଙ୍କର ଅଣ୍ଟାରେ ଲହର ··ଚୈତାଳୀ ପବନରେ ଗଜାଶାଳ ସବୁ ଦୋହଲିବା ପରି, ଆଗକୁ ଆଉ ପଛକୁ, ପଛକୁ ଆଉ ଆଗକୁ; କେତେବେଳେ ପାହାଡ଼ୀ ଝୋଲର ସୁଅ ପରି, ଆଉ କେତେବେଳେ ସାପର ଗତି ପରି ଅଙ୍କେଇବଙ୍କେଇ । ରଖି ରଖି ଅନାବୃତ ସ୍ତନର ଅକୁଣ୍ଠିତ ହଲ୍ଲୀଷକ !···ମୂର୍ତ୍ତିମନ୍ତ ପ୍ରକୃତିର ନିଷ୍ପାପ ଯୌବନ-ବିଳାସ ! ଜୀବନ-ଦେବତାର ଆନନ୍ଦମୟ ଦାନ ରୂପେ ଦେହର ମାଂସପେଶୀ ଓ ସ୍ତନ ପାଇଁ ସେମାନେ ଯେପରି ଗର୍ବିତା···ତଥାକଥିତ ପାପପୁଣ୍ୟର ବିଚାରବୋଧରେ ଶଙ୍କିତା, ଦଂଶିତା ନୁହନ୍ତି !

ସଭ୍ୟତା-ଉପେକ୍ଷିତ ଏଇ ଫିରିଙ୍ଗପାଣି ଗାଁ··· ଶାଳବନ ଆଉ ଶିଆଳିଲଟା ଘେରା ଏହାର ଗୁମ୍ଫା-ନିବିଡ଼ ଜଗତରେ, ସଭ୍ୟତା, ସଂସ୍କୃତି ଓ ତାହାର ଶତ ବିକୃତିର ବିସ୍ତାର ପାଇଁ ଏହି ଗ୍ରାମକୁ ଅନେକ କାଳ ପୂର୍ବେ ପ୍ରଥମେ ଆସିଥିଲେ ଏକ ବାପଟିଷ୍ଟ-ମିସନ୍‌ର ପାଦ୍ରୀ; ତାଙ୍କ ପରେ ଆନ୍‌ଥ୍ରପୋଲଜିଷ୍ଟ । ତା'ପରେ ଆସିଲେ ମଦଭାଟି ଆଉ ଶୁଣ୍ଡି । ତା'ପରେ ଗଢ଼ିଲେ କୁମୁଟି ମହାଜନ, କନ୍ଧର ଫସଲ ବନ୍ଧାରଖି ତାକୁ ମଦଭାଟିର ମାସୁଲ ଯୋଗାଇବା ପାଇଁ । ତା ପରେ ସଭ୍ୟତାର ସେଇ ପଟୁଆରରେ ଗୋଟି ଗୋଟି କରି ଗଢ଼ିଲେ ଫରେଷ୍ଟର୍, ପୁଲିସ୍, ଅବକାରୀ ଓ ସବା ଶେଷରେ ଆସିଲେ "ବନଲତା ସେବାଶ୍ରମ"ର ଆଗ୍ରହୀ ଦେବାନନ୍ଦ, କନ୍ଧମାନଙ୍କର "ଚରିତ୍ର ଶୁଦ୍ଧି" ପାଇଁ !

ପ୍ରୌଢ଼ା, ବୃଦ୍ଧାମାନେ ଅଣ୍ଟା ଉପରକୁ ଦେହ ଅନାବୃତ ରଖିଲେ ଦେବାନନ୍ଦଙ୍କର ଆପତ୍ତି ନଥିଲା । ମାତ୍ର ଯୁବତୀ ଧାଙ୍ଗଡ଼ୀମାନେ ସ୍ତନ ମୁକୁଳା କରି ଅଣ୍ଟା ତଳେ କେବଳ "ହପେମ୍" (ଝିଅମାନଙ୍କର କୌପୁନୀ) ଉପରେ ଅଣଓସାରିଆ ରଙ୍ଗୀନ୍ କପଡ଼ା ଖଣ୍ଡେ ଖଣ୍ଡେ ଗୁଡ଼ାଇ ବାହାରକୁ ବାହାରିବା ଯେ ଅକଥନୀୟ ଅଶ୍ଳୀଳତା, ଅଭାବନୀୟ ବର୍ବରତା, ସେଥିରେ ଦେବା - ନନ୍ଦଙ୍କର ସନ୍ଦେହ ନ ଥିଲା !··· ପୁଣି କନ୍ଧଝିଅ ମାନଙ୍କର ସେଇ ସବୁ ନାଚ···ହାତକୁ ହାତ ଛନ୍ଦି, ଆଗକୁ ଆଉ ପଛକୁ, ପଛକୁ ଆଉ ଆଗକୁ ଦେହର ଦୋଳା ଦୋଳି ! ଦେବାନନ୍ଦ ତାରି ମଧ୍ୟରେ ଦେଖିଥାନ୍ତି ଯେପରି ଯୌନିକ ମୈଥୁନର ବ୍ୟଞ୍ଜନା ! ଶୁଚି ଓ ଅଶୁଚି ଚରିତ୍ରବତ୍ତା ଓ ଚରିତ୍ରହୀନତା ପାପ ଓ ପୁଣ୍ୟର ଊର୍ଦ୍ଧ୍ୱରେ, ପ୍ରକୃତିର ନିଷ୍ପାପ ସନ୍ତାନ ମାନଙ୍କର ଏ ନୃତ୍ୟ ଦେବାନନ୍ଦଙ୍କ ଦୃଷ୍ଟିରେ ଜୀବନ-ଉତ୍ସବ ନ ଥିଲା । ତାଙ୍କ ଦୃଷ୍ଟିରୁ ଏହା ଥିଲା ଅନାବୃତ ସ୍ତନ, ଜାନୁ ଓ ଜଘନର ଅଶ୍ଳୀଳ-ସ୍ଫୁରଣ । ଏକ ବିକୃତି ! ଏହି ଆରଣ୍ୟ-ସମାଜକୁ ସେହି ବିକୃତିରୁ ଉଦ୍ଧାର କରିବାର ପୁଣ୍ୟ ସଂକଳ୍ପ ଧରି ଆଗ୍ରହୀ ଦେବାନନ୍ଦ ଏଠାରେ ସ୍ଥାପନ କରିଥିଲେ "ବନଲତା-ସେବାଶ୍ରମ" । କିନ୍ତୁ ବିକୃତ କିଏ, ଦେବାନନ୍ଦ ନାଁ ଏ କନ୍ଧ-ସମାଜ ? ତାହା ଅବଶ୍ୟ ଏକ ବିବାଦମାନ ସମସ୍ୟା !

ଦେବାନନ୍ଦଙ୍କ ଯଥେଷ୍ଟ ପୂର୍ବରୁ ବାପଟିଷ୍ଟ-ମିସନର ଯେଉଁ ପ୍ରଥମ ପାଦ୍ରୀ ଜଣକ ଏଠାକୁ ଆସିଥିଲେ ତାଙ୍କର ଆକ୍ରମଣ କିନ୍ତୁ ଉଦ୍ଦିଷ୍ଟ ଥିଲା, "ଡାଙ୍ଗନ୍-ଇଡ଼ୁ" ଧାଙ୍ଗଡ଼ା—ଧାଙ୍ଗଡ଼ୀମାନଙ୍କର ସେଇସବୁ କୋଠଘର ଉପରେ ! ପାଦ୍ରୀଙ୍କ ଦୃଷ୍ଟିରେ ଏଇ "ଡାଙ୍ଗନ୍-ଇଡ଼ୁ"

ସର୍ବ ଥିଲା, ପାପର ଆଡ଼୍ଡ଼ା··· ସେତାନ୍‌ର ମେହିଫିଲ୍ !

କନ୍ଧ-ଦୃଷ୍ଟିରେ ଡାଙ୍ଗନ୍-ଇଡ୍ ଥିଲା କନ୍ଧ ଅବାରିତ, ଯୌବନର ମୁଗ୍ଧ ତୀର୍ଥ ! ଭିନେଗାଁର ଧାଙ୍ଗଡ଼ାମାନେ ଜହ୍ନ ଆଲୁଅରେ ଡଙ୍ଗର ପାହାଡ଼ ଡେଇଁ କନ୍ଧ—ବଇଁଶୀ ଫୁଙ୍କିଫୁଙ୍କି ଏ ଗାଁକୁ ଆସିଲେ ଡାଙ୍ଗନ୍-ଇଡ୍‌ରେ ମାତିଉଠେ, ମିଳନର ମଉସୁମ ! ଧାଙ୍ଗଡ଼ା ଧାଙ୍ଗ୍ଡ଼ୀଙ୍କ ଭିତରେ ମନ ଦେବା ନେବାର ସୌଦାଗରୀ ନ ଥାଏ ଏଠି, ଲୌକିକତାର ଶଠତାପୂର୍ଣ୍ଣ ଅଭିନୟ ନ ଥାଏ, ପ୍ରେମ ନାମରେ ନିରୁଦ୍ଧ ଯୌନଲାଳସାର ବିକୃତି ନ ଥାଏ, ସମାଜ-ବନ୍ଧନର ଦାୟିତ୍ୱ ନ ଥାଏ···ଏଠି କେବଳ ଅନାବୃତ ଆଦିମ ଦେହର ମହୁଆରଙ୍ଗା ମେହିଫିଲ୍ ! ସମାଜ—ରକ୍ଷା ପାଇଁ ଏ ସମାଜରେ ବିବାହ···ମନର କ୍ଷୁଧା ମେଣ୍ଟାଇବା ପାଇଁ ନୁହେଁ ! ମନର ମାସୁଲ୍ ଏଠାରେ ଅଲଗା । ତାହାର ନୌକାଘାଟ···ଡାଙ୍ଗନ୍-ଇଡ୍ !

ଶେଷ ଯୌବନର କ୍ଳାନ୍ତ-ବିହଙ୍ଗ ଯେଉଁଦିନ ବିଶ୍ରାମ ପାଇଁ ଖୋଜେ ନିଭୃତ କୁଳାୟ, ସେହିଦିନ ଆସେ କେବଳ ବିବାହର ଚିନ୍ତା; ପୈତୃକ ଘରକୁ ଆଦର ରହିବାର ଭାବନା ! ଦାମ୍ପତ୍ୟ ବନ୍ଧନରେ ଆବଦ୍ଧ ସ୍ୱାମୀସ୍ତ୍ରୀର ସଂସାର ଏଠାରେ କେବଳ, କନ୍ଧର ବଂଶବୃଦ୍ଧି ପାଇଁ···ପାରସ୍ପରିକ ସତତ୍ୱ ଓ ସତୀତ୍ୱ ଧର୍ମରେ ଶୁଦ୍ଧପୂତ ଆଶ୍ରମ; ବ୍ୟତିକ୍ରମ ନାହିଁ, ପରକୀୟ ପରକୀୟା ନାହିଁ ! ସେପରି ବ୍ୟତିକ୍ରମ ସ୍ଖଳନ, ସ୍ୱେଚ୍ଛା-ଚାରକୁ କନ୍ଧ-ସମାଜ ମଧ୍ୟ କ୍ଷମା ଦିଏନାହିଁ ଏଠି, କିନ୍ତୁ ଏ ବନ୍ଧନରେ ଆବଦ୍ଧ ହେବା ପୂର୍ବରୁ, ଡାଙ୍ଗନ୍-ଇଡ୍‌ର ଘୁରିକାନ୍ଥ ମଧ୍ୟରେ, ଦିନ ଦିନ କାଠନିଆଁ ଘୁରିପଟେ ଉଲଙ୍ଗ ଦେହର ଅବାରିତ ଜାଗର !

ସନ୍ଧ୍ୟା ହେଲେ ସବୁ ବାଟ ସେଇ ଗୋଟାଏ ଆଡ଼େ··· "ଡାଙ୍ଗନ-ଇଡ୍" ! ଭିନ୍ନେ ଗାଁର ଧାଙ୍ଗଡ଼ା ମାନେ ସେଠାକୁ ଆସନ୍ତି କନ୍ଧ-ବଇଁଶୀ ଫୁଙ୍କି ! ତାର ପ୍ରତିଧ୍ୱନି ଉଠେ, ଏ ଗାଁରେ ଧାଙ୍ଗଡ଼ୀ ମାନଙ୍କର ଖିଲ ଖିଲ ହସ ଆଉ ଗୀତର ଲହରରେ !

ଶାଳବଣଘେରା ସାଉ କ୍ରମେ ନିବିଡ଼ ହୁଏ ! ଧାଙ୍ଗଡ଼ା—ଧାଙ୍ଗଡ଼ୀଙ୍କ ମଧ୍ୟରେ ମୋଡ଼ିହାରା ଧୂଆଁ ପତ୍ର ଆଉ ମନବଣ୍ଟାବଣ୍ଟିର ପର୍ବ ଶେଷ ହୋଇଯାଏ । ଧାଙ୍ଗଡ଼ାମାନେ ଧାଙ୍ଗଡ଼ୀମାନଙ୍କର ସବୁ କୌତୁକ ପହଳର ଉତ୍ତର ଦେବା ଶେଷ ହୋଇଥାଏ ! ହାଇ ପରେ ହାଇ ଆଉ ଘୁଇନିଦ ଭିତରେ ଧାଙ୍ଗଡ଼ୀମାନଙ୍କର ଆଉ କିଛି ନୂଆ ଗୀତ ବୋଲିବା ପାଇଁ ବାକି ନ ଥାଏ । ଦିନର ଶ୍ରେଷ୍ଠ ବଡ଼ ଘଟଣା ସବୁର ରୋମନ୍ଥନରେ ମଧ୍ୟ ଆଉ କୌଣସି ନୂତନତ୍ୱ ନ ଥାଏ ! ଧାଙ୍ଗ୍ଡ଼ା ବାଛି ନିଏ···ଗୋଟିଏ ରାତିର ସାଥୀ ! ଧାଙ୍ଗଡ଼ୀ କହେ "ଆଜି ତୋର ମୋର ପାଳି !" ସେଥିରେ ସଙ୍କୋଚ ନାହିଁ ! ଈର୍ଷ୍ୟା ନାହିଁ— କମ୍ପା କାଲି ସେ ଦୋସର ଥିଲା ବୋଲି ଆଜି ଯେ ସେହି ଦାବୀ ଓ ଅଧିକାର ଧରି ଆସିବ ତାହା ମଧ୍ୟ ନୁହେଁ ! ଧିକ୍ ଧିକ୍ ଆଲୁଅରେ, "ଡାଙ୍ଗନ୍-ଇଡ୍" ଘରର ଗୋବରଲିପା ଚଟାଣ ଉପରେ ଧାଡ଼ ଧାଡ଼ ଅନାବୃତ ଉଲଙ୍ଗ ମିଥୁନ, ସୃଷ୍ଟିର ଆଦିମ ସନ୍ଧିର ଆଡମ୍ ଓ ଇଭ୍ ଦିଗମ୍ବର ଦିଗମ୍ବରୀ ମାନଙ୍କ ପରି !

ଏ ସମ୍ବାଦ ପାଇ ସହରରୁ ଆଂଥ୍ରୋପଲଜିଷ୍ଟ-ମାନେ ନିରୁଦ୍ଧ ମନର ସବୁ ବିକୃତି ଘେନି ଏଠାକୁ ଦିନେ ଆସିଥିଲେ, "ଡାଙ୍ଗନ୍-ଇଡ୍" ମାନଙ୍କର ବିବରଣୀ ସଂଗ୍ରହ କରି, ବିକୃତିଗ୍ରସ୍ତ ସଭ୍ୟ-ସମାଜର ଯୌନ କୌତୂହଳ ମେଣ୍ଟାଇବା ପାଇଁ ! ସେଇପରି ଜଣେ ଆଂଥ୍ରୋପଲଜିଷ୍ଟ୍‌ଠାରୁ ପାଦ୍ରୀ ପ୍ରଥମେ ସଂଗ୍ରହ କରିଥିଲେ ଏଇପରି ଡାଙ୍ଗନ୍-ଇଡ୍ ମାନଙ୍କର ସମ୍ବାଦ । ସେଦିନ 'ସୈତାନ'ର ଏଇ ମେହିଫିଲ୍ ମାନଙ୍କ ପ୍ରତି ପାଦ୍ରୀଙ୍କର ବିକଳ୍ପ ଆଗ୍ରହ ପ୍ରକାଶ ପାଇଥିଲା, ଏଥିପ୍ରତି ଘୃଣା ଓ ବିବମିଷା ମଧ୍ୟରେ ! ଭଗବାନଙ୍କର 'ଆଲୋକ-ମୟ' ରାଜ୍ୟରୁ ଏପରି ଅନୁଷ୍ଠାନମାନଙ୍କର ବିଲୋପ ପାଇଁ ସେ ଏଠାକୁ ଆସିଥିଲେ ଏକ ଅଭିଯାତ୍ରୀ ପରି !

ତା’ପରେ ଏଠାରେ ସ୍ଥାପିତ ହୋଇଥିଲା ଏକ ମିସନ୍ !

( ୨ )

ବୁଦୁଜାଣୀ ଗୁଣିଆ ମନକୁ ମନ ବଡ଼ ବଡ଼ ହେଲା···ସେ ଠିକ୍ ଜାଣିଥିଲା, ଠିକ୍ ଜାଣିଥିଲା—ଏ ସବୁ ଅଞ୍ଚଳକୁ ଆସିଥିଲେ ଯେଉଁଦିନ ଜଣକ ପରେ ଜଣେ ଆଂଥ୍ରୋପଲଜିଷ୍ଟ, ପାଦ୍ରୀ, ଶୁଣ୍ଢୀ, କୁମୁଟି ଆଉ ‘ସେବାଶ୍ରମ’ର ସମାଜସେବୀ ଦଳ ସେଇଦିନୁ ସେ ବୁଝିଥିଲା—ଗୋଟାଏ କିଛି ଭୟଙ୍କର ବିପଦ ନିଶ୍ଚୟ ମାଡ଼ ଆସୁଛି । ରକ୍ତ-ଶୋଷା ‘ପେନୁ’, ‘ମାଉଲୀ’ ଆଉ ‘ଅପଦେବତା’ମାନେ ମାଡ଼ ଆସୁଛନ୍ତି ବୋଲି । ସେଇଦିନୁ ବୁଦୁଜାଣୀ ଏହିପରି ଗୋଟାଏ ଦୁର୍ଘଟଣାର ଆଶଙ୍କାରେ ବେଶ୍ ଆତଙ୍କିତ ହୋଇ ରହିଥିଲା । ସ୍ୱପ୍ନରେ ମଧ୍ୟ ସେ ଦେଖିଥିଲା, ଏ ସବୁ ଅମଙ୍ଗଳ ଘଟଣାର ସୂଚନା ! ତା’ ନ ହୋଇଥିଲେ ଜୁଆନ୍ କନ୍ଧ-ଝିଅ ପଦୁଆଁ ଖୋଲା କଡ଼ରେ ଏଠି ଏମିତି ମରି ପଡ଼ଥାନ୍ତା କାହିଁକି ?···କନ୍ଧ ଝିଅ ତ ସହଜରେ ଆତ୍ମହତ୍ୟା କରେ ନାହିଁ କେବେ !

କୋଉ ମାଉଲୀ କି ପେନୁ, ପଦୁଆଁର ରକ୍ତ ଶୋଷି ନେଲା । କି ଦୋଷ କରିଥିଲା ସେ ? କେଜାଣି ?

ଫର୍ଚ୍ଚ ଲଟୀ-ବେଢ଼ା ତେନ୍ତୁଳି ମୂଳେ ବୁଦୁଜାଣୀ ପାଖକୁ ସଡ଼କରୁ ଗଡ଼ ଆସିଲା, ପାହାଡ଼ ମୁଣ୍ଡିଆ ସେପାଖେ ପଟଡ଼ାଣୀ ଗାଁର ଏକ କନ୍ଧ···ମୁଣ୍ଡରେ ଅନନ୍ତ କାଳର ଧୂଳିଆ ଜଟ, କୌପୁନୀ ଉପରେ ଖଣ୍ଡେ ଛିଣ୍ଡା ଚୋଷଡ଼ା । ଚୋଷଡ଼ାର ଶତ ଛିଦ୍ର ଭିତରୁ କନ୍ଧ ବାହାରକୁ ଉଙ୍କି ମାରୁଥିଲା ଗୋଟାଏ ଅନମନୀୟ ଆଭିଜାତ୍ୟ ।

ଧୂଙ୍ଗିଆରେ ନିଆଁ ଲଗାଇ କଳେ କଳେ ଧୂଆଁ ବାହାରିଯିବା ପରେ, ପେନୁକୁ ବଳି ଦେବା କଥା ପଡ଼ିଲା । କିନ୍ତୁ ‘ମାଉଲୀ’ କି ‘ପେନୁ’-ଜନିତ ଘଟଣାରେ ସେ ···କରି ଦେଇ ପାରିବେ—ତାହାହିଁ ଥିଲା ସମସ୍ୟା ! ‘ପେନୁ’ କି ‘ମାଉଲୀ’ ଆସିଯାଇ ପାରିବ ଯେ ବଡ଼ିଲା ଗୁଡ଼ରୁ ରକ୍ତ ଶୋଷି ଥିଲା । ବାମ୍ପଡ଼ୀ ପାଣିରେ ଫିଙ୍ଗି ଦେଇଥିବା ···ନ ତ ସେଇ-···ତବେଳେ କନ୍ଧ ଜଣକ ବି ଶୁଣି ସାରିଥିଲା ।

କନ୍ଧ ପଚାରିଲା···“ଯୋଉ ନା ! କଳା ମୁରଗୀ କୁକୁଡ଼ା ପେନୁ କଣ ମାଗୁଛି, ଜାଣିଚୁ କିରେ ?”

ହଠାତ୍ ବୁଦୁଜାଣୀ ମନକୁ ମନ ବଡ଼ ବଡ଼ ହେବା ଘରି କହି ଗଲା···“ଯୋଉଦିନ ପହିଲେ ପାଦ୍ରୀ ଆଇଲା ଫିରିଙ୍ଗପାଣୀ ଗାଁକୁ ତା’ପରେ ଆଇଲା ସାଇବ, ତା’ପରେ ଶୁଣ୍ଢୀ ଆଉ ଅବକାରୀ ଅଧିକାରୀମାନେ ଆଇଲେ, ଆଉ ସବା ଶେଷରେ ଏଇ ଦାଢ଼ିଆ ବାବା ବାବାଜୀମାନେ ଆସି ଏଠି ଆଶ୍ରମ ବାନ୍ଧିଲେ; ସବୁଥର ମୁଁ ତମମାନଙ୍କୁ କହିନାହିଁ କିରେ ପିଲେ ? ଗୋଟାଏ ଗୋଟାଏ ଅମଙ୍ଗଳ ମାଡ଼ ଆସିଲା !”

କନ୍ଧ ମାଟି ଉପରେ ହାତ ଘୁପଡ଼େଇ କହିଲା ·· ‘ସତ’ ! ସତ !’

ହଠାତ୍ କନ୍ଧ ଗୁଲିଲା···“ଆମର ଝିଅମାନେ, ଟୋକାମାନେ ବେଶ୍ ଥିଲେ । ଅଣ୍ଟା ତଳେ ଖଣ୍ଡେ ଖଣ୍ଡେ ପଟ, ଛାତି ଉପରେ ସାର ସାର ଗୁଞ୍ଜା-ମାଳୀ ···ପାଦ୍ରୀ କହିଲା “ଛାତି ଲୁଚାଅ ।”

କନ୍ଧ କହିଲା···“ଧରଣୀ ମା’ର ଧନ ନାହିଁ କିରେ ? ଏଇ ଖୋଲା ତ ଧରଣୀ ମା’ର କ୍ଷୀରଧାର । ସେଇ ଉଞ୍ଚା ଉଞ୍ଚା ପାହାଡ଼ ଚୂଳ ସବୁ ଧରଣୀ ମା’ର ଥନ ! କପଡ଼ା ପକାଇ ତାକୁ ଲୁଚାଇବୁ କିରେ ?”

ହଠାତ୍ ତାର ଅଭିଯୋଗ ସବୁ ଗୋଟିକ ପରେ ଗୋଟିଏ କହି ଗଲା । ଧାଙ୍ଗଡ଼ୀମାନଙ୍କର ଛାତିର ଛବି ଉଠାଇବା ପାଇଁ ସାଇବ ଦିନେ କଳବାକସ ଧରି ଆଇଲା ! ସେଇଦିନୁ ପାପ ଆଇଲା ।—

ଫ୍ଲୁଇଡ୍‌ ଖୋଜିଲେ ନିଶ୍ଚୟ ମିଳିବ ! ପୋଷ୍ଟମର୍ଟେମ୍ ଆପଣ ଆଗେ କରନ୍ତୁ ନା !"

ଡାକ୍ତରଙ୍କ ଆଖି ଆଗରେ ଭାସି ଉଠୁଥିଲା; ଆନାଟୋମୀ ବହିର ପୃଷ୍ଠାରେ ଡିସେକ୍‌ସନ୍—ଟେବୁଲ ଉପରେ ଯୋନି-ଗହ୍ୱରର ଗୋଟାଏ ବୀଭତ୍ସ ଚିତ୍ର ! ମନୁଷ୍ୟର ଏକ ସୁନ୍ଦରତମ ଆବେଗ ଏପରି ବୀଭତ୍ସ ଅଶ୍ଳୀଳତା ପ୍ରତି କିପରି କାହିଁକି କିପରି ଆକୃଷ୍ଟ ହୁଏ ଡାକ୍ତର ତାହା ବୁଝିପାରୁ ନଥିଲେ !

ସେ କହିଲେ···"ନାରୀ ଦେହର ଆନାଟୋମୀ ବିଷୟରେ ଆପଣ ତ ଦେଖୁଛି ବେଶ୍ ଅଭିଜ୍ଞ ! ପୋଷ୍ଟ-ମର୍ଟେମ୍ ବେଳେ ଆପଣ ଉପସ୍ଥିତ ରହିବାରେ କିଛି ଆପତ୍ତି ଅଛି ?"

ସରପଞ୍ଚ ଟେଲିଗ୍ରାମ୍ ପଠାଇବା କଥା ପୁଣି ଉଠାଇଥିଲେ ଇନସ୍‌ପେକ୍ଟରଙ୍କୁ ପ୍ରଭାବିତ କରିବା ପାଇଁ । ଡାକ୍ତରଙ୍କ ସହିତ ଏପରି ଗୋଟାଏ ଜରୁରୀ ତଥ୍ୟଗତ ଆଲୋଚନା ଚାଲିଥିବାବେଳେ ଏସବୁ ଅବାନ୍ତର କଥାରେ ଅପ୍ରସନ୍ନ ହୋଇ ଅସହିଷ୍ଣୁ କଣ୍ଠରେ ପାଦ୍ରୀ କହିଲେ···"ଭିଜନାଲ୍-ଅଫିସରୁ ରେପ୍‌ର ନିଶ୍ଚିତ ପ୍ରମାଣ ମିଳିବ ! କିନ୍ତୁ ସରକାରୀ ଡାକ୍ତର ଠିକ୍ ଠିକ୍ ରିପୋର୍ଟ ଦେଲେ ହେଲା !"

ପାଦ୍ରୀଙ୍କ ଆଖି ଆଗରେ ସେଇ ବନଭୂମି ଉପରେ ଯେଉଁଠି ଉତ୍‌କୀର୍ଣ୍ଣ ହୋଇ ଉଠିଥିଲା ଗୋଟାଏ ଅଶ୍ଳୀଳ, ଧର୍ଷିତ ଯୋନି-ଚିତ୍ର !

( ୩ )

ଅରଣ୍ୟର କନ୍ୟା ବୁଝେ, ମନର ସ୍ୱତଃସ୍ଫୂର୍ତ୍ତି ଝିଅ-ନିଆ ଦେହର ବିଳାସ ! କିନ୍ତୁ ସଭ୍ୟତାର ଏପରି ଜାନ୍ତବ ଆକ୍ରମଣ, ସଂସ୍କୃତିର ଏପରି ବିକୃତି ଓ ଶତ କୃତ୍ରିମ ନିରୋଧର ଏପରି ପରିଣତି···ଏସବୁ ସହିତ ପଦୁଆଁର ପରିଚୟ ନ ଥିଲା !

ସେଦିନ···ବାହାରେ ଚୈତ୍ରର ନିର୍ଜନ ମଧ୍ୟାହ୍ନ ! ଚୈତ୍ର-ପର୍ବ ପାଇଁ ଆଶ୍ରମର ଅଧିକାଂଶ ଛାତ୍ର-ଛାତ୍ରୀ ନିଜ ନିଜ ଗାଁକୁ ଚାଲି ଯାଇଥିଲେ ! ଚୈତ୍ରପର୍ବରେ ପୁରୁଣା ଓଳିଆରୁ ନୂଆ ଶିହନ ବାହାରିବ । ନୂଆ ସୃଷ୍ଟିର ସମ୍ଭାବନାରେ କନ୍ଧ-ସମାଜରେ ଗ୍ରାମେ ଗ୍ରାମେ ନୃତ୍ୟ ଓ ଉତ୍ସବ···ନବଜାଗ୍ରତ ଯୌବନର ପ୍ରମତ୍ତ ଉତ୍ସବ !

ପଦୁଆ କିନ୍ତୁ ତାର ଦୂର ଗାଁକୁ ଯିବା ପାଇଁ ଭରସିଲା ନାହିଁ ! ଯୋଉ ଜଙ୍ଗଲ ଡେଇଁ ତାକୁ ଗାଁକୁ ଯିବାର ରାସ୍ତା, ସେଇ ଜଙ୍ଗଲରେ ବାଘ ମାଡିଥିଲା ! ସେ ବାଟରେ ବାଟୋଇଙ୍କ ଯିବା ଆସିବା ବନ୍ଦ !

ପଦୁଆଁର ମଧ୍ୟ ଚୈତପର୍ବରେ ଗାଁକୁ ଯିବା ପାଇଁ ଇଚ୍ଛା ନ ଥିଲା ! ଇତିମଧ୍ୟରେ ତାର ଛାତି ଉପରେ ସାରି ସାରି କାଚ ଆଉ କାଇଞ୍ଚ ମାଳି ନ ଥିଲା ! କାଚ ଆଉ କାଇଞ୍ଚ ମାଳିର ପ୍ରୟୋଜନ ମଧ୍ୟ ନ ଥିଲା ! ଯେଉଁ ଅନାବୃତ ଦେହକୁ କନ୍ଧ ଯୁବତୀ ଅଥବା ଯୁବକ ପାପ ଓ ସ୍ଖଳନର ସଙ୍କେତ ବୋଲି କେବେ ଚିନ୍ତା କରି ନ ଥିଲେ; ଯେଉଁ ସ୍ତନ ଥିଲା ଧରିତ୍ରୀର ଆଦିମ-ବିଳାସ ପରି ମୁକ୍ତ, ଅନାବୃତ; ସଭ୍ୟତା ଓ ସଂସ୍କୃତିର ଅନୁଶାସନରେ ଏବେ ସେ ଛାତି ଉପରକୁ ଆସିଥିଲା ରେଶମୀ ବଡ଼ିସ୍, ତା ଉପରେ ବ୍ଲାଉଜ···ଅନାବୃତ ସ୍ତନକୁ ଲୁହାଡ଼ିବା ପାଇଁ ଯେତେ ନୁହେଁ; ସେତେ ପର ପୁରୁଷର ଉଦ୍ଦୀପ୍ତ କାମନାର କଳୁଷିତ ଦୃଷ୍ଟି ପ୍ରଲୁବ୍ଧ କରିବା ପାଇଁ ! ପଦୁଆଁର ଛାତି ଦିନେ ଥିଲା ଅନାବୃତ । ମାତ୍ର ତାହାର କୁମାରୀ ମନଟି ଥିଲା କନ୍ଧ ସମାଜର ବହୁ ସଂସ୍କାର ଓ ସଂସ୍କୃତିର ଆବରଣରେ, ଆବଦ୍ଧ । ଏବେ କିନ୍ତୁ ରେଶମୀ ବଡ଼ିସ୍-ବ୍ଲାଉଜ୍ ଲୁହାଡ଼ରୁ ତାର ସ୍ତନ ଲୁଚକାଳି ଖେଳିଲା ସିନା; ତାର ଅକ୍ଷତ କୁମାରୀ ମନଟି ଧୀରେ ଧୀରେ କେଉଁଦିନ ତାର ଅଲକ୍ଷିତରେ ବିବସ୍ତ୍ର ହୋଇ ଉଠିଲା । ନିଜ ଯୌବନଭରା ଦେହର ସ୍ଫୀତି ଓ ବନ୍ଧତା ଆଡ଼େ ଚାହିଁ ବେଳେ ବେଳେ ସେ ନିଜେ ସୁଦ୍ଧା ଶଙ୍କିତା, କୁଣ୍ଠିତା ହୋଇ ଉଠିଲା !

ପଦୁଅାଁର ଅଶ୍ଳୀଳତାର ହାତେ ଚଉଡ଼ାର ରଂଗୀନ ଉଁବଡ଼ଣ ଆଉ ନ ଥିଲା ! ଆଶ୍ରମକୁ ଆସିବା ପରେ, ସେଠାରେ ଆସିଥିଲା ରଙ୍ଗୀନ ସାୟା, ତା' ଉପରେ ଶାଢ଼ୀ ! ଏ ସବୁ ଆଭରଣ ଓ ଆବରଣ ମଧ୍ୟରେ ପଦୁଅାଁର ନିଷ୍ପାପ କୁମାରୀ ମନରେ ନିଜର ଦେହ ପାଇଁ ପ୍ରଥମେ ଆସିଥିଲା ଏକ ଲଜ୍ଜ୍ୟା ଓ ସଂକୋଚ···ଯାହାର ଅପର ନାମ ବିକଳ୍ପ କାମ-ପ୍ରବଣତା ଓ ବିକୃତି !

ସେଦିନ ଚୈତ୍ରର ନିର୍ଜ୍ଜନ ମଧ୍ୟାହ୍ନ···

ଆଶ୍ରମ ହତା ଭିତରେ କରବୀର ଗଛରୁ ଫୁଲ ତୋଳିବା ବେଳେ ପଦୁଅାଁର ଗ୍ରୀବା ଉପରୁ ଲୁଗା କାନିଟା ତଳେ ଖସି ପଡ଼ିଥିଲା ।

କଲ୍ଯାଣ ଦାସ ତାଙ୍କ କୋଠରୀ ବାରଣ୍ଡାରେ ଠିଆ ହୋଇ କେତେବେଳୁ ପଦୁଅାଁକୁ ଲକ୍ଷ୍ୟ କରୁଥିଲେ; —ପଦୁଅାଁ ତାହା ଜାଣି ନ ଥିଲା ।

ପଦୁଅାଁକୁ ଡାକିବା ପାଇଁ ଚେଷ୍ଟା କରି କଲ୍ଯାଣ ଦାସ କେତେଥର ଢେଉଁ ଢୋକି କେବଳ ରହି ଯାଇ-ଥିଲେ ! ଦାଢ଼ୀର ଜଂଗଲ ଭିତରୁ ତାଙ୍କର ଆଖି ଦୁଇଟା କେବଳ ନିତା ବାଘର ଆଖି ପରି ଦାଉ ଦାଉ ହୋଇ ଉଠିଥିଲା !

କଲ୍ଯାଣ ଦାସ ଗଳା ଖଙ୍କାରିଲେ ।

ପଦୁଅାଁ ଚମକି ପଡ଼ି ହାତରୁ ଫୁଲ ତୋଳା ଲଗୀଟା ଫିଙ୍ଗିଦେଲା, ହଠାତ୍ ଗୋଟାଏ ସାପ ଦେଖି-ଥିବା ପରି !

କଲ୍ଯାଣ ଦାସ ଡାକିଲେ···"ଏଣେ ଆ ପଦୁଅାଁ ! ବାଃ-କରବୀର ଫୁଲଗୁଡାକ ବେଶ ବଡ଼ ବଡ଼ ଆଉ ଲାଲ ହୋଇଛି ତ ରେ !"

ସମ୍ମୋହିତା ପରି ପଦୁଅାଁ ମୁଣ୍ଡ ନୁଆଇଁ ପିଣ୍ଡା-ତଳକୁ ଆସି ଠିଆହେଲା । କଲ୍ଯାଣ ଦାସଙ୍କର ଦୁଇ କ୍ଷୁଧିତ ଆଖି ପଦୁଅାଁର ଦେହର ସବୁ ଆବରଣ ଭେଦି ତାକୁ ଯେପରି ତଳେ ତଳେ ଆଉଥରେ ଉଲଙ୍ଗ କରି ପକାଉଥିଲା !

'ଡାଙ୍ଗନ୍-ଇଉ'ରେ କେତେ ଅଗଣିତ ସନ୍ଧ୍ୟାରେ କେତେ ଭିନ୍ନ-ଗାଁର ଯୁବକଙ୍କ ମେଳରେ ଠିଆ ହୋଇଛି ଅନାବୃତା ଉଲଙ୍ଗିନୀ ପଦୁଅାଁ···ମାତ୍ର ଅସ୍ୱସ୍ତିର ଏପରି ଅବସାଦ ଓ ଜଡ଼ତା ସେ ଇତିପୂର୍ବରୁ ଆଉ କେବେ ଅନୁଭବ କରି ନ ଥିଲା ! ପଦୁଅାଁ ପରିଚିତ ଥିଲା ଆଦିମ ଉଲଙ୍ଗ ଦେହର ବିଳାସ ସହିତ କିନ୍ତୁ ସଭ୍ୟତାରେ ଆବୃତ ମନର ବିକୃତି ସହିତ ତାହାର କେବେ କୌଣସି ପରିଚୟ ନ ଥିଲା !

କୋଠରୀ ଭିତରକୁ ପଶି ଆସି କଲ୍ୟାଣ ଦାସ ଡାକିଲେ···"ଭିତରେ ଶୁଣିଯା ପଦୁଅାଁ···!

ପଦୁଅାଁ ସମ୍ମୋହିତ । ପରି ଭିତରକୁ ଆସିଲା ।

ତା'ପରେ କଲ୍ୟାଣ ଦାସ କବାଟଟା ଜୋରରେ ବନ୍ଦ କରିଦେଇ ପଦୁଅାଁ ଆଡ଼େ ଯେପରି ଚାହିଁଲେ, ତାହା ବୁଦା ଉହାଡ଼ରେ କ୍ଷୁଧିତ ଚିତାର ଦୁଇଟା ଜଳନ୍ତା ଆଖି ତାକୁ ଅତି ନିଷ୍ଠୁର ଭାବରେ ମନେ ପକାଇ ଦେଇଥିଲା ! ପଦୁଅାଁ ଘୁଞ୍ଚି ଘୁଞ୍ଚି ଯାଉଥିଲା, ଏଇ ଚିତା ହାବୁଡ଼ରୁ ଆତ୍ମରକ୍ଷା ପାଇଁ !

କଲ୍ୟାଣ ଦାସ ପଦୁଅାଁର ଦେହରୁ ବ୍ଲାଉଜ ଆଉ ସାୟାଟା ଛଡ଼ାଇ ନେଇଥିଲେ, କ୍ଷୁଧିତ ଚିତା ମଧ୍ୟ ଶୀକା-ରର ଅନ୍ତନାଡ଼ି ଛିନ୍-ଭିନ୍ କରି ଛଡ଼ାଇ ନେବା ପରି !

ଅଥଚ ଯୌନଶୁଚି ନାମରେ ପଦୁଅାଁ ଦେହରୁ କାଚ ଆଉ କାଇଞ୍ଚ ମାଳୀ କାଢ଼ି, ସଭ୍ୟତା ଆଉ ସାଂସ୍କୃତିର ଏଇସବୁ ସାଜ ପୋଷାକ ତାକୁ ପିନ୍ଧାଇବା ପାଇଁ, କଲ୍ୟାଣ ଦାସ କେତେ ଚେଷ୍ଟା କରି ନ ଥିଲେ ସତେ !

ପଦୁଅାଁର ବାପ୍ ମାଙ୍କୁ କେତେ ଭାବରେ ବୁଝାଇ ନ ଥିଲେ ? ସଭ୍ୟତାର କେତେ ପ୍ରଲୋଭନରେ ସେମାନଙ୍କୁ ପ୍ରଲୁବ୍ଧ କରି ନ ଥିଲେ ?

ଶୀକାର ଉପରେ ଶେଷ ଲମ୍ଫ ଦେବା ପୂର୍ବରୁ ଗୋଟାଏ ଜାନୁଆର ପରି କଲ୍ୟାଣ ଦାସ ଏବେ ଘନ ଘନ ନିଃଶ୍ୱାସ ପକାଇ ପଦୁଅାଁ ଆଡ଼େ ଚାହିଁ ରହିଥିଲେ କ୍ଷୁଧିତ ଆଖିରେ !

ତିଣ୍ଣା ବ୍ଲାଉଜ୍ ଭିତରୁ ପଦୁଆଁ ର ସ୍ତନ ଦୁଇଟା ବାହାରକୁ ଫିଟି ପଡ଼ିଥିଲା ! ସେ ବୁଝି ପାରୁ ନ ଥିଲା, ଯାହାକୁ ଅଶ୍ଳୀଳ ବୋଲି ଲୁଚେଇବା ପାଇଁ କଲ୍ୟାଣ ଦାସର ହୃଦୟରେ ଅନ୍ତ ନ ଥିଲା; ଏବେ ସେ ସେହି ଦେହକୁ ଅନାବୃତ କରିବା ପାଇଁ ଏପରି ହିଂସ୍ର ହୋଇ ଉଠିଥିଲା କପରି ?

ସେତିକିବେଳେ ପଦୁଆଁ ଚିତ୍କାର କରି ଉଠିଥିଲା···

"ଏଃ ! ମା······!

ତା'ପରେ ସେ ଶ୍ୱାସ ଦେଇଥିଲା ଖୋଲା ଯୁଅରେ, ଲଜ୍ଜ୍ୟା ଓ ଅପମାନରେ !

ଖୋଲା ମୋଡ଼ରେ ସେଇ ବେଣାବୁଦା ତଳେ···

ପଦୁଆଁ ର ମୃତ ଦେହରେ ଆଉ କୌଣସି ଆବରଣ ନ ଥିଲା ! ଅଣ୍ଟାର କୌପୀନ ଖଣ୍ଡକ ସୁଦ୍ଧା ପାଣି ସୁଅରେ ଫିଟି ଭାସି ଯାଇଥିଲା ! ପାଦ୍ରୀ, ଡାକ୍ତର, ପୋଲିସ୍ ଇନସ୍‌ପେକ୍ଟର ଓ ସରପଞ୍ଚ—ସଭ୍ୟତାର ଏଇ ଚାରି ପ୍ରତିନିଧି ପଦୁଆଁ ର ମୃତ ଦେହକୁ ଚାହିଁ ଦେଖୁଥିଲେ, ଚାରିଗୋଟି ଶକୁନ ପରି !

ଇନସ୍‌ପେକ୍ଟର କହିଲେ···"ଲାସ୍‌ର ଦେହ ଫୁଲି ଆସିଲାଣି ! ରେପ୍ ଘଟଣା ସତ୍ୟ ହୋଇଥିଲେ ବି ପ୍ରମାଣ କିଣ ?"

ସରପଞ୍ଚ କହୁଥିଲେ···"ସେ ଉପରକୁ ଟେଲିଗ୍ରାମ ପଠାଇ ସାରିଛନ୍ତି ଏ ଗୋଟାଏ ରେପ୍ ମାମଲା ବୋଲି !"

ଡାକ୍ତର କହୁଥିଲେ···"ମନସ୍-ପୁଂବସ୍‌ରୁ ପ୍ରମାଣ ମିଳିବ ନାହିଁ !"

ପାଦ୍ରୀ କହୁଥିଲେ···"ତାହେଲେ ସ୍କଟ୍‌ଲାଣ୍ଡଇୟାର୍ଡ଼-ଅଫିସ୍ ପରୀକ୍ଷା କରି ଦେଖିବା ପାଇଁ ପଡ଼ିବ ।"

ବୁଦା ଉହାଡ଼ରେ ବୁଦୁକାମା ଆଉ ସେଇ କନ୍ଧ ଜଣକ ଗୋଟିପଣେ ସଲ୍ପ ବ ଉଜାପରି ଥରୁଥିଲେ, ଏକ ଅଜଣା ଆତଙ୍କରେ !





## ॥ ଜୟତୁ ବାପୁଜୀ ॥

### ମାୟାଧର ମାନସିଂହ

ଜୟ ଗାନ୍ଧିଜୀ
ଜୟତୁ ବାପୁଜୀ,
ଜୟ ସତ୍ୟର ଜୟ ।
ମିଥ୍ୟା-ଗହନ, ହିଂସା-ଭୀଷଣ,
କଳୁଷ-ଅନ୍ଧକାରେ,
ଚିର ଦୈବତ ଆଲୋକର ଶିଖା,
ଭ୍ରାନ୍ତ ଏ ଧରା-ଧାରେ ।
ନିଖିଳ-ଘଟଣ-ପ୍ରବାହର ତୀରେ
ଧ୍ରୁବ, ଶାଶ୍ୱତ, ଚିର,
ମର ଜଗତର ନିତ୍ୟ ବିନାଶେ,
ଅମର ତୁମର ଗିର !
ଶୁଭଙ୍କର, ମହା କରୁଣାର
ସ୍ରୋତ, କଲ୍ୟାଣମୟହେ,
ଜୟ ଗାନ୍ଧିଜୀ, ଜୟତୁ ବାପୁଜୀ,
ଜୟ ସତ୍ୟର ଜୟ ହେ ।
ପିଶାଚ-ପିଶୁନ, ଦାନବ-ନିଠୁର
କୁଟ କପଟର ଧରା
ତୁମର ସ୍ପର୍ଶେ, ବାପୁଜୀ ସେଦିନ
ନନ୍ଦନ ହେଲା ପରା ।
ପବିତ୍ର ହୋମ-ଅଗ୍ନି ଜାଳିଲ
ନିଜରେ ସମିଧ କରି,
"ଏକାଳେ ଏକଥା ସମ୍ଭବ କି ହେ ।
ପୁଛିଲେ ଚନ୍ଦ୍ରୁ, ଅରି !
ହେ ପୂତ, କଠିଣ, ପତିତ-ପାବନ,
ସତ୍ୟ-ସାଧନା-ମୟ,
ଜୟ ଗାନ୍ଧିଜୀ, ଜୟତୁ ବାପୁଜୀ,
ଜୟ ସତ୍ୟର ଜୟ ।
ହେ ମରଣଜୟୀ ଦେବ-ମନୁଷ୍ୟ,
ମହାତ୍ମା, ମହାଜ୍ଞାନୀ,
ପଦତଳେ ତବ ଏକାଠି କଲ,
କୃଷକ ଓ ରାଜାରାଣୀ ।
କାଉଁରି ସ୍ପର୍ଶେ ନିଦ୍ରିତ, ଭୀରୁ
ଜନତାରେ କଲ ବୀର
ପୁଣ୍ୟର ଜୟ ଘୋଷିଲ ତମର,
ବଚନ ନମ୍ର ଧୀର,
ଶାନ୍ତ, ସୁଜନ, ବିନୟୀ ଅ-ଧନ
ନିରସ୍ତ୍ର, ନିର୍ଭୟ,
ପ୍ରବଳ, ବିଶାଳ ସାମ୍ରାଜ୍ୟେ ଦେଲ
ନିରକ୍ତ ପରାଜୟ ।
ବିପ୍ଳବୀ ପର, କ୍ଷମାସୁନ୍ଦର,
ସୈନିକ ପ୍ରେମ ମୟ,
ଜୟ ଗାନ୍ଧିଜୀ, ଜୟତୁ ବାପୁଜୀ,
ଜୟ ସତ୍ୟର ଜୟ ।

କବି ବ୍ରଜନାଥ ରଥଙ୍କର

ଆଉ ଏକ ମନୋଜ୍ଞ କବିତା ସଂକଳନ

# ନିଜସ୍ୱ ସଂଳାପ

ବନ୍ଧାଇ-ପରିପାଟୀ—ସୁରୁଚିରେ ଅନନ୍ୟ

ମୂଲ୍ୟ—ପାଞ୍ଚଟଙ୍କା

ପ୍ରକାଶକ :—**କାବ୍ୟ ପ୍ରକାଶନୀ** ।। ବାଲେଶ୍ୱର

ପରିବେଷକ :—**ଜଗନ୍ନାଥ ରଥ** ।। ବିନୋଦ ବିହାରୀ ।। କଟକ

---

**ବନଫୁଲର ପରବର୍ତ୍ତୀ ସଂଖ୍ୟା:—**

## "ଓଡ଼ିଶାର ଆଦିବାସୀ ସଂସ୍କୃତି ଓ ହରିଜନକଲ୍ୟାଣ"

ଏଥିରେ ପ୍ରବନ୍ଧ, ଗଳ୍ପ, କବିତା, ଉପନ୍ୟାସ, ରମ୍ୟ ରଚନା ଇତ୍ୟାଦି ସ୍ଥାନ ପାଇବ ।

ଓଡ଼ିଶାର ବିଶିଷ୍ଟ ଲେଖକ ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ କାହ୍ନୁଚରଣ ମହାନ୍ତି, ଶ୍ରୀ ବିଭୂତି ପଟ୍ଟନାୟକ, ଶ୍ରୀ ବ୍ରଜମୋହନ ମହାନ୍ତି, ଶ୍ରୀ ରାଜକିଶୋର ପଟ୍ଟନାୟକ, ଡକ୍ଟର ମାୟାଧର ମାନସିଂ, ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର, ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର, ଡକ୍ଟର କୃଷ୍ଣ ଚରଣ ବେହେରା, ଶ୍ରୀମତୀ ସରଳା ଦେବୀ, ଶ୍ରୀମତୀ ବିଦ୍ୟୁତପ୍ରଭା ଦେବୀ, ଶ୍ରୀ ଲକ୍ଷ୍ମୀଧର ନାୟକ, ଅଧ୍ୟାପକ ପ୍ରାଣବନ୍ଧୁ କର, ଅଧ୍ୟାପକ ନୃସିଂହ କୁମାର ରଥ, ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଅଧ୍ୟାପକ ନିତ୍ୟାନନ୍ଦ ପତି, ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି, ଶ୍ରୀ ସତ୍ୟାନନ୍ଦ ବେହୁରା ପ୍ରମୁଖ ଲେଖକମାନଙ୍କର ମୂଲ୍ୟବାନ୍ ଲେଖା ପ୍ରକାଶ ପାଇବ ।

ସମ୍ପାଦକ—ବନଫୁଲ

ଖଜାବଗିଚ୍ଚ କଟକ-୧

## ଏ ସଂଖ୍ୟାରେ—

ବିଷୟ ପୃଷ୍ଠା



---

## ସମ୍ପାଦକୀୟ

# ବିପ୍ଳବୀ ସାହିତ୍ୟିକ ହୋ

ଭିଏତ୍‌ନାମର ବିପ୍ଳବୀ ରାଷ୍ଟ୍ରପତି ଡକ୍ଟର ହୋ-ଚି-ମିନ୍ କେବଳ ଖାଣ୍ଟି ପୃଥିବୀର ପ୍ରଗତିଶୀଳ ଜନନାୟକ ନ ଥିଲେ। ସାହିତ୍ୟର ବୈପ୍ଳବିକ ପରିବର୍ତ୍ତନ ମଧ୍ୟରେ ସେ ଥିଲେ ଜଣେ ଅଗ୍ରଗାମୀ ସାରଥି। ତାଙ୍କ ଜୀବନର ସମ୍ୟକ୍ ସମୀକ୍ଷାରୁ ଏ ଉକ୍ତିର ଯାଥାର୍ଥ୍ୟ ପ୍ରମାଣିତ ହୁଏ। ପ୍ରାୟ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ଜୀବନକାଳ ମଧ୍ୟରେ ସେ ପ୍ରାଣ ପବିତ୍ରତାର ପରୀକ୍ଷା ନିରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏକ ଗଣତାନ୍ତ୍ରିକ ଶୋଷଣହୀନ ସମାଜର ଚୂଡ଼ାନ୍ତ ନିଷ୍ପତ୍ତିରେ ଉପନୀତ ହୋଇ ପାରିଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ। ୧୮୯୦ ମସିହା ମେ' ମାସ ୧୯ ତାରିଖରେ ଇଣ୍ଡୋଚୀନ୍‌ର ଅଖ୍ୟାତ ଏନ୍‌ଜେଆର ପ୍ରଦେଶରେ ତାଙ୍କର ଜନ୍ମ। ଜଣେ ସରକାରୀ କର୍ମଚାରୀଙ୍କର ସନ୍ତାନ ରୂପେ ଜନ୍ମ ହୋଇଥିଲେ ମଧ୍ୟ ଏହା ତାଙ୍କ ଜୀବନ ପଥରେ ବାଧା ସୃଷ୍ଟି କରିପାରି ନ ଥିଲା। କାରଣ ନିଜେ ତାଙ୍କର ପିତା ସରକାରୀ କର୍ମଚ୍ୟୁତ ହୋଇ ଜଣେ ଜାତୀୟତାବାଦୀ ବିପ୍ଳବରେ ପରିଣତ ହୋଇଥିଲେ। ଶ୍ରୀ ହୋ ଥିଲେ ଜଣେ ବିଜ୍ଞ, ପଣ୍ଡିତ ଓ ଚିନ୍ତାଶୀଳ ବ୍ୟକ୍ତି।

ସେ ବାଲ୍ୟାବସ୍ଥାରେ ମାଣ୍ଡାରିନ୍ ଚୀନ୍ ଭାଷା ଶିକ୍ଷା କରିବାଲାଗି ଆଗ୍ରହୀ ହୋଇଥିଲେ। ପରେ ଫରାସୀ, ଇଂରାଜୀ, ରୁଷ୍ ଓ ଜର୍ମାନୀ ଭାଷା ଶିକ୍ଷାକରି ଅନ୍ୟାନ୍ୟ ଇଣ୍ଡୋଚୀନ୍ ଭାଷାରେ ମଧ୍ୟ ପାଣ୍ଡିତ୍ୟ ଲାଭ କରିଥିଲେ।

କିନ୍ତୁ ଏହି ବିଚିତ୍ରକର୍ମା କବି ହୋଙ୍କ ସମଗ୍ର ଜୀବନ ପର୍ଯ୍ୟାଲୋଚନା କଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ। ମାତ୍ର ୨୧ ବର୍ଷ ବୟସରେ ସେ ଗୋଟିଏ ଜାହାଜରେ ନିଯୁକ୍ତ ହୁଅନ୍ତି ରନ୍ଧନ କାର୍ଯ୍ୟରେ; ପରେ ସେ ଯାତ୍ରା କରନ୍ତି ଲଣ୍ଡନ ଓ ସେଠାରେ ମଧ୍ୟ ଗୋଟିଏ ହୋଟେଲ୍‌ରେ ନିଯୁକ୍ତ ହୁଅନ୍ତି ରନ୍ଧନ କାର୍ଯ୍ୟରେ। ଏହିଠାରେ ତାଙ୍କର ପ୍ରସ୍ଫୁଟିତ ହୁଏ କବିତ୍ୱର ଅସୀମ ପ୍ରତିଭା। ଏ ସମୟରେ ଶ୍ରୀ ହୋ ପରିଚିତ ଥିଲେ ଏନ୍‌ଗୁଏନ୍ ଆଟ୍‌ଠାନ୍ ନାମରେ। କିନ୍ତୁ ପରବର୍ତ୍ତୀ ସମୟରେ ୧୯୪୪ ମସିହାରେ ସେ ଏ ନାମ ପରିବର୍ତ୍ତନ କରି ପରିଚିତ ହୁଅନ୍ତି ହୋ-ଚି-ମିନ୍ ଭାବେ। ବାସ୍ତବିକ ଶ୍ରୀ ହୋ ଗୋଟିଏ ଜାଜ୍ୱଲ୍ୟମାନ ଜ୍ୟୋତି ଶିଖା। ଏଇ ଅସୀମ ପ୍ରତିଭା ପାଇଁ ହିଁ ତାଙ୍କୁ ତାଙ୍କ ପ୍ରିୟତମ ଦେଶବାସୀଗଣ ସମ୍ବୋଧନ କରନ୍ତି ଅଙ୍କଲ୍ ହୋ ଭାବେ। ତାଙ୍କ ନିର୍ଭୀକତା ସଂଗ୍ରାମଶୀଳ ଜୀବନ ଉଗ୍ର ପ୍ରଗତିଶୀଳ ଚେତନା ତାଙ୍କୁ ସମଗ୍ର ବିଶ୍ୱରେ କରିଥିଲା ମହାମାନବ। ହୋଙ୍କ ଜୀବନବ୍ୟାପୀ ସଂଗ୍ରାମ ଫଳରେ ହିଁ ଫ୍ରାନ୍ସର ଔପନିବେଶିକ ସାମ୍ରାଜ୍ୟ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଯାଇଥିଲା।

ପ୍ରଥମ ମହାଯୁଦ୍ଧ ସମୟରେ ସେ ଅବସ୍ଥାନ କରୁଥିଲେ ପ୍ୟାରିସ୍‌ଠାରେ। ଏଇଠାରେ ହିଁ ତାଙ୍କର ଆରମ୍ଭ ହେଲା ବୈପ୍ଳବିକ ଜୀବନ। ପରେ ପରେ ୧୯୨୩ ମସିହାରେ ସେ ମସ୍କୋ ଯାଇ ଷ୍ଟାଲିନ୍‌ଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ। ଫଳରେ ସଂଗ୍ରାମର ଚୂଡ଼ାନ୍ତ ନିଷ୍ପତ୍ତିରେ ପହଞ୍ଚି ୧୯୪୬ ଅଗଷ୍ଟ ୧୬ ତାରିଖ ଦିନ ସେ ଘୋଷଣା କରିଥିଲେ ସ୍ୱାଧୀନ ଗଣତାନ୍ତ୍ରିକ ଭିଏତ୍‌ନାମ୍ ରିପବ୍ଲିକାନ୍‌ର ସ୍ୱାଧୀନତା। ଭିଏତ୍‌ନାମ୍ ଦୁଇ ଭାଗରେ ବିଭକ୍ତ ହେଲା ଏବଂ ଶ୍ରୀ ହୋ ହେଲେ ରାଷ୍ଟ୍ରପତି। ସେହି ପ୍ରଗତିଶୀଳ ସାହିତ୍ୟ ରଥୀ ରାଷ୍ଟ୍ରପତିଙ୍କର ଗତ ୩ ତାରିଖ ଦିନ ୭୯ ବର୍ଷ ବୟସରେ ମୃତ୍ୟୁ ହୋଇଯାଇଛି। ଏହା କେବଳ ଭିଏତ୍‌ନାମର କ୍ଷତି ନୁହେଁ, କ୍ଷତି ସମଗ୍ର ବିଶ୍ୱ ସାହିତ୍ୟର। ପୃଥିବୀର ଦଳିତ, ଅବହେଳିତ ଏବଂ ନିଷ୍ପେଷିତ ଜନତାଙ୍କ ପ୍ରତି ତାଙ୍କର କବିତା ମାଧ୍ୟମରେ ଯେଉଁ ସମବେଦନା ରହିଥିଲା ଏବଂ ଶ୍ରେଣୀହୀନ, ଶୋଷଣହୀନ ସମାଜ ଗଠନ ପାଇଁ ସେ ଯେଉଁ ପ୍ରାଣପାତ ଉଦ୍ୟମ କରୁଥିଲେ, ତାହା ବିଶ୍ୱବାସୀଙ୍କର ଥିଲା ସମ୍ପଦ। ଆଜି ସେହି ସମ୍ପଦର ସ୍ମାରକୀ ସଦୃଶ ହୋଙ୍କର କବିତ୍ୱ ପୃଥିବୀର ପ୍ରତ୍ୟେକ ଜନପଦରେ ଅସଂଖ୍ୟ କବିଙ୍କୁ ପ୍ରଭାବିତ, ଉତ୍ସାହିତ କରୁ ଏହା ହିଁ କାମନା। ଶେଷରେ ଆମେ ଏହି ମହାନ୍ କବିଙ୍କ ପ୍ରତି ଆମର ସାଦର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ।

---

# ॥ ରାମାୟଣ ଓ ବାଲ୍ମୀକି ॥

ଡଃ ମାୟାଧର ମାନସିଂହ

ବାଲ୍ମୀକି ଓ ତାଙ୍କର ଅପୂର୍ବ ସୃଷ୍ଟି ରାମାୟଣ ଭାରତୀୟ ଚେତନାର ଅମୂଲ୍ୟ ସଂପଦ ଏବଂ ଶାଶ୍ୱତ ପ୍ରେରଣା ।

ବାଲ୍ମୀକିଙ୍କ ନିଜ ଜୀବନଗାଥା ହିଁ ମାନବିକ ସମ୍ଭାବନା ଓ ରୂପାନ୍ତରର ପରମ ପ୍ରତୀକ ।

ଜଣେ ବନ୍ୟଦସ୍ୟୁ ଦିନେ ଏହି ବିରାଟ ଉପମହାଦେଶ ଓ ବିରାଟ ଐତିହାସିକ ଜାତିର ପରମ ବରେଣ୍ୟ କବି ଓ କରୁଣାମୟ ଶିକ୍ଷକ ଯେ ହୋଇ ଉଠିଲେ, ଏହାଠାରୁ ମହତ୍ତର ରୂପାନ୍ତର କ'ଣ ଥାଇପାରେ ? ଆଉ କେଉଁ କାହାଣୀ ବା ଆମକୁ ଆମ ପ୍ରତ୍ୟେକଙ୍କର ବିପୁଳ ସମ୍ଭାବନା ବିଷୟରେ ଏପରି ନିଃସନ୍ଦେହ ଭରସା ଦେଇପାରେ, ଯେପରି ଦେଇପାରେ ରାମାୟଣ ?

ମହାକବି ମହର୍ଷି ଓ ମହାଗୁରୁ ବାଲ୍ମୀକିଙ୍କ ଦୁଃଖ-ଦୁର୍ଦ୍ଦଶା ଓ ପ୍ରଗାଢ଼ ତପସ୍ୟାମୟ ଜୀବନ, ଆମକୁ ଏହି ସହଜ କଥାଟି ହିଁ ଶିଖାଇ ଦେଉଛି ଯେ, ସାଧନା ହିଁ ମନୁଷ୍ୟର ଏକମାତ୍ର ଭାଗ୍ୟନିୟନ୍ତା ଏବଂ ଆମ ପ୍ରତ୍ୟେକ ଭିତରେ ରତ୍ନାକର ରହିଛି । ଯାହାର ତୃଷ୍ଣା ବିକ୍ଷୁବ୍ଧ ତରଙ୍ଗମାଳା ତଳକୁ ଖୋଳିଗଲେ ଆମେ ରାମାୟଣ ପରି ପରମ ରତ୍ନ ସଂଗ୍ରହ କରି ପାରିବା ଏବଂ ଜନକ ନନ୍ଦିନୀଙ୍କ ପରି ବିଶ୍ୱବନ୍ଦ୍ୟା ନାରୀରତ୍ନଙ୍କର ମଧ୍ୟ ଆଶ୍ରୟଦାତା ହେବାର ସୌଭାଗ୍ୟ ପାଇ ପାରିବା ।

ପରିତ୍ୟକ୍ତ ଓ ଅବହେଳିତ ଏକ ବ୍ରାହ୍ମଣ-ସନ୍ତାନ ଡକାୟତ ଦଳରେ ମିଶି ଡକାୟତିକୁ ତାର ସ୍ୱାଭାବିକ ଧର୍ମବୋଲି ଧରି ନେଇଥିଲା । ସେହି ଆତତାୟୀ ବୃତ୍ତିରେ ସେ ତାର ପରିବାରକୁ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରଖି ପାରିଥିଲେ ହେଁ ସେ ହରେଇ ବସିଲା ତାର ବ୍ରାହ୍ମଣ-ଜନ୍ମଜାତ ସୂକ୍ଷ୍ମ ନୈତିକ-ଚେତନା ସବୁ । ତାର ଅକୁଣ୍ଠ ହେଲେ ସାଧୁ, ସନ୍ନ୍ୟାସୀ ଓ ବ୍ରାହ୍ମଣମାନେ, କିନ୍ତୁ ତାର ପାଷଣ୍ଡତା ଯେତେବେଳେ ଚରମ ବିନ୍ଦୁକୁ ଉଠିଲା, ସେତେବେଳେ ସେ ସମ୍ମୁଖୀନ ହେଲା, ସେହିପରି ଜଣେ ପରମ ପୁରୁଷର, ଯେଉଁମାନଙ୍କର ଉପସ୍ଥିତିରେ ହିଁ ବହୁ ପାଷଣ୍ଡ-ଜୀବନର ଆପେ ଆପେ ରୂପାନ୍ତର ଘଟିଥାଏ ଏବଂ ଏ ଶ୍ରେଣୀର ମହାତ୍ମାମାନଙ୍କର ଉର୍ବର ଜନ୍ମଭୂମି ହେଉଛି ଏଇ ଭାରତବର୍ଷ, ବୁଦ୍ଧ, ରାମକୃଷ୍ଣ ଓ ଗାନ୍ଧୀର ଏହି ଦେଶ ।

ତରୁଣ ବ୍ରାହ୍ମଣ-ଦସ୍ୟୁ ସେଦିନ ସମ୍ମୁଖୀନ ହେଲା ଏହିପରି ଏକ ମହାପୁରୁଷ ନାରଦଙ୍କର ।

ନାରଦଙ୍କ ସଂସ୍ପର୍ଶ ହିଁ, ତରୁଣ ଦସ୍ୟୁକୁ ତା' ଜୀବନରେ ପ୍ରଥମ କରି ପ୍ରଶ୍ନ କରିବା ଶିଖେଇଲା-ଯାହାକି ସକଳ ଆଧ୍ୟାତ୍ମିକ ଅଭ୍ୟୁଦୟର ପ୍ରଥମ ପଦକ୍ଷେପ । ଦସ୍ୟୁବୃତ୍ତିରେ ( ଅନ୍ୟମାନଙ୍କ ପକ୍ଷରେ ଦୁଷ୍କର୍ମମୟ ଅନ୍ୟ ଯେକୌଣସି ବୃତ୍ତିରେ ) ତରୁଣ ରତ୍ନାକର, ନିଜକୁ ଓ ନିଜ ପରିବାରକୁ ବେଶ୍ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରଖି ପାରିଥିଲା । କିନ୍ତୁ ଜୀବନରେ ସୁଖ-ସ୍ୱାଚ୍ଛନ୍ଦ୍ୟ ବା ସାମାଜିକ ଘଟାଟୋପ କି ଶେଷ କଥା ବା ମୁଖ୍ୟ କଥା ? "ମାନ୍ ଉଇଣ୍ଟ ଲିଭ୍, ବାଇ ବ୍ରେଡ୍ ଆଲୋନ୍—"

ପଶୁପକ୍ଷୀ କେବଳ ଖାଦ୍ୟ ଖାଇଁ ବଞ୍ଚନ୍ତି ସିନା; ମନୁଷ୍ୟ ନାମକ ଜୀବ, କେବଳ ସ୍ଥୂଳ ଖାଦ୍ୟଦ୍ୱାରା ବଞ୍ଚେ ନାହିଁ । ତା'ର ସୂକ୍ଷ୍ମ ଅଦୃଶ୍ୟ ଖାଦ୍ୟ ଆବଶ୍ୟକ, ଯାହାକି ସାଧାରଣ ଅନ୍ନଠାରୁ ମହତ୍ତର ଓ ଅଧିକ ମୂଲ୍ୟବାନ୍ । ତା' ହେଲା ମନୁଷ୍ୟର ନୈତିକତା-ବୋଧ ବା ଭଲମନ୍ଦ ଜ୍ଞାନ ।

ଅଢ଼େଇ ହଜାର ବର୍ଷ ପୂର୍ବେ ଗୌତମ ବୁଦ୍ଧ ଏଥିପାଇଁ ଆର୍ଯ୍ୟ-ଅଷ୍ଟାଙ୍ଗ ମାର୍ଗ ଭିତରେ ସ୍ଥାନ ଦେଇଥିଲେ, "ସମ୍ୟକ୍ ଅଜୀବ୍" ବା "ସାଧୁ ଜୀବିକା"କୁ ।

ଆମ ପ୍ରତ୍ୟେକଙ୍କୁ ବଞ୍ଚିବାକୁ ହେବ । ପ୍ରତ୍ୟେକର ପାରିବାରିକ ଦାୟିତ୍ୱ ଅଛି । କିନ୍ତୁ ଆମେ ଭୁଲିଯାଉ ଯେ, ଆମ ପ୍ରତ୍ୟେକର ସ୍ୱାର୍ଥ ତାଠୁଁ ଗୁରୁତର ସାମାଜିକ ଦାୟିତ୍ୱ ମଧ୍ୟ ଅଛି । ଆମେ ପ୍ରତ୍ୟେକ ଯେଉଁ କାମସବୁ ସମ୍ପାଦନ କରୁ, ଯେଉଁ ଭାବରେ ଜୀବିକାର୍ଜନ କରୁ, ଯେଉଁ ଭାବରେ ମଉଜ କରୁ, ସେ ପ୍ରତ୍ୟେକଟିର ଆମର ପାରିପାର୍ଶ୍ୱିକତା ଉପରେ, ସମାଜ ଉପରେ, ଦେଶ ଉପରେ, ଜାତି ଉପରେ, କି ପ୍ରତିକ୍ରିୟା ହେଉଛି ବା ହେବ, ତାହା ମଧ୍ୟ ଆମ ପ୍ରତ୍ୟେକର ଗମ୍ଭୀର ଭାବରେ ଚିନ୍ତା କରିବାର କଥା ।

ଦସ୍ୟୁତା ବା ଶଠତା କରି ତତ୍କାଳୀନ ସ୍ୱାଚ୍ଛନ୍ଦ୍ୟ ସହଜ ପ୍ରାପ୍ୟ ହୋଇପାରେ । କିନ୍ତୁ ସମଗ୍ର ସମାଜ ଉପରେ ସେପରି କର୍ମର ସାମୂହିକ ପ୍ରତିକ୍ରିୟା ଓ ତାତ୍ପର୍ଯ୍ୟ କ'ଣ ? ବ୍ୟଞ୍ଜନା କ'ଣ ଏହି ଯେ, ପୃଥିବୀ ସମାଜର ପ୍ରତ୍ୟେକେ ଶଠହୋଇ ବଞ୍ଚିବେ ? ଯଦି ବା ଏ ପନ୍ଥା ଅବାଞ୍ଛନୀୟ, ତେବେ ତାହାର ତ୍ୟାଗ ଏହି ମୁହୂର୍ତ୍ତରୁ ତମଠାରୁ ହିଁ ଆରମ୍ଭ ହେବା ଉଚିତ ନୁହେଁ କି ?

ନାରଦଙ୍କ ସମ୍ପର୍କରେ ଆସି ତରୁଣ ବ୍ରାହ୍ମଣ-ଦସ୍ୟୁର ସେହି ପ୍ରକାର ମହାନ୍ ନୈତିକ ରୂପାନ୍ତର ଏକ ମୁହୂର୍ତ୍ତରେ ହିଁ ଘଟିଗଲା । ଫଳରେ ପଡ଼ି ରହିଲା, ଦସ୍ୟୁର ହିଂସ୍ରିକାମୟ ମ୍ଳେଚ୍ଛ ଜୀବନ ଏବଂ ଯେଉଁ ଆନ୍ତରିକ ନିଷ୍ଠାର ସହିତ ସେହି ଉନ୍ମାର୍ଗଗାମୀ ତରୁଣ ଏତେକାଳ ତତ୍କାର୍ଯ୍ୟ କରୁଥିଲା, ସେହି ନିଷ୍ଠା ଓ ଆନ୍ତରିକତା ସେ ବର୍ତ୍ତମାନ ଆରୋପ କଲା, ଆତ୍ମଜିଜ୍ଞାସା ଓ ଆତ୍ମସାକ୍ଷାତ ପ୍ରତି ।

ପରବର୍ତ୍ତିତ ତରୁଣ ଦସ୍ୟୁର ଗୃହପଟେ ଯେବେ ଉଇହୁଙ୍କା ଉଠିଯିବା, କେବଳ ତାର ସହଜାତ ନିଷ୍ଠା ଓ ଆନ୍ତରିକତା ହିଁ ରୂପକ ବର୍ଣ୍ଣନା । ତାହା ମଧ୍ୟ ସୂଚନା ଦିଏ ଯେ ନିଷ୍ଠା ଓ ଆନ୍ତରିକତା ବ୍ୟତୀତ ଏ ଜଗତରେ କୌଣସି ହେଲେ ଉତ୍ତମ ସିଦ୍ଧି ଅସମ୍ଭବ । ନିଉଟନ ଓ ଆଇନଷ୍ଟାଇନଙ୍କ ପାଇଁ ଏ ସଂସାର ନ ଥିଲା । ତାଙ୍କ ଗୃହପଟେ ମଧ୍ୟ ଉଠିଥିଲା ଅଦୃଶ୍ୟ ଉଇହୁଙ୍କା ସବୁ ଏବଂ ସେହି କାରଣରୁ ହିଁ ତାଙ୍କ ଭିତରୁ ବାହାରିଲେ ବିଶ୍ୱ-ଶ୍ରେଷ୍ଠ ଜ୍ଞାନୀ, ଯେପରି ସେହି ଭୂତପୂର୍ବ ତରୁଣ ଦସ୍ୟୁକୁ ଘେରିଥିବା ଉଇହୁଙ୍କାରୁ ବାହାରିଲେ ପରମ-ମାନବିକତାମୟ ମହର୍ଷି ବାଲ୍ମୀକି ।

ଯେଉଁ ଦସ୍ୟୁର ନରନାଶ, ବାଳକ ବାଳିକା ନିର୍ବିଶେଷରେ ପଥିକ ଜନର ଲୁଣ୍ଠନ ଓ ନରହତ୍ୟା ଦୈନନ୍ଦିନ ଘଟଣା ଥିଲା, ତାର ନୈତିକ ପରିବର୍ତ୍ତନ ଏପରି ପ୍ରଗାଢ଼ ଓ ପରିବ୍ୟାପ୍ତ ହୋଇଗଲା ଯେ, ବ୍ୟାଧଶରାହତ ଏକ କ୍ରୌଞ୍ଚପାଇଁ ତାର ସାଥୀର ମର୍ମଭେଦୀ କରୁଣ ଚିତ୍କାରରେ ତାର ସମଗ୍ର ଆତ୍ମା ଥରିଉଠି, ଯେଉଁ ପ୍ରତିକ୍ରିୟାରେ ସହସା ଆତ୍ମପ୍ରକାଶ କଲା, ସେ ହୋଇ ଉଠିଲା ବିଶ୍ୱର ଆଦ୍ୟ କବିତା ! ସେ ଦିନର ଦସ୍ୟୁ ନିଜର ଅଜାଣତରେ ହିଁ ହୋଇ ଉଠିଲା ବିଶ୍ୱର ଓ ଭାରତର ଆଦିକବି । ଏହିପରି ହିଁ ବିଶ୍ୱର ଶ୍ରେଷ୍ଠ କବିତା ବାହାରି ଥାଏ,—ସ୍ରଷ୍ଟାର ଅଜାଣତରେ ଶ୍ଳୋକର ଭାଷାରେ ।

ଯାହା ଦସ୍ୟୁର ରୂପାନ୍ତରିତ ଚିତ୍ତଲୋକରୁ ଆପେ ଆପେ ଉଚ୍ଚାରିତ ହୋଇ ପଡ଼ିଲା । ତାକୁ ସେ କୌଣସି

ସୁଯୋଗ୍ୟ ଆଧାର ଦେଇ ଚିତ୍ରନ କରିବାକୁ ଚେଷ୍ଟାକଲେ ଏବଂ ଆମେ ପାଇଲୁ ଆମ ସଂସ୍କୃତିର ପରମ ସଂପଦ "ରାମାୟଣ" ।

ଏକ ପରମ ପୁରୁଷ ଓ ପରମାନାରୀ ନେଇ ଆଦର୍ଶ ରାମାୟଣ ମହାକାବ୍ୟ ରଚିତ ହେଲେ ହେଁ ଆମକୁ ମନେ ରଖିବାକୁ ହେବ ଯେ, ଏ କାବ୍ୟ ଏକାବେଳେକେ ନିର୍ବ୍ୟକ୍ତିକ ନୁହେଁ । ଏହା ନିଃସନ୍ଦେହ ଭାବରେ ବରେଣ୍ୟ ସ୍ରଷ୍ଟାର ପୂର୍ବତନ କଳୁଷିତ, ସ୍ୱାର୍ଥ-କେନ୍ଦ୍ରିକ ଦସ୍ୟୁ ଜୀବନର ଏକ ସ୍ୱର୍ଣ୍ଣ ସୌରଭମୟ ପରମ ପ୍ରତିବାଦ । ତା' ନ ହୋଇଥିଲେ ଏ କାବ୍ୟ ଏପରି ନିଖୁଣ-ଆଦର୍ଶ-ବାଦୀ ହୋଇ ନ ଥାନ୍ତା ବା ଆମକୁ ଏପରି ଗଭୀର ଭାବରେ ସ୍ପର୍ଶକରୁ ନ ଥାନ୍ତା ।

ଧରିନେବାକୁ ହେବ ଯେ, ବାଲ୍ମୀକିଙ୍କ ଦସ୍ୟୁଜୀବନ ଯାହା ଥିଲା, ସମାଜର କୋଟି ଜନର ଦୈନନ୍ଦିନ ଜୀବନ ମଧ୍ୟ ପ୍ରାୟ ସେୟା ହିଁ । ଆମ ଭିତରୁ କେତେଜଣ ପ୍ରକୃତରେ ସତ୍ୟମୟ ସାଧୁ ଜୀବନଯାପନ କରନ୍ତି ? କେତେଜଣ ସତ୍ୟରେ ନିଃସ୍ୱାର୍ଥପର ? ତରୁଣ ଦସ୍ୟୁ ସେଦିନ ସଙ୍କଟ- ମୁହୂର୍ତ୍ତରେ ଦେଖିଲେ ଯେ ଜାୟା ଓ ଜନନୀ ଏବଂ ପୁତ୍ରକନ୍ୟା, ପ୍ରତ୍ୟେକଟିର ତଥାକଥିତ ସ୍ନେହ, ସଂପୂର୍ଣ୍ଣ ସ୍ୱାର୍ଥ-ପ୍ରତିଷ୍ଠ । ତାହାହିଁ ମଧ୍ୟ ହେବ ଆମ ପ୍ରତ୍ୟେକର ଆବିଷ୍କାର,—ଯଦି ଆମେ ଅକୁତୋ-ଭୟ ଭାବରେ ସତ୍ୟର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହେଉଁ ।

ପୂର୍ବତନ ଦସ୍ୟୁ ବାଲ୍ମୀକିଙ୍କ ରାମାୟଣ ଖୁବ୍ ସମ୍ଭବତଃ ଏହି ନିଜସ୍ୱ ବ୍ୟକ୍ତିଗତ କାରଣରୁ ହିଁ ଏପରି ତ୍ୟାଗ ଓ ନିଃସ୍ୱାର୍ଥମୟ । ସେଦିନର ଦସ୍ୟୁ ହୁଏତ ସ୍ୱପ୍ନ ଦେଖିଲେ,—ତ୍ୟାଗ ପବିତ୍ର ଓ ନିଃସ୍ୱାର୍ଥ-ମମତାର ସ୍ୱର୍ଣ୍ଣ ସୌରଭମୟ ଜୀବନ କି ଏ ଜଗତରେ ସମ୍ଭବ ନୁହେଁ ? ସେହିପରି ଏକ ପରିବାରର ବର୍ଣ୍ଣନା କରି, ମୁଁ ତାକୁ ସମ୍ଭବ କରାଇପାରେ କି ?

ବ୍ୟଥିତ କ୍ରୌଞ୍ଚର ବିଳାପରେ ବେପଥୁମନ୍ତ ମହାକବିଙ୍କ ଲେଖନୀ, ତେଣୁ ହିଁ ହୁଏତ ଦେଇ ଯାଇଛି ଆମକୁ ଏହି ଅପୂର୍ବ ପରମ ସୃଷ୍ଟି ରାମାୟଣ । ଯେଉଁଠି ରାଜସିଂହାସନ ପନ୍ଥ କଥା ଏପରି କି ପ୍ରେମହିଁ ଭୋଗର ବସ୍ତୁ ନ ହୋଇ, ହୋଇ ଉଠିଛି କେବଳ ଉଷ୍ଣ ଅଶ୍ରୁଧାରାର ନିର୍ମଳ ସ୍ରୋତସ୍ୱିନୀ, ଯାହାର ଜଳରେ ବୁଡ଼ପାରି ଏହି ସହସ୍ର ସହସ୍ର ବର୍ଷ ଧରି ସହସ୍ର ସହସ୍ର ପ୍ରାଣ, ତାର ସହଜାତ ପବିତ୍ରତା ଫେରି ପାଉଛି । ମହାକବି କି ଜାଣି ଜାଣି, ପରମପୁରୁଷ ଶ୍ରୀରାମ ଓ ପରମାନାରୀ ସୀତାଙ୍କୁ ବାରମ୍ବାର ବିଚ୍ଛିନ୍ନ କରି ରଖିଲେ, ଏହାହିଁ ପ୍ରମାଣ କରିବାକୁ ଯେ, ପ୍ରେମ ଭୋଗ ନୁହେଁ । ପ୍ରେମ କେବଳ ଉଷ୍ଣ ଅଶ୍ରୁସିକ୍ତ ଅନନ୍ୟ ଧ୍ୟାନ; ଯେ ପ୍ରେମରେ ଦ୍ୱିଧାପୂର ସ୍ଥାନ ନାହିଁ, ତିରସ୍କାରର ସ୍ଥାନ ନାହିଁ, ମାନାଭିମାନର ସ୍ଥାନ ନାହିଁ ଏବଂ ତାହାର ପରିପୂର୍ଣ୍ଣ ପ୍ରକାଶ କେବଳ ନୀରବ ଅଶ୍ରୁ ତ୍ୟାଗରେ ଏବଂ ଅନ୍ୟ ଜଣକ ପାଇଁ ଉତ୍ସର୍ଗୀକୃତ ପ୍ରାଣ ପ୍ରାର୍ଥନାରେ ?

ଆଜି ପଣ୍ଡିତମାନଙ୍କ ଗବେଷଣାର ଆବିଷ୍କାର ଏହି ଯେ, ବାଲ୍ମୀକିଙ୍କ ସ୍ୱରଚିତ ରାମାୟଣ ଆଦୌ ଦେବ-ଦେବୀର କାବ୍ୟ ନୁହେଁ । ସେ ଅଂଶ ଅର୍ଥାତ୍ ଆଦ୍ୟକାଣ୍ଡ ଓ ଉତ୍ତରକାଣ୍ଡ, ପରେ ଯୋଡ଼ି ଦିଆଯାଇଛି । ବାଲ୍ମୀକି-ରଚିତ ରାମାୟଣ ସଂପୂର୍ଣ୍ଣତଃ କେବଳ ମାନବ-ମାନବୀର ପରମ ଗାଥା । ଏହା କୋଟି ପ୍ରାଣକୁ ଏହି ସହସ୍ର ସହସ୍ର ବର୍ଷ ଧରି ଏପରି ଗଭୀର ଭାବରେ ସ୍ପର୍ଶକରି ଆସୁଛି ଏବଂ ଦସ୍ୟୁର ରୂପାନ୍ତର ପରି । ସହସ୍ର ସହସ୍ର ପାଠକ-ପାଠିକାର ପ୍ରାଣକୁ ମଧ୍ୟ ରୂପାନ୍ତରିତ କରି ପାରୁଛି କାରଣ, ତାହା ଲେଖା ଯାଇଛି ନରନାରୀର ଅଶ୍ରୁ ଦେଇ, ଯାହା ହିଁ ଶ୍ରେଷ୍ଠ କାବ୍ୟ-କବିତାର ସ୍ୱାଭାବିକ ମସୀ ।

ମହର୍ଷି ହୋଇ ମଧ୍ୟ ବାଲ୍ମୀକି ଭୁଲିଯାଇ ନ ଥିଲେ ତାଙ୍କର ପୂର୍ବତନ ଦସ୍ୟୁ ପରିବାରର ଘୋର ଅସତ୍ୟତା

ଓ ସ୍ୱାର୍ଥପରତା । ଆଜି ସେ ବିଶ୍ୱକୁଟୁମ୍ବିକ । ସମଗ୍ର ମାନବ ଜାତି ଆଜି ତାଙ୍କର ପରିବାର । ସେ ଏହି ପରିବାରକୁ ନୂତନ ଆଦର୍ଶରେ ଗଢ଼ିବା ପାଇଁ ବୋଧହୁଏ, ରାମାୟଣର ପରିବାରକୁ ଏପରି ତ୍ୟାଗ-ପ୍ରତିଷ୍ଠ ଓ ସତ୍ୟ-ପ୍ରତିଷ୍ଠ କରିଦେଇ ଗଲେ ଯେଉଁଠି କେବଳ ଜଣକର ସ୍ୱାର୍ଥପରତାର ବିଷମୟ ବିପର୍ଯ୍ୟୟର ବିପଶାନ୍ତରେ, ଆଜି ସମସ୍ତଙ୍କର ତ୍ୟାଗର ଜ୍ୟୋତି ବହୁଗୁଣିତ ଔଜ୍ଜଲ୍ୟରେ ଜଳିଉଠି, ଏକ ଦେବ ଲୋକ ସୃଷ୍ଟି କରିଛି, ଯେଉଁଠି ତ୍ୟାଗର ମହିମାରେ ସକଳ ଦୁର୍ଦ୍ଦଶା, ସକଳ ସଂକଟ ହୋଇ ଉଠିଛି, ମହାନ ସ୍ୱର୍ଗିକ ସାଧନା, ଯାହା ତୁଳନାରେ ସାଂସାରିକ ଭୋଗ-ସ୍ୱାଚ୍ଛନ୍ଦ୍ୟ ଏକାନ୍ତ ଜୈବ ଇତରତା ମାତ୍ର ।

ଏହିପରି ରାମାୟଣ ମହାକାବ୍ୟ କେବଳ ଏକ ଦୈତ୍ୟ-ନିଧନ-କାବ୍ୟ ମାତ୍ର ନୁହେଁ । ତାହା କେବଳ ରୂପକ ମାତ୍ର । ରାମାୟଣ ପ୍ରକୃତରେ ସାଧାରଣ ନରନାରୀର ମହାନ ପ୍ରାଣସ୍ପର୍ଶୀ କାବ୍ୟ, ଏହା ଏକ ପରମ ମନୁଷ୍ୟତ୍ୱର ଗାଥା ଏବଂ ମାନବିକ ସାଧନା ଓ ସିଦ୍ଧିର ମହାକାବ୍ୟ, ଏହାର ପଦେ ପଦେ ଆମେ ପାଇବା ଆମ ଦୈନନ୍ଦିନ ଜୀବନର ସାଧାରଣ ଦୁଃଖ-କଷ୍ଟର ମର୍ମସ୍ପର୍ଶୀ ବର୍ଣ୍ଣନା । ଏହି ସମସ୍ତ ଭିତର ଦେଇ ହିଁ ମହାନ-ସତ୍ୟ-ଦ୍ରଷ୍ଟା ଋଷି କବି ଥୋଇ ଯାଇଛନ୍ତି, ତ୍ୟାଗର, ସତ୍ୟର, ଧର୍ମର ଓ ନ୍ୟାୟର, ସ୍ୱାର୍ଥପରତା, ମିଥ୍ୟା ଅଧର୍ମ ଓ ଅନ୍ୟାୟ ଉପରେ ନିଃଶେଷ ଗୌରବାବହ ବିଜୟ । ଏହା ମଧ୍ୟ ମାନବିକ ରୂପାନ୍ତରର ମହାବଦାନ । ଏ କାବ୍ୟର ନରନାରୀ, ଶେଷରେ ସ୍ୱାଭାବିକ ଭାବରେ ହୋଇ ଉଠିଛନ୍ତି ଦେବ-ଦେବୀ, ଯେପରି ନିଜେ ମହାକବି ହୋଇ ଉଠିଥିଲେ, ନିଜ ଜୀବନରେ ।

ରାମାୟଣ ଏହି ମହାନ ମାନବିକ ସମ୍ଭାବନାର ମହାକାବ୍ୟ । ସେହି କାରଣରୁ ହିଁ ଏହା ସହସ୍ର ସହସ୍ର ବର୍ଷ ଧରି ଭାରତାତ୍ମାର ଏତେ ପ୍ରିୟ ହୋଇ ଉଠିଛି ଏବଂ ସେହିପରି ରହିବ ଯୁଗ ଯୁଗ ଧରି । ବାଲ୍ମିକୀ ଓ ତାଙ୍କ ରାମାୟଣ ଭାରତାତ୍ମାର ଶ୍ରେଷ୍ଠ ଅନୁଭବ ଓ ଶ୍ରେଷ୍ଠ ସ୍ୱପ୍ନ ।

---

# ॥ ସାହିତ୍ୟରେ ଅଶ୍ଳୀଳତା ॥

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା

ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତା ଘେନି ସମ୍ପ୍ରତି ଆମ ସାହିତ୍ୟରେ ଟିକିଏ ଅଧିକ ସଚେତନତା ସୃଷ୍ଟି ହୋଇଥିବାର ଦେଖାଯାଏ । ପଡ଼ୋଶୀ ବଙ୍ଗୀୟ ସାହିତ୍ୟରେ ଗତ ତିନି-ଚାରିବର୍ଷ ହେଲା ଏ କ୍ଷେତ୍ରରେ ବିଶେଷ ତତ୍ପରତା ପ୍ରକାଶ ପାଉଛି—ମୁଖ୍ୟତଃ ଶ୍ରୀ ସମରେଶ ବସୁଙ୍କର 'ବିବର', 'ପ୍ରଜାପତି' ଆଦି ଧରଣର ରଚନା ପ୍ରକାଶିତ ହେଲାପରେ । ସାହିତ୍ୟରେ ଅଶ୍ଳୀଳତା ସମ୍ପର୍କରେ ସଭା-ସମିତି, ଆଲୋଚନା-ବିତର୍କ, ପତ୍ରପତ୍ରିକାର ବିଶେଷାଙ୍କମାନ ପ୍ରକାଶ—ଇତ୍ୟାଦି ଦ୍ୱାରା ବଙ୍ଗଳାର ସାହିତ୍ୟିକ ବାୟୁ- ମଣ୍ଡଳ ସରଗରମ ହୋଇ ଉଠିଛି । କିନ୍ତୁ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା—ଆମେରିକା କିମ୍ବା ପାଶ୍ଚାତ୍ୟ ଦେଶମାନଙ୍କରେ ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତା ଘେନି ବର୍ତ୍ତମାନ ଆଉ ପୂର୍ବଭଳି ବିଶେଷ ଉତ୍ତେଜନା ବା ହଟଚମଟ ସୃଷ୍ଟି ହେଉନାହିଁ । ସେମାନଙ୍କ ନିକଟରେ ଏ ବିଷୟଟି ବୋଧହୁଏ ପୁରୁଣା ହୋଇ ଗଲାଣି । ଅଥବା ଅଷ୍ଟାଦଶ ଶତାବ୍ଦୀଠାରୁ ବିଷୟଟି ଉପରେ ତର୍କ-ବିତର୍କ, ବାଦ-ବିସମ୍ବାଦ କରି କରି ସେମାନେ ବୋଧହୁଏ ଥକି ପଡ଼ିଲେଣି । ୧୯୫୯ ମସିହାରେ ବିଲାତରେ Obscene Publications Act ନୂଆ ରୂପରେ ପାଶ୍ ହୋଇଗଲା ପରେ, Anglo-American Juris-prudenceଏ ବିଷୟରେ ଉଦାର ମତ ଗ୍ରହଣ କରିବାର ଜଣା ପଡ଼ୁଛି । ତେଣୁ ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତା ଘେନି ସେମାନେ ହୁଏତ ଆଉ ବିଶେଷ ମଥା ଖେଳାଇବାକୁ ଚାହୁଁ ନାହାନ୍ତି । ତାହା ଛଡ଼ା ଗ୍ରହାନ୍ତର ଯାତ୍ରା, ବିଶ୍ୱଶାନ୍ତି ଭଳି ଏହାଠାରୁ ଢେର ଦରକାରୀ ଓ ଗୁରୁତର ବିଷୟମାନଙ୍କରେ ସେମାନଙ୍କୁ ଏକ୍ଷଣି ମଥା ଖେଳାଇବାକୁ ପଡ଼ୁଛି । ଆମ ଦେଶରେ ଯେ ଦିନେ ସେହି ଅବସ୍ଥା ନ ହେବ, ତାହା କିଏ କହିବ ? ପାର୍ଲାମେଣ୍ଟରେ ଦେଓୟାନ୍ ଚମନ୍‌ଲାଲଙ୍କ ଦ୍ୱାରା ଆନୀତ ୧୯୬୩ ମସୀହାର Indian Penal Code Ammendment Bill ବିଷୟ ଆପଣମାନେ ଅବଗତ ଥିବେ । ତହିଁରେ Penal Codeର ୨୯୨-ଠାରୁ ୨୯୪ ପର୍ଯ୍ୟନ୍ତ ଅଶ୍ଳୀଳତା-ସମ୍ପର୍କୀୟ ଧାରା-ଗୁଡ଼ିକର ସଂଶୋଧନ ବ୍ୟବସ୍ଥା କରାଯାଇଛି । ଏହା କି ଭବିଷ୍ୟତର ସୂଚନା !

ଏ ଦିଗରେ ଆମେ ବର୍ତ୍ତମାନ ନୂଆ ଡାହାଣୀ ହୋଇ ଛୁଆ ଖେଳେଇଲା ଭଳି ଲାଗୁଛି । ଅବଶ୍ୟ ପୂର୍ବରୁ ରାଧାନାଥ, ମାନସିଂହ ପ୍ରଭୃତି ସାହିତ୍ୟ ସ୍ରଷ୍ଟାଙ୍କ ବିରୁଦ୍ଧରେ ଅଶ୍ଳୀଳତାର ଅଭିଯୋଗ ଆସିଥିଲା । ଏପରିକି —ମହାକବି ସାରଳାଦାସ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ ଗୁଡ଼ପାଇ ନାହାନ୍ତି । କେବଳ ସୌଭାଗ୍ୟ ବଶତଃ ସେମାନେ ବହୁ ପୂର୍ବରୁ ପରଲୋକ ଗମନ କରିଥିବାରୁ ସେମାନଙ୍କର ଅର୍ଦ୍ଧାଧିକ ଦୋଷ କଟି ଯାଇଛି । ଆଦି-ରସ, ବିଭତ୍ସ ରସାଦି ପରିବେଷଣରେ ସେମାନେ ଯେ ସ୍ଥଳ-ବିଶେଷରେ ସୀମା-ଲଙ୍ଘନ କରି ଯାଇଛନ୍ତି, ସେଥି ସକାଶେ ଏବର ମଲ୍ଲୀନାଥମାନଙ୍କ ହାତରୁ ସୁନ୍ଦର

ସୁନ୍ଦର ସଫେଇ ପାଉଛନ୍ତି । କିନ୍ତୁ ଅଶ୍ଳୀଳତା-ରୂପକ ସମସ୍ତ ଭୁଲ ଭ୍ରାନ୍ତି ବିଚାର ଏବଂ ସମକାଳୀନ ଜୀବିତ ଲେଖକମାନଙ୍କର ! ରାଧାନାଥ, ମାନସିଂହ ଏବଂ ବର୍ତ୍ତମାନ ଆଉ ଯେଉଁ ଲେଖକଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଛି କିମ୍ବା ହେଉଛି, ତାହା ବେଶିକାଳ ସ୍ଥାୟୀ ହେବ ନାହିଁ ବୋଲି ମୋର ବିଶ୍ୱାସ । ପଚିଶ ବର୍ଷ ପରେ ଏମାନେ ବା ଏମାନଙ୍କର ପ୍ରତିକୃତିଗୁଡ଼ିକ ହୁଏତ ପାଇବେ ଫୁଲମାଳ ଏବଂ ଅନୁରୂପ ଭାବରେ ଅଭିଯୁକ୍ତ ହେବେ ତତ୍କାଳୀନ ଆଉ କେତେଜଣ ନୂଆ ଲେଖକ । ଏହି ଗତାନୁଗତିକ ସ୍ରୋତ ମଧ୍ୟରେ ବର୍ତ୍ତମାନ ନୂଆ ଡାହାଣୀର ଛୁଆ ଖେଳେଇବା କଥାଟା ହିଁ ବିସ୍ମୟକର ମନେ ହେଉଛି ।

କହିବାକୁ ଗଲେ—ଆମ ପକ୍ଷରେ ସାହିତ୍ୟରେ ଅଶ୍ଳୀଳତା ସଂପର୍କୀୟ ମନୋଭଙ୍ଗୀଟି ଏକ ଧୂଆନ୍ଧକ ବ୍ୟାପାର । ଊନବିଂଶ ଶତାବ୍ଦୀରେ ବିଲାତର ଭିକ୍ଟୋରିଆନ୍ ଯୁଗ ପ୍ରଭାବରୁ ଆମେ ଏହା ଲାଭ କରିଛୁ । ବର୍ତ୍ତମାନ ଅଶ୍ଳୀଳତା ବୋଇଲେ ସାଧାରଣତଃ ଆମେମାନେ ଯାହା ବୁଝିଥାଉଁ, ପ୍ରାଚୀନ ସାହିତ୍ୟରେ ଠିକ୍ ସେହି ଅର୍ଥରେ ଅଶ୍ଳୀଳତା ନ ଥିଲା । ଆଜି ମଧ୍ୟ ଏ ଦେଶର ବହୁଲୋକ—ଯେଉଁମାନେ ଆଧୁନିକ ଶିକ୍ଷାଦୀକ୍ଷା ସଂସର୍ଗରେ ଆସି ନାହାନ୍ତି, ସେମାନେ ଅଶ୍ଳୀଳତାକୁ ସେହି ଅର୍ଥରେ ଗ୍ରହଣ କରନ୍ତି ନାହିଁ । ପ୍ରାୟ ପଚାଶ ବର୍ଷ ତଳର ମୋ ପିଲାଦିନ କଥା ମନେ ପଡ଼ୁଛି । ମା-ମାଉସୀ, ବାପ-ଦାଦା ପ୍ରମୁଖ ଗୁରୁଜନମାନଙ୍କ ମେଳରେ ଅନେକ ଥର ପାଲା ଓ ଯାତ୍ରାଭିନୟ ଦେଖିଛି । ଯାତ୍ରାର ଦୁଆରୀ ଅଥବା ପାଲାର ବାହାଣ ଓ ପାଳିଆମାନେ ଅଭିନୟ କରି ଯେଉଁସବୁ କଥା କହୁଥିଲେ, ତାହା ବର୍ତ୍ତମାନ ମୋ ପକ୍ଷରେ ବସି ଶୁଣିବା କଠିନ ହୁଅନ୍ତା ! ସେତେବେଳେ କିନ୍ତୁ ମୋର ଗୁରୁଜନମାନେ ପିଲାପିଲିଙ୍କ ସାଙ୍ଗରେ ଯେନ ତାହାସବୁ ଉପଭୋଗ କରୁଥିଲେ । ଅଭିଯୋଗର ସ୍ୱର କେବେ କେଉଁଠି ଶୁଣାଯାଉ ନ ଥିଲା । ସେହି ଦୃଷ୍ଟିରୁ ଆମର ପୁରାଣମାନଙ୍କରେ ବର୍ଣ୍ଣିତ ମୁନିଋଷି, ଦେବତା, ଦାନବମାନଙ୍କର ବହୁ ଅପକର୍ମ—ଯାହା ବର୍ତ୍ତମାନ ପରିସ୍ଥିତିରେ ଘୋର ଅଶ୍ଳୀଳ ବୋଲି ବିବେଚିତ ହୋଇପାରେ, ତାହାସବୁ ପାରିବାରିକ ପରିସର ମଧ୍ୟରେ ପଠିତ ଓ ଆଲୋଚିତ ହେଉଥିଲା । ବଡ଼-ସାନ କେହି ସେଥିଲାଗି ନାସିକା କୁଞ୍ଚନ କରୁ ନ ଥିଲେ । ଭଞ୍ଜ ତଥା ବୈଷ୍ଣବ କାବ୍ୟ-କବିତା ସଂପର୍କରେ ମଧ୍ୟ ସେହି ଏକା କଥା । ପାଶ୍ଚାତ୍ୟ ଦେଶର ପ୍ରାଚୀନ ସାହିତ୍ୟମାନଙ୍କରେ ସେହିପରି ବର୍ତ୍ତମାନ ଅର୍ଥରେ ଅଶ୍ଳୀଳତା କଥାଟି ଗୃହୀତ ହେଉ ନ ଥିବାର ଜଣାପଡ଼େ । ଗ୍ରୀକ୍ ଓ ଲାଟିନ୍ ସାହିତ୍ୟରେ Sodomy,-Lesbianism ଆଦି ସମକାମିତାର ଚିତ୍ର, ପୁରୁଷାଙ୍ଗ ବନ୍ଦନା, ନାରୀ ଦେହ ଯୌନ ରମଣ ସୁଖ ବର୍ଣ୍ଣନା ପ୍ରଭୃତି ଭୂରି ଭୂରି ଦେଖିବାକୁ ମିଳେ । ଏ ଦିଗରେ ଫରାସୀ ସାହିତ୍ୟ ସବୁଠାରୁ ବେଶୀ ଚମକ ସୃଷ୍ଟି କରିଛି । ଏପରି କି ଇଂରାଜୀ ସାହିତ୍ୟରେ ଷୋଡ଼ଶ-ସପ୍ତଦଶ ଶତାବ୍ଦୀରେ ସେକ୍ସପିଅରଙ୍କ ସାହିତ୍ୟ ସୃଷ୍ଟିରେ ଥିବା ବହୁ ଉଲ୍ଲେଖଯୋଗ୍ୟ ଅଂଶ ପ୍ରତି ଅଭିଯୋଗ ଆସି ନ ଥିଲା । ପରେ ଅବଶ୍ୟ ୧୯୪୭ ମସିହାରେ Shakespeare's Bawdy ଗ୍ରନ୍ଥ ପ୍ରକାଶ ପାଇଥିବା କଥା ଆପଣମାନେ ଜାଣନ୍ତି । ତାହାହେଲେ, ବର୍ତ୍ତମାନ ସାହିତ୍ୟରେ ଅଶ୍ଳୀଳତା କଥାଟି କେଉଁ ଅର୍ଥରେ ଗୃହୀତ ହେଉଛି ? 'ଅଶ୍ଳୀଳ' ଶବ୍ଦର ଅର୍ଥ ଅସୁନ୍ଦର, ଅର୍ଥାତ୍ ଯାହା ଶ୍ରୀସଂପନ୍ନ ବା ସୌନ୍ଦର୍ଯ୍ୟଯୁକ୍ତ ନୁହେଁ । ଅର୍ଥଲୋଭ, କ୍ଷମତାମୋହ ଅସ୍ପୃଶ୍ୟଭାବ, ପରପୀଡ଼ନ ପ୍ରଭୃତି ଜଗତର ବହୁ ବିଷୟ ସାଧାରଣ ଦୃଷ୍ଟିରେ ଅସୁନ୍ଦର । କିନ୍ତୁ ଏହିସବୁ ବିଷୟର ଚିତ୍ରଥିବା ସାହିତ୍ୟକୁ ଆମେ ତ କାହିଁ ଅଶ୍ଳୀଳ ବୋଲି କହୁ ନା ! 'ଅଶ୍ଳୀଳ' କଥାଟିର ଇଂରାଜୀ ପରିଭାଷା ରୂପେ 'Obscene' ଶବ୍ଦ ଗୃହୀତ ହୋଇଥାଏ । ଏହି ଶବ୍ଦଟି ଲାଟିନ୍ 'Obscenus' ଶବ୍ଦରୁ ଉତ୍ପତ୍ତି, ଭାଷାତତ୍ତ୍ୱବିଦ୍‌ମାନଙ୍କ ମତରେ ଯାହାର ଅର୍ଥ ହେଉଛି—Off the scene କିମ୍ବା Off the stage.

ଅର୍ଥାତ୍ ରଙ୍ଗମଞ୍ଚରେ ଯାହା ପ୍ରଦର୍ଶିତ ହେବାର ନୁହେଁ । ଏହି ଦୃଷ୍ଟିରୁ ହତ୍ୟା, ଯୁଦ୍ଧ ବିଗ୍ରହ ଇତ୍ୟାଦି Obscene ବୋଲି ବିବେଚିତ ହେବ, କାରଣ ଏହାସବୁ ରଙ୍ଗମଞ୍ଚରେ ପ୍ରଦର୍ଶିତ ହୋଇ ପାରିବ ନାହିଁ । କିନ୍ତୁ ପ୍ରକୃତରେ ଏଗୁଡ଼ିକ କଣ Obscene ବିବେଚିତ ହେଉଛି ? ତେଣୁ 'ଅଶ୍ଳୀଳତା' ବର୍ତ୍ତମାନ ଏକ ନିର୍ଦ୍ଦିଷ୍ଟ ଅର୍ଥରେ ଗୃହୀତ ହେଉଥିବା କଥା ସୁସ୍ପଷ୍ଟ । ତାହା ହେଉଛି—ଯୌନାତିଶଯ୍ୟର ପ୍ରକାଶ କିମ୍ବା କାମଭାବର ନଗ୍ନ ବର୍ଣ୍ଣନା ।

ଦୁଃଖର ବିଷୟ—ଆମର Penal Code ଅଶ୍ଳୀଳତା ପାଇଁ ଦଣ୍ଡ ବିଧାନର ବ୍ୟବସ୍ଥା କରିଥିଲେ ମଧ୍ୟ, ଅଶ୍ଳୀଳତାର ସଂଜ୍ଞା ବା ବ୍ୟାଖ୍ୟା ନିର୍ଦ୍ଦିଷ୍ଟ କରି ପାରିନାହିଁ । ଆମେରିକା ଓ ପାଶ୍ଚାତ୍ୟ ଦେଶମାନଙ୍କର ଆଇନ୍ ଶାସ୍ତ୍ରରେ ପ୍ରାୟ ସେହି ଏକା ଅବସ୍ଥା । ସେଥିପାଇଁ ବିଚାରପତିମାନଙ୍କର ଖିଆଲ-ଖୁସି ଓ ବ୍ୟକ୍ତିଗତ ରୁଚିର ମାନଦଣ୍ଡରେ ଅଶ୍ଳୀଳତା ନିରୂପିତ ହୋଇଛି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଭିଯୋଗରେ ନାନା-ମୁନିଙ୍କର ନାନା ମତ ପ୍ରକାଶ ପାଇଛି । ଡି.ଏଚ୍. ଲରେନ୍‌ସଙ୍କର Lady Chatterley's Lover ଉପନ୍ୟାସଟି ଏହାର ପ୍ରକୃଷ୍ଟ ଉଦାହରଣ । ବିଳାତ ଓ ଯୁକ୍ତରାଷ୍ଟ୍ର ଆମେରିକାର ବିଚାରପତିମାନେ ଏହାକୁ ନିଜ ନିଜ ଦୃଷ୍ଟିକୋଣରୁ ବିଚାର କରି ଅଭିଯୋଗମୁକ୍ତ କରିଥିଲେ ହେଁ ଭାରତର ବିଚାରପତିଙ୍କ ଦ୍ୱାରା ଏହା ଏପର୍ଯ୍ୟନ୍ତ ଅଭିଯୋଗମୁକ୍ତ ହୋଇ ପାରିନାହିଁ । ପୁଣି ସବୁଠାରୁ ମଜାର କଥା ହେଉଛି—ସାହିତ୍ୟରେ ଅଶ୍ଳୀଳତା ବିଷୟକ ଅଧିକାଂଶ ଆଇନ-ବିଚାର, ପରେ ଭୁଲ୍ ବୋଲି ପ୍ରତିପାଦିତ ହୋଇଛି; ନିଷିଦ୍ଧ ଗ୍ରନ୍ଥମାନ ପରେ ଅନ୍ୟ ବିଚାରପତିଙ୍କ ଦ୍ୱାରା ଅଭିଯୋଗମୁକ୍ତ ହୋଇ ପାଠକ-ସମାଜରେ ସୁପ୍ରଚାରିତ ଓ ସୁପ୍ରତିଷ୍ଠିତ ହୋଇପାରିଛି ।

ତଥାପି ଆଇନର ଲକ୍ଷ୍ୟ କ'ଣ, ତାହା ଆମେ ଜାଣୁ । ଯେଉଁ ଯୌନ ବିଷୟକ ରଚନା ପାଠକ-ସମାଜ ମନରେ ବିଶେଷ କାମଭାବ ଉଦ୍ରେକ କରାଇ ମଣିଷକୁ ଭ୍ରଷ୍ଟ କରିବାର ସମ୍ଭାବନା—ତାହାର ସୃଷ୍ଟି, ପ୍ରକାଶ ଓ ପରିପ୍ରଚାରକୁ ରୋକିବା ଆଇନର ଉଦ୍ଦେଶ୍ୟ । ଏ ଉଦ୍ଦେଶ୍ୟ ଅତି ମହତ୍—ସନ୍ଦେହ ନାହିଁ । କିନ୍ତୁ କାର୍ଯ୍ୟତଃ ଦେଖା ଯାଉଛି—କେତେକ ମହତ୍ ସାହିତ୍ୟ ସୃଷ୍ଟି ଆଇନ ବଳରେ ନିଷିଦ୍ଧ ହୋଇ ରହୁଛି ଏବଂ ପ୍ରକୃତରେ ଯୌନ-ବିସ୍ଫୋରକ କୁପ୍ରଭାବ ଉଦ୍ରେକକାରୀ ରଚନାଗୁଡ଼ିକ ଅବାଧରେ ପ୍ରଚାର ଲାଭ କରୁଛି ।

ଏଠାରେ ଆଉ ଗୋଟିଏ ପ୍ରଶ୍ନ ଉଠୁଛି । କେଉଁ ଭଳି ଯୌନ ବିଷୟକ ରଚନା ପାଠକ ମନରେ କାମଭାବ ଉଦ୍ରେକ କରାଇ ତାକୁ ଭ୍ରଷ୍ଟ କରିବାର ସମ୍ଭାବନା, ତାହା ଜାଣିବାର ଉପାୟ କ'ଣ ? କିଏ ବା ତାହା ସ୍ଥିର କରିବ ? ବିଚାରପତିମାନଙ୍କ କଥା ତ ପୂର୍ବରୁ କହିଲି ! ତାହାହେଲେ ପାଠକ ସମାଜର ଗଣଭୋଟ ? କିନ୍ତୁ ସମାଜରେ ଦେଖୁଛୁ ପ୍ରତ୍ୟେକ ବ୍ୟକ୍ତିର ମନ ସ୍ୱତନ୍ତ୍ର—ରୁଚିବୋଧ ମଧ୍ୟ ସ୍ୱତନ୍ତ୍ର । ଗୋଟିଏ ଗ୍ରନ୍ଥ ମୋ ମନରେ ଯୌନ ଉତ୍ତେଜନା ସୃଷ୍ଟି କରିପାରେ, କିନ୍ତୁ ଆପଣଙ୍କ ମନରେ ତାହାର ସେପରି କିଛି ପ୍ରତିକ୍ରିୟା ପଡ଼ି ନ ପାରେ, ଅଧିକନ୍ତୁ ଆପଣଙ୍କୁ ତାହା ଭଲ ଲାଗିପାରେ । କିଛିଦିନ ତଳେ ମୋର ଜଣେ ବୟସ୍କ ବନ୍ଧୁ 'ଉନ୍ମାଦିନୀ ଲତିକା' ବୋଲି ଖଣ୍ଡିଏ ବହି ପଢ଼ି ଅସୁବିଧାରେ ପଡ଼ିଥିବା କଥା ମୋତେ ଏକାନ୍ତରେ କହିଥିଲେ । ବହିଟି ମୁଁ ନିଜେ ଆଣି ପଢ଼ିଲି । ପଢ଼ୁ ପଢ଼ୁ ମୋର ହାଇ ଆସିଲା—ବିରକ୍ତ ବୋଧହେଲା । ସେହି ବନ୍ଧୁଟି ପୁଣି ନିୟମିତ ଶସ୍ତା ହିନ୍ଦୀ ଫିଲ୍ମମାନ ଦେଖି ଆଦୌ ବିକାରଗ୍ରସ୍ତ ହେଉ ନ ଥିବା କଥା ମୋ ଆଗରେ ବ୍ୟକ୍ତକଲେ । କିନ୍ତୁ ସେହିଭଳି ଫିଲ୍ମଗୁଡ଼ିକ ଦେଖି ମୋ ଚିତ୍ତରେ ବିଶୃଙ୍ଖଳା ସୃଷ୍ଟି ହେଉଥିବା ବିଷୟ ସ୍ୱୀକାର କରିବାରେ ମୁଁ କୁଣ୍ଠିତ ନୁହେଁ । ଏହି ପ୍ରସଙ୍ଗରେ ବିଖ୍ୟାତ ବଙ୍ଗୀୟ କବି ଶ୍ରୀବୁଦ୍ଧଦେବ ବସୁଙ୍କର ଗୋଟିଏ କଥା ମନେ ପଡ଼ୁଛି । କେତେବର୍ଷ ତଳେ ଶ୍ରୀବସୁଙ୍କର ଗୋଟିଏ ଉପନ୍ୟାସ

ଅଶ୍ଳୀଳତା ଅଭିଯୋଗରେ କଲିକତା ପୋଲିସ୍‌ର କଡ଼ା ନଜରରେ ପଡ଼ିଥିଲା । ବୃଦ୍ଧଦେବବାବୁ ଜଣେ ନାମଜାଦା ଇଂରାଜୀ ବାରିଷ୍ଟରଙ୍କ ସହିତ ପରାମର୍ଶ କରିବାକୁ ବାରିଷ୍ଟର୍ ଜଣକ ତାଙ୍କୁ ସାଙ୍ଗରେ ନେଇ ପୋଲିସ ସହିତ ଗୋଟାଏ ମୁକାବିଲା କରିଦେବା ଲାଗି ବାହାରିଲେ । ତା’ ପର ଘଟଣା ସ୍ୱୟଂ ବୃଦ୍ଧଦେବବାବୁଙ୍କ ଭାଷାରେ ଉଲ୍ଲେଖ କରୁଛି—“ଟ୍ୟାକ୍‌ସିରେ ଲାଲବାଜାରରେର ଦିକେ ଯେତ ଯେତ ବ୍ୟାରିଷ୍ଟାର ଆମାକେ ଜିଗେସ୍ କରିଲେନ୍—ଆପନି ଲିଖେଛିଲେନ୍ କି, ବଲୁନ୍ ତୋ ? ଆମି ,ଲେଖକୋଚିତ ବିନୟେର୍ ସଙ୍ଗେ ଯବାବ୍ ଦିଲୁମ୍—କିଛୁଇ ନା । ଏଇ ଛେଲେ-ମେୟେଦେର୍ ଭାଲୋବାସାବାସିର୍ ଗଳ୍ପ, ଆର କି ?· ଆଁ—ଶୂନ୍ୟେ ହାତ୍ ଛୁଁଡ଼େ ଆ’ତକେ ଉଠଲେନ୍ ବାରିଷ୍ଟାର ସାହେବ—Love between unmarried boys and girls ! ଓ ସବ୍ ଆପନି ଲିଖତେ ଗିୟେଛିଲେନ କେନ ? ଓ କି ସେକ୍‌ସପିୟର ଲିଖେଛେ, ନା ମିଲ୍‌ଟନ ଲିଖେଛେ ! ଆମରା ତୋ ବିଲେତେ ଷ୍ଟୁଡେଣ୍ଟ୍ ଛିଲୁମ୍—କଇ, ସେଖାନେ ତୋ ଓ ରକମ୍ କିଛୁ ଦେଖିନି । Love between unmarried···କି ସାଂଘାତିକ୍ ! ଏର୍ ପରେ ଆର୍ ଆମାର୍ ମୁଖେରା ସରଲୋ ନା । ଆମାର ବଇଖାନାର କୟେକ ବଛରେର୍ ଜନ୍ୟ କବର୍ ହୟେ ଗେଲ । ପରେ ଯଖନ ଆବାର ବେରୁଲୋ, ଆମାର୍ ଏକ୍ ବନ୍ଧୁର୍ ବାରୋ ବଛରେର୍ ମେୟେ ତା’ ପଡ଼େ ବଲେ ଉଠଲୋ—ଓ ମା, ଏତେ ଆବାର୍ ଦୋଷେର୍ କି ଆଛେ ! ଏ ତୋ ଡାଲଭେର୍ ଜଲ !”—(ନରନାରୀ—ବିଶେଷାଙ୍କ —ମେ ୧୯୬୮)

ସାହିତ୍ୟରେ ଯୌନାତିଶଯ୍ୟ ‘ଡାକଘାଣି’ ହେଉ, ଅଥବା ‘ଡାକପାଣି’ ହେଉ, ଏହା ଯେ ସବୁବେଳେ ସବୁ ପରିସ୍ଥିତିରେ ପାଠକକୁ ଭ୍ରଷ୍ଟ ହେବାଲାଗି ଉତ୍ତେଜିତ କରିବ, ଏହାର କିଛି ଅର୍ଥ ଅଛି କି ? ଏଠାରେ ଯୁକ୍ତି ଛଳରେ ବୋଲାଯାଇପାରେ ଯେ—ସମାଜରେ ଯେଉଁମାନେ ବିଭିନ୍ନ ପ୍ରକାର ଅପରାଧ କରନ୍ତି, ସେମାନେ କ’ଣ ବହି ପଢ଼ି ତାହା କରି ଥାଆନ୍ତି ? କାଳିଦାସ, ଜୟଦେବ ପଢ଼ି କେହି ଭ୍ରଷ୍ଟ ହୋଇଥିବାର ଜଣାନାହିଁ—ଭଞ୍ଜ, ଅଭିମନ୍ୟୁ, ଗୋପୀନାଥ ପଢ଼ି କେହି ଅପରାଧପ୍ରବଣ ହୋଇଥିବାର ପ୍ରମାଣ ନାହିଁ । ତେଣୁ ଏକର ସେକ୍ସ-ଜ.ଗସୁ ସାହିତ୍ୟ ପଢ଼ିଲେ, ପାଠକ କଅଣ ଖରାପ ହୋଇଯିବ, ବୃଦ୍ଧି ହେଉନାହିଁ । ତାହା ବ୍ୟତୀତ ଖରାପ ହେବାପାଇଁ ଗ୍ରନ୍ଥ ପାଠ କ’ଣ ଏକମାତ୍ର ପଥ ? ଯୌନ ବ୍ୟାପାରରେ ଉନ୍ମାର୍ଗଗାମୀ ହେବାଲାଗି ଆମର ଘରେ, ବାହାରେ ବହୁପଥ—ଅଜସ୍ର ଉପାଦାନ । ବଗିଚାରେ ଫୁଲରୁ ଫୁଲକୁ ଉଡ଼ି ଭ୍ରମର ମଧୁ ଚୁମ୍ବନ କରୁଛି । ଅଗଣାରେ ସାରାଦିନ କୁକ୍‌କୁଟ-କୁକ୍‌କୁଟୀଙ୍କର ରତିଲୀଳା ଚାଲିଛି—ବାଡ଼ି ଦୁଆରେ କୁକୁର-କୁକ୍‌କୁରୀଙ୍କର । ରାସ୍ତା ଘାଟରେ ସିନେମା ତାରକାମାନଙ୍କର ଯୌନ ଉଦ୍ଦୀପକ ଅଙ୍ଗଭଙ୍ଗୀଯୁକ୍ତ ପୋଷ୍ଟର ଏବଂ ନଗ୍ନ ବା ଅର୍ଦ୍ଧନଗ୍ନ ସାଧୁ-ସନ୍ନ୍ୟାସୀଙ୍କ ମେଳା । ଦେବାଳୟ ଗାତ୍ରରେ ପ୍ରସ୍ତର-ଖୋଦିତ ନର-ନାରୀଙ୍କର ମୈଥୁନ ଭଙ୍ଗୀ ଏବଂ ଭିତରେ ଶକ୍ତିଯୁକ୍ତ ଲିଙ୍ଗ ! ଆଉ ଉଦାହରଣ ବଢ଼ାଇ ଲାଭ ନାହିଁ । ବର୍ତ୍ତମାନ ମୋର କହିବାର କଥା—ଯଦି ଏ ଧରଣର ସାହିତ୍ୟ ସୃଷ୍ଟିକୁ ପୂରାପୂରି ବନ୍ଦକରି ଦିଆଯାଏ, ତାହାହେଲେ ସମାଜରେ ଭ୍ରଷ୍ଟତା, ଅପରାଧ-ପ୍ରବଣତା ବନ୍ଦହୋଇ ଯିବ କି ? ନୈବ ନୈବ ଚ ! ତେଣୁ କେବଳ ସାହିତ୍ୟ ପ୍ରତି ତର୍ଜନୀ ନିର୍ଦ୍ଦେଶ କରିବା ଆଦୌ ଉଚିତ ହେବ ନାହିଁ ମୋର ଦୃଢ଼ ବିଶ୍ୱାସ—ସ୍ୱାଭାବିକ ମନ ଓ ଚିତ୍ତବୃତ୍ତି-ସମ୍ପନ୍ନ ସାଧାରଣ ପାଠକ ପକ୍ଷରେ ତଥାକଥିତ ଅଶ୍ଳୀଳ ସାହିତ୍ୟ କ୍ଷତିକାରକ ନୁହେଁ ।

ସୁଧୀବୃନ୍ଦ, ସାହିତ୍ୟରେ ଯୌନାତିଶଯ୍ୟକୁ ମୁଁ ସମର୍ଥନ କରୁଛି ବୋଲି ଆପଣମାନେ ବୁଝିବେ ନାହିଁ । ମୁଁ ବରାବର ଅଶ୍ଳୀଳତା ବିପକ୍ଷରେ । ବର୍ତ୍ତମାନ ସାହିତ୍ୟ କଳା ଦୃଷ୍ଟିରୁ କଥାଟି ବିଚାର କରାଯାଉ !

ଜୀବନ ତଥା ସମାଜର ଅନ୍ୟାନ୍ୟ ଦଶଟା ଭାବ ବା ଘଟଣା ଭଳି, ସାହିତ୍ୟରେ ଅବର୍ଜ୍ୟ ଯୌନତାର ଚିତ୍ର ରହିବ —ଯେପରି ରହିଛି ପ୍ରାଚୀନ କାଳରୁ ବିଭିନ୍ନ ଦେଶର ସାହିତ୍ୟରେ । ତାହାଦ୍ୱାରା ସାହିତ୍ୟର ହାନି ମାତ୍ର ହୋଇନାହିଁ କି ହେବନାହିଁ ଏବଂ ମାତ୍ର ହେବାର ବି କୌଣସି କାରଣ ନାହିଁ । ମୁଁ ଏଠାରେ ଆଜ ଏହି ସୁଧୀଜନ ସମାବେଶରେ ଦୃପ୍ତ କଣ୍ଠରେ ଘୋଷଣା କରିବାକୁ ଚାହେଁ — ସୁସ୍ଥ ଓ ସଭ୍ୟ ଜୀବନ ଯାପନ ପାଇଁ ଯୌନାଚାର ପ୍ରତିବନ୍ଧକ ନୁହେଁ, ବରଂ ପରିପୂରକ । ସଂସ୍କୃତି ଓ ଯୌନତା ମଧ୍ୟରେ ବିରୋଧ ନାହିଁ । ଯୌନ-ବିଷୟକ ସାହିତ୍ୟ ଅନ୍ୟାନ୍ୟ ବିଷୟକ ସାହିତ୍ୟ ଭଳି ଏକ ଶିଳ୍ପକର୍ମ । କିନ୍ତୁ ଅନ୍ୟ ପାଞ୍ଚଟା କଞ୍ଚାମାଲ୍ ଭଳି ଏହି ଯୌନ-କଞ୍ଚାମାଲଟିକୁ ସାହିତ୍ୟର ବ୍ୟବହାର୍ଯ୍ୟ ଦ୍ରବ୍ୟରେ ପରିଣତ କରିବା ଆବଶ୍ୟକ । ସାହିତ୍ୟ ମଧ୍ୟରେ ଯୌନାତିଶଯ୍ୟ ଅଥବା ଯୌନାଚାରର ଅତ୍ୟନ୍ତ ସ୍ଥୂଳ ଓ ନଗ୍ନ ବର୍ଣ୍ଣନା, ଶିଳ୍ପକଳା ତଥା ସାମାଜିକତା—ଉଭୟ ଦୃଷ୍ଟିରୁ ନିନ୍ଦନୀୟ । ଅନ୍ୟାନ୍ୟ ଉପାଦାନ ଭଳି ଏହି ଯୌନ ଉପାଦାନର ସୂକ୍ଷ୍ମ ଓ କଳାମଣ୍ଡିତ ଚିତ୍ର ଲେଖା ମଧ୍ୟରେ ପରିସ୍ଫୁଟ ନ ହେଲେ, ସେହି ଲେଖା ସାହିତ୍ୟ-ପଦବାଚ୍ୟ ହେବ କିପରି ? ତେଣୁ ଯାହା ପ୍ରକୃତ ସାହିତ୍ୟ-କୃତି, ତାହା ଅଶ୍ଳୀଳ ନୁହେଁ ଏବଂ ଯାହା ପ୍ରକୃତରେ ଅଶ୍ଳୀଳ, ତାହା ସାହିତ୍ୟ-କୃତି ନୁହେଁ ।

ଆଜକୁ ପ୍ରାୟ ଅଶୀବର୍ଷ ତଳେ ଅଶ୍ଳୀଳତା ଦୋଷରେ ଅଭିଯୁକ୍ତ ହୋଇ ( The Picture of Dorian Gray ପୁସ୍ତକ ଲାଗି ) ଲେଖକ ଓସ୍କାର ଓ୍ୱାଇଲଡ ବିଚାରାଳୟର କାଠଗଡ଼ା ମଧ୍ୟରୁ ଯେଉଁ ଐତିହାସିକ ଘୋଷଣା କରିଥିଲେ, ତାହା ହିଁ ବୋଧ-ହୁଏ ଏ ସମ୍ପର୍କରେ ଚରମ କଥା । ( 'There is no such thing as a moral or an immoral book. Books are well-written or badly written. That is all.'' ବାସ୍ତବିକ୍ ସାହିତ୍ୟରେ କଳାଗତ ପ୍ରକାଶ ଭଙ୍ଗୀ ହିଁ ଅସଲ କଥା । କବି ଜାଣିଲେ, କଥା ସୁନ୍ଦରଂ ସେହିପରି ଲେଖି ଜାଣିଲେ, ଯୌନ-ବିଷୟକ ସାହିତ୍ୟ ଶ୍ଳୀଳ ଓ ସୁନ୍ଦର । ଭଞ୍ଜ ସାହିତ୍ୟର ସ୍ଥଳ-ବିଶେଷରେ ଏହାର ଚମତ୍କାର ଦୃଷ୍ଟାନ୍ତ ରହିଛି ।

"ଯାଇଁ ଏକାନ୍ତେ ଯତ୍ନେ ଚନ୍ଦ୍ରବେଶୀ
ଜଙ୍ଘା ସନ୍ଧିକି ସେ ଦୃଷ୍ଟି ନିବେଶି ।
ବିମ୍ବ ସ୍ଫଟିକ ବାଡ଼ରେ ଯେସନ
ଫୁଲ ମନ୍ଦାର ତେମନ୍ତ ପ୍ରସନ୍ନ ॥
ଚୂର୍ଣ୍ଣ ଭୂମିରେ ମଣ୍ଡଳ ଆକାରେ
ଦ୍ରାବ ଶୃଙ୍ଗଳା ତାଳଙ୍କ ପ୍ରକାରେ ।
ଦେଖି ସୁଖୀ ହୋଇ ଆନ ବସନ
ପିନ୍ଧୁ ହେଲା ସୁରପୁର ଦର୍ଶନ ॥
ହେମ ପଦକରେ କାମ-ବଣିକ
କଲା ନାୟକ କି ଦିବ୍ୟ ମାଣିକ୍ୟ ।
ଯୁବା ଜପକୁ ପାର୍ଶ୍ୱରେ ସଙ୍କଳ୍ପ
କରେ କର, ବିମ୍ଭେ ନାହିଁ ବିକଳ୍ପ ॥
ଯଉବନ ମାଳୀ ସ୍ତନ ଶମ୍ଭୁରେ
ପୂଜା ବିଧି ସାରି ଦିବ୍ୟ କମ୍ବୁରେ ।
ପାରିଜାତ ପ୍ରସାଦ କି ଥୋଇଛି
ସେହି ପ୍ରକାରେ ରୁଚିର ହୋଇଛି ॥
ବାଳ ଭାନୁ ଜାନୁ-ଗିରି ଗୁହାରେ
ସ୍ଥିତ ତା' ଭାନୁ କି ଆଗ ବାହାରେ ॥
ଅଧୋମୁଖରୁ ଶୋଣିତ ବମନ
କଚ୍ଛପ କି କରଇ ଯେନ ମନ ॥

'ଲାବଣ୍ୟବତୀ' ତୃତୀୟ ଛାନ୍ଦର ଏହି ଯୌନ ବର୍ଣ୍ଣନା କଳାଗତ ପ୍ରକାଶ ଭଙ୍ଗୀ ବଳରେ ରସୋତ୍ତୀର୍ଣ୍ଣ ହୋଇ ଉଠିଛି । ଏହି ଶ୍ଳୋକଗୁଡ଼ିକୁ ଯଦି ସାଧାରଣ ଭାଷାରେ ବୁଝାଇ ଦିଆଯାଏ, ତାହା ଆମ୍ଭମାନଙ୍କୁ ନିଶ୍ଚୟ ଅଶ୍ଳୀଳ ବୋଧ ହେବ । ପୁଣି ଏହି କଳାଗତ ପ୍ରକାଶ ଭଙ୍ଗୀର କାଉଁରୀ. କାଠି ବାଜି ନ ଥିବାରୁ ଭଞ୍ଜ-ସାହିତ୍ୟର କେତେକ ସ୍ଥାନରେ ଯୌନ ବିଷୟକ ଚିତ୍ର ଅତ୍ୟନ୍ତ ନଗ୍ନ ଓ ସ୍ଥୂଳ ହୋଇ ଉଠିଛି । ତେଣୁ

ତାହା ଅଶ୍ଳୀଳ ବୋଲି ସ୍ୱୀକାର କରିବାରେ ଦ୍ୱିଧା ନାହିଁ । 'ପ୍ରେମ ସୁଧାନିଧି' କାବ୍ୟର ତୃତୀୟ ଏବଂ ଷଷ୍ଠ ସ୍ଥଳରେ ଆପଣମାନେ ତାହାର ଉଦାହରଣ ପାଇ ପାରିବେ ।

ସାଂପ୍ରତିକ କାଳରେ ଆମ ରାଜ୍ୟରେ ଯୌନ ଚିନ୍ତ-ସମ୍ବଳିତ ରସୋତ୍ତୀର୍ଣ୍ଣ ସାହିତ୍ୟର ଯେପରି ଅଭାବ ନାହିଁ, ସେହିପରି ଅଭାବ ନାହିଁ ଯୌନାଙ୍ଗର ସ୍ଥୂଳ ନଗ୍ନଚିତ୍ର ଥିବା ରଚନାର । ପୂର୍ବାପେକ୍ଷା ସବୁଠାରୁ ... ଉଣାଧିକେ ଏଇ ଅବସ୍ଥା । ୧୯୭୨ ମସିହାରେ ପ୍ରକାଶିତ 'ଇନ୍ଦ୍ରାୟୁଧ' କାବ୍ୟ ଗ୍ରନ୍ଥରୁ ଏଠାରେ ଗୋଟିଏ ଉଦାହରଣ ଦିଏ—

"ଆକାଶ !
ଆଲିଙ୍ଗନ କର ମୋତେ !
ଧରିତ୍ରୀ !
ଚୁମ୍ବନ କର ମୋର ଶିର !
ତା'ର କେଶର ଆକାଶରେ
ମୁଁ ଆଜି ଫୁଟାଏଁ ସହସ୍ର ତାରା
ଚୁମ୍ବନର ।
ତା'ର ବୁକୁର ବୀଣାରେ
ମୁଁ ଫୁଟାଏଁ ସହସ୍ର ସୁର
ସ୍ପର୍ଶର ।
ତା'ର ଅନ୍ତର-ମନ୍ଦିରରେ
ମୁଁ ଦିଏଁ ପୁଷ୍ପାଞ୍ଜଳି
ସହସ୍ରବାର
କାମନାର !"

ଏ କବିତାର ବିଷୟ ଅତି ସାଧାରଣ ଓ ସୁସ୍ପଷ୍ଟ । ସେହି ସାଧାରଣ କଥାଟିର ସ୍ଥୂଳ ଓ ବହିଃରଙ୍ଗ ବର୍ଣ୍ଣନା ଆପଣମାନେ ଏଠାରେ ପାଇବେ ନାହିଁ । ଆମ ସାହିତ୍ୟରେ ଏହା ଅନ୍ୟତମ ଅପୂର୍ବ କଳାମଣ୍ଡିତ ଯୌନଚିତ୍ର । ଏହା ପାଠକ ମନକୁ କଳୁଷିତ କରିବା ପରିବର୍ତ୍ତେ ଏକ ନୂତନ ଭାବ-ରାଜ୍ୟକୁ ନେଇଯିବ । ଏହାକୁ ଆପଣମାନେ ଅଶ୍ଳୀଳ ବୋଲି କହି ପାରିବେ କି ?

ଗତ କେତେବର୍ଷ ହେଲା ଆମ ରାଜ୍ୟରେ ଏପରି କେତେକ ରଚନା ପ୍ରକାଶ ପାଉଛି, ଯାହା ବିରୁଦ୍ଧରେ ମଝିରେ ମଝିରେ ଆପତ୍ତି ଅଭିଯୋଗ ଶୁଣିବାକୁ ମିଳୁଛି । ସେଇଭଳି କେତେକ ଲେଖା ମଧ୍ୟ ମୋ ନଜରରେ ପଡ଼ୁଛି । ଏଠାରେ ପୁସ୍ତକ କଥା ବାଦ୍ ଦେଇ କେବଳ ପତ୍ରପତ୍ରିକା କଥା କହେଁ କାରଣ ପତ୍ରପତ୍ରିକାରୁ ଏକାବେଳେ ଏକାଧିକ ବହୁ ସ୍ରଷ୍ଟାଙ୍କର ସୃଷ୍ଟି ବିଷୟରେ ପରିଚୟ ମିଳି ପାରିବ । ସମ୍ବଲପୁରରୁ ପ୍ରକାଶିତ 'ଅଜନ୍ତା', କଟକରୁ ପ୍ରକାଶିତ ଝଙ୍କାର, ବାଲେଶ୍ୱରରୁ ପ୍ରକାଶିତ 'ସାଂପ୍ରତିକ' ଏବଂ ପୁରୀରୁ ପ୍ରକାଶିତ 'ଅନାମ' ଆଦି ପତ୍ରପତ୍ରିକାରେ କେତେକ ସଂଖ୍ୟା ମୁଁ ପଢ଼ିଛି । ତନ୍ମଧ୍ୟରେ କେତେକ ଲେଖା ସୁନ୍ଦର ସାହିତ୍ୟ-ସୃଷ୍ଟି ହିସାବରେ ମୋତେ ମୁଗ୍ଧ କରିଛି ଏବଂ ତାହାର ଲେଖକମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ସମ୍ପର୍କରେ ପ୍ରତିଶ୍ରୁତି ମୁଁ ପାଇଛି । ଦୃଷ୍ଟାନ୍ତ ସ୍ୱରୂପ ଝଙ୍କାର ପତ୍ରିକାର 'କଞ୍ଚିତ୍ ଅସମ୍ପୂର୍ଣ୍ଣତା ସମ୍ପର୍କରେ' ଓ 'ଗଙ୍ଗା ହୁଗୁଳି ମହାନଦୀ' ପରି କେତୋଟି ଲେଖା କିମ୍ବା 'ଅନାମ' ( ଏପ୍ରିଲ ୧୯୭୪ ) ପତ୍ରିକାର ଦ୍ୱିତୀୟ କବିଙ୍କର କବିତା ବିଷୟ ଏଠାରେ ଉଲ୍ଲେଖ କରିପାରେଁ । କିନ୍ତୁ ଆଉ କେତେକ ଲେଖା ଏହି ପତ୍ରପତ୍ରିକାମାନଙ୍କରେ ରହିଛି, ଯେଉଁଗୁଡ଼ିକ କଳାଗତ ପ୍ରକାଶ ଭଙ୍ଗୀ ଅଭାବରେ ଅତି ସ୍ଥୂଳ ଓ ନଗ୍ନ ହୋଇ ପଡ଼ିଛି । ପୂର୍ବୋକ୍ତ 'ଅନାମ' ପତ୍ରିକାର ପ୍ରଥମ କବିତାଟିକୁ ଏହାର ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ-ପାରେ । ଗୋଟିଏ ସହରର ବର୍ଣ୍ଣନା ଦେବାକୁ ଯାଇ କବି ସେଠାରେ ଯେଉଁ ବାସ୍ତବ ଚିତ୍ର ପରିବେଷଣ କରିଛନ୍ତି, ତାହାକୁ ସୁନ୍ଦର ଓ ରସୋତ୍ତୀର୍ଣ୍ଣ କରି ପ୍ରକାଶ କରାଯାଇ ପାରିଥାନ୍ତା ! ପୁଣି କେତେକ ଲେଖା, ମୋଟାମୋଟି ବିଚାର କଲେ, ସାମୂହିକ ଦୃଷ୍ଟିରୁ ଭଲ ଲାଗୁଛି—ପ୍ରାଣକୁ ସ୍ପର୍ଶ କରୁଛି । ମାତ୍ର ତନ୍ମଧ୍ୟର ଗୋଟିଏ ଗୋଟିଏ ପଙ୍କ୍ତି ବା ଧାଡ଼ିକୁ ସ୍ୱତନ୍ତ୍ର ଭାବରେ ବିଚାର କଲେ, ପ୍ରାଣକୁ ପୀଡ଼ା ଦେଉଛି । ଝଙ୍କାର ପତ୍ରିକାର 'ସନ୍ନ୍ୟାସୀର ରାତି' କବିତାଟି ସାମୂହିକ ଭାବରେ ଉତ୍କୃଷ୍ଟ

କଳାକୃତରେ ପରିଣତ ହୋଇଛୁ । କିନ୍ତୁ "ନାରୀକୁ ଗୋଡ଼ାଇ ବୁଲେ ସହରର ରାସ୍ତା ଓ ଘାଟରେ" ଭଳି କବିତାଟିର କେତେକ ପଙ୍କ୍ତି ଉତ୍ତୀର୍ଣ୍ଣ ହୋଇ ପାରିନାହିଁ । ଏବେ 'ଝଙ୍କାର' ସମ୍ପାଦକଙ୍କ ନିକଟରେ 'ସମୁଦ୍ର : ଏକ ବରଫ ମାଛର ଆଖିରେ' (ଝଙ୍କାର—ମେ' ୧୯୭୯ ) କବିତାଟି ସମ୍ପର୍କରେ ଅଭିଯୋଗ ହୋଇଛୁ । ପୂର୍ବରୁ ସେହିପରି 'ଝଙ୍କାର'ରେ ପ୍ରକାଶିତ 'ଅନ୍ଧଗଳିର ଅନ୍ଧକାର' ଗଳ୍ପ ବିଷୟରେ ଅଭିଯୋଗ କରାଯାଇଥିଲା । ଉଭୟ କ୍ଷେତ୍ରରେ—ସାମଗ୍ରିକ ଭାବେ ବିଚାର କଲେ—ଲେଖା ଦୁଇଟି ଉଚ୍ଚକୋଟୀର ସାହିତ୍ୟ କୃତି । କିନ୍ତୁ ଦୁଇଟି ଯାକ ଲେଖାର କେତେକ ପଙ୍କ୍ତି ବା ଅଂଶ-ବିଶେଷକୁ କଳାମଣ୍ଡିତ ରୂପରେ ପ୍ରକାଶ କରିଥିଲେ, ମୋର ମନେହୁଏ—କାହାରି ଆପତ୍ତି କରିବାର ନ ଥାନ୍ତା ! ଏବେ ଜଣେ ଅଧ୍ୟାପକ-ବନ୍ଧୁ ଏହି ନୂଆ ସଂଖ୍ୟା 'ଝଙ୍କାର' ପତ୍ରିକାରେ ପ୍ରକାଶିତ 'ପ୍ରାର୍ଥନା' କବିତା ପ୍ରତି ମୋର ଦୃଷ୍ଟି ଆକର୍ଷଣ କଲେ । ମୋ ବିଚାରରେ—କବିତାଟି ସାମଗ୍ରିକ ଦୃଷ୍ଟିରୁ ଏକ ଉତ୍କୃଷ୍ଟ କଳାକୃତି । କିନ୍ତୁ ତହିଁରେ ଏକ ବିଶେଷ ଦୋଅର୍ଥଯୁକ୍ତ ଶବ୍ଦ ଯେପରି ବାରମ୍ବାର ବ୍ୟବହାର କରା-ଯାଇଛୁ, ତାହା ବଡ଼ ଶ୍ରୁତିକଟୁ ହେଉଛୁ । ଅଧ୍ୟାପକ ଜଣଙ୍କର ଆପତ୍ତି ସେଇଠି । ତାଙ୍କର ଆପତ୍ତି ଯୁକ୍ତି-ସଙ୍ଗତ ବୋଲି ମୋର ମନେହୁଏ ।

ତେଣୁ ପରିଶେଷରେ ଆଲୋଚନା ପ୍ରସଙ୍ଗରେ ମୁଁ ଆସି ଏଇଠି ପହଞ୍ଚିଲି ଯେ—ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତାର ବିଚାର ଶୈଳୀ ନିର୍ଭର ବା ଆଙ୍ଗିକଗତ । ଜଣେ ତୃତୀୟ ଶ୍ରେଣୀର ଲେଖକଙ୍କ ଲେଖାରେ ଯାହା ଅଶ୍ଳୀଳ, ପ୍ରତିଭାର ପ୍ରଥମ ଶ୍ରେଣୀର ଲେଖକଙ୍କ ହାତରେ ତାହା ଶ୍ଳୀଳ ଓ ସୁନ୍ଦର । ଶକ୍ତିଶାଳୀ ଲେଖନୀ ଅସୁନ୍ଦରକୁ ସୁନ୍ଦର, ଶୋଭନୀୟ କରିପାରେ । ସବୁ ପ୍ରକାଶଭଙ୍ଗୀର ବ୍ୟାପାର ! "ଯୁବକ-ଯୁବତୀ ଦୁଇଜଣ ଆଲିଙ୍ଗନ-ପାଶରେ ଆବଦ୍ଧ ।"—ଏ କଥା ଶୁଣିଲେ କିଛି ଖରାପ ଲାଗୁ ନାହିଁ । କିନ୍ତୁ ସେହି କଥାକୁ "ଟାକା-ଟୋକୀ ଦୁଇଟା କୁଣ୍ଢାକୁଣ୍ଢି ହେଉଛନ୍ତି"—ଏହି ଭାବରେ ପ୍ରକାଶ କଲେ ଖରାପ ଲାଗୁଛୁ । ଇଂରାଜୀରେ ସେହିପରି 'Coitus' ବ୍ୟବହାର କରା ଯାଇପାରେ; କିନ୍ତୁ ସେହି ଅର୍ଥରେ 'Fuck' ଶବ୍ଦର ବ୍ୟବହାର ଆପତ୍ତିଜନକ । ସେଥିପାଇଁ ପୂର୍ବରୁ ଉଲ୍ଲେଖ କରିଛୁ—କହି ଜାଣିଲେ କଥା ସୁନ୍ଦର, ହେଉ ପଛେ ତାହା ଯୌନତାର କଥା ଏବଂ ଆପଣମାନେ ମୋ ସହିତ ନିଶ୍ଚୟ ଏକମତ ହେବେ ଯେ—ସବୁ ଦେଶରେ ସବୁ କାଳରେ ସାହିତ୍ୟର ଲକ୍ଷ୍ୟ—ସୁନ୍ଦର ରୁଚିଶୀଳ କଥା କହିବା—ଅସୁନ୍ଦର କୁରୁଚିପୂର୍ଣ୍ଣ କଥାକୁ ସୁନ୍ଦର ରୁଚିଶୀଳ କରି ପ୍ରକାଶ କରିବା । କେବଳ 'ଜମେଇ ପାରିଲେ' ସାହିତ୍ୟ-ସୃଷ୍ଟି ହେବନାହିଁ, ଅଥବା କେବଳ 'କାଳସୀ ଲାଗିଲେ' ସାହିତ୍ୟ-ସ୍ରଷ୍ଟା ହୋଇ ପାରିବ ନାହିଁ । ବଜାରରେ ଜଣେ ଲଙ୍ଗଳା ହୋଇ ପଡ଼ିଲେ ଖୁବ୍ ଜମିବ—ପାଶ୍ଚାତ୍ୟ ଦେଶରେ ଏବେ 'ଷ୍ଟ୍ରିପ୍‌ଟିଜ୍' ମଧ୍ୟ ବେଶ୍ ଜମୁଛି । କିନ୍ତୁ ସେ ସବୁକୁ କ'ଣ ଆମେ ସଂସ୍କୃତିର ଅଙ୍ଗ ହିସାବରେ ଗ୍ରହଣ କରି ପାରିବା ? ଲେଖକଙ୍କୁ ଭଲକରି କାଳସୀ ଲାଗୁ—ମୋର ତହିଁରେ ଆଦୌ ଆପତ୍ତି ନାହିଁ । କିନ୍ତୁ ଘୋର ଉତ୍ତେଜନା-ଉନ୍ମାଦନାର ବଶବର୍ତ୍ତୀ ହୋଇ କାଳସୀ ବେଳେବେଳେ ଯେଉଁ ଅସୁନ୍ଦର, ଅଶୋଭନୀୟ କଥା କହି ପକାଏ, ବା ସେହିପରି କିଛି କାଣ୍ଡ କରି ବସେ, ତହିଁରେ ମୋର ଆପତ୍ତି ଅଛି । ଯେଉଁ କେତେକ ଲେଖକ-ବନ୍ଧୁ ଆପଣା ସାହିତ୍ୟକ ଆତ୍ମମୁଖ୍ୟର ଏପରି ଇସ୍ତାହାର ଦେଇଛନ୍ତି, ସେମାନେ ମୋତେ କ୍ଷମା କରିବେ—ସେମାନଙ୍କ ସହିତ ମୁଁ ପୂରାପୂରି ଏକମତ ହୋଇ ପାରୁନାହିଁ ।

ଉପସଂହାରରେ—ଏହି ସମ୍ପର୍କରେ ଆମ କିମ୍ବଦନ୍ତୀରୁ ଗୋଟିଏ ଚମତ୍କାର ଗଳ୍ପ କହି ଆପଣ-ମାନଙ୍କଠାରୁ ବିଦାୟ ନେବି । ଗଳ୍ପଟିକୁ ଏଠାରେ

ଏକ ରୂପକ ସ୍ୱଭାବରେ ଗ୍ରହଣ କରାଯାଇପାରେ । କଳାନୁଗ ପ୍ରକାଶଭଙ୍ଗୀ ସାହିତ୍ୟରେ କପରି ବସ୍ତୁପ୍ରକର କାର୍ଯ୍ୟକରେ ଏବଂ ଅତି ସାଧାରଣ ବିଷୟରେ ସୂକ୍ଷ୍ମ ଓ ଅନ୍ତରଙ୍ଗ ଛିବ ଦେଇ ସମସ୍ତ ବକ୍ତବ୍ୟଟିକୁ କପରି ରସୋତ୍ତୀର୍ଣ୍ଣ କରିଦିଏ, ତାହାର ଉଦାହରଣ ଏଥିରୁ ମିଳିବ । କାଳିଦାସ ଓ ଭବଭୂତି—ଦୁହିଁଙ୍କ ମଧ୍ୟରେ ଜିଦ୍ ଲାଗିଛି—କିଏ ସ୍ୱଭାବରେ କିଏ ବଡ଼ ? ସକାଳ ପହରୁ କର୍ମ ଖରାରେ ସେମାନେ ବୁଲିଛନ୍ତି—ଯାହାକୁ ଭେଟିବେ, ତାକୁ ପଚାରି ବୁଝିବେ । ଦ୍ୱିପ୍ରହରବେଳେ ଶ୍ରାନ୍ତକ୍ଳାନ୍ତ ହୋଇ ସେମାନେ ଗୋଟିଏ କୁଡ଼ିଆ ପାଖରେ ପହଞ୍ଚିଲେ । ଅଗଣାରେ ସୁନ୍ଦରୀ ଯୁବତୀଟିଏ ବସି ଏକ ମନରେ କ'ଣ ଲେଖୁଛି । ଲେଖୁଛି, ପୁଣି କାଟି ପକାଉଛି । ସ୍ତୁରି ପାଖରେ ତା'ର ଭୂଜପତ୍ରମାନ ବିଛୁଡ଼ା ହୋଇ ପଡ଼ିଛି । ଆଗନ୍ତୁକ ଦୁହେଁ 'ଅତିଥି' ବୋଲି ଯୁବତୀ ନିକଟରେ ପରିଚୟ ଦେଲେ । ଭବଭୂତି କୌତୂହଳୀ ହୋଇ ପଚାରିଲେ—ଭଦ୍ରେ; ତୁମେ ଲେଖୁଛ କଣ ? ଯାହା ଲେଖୁଛ, ତାକୁ ପୁଣି କାଟି ନଷ୍ଟ କରିବାରେ ଲାଗିଛ ବା କାହିଁକି ?

ଯୁବତୀଟି ଉତ୍ତର ଦେଲା--ମୋ ବାପା ଗୋଟିଏ ଶ୍ଳୋକର ଦ୍ୱିତୀୟ ପାଦଟି ମୋତେ କହିଦେଇ ଯାଇଛନ୍ତି । ସେ ଘରକୁ ବାହୁଡ଼ିବା ପୂର୍ବରୁ ମୋତେ ପ୍ରଥମ ପାଦଟି ପୂରଣ କରିଦେବା ଲାଗି ନିର୍ଦ୍ଦେଶ ଦେଇଛନ୍ତି । ତାଙ୍କର ବାହୁଡ଼ିବା ସମୟ ହେଲାଣି । କିନ୍ତୁ ଶ୍ଳୋକର ପ୍ରଥମ ପାଦଟି ମୁଁ ଯେ ପୂରଣ କରି ପାରୁ ନାହିଁ ! ଯେତେ ଯାହା ଲେଖୁଛି, କୌଣସି ଗୋଟିଏ ହେଲେ ମୋର ପସନ୍ଦକୁ ଆସୁନାହିଁ ।

ଭବଭୂତି ଶ୍ଳୋକଟିର ଦ୍ୱିତୀୟ ପାଦ ପଢ଼ି ଦେଖିଲେ—"ନାଧରେ ଜାୟତେ ରାଗୋ ନାନୁରାଗୋ ପୟୋଧରେ ।" ଏଇ ସାମାନ୍ୟ କଥା ! ଭବଭୂତି କହିଲେ—ମୁଁ ପ୍ରଥମ ପାଦ ପୂରଣ କରି ଦେଉଛି, ଲେଖ—

"ବିନା ଖଦିର-ସାରେଣ ହାରେଣ ହରିଣେକ୍ଷଣା
ନାଧରେ ଜାୟତେ ରାଗୋ ନାନୁରାଗୋ ପୟୋଧରେ ।"

(ବିନା ଖଇର ଅର୍କରେ ହରିଣେକ୍ଷଣା ସ୍ତ୍ରୀର ଅଧରରେ ରାଗ ଜାତ ହୁଏନା । ବିନା ହାରରେ ତାହାର ପୟୋଧରରେ ଅନୁରାଗ ମଧ୍ୟ ସୃଷ୍ଟି ହୁଏନା ।)

ଯୁବତୀଟି ସଙ୍ଗେ ସଙ୍ଗେ ମଥା ହଲାଇ କହିଲା ନା, ନା, ଠିକ୍ ହେଲାନାହିଁ । ଏହା ମୋର ମନଃପୂତ ହେଉନାହିଁ ।

କାଳିଦାସ ଠିଆହୋଇ ସବୁ ବିଷୟ ଲକ୍ଷ-କରୁଥିଲେ, ହସି ହସି କହିଲେ—ଆଚ୍ଛା, ତାହାହେଲେ ଏଇଟା ମୁଁ କହୁଛି, ଦେଖିଲ କପରି ଲାଗୁଛି !

"ଯାବନ୍ନ ଷୋଡ଼ଶୀ ବାଳା ଗଚ୍ଛତି ମଦନୋତ୍ସବେ
ନାଧରେ ଜାୟତେ ରାଗୋ ନାନୁରାଗୋ ପୟୋଧରେ ।"

(ଯେ ପର୍ଯ୍ୟନ୍ତ ଷୋଡ଼ଶୀ ବାଳା ରତିକ୍ରୀଡ଼ାକୁ ଯାଇନାହିଁ; ସେ ପର୍ଯ୍ୟନ୍ତ ତାହାର ଅଧରରେ ରାଗ ଜାତ ହୁଏନା— ପୟୋଧରରେ ଅନୁରାଗ ମଧ୍ୟ ସୃଷ୍ଟି ହୁଏନା ।)

ଏଥର ଯୁବତୀଟିର ମୁଖରେ ସଲଜ୍ଜ ହାସ୍ୟରେଖା ଫୁଟି ଉଠିଲା । ଭବଭୂତି ସ୍ୱୀକାରୋକ୍ତି କଲେ— କାଳିଦାସ, ତୁମେ ହିଁ ପ୍ରକୃତରେ ଶ୍ରେଷ୍ଠକବି !



# ॥ ମନୁ ସଂହିତା ଓ ନାରୀ ॥

ଶ୍ରୀମତୀ ସରଳା ଦେବୀ

କେତେବର୍ଷ ତଳେ ଜଣେ ନାରୀ ପତ୍ରିକାରେ ଲେଖିଥିଲେ ଶାସ୍ତ୍ରକାରମାନେ ନାରୀଙ୍କୁ ପୁରୁଷର ଦାସୀତ୍ୱ କରିବାକୁ ଲେଖିଗଲେ ।

"ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ,
ବାର୍ଦ୍ଧକ୍ୟେ ରକ୍ଷତି ପୁତ୍ରୋ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।"
୯ । ୩ । ମନୁ ।

ବାଲ୍ୟକାଳରେ ପିତା କନ୍ୟାକୁ ରକ୍ଷା କରନ୍ତି, ଯୌବନରେ ପତି ପତ୍ନୀକୁ ରକ୍ଷା କରନ୍ତି, ବାର୍ଦ୍ଧକ୍ୟରେ ମାତା ପୁତ୍ରକୁ ରକ୍ଷାକରେ । ସ୍ତ୍ରୀ ସ୍ୱାତନ୍ତ୍ର୍ୟ ଯୋଗ୍ୟା ନୁହେଁ ।

ଲେଖିକା ଓ ଆଧୁନିକାମାନଙ୍କ ମତରେ ଏହାର ଅର୍ଥ କେଉଁ କାଳରେ କେଉଁ ଘଟଣାରେ ସ୍ତ୍ରୀକୁ ସ୍ୱାଧୀନତା ମିଳିବା ଉଚିତ ନୁହେଁ, କୌଣସି ପୁରୁଷ ବଶରେ ତାଙ୍କୁ ରହିବାକୁ ହେବ ।

ଶାସ୍ତ୍ର ବୁଝିବା କ'ଣ ଏତେ ସହଜ ? "ରକ୍ଷିତ" ଶବ୍ଦର ଅର୍ଥ ଯଦି "ଭରଣ ପୋଷଣ ଓ ଲାଳନ ପାଳନ କରିବା" ହୁଏ, ତାହାହେଲେ ଏହା ଅନୈତିହାସିକ ବା ଅଯୌକ୍ତିକ ହେଲାନାହିଁ । ଶହେବର୍ଷ ହେବ ନାହିଁ, ନାରୀ ରୋଜଗାର କରି ବଞ୍ଚିବ, ତା'ର ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ରହିବା ଉଚିତ, ଏହି ମତ ଦେଶରେ ସୃଷ୍ଟି ହୋଇଛି । ଏହା ପୂର୍ବରୁ ପୃଥିବୀର ସବୁ ସଭ୍ୟ ଦେଶରେ ପୁରୁଷ ରୋଜଗାରରେ ନାରୀ ପ୍ରତିପାଳିତ ହେଉଥିଲା । ବର୍ତ୍ତମାନ ମଧ୍ୟ ଅଧିକାଂଶ କ୍ଷେତ୍ରରେ ତାହା ହେଉଛି । ପୁଣି ପ୍ରାଚୀନ କାଳରେ ଦରକାର ହେଲେ ନାରୀ ରୋଜଗାର କରୁଥିଲା, ନାରୀ ରାଜତ୍ୱ କରୁଥିଲା, ପୁରୁଷ ସଙ୍ଗରେ ଏକାଠି ମିଳି ରୋଜଗାର କରୁଥିଲା । ଏ କାଳରେ ମଧ୍ୟ ଶ୍ରମିକ ପୁରୁଷ ସହିତ ଶ୍ରମିକ ନାରୀ ରୋଜଗାର କରେ, ମୂଲ ଲାଗେ । ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତିର ଅର୍ଥ ଯଦି ଏହା ହୁଏ ଯେ ପୁରୁଷ ସହସ୍ର ପ୍ରକାର ଅବିଚାର, ଅତ୍ୟାଚାର କଲେ ମଧ୍ୟ ନାରୀ ମୁହଁବୁଜି ସବୁ ସହିବ ଏହାଦ୍ୱାରା ମନୁଙ୍କ ପ୍ରତି ଅବିଚାର କରାହୁଏ । ମନୁ ଲେଖିଛନ୍ତି—

"ଅରକ୍ଷିତା ଗୃହେ ରୁଦ୍ଧାଃ ପୁରୁଷୈରାପ୍ତକାରିଭିଃ,
ଆତ୍ମାନମାତ୍ମନା ଯାସ୍ତୁ ରକ୍ଷେୟୁସ୍ତାଃ ସୁରକ୍ଷିତାଃ ।" ୯।୧୨।ମନୁ ।

ବିଶ୍ୱାସୀ ଲୋକଦ୍ୱାରା ଘରେ ଆବଦ୍ଧ କରି ରଖିଲେ ସୁଦ୍ଧା ସ୍ତ୍ରୀ ଲୋକର ରକ୍ଷା ହୁଏନାହିଁ । ଯେଉଁ ନାରୀମାନେ ନିଜକୁ ନିଜେ ରକ୍ଷା କରନ୍ତି, ସେମାନେ ହିଁ ସୁରକ୍ଷିତା ।

ମନୁ ଆହୁରି ମଧ୍ୟ କହିଛନ୍ତି ସ୍ତ୍ରୀ ଲୋକଙ୍କୁ ଜୋରକରି ରକ୍ଷା କରି ହୁଏନାହିଁ । ସେମାନଙ୍କୁ ଅର୍ଥ ସଂଗ୍ରହରେ ଏବଂ ବ୍ୟୟରେ ଶୌଚରେ ଅର୍ଥାତ୍ ଗୃହ, ଗୃହର ଉପକରଣ ଏବଂ ପରିବେଶ ପରିଷ୍କାର ପରିଚ୍ଛନ୍ନ ରଖିବା କାର୍ଯ୍ୟରେ, ଧର୍ମରେ ଅର୍ଥାତ୍ ଗୃହର ପୂଜା, ବ୍ରତ ପ୍ରଭୃତି କାର୍ଯ୍ୟରେ ଏବଂ ସ୍ୱାମୀ ସନ୍ତାନମାନଙ୍କର ରକ୍ଷଣରେ, ଅନ୍ନପାକରେ ଏବଂ ଗୃହର ନାନାବିଧ ଉପକରଣର ତତ୍ତ୍ୱାବଧାନ କାର୍ଯ୍ୟରେ ନିଯୁକ୍ତ ରଖିବ ।

"ଅର୍ଥସ୍ୟ ସଂଗ୍ରହେ ଚୈନାଂ ବ୍ୟୟେ ଚୈବ ନିଯୋଜୟେତ୍ ।
ଶୌଚେ ଧର୍ମେଽନ୍ନ ପକ୍ତ୍ୟାଂ ଚ ପାରିଣାହ୍ୟସ୍ୟ ବେକ୍ଷଣେ ।"
୯।୧୧। ମନୁ ।

କେଉଁ ଦେଶର କେଉଁ ସ୍ତ୍ରୀମାନେ ଏହା କରନ୍ତି ନାହିଁ ? ଅନ୍ତତଃ ଆଧୁନିକ ଯୁଗରେ କେତେକଙ୍କୁ ଏହା କରିବାକୁ ପଡ଼େ ନାହିଁକି ? ଏଥିରେ କି ନାରୀମାନେ ପୁରୁଷର ଦାସୀତ୍ୱ କରିବା କଥା ବୁଝାଉଛି ? କେଉଁ ଆଧୁନିକା ଯଦି "ଅର୍ଥସ୍ୟ ସଂଗ୍ରହେ" ଅର୍ଥାତ୍ ଟଙ୍କା ରୋଜଗାର କରନ୍ତି, ତାଙ୍କୁ ଅଟକାଉଛି କିଏ ? ବହୁପୂର୍ବେ ମନୁ ଲେଖିଛନ୍ତି:—

"ପିତୃଭିର୍ଭ୍ରାତୃଭିଶ୍ଚୈତାଃ ପତିଭିର୍ଦେବରୈସ୍ତଥା ।
ପୂଜ୍ୟାଭୂଷୟିତବ୍ୟାଶ୍ଚ ବହୁ କଲ୍ୟାଣମୀପ୍ସୁଭିଃ ॥
ଯତ୍ରନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରା ଫଳାଃ କ୍ରିୟା ॥"
(୩।୫୫-୫୬ ମନୁ ।)

ଯଦି ବନ୍ଧୁ କଲ୍ୟାଣ କାମନା ଥାଏ ତାହାହେଲେ ପିତା, ଭ୍ରାତା, ପତି, ଦେବର କର୍ତ୍ତୃକ ନାରୀ ପୂଜ୍ୟା ଏବଂ ଭୂଷୟିତବ୍ୟାଂ ହେବା ଉଚିତ । ଅର୍ଥ, ନାରୀ ପ୍ରତି ଯଥାଯଥ ସମ୍ମାନ ଦେଖାଇବାକୁ ହେବ, ତାହାକୁ ମନୋରମ ଅଳଂକାର ଦେବାକୁ ହେବ । ଯେଉଁଠାରେ ନାରୀର ପୂଜା ହୁଏ, ସେଠାରେ ଦେବତାମାନେ ରମଣକରନ୍ତି ଓ ଅତି ସନ୍ତୋଷ ହୁଅନ୍ତି ଏବଂ ଯେଉଁଠି ନାରୀର ପୂଜା ହୁଏନା, ସେ ଅଭୂକ୍ତ ଅସମ୍ମାନିତ ହୁଏ, ସେଠାରେ ସେ ଗୃହରେ ସମସ୍ତ କ୍ରିୟା ନିଷ୍ଫଳ ହୁଏ ।

ସ୍ୱାଂ ପ୍ରସୂତିଂ ଚରିତ୍ରଂ ଚ କୁଳମାତ୍ମାନମେବ ଚ
ସ୍ୱଂ ଚ ଧର୍ମଂ ପ୍ରୟତ୍ନେନ ଜାୟାଂ ରକ୍ଷନ୍ ହି ରକ୍ଷତି
( ୯ । ୭ । ମନୁ )

ଯେ ନିଜର ସ୍ତ୍ରୀକୁ ଯତ୍ନରେ ରକ୍ଷା କରନ୍ତି, ସେ ନିଜର ସନ୍ତାନ, ଚରିତ୍ର, କୁଳ, ନିଜକୁ ଓ ନିଜ ଧର୍ମକୁ ରକ୍ଷା କରନ୍ତି ।

ଏକ୍ଷଣି "ରକ୍ଷତି" କ୍ରିୟାର ଅର୍ଥ ପରିଷ୍କାର ହେଲା ତ ? କିନ୍ତୁ ଏହାର ଗୋଟିଏ ସହଜ ଅର୍ଥ ମଧ୍ୟ ଅଛି । 'ରକ୍ଷତି' ଅର୍ଥରେ 'ରକ୍ଷାକରେ' ବୁଝାଉଛି । ସୁତରାଂ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ଅର୍ଥ ଅରକ୍ଷିତ ଅବସ୍ଥାରେ ଅର୍ଥାତ୍ ଏକାକିନୀ କୌଣସି ସ୍ତ୍ରୀଲୋକକୁ ଛାଡ଼ିଦେବା ଉଚିତ ନୁହେଁ । ଏଥିରେ କି ନାରୀଜାତି ପ୍ରତି ଅଶ୍ରଦ୍ଧା ଓ ଅନ୍ୟାୟ ବିଧାନ ବୁଝାଗଲା ? ନା ପୁରୁଷର ପଶୁପ୍ରକୃତି ବିରୁଦ୍ଧରେ ସାବଧାନ କରାଯାଇଛି ? ଏଥିରେ ଯଦି କାହାର ଅପମାନ କରିବା ବୁଝାଏ ତେବେ ପୁରୁଷର ଅପମାନ କରା ହୋଇଛି । କାରଣ ପୁରୁଷମାନେ ତ ମନୁଷ୍ୟ ନୁହଁନ୍ତି— ସେମାନେ ପଶୁବତ୍ ବା ପଶୁଠାରୁ ଅଧମ । ପଶୁର ମଧ୍ୟ season (ସମୟ) ଅଛି । ମନୁଷ୍ୟର reason ବା ବିବେକ ବୁଦ୍ଧିର ଗର୍ବ ଅଛି, କାଳକାଳ ଅଛି । ମାତ୍ର ରମଣୀ ଦେଖିଲେ ପୁରୁଷ reason ବା ବିବେକ ବୁଦ୍ଧି ମଧ୍ୟ ହରେଇ ବସେ । ସୀତାହରଣ କଥା କି ଆମେ ଭୁଲିଯିବୁ ? ପୁରୁଷ ପ୍ରତି ନାରୀର ବଳତ୍କାର କଥା ତ ଶୁଣାଯାଏ ନାହିଁ ? ଆଉ ପୁରୁଷମାନେ ? କହିବାର ଦର୍କାର ନାହିଁ । ସେଥିପାଇଁ ମନୁଋଷିଙ୍କର ଏ ସାବଧାନ ବାଣୀ । ଅଭ ଏକଥା କି ନିରର୍ଥକ ? ଆମ ଦେଶକଥା ଛାଡ଼ିଦେଲେ ମଧ୍ୟ ସଭ୍ୟ ୟୁରୋପ-ଆମେରିକାରେ ସ୍ୱତନ୍ତ୍ର ସବଳ ଅର୍ଥର୍ଜନକାରିଣୀ ରମଣୀମାନଙ୍କ ପ୍ରତି ନରପଶୁମାନଙ୍କ ବଳତ୍କାର କାହାଣୀ ନିହାତି ଅଳ୍ପ ନୁହେଁ । ଆମେରିକାର ବିଖ୍ୟାତ ପତ୍ରିକା Readers' Digestରେ ସେ କାହାଣୀଗୁଡ଼ିକ ଛପା ହୋଇଥାଏ । ତେଣୁ ନାରୀମାନଙ୍କୁ ଏକା ଛାଡ଼ିଦେଇଯିବା, ଏକା ଯିବା ଆସିବା କରିବାକୁ ସୁବିଧା ଦେବା ଉଚିତ ନୁହେଁ । କଲିକତାରେ ଗୋଟିଏ ଉଚ୍ଚ ବାଳିକା ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀଙ୍କୁ ଘରେ ଏକା ପାଇ ତାଙ୍କର ଚାକର ତାଙ୍କୁ ହତ୍ୟାକରି ତାଙ୍କର ଅଳଙ୍କାର ଟଙ୍କା ପଇସା ଲୁଟି ପଳାଇଗଲା । କଲିକତାରେ ଓ ପୂର୍ବବଙ୍ଗରେ ନାରୀହରଣ, ବଳତ୍କାର, ନାରୀହତ୍ୟା ବହୁତ ଘଟେ । କଲିକତା ଶିକ୍ଷୟିତ୍ରୀଙ୍କ ନିକଟରେ ଯଦି ଜଣେ ପୁରୁଷ ଥା'ନ୍ତା ଏପରି ଘଟି ଥାଆନ୍ତା କି ? ସେହିପରି ଓଡ଼ିଶାର ଢେଙ୍କାନାଳ ଜିଲାରେ ଗୋଟିଏ ପ୍ରଧାନ ଶିକ୍ଷୟିତ୍ରୀଙ୍କୁ ଏକାପାଇ ତାଙ୍କୁ ବଳତ୍କାର ହତ୍ୟାକରି ତାଙ୍କ ଜିନିସ ପତ୍ର ଟଙ୍କା ନେଇ କେଉଁ ଲୋକେ ଚାଲିଗଲେ । ପୁରୀରେ କମଳା ହରଣ, ଏବଂ ଶାନ୍ତିଲତା ମାରଣରେ ପୁରୁଷର ବଳତ୍କାର ଘଟଣା ସବୁ ପ୍ରତ୍ୟକ୍ଷିଭୂତ ଘଟଣା । ନିକଟରେ କଲିକତାର ରବୀନ୍ଦ୍ର ସରୋବରରେ ହିନ୍ଦୁ ନାରୀମାନଙ୍କୁ ନରପଶୁମାନଙ୍କର ପାଶବିକ ଅସଭ୍ୟ ଆଚରଣ ଓ ନିଜର ଆତ୍ମମର୍ଯ୍ୟାଦା ଏବଂ ସତୀତ୍ୱ ବଞ୍ଚାଇବା ପାଇଁ ସମବେତ ନାରୀମାନଙ୍କର ରବୀନ୍ଦ୍ର ସରୋବରରେ ବୁଡ଼ି ଆତ୍ମହତ୍ୟା ଘଟଣାମାନ ଗତକାଲିର ମର୍ମନ୍ତୁଦ ଘଟଣା ! କଟକର ଜଣେ ଭଦ୍ରମହିଳାଙ୍କୁ ବର୍ବରମାନେ ମଟରରେ ନେଇ ମୃତକଳ୍ପ କରି ଭୁବନେଶ୍ୱର ବଣରେ ଛାଡ଼ିଦେଇ ପଳାଇଥିଲେ । ପିଲୁବେନ୍‌ଙ୍କ ମୃତ୍ୟୁ ଦୂର-ଅତୀତର କଥା ନୁହେଁ ।

ଅସଲ କଥା, ଆମେ ଶାସ୍ତ୍ରଗୁଡ଼ିକୁ ଶ୍ରଦ୍ଧାପୂର୍ବକ ପାଠକରି ଅଭିନିବେଶ ସହକାରେ ତା'ର ଅର୍ଥ ମନନ କରୁନାହିଁ । ଶ୍ରଦ୍ଧା ବ୍ୟତିରେକେ ଜ୍ଞାନଲାଭ ହୁଏନାହିଁ—ଶାସ୍ତ୍ରାର୍ଥର ମର୍ମୋଦ୍ଧାର ହୁଏନାହିଁ । ଯୁଗର ପରିବର୍ତ୍ତନରେ ଶାସ୍ତ୍ରର ଅନେକ କଥା ଆମ ନିକଟରେ ଅନ୍ୟାୟ ଅଯୌକ୍ତିକ ମନେହୁଏ; କିନ୍ତୁ ଶାସ୍ତ୍ରକାରଙ୍କ ଯୁଗର ଦୃଷ୍ଟିରୁ ଆଗ୍ରହ ଧର୍ମର ପରିପ୍ରେକ୍ଷୀରେ ସେମାନଙ୍କ କୃତ ଶାସ୍ତ୍ରର ଆଲୋଚନା ସମୀଚୀନ ।

ମହମ୍ମଦ ଆରବ ଦେଶରେ ଜନ୍ମିଥିଲେ । ସେ କାଳରେ ସେଠାର ପ୍ରଚଳିତ ଧର୍ମ ରୀତିନୀତି, ନ ଜାଣିଲେ ମହମ୍ମଦଙ୍କୁ ବୁଝି ହେବନାହିଁ । ସେହିପରି ମନୁ ମହର୍ଷି କେଉଁ ସମୟରେ କେଉଁ ସମାଜରେ ରହି ତାଙ୍କର ଧର୍ମଶାସ୍ତ୍ର ସଂହିତା ପ୍ରଣୟନ କରିଥିଲେ, ତାହା ଜାଣି ନ ପାରିଲେ ତାଙ୍କର ବହୁତ ବିଧିକୁ ଆମ ନିକଟରେ ଅସଙ୍ଗତ ଓ ଅନ୍ୟାୟ ବୋଲି ମନେହେବ । ଏହା ସତ୍ତ୍ୱେ ମାନବ ଧର୍ମଶାସ୍ତ୍ରର ଶାଶ୍ୱତ ଭିତ୍ତିଅଛି ।

ଶାସ୍ତ୍ରାର୍ଥ ଗ୍ରହଣରେ ଆମର ଅସୁବିଧା ପ୍ରଚୁର ଅଛି । ସଂସ୍କୃତ ଶଇ ବହୁଶତାବ୍ଦୀରୁ ଆମର କଥ୍ୟଭାଷା ନୁହେଁ । ବେଦବେଦାନ୍ତ ବା ମନୁଙ୍କ ସମୟରେ କେଉଁ ଶବ୍ଦର କି ଲକ୍ଷଣା ବ୍ୟଞ୍ଜନା ଏପରି କି ମୁଖ୍ୟାର୍ଥ ବା ଅଭିଧା ଥିଲା ତାହା ଆମର ଜାଣିବାର, ବୁଝିବାର ଉପାୟ (ସରକାରଙ୍କ ଶିକ୍ଷାନୀତିରୁ) ଚାଲି ଯାଇଛି । ଆମେ ନିଜ ନିଜ ମାତୃଭାଷା ସାହାଯ୍ୟରେ ସଂସ୍କୃତ ବୁଝିବା ଚେଷ୍ଟା କରୁ । "ରକ୍ଷିତ" ପଦର ସହଜ ସରଳ ଅର୍ଥ ଥିଲେ ମଧ୍ୟ ଆମେ ନ ବୁଝିପାରି ତା'ର କଦର୍ଥ କରୁ । "ଭୃତ୍ୟ" ଶବ୍ଦର ଅର୍ଥ ଚାକର । କିନ୍ତୁ ସଂସ୍କୃତରେ 'ଭୃତ୍ୟ'ର ଅର୍ଥ ଭରଣଯୋଗ୍ୟ ବୃଦ୍ଧ ପିତା-ମାତା ପ୍ରଭୃତିଙ୍କୁ ବୁଝାଏ । ମନୁଙ୍କର ଆଉ ଏକ ଶ୍ଳୋକରୁ ଏ କଥା ଜଣାଯିବ ।

ବ୍ରାହ୍ମଣଂ କୁଶଳଂ ପୃଚ୍ଛେତ୍ କ୍ଷତ୍ରବନ୍ଧୁମନାମୟମ୍ ।
ବୈଶ୍ୟଂ କ୍ଷେମଂ ସମାଗମ୍ୟ ଶୂଦ୍ରମାରୋଗ୍ୟମେବ ଚ ॥

ଦେଖାହେଲେ ବ୍ରାହ୍ମଣକୁ କୁଶଳ ପଚାରିବ । କ୍ଷତ୍ରିୟକୁ ଅନାମୟ, ବୈଶ୍ୟକୁ କ୍ଷେମ ଏବଂ ଶୂଦ୍ରକୁ ଆରୋଗ୍ୟ କଥା ପଚାରିବ; ମେଧାତିଥି, କୁଲ୍ଲୁକଭଟ୍ଟ ପ୍ରଭୃତି ଟୀକାକାରମାନେ କୁଶଳ, ଅନାମୟ, କ୍ଷେମ ଏବଂ ଆରୋଗ୍ୟ ଶବ୍ଦର ଗୋଟିଏ ଅର୍ଥ ନିରୋଗତା ବୋଲି ଲେଖିଛନ୍ତି । ସନ୍ଦେହ ହୁଏ, 'ଭଲ ଅଛନ୍ତି' ଏ କଥା ପଚାରିବା ଭିତରେ ବର୍ଣ୍ଣଭେଦ କିପରି ପଶିଲା ? କିନ୍ତୁ ଏହାର ସୁନ୍ଦର ଗଭୀର ଅର୍ଥ ଅଛି ।

ବ୍ରାହ୍ମଣର କର୍ମ ଯଜ୍ଞ କରିବା, ତର୍ପଣ କରିବା । ତେଣୁ ତହିଁରେ କୁଶ ଦରକାର । କୁଶର ଶବ୍ଦ ଯାଇ କୁଶଳ ହୋଇଛି । କାରଣ ସଂସ୍କୃତରେ ର, ଳ ଅଭେଦ । କୁଶଳ ସମ୍ଭାଷଣ ଅର୍ଥ କୁଶ ଠିକ୍ ଅଛି କି ନା, ଅର୍ଥାତ୍ ଯଜ୍ଞ ଠିକ୍ ରୂପେ ସମ୍ପୂର୍ଣ୍ଣ ହେଉଛି କି ନା ? 'ଆମୟ' ଶବ୍ଦର ଅର୍ଥ ବ୍ରଣ ବା କ୍ଷତ । କ୍ଷତ୍ରିୟ କର୍ମଯୁଦ୍ଧ କରିବ, 'ଅନାମୟ' ମାନେ ଅକ୍ଷତ । କ୍ଷତ୍ରିୟକୁ ତେଣୁ ପଚରାଯାଏ, ତୁମେ ଅକ୍ଷତ ଦେହରେ ରହିଛ କି ନା ! 'କ୍ଷେମ' ଶବ୍ଦର ମାନେ ଧନ ସମ୍ପତ୍ତି ଯାହା ଅଛି ତା'ର ରକ୍ଷା । ବୈଶ୍ୟବୃତ୍ତି ବ୍ୟବସାୟ । ତେଣୁ ବୈଶ୍ୟକୁ ପଚରାଯାଏ ତମର ସବୁ (କ୍ଷେମ) ଠିକ୍ ଅଛି କି ନା ? ଅର୍ଥାତ୍ ଲାଭ ନ ହେଉ କ୍ଷତି ହେଉ ନାହିଁ ତ ? ଶୂଦ୍ର ପରିଶ୍ରମ କରେ । ତାକୁ ତେଣୁ ଶରୀର ନିରୋଗ ଅଛି କି ନା ପଚରା ଯାଏ । ଅଥଚ ବହୁ ଶତାବ୍ଦୀ ବ୍ୟବଧାନରେ କୁଶଳ ଓ ଆମୟ ଶବ୍ଦର ପ୍ରକୃତ ଅର୍ଥ ଆମେ ଭୁଲିଛୁ । ଆମୟ ଶବ୍ଦର ଅର୍ଥ ଯେ ବ୍ରଣ ବା ସଦ୍ୟ କ୍ଷତଃ ତାହା କେହି ଜାଣନ୍ତି ନାହିଁ । ମହାଭାରତର ଏକ ସ୍ଥାନରେ ନିରାମୟ ଶବ୍ଦର ଟୀକାରେ ନୀଳକଣ୍ଠ ଆମୟ ଶବ୍ଦର ଅର୍ଥ ନିରାମୟ ବୋଲି ଧରୁଛନ୍ତି । ଏପରି ବହୁ ଅଶୁଦ୍ଧ ପାଠ ମଧ୍ୟ ଚାଲି ଯାଉଛି । ସଂସ୍କୃତ ଭାଷା ଅପ୍ରଚଳିତ ହେବାରୁ ଆମ୍ଭେମାନେ ସଂସ୍କୃତ ସାହିତ୍ୟ ଦର୍ଶନର ଠିକ୍ ଅର୍ଥ ବୁଝି ପାରୁନୁ— ଅର୍ଥର ଅନର୍ଥ ହେଉଛି ।

ସଂସ୍କୃତର କଥ୍ୟଭାଷା ଆମ ଦେଶରେ ପ୍ରଚଳ ନାହିଁ । ତେଣୁ ବେଦ ଅପୌରୁଷେୟ ହେଲେ ମଧ୍ୟ ସର୍ବସାଧାରଣ ବେଦର ନିଗୂଢ଼ ଅର୍ଥ ବୁଝିବା ଅସମ୍ଭବ । ହୁଏତ ଋଷିଗଣ ବେଦର ଗୂଢାର୍ଥକୁ ରହସ୍ୟାବୃତ ରଖିବା ପାଇଁ ଇଚ୍ଛୁକ ଥିବାରୁ ବେଦର ଆଧ୍ୟାତ୍ମିକ ଅର୍ଥ ଲୁପ୍ତ । ଏହା ଆମ ଜାତିର ଅପୂରଣୀୟ କ୍ଷତି । ବେଦରୁ ସବୁ ସୃଷ୍ଟି ବୋଲି ଆମେ ଜାଣୁ ; କିନ୍ତୁ ତହିଁର ବିଚାର ବିତର୍କାତୀତ ସନାତନ ଅର୍ଥ କାହିଁ ? ବେଦର ପ୍ରଚଳିତ ବ୍ୟାଖ୍ୟା ଯାଜ୍ଞିକ ବ୍ୟାଖ୍ୟା ଓ ଏହା ବହୁ ସ୍ଥଳରେ ଅସାମଞ୍ଜସ୍ୟପୂର୍ଣ୍ଣ, ଅର୍ଥହୀନ ଓ ଅନନୁଯାୟୀ ବୋଲି କେତେ ପଣ୍ଡିତଙ୍କ ମତ । ପୁରାଣକୁ ବେଦର ବ୍ୟାଖ୍ୟା ବୋଲି ବହୁ ମତ; କିନ୍ତୁ ତାହା ସତ୍ୟ ନୁହେଁ । ପୁରାଣରେ ବେଦ ବ୍ୟାଖ୍ୟା ନାହିଁ । ଏପରି କି ପୁରାଣ ଗଳ୍ପମାନଙ୍କର ଗୂଢ଼ ଉଦ୍ଦେଶ୍ୟ କ'ଣ ତାହା ଆମର ଜାଣିବାର ଉପାୟ ନାହିଁ । ତେଣୁ ଭାରତର ଆତ୍ମିକ ଗବେଷଣା ଓ ସଂସ୍କୃତି ଯେଉଁ ବେଦରେ ସଂହିତା ଉପନିଷଦରେ ରହିଛି, ତାହା ଜାଣିବାକୁ ଗଲେ ସଂସ୍କୃତରେ ଗଭୀର ଜ୍ଞାନ ନ ଥିଲେ ଆମର ଶାସ୍ତ୍ରଜ୍ଞାନ ସମ୍ଭବ ନୁହେଁ । ବେଦାନ୍ତକୁ ବେଦର ଅନ୍ତ ବା ଚରମ ସାରସଙ୍କଳନ ବୋଲି ଧରାହୁଏ । କିନ୍ତୁ ଉପନିଷଦ ଓ ପୁରାଣରେ ବେଦ ବ୍ୟାଖ୍ୟା ଦେଖିବାକୁ ମିଳେନାହିଁ । ତେଣୁ ଗଲା ଦୁଇଶତ ବର୍ଷ ଧରି ଆମ ଦେଶରେ ସଂସ୍କୃତର ଅଭ୍ୟୁଦୟ ବନ୍ଦ କରାଯାଇ ଶାସ୍ତ୍ର ସଂହିତାର ଗୂଢ଼ ଅର୍ଥ ବୋଧଗମ୍ୟ ହେବା ଦିଗରେ ପ୍ରବଳ ରାଷ୍ଟ୍ରୀୟ ବାଧା ସୃଷ୍ଟି କରାଯାଇ ଆମର ଜାତୀୟ ଜୀବନର ଏକତା ଓ ଚିନ୍ତା ଆଦର୍ଶ ସଂସ୍କୃତି ଉପରେ ପ୍ରଚଣ୍ଡ ଆଘାତ ଦିଆ ହୋଇଛି । ଜାପାନ ଜର୍ମାନୀ ଆମେରିକା ରୁଷିଅରେ ସଂସ୍କୃତ ଅଧ୍ୟାପନା କରିବା ପାଇଁ ଭାରତରେ ଯୋଗ୍ୟ ଅଧ୍ୟାପକ ମିଳୁନାହାନ୍ତି । ସେଠାର ଯୋଗବିଦ୍ୟା ଶିକ୍ଷା କରିବା ପାଇଁ ଜନତାର ପ୍ରବଳ ଆଗ୍ରହ ରହିଛି; ମାତ୍ର ଭାରତୀୟ ବିଦ୍ୟା ଭାରତୀୟ ନ ଜାଣି ଥିବାରୁ ଜର୍ମାନରୁ ମାଷ୍ଟର ଆସି ଶିକ୍ଷା ଦିଅନ୍ତି ।

ଗୋଟିଏ ବିଶ୍ୱବିଖ୍ୟାତ ଦେଶ—ପୃଥିବୀର ଗୁରୁସ୍ଥାନୀୟ ଦେଶ ବର୍ତ୍ତମାନ ବିଦ୍ୟାର ଭିଖାରୀ ହୋଇ ପାଶ୍ଚାତ୍ୟ ବିଦ୍ୟାରୁ

ଅର୍ଥ ଓ ଜ୍ଞାନ ଆହରଣ କରୁଛୁ । ଶାସ୍ତ୍ରକୁ କଦର୍ଥ ବା ଅନର୍ଥ କଲେ ବେଦ ସମସ୍ତଙ୍କର ଅନଧିଗମ୍ୟ ହେଲେ ସହିତାର ଭାଷାର ନିଗୁଢ଼ ଅର୍ଥ ବୁଝି ନ ପାରିଲେ ଆମେ ଆଜ୍ଞା ତ ଇଂରେଜଙ୍କୁ ଗାଳିଦେଇ ପାରିବା ନାହିଁ । କର୍ମ ଆଦର ୟୁରୋପକୁ ଚିନ୍ତା ଓ ଆଦର୍ଶ ରାଜ୍ୟରେ ପାଶ୍ଚାତ୍ୟ ଦେଶର ମନୀଷୀମାନଙ୍କୁ ଜଡ଼ ବିଜ୍ଞାନ ଶିକ୍ଷା ଦବାକୁ ଆମ ଦେଶକୁ ଆମଦାନୀ କରି କୃତାର୍ଥ ହେବା ସିନା; ଆମର ମାନସିକ ଅବସ୍ଥା ଓ ଚିନ୍ତାର ବିବେକ ବାହାର ଯେ ଅଧୋଗତ ହୋଇଛୁ, ତହିଁପାଇଁ ପୂର୍ଣ୍ଣତଃ ଆମେ ଦାୟୀ । ତେଣୁ ଆମେ ଏବେ ଇଂରାଜି ମାଧ୍ୟମରେ ଗୀତା, ତ୍ରିପିଟକ, କୋରାନ, ରାମାୟଣ, ମହାଭାରତ, ଭାଗବତ ଓ ଚଣ୍ଡୀକୁ ବୁଝିବାକୁ ଚେଷ୍ଟା କରି ଆସୁଛୁ ଏବଂ ମୂଳ ଅର୍ଥ ଆମର ଅଜଣା ରହି-ଯାଉଛି । ଏହା ଭାରତର ମାନସିକ ଅଧଃପତନର ପ୍ରକୃଷ୍ଟ ନମୁନା ।

---

# ॥ ମାନଗୋବିନ୍ଦର ଆତ୍ମସଂଳାପ ॥

ଶ୍ରୀ ସୁବାସ ଚନ୍ଦ୍ର କର, ବି. ଏ., (ବିଦ୍ୟୁତ୍ ବିଭାଗ)

ମୁଁ ମାନଗୋବିନ୍ଦ... !
ଧର୍ମଯାଉ ରସାତଳେ...
ମନୁଷ୍ୟତ୍ୱ ମରୁ ତିଳେ ତିଳେ···
ରକ୍ଷାହେଉ ମାନ ମୋର...
ଆଉ କା'ରେ ନାହିଁ ମୋ' ସମ୍ବନ୍ଧ...!!

ମୁଁ ଗଢିଛି ମୋ' ହାତେ...
ରାଜନୀତି ଲଂଚ ଦେଇ···
କର୍ଣ୍ଣ ଓ ଶକୁନି କେତେ···
ଝଂକାର ଶେଯ ମୁଁ ଦେଇଛି ବିଛାଇ ··!!

ଯେତେ ସହି ପାର୍ଥ, ଅଭିମନ୍ୟୁ...
ଚକ୍ରବ୍ୟୂହେ ସେମାନଙ୍କୁ ଅକର୍ମଣ୍ୟ କରି···
ଯୁଦ୍ଧର ପୁରୋଧା ମୁଁ ରାଜ ଶିରୋମଣି
ନିଜ ହାତେ ଗଢ଼ିବି ମୁଁ ମୋ' ନିଜର ହସ୍ତିନାପୁରୀ ...!!

ମୋ ପାଇଁ ହତ୍ୟା ଏକ ପାପ ନୁହେଁ...
ମୁଁ ଯେଣୁ ଏତେ ବଡ଼ ରାଜଦଣ୍ଡଧାରୀ···
ଶିବ, ବିଷ୍ଣୁ ସବୁ ମୁଁ ପୂଜିଛି···
ମନୁଷ୍ୟତ୍ୱ ଶବ ପରେ ସିଂହାସନ ମୋର ଦୃଢ଼ ହୁଏ···!!

ପୁତ୍ର କନ୍ୟା ବଳିଦେଇ ମୁଁ ଗୃହେଁ ରାଜସିଂହାସନ,
କାନ୍ଧେ ବନ୍ଧି ବିବେକର ଶବାଧାର ମଶାଣିର କଂକାଳ ମାଳରେ
ମୋ' ନିଜତ୍ୱ ରୁଧୀରର ପୂଜା ଦେଇ
ମୁଁ କରୁଛି ବେତାଳ ସାଧନ···

ମୁଁ ଗୃହେଁ ଆସଂଜନ, ନାରୀ ଦେହ ଆମନ୍ତ୍ରଣ,
ତେଣୁ ମୁଁ ପ୍ରତିମୂର୍ତ୍ତେ ନୂଆ ଦେହ କରୁଛି ବରଣ
ନିର୍ବାଚନ ଦ୍ୟୁତ ଖେଳେ ମୁଁ ବିଜୟୀ କୁରୁସେନାପତି
ବିବେକର ବସ୍ତ୍ରହରି ସେହି ବସ୍ତ୍ରେ ଧ୍ୱଜା ଉଡ଼ାଇବି···
ଶାସନର ଜତୁଗୃହେ, ପାଣ୍ଡବ, ଧର୍ମରାଜ ଯେତେ
ଜୀବନ୍ତ ଦଗ୍ଧ କରି ବୋଲାଇବି ଏକଛତ୍ରପତି...!!

ଭୀଷ୍ମ ଦ୍ରୋଣ, ଯେତେ'ଛନ୍ତି ଗୁରୁପିତାମହ
ଲକ୍ଷ୍ମୀଙ୍କ ବରପୁତ୍ର (ମୁଁ) କିଣି ନେବି ସେମାନଙ୍କୁ
ଯୁଦ୍ଧରେ ଆହୂତି ଦେଇ ହେବ ନିଷ୍କଳଙ୍କ
ଉଲ୍ଲସି ନାଚିବି ଦେଖି ନିରୀହର ଶୋଣିତ ପ୍ରବାହ !!

ମୋ' ନିଜତ୍ୱ ବଳି ଦେଇ ମୁଁ ପାଇଛି ବର
ଯେତେ ତୁମେ ଦୁର୍ନାମର ବଜ୍ର ମାରିପାର
ଠିଏ କହେ ମୁଁ ଗଢ଼ିଛି ମୋ'ନିଜ କଫିନ୍
ସିଏ ଖାଲି ମୋ' ନିକଟେ ଏକ ମିଥ୍ୟା ସ୍ୱପ୍ନ

ମୁଁ ମରିନି ମରିବିନି ଅନେକ ଲୁହରେ...
ମୁଁ ଜଳିନି ଜଳିବିନି ଅନେକ ଦାହରେ...
ଅହଂସାର ଶିଳ ମତେ ପାରିବନି ବିନାଶି...
ମହାମାନୀ ଦୁର୍ଯ୍ୟୋଧନ, ମୁଁ ଯେ ଅବିନାଶୀ... !!!

—o—

# ॥ ଆପଣ ଜାଣନ୍ତୁ ॥

ଶ୍ରୀ ନୃସିଂହ ଚନ୍ଦ୍ର ଦାଶ, ଏମ୍. ଏ.

ନିବାରଣର କରୁଣ କାହାଣୀ ମୋ ଆଖିରେ କାନ୍ଦିଛି, ଆପଣଙ୍କ ଆଖିରେ ମଧ୍ୟ ଲୁହ ଆଣିବ। ବେଳେ ବେଳେ ଅତୀତକୁ ମନେ ପକାଏ। ଯାହା ସବୁ ତା'ର ପୂର୍ବେ ଥିଲା, ଆଜି ସେ ସବୁ ଅଛି—କିନ୍ତୁ ନାହିଁ ତା'ର ସରସତା ଏବଂ ଯୌବନସୁଲଭ ଚପଳତା। ତାର ଅତୀତର ସୁଖର କାହାଣୀ ଅଫିସର ସହକର୍ମୀଙ୍କ ଆଗରେ ଗୋଟି ଗୋଟି କରି ବଖାଣିଥିଲା ଏବଂ ଆଜି ସେହି ସହକର୍ମୀଙ୍କ ଆଗରେ ତା'ର ଦୁଃଖର କାହାଣୀ କହି ବୁଲୁଛି। ଏ ଘଟ ପରିବର୍ତ୍ତନର କାରଣ ଏବେ ମଧ୍ୟ ସେ ବୁଝିବାକୁ ଅକ୍ଷମ। ତା'ର କେତେବର୍ଷ ଭିତରେ ଆପୁ ଯେ ନ ବଢ଼ିଛି ତା' ନୁହେଁ—ତା' ସଙ୍ଗେ ସଙ୍ଗେ ସେ ତା'ର ପରିବାରକୁ ମଧ୍ୟ ବଢ଼େଇଛି। କାଲି ତା'ର କୁନା, ମୁନାପାଇଁ କ୍ଷୀର-ଗୁଣ୍ଡ କିଣାପୋତେଇରେ ଆଣି ଦେବାକୁ ଆନନ୍ଦ ଅନୁଭବ କରୁଥିଲା—ଆଜି କିନ୍ତୁ ଅନ୍ୟ ତିନୋଟି ପିଲାଙ୍କ ମୁହଁରେ ଟିକେ ପାଣିମିଶା ଦୁଧ ଦେବାକୁ ସେ ଅକ୍ଷମ। ସେ ବେଳେ ବେଳେ ଭାବେ ଏହାର କାରଣ ତା'ର ଭାଗ୍ୟ ବିପର୍ଯ୍ୟୟ।

ନିବାରଣ ପରି ଲକ୍ଷ ଲକ୍ଷ ଶିକ୍ଷିତ ବ୍ୟକ୍ତି ଗାଁ-ଗହଳରେ ଅଛନ୍ତି। ସେମାନେ ଅଭାବଗ୍ରସ୍ତ ହୋଇ ମଧ୍ୟ ଭାଗ୍ୟକୁ ଦୋଷଦେବା ବ୍ୟତୀତ, ଏହାର କାରଣ ନିରୂପଣ କରିପାରୁ ନାହାଁନ୍ତି। ସେମାନେ ଭାବନ୍ତି ଯେପରି ସେମାନଙ୍କର ଜନ୍ମ କେବଳ ଦୁଃଖ କଷ୍ଟ ପାଇବା ଓ ସେମାନଙ୍କର ଏଥିରେ କିଛି କରିବାକୁ ନାହିଁ। ଆପଣ ଯଦି ସେମାନଙ୍କୁ, ସେମାନଙ୍କର ଗୃହ ଚଳଣି ଓ ଆଗର ବ୍ୟବହାରରେ ସଂଯତ ହେବାକୁ କହିବେ, ତେବେ ସେମାନେ ଅଗ୍ନିଶର୍ମା ହୋଇ ଉଠିବେ। କହିବେ, 'କିଏ ହୋ ତୁମେ ? ତୁମର ଆମ ବିଷୟ ନେଇ କହିବାକୁ କିଏ ଅଧିକାର ଦେଇଛି ?' ଏହି ହେଲା ଆମ ସଭ୍ୟ ସମାଜ ଓ ଶିକ୍ଷିତ ବ୍ୟକ୍ତି। ସେମାନେ କାହାରି କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି। କେବଳ ଭାଗ୍ୟକୁ ନିନ୍ଦାକରି ହାହାକାର ଧ୍ୱନି ହେଉଛି ସେମାନଙ୍କର ଏକମାତ୍ର କାମ୍ୟ। ତେଣୁ ଆପଣ ଯେତେ ଯୋଜନା କରନ୍ତୁ—କୃଷି ଯୋଜନା କୁହନ୍ତୁ ବା ପରିବାର ନିୟନ୍ତ୍ରଣ ଯୋଜନା କୁହନ୍ତୁ ବା ଗ୍ରାମଗୋଷ୍ଠୀ ଯୋଜନା କୁହନ୍ତୁ, ସମସ୍ତ ଏ ଦେଶରେ ବିଫଳ ହେବ। ଲୋକମାନଙ୍କୁ ପ୍ରଥମେ ସେମାନଙ୍କର ଘର ଜଞ୍ଜାଳ, ସାମାଜିକ ନ୍ୟୂନତା ବିଷୟରେ ସଚେତନ କରାଇବାକୁ ପଡ଼ିବ। ତାହାହେଲେ ସେମାନେ ବୁଝି ପାରିବେ ଯେ, ସେମାନଙ୍କ ମାନସିକ ଅଶାନ୍ତି ଓ ଦାରିଦ୍ର୍ୟତା କେବଳ ନିଜର ଅଜ୍ଞତା ହେତୁ ହେଉଛି। ତାହା ହେଉଛି ପରିବାର ସଂଖ୍ୟା ବୃଦ୍ଧି।

ପରିବାର ନିୟନ୍ତ୍ରଣର କାମ ହେଲା କୋଟି କୋଟି ଲୋକଙ୍କୁ ତାଙ୍କର ଭବିଷ୍ୟତ ପାଇଁ ସାବଧାନ କରାଇ ଦେବା। ଏହା ତାଙ୍କ ପକ୍ଷରେ ପ୍ରତ୍ୟେକ ଦର୍କାର ସମାଜ ପକ୍ଷରେ ମଧ୍ୟ ସେତିକି କାମ୍ୟ। ଭଗବାନ୍ ଓ

ସ୍ୱାସ୍ଥ୍ୟର ନାମ ନେଇ କିମ୍ବା ପରିବାର ନିୟନ୍ତ୍ରଣ— କର୍ମୀମାନଙ୍କୁ ଅର୍ଥ ଓ ବିଦ୍ରୂପ କରି ସେମାନେ ନିଜର ବର୍ତ୍ତମାନ ଅବସ୍ଥାକୁ ବଦଳାଇ ଦେଇ ପାରିବେ ନାହିଁ। ବୁଝିବା ଉଚିତ ଯେ ବର୍ତ୍ତମାନ ଥିବା ପିଲାଙ୍କ ମୁହଁରେ ଆହାର ଦେବାକୁ ସେମାନେ ଅକ୍ଷମ। ସୁତରାଂ ବେଶୀ ପିଲା ଜନ୍ମକରି ଆଉ କି ଗୌରବ-ବାନା ଉଡ଼ାଇବେ।

ପରିବାର ନିୟନ୍ତ୍ରଣର କର୍ମୀମାନେ ଗାଁ-ଗହଳରେ ଲୋକମାନଙ୍କୁ ବୁଝାଇଲାବେଳେ ସେମାନେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର ଉପାଦେୟତା ବୁଝନ୍ତି। ତଥାପି ଗ୍ରାମବାସୀମାନେ ଯୁକ୍ତି କରନ୍ତି ଯେ କାହିଁକି ତା’ର ଏତେ ପିଲା—ସେ କାହିଁକି ପରିବାର ନିୟନ୍ତ୍ରଣ କରିନାହିଁ। ସେ ଡାକ୍ତର ବା ବଡ଼ ଅଫିସର ବୋଲି ସେମାନଙ୍କ ଉପରେ ତୁମର ଜୋର ନାହିଁ—ଆମରି ଉପରେ କେବଳ ଦେଖାଇବାକୁ ଅଛି ? ଏ ଯୁକ୍ତି ବଡ଼ ବିଚିତ୍ର। ଯାହାର ଗୁଡ଼ାଏ ପିଲାଛୁଆ ହେଲଣି ସେ ପିଲାଙ୍କୁ ତ ମାରିଦେଇ ହେବନି, ବରଂ ସେମାନେ ଯେମିତି ଆଉରି ପିଲା ଜନ୍ମ ନ କରନ୍ତି ସେଥିପାଇଁ ସେମାନେ ନିର୍ଦ୍ଦିଷ୍ଟ ପନ୍ଥା ଗ୍ରହଣ କରି ସାରିଛନ୍ତି। ତାଙ୍କରି ଆଳରେ ଯେ ମୁଁ ସେହିପରି ଗୁଡ଼ାଏ ପିଲାଛୁଆ ଜନ୍ମ-କରି, ତା’ରି ସମାନ ହେବି—ଏହି ମନୋଭାବ କେବଳ ଅଜ୍ଞତାର ଫଳ। ସୁତରାଂ ଏହି କାର୍ଯ୍ୟକ୍ରମକୁ ଗାଁ ଗହଳରେ ବିଶେଷ ଭାବେ ଜୋର ଦିଆ ଯାଉଛି। ବ୍ୟକ୍ତିଗତ ସାକ୍ଷାତ, ଦଳଗତ ସଭା, ସିନେମା, ପାଲା, ଦାସକାଠିଆ ମାଧ୍ୟମରେ ଗାଁ-ଗହଳର ଲୋକମାନଙ୍କୁ ଶିକ୍ଷା ଦିଆ ଯାଉଛି। ଏହି ବହୁଳ ପ୍ରଚାର ଫଳରେ ସେମାନଙ୍କର ଯେ କିଛି ପରିବର୍ତ୍ତନ ହେଉନାହିଁ— ତାହା ନୁହେଁ। ଆସ୍ତେ ଆସ୍ତେ ଏହା ଲୋକମାନଙ୍କ ପାଖରେ ଆଦୃତ ହେଉଛି।

ଗଣତନ୍ତ୍ର ଯୁଗରେ ସମସ୍ତେ ସମାନ। କାହାରି ଉପରେ ଏହି ଯୋଜନାକୁ ଲଦି ଦେଇ ହେବନାହିଁ। ସମସ୍ତଙ୍କୁ ବୁଝାଇ ଏଥିପ୍ରତି ଆକୃଷ୍ଟ କରାଇବାକୁ ପଡ଼ିବ।

ବର୍ତ୍ତମାନ ଦେଶର ଅବସ୍ଥା ମୁଁ ନ କହିବା ଭଲ। ଏ ଦେଶରେ ଚଳିବାକୁ ହେଲେ ଆମକୁ କିଛି ନା କିଛି କରିବାକୁ ପଡ଼ିବ। ସମାଜରେ ଯେତେ ବିଶୃଙ୍ଖଳା ଓ ଅସାମାଜିକ ପରିସ୍ଥିତି ଦେଖିବାକୁ ମିଳୁଛି, ତାହା ସବୁ ଜନସଂଖ୍ୟା ବୃଦ୍ଧିର କାରଣ। ଯଦି ଏହିପରି ଗତିରେ ଜନସଂଖ୍ୟା ବୃଦ୍ଧି ପାଏ, ତେବେ ଜାଣିଶୁଣି ଆମ ନିଜ ବେକରେ କୁରାଢ଼ି ପକାଇବା। ପିଲାଙ୍କୁ ଯେ ଖାଲି ଅମଣିଷ କରିବା ତାହା ନୁହେଁ, ଆମେ ନିଜ ନିଜ ଭିତରେ ପିଟାପିଟି ହୋଇ ସମାଜକୁ ଧ୍ୱଂସ କରିଦେବା। ସେତେବେଳେ କେଉଁ ଗୃହିଣୀକୁ କୋହ୍ନ ଯାଇଥିବ ଓ କେବଳ ମନସ୍ତାପ ଏହି ସମାଜକୁ ଧ୍ୱଂସ ମୁହଁରୁ ଟାଣିଆଣି ପାରିବ ନାହିଁ। ତେଣୁ ସମସ୍ତେ ଯଦି ବର୍ତ୍ତମାନଠାରୁ ଏହି ପରିବାର ନିୟନ୍ତ୍ରଣ ଯୋଜନାକୁ ଗ୍ରହଣ କରି ଏହାକୁ ଆଗେଇ ନେବେ, ତାହା-ହେଲେ ପିଲାମାନଙ୍କର ଭବିଷ୍ୟତ ପାଇଁ କିଛି କରି ପାରିବେ, ପରିବାର ନିୟନ୍ତ୍ରଣ ଯୋଜନା ଉଭୟ ଧନୀ ଓ ଗରିବଙ୍କ ପାଇଁ ସମାନ।

ବିତ୍ତବଶାଳୀ ବ୍ୟକ୍ତିଙ୍କର ପିଲାମାନେ ଆୟାମାନଙ୍କ-ଦ୍ୱାରା ପ୍ରତିପାଳିତ ହେଉଥିବାରୁ, ସେମାନେ ବାପା-ମାଙ୍କ ସ୍ନେହ-ସୋହାଗରୁ ବଞ୍ଚିତ ହୁଅନ୍ତି। ତେଣୁ ସେମାନେ ସମାଜର ସମସ୍ତ ପ୍ରକାର ଅପକର୍ମରେ ଲିପ୍ତହୋଇ ନିଜର ଭବିଷ୍ୟତକୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ବାପା-ମା’ଙ୍କର ମହତ ଉଦ୍ଦେଶ୍ୟକୁ ବିଫଳ କରନ୍ତି। ଅନ୍ୟ ପକ୍ଷରେ ଗରିବ ଶ୍ରେଣୀର ଲୋକ-ମାନଙ୍କର ବେଶି ପିଲା ଜନ୍ମହେଲେ ବାପା, ମାମାନେ ପିଲାଙ୍କର ଖାଦ୍ୟପେୟ ଓ ସ୍ୱାସ୍ଥ୍ୟର ଯତ୍ନନେଇ ପାରନ୍ତି ନାହିଁ। ସେମାନେ ରୁଗ୍ଣ ହୋଇ ଅକାଳ ମୃତ୍ୟୁ ବରଣ କରନ୍ତି। ତେଣୁ ଆପଣ ଜାଣନ୍ତି ଏ ଯୋଜନା କ’ଣ ?

—*—

ଭାରି ଭଲ ଲାଗୁଛି ବାପା!

ଏହି ମଣିରାଜ ବିସ୍କୁଟ-ଲଜେଞ୍ଜ
ମୋ ପାଇଁ ଆଉ ଆଣିବ



# ॥ ବନ୍‌ଫୁଲ୍ ॥

ଅଧ୍ୟାପକ, ପ୍ରାଣବନ୍ଧୁ କର

( ରବୀନ୍ଦ୍ର ମଣ୍ଡପରେ ଅଭିନୀତ ଓ ପରିବାର ନିୟୋଜନ ସଂସ୍ଥା ତରଫରୁ ପୁରସ୍କୃତ )

(କନ୍ଧମାଳର ଗୋଟିଏ କନ୍ଧପଲ୍ଲୀ···ପଲ୍ଲୀଟିକୁ ଘେରି ରହିଛି କେତେଗୁଡ଼ିଏ ଛୋଟବଡ଼ ପାହାଡ଼··· ଦେଖା ଯାଉଛି ପାହାଡ଼ କୋଳରେ ଗୋଟିଏ ଛୋଟିଆ ନୁଆଁଣିଆ ଚାଳଘର । ଘର ପଛପଟକୁ ପାହାଡ଼— ଘରଗୁଡ଼ିକର ଆଖ ପାଖରେ କେତେଗୁଡ଼ିଏ ମହୁଲ ଗଛ, ସଳପ ଗଛ ।

ସଂଧାର ଆଲୁଅରେ ସେ ସବୁ ଅସ୍ପଷ୍ଟ··· ଅଥଚ ବେଶ୍ ଗୋଟିଏ ମନୋରମ ପରିବେଶ— ଶାନ୍ତ···ମହୁଲଗଛଗୁଡ଼ିକରୁ ଚହଟି ଯାଉଛି ମହୁଲ ଫୁଲର ବାସ୍ନା—

ମୁଣ୍ଡରେ ଗୋଟିଏ ବୋଝ ମୁଣ୍ଡେଇ ଶ୍ରାନ୍ତ ପଦ-କ୍ଷେପରେ ପ୍ରବେଶ କଲା ଗୋଟିଏ କନ୍ଧ ଯୁବତୀ··· ବନ୍‌ଫୁଲ୍—ନିଟୋଳ ସ୍ୱାସ୍ଥ୍ୟ—ହଠାତ୍ ଠିଆହୋଇ ସେ ପ୍ରକୃତିର ଅପୂର୍ବ ସୁଷମା ଦେଖୁ ଦେଖୁ ଗୋଟିଏ ଦୀର୍ଘଶ୍ୱାସ ନେଲା—ତା' ପରେ ସେ ଧୀରେ ଧୀରେ ଯାଇ କବାଟ ଦିଆ ଘର ସାମନାରେ ଠିଆହୋଇ ଶିକୁଳି ଖୋଲି କବାଟ ମେଲେଇ ଦେଲା ଓ ବୋଝ-ଟାକୁ ଅନ୍ଧାରିଆ ଘର ଭିତରକୁ ଠେଲିଦେଇ ପିଣ୍ଡା ଉପରେ ବସିଲା ଗାଲରେ ହାତଦେଇ···ଦୂରରୁ ଶୁଣାଗଲା······

ଓ ଓ ଓ ଓ···ହୋ···

(ବନ୍‌ଫୁଲ୍ ଚମକି ପଡ଼ିଲା···ଡାକ ଆସୁଥିବା ଦିଗକୁ କାନଡେରି ଶୁଣିଲା···ତା' ପରେ ସ୍ୱପ୍ନାବିଷ୍ଟ ଭଙ୍ଗୀରେ ଆଖି ବୁଜିଲା···ମଞ୍ଚ କ୍ରମେ ଅନ୍ଧକାର ହେଲା···କିଛି ସମୟ ପାଇଁ ତା' ପରେ ଯେତେବେଳେ ଆଲୋକିତ ହେଲା ଦେଖାଗଲା···କେତେଗୁଡ଼ିଏ ମହୁଲ ଗଛ···ଅନ୍ୟ ଗୋଟିଏ ପାହାଡ଼·· ଓ ଅନ୍ୟ ଗୋଟିଏ ଚାଳଘର । ଚାଳ ଘରଟିର ତାଟି କବାଟଟି ଖୋଲା— ଘର ଭିତରେ କେବଳ ଗୋଟିଏ ଡିବିରି ଆଲୁଅ ଜଳୁଛି···ଚଟାଣରେ ଦୁଇ ତିନୋଟି ମଇଳା ମସିଣା ପଡ଼ି ହୋଇଛି—ତା'ଛଡ଼ା ଅନ୍ୟ କୌଣସି ଆସ୍‌ବାବପତ୍ର ନାହିଁ···ଏ ଘରଟି କନ୍ଧ ଗାଁର ମୁଣ୍ଡକୁ—ଡିଣ୍ଡାଘର··· ଗାଁର ଯେତେ ଅବିବାହିତ ଯୁବତୀ ସେମାନେ ରାତିରେ ଏଇଠି ଶୁଅନ୍ତି ।

ମଲ୍ଲିଫୁଲିଆ ଜହ୍ନରେ ସ୍ଥାନଟି ହସି ଉଠୁଛି··· ଦୂରରୁ ଖଞ୍ଜଣୀ ଓ ବଇଁଶୀ ବଜେଇବାର ଶବ୍ଦ କ୍ଷୀଣ ଭାବରେ ଶୁଣାଗଲା···ତା'ପରେ ଶବ୍ଦ ଆସ୍ତେ ଆସ୍ତେ ପାଖେଇ ଆସିଲା···ଖଞ୍ଜଣୀ ବଜେଇ ବଜେଇ ତିନିଜଣ କନ୍ଧ ଯୁବକ ଅଇବନ କହଁର, ପୁରୁଷୁ ମଲିକ ଓ ବଟେଷ୍ଣ ନାଏକର ପ୍ରବେଶ···ଦେହରେ ଖଣ୍ଡିଏ ଲେଖାଏଁ ଗଞ୍ଜି ଓ ମୁଣ୍ଡରେ ଗାମୁଛାର ଠେକା···ତାଙ୍କ ପଛେ ପଛେ ବଇଁଶୀ ବଜେଇ ପ୍ରବେଶ କଲା ଆଉ ଜଣେ ବଳିଷ୍ଠ କଳା ମଟ ମଟ ଯୁବକ ଅଧା କାମିଜ

ପିନ୍ଧି-- ସୁନାକର ପଧାନ—ଙ୍କ ଘରଆଡ଼କୁ ଚାହିଁ କହୁ ସମସ୍ତ ବାଜା ବଜେଇଲା ପରେ ସେମାନେ ବାଜା ବନ୍ଦ କଲେ । ସୁନାକର ପାଟି ପାଖରେ ହାତରଖି ଡାକିଲା···
ଓ ଓ ଓ ଓ···ହୋ···ଓ ଓ ଓ ଓ···ହୋ·········

ଅଇବନ—ଏ ଗାଁରେ କେଉଁ ଡିଣ୍ଡା ନାହାନ୍ତି ନାଁ କଅଣ ?

ସୁନାକର—କେଉଁ ତ କୋଉଠି ଦେଖା ପଡ଼ୁନାହାନ୍ତି ?

ପୁରୁଶୁ—ମୁଁ ତ ସେଇପାଇଁ କହୁଥିଲି "ବୁଜୁଲମେଣ୍ଡି" ଗାଁକୁ ଯିବାକୁ···ବହୁତ ଡିଣ୍ଡା ସେ ଗାଁରେ···

ଅଇବନ—ସୁନାକର ତ କହିଲା ଏଇ ଗାଁକୁ ଆସି-ବାକୁ ।

ସୁନାକର—ହଁ ମୁଁ କହିଲି···ଏ ଗାଁରେ ଗୋଟେ ଟୁକେଲି ଅଛି···ମୁଁ ତାକୁ ଟିକାବାଲି ହାଟରେ ଦେଖିଥିଲି···ଯାହା ଉଉଲ୍ ଡାଉଲ୍ ହେଇଚି ନା···ଆଉ ତାର ଆଖି ଦୁଇଟା ଭାରି ସୁନ୍ଦର ।

ପୁରୁଶୁ—ସିଏ ଏଇ ଗାଁର ବୋଲି ତୁ କେମିତି ଜାଣିଲୁ ?

ସୁନାକର—ହାଟ ଭାଙ୍ଗିଲା ପରେ ମୁଁ ତା ପଛେ ପଛେ ଆସିଲି ପରା ଏଇ ଗାଁ ମୁଣ୍ଡଯାଏଁ ।

ପୁରୁଶୁ—ସେ ତତେ ଦେଖିଛି ?

ସୁନାକର—ଦେଖିଚି—ପଛକୁ ଚାହିଁ ଚାହିଁ ଯାଉଥିଲା···

ପୁରୁଶୁ – ତୁ ତା' ସାଥିରେ କଥା ହେଲୁନି ?

ସୁନାକର—ମତେ ଡର ଲାଗିଲା, କାଳେ ତାର ଗଣ୍ଡି ବନ୍ଧା ସରିଥିବ ।

ଅଇବନ୍—ହେଃ···ଗୋଟେ ବି ଡିଣ୍ଡା ନାହାଁନ୍ତି ଏ ଗାଁରେ । ମିଛଟାରେ ତୁ ଆମକୁ ଏଠିକି ଆଣିଲୁ ।

ସୁନାକର –ନାହାନ୍ତି ତ ଏଇଟା କି ଘରୁ···ଡର ଜଳୁଚି—ମଶିଣା ପରା ହେଇଚି,କବାଟ ମେଲା—

( ହଠାତ୍ ଯୁବତୀ କଣ୍ଠର ଖିଲି ଖିଲ୍ ହସର ଢେଉ ଶୁଣାଗଲା । ପାହାଡ଼ିଆ ଝରଣାର କଳ କଳ ଢେଉ ଭଳି ସେଇ ହସ ଜହ୍ନ ରାତିରେ ଗୋଟାଏ ପ୍ରତିଧ୍ୱନି ସୃଷ୍ଟି କଲା···ଢେଣ୍ଡିଆ ତିନିଜଣ ଘରଆଡ଼େ ଚାହିଁଲେ···

ହଠାତ୍ ଯୋଡ଼ାଏ କନ୍ଧ ଯୁବତୀ ହାତ ଧରାଧରି ହୋଇ ଖିଲ୍ ଖିଲ୍ ହସି ପ୍ରବେଶ କଲେ—ମୃଦାଣି ଓ ବାସ୍‌ଲି —ଢେଣ୍ଡିଆମାନେ ଖୁସିହେଇ ଚାହିଁଲେ ତାଙ୍କଆଡ଼େ···)

ମୃଦାଣି—କୋଉ ଗାଁର ଢେଣ୍ଡିଆ ତମେରେ ?

ପୁରୁଶୁ—ମାଲ୍‌କାପଡ଼ି

ମୃଦାଣି—ଏ ଗାଁରେ ଡିଣ୍ଡା ନାହାନ୍ତି ବୋଲି ଭାବି-ଥିଲ ନାହିଁ ?

ଅଇବନ—ନାହିଁ ତ···ମୋଟେ ଦୁଜଣ ?

( ପୁଣି ଖିଲ୍ ଖିଲ୍ ହସି ସେମିତି ହାତ ଧରାଧରି ହୋଇ ଆଉ ଦୁ'ଜଣ ଯୁବତୀ ଦଉଡ଼ି ବାହାରି ଆସିଲେ ଅନ୍ଧାର ଭିତରୁ···ସାଲ୍‌କା ଓ ସେବତୀ )

ମୃଦାଣି—କଅଣ କହୁଚରେ ଢେଣ୍ଡିଆମାନେ···ଏ ଗାଁରେ ଡିଣ୍ଡା ନାହାଁନ୍ତି ?

ପୁରୁଶୁ – ଖୋଃ···ଏତେଗୁଡ଼େ ଘରେ ମୋଟେ ଚାରିଟା ଡିଣ୍ଡା—

ବାସ୍‌ଲି—( ହସି ହସି ) ତମେ ତ ଆଇଚ ତିନିଟା ଢେଣ୍ଡିଆ—ତମେ ତିନିଟାକୁ ଆମେ ଚାରିଟା

ପୁରୁଶୁ— ( ସୁନାକର କାନ ପାଖକୁ ଯାଇ ) ଏଥିରୁ ତୋ ଡିଣ୍ଡା କୋଉଟାରେ ସୁନାକର— ?

ସୁନାକର—( ମୁହଁ ଶୁଖାଇ ମୁଣ୍ଡ ହଲାଇ ) ନାଁ··· ଏମାନଙ୍କ ଭିତରେ ସେ ନାହିଁ ।

ବାସ୍‌ଲି—(ଗଛ ଆଡ଼ୁଆଳକୁ ଯାଇ) ବନ୍‌ଫୁଲ୍···ଓ ବନ୍‌ଫୁଲ୍···

ସୁନାକର—( ଚମକି ପଡ଼ିଲା—ତା ସାଙ୍ଗମାନେ ହସି-ହସି ତା ମୁହଁକୁ ଚାହିଁଲେ ) ମୋ କଥାକୁ ପରତେ ଯାଉ ନ ଥିଲ ପରା ?

( ବନ୍‌ଫୁଲ୍‌ର ପ୍ରବେଶ—ଅନ୍ୟ ଚାରିଟି କନ୍ଧ ଯୁବତୀଙ୍କ ଅପେକ୍ଷା ସେ ସୁନ୍ଦର···ସୁନାକରକୁ ଦେଖି ସେ ଚମକି ଠିଆହୋଇ ପଡ଼ିଲା···ଆଖିରେ ବିସ୍ମୟ···)

ବାସ୍‌ଲି—କିସ ହେଲା ଲୋ ବନ୍‌ଫୁଲ୍ ?

ବନ୍‌ଫୁଲ୍ —ନାଇଁ କଛୁ ନାଇଁ ତ…

ବା'ସ୍‌ଲି—(ସୁନାକରକୁ ଦେଖେଇ)
ସେ ଭେଣ୍ଡିଆକୁ ଦେଖି ଏମିତ ଚମକ ପଡ଼ିଲୁ କାହିଁକ ?…

ବନ୍‌ଫୁଲ୍—ହେଃ…ମିଛକଥା —

ବାସ୍‌ଲି—( ବନ୍‌ଫୁଲ୍‌ର ଗାଲ ଚିପିଦେଇ )
ଆମକୁ ଆଉ ଲୁଚୁନମ…ଦେଖୁଛୁଟି ମୁଦାଣି, ଲୁଚେଇ ଲୁଚେଇ ବନ୍‌ଫୁଲ୍ ତା ଭେଣ୍ଡିଆ ଠିକ୍ କରି ସାରିଲଣି…

ମୁଦାଣି—ବନ୍‌ଫୁଲ୍ ଆମର ବୁଡ଼ ବୁଡ଼ ପାଣି ପିଉଚ ଲୋ…

( ଡିଣ୍ଡାମାନେ ହସି ଉଠିଲେ )

ବାସ୍‌ଲି—( ସୁନାକରକୁ ଚାହିଁ )
ତୋ ନାଁ କଅଣରେ ଭେଣ୍ଡିଆ ?

ସୁନାକର—ସୁନାକର—

ମୁଦାଣି—ତୋ ଭେଣ୍ଡିଆ ନାଁଟି ଯେମିତ ସୁନ୍ଦର—
ସିଏ ବି ସେମିତ ସୁନ୍ଦର…

(ବନ୍‌ଫୁଲ୍ ମୁହଁ ଫୁଲେଇ ଫେରି ଯାଉଥିଲାବେଳେ ତାର ସାଙ୍ଗମାନେ ତାକୁ ଅଟକେଇ ଦେଲେ )

ବାସ୍‌ଲି—ଆରେ ଆରେ…ରାଗିଗଲୁ ଆମ କଥାରେ ?

ପୁରୁଶୁ—ରାଗିବନି ? ତମେସବୁ ତାକୁ ଏମିତ ଚିଡ଼ାଉ କରୁଚ, ଲାଜରା କରୁଚ…

ଅଇବନ୍—ହଉ…ଏଥର ଧାଙ୍ଗଡ଼ାଙ୍କ ଗୋ ଡିଣ୍ଡାମାନେ

ମୁଦାଣି—ଆଏ·

ପୁରୁଶୁ—କଅଣ ନାଚବନି…?

ମୁଦାଣି – ଆଏ…

ପୁରୁଶୁ—ବାଃ…ସୁନାକର ଆମକୁ ଭଡ଼ ଭଡ଼ ଏ ଗାଁକୁ ଆଣିଲା…କହିଲା—

ସୁନାକର—ମୁଁ ଭଡ଼ ଭଡ଼ ଆଣିଲି ?

ଅଇବନ୍—ଆଉ ?…ତୁ କହିଲୁନି ଯେ ଏ ଗାଁରେ ଗୋଟେ ଉଜଲ୍ ଡାହିଲ୍…

ସୁନାକର—ଏଇ ଅଇବନ୍—ତୁ ଏମିତ ମିଛ କହନି—

ବାସଲି—ବନ୍‌ଫୁଲ୍—ଦେଖୁଚୁଟି…ତୋ ବାସନା କେମିତି ଚହଟି ଯାଉଚି…

( ବନ୍‌ଫୁଲ୍ ମୁହଁ ଘୁରେଇ ନେଲା )

ପୁରୁଶୁ –ହଉ…ତମେସବୁ ନାଚବାକୁ ମନା କରୁଚ ଆମେ ଫେରେବ ଯାଉଚୁ ?

ମୁଦାଣି – ତମେ ଉନ୍ଥା ଭେଣ୍ଡିଆ ଆଜ ନୂଆକରି ଡିଣ୍ଡା ନଚେଇବାକୁ ଆଇଚ ଜଣା ପଡ଼ୁଚି…

ପୁରୁଶୁ—ସତେ ?…କେମିତ ଜାଣିଲୁ…?

ମୁଦାଣି—ସେମିତି… ଆମେ ନାଚବୁନି… ଯା… ଘରେ ଆମେ ଯିବା

ପୁରୁଶୁ –(ତାଙ୍କ ସାମନାରେ ଠିଆହୋଇ ତାଙ୍କୁ ବାଧା ଦେଇ )
କାହିଁକି ନାଚବନି ? ନ କହିଲେ ଆମେ ଛାଡ଼ିବୁନି…

ମୁଦାଣି—( ହସି ପକେଇ ) ଏ ମହୁଲ ବାସ୍ନା ଭିତରେ ଆମ ବନଫୁଲ୍‌କୁ ଦେଖି ତମେ ସବୁ ମଜ୍ଜୁଆଳ ହୋଇଗଲଣି…ନାଇଁଲେ ବାସଲି ?

ବାସ୍‌ଲି—ଠିକ୍ କଥା
( ଭେଣ୍ଡିଆମାନେ କିଛି ବୁଝି ନ ପାରି ପରସ୍ପର ମୁହଁକୁ ଚାହିଁଲେ )
କଣେ—ଖଜାପେଇଁ ପଇସା କାହିଁ ? ଧୁଆଁ ପତର ପେଇଁ ପଇସା କାହିଁ ?…ଖାଲି ନାଚ, ନାଚ—

ପୁରୁଶୁ—ଆରେ, ଆମେ ମନାକଲୁ ?…ଯିଏ ଯାହା ମାଗିବ ତାକୁ ଦିଆଯିବ…
(ବନଫୁଲ ଛଡ଼ା ବାକି ଚାରି ଜଣ ଭେଣ୍ଡିଆମାନଙ୍କ ପାଖକୁ ଲାଗି ଆସିଲେ—ହସ ଓ ରସିକତା ଭିତରେ ସେମାନେ ଭେଣ୍ଡିଆମାନଙ୍କଠୁଁ ପଇସା ନେଇ ଅଣ୍ଟାରେ ଖୋସିଲେ )

ସୁନାକର—( ବନ୍‌ଫୁଲ୍‌କୁ ଚାହିଁ ) ତୁ ନବୁନି ?

ବନ୍‌ଫୁଲ୍— ଆଏ…(ମୁହଁ ବୁଲେଇ ନେଲା ।)

ବାସ୍‌ଲି—ସିଏତ ମଲାକର ଝିଅ…ତାର କୋଉ ପଇସା ଅଭାବ ଅଛି ?

ପୁରୁଶୁ—ହଉ…ଆସ ଏବେ…ଧାଙ୍ଗଡ଼ାଙ୍କ…

( ବଂଶୀ ଓ ଖଞ୍ଜଣୀ ଆରମ୍ଭ ହେଲା···ବନ୍‌ଫୁଲ୍ ଛଡ଼ା ଅନ୍ୟ ବୃଚଜଣ ଯୁବତୀ ଧାଡ଼ିବାନ୍ଧି ଅଣ୍ଟା ଧରାଧରି ହୋଇ ଠିଆହେଲେ··· )

ସାଲ୍‌କି—କାଲୋ ବନ୍‌ଫୁଲ୍···ଆ

ବନ୍‌ଫୁଲ୍—ନାଇଁ ମୋ ଦେହ ଭଲ ନାଇଁ

ବାସ୍‌ଲି—( ସୁନାକରକୁ ଚାହିଁ ଓ ମୁରୁକି ହସି ) ଦେହ ଭଲ ନାଇଁ ନା ମନ ଭଲ ନାଇଁ ମ ?

ମୁଦାଣି—ମନର ମଣିଷ ତ ସାମନାରେ·· ଆଉ ମନ ଖରାପ କରୁଚୁ କାହିଁକି ?

ବନ୍‌ଫୁଲ୍—ଚୁପ୍‌କର · ମୁଦାଣି—ଏମିତି ଟିକଲ କରିବୁ ତ···

ସେବଣ୍ଟି—( ଦୌଡ଼ି ଦୌଡ଼ି ଯାଇ ବନ୍‌ଫୁଲ୍‌କୁ ଭିଡ଼ି ଭିଡ଼ି ଆଣି ଧାଡ଼ିରେ ଠିଆ କରେଇ ଦେଇ )
ଆମ ଟିକଲ ତତେ ମୋଟେ ଭଲ ଲାଗୁଥିବ କି ?

ବାସ୍‌ଲି—ନାଇଁ ମ···ଫୁଲେଇ; ଆମ ସମସ୍ତଙ୍କଠୁଁ ସୁନ୍ଦର ନାଁ···ଏ ବଣର ସବୁଠୁଁ ସୁନ୍ଦର ଫୁଲ ପରା—

ବନ୍‌ଫୁଲ୍—ସେମିତି କହିଲେ ମୁଁ ଜମା ନାଚିବିନି କହି ଦଉଚି···

ବାସଳି—ତାକୁ କେହି କିଛି କହନି ଲୋ—

( ବାଦ୍ୟ ଜୋରରେ ବାଜି ଉଠିଲା—ବନ୍ଧା ଠକ୍ ଠକ୍ କରି ବାଦ୍ୟ ଓ ସଂଗୀତର ତାଳେ ତାଳେ କନ୍ଧଯୁବତୀମାନେ ନାଚିବାକୁ ଆରମ୍ଭ କଲେ । ପୁରୁଶୁ ଗୀତ ଗାଇଲା )

ଆଲୋ, ବାରିଜ ବଦନ,
ହସିକରି କଥା ପଦେ କହ ସଜନ···
ଆଲୋ ବାରିଜ···
ତୁ ଯାଇଥିଲୁ ନଈକୂଳେ
ତତେ ମୁଁ ଦେଖିଲି ସଖିମେଳେ
ଅଙ୍ଗରୁ ବସନ ଖସିଥିଲା
କି ଯୋଗେ ମୋ ନେତ୍ର ପଡ଼ିଗଲା
ଶିହରି ଉଠିଲା ମୋ ଅଙ୍ଗ ସୁମନ ।
ଆଲୋ ବାରିଜ······
ମୁକୁଳା ବୁକୁ ଯୋଡ଼ି
ସତେ କି ପଦ୍ମ କଢ଼ି,
ଚକିତେ ମୋତେ ଚାହିଁ
ଆଲୋ ପଙ୍କଜ ମୁହିଁ
ଉଠାଇ ବାସ ତଳୁ
କଟିରେ ବେଢ଼ିଗଲୁ
ଫେଲିବ ବାହୁ ଦୁଇ
ବୁକୁରେ ଦେଲୁ ଥୋଇ
ମୁରୁକି ହସା ଦେଇ
ବାଙ୍କ ନୟନେ ଚାହିଁ
ପେଶି କି ଦେଲୁ ସତେ ମାର-ଅଶନ
ଆଲୋ ବାରିଜ···

(ଏଇ ଗୀତଟି ଶେଷହେଲା ପରେ ନାଚ ବନ୍ଦ ହେଲା···କନ୍ଧଯୁବତୀମାନେ ନାଚ ବନ୍ଦକରି ପ୍ରାଣ-ଖୋଲା ହସ ହସିଲେ )

ପୁରୁଶୁ—ଏଃ···ବଡ଼ ଉଜଲ୍ ନାଚୁଚରେ ଡିଣ୍ଡା-ମାନେ···

ସେବ୍‌ଣ୍ଟି—ନଚେଇ ଜାଣିଲେ ହେଲା···

ଅଇବନ—ଆଉ ଗୋଟେ ନାଚ ହଉ

( କନ୍ଧଯୁବତୀମାନେ ପରସ୍ପରର ଅଣ୍ଟାକୁ ଦୁଇ ହାତରେ ଧରି ଅନ୍ୟ ଏକ ଭଙ୍ଗୀରେ ନୃତ୍ୟ ନାଚିଲେ । ବାଦ୍ୟ ସଂଗୀତ ସହିତ ସମନ୍ୱୟ ରଖି ପୁରୁଶୁ ଗାଇଲା—)

ନାଚେଁ ଗିଆଡ଼ି ବୁଢ଼ିକୁ ବାବା କୁଡ଼ି
ରନଶି ରଞ୍ଜାବାଇ ଡେ୍ୱଶା ମାଞ୍ଜାଡ଼ି
ନାଚେଁ···

( କିଛି ସମୟ ପରେ ନାଚ ଶେଷହେଲା—ପୁନର୍ବାର ସେଇ ଉଚ୍ଛଳ ଉଦ୍ଦାମ ହସରେ ବଣ, ପାହାଡ଼ ପ୍ରତିଧ୍ୱନିତ ହେଲା—

ବାସଳି—ବଡ଼ ହାଲିଆ ଲାଗୁଛିରେ ଭେଣ୍ଡିଆ

—ମାନେ—ଭିତରକୁ ଆସ—ପିଠା ପିଠି ଟିକେ ଖାଇବ, ପିକା ଟାଣିବ···

ସୁରଶ୍ରୁ—( ଅଇବନକୁ ଚାହିଁ ) ଖାଲି ସେଥିକରେ
ଆମକୁ ବଦା କରଦେବେ ଏ ଡିଣ୍ଡାମାନେ ।

ବାସ୍‌ଲି—( କଟାକ୍ଷ କରି ) ଆହାରେ ଲେଣ୍ଡିଆ-
ମାନେ—ଖାଲି ସେଥିକରେ · ତମେ ବୁଝିଥିବ
ଯେମିତି···!

( ସମସ୍ତେ ହସି ହସି ଡିଣ୍ଡାଘର ଭିତରକୁ ପଶିଗଲେ ହାତ ଧରାଧରି ହୋଇ—କିନ୍ତୁ ବନ୍‌ଫୁଲ୍ ଓ ସୁନାକର ରହିଗଲେ—ସୁନାକର ବନଫୁଲ ଆଡ଼େ ମୁଗ୍ଧ ଦୃଷ୍ଟିରେ ଚାହିଁଲା—ତା' ପରେ ତା ପାଖକୁ ଯାଇ )

ସୁନାକର—କାଁଲ ବନ୍‌ଫୁଲ୍—ଯିବୁନି ଭିତରକୁ ?

ବନ୍‌ଫୁଲ୍—( ମୁଣ୍ଡ ହଲେଇ ମନା କରିବା ସଂଗେ ସଂଗେ ବେକ ଭଙ୍ଗି କଣେଇ ଚାହିଁ )
ତୁ ଯାଉନୁ ?

ସୁନାକର—ନାଁ···

ବନ୍‌ଫୁଲ୍—ଡିଣ୍ଡା ଗୁରଟାକୁ ଲେଣ୍ଡିଆ ଗନଟା
ହେଲେ—ତୁ ଗଲେ ଭାଗ ଛିଣ୍ଡି ଯିବ···

ସୁନାକର - ଛୁଣ୍ଡବନ—

ବନ୍‌ଫୁଲ୍—( ସ୍ମିତ ହସି ଓ କଟାକ୍ଷ ଚାହିଁ )
କମିତି ଛୁଣ୍ଡବନ ?···

ସୁନାକର—ତୁ ବଲ ପଡ଼ିବୁ—

ବନ୍‌ଫୁଲ୍—( ଓଠ ଲେଫେଡ଼ି ଓ ନିର୍ବିକାର ଭାବ
ଦେଖେଇ )
ମୁଁ ରାତିରେ ଡିଣ୍ଡାଘରେ ଶୁଏନାଁ ।

ସୁନାକର—କାହିଁକି ?

ବନ୍‌ଫୁଲ୍—ଲେଉଡ଼ା ନାହିଁ—ବାପାର ଜ୍ୱରଗିରରେ
ପଡ଼ିଛି—ଖାଲି ମା, ମୁଁ ଆଉ ମୋ ସାନ
ଭଉଣୀ—

ସୁନାକର—ତେବେ ଆ, ଏଇ ଗଛତଳେ ବସି ଗପ
କରିବା— କେଡ଼େ ସୁନ୍ଦର ଚାନ୍ଦ ଆଲୁଅ···ଆଉ
ତା ସାଙ୍ଗକୁ—

ବନ୍‌ଫୁଲ୍—ଯାଉନୁ—ଡିଣ୍ଡାମାନଙ୍କ ସାଙ୍ଗେ ଗପାଡ଼
କରିବୁ—

ସୁନାକର—ଭୂତ ସବ ଡିଣ୍ଡା—

ବନ୍‌ଫୁଲ୍—ଆଏ···ମୋତେ ଗମାତ୍ ଭଲ ଲାଗେନି···

ସୁନାକର—ଶୁଣ୍ ବନଫୁଲ୍···ତୋ ନାଁଟି ଭାରି
ସୁନ୍ଦର ଏକା···

ବନ୍‌ଫୁଲ୍—( ହସି ) ଇସ୍ ! ତୁଇ ଭାରି ମିଛୁଆ—

ସୁନାକର—ମୋ ଆଖି ଛୁଇଁଚାଲେ···ଖୁବ୍ ସୁନ୍ଦର
ତୋ ନାଁଟି···ଟିକାବାଲି ହାଟରୁ ମୁଁ ତୋ ପଛେ
ପଛେ ତୋ ଗାଁ ଯାଏ ଆସିଥିଲି କାହିଁକି ?

ବନ୍‌ଫୁଲ୍—( ହସି କଟାକ୍ଷ କରି ) କାଇଁକି ମୋ
ପଛେ ଆସୁଥିଲୁ ?

ସୁନାକର—ତୁ କହ—

ବନ୍‌ଫୁଲ୍—ମୁଁ କେମିତି ଜାଣିଲି ? ( ମୁରୁକି ହସି-
ଦେଲା )

ସୁନାକର—( ତା ହାତ ଧରିପକାଇ ) ଜାଣିନୁ ?
—ଆଚ୍ଛା ତେବେ ଚାଲ୍, କହୁଚି—(ବନଫୁଲକୁ
ଭିଡ଼ି ଭିଡ଼ି ନେଇ ମହୁଲ ଗଛର ଅନ୍ଧାର
ଭିତରକୁ ଚାଲିଗଲା ମଞ୍ଚ ଅନ୍ଧକାର ହେଲା—
କିଛି ସମୟ ପରେ ମଞ୍ଚ ଅଳ୍ପ ଆଲୋକିତ ହେଲା—
ପ୍ରଥମ ଦୃଶ୍ୟର ସେଇ କୁଡ଼ିଆ ଘର—ବନଫୁଲ
ଗାଲରେ ହାତଦେଇ ବସିଛି—ଗୋଟାଏ ଦୀର୍ଘ-
ଶ୍ୱାସ ବନ୍‌ଫୁଲ୍‌ର ଛାତି ଭିତରୁ ବାହାରି
ଆସିଲା—ଗାଲରୁ ହାତ କାଢି ସେ ସାମନାକୁ
ଚାହିଁଲା—ତା' ଦି'ଗାଲଦେଇ ଦି'ଧାର ଲୁହ ଗଡ଼ି
ପଡ଼ିବାର ଦେଖାଗଲା···ଟାଙ୍ଗୀଧରି ପ୍ରବେଶ କଲା
ସୁନାକର—ବନ୍‌ଫୁଲ୍‌କୁ ବସିଥିବାର ଦେଖି —)

ସୁନାକର—ଏଠି ବସିଚୁ କଅଣ ?

ବନ୍‌ଫୁଲ୍—ଆଉ କଅଣ କରନ୍ତି— ?

ସୁନାକର—( ପାଖକୁ ଆସି ) ହଳଦୀ କେତେ
ହେଲା ?

ବନ୍‌ଫୁଲ୍—ଦି' ଟଙ୍କାର—

ସୁନାକର—( ଖୁସି ହୋଇଯାଇ ) ଦ' ଟଙ୍କାର ?
  ବାଃ—ଦେ ଆଣ୍—

ବନ୍‌ଫୁଲ୍—ତତେ ଦେବି ?···ତୁ ଟଙ୍କାନେଇ ରସ ପିଉଥା···ଆଉ ତିନ ତିନଟା ଛୁଆଙ୍କୁ ତାଙ୍କ ଅଜା ପୋଷୁଥାଉ—

ସୁନାକର—ମୁଁ କଅଣ କରିବି ସେଥିପାଇଁ ?

ବନ୍‌ଫୁଲ୍—ତୁ ଗାଁ ଛାଡ଼ି ଯାଉନୁ କାହିଁକି କୁଆଡ଼େ···? କଅଣ କରୁଚୁ ତୁ ବସି ବସି ? ମୁଁ ତ ଖଟି ମଲି—ଯାଉନୁ ଉଦଗିର—ଚାହାଡ଼ କଟାହେଇ ରୁଟ୍ କାମ୍ ହେଉଚି···ମୂଲ ଲାଗି ଦ' ପଇସା ରୋଜଗାର କର—

ସୁନାକର—ମୁଁ ପାରିବିନି···

ବନ୍‌ଫୁଲ୍—( ରାଗିଯାଇ ) କାହିଁକି ପାରିବୁ ?—ଏଠି ଲାଉତୁମ୍ବା ଟାଏ ଧରି ହିନ୍ତାଳ ସଲପ ଗଛ ମୂଳରେ ବସି ରସ ପିଉଥା—ଆମେ ସବୁ ନଖାଇ ନ ପିଇ ମରୁ ।

ସୁନାକର—କାହିଁକି ଏତେ ଛୁଆ ଜନ୍ମ କରୁଥିଲୁ କି ?

ବନ୍‌ଫୁଲ୍—ଅହାରେ ମର୍ଦ୍ଦ···ମୁଁ ଜନ୍ମ କଲିବୋଲି ଦୋଷଟା ମୋର ନାଇଁ ? ଯା—ଯା···ଜଲାନ

ସୁନାକର—କଅଣ ଖାଇବାକୁ ରଖିଚୁ ?

ବନଫୁଲ—ଯୋଉ ଗୁଡ଼ାକ ସାଇତି ଦେଇଚୁ । ମୁଁ ତ ହାଟରୁ ଫେରିଲି···ମତେ ଖାଇବାକୁ ମାଗୁଚୁ କଅଣ ? ଟିକିଏ ହେଲେ ଲାଜ ସରମ ଥାଆନ୍ତା—ଯା—ଦୂରକୁ ଯା—ମୁହଁ ତୋର ଖଣ୍ଡୁ ଖଣ୍ଡୁ ଗନ୍ଧାଉଚି—

ସୁନାକର··( ରାଗି ) ଖାଇବାକୁ ଦବୁ କି ନାହିଁବେ ଶାଳି ?···

ବନ୍‌ଫୁଲ୍—କଅଣ କହିଲୁ·· ମୁଁ ତୋର ଶାଳି ?··· ନା ଦେବିନି—କଅଣ କରିବୁ କର—

ସୁନାକର—ଦବୁନି ? ଆଚ୍ଛା···(ଠେଙ୍ଗାକୁ ଉଞ୍ଚେଇ ବନ୍‌ଫୁଲ୍‌କୁ ଆଘାତ କରିବାକୁ ଗଲାବେଳେ ଦୂରରୁ ଶୁଣାଗଲା ବଂଶୀର ଧ୍ୱନି...ତା ପରେ ପରେ ଖଞ୍ଜଣୀର ଶବ୍ଦ...ତା ପରେ ଭାସି ଆସିଲା ଗୀତ ଓ ବଜାର ଠକ୍ ଠକ୍ ଶବ୍ଦ—ଗୀତ—ଆଜ୍ଞା, ବାରିଜ ବଦନ ଇତ୍ୟାଦି—ଠେଙ୍ଗା ଆଉଟା ଉଞ୍ଚେଇ ସୁନାକର ସେମିତି ରହିଗଲା—ହଠାତ୍ ତା ମୁହଁ ଉପରେ ପଡ଼ିଲା ଟର୍ଚ୍ଚ ଆଲୁଅ···ସୁନାକର ସେଆଡ଼େ ଚାହିଁଲା—ଠେଙ୍ଗାଟା ତା' ହାତରୁ ତଳେ ପଡ଼ିଗଲା···ଜଣେ ମହିଳା, ଜଣେ ପିଅନ୍ ଓ ଠେଙ୍ଗା ଧରିଥିବା ଆଉଜଣେ କଳି ଯୁବକର ପ୍ରବେଶ—ମହିଳାଟିର ପୋଷାକ ପରିଚ୍ଛଦରୁ ମନେହୁଏ ସେ ଜଣେ ଆଦିବାସୀ ହେଲେ ଭିତରେ—ସେ ଦଉଡ଼ି ଯାଇ ସୁନାକର ଓ ବନ୍‌ଫୁଲ୍‌ର ମଝିରେ ଠିଆହୋଇ ପଡ଼ିଲା ।

ମହିଳା—କାହିଁରେ ତୁ ତୋର କନିଆକୁ ଖୁନ୍ କରିବାକୁ ଯାଉଥିଲୁ ? (ସୁନାକର ମୁହଁପୋତି ଠିଆ ହେଲା)

ବନ୍‌ଫୁଲ୍—ନାଇଁ ଦେଈ—ତମେ ବ୍ୟସ୍ତ ହୁଅନି,—ମେଇଟା ମାଇଚିଆଟା···ସେ ମୋତେ ଖୁନ୍ କରିବ କଅଣ ? ଖାଲି ଠେଙ୍ଗାଟା ଏମିତି ଉଞ୍ଚୁଉଥାଏ ରାଗିଗଲେ···ଏମିତି ବହୁତ ଥର···

ମହିଳା—(ବନ୍‌ଫୁଲ୍‌କୁ ଚାହିଁ) କାହିଁକି ସେ ଠେଙ୍ଗା ଉଞ୍ଚେଇଥିଲା ?

ପିଅନ—ଆଜ୍ଞା, ରସ ପିଇ ଦେଇଚି···ହୁସ୍‌ରେ ନାଇ·· କନିଆ ସାଥିରେ ଝଗଡ଼ା କରୁଚି···

ମହିଳା—ଝଗଡ଼ାର କାରଣ କଅଣ ?

ବନଫୁଲ—ମତେ ରସ ପିଇବା ପାଇଁ ପଇସା ମାଗିଲା ଦେଈ···କୋଉଠୁ ପାଇବି ପଇସା ?···ହାଟରେ ହଳଦୀ ବିକି ଦି ଟଙ୍କା ଆଣିଚି···ଚୂଡ଼ା କିଣିଲେ ଛୁଆଙ୍କ ନଇଁଣ

ମହିଳା—ତୋ ନାଁ ।

ବନ୍‌ଫୁଲ୍—ବନ୍‌ଫୁଲ୍—

ମହିଳା—ପିଲାଛୁଆ ?

ବନ୍‌ଫୁଲ୍—ତିନିଟା···

ମହ୍ବିଳା—କାହିଁ—ମୁଁ ତ କାହାକୁ ଦେଖୁନି ?

ବନ୍‌ଫୁଲ୍—କେମିତି ଦେଖିବ ଦେଈ···ଖାଇବାକୁ ଦେଇ ପାରୁନଥିବ ବୋଲି ବା' ଆସି ନେଇଗଲା ଛୁଆ ତିନଟାକୁ···ଆଉ ଇଏ ମରଦ···ଖାଲି ରହିପିଇ ଗଡ଼ୁଛି—

ପିଅନ—କରେ···ତେବେ କନିଆ ଘରକୁ ଆଣିବାକୁ ମନ କରୁଥିଲୁ କାହିଁକି ? ଯୁଆନ ଭେଣ୍ଡା··· ଗତର ଖଟେଇ ଖାଇ ପାରୁନୁ ?

ମହ୍ବିଳା—(ସୁନାକରକୁ ଚାହିଁ) ଛି, ଛି···ଏମିତି ଖରାପ ପ୍ରକୃତି କରୁଚ ତୁମେ· ·ଆମେ ହେଲେ ଗରିବ କିନ୍ତୁ··ହଁ' ପଇସା ରୋଜଗାର କଲେ ଯିନା ବଞ୍ଚିବା···ତୁ ଯଦି ଘରିକରି ତୋ କନିଆକୁ କୋଉଦିନ ଆଣି ଦେବୁନି···ନିଜେ ତ ଖାଇ ପାରିବୁ···ତୋ ଛୁଆ ତିନଟାଙ୍କ ଅବସ୍ଥା କ'ଣ ହବ କହିଲୁ ?

ସୁନାକର—(ଲଜ୍ଜିତ ହୋଇ) ଟାଙ୍ଗୀଟା ଉଦ୍ଧୁଁରୁଏ ବୋଲି ମୁଁ ତାକୁ ହାଣିଦେବ ?

ମହ୍ବିଳା—କିଏ କହିବ···ରଗିଗଲେ ତ ମଣିଷ ଜ୍ଞାନଶୂନ୍ୟ ହୋଇଯାଏ···

ସୁନାକର—ମୁଁ ବନ୍‌ଫୁଲ୍‌କୁ ଖୁବ୍ ସୁଖପାଏ···ତାକୁ ମୁଁ···

ମହ୍ବିଳା—ତାକୁ ସୁଖ ପାଉଚ ତୁ ନ ଖଟି ତାକୁ ଖଟେଉଚୁ କିଆଁ ?

ସୁନାକର—କି କାମ କରିବ ? ଏ ଅଞ୍ଚଳରେ କାମ କାହିଁ ?··· ଲୁଟ୍ କାମ ତ ମିଳୁନି···

ମହ୍ବିଳା—ତୁ ପାଠ ପଢ଼ିଚୁ ?

ସୁନାକର—ପଞ୍ଚମ ଶ୍ରେଣୀ ପାଶ୍ କରିଚି···

ମହ୍ବିଳା—ଚିଢ଼ନୁ କାମ କରିବୁ ?

ସୁନାକର—(ଖୁସୀହୋଇ) ହଁ, କରିବ ଦେଈ···ଏବ ?

ମହ୍ବିଳା—ଗ୍ରାମସେବକା ତାଲିମ୍ କେନ୍ଦ୍ରରେ କାମ ଖାଲିଅଛି···ତୁ କାଲି ଠିକାବାଲି ଆ···ଦରଖାସ୍ତ ଦେଇ ଆସିବୁ ।

ସୁନାକର—ହଁ, ଦେଈ·· ଆସିବି ।

ବନ୍‌ଫୁଲ୍—(ମୁହଁ ସୁଖାଇ) ଦେଈ, ସିଏତ ଠିକାବାଲିରେ ଯାଇ ପିଅନ କାମ କରିବ—ଆଉ ମୁଁ ଏଠି ଏକା ରହିବ ? ମୁଁ ତାକୁ ଛାଡ଼ି ରହି ପାରିବିନି ।

ମହ୍ବିଳା—(ହସି) ରହିପାରିବୁନି ?···ତୋ ଭେଣ୍ଡିଆ ତତେ ଟାଙ୍ଗୀରେ ହାଣିବାକୁ ବସିଚି ··ତଥାପି ତୁ କହୁଚୁ ତାକୁ ଛାଡ଼ିକରି ରହି ପାରିବୁନି ?

ବନ୍‌ଫୁଲ୍—(ମୁଣ୍ଡହଲେଇ) ଆଏ ଦେଈ···

ମହ୍ବିଳା—ଆଚ୍ଛା ତୁ ତେବେ ତା ପାଖରେ .ରହିବୁ···

ବନ୍‌ଫୁଲ୍—ହେଲେ···ଖାଲି ଛୁଆଟାକୁ ବସି ବସି ଦିନ ଯିବ ? ମତେ ଗୋଟେ ପାଇଟି ଦିଅ ଦେଈ ।

ମହ୍ବିଳା -ତୁ ଗ୍ରାମସେବିକା ହବୁ ?

ବନ୍‌ଫୁଲ୍—ସିଏ କି ପାଇଟି ଦେଈ ?

ମହ୍ବିଳା—ତୁ ଗାଁ ଗାଁ ବୁଲି ଝିଅମାନଙ୍କୁ ସିଲେଇ ଶିଖେଇବୁ···ତାଙ୍କୁ ପାଠ ପଢ଼େଇବୁ ତୁ ପାଠ ପଢ଼ିଚୁ ?

ବନଫୁଲ—ମୁଁ ବି ପଞ୍ଚମ ପାଶ୍ କରିଚି ।

ମହ୍ବିଳା -(ହସି) ବାଃ ...ଏତେ ପଢ଼ିଚୁଟି...ତା'ହେଲେ ଆମ ଜନ୍ଦଛୁଆ ମାନଙ୍କୁ ଘରେ ଘରେ ଯାଇଁ ପାଠ ପଢ଼େଇବୁ···ତାଙ୍କ ଦେହ ପା ଖବର ନବୁ...ଛୁଆ ଜନମ କରିବାକୁ ଯାଉଥିବା ମା' ମାନଙ୍କର ସ୍ୱାସ୍ଥ୍ୟ ଦେଖାଶୁଣା କରିବୁ...ଘରଭଲ-କାମ...ଦରମା ବି ବହୁତ—କଅଣ—ରାଜି ?

ବନ୍‌ଫୁଲ୍—ଦେଈ, ଏକାମ ତ ମୁଁ କିଛି ଜାଣେନି ।

ମହ୍ବିଳା—ଆଗେ ଟ୍ରେନିଂ ନିଅହବ ଆଗ—ତା' ପରେ ଯାଇ...

ବନଫୁଲ—ତା ହେଲେ ମତେ ଦିଅ ସେ ଟ୍ରେନିଂ··· ସେଇ ଠିକାବାଲିରେ ତ ?

ମହ୍ବିଳା—ହଁ, ସେଇଠି—କେବେ ଟ୍ରେନିଂକୁ ଯିବୁ କହ...

ବନଫୁଲ -ଯେବେ କହିବ...(ହଠାତ୍ ମୁହଁ ଶୁଖାଇ) ହେଲେ ଦେଈ...

ମହୁଲା—କ'ଣ ହେଲା ଫେର୍ ?

ବନ୍‌ଫୁଲ୍—ଏ ଉଇଜଳା ମରଦଟା ମତେ ଖାଇ ସାରିଲାଣି ପରା...(ସୁନାକରକୁ ଲାଜରା ମୁହଁରେ କଣେଇ ଚାହିଁଲା)

ପିଅନ—ଦେଖ...କି ଯେମତରେ ! ସବୁତ ହେଲା... ଫେର ଝଲେଇ ଛୁଙ୍କିଲା କାହିଁକି ?

ମହୁଲା – କଅଣ କହୁନୁ ?—

ବନ୍‌ଫୁଲ୍—ମୁଁ ସାଥି ସାଥି ଟ୍ରେନିଂକୁ ଯାଇ ପାରିବନି ଦେଖ...ଏ ଗାତଫସା ମତେ କଅଣ ଛାଡ଼ୁଚି... ଖାଲି ରସପିଇ ଦଉଚି—ଆଜ ବର୍ଷକୁ ବର୍ଷ... କହିଲ ଦେଖ—ତିନିଟା ଛୁଆ ତ ସମ୍ଭାଳି ପାରିଲିନି ଯେ କା' ପାଖରେ ଛାଡ଼ିଲି—ଫେର୍ ଗୋଟାକୁ—

ମହୁଲା—(ବିସ୍ମିତ ହୋଇ) ଏଁ ଫେର୍ ! ...ଆଲୋ ଏତେଗୁଡ଼ାଏ ଛୁଆଙ୍କୁ ବଞ୍ଚେଇବୁ କିମିତି ? ମଣିଷ କରିବାତ ଦୂରର କଥା...

ବନ୍‌ଫୁଲ୍—ସେଇଟା ପରା ଦେଖ...ମୁଁ ଛୁଆ ଜନମ କରି କରି ଆଜ କାମ ଖଟି ଖଟି ହାଲିଆ ହେଇ ଗଲିଣି...ଆଜ ପାରିବନି...

ପିଅନ—ସେଥିରେ ଫେର୍ କହୁଚୁ...ତା'କୁ ଛାଡ଼ି ରହି ପାରିବୁନି ? ଖାଲି ଏକା ତାରି ଦୋଷ ଆଉ ତୁ ଗୋଟିପଣେ ତୁଳସୀ...

ମହୁଲା—ଏତିକିରେ ବନ୍ଦକରି ଦେ ବନ୍‌ଫୁଲ୍—ଆଉ ପିଲାଛୁଆ ଯେମିତି ନ ହେବ ତାର ବ୍ୟବସ୍ଥା କର—ଗ୍ରାମସେବିକା କାମ ଯଦି କରିବୁ ତେବେ ପିଲାଛୁଆ ଜଞ୍ଜାଳ କଟେଇଲେ ଚଳିବନି—

ବନ୍‌ଫୁଲ୍— ମୋ ହାତର କଥା କି ଦେଖ

ମହୁଲା—ହଁ—ହଁ—ତମ ଦିହିଙ୍କ ହାତର କଥା— ତମେ ଦିହେଁ ଇଚ୍ଛାକଲେ ହବ···

ପିଅନ—ଅଲବତ ହବ। ସେମିତି ମୁଁ ଇଚ୍ଛା କଲି ବୋଲି ମୋର ତିନିଟା ଛୁଆରେ ଠକ୍ କିନା ରହିଗଲା...

ସୁନାକର—(ବିସ୍ମିତ ହୋଇ) ଆମେ ଦିହେଁ ଇଚ୍ଛା-କଲେ ହବ ?

ମହୁଲା—ହଁ···ତମେ ଦିହେଁ ସାଙ୍ଗହେଇ ମୋ କେନ୍ଦ୍ରକୁ ଯିବ...ମୁଁ କହିଦେବି କଅଣ କରିବାକୁ ହେବ—ମୁଁ ଯାଉଚି...ମୋର ଡେରିହେଇ ଗଲାଣି (ପିଅନକୁ ଚାହିଁ) ଚାଲ୍ ଯିବା!...

ସୁନାକର—ଦେଖ, ତୁ ଏ ଅନ୍ଧାରରେ କୁଆଡ଼େ ଯିବୁ ?

ମହୁଲା—ଏଇ ମୁଣ୍ଡିଆ ଆଉ ପଟ ଗାଁକୁ—(ସାଥିରେ ଥିବା କନ୍ଧଟିକୁ ଦେଖାଇ) ଯା'ର କନିଆ କଷ୍ଟ ପାଉଚି—

ସୁନାକର—ଚାଲ, ମୁଁ ତୋ ସାଥିରେ ଯିବି।...

ମହୁଲା—(ହସି) ନାଇଁ ନାଇଁ,...ତୋର ଯିବା ଦରକାର ନାଇଁ—ମୁଁ କ'ଣ ଅନ୍ଧାରରେ ଯିବାକୁ ଡରୁଚି ? ମୁଁ ପରା ତୋ'ରି ଭିତରୁ ଜଣେ—ଆଜି ପାଠପଢ଼ି ଚାକିରି କଲି ବୋଲି କଅଣ ଅଲଗା ଲୋକ ହେଇଗଲି···ମୁଁ ଏଇ ପାହାଡ଼ ବଣ କୋଳରେ ବଢ଼ିଛି...ଅନ୍ଧାର ଭିତରେ କେତେ ବୁଲିବି···ମୋର ତ ଗାଁ ଗାଁ ବୁଲିବା କାମ—ଦିନ ନାହିଁ...ରାତି ନାହିଁ—ଯିବ ତମେ ଦିହେଁ ମୋ କେନ୍ଦ୍ରକୁ—?

ବନଫୁଲ—ନିଶ୍ଚେ ଯିବୁ ଦେଖ,

(ଟର୍ଚ୍ଚ ଆଲୁଅ ଜାଳି ମହୁଲା, ପିଅନ ଓ କନ୍ଧ ପ୍ରସ୍ଥାନ କଲେ। ସୁନାକର ସେମାନଙ୍କ ଯିବା ବାଟକୁ ଚାହିଁ ରହିଲା...ବନଫୁଲ ବି···ସୁନାକର ମୁହଁ ଘୂରାଇ ବନଫୁଲକୁ ଚାହିଁଲାବେଳେ ତା' ମୁହଁରେ ଗୋଟାଏ ପରିବର୍ତ୍ତନ ଦେଖାଦେଲା··· ମୁହଁରେ କପଟ ଏକ ଅନୁଶୋଚନାର ଭାବ... ବନ୍‌ଫୁଲ୍‌କୁ ଖୁସି କରିବାର ଆଗ୍ରହ ସେଥିରେ ଫୁଟି ଉଠିଚି...ବନଫୁଲ ମୁହଁ ଗମ୍ଭୀର କରି ଅନ୍ୟ ଆଡ଼େ ମୁହଁ ଘୂରେଇ ନେଲା ଓ କ୍ଷିପ୍ରଗତିରେ ଘର ଭିତରକୁ ଚାଲିଗଲା···ସୁନାକର କିଛି

ସମସ୍ତ ପରେ ଦୁଆରବନ୍ଧ ପାଖରେ ବସିଲା...ଓ ଅନ୍ଧାର ଘର ଭିତରକୁ ବାରମ୍ବାର ଗୃହିଁଲା...
ବନଫୁଲ ଗୋଟାଏ ପତର ଠୁଙ୍ଗାରେ ସୁନାକର ପାଇଁ କାନ୍ଦୁଲ ମିଶା ଭାତ ଆଣି ତା' ସାମନାରେ ଥୋଇ ଦେଲା —ସୁନାକର ଅନ୍ୟ ଆଡ଼େ ମୁହଁ ଘୁରେଇ ବସି ରହିଲା)

ବନ୍‌ଫୁଲ୍—କେତେ ଖାଇବାକୁ ମାଗୁଥିଲୁ ପରା ?

ସୁନାକର—ଖେକନାହିଁ-

ବନ୍‌ଫୁଲ୍—ଫେର୍ କଅଣ ହେଲା ?

ସୁନାକର—ମୁଁ ତ ପିଅନ ଚାକରୀ କରିବି...ତୁ ଫେର କାହିଁକି ଗ୍ରାମ ସେବକା ହବୁ ?

ବନ୍‌ଫୁଲ୍—ମୁଁ ଘରେ ବସିବି କାହିଁକି ?—ଗୃହ-ଗୃହଟା ଛୁଆଙ୍କୁ ପୋଷି ମଣିଷ କରିବାକୁ ହବ—

ସୁନାକର—ତୁ ଗାଁ ଗାଁ ବୁଲିବୁ ସେଇ ଡାକ୍ତରାଣୀ ଭଳି ବେଶ ପିନ୍ଧି...ବାବୁଭାୟାଙ୍କ ନଜର ପଡ଼ିବ ତୋ ଉପରେ—

ବନ୍‌ଫୁଲ୍—କଅଣ ହେଇଯିବ ସେଇଠୁ ?

ସୁନାକର—ତୋ ମୁହଁ, ଆଖି, ହସ ଦେଖିଲେ ଏଇ ପାଠୁଆ ବାବୁଗୁଡ଼ାଙ୍କ ମୁଣ୍ଡ ବିଗିଡ଼ି ଯିବ—

ବନ୍‌ଫୁଲ୍—ହେଃ ମୋର ଆଉ ବୟସ ଅଛି...ଗୃହ-ସ୍ଥଳଟା ପିଲାର ମା'ଟି ମୁଁ ।

ସୁନାକର—କେତେ କହିବେନି...ଆଉ ତଳ ଅଂଚଳର ଏଇ ବାବୁମାନେ...ଭାରି ଖରାପ...ତମକୁ ଖରାପ କରିଦେବେ ଟଙ୍କା ଲୋଭ ଦେଖେଇ...ଆଉ ଧବଳୁଆଁ ହେବେନି...

ବନ୍‌ଫୁଲ୍—କାହା ଜିଭରେ ହାଡ଼, ଲେଡ଼ରେ ଦାନ୍ତ ଅଛି ମତେ ଖରାପ କରିବ...ହଇରେ ତୁ ମତେ ଆଜଯାଏଁ ଚିହ୍ନିଲୁନି...?

ସୁନାର—ଚିହ୍ନିଚି...ହେଲେ

ବନ୍‌ଫୁଲ୍—ଯଦି ମୋର ସେମିତି କିଛି ଦେଖୁ ତେବେ ତୁ ଟାଙ୍ଗୀରେ ମତେ ଦୁଇଖଣ୍ଡ କରିଦବୁ...ତୋ ଟାଙ୍ଗୀ ଆଗରେ ମୁଁ ବେକ ଦେଖାଇ ଦେବି...

(ସୁନାକର ବନ୍‌ଫୁଲ୍‌ର ଛଳ ଛଳ ଆଖି ଦେଖି ତାକୁ ପାଖକୁ ଭିଡ଼ି ଆଣି ଆଦର କଲା...ବନ୍‌ଫୁଲ୍ ତୃପ୍ତିର ହସ ହସି ସୁନାକର ଛାତିରେ ମୁହଁ ଲୁଚେଇଲା-ହଠାତ୍ ଦୂରରୁ ଝଞ୍ଜଣି ଓ ବଂଶୀର ସ୍ୱନ ଶୁଣାଗଲା... ସୁନାକର ଘର ଭିତରକୁ ଯାଇ ତା ବଂଶୀଟା ନେଇ ଆସିଲା ଓ ଠିଆହୋଇ ବଜେଇଲା।

ଆଲୋ ବାରିଜ ବଦନୀ...ଗୀତର ସ୍ୱର... ବନ୍‌ଫୁଲ୍ ମନ୍ତ୍ରମୁଗ୍ଧ ଭଳି ସୁନାକର ସାମନାରେ ଠିଆହୋଇ ବଳା ଠକ ଠକ କରି ନାଚିବାକୁ ଆରମ୍ଭ କରିଦେଲା ।)

---

ବି: ଦ୍ର: —ପୂର୍ବେ କନ୍ଧମାନଙ୍କଦ୍ୱାରା ଯେଉଁ ଓଡ଼ିଆ ଶବ୍ଦ ଗୁଡ଼ିକର ବିକୃତ ଉଚ୍ଚାରଣ ହେଉଥିଲା ।
ବାରିଜ— ଭାରିଝ, ବଦନ—ଭଧନ, କଥା—ଖଥା, ନଦୀ—ନଧୀ, କୂଳେ—ଖୂଲେ, ସଖିମେଳେ—ଛକମେଲେ, ମୁକୁଳା—ମୁଖୁଲା, ବୁକୁ—ଭୁଖୁ, କଡ଼ି—ଖଡ଼ି, ଚକଟେ – ଚଖିଟେ, ପଙ୍କଜ—ପଙ୍ଘଜ, ପେଲବ – ଫେଲବ, ବାହୁ—ଭାଉ, ବାଙ୍କ—ଭାଙ୍କ, ପେଣି—ଫେଣି ।

—o—

# ପିଲାମାନେ ଭୟ କାହିଁକି କରନ୍ତି

ଡକ୍ଟର ରାଧାନାଥ ରଥ, ଏମ୍. ଏ, ପିଏଚ୍. ଡ଼ି. (ଲଣ୍ଡନ)

ଆମେରିକାର କେତେକ ବିଖ୍ୟାତ ମନସ୍ତତ୍ତ୍ୱବିତ୍ ୫ ବର୍ଷଠାରୁ ୧୨ ବର୍ଷ ବୟସର ୪୦୦ ପିଲାଙ୍କୁ ମାସ ମାସ ଧରି ପରୀକ୍ଷା ଓ ପର୍ଯ୍ୟବେକ୍ଷଣ କଲା ପରେ ନିମ୍ନ-ଲିଖିତ ମତେ ସେମାନଙ୍କର ପର୍ଯ୍ୟବେକ୍ଷଣ ଫଳ ପ୍ରକାଶ କରିଅଛନ୍ତି । ଏଥିରୁ ୫ ଠାରୁ ୧୨ ବର୍ଷ ପିଲାଙ୍କର ଭୟ ବିଷୟରେ ଗୋଟିଏ ମୋଟାମୋଟି ଧାରଣା କରି-ହେବ । କିନ୍ତୁ ଆମଦେଶର ପିଲାଙ୍କର ଭୟ ସେମାନଙ୍କ-ଠାରୁ କେତେ ବିଷୟରେ ବହୁତ ବେଶି ହେବ । ଡାଆଣୀ-ଭୂତ ବିଷୟରେ ଆମ ପିଲାଙ୍କର ଭୟ ବେଶି ହେବାର କଥା । ଆମ ଦେଶରେ ଏ ପ୍ରକାର କୌଣସି ଗବେଷଣା ହୋଇନ ଥିଲେ ଚଳେ ।

| ଶତକଡ଼ା ପିଲାଙ୍କ ସଂଖ୍ୟା | ଭୟଜାତ କରୁଥିବା ବସ୍ତୁ |
|---|---|
| ୨୭.୧ | ··· ଅସୁର, ଡାଆଣୀ, ଭୂତ, ମୃତ ଦେହ, ମନ୍ତ୍ରଯନ୍ତ୍ର ପ୍ରଭୃତି ରହସ୍ୟ-ଜନକ ଘଟଣା । |
| ୧୭.୮ | ··· ଜୀବଜନ୍ତୁ । |
| ୧୪.୧ | ··· ଅପରିଚିତ ଲୋକ । |
| ୯.୭ | ··· ଶାରୀରିକ କ୍ଷତି ହେବାର ଆଶଙ୍କା |
| ୮.୮ | ··· ରାତିର ଦୁଃସ୍ୱପ୍ନ ଯୋଗୁଁ ଚମକି ଉଠି ଭୟ ପାଇବା । |
| ୭.୩ | ··· ଗୁଣ୍ଡା ପ୍ରକୃତିର ଲୋକ ବା ଡକାଏତଦ୍ୱାରା ଅପହୃତ ହେବାର ଆଶଙ୍କା । |
| ୬.୮ | ··· ଅସ୍ୱାଭାବିକ ଶବ୍ଦ ଓ ମୁଖଭଙ୍ଗୀ । |

(ଭୟ କରିବାରେ ଛୋଟ ଓ ବଡ଼ ପିଲାଙ୍କ ମଧ୍ୟରେ ନିମ୍ନଲିଖିତ ପ୍ରଭେଦ ଦେଖାଯାଏ । )

| | ୫।୭ବର୍ଷର ପିଲା ଶତକଡ଼ା | ୧୧।୧୨ ବର୍ଷର ପିଲା ଶତକଡ଼ା |
|---|---|---|
| ଡାଆଣୀ, ଭୂତ, ଅସୁର, ରହସ୍ୟଜନକ ଘଟଣା, ଅନ୍ଧାର, ଅଜଣା ସ୍ଥାନ, ଅପରିଚିତ ଲୋକ, ଏକା ରହିବା, ହାତ ଗୋଡ଼ କଟି ଯାଇଥିବା ଲୋକ, ରାତିରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ଉଠିବା ପ୍ରଭୃତି ଭୟ | ୧୧.୧ | ୨୦.୨ |
| କାମରେ ଭୁଲ କରିବା ଲାଗି ଭୟ | — ୦ | ୪.୦ |
| ଜୀବଜନ୍ତୁ ଭୟ | ୨୭.୩ | ୧୧.୧ |
| ଡକାୟତ ଗୁଣ୍ଡା ପ୍ରଭୃତିଙ୍କ ଭୟ··· | ୧୨.୧ | ୫.୧ |
| କୌଣସି ଭୟ ନ ଥିବା ପିଲା | ୮.୧ | ୪.୦ |

ପୁଅ ଝିଅମାନଙ୍କ ମଧ୍ୟରେ ମଧ୍ୟ ନିମ୍ନ ଲିଖିତ ପ୍ରଭେଦ ଦେଖାଯାଏ ।

| | ପୁଅ ଶତକଡ଼ା | ଝିଅ ଶତକଡ଼ା |
|---|---|---|
| ଶାରୀରିକ କ୍ଷତି ହେବାର ଆଶଙ୍କା | ୧୨.୧ | ୭.୦ |
| କୌଣସି ଭୟ ନ ଥିବା ପିଲା — | ୭.୫ | ୩.୦ |
| ଅନ୍ଧାର, ନିର୍ଜନ ସ୍ଥାନ, ଅପରିଚିତ ସ୍ଥାନ ବା ଲୋକ, ଅଦ୍ଭୁତ ଦୃଶ୍ୟ ଓ ଶବ୍ଦ | ୧୧.୧ | ୧୭.୧ |

(ଦୁଇବର୍ଷ କିମ୍ବା ତା'ଠାରୁ କମ୍ ବୟସର ପିଲ୍ଲ-ମାନେ ନିମ୍ନଲିଖିତ ଘଟଣାଗୁଡ଼ିକୁ ବେଶି ଭୟ କରିବାର ଦେଖାଯାଏ ।)

(କ) ସମସ୍ତ ପ୍ରକାର କର୍କଶ ଶବ୍ଦ ଓ ଏପରି ଶବ୍ଦ କରୁଥିବା ମନୁଷ୍ୟ ଜୀବଜନ୍ତୁ ଓ ବସ୍ତୁ ।

(ଖ) ଅଭିନ୍ନ ଓ ଅପରିଚିତ ବସ୍ତୁ, ଲୋକ, ସ୍ଥାନ ଓ ପରିସ୍ଥିତି । ଲୋକ ପରିଚିତ ହେଲେ ମଧ୍ୟ ରାଗିବା ଗାଳିଦେବା, ମାରିବା ଅବସ୍ଥାରେ କିମ୍ବା କୌଣସି ଅସ୍ୱାଭାବିକ ବ୍ୟବହାର କଲାବେଳେ ।

(ଗ) ଶାରୀରିକ ଯନ୍ତ୍ରଣାଦାୟକ ବସ୍ତୁ, ଲୋକ, ପରିସ୍ଥିତି । ଡାକ୍ତର, ନର୍ସ, ଡାକ୍ତରଖାନା, ଇଞ୍ଜେକ୍ସନ୍ (ପିଲାଙ୍କୁ ଡାକ୍ତର କିମ୍ବା ନର୍ସ ଆସି କୌଣସି ପ୍ରକାର ଅପରେଶନ୍ କରିବା ବା ଇଞ୍ଜେକ୍ସନ୍ ଦେଲାବେଳେ) ।

(ଘ) ପଡ଼ିଯିବା ବା ପଡ଼ିଯିବାର ଆଶଙ୍କା, ବିନା ଅବଲମ୍ବନରେ ହଠାତ୍ ବସିବା ବା ଠିଆହେବା; ପଡ଼ି-ଯିବାର ଭୟଥିବା ସ୍ଥାନ କିମ୍ବା ପଡ଼ିଯିବାବେଳେ ପାଖରେ ଥିବା ଯେକୌଣସି ବସ୍ତୁ ଓ ବ୍ୟକ୍ତି ।

ଦୁଇବର୍ଷଠାରୁ ୬ ବର୍ଷ ବୟସର ପିଲାମାନେ ବିଶେଷ କରି ନିମ୍ନଲିଖିତ ଘଟଣାଗୁଡ଼ିକୁ ଭୟ କରନ୍ତି ।

(କ) ଅତର୍କିତ ଭାବରେ ହଠାତ୍ କୌଣସି ଗୋଟିଏ ବସ୍ତୁ ବା ଜୀବର ଯିବା ଆସିବା ବା ଅତିଶୀଘ୍ର କେହି ପିଲା ଆଗରୁ ଅଦୃଶ୍ୟ ହୋଇଯିବା—ଦ୍ରୁତ ଗତିରେ ଆଲୁଅ କିମ୍ବା ଛାଇର ସଂଚାଳନ ପ୍ରଭୃତି ।

(ଖ) ଅଧିକାଂଶ ଜୀବଜନ୍ତୁ ।

(ଗ) ଅନ୍ଧାର ।

(ଘ) କାଳ୍ପନିକ ଜୀବଜନ୍ତୁ ।

(ଙ) ଏକା ରହିବା ବା ଅନ୍ୟମାନଙ୍କଦ୍ୱାରା ପରିତ୍ୟକ୍ତ ହେବା ଭୟ ।

(ଚ) ଅନ୍ୟମାନଙ୍କଠାରୁ ଶୁଣିବା ଭୀତି ଉତ୍ପାଦକ ବସ୍ତୁ ବା ପରିସ୍ଥିତି ।

(ଛ) ନିଜ ଉପରକୁ ବିପଦ ଆଣିବା—ଯେପରି କୋଏଡ଼ ଦ୍ୱାରା ଅପହୃତ ହେବା, ଅପରିଚିତ ଲୋକ-ଠାରୁ ମାଡ଼ ଖାଇବା, ରାସ୍ତାରେ ଗାଡ଼ି ମାଡ଼ିଯିବା, ନିଆଁ, ପବନ, ପାଣି, ଘଡ଼ଘଡ଼ି ପ୍ରଭୃତିର ଭୟ ।

(ଜ) ଅନ୍ୟମାନଙ୍କର ଭୟ କରିବାର ଠିକ୍ ପରେ ପରେ ସେହିପ୍ରକାର ବସ୍ତୁ ବା ପରିସ୍ଥିତିକୁ ଭୟ କରିବା ।

(ଝ) ଭୟଙ୍କର ସ୍ୱପ୍ନ ଦେଖି ରାତିରେ ଚିତ୍କାର କରି ଉଠିବା ଓ ଅନ୍ଧାର ଘରେ କାଳ୍ପନିକ ଛବିର ଉପସ୍ଥିତି କଥା ଭାବି ଭୟ କରିବା ।

(ଞ) ଭବିଷ୍ୟତର ବିପଦ ଆଶଙ୍କା କରି କଳ୍ପନାରେ ନାନାପ୍ରକାର ଭୟ ଅନୁଭବ କରିବା ।

ଏହି ବୟସରୁ ପିଲାମାନଙ୍କର କଳ୍ପନା ଶକ୍ତି ବଢ଼ିବାକୁ ଆରମ୍ଭ କରେ । ତେଣୁ କଳ୍ପନାରେ ସେମାନେ ବହୁତ ଜିନିଷ ଦେଖନ୍ତି ଓ ଅନେକ ସମୟରେ କଳ୍ପନାରେ ଦେଖିଥିବା ଛବିକୁ ପ୍ରକୃତରେ ଦେଖିଲା ପରି ମନେ କରନ୍ତି । ବାସ୍ତବ ଓ କଳ୍ପନା ମଧ୍ୟରେ ଥିବା ଆକାଶ ପାତାଳ ପ୍ରଭେଦ ବିଷୟରେ ସେମାନ-ଙ୍କର ଜ୍ଞାନ ହୋଇ ନ ଥାଏ । ତେଣୁ ଘର ବଗିଚାରେ ଗଣ୍ଡା ଗଣ୍ଡା ବାଘ,ଭାଲୁ ଦେଖିବାର କଳ୍ପନା ସେମାନେ କରନ୍ତି । ସେଥିପାଇଁ ଡରନ୍ତି ଓ ଘରର ଲୋକଙ୍କ ଆଗରେ କହନ୍ତି ଯେ ସେମାନେ ପ୍ରକୃତରେ ବାଘ, ଭାଲୁ ବଗିଚାରେ ଦେଖି ଆସି ଅଛନ୍ତି । ଏହାଦ୍ୱାରା ସେମାନେ ମିଛ କହନ୍ତି ବୋଲି ଭାବିବା ଭୁଲ । କଳ୍ପନା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଆଖି ଆଗରେ ସେ ସବୁ ନାଚିଯାଏ ଓ ସେମାନେ ଏ ସବୁ ଭାବନାର ପ୍ରକୃତ ଅବସ୍ଥିତିରେ ବିଶ୍ୱାସ କରନ୍ତି । ତେଣୁ ସେମାନଙ୍କର ଏ ପ୍ରକାର ଭୟହେବା ସ୍ୱାଭାବିକ । କିନ୍ତୁ ଏ ପ୍ରକାର ଭୟ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ କମିଯାଏ ।

—*—

# ॥ ଅଙ୍ଗ ପ୍ରତ୍ୟଙ୍ଗ ମୋର ॥

ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀ

ଗୋଡ଼ ପାଇନାହିଁ ନିଜେ ଚାଲିବାକୁ
ପର ଉପକାର ପାଇଁ
ରାସ୍ତା ଅଧେ କାର ଚଢ଼ିଲେ ବିପଦ
ବେଗେ ଯିବ ବୋଲି ଧାଇଁ ।
ପେଟ ପାଇ ନାହିଁ ନିଜେ ଖାଇବାକୁ
ବୁଝିବ ଅପର ଭୋକ
ନିଜ ବାଣ୍ଟ କାଟି ଭୋକିଲା ମୁହଁରେ
ପରଷିବ ଦୁଇ ଢୋକ ।
ଛାତି ପାଇନାହିଁ ନିଶ୍ୱାସ ନେବାକୁ
ସହିବାକୁ ସବୁ ଦୁଃଖ
ଏହି ଛାତିରେ ମୁଁ ଧୈର୍ଯ୍ୟ ଧରିଲେ
ଦେବି ସବୁଙ୍କୁ ସୁଖ ।
ହାତ ପାଇନାହିଁ ମୁଁ ଚଳିବା ପାଇଁ
ହାତ ଟେକି ଦେବି ଦାନ
କଲମେ ବାଢ଼ିବି ମଥାର ଯେତେକ
ବଡ଼ ବଡ଼ ଚିନ୍ତାମାନ ।
ବେକ ପାଇନାହିଁ ହାର ପିନ୍ଧିବାକୁ
ପଡ଼ିଲେ ଅସଲ ଘାଟି
ଦେଶ ରକ୍ଷା ପାଇଁ ନିଜେ ଧରି ଛୁରି
ନିଜ ଗଳା ଦେବି କାଟି ।
ମୁଣ୍ଡ ପାଇନାହିଁ ବୁଦ୍ଧି କଉଶଳେ
ନିଜେ ରହିବାକୁ ସୁଖେ
ଚିନ୍ତା କରି କଷ୍ଟ ଊଣା କରିବାକୁ
ଦୁନିଆରେ ଶୋକ ଦୁଃଖେ ।

ପାଟି ପାଇନାହିଁ କଠୋର କଥାରେ
ଆଘାତ ଦେବାକୁ ମନେ
ଜିଭରୁ ଅମୃତ ବଚନ ନିଗାଡ଼ି
ମୋହିବି ଜଗତ ଜନେ ।
ଦାନ୍ତ ପାଇନାହିଁ ଚୋବାଇ ଚୋବାଇ
ଖାଇବାକୁ ମିଷ୍ଟ ପୁର
ଦେହେ ବଳଥିଲେ ଦେଶର ବିପଦେ
ଦୁନିଆ ଆସିବ ଦୂରୁ ।
କାନ ପାଇନାହିଁ ଗୀତ ଶୁଣିବାକୁ
ଶୁଣିବାକୁ ଦୁଃଖୀ ଡାକ
ଆଖି ପାଇନାହିଁ ଖୁଣ୍ଟିବାକୁ ସଦା
ପର ଦୋଷାଦୋଷ ଯାକ ।
ଭଲ କଥା ଦେଖି ଭଲେ ଚାଲି ମୁହିଁ
କରିଯିବି ଭଲ କାମ
ଶେଷେ କହେ ଏହି ନ ଚଳିବ କଲେ
ଖାଲି ତୁମେ କାମଦାମ ।
ପାଇଅଛ ମତେ ବହୁ ତପସ୍ୟାରେ
ଜୀବନ ସାର୍ଥକ କର
ସାରା ଏ ଜଗତ ଗୋଟିଏ କୁଟୁମ୍ବ
କାହାକୁ ନ ଭାବ ପର ।
ଋଷିମାନ ଏହା କଲେ ଚକ ଚକ
ସୁନ୍ଦର ଦିଶଇ ନାହିଁ
ଜୀବନ ସଫଳ ହୋଇଲେ ଅମର
ଭଲ ଭଲ କାମ ପାଇଁ ।

---

# ॥ ଅପୂର୍ଣ୍ଣା ଅପର୍ଣ୍ଣା ॥

**ବ୍ରଜମୋହନ**

ମୋର ଅକ୍ଷତମାନଙ୍କୁ ମୁଁ ବହୁବାର ପ୍ରଶ୍ନ କରିଛି । ...“ହେ ମୋର ଅକ୍ଷତମାନେ ! ତୁମେ କ’ଣ ଆଉ ଭବିଷ୍ୟତ ହେବନି ? ବନ୍ଧ୍ୟାନାରୀର ବେଦନା ନେଇ ଆଷାଢ଼ ଆକାଶର ଚନ୍ଦ୍ରମା ପରି କେବଳ କାନ୍ଦୁଥିବ ଚିର ଦିନ ? ହସ...ହସ...ମୋର ମାନମୟୀ ଅକ୍ଷତର କାବ୍ୟ !”

କିନ୍ତୁ କାହିଁ ? ଶତ ଅନୁରୋଧ ମଥାରେ ପାଦ ପିଟି ପିଟି ଦୌଡ଼ୁଛି ଅକ୍ଷତ କେବଳ, ଦୂରରୁ ଦୂରକୁ । ହିମାଞ୍ଚଳଠାରୁ ସୀମାଞ୍ଚଳଯାଏ । ନାଁ...ନାଁ...ମୋର ଅକ୍ଷତମାନେ ଅନେକ ଧରଣୀର ସନ୍ତାନ । ସେମାନେ କୋଟି କୋଟି ସୂର୍ଯ୍ୟଙ୍କୁ ନିଜର କକ୍ଷପଥରେ ଘୂରାଇ ଘୂରାଇ ଏବେ କକ୍ଷଚ୍ୟୁତ । ସେମାନେ ଆଉ ସୃଷ୍ଟିର ରଥରେ ବିଜେକରି ବାହୁଡ଼ା ରଥରେ ଫେରିବେନି । ଯାଆନ୍ତୁ ଯାଆନ୍ତୁ ସେମାନେ, ନିଶ୍ଚୟ ଏ ଯିବାରେ ଭବିଷ୍ୟତ ଠାରୁ ଅଧିକ ଆନନ୍ଦର ସ୍ରୋତସ୍ୱିନୀ ସାନିଧ୍ୟ ରହିଛି ।

ମୁଁ କିନ୍ତୁ ଅକ୍ଷତର ସିଡ଼ିରୁ ଓହ୍ଲାଉଛି ଠିକ୍ ବର୍ତ୍ତମାନର ଅବତରଣ ପଥ୍ ବୈମାନିକ ଭଳି । ସବୁଠାରୁ ମୋର ଅଧିକ ଆନନ୍ଦ ଓହ୍ଲାଇବାରେ ।

ମୁଁ... । ଆପଣ ମୋତେ ଚିହ୍ନି ନାହାନ୍ତି । ମୁଁ ଥିଲି ଆଦିମକାଳର ଅନାର୍ଯ୍ୟ ମେଳରେ ଉଲଗ୍ନ ହୋଇ । ହିମାଳୟର ପାଦଦେଶରେ ସେଦିନ ଗୋଟିଏ ସୁନ୍ଦରୀ ତରୁଣୀ ପାଇଁ ମୁଷ୍ଟି ଦ୍ୱନ୍ଦ୍ୱରେ ଝାମ୍ପ ମାରି ଆହତ ହୋଇଥିଲି ମୁଁ । ହଁ ତା’ ପରେ...ଠିକ୍ ମନେ ଥିବ ଅନେକଙ୍କର । ସାମାନ୍ୟ ସୁସ୍ଥ ହୋଇ ଆହାର ଉଦ୍ଦେଶ୍ୟରେ ସୂକ୍ଷ୍ମାଗ୍ର ପଥର ଖଣ୍ଡେ ଧରି ମୁଁ ଧାଇଁବାରେ ଲାଗିଥିଲି ଗୋଟିଏ ହରିଣ ଛୁଆ ପଛରେ । ଠିକ୍ ଏତିକିବେଳେ ପଛଆଡ଼ୁ ବେଳଜଙ୍ଗି ବିରାଟ ମହାବଳ ବାଘ ଝାମ୍ପ ମାରିଥିଲା ମୋ ଉପରକୁ । ମୁଁ.... ବ୍ୟଥିତ, ଉଦ୍‌ଭ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲି । କିନ୍ତୁ... । ପାପହାରୀ ମନ୍ତ୍ରରେ ବନ୍ଧି ଏଇ ପୃଥିବୀରେ ବାରବାର ଜନ୍ମ ହେବାରେ ମୋର ଅଶେଷ ଆନନ୍ଦ । ନିର୍ବାଣକୁ ମୁଁ ସ୍ୱୀକାର କରେନାହିଁ । ତେଣୁ ପୁଣି ଥରେ ମୋତେ ଜନ୍ମନେବାକୁ ପଡ଼ିଲା ସୈନ୍ଧବ ଗାଙ୍ଗେୟ ସମତଳ ଶଯ୍ୟାରେ । ମୁଁ ହେଲି ଆର୍ଯ୍ୟ । ମୁଁ ବେଦକର୍ତ୍ତା । ବେଦ ଅଧ୍ୟୟନ ଓ ଲିଖନରେ ମୋର ସମୟ ଅତିବାହିତ ହୋଇଗଲା, ଜୀବନର ସମସ୍ତ ମୋହ ଶେଷ ହୋଇଗଲା । ପୁଣିଥରେ ମରିବାକୁ ହେବ । ପୁଣି ଜନ୍ମ ହେବାକୁ ହେବ । ଅସହ୍ୟ ଦୁଃଖରେ ଭାଙ୍ଗିପଡ଼ି ଆପେ ଆପେ ଜୀବନ୍ତ ସମାଧିସ୍ଥ ହେଲି ମୁଁ ।

ନାଁ...ତଥାପି ମୋର ଆଶା ଚରିତାର୍ଥ ହେଲା ନାହିଁ । ଅବିନାଶୀ କାମନାର ଶିକାର ହୋଇ ବିରାଟ ଲଙ୍କାଗଡ଼ର ଅଧିଶ୍ୱର ହେଲି ମୁଁ । କିନ୍ତୁ... । ଦେହର କ୍ଷୁଧାରେ ଯେ ବିରାମ ନାହିଁ । ପଞ୍ଚବଟୀର ଅରଣ୍ୟ ଭିତରୁ ଆବିଷ୍କାର କଲି ସୁଶ୍ରୀ ସୀତା ଦେବୀଙ୍କୁ । ଅଙ୍ଗୁଳି ଧରି ଟାଣି ନେଲି ନିଜ ନଅର ଯାଏ । ତଥାପି.. ତଥାପି ସେହି ପ୍ରତିଦ୍ୱନ୍ଦ୍ୱିତା । ଫଳରେ ଭୀଷଣ ଯୁଦ୍ଧର ସୂତ୍ରପାତ । ଶ୍ରୀରାମଙ୍କ ଶରଘାତରେ ଆହତ ହୋଇ

ଅନିଚ୍ଛା ସତ୍ତ୍ୱେ ମୋତେ ପୁଣି ମୃତ୍ୟୁବରଣ କରିବାକୁ ପଡ଼ିଲା । ମୁଁ ମଣିଷ ବାସନାର ଚରମ ପରିଣତି···, ରାବଣ ।

ଏଥର କିନ୍ତୁ ଆଶାର ଦ୍ୱାର ଉନ୍ମୁକ୍ତ କରି ଭଗବାନ ଭୂମିକାରେ ଅବତୀର୍ଣ୍ଣ ହେଲି ମୁଁ । ମୁଁ ମୁଁ କୃଷ୍ଣ । ଶତ ସହସ୍ର ଗୋପବାଳାଙ୍କୁ ଧରି ଯମୁନା ନଦୀର କୂଳେ କୂଳେ ମୋର ପ୍ରଣୟର ବୀଜ ବୁଣି ହୋଇଗଲା । ଉଲଗ୍ନ ଗୋପବାଳାଙ୍କ ପୀନ ପୟୋଧର ପାନରେ ପରିତୃପ୍ତ ହେଲା ମୋର ପ୍ରଣୟର କାମନା ।

ଦାର୍ଶନିକ ମନରେ ମୋର ରାଜନୈତିକ ଚେତନା । ଗଣର ଆବେଦନରେ ମୋର ବ୍ୟକ୍ତିତ୍ୱର ଆତ୍ମ-ବିସର୍ଜନ । ସବୁ କେବଳ କନଫ୍ୟୁଜନ । ଅସ୍ପଷ୍ଟ । ଗଣ ବ୍ୟକ୍ତିତ୍ୱ, ଆତ୍ମୋତ୍ସର୍ଗ । କର୍ମ ଯୋଗ, ରାଜଯୋଗ, ଭକ୍ତିଯୋଗ, ଜ୍ଞାନଯୋଗ । ନାଁ···ତଥାପି ନିର୍ଦ୍ଦିଷ୍ଟ ପଥର ନିର୍ଦ୍ଦେଶ ଅସ୍ପଷ୍ଟ । ଗଣ ଜଣ ନୁହେଁ···ଜଣ ଗଣ ନୁହେଁ, ସମନ୍ୱୟ·· ସମ୍ବିଧାନ । କଂସ ଓ ଅକ୍ରୂର ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

ବଂଶୀ ନୁହେଁ, ଉଦ୍ଧାର ବଂଶ ଖଣ୍ଡରେ ମୋର ସାମ୍ୟବାଦର ପ୍ରସ୍ତର, ଗୋ-ଧନର ବିକାଶରେ ଜାତୀୟ ସମ୍ପଦର ବୃଦ୍ଧି । ମୁଁ ଗୋପାଳ କୃଷ୍ଣ, ସଂଧାମୀ ଜାତୀୟ ଚେତନାର ଆତୁର ପ୍ରତିନିଧି । ହଳୀ ଲଙ୍ଗଳୀ ମୋର ସହଚର, ସହୋଦର ।

ତଥାପି ମୁଁ ଗଣର ହୋଇ ପାରିଲି ନାହିଁ, ତେଣୁ ବଣର ଶବର ହାତରେ ଶରାଘାତରେ ବିକଳ ହେଲି । ମୁଁ ପ୍ରାଣତ୍ୟାଗ କଲି—ଅତୀତର କୃଷ୍ଣ, ବର୍ତ୍ତମାନର ମୀମାଂସା ।

ସମସ୍ୟା ଏକ ମୂର୍ତ୍ତିମନ୍ତ ବ୍ୟକ୍ତି ମୁଁ । ସମାଧାନର ଚୂଡ଼ାନ୍ତ ନିଷ୍ପତ୍ତି ହୋଇପାରି ନାହିଁ । ମରୁଛି ବାର ବାର ପୁଣି ଜନ୍ମ ନେଉଛି ବିଭିନ୍ନ ରୂପରେ ବାର ବାର ।

ଯୁଗ ବଦଳୁଛି, ସମସ୍ୟା ବଦଳୁଛି, ମୁଁ ବଦଳୁଛି, ମୁଁ ଅତୀତର ଆର୍ଯ୍ୟ, ରାମ, ରାବଣ, କୃଷ୍ଣ, କଂସ, ବିଷ୍ଣୁ, ସୀତା, ରାଧା ବଦଳୁଛି, ଜନ୍ମ ନେଉଛି ଅନେକ ହୋଇ ଘରେ ଘରେ ଯୁଗେ ଯୁଗେ ।

ସେହି ଖାଦ୍ୟ ବସ୍ତ୍ର, ପ୍ରେମ ପ୍ରଣୟ, ରାଜ୍ୟ ରାଜତ୍ୱ ନେଇ ମୋର ଭିତରେ କଳହ । ମୁଁ ଦ୍ୱିଗୁଣ, ଚତୁର୍ଗୁଣ, ଶତଗୁଣ ଆଶାରେ ବିଭକ୍ତ ହୋଇ ଆତ୍ମପ୍ରକାଶ କରୁଛି । ଜନସଂଖ୍ୟା ବୃଦ୍ଧି କରୁଛି, ଅନ୍ନ ବସ୍ତ୍ରର ବିକଳ ଚିତ୍କାରରେ ପୃଥିବୀ କମ୍ପାଇଛି, ଧ୍ୱନି ଦେଉଛି ସାମ୍ୟବାଦର ।

ମୁଁ ଆତ୍ମାର ଆତ୍ମା । ଜୀବାତ୍ମା ଓ ପରମାତ୍ମା । ରାଜନୀତି ଓ ଶାସନ ନୀତିର ଆତ୍ମା । ସାମ୍ୟବାଦ ଓ ସମାଜବାଦର ବିରୋଧୀ ନିଶ୍ଚୟ ।

ଜନସଂଖ୍ୟା ବୃଦ୍ଧି ମୋର କାମନା ନୁହେଁ । ଜନ-ସଂଖ୍ୟା ନିରୋଧ ମୋର ବାସନା ନୁହେଁ···ହୁଏତ ଅନେକ ଶଙ୍କର, ବୁଦ୍ଧ, ଗାନ୍ଧୀ ଆତ୍ମ ପ୍ରକାଶ କରି ପାରିବେ ନାହିଁ ।

ତଥାପି···ତଥାପି···

ଜୀବନ୍ତ ମଣିଷ ଆତ୍ମାକୁ ବଞ୍ଚାଇ ରଖିବାରେ ମୁଁ ଆଗ୍ରହୀ ।

ମୁଁ······

ଆପଣ ଏ ପର୍ଯ୍ୟନ୍ତ ଚିହ୍ନି ପାରିନାହାନ୍ତି ମୁଁ କିଏ ?

ହଁ·· ମୁଁ···

"ମୁଁ ଚିହ୍ନିଛି···ଆପଣଙ୍କୁ ଚିହ୍ନିଛି," ଅପର୍ଣ୍ଣାର କଣ୍ଠରେ ଆର୍ଦ୍ରତା ।

"ଆପଣ ମୋତେ ଚିହ୍ନିଛନ୍ତି ?" କମ୍ପି ଉଠି ପ୍ରଶ୍ନକଲେ ଆନନ୍ଦ ।

"ହଁ···ଆପଣ ମୋ ଭାଉଜଙ୍କର ଜନ୍ମନିୟନ୍ତ୍ରଣ ପାଇଁ ଅପରେସନ୍ କରିଥିଲେ । ଆପଣ ଡାକ୍ତର ଆନନ୍ଦ ।"

"କିନ୍ତୁ ଆପଣ ଆସି ଯେ ମୋତେ ମୋର ଅତୀତ ସମ୍ପର୍କରେ ପ୍ରଶ୍ନ କଲେ"!

"ହଁ...କାରଣ ମୋ ଭଉଜଙ୍କ ଅପରେସନ୍ ଘଟଣା ମଧ୍ୟ ଗୋଟିଏ ଅତୀତ ଘଟଣା । ସେ ଅତୀତ ମୋର ମନେ ଅଛି । ମୁଁ ତାହାର ପୁନରାବୃତ୍ତି ଚାହେଁ..."
"ମାନେ ଆପଣ ଅପରେସନ୍ କର୍ବେ ?"

"ହଁ...କିନ୍ତୁ ମୁଁ ଏ ଯାଏ ଅବିବାହିତା, ତଥାପି... ତଥାପି ଅନ୍ତଃସତ୍ତ୍ୱା...ମୁଁ ଆପଣଙ୍କୁ ଭଲପାଏ, ଅତୀତ ଦିନରୁ...ଅନାଗତ ଦିନରୁ ।"

"କିନ୍ତୁ...କିନ୍ତୁ..." ଆନନ୍ଦଙ୍କ ପାଟି ଖନ ବାଜିଗଲା । ସେ ନିର୍ବାକ୍ ହୋଇ ଯାଉଥିଲେ ।

"ମୁଁ ଯୌନ କ୍ଷୁଧାର ବିରୋଧୀ ନୁହେଁ ଆନନ୍ଦବାବୁ । ଜନ୍ମର ବିରୋଧୀ । ମୋତେ ଆପଣ ସାହାଯ୍ୟ କରନ୍ତୁ । ଆଧୁନିକ ଯୁଗରେ ଜନ୍ମ ନିରୋଧ କେବଳ ଯୌନ କ୍ଷୁଧାରେ ସୀମିତ ନାହିଁ, ରହିଛି ମନୋବୃତ୍ତିରେ ।"

ଥର ଥର ଚେୟାର ଉପରେ ବସି ପଡ଼ିଲେ ଆନନ୍ଦ । ସେ ରାମ, କୃଷ୍ଣ, କଂସ । ତାଙ୍କୁ ସୀତା, ରାଧା, କୁବୁଜା ପାଇଁ ହସ୍ତ ପ୍ରସାରଣ କରିବାକୁ ହେବ । ସେ ଡାକ୍ତର ।

ହଠାତ୍ ହସି ଉଠିଲେ ଅପର୍ଣ୍ଣା । ଆନନ୍ଦଙ୍କ ଚେୟାରଟାକୁ ଆଉଜି ପଡ଼ି—"କହିଲେ ଆଉ ଚିନ୍ତା କରୁଛନ୍ତି କ'ଣ ? ଆପଣ ଯେ ମୋର ଅତୀତ ଓ ବର୍ତ୍ତମାନର ସ୍ୱାମୀ । ମୁଁ ଆପଣଙ୍କର 'ସ୍ତ୍ରୀ' କ'ଣ ଗ୍ରହଣ କରିବେ ନାହିଁ ?"

ସ୍ୱାମୀ ଓ ସ୍ତ୍ରୀ । ଶେଷରେ ଜନ୍ମନିରୋଧ ।

ଧଡ଼କରି ଚେୟାରୁ ଉଠିପଡ଼ି ହସିବାରେ ଲାଗିଲେ ଆନନ୍ଦ । ଏ ହସ ଲମ୍ବିବାରେ ଲାଗିଥିଲା ଅନାର୍ଯ୍ୟ, ଆର୍ଯ୍ୟଙ୍କଠାରୁ କଳ୍କୀ ଅବତାର ପର୍ଯ୍ୟନ୍ତ...ହି... ...ହି...ହି ହୋଇ ।

ସେ ହସରେ ଭାସିବାକୁ ଲାଗିଲା ଅପୂର୍ଣ୍ଣା ଅପର୍ଣ୍ଣାଙ୍କ ଆବେଦନ ।

---

# ସମ୍ବାଦ ଓ ସଙ୍କେତ

## ॥ ଆମ ରାଷ୍ଟ୍ରପତି ଶ୍ରୀ ଗିରି ॥

ଶ୍ରୀ ବରାହଗିରି ଭେଙ୍କଟ ଗିରି ବ୍ରହ୍ମପୁର ସହରରେ ୧୮୯୪ ଅଗଷ୍ଟ ୧୦ ତାରିଖ ଦିନ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମ-ଗ୍ରହଣ କରିଥିଲେ । ବ୍ରହ୍ମପୁରର ଖଲ୍ଲିକୋଟ କଲେଜରୁ ବି. ଏ. ପାଶ୍ କରିବା ପରେ ଡବଲିନଠାରେ ଥିବା ଆୟାରଲଣ୍ଡ ଜାତୀୟ ବିଶ୍ୱବିଦ୍ୟାଳୟରେ ଯୋଗଦେଇ ବାରିଷ୍ଟରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଛାତ୍ରାବାସରେ ସେ ଶ୍ରମିକ ସଙ୍ଗଠନରେ ଅଂଶ ଗ୍ରହଣ କରି ଶ୍ରମିକମାନଙ୍କର ଦାବୀ ପୂରଣ ପାଇଁ ଉଦ୍ୟମ କରିଥିଲେ । ବାରିଷ୍ଟରୀ ପାଶ୍‌କରି ଫେରିବା ପରେ ଶ୍ରୀ ଗିରି ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ; ସର୍ବଭାରତୀୟ ସ୍ତରରେ ଶ୍ରମିକ ସଙ୍ଗଠନ କରିବା ପାଇଁ ଉଦ୍ୟମ କରି ସେ ଅଖିଳ ଭାରତୀୟ ଶ୍ରମିକ କଂଗ୍ରେସ ପ୍ରତିଷ୍ଠା କରି ପାରିଥିଲେ । ସେ ଏହି ସଂଗଠନର ଦୁଇଥର ସଭାପତି ଥିଲେ । ତାଙ୍କ ଜୀବନର ଅଧିକାଂଶ ସମୟ ରେଲବାଇ ଶ୍ରମିକ ସଂଗଠନ ଗଠନ ଓ ପରିଚାଳନା ଦିଗରେ ବିନିଯୋଗ ହୋଇଛି । ଏହି ସଂଗଠନର ସମ୍ପାଦକ ଓ ପରେ ସଭାପତିରୂପେ ସେ ଦୀର୍ଘ ୧୪ ବର୍ଷ କାଳ କାର୍ଯ୍ୟକରି ଆସିଥିଲେ ।

ଶ୍ରୀ ଗିରି ୧୯୨୭ରେ ଜେନେଭାଠାରେ ଅନୁଷ୍ଠିତ ହୋଇ-ଥିବା ଆନ୍ତର୍ଜାତିକ ଶ୍ରମ ସଂଗଠନର ସମ୍ମିଳନୀରେ ଅଖିଳ ଭାରତୀୟ ଶ୍ରମିକ କଂଗ୍ରେସର ପ୍ରତିନିଧିରୂପେ ଯୋଗ ଦେଇଥିଲେ; ଏହା ପରେ ଶ୍ରମିକମାନଙ୍କ ପ୍ରତିନିଧିରୂପେ ୧୯୩୧ରେ ଲଣ୍ଡନ-ଠାରେ ଅନୁଷ୍ଠିତ ହୋଇଥିବା ଦ୍ୱିତୀୟ ଗୋଲଟେବୁଲ ବୈଠକରେ ସେ ଯୋଗ ଦେଇଥିଲେ ।

ସେ ଜଣେ ଅଭିଜ୍ଞ ବ୍ୟବସ୍ଥାପକ ମଧ୍ୟ । ୧୯୩୬ରେ ମାନ୍ଦ୍ରାଜ ବିଧାନସଭାକୁ ନିର୍ବାଚିତ ହୋଇ ସେ ପ୍ରଥମ ଲୋକପ୍ରିୟ ମନ୍ତ୍ରିମଣ୍ଡଳରେ ୧୯୩୯ ପର୍ଯ୍ୟନ୍ତ ଶିଳ୍ପ ଓ ଶ୍ରମମନ୍ତ୍ରୀ-ରୂପେ କାର୍ଯ୍ୟ କରିଥିଲେ । ୧୯୪୬ ସାଧାରଣ ନିର୍ବାଚନରେ ପୁଣି ଥରେ ନିର୍ବାଚିତ ହୋଇ ସେ ପ୍ରକାଶମ୍ ମନ୍ତ୍ରିମଣ୍ଡଳରେ ପ୍ରାୟ ଏକବର୍ଷ ପାଇଁ ମନ୍ତ୍ରୀରୂପେ କାର୍ଯ୍ୟ କରିଥିଲେ । ପ୍ରକାଶମ୍ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାପରେ ସେ ସିଂହଳରେ ଭାରତୀୟ ରାଷ୍ଟ୍ରଦୂତ ରୂପେ ଯୋଗଦେଇ ୧୯୫୦ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

୧୯୫୨ରେ ଅନୁଷ୍ଠିତ ହୋଇଥିବା ପ୍ରଥମ ସାଧାରଣ ନିର୍ବାଚନରେ ଶ୍ରୀ ଗିରି କଂଗ୍ରେସ ପ୍ରାର୍ଥୀରୂପେ ପ୍ରତିଦ୍ୱନ୍ଦ୍ୱିତା କରି ପଥା ପତ୍ତନମ ନିର୍ବାଚନମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଏହାପରେ ସେ କେନ୍ଦ୍ର ଶ୍ରମମନ୍ତ୍ରୀରୂପେ ଯୋଗଦେଇ ୧୯୫୪ ମସିହା ସେପ୍‌ଟେମ୍ବର ମାସ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

ଶ୍ରୀ ଗିରି ଜଣେ ଅଭିଜ୍ଞ ଶ୍ରମିକ ନେତା, ଶାସକ ଏବଂ ସଫଳ କୂଟନୀତିଜ୍ଞରୂପେ ନିଜ ବହୁମୁଖୀ ପ୍ରତିଭାର ପରିଚୟ ଦେଇଛନ୍ତି । ଶ୍ରୀ ଜବାହରଲାଲ ନେହରୁଙ୍କ ଅଧ୍ୟକ୍ଷତାରେ ଗଢ଼ାଯାଇଥିବା ଜାତୀୟ ଯୋଜନା କମିଟିର ଆବାହକରୂପେ ସେ ୧୯୩୭ ମସିହାରେ କାର୍ଯ୍ୟ କରିଥିଲେ । ୧୯୫୭ରୁ ୧୯୬୦ ପର୍ଯ୍ୟନ୍ତ ଉତ୍ତରପ୍ରଦେଶରେ, ୧୯୬୧ରୁ ୧୯୬୫ ପର୍ଯ୍ୟନ୍ତ କେରଳର ଏବଂ ଏପ୍ରିଲ ଦୁଇ ୧୯୬୫ରୁ ଉପରାଷ୍ଟ୍ରପତି ହେବା ପର୍ଯ୍ୟନ୍ତ ମହୀଶୂରର ରାଜ୍ୟପାଳ ରୂପେ ଶ୍ରୀ ଗିରି କାର୍ଯ୍ୟ କରିଥିଲେ । ୧୯୬୭ ମସିହା ୬ ତାରିଖରେ ଶ୍ରୀ ଗିରି ଭାରତର ଉପରାଷ୍ଟ୍ରପତି ରୂପେ ଦାୟିତ୍ୱ ଗ୍ରହଣ କଲେ ।

ଚଳିତ ବର୍ଷ ମେ' ୩ ତାରିଖରେ ରାଷ୍ଟ୍ରପତି ଡଃ ଜାକୀର ହୋସେନଙ୍କର ଆକସ୍ମିକ ବିୟୋଗ ଘଟିବାରୁ ସେ କାର୍ଯ୍ୟକାରୀ ରାଷ୍ଟ୍ରପତିରୂପେ ଦାୟିତ୍ୱ ତୁଲାଉଥିଲେ । ରାଷ୍ଟ୍ରପତି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସ୍ଥିର କରି ଶ୍ରୀ ଗିରି ମନୋନୟନ ପତ୍ର ଦାଖଲ ପୂର୍ବରୁ ଏହି ପଦରୁ ଇସ୍ତଫା ଦେଇଥିଲେ । ସ୍ୱାଧୀନ-ସଭ୍ୟରୂପେ ନିର୍ବାଚନରେ ଜୟଲାଭ କରି ବର୍ତ୍ତମାନ ସେ ଆମର ରାଷ୍ଟ୍ରପତି ।

# ଆଦିବାସୀ ଓ ହରିଜନ ପୁଣି ୧୦ ବର୍ଷ

# ସ୍ୱତନ୍ତ୍ର ସୁବିଧା ପାଇବେ

ପାର୍ଲାମେଣ୍ଟରେ ବିଲ୍ ଆଗତ ହେଲା, ୧୯୭୦ ମସିହାରୁ ଆଉ ୧୦ ବର୍ଷପାଇଁ ବିଧାନସଭା ଓ ପାର୍ଲାମେଣ୍ଟରେ ହରିଜନ ଓ ଆଦିବାସୀମାନଙ୍କ ଲାଗି ସ୍ଥାନ ସଂରକ୍ଷଣ କରିବାକୁ ସମ୍ବିଧାନ ସଂଶୋଧନ କରାଯିବ । ସେ ଦୃଷ୍ଟିରୁ ଲୋକସଭାରେ କେନ୍ଦ୍ର ସରକାରଙ୍କ ପକ୍ଷରୁ ଏକ ସମ୍ବିଧାନ ସଂଶୋଧନ ବିଲ୍ ଆଗତ କରାଯାଇଛି ।

---

# ନେହେରୁ ପୁରସ୍କାର ଓ ସୀମାନ୍ତ ଗାନ୍ଧୀ

ଆନ୍ତର୍ଜାତିକ ବୁଝାମଣା ପାଇଁ ଭାରତର ପରଲୋକଗତ ପ୍ରଧାନ ମନ୍ତ୍ରୀ ନେହେରୁଙ୍କ ସ୍ମୃତିରେ ପ୍ରବର୍ତ୍ତି "ନେହେରୁ ଶାନ୍ତି ପୁରସ୍କାର" ପ୍ରତିବର୍ଷ ଘୋଷିତ ହୋଇ ଆସୁଛି । ବିଶ୍ୱଶାନ୍ତି ପାଇଁ ଗୋଟିଏ ବର୍ଷ ମଧ୍ୟରେ ସବୁଠାରୁ ଅଧିକ ଅବଦାନ ଥିବା ବ୍ୟକ୍ତିବିଶେଷ ବା ଅନୁଷ୍ଠାନକୁ ଏହି ପୁରସ୍କାର ମିଳିବ । ମୂଲ୍ୟ ଏକଲକ୍ଷ ଟଙ୍କା । ୧୯୬୫ ମସିହାଠାରୁ ଏହି ପୁରସ୍କାର ଦିଆ ହୋଇ ଆସୁଛି । ଏକ ସ୍ୱତନ୍ତ୍ର ଉତ୍ସବରେ ଏହି ପୁରସ୍କାର ପାଇଁ ମନୋନୀତ ବ୍ୟକ୍ତି ବା ଅନୁଷ୍ଠାନକୁ ପ୍ରଦାନ କରାଯାଏ ।

୧୯୬୫ର ନେହେରୁ ପୁରସ୍କାର ବିଜେତା ହେଉଛନ୍ତି ଜାତିସଂଘର ସେକ୍ରେଟାରି ଜେନେରାଲ ଶ୍ରୀ ୟୁ. ଥାଣ୍ଟ । ପୃଥିବୀରେ ଶାନ୍ତି ଓ ସାମ୍ୟବାଦ ପ୍ରତିଷ୍ଠା ଦିଗରେ ତାଙ୍କର ଦାନ ବାସ୍ତବରେ ସ୍ମରଣୀୟ ।

ତହିଁ ପରବର୍ଷ ୧୯୬୬ରେ ନେହେରୁ ପୁରସ୍କାର ପାଇଥିଲେ ଯୁକ୍ତରାଷ୍ଟ୍ର ଆମେରିକାର ବିଶିଷ୍ଟ ଅହିଂସାବାଦୀ, ନିଗ୍ରୋନେତା ସ୍ୱର୍ଗତ ଡକ୍ଟର ମାର୍ଟିନ ଲୁଥର କିଙ୍ଗ୍ । ଆନ୍ତର୍ଜାତିକ ସଦ୍‌ଭାବ ପ୍ରତିଷ୍ଠା ଦିଗରେ ସ୍ୱର୍ଗତ କିଙ୍ଗ୍‌ଙ୍କ ମାନବିକ କାର୍ଯ୍ୟ ସକାଶେ ତାଙ୍କୁ ଭାରତ ପକ୍ଷରୁ ଏହି ପୁରସ୍କାର ପ୍ରଦାନ କରାଯାଇଥିଲା । ସ୍ୱର୍ଗତ ମାର୍ଟିନ ଲୁଥରଙ୍କ ସହଧର୍ମିଣୀ ଶ୍ରୀମତୀ କୋରେଟା କିଙ୍ଗ୍ ଭାରତକୁ ଆସି ସ୍ୱର୍ଗତ ମାର୍ଟିନ ଲୁଥରଙ୍କ ତରଫରୁ ଏହି ପୁରସ୍କାର ଗ୍ରହଣ କରିଥିଲେ ।

ଆନ୍ତର୍ଜାତିକ ବୁଝାମଣା ପାଇଁ ସ୍ୱାଧୀନତା ସଂଗ୍ରାମର ପୁରୁଣା ଓ ପୁରୁଖା ଯୋଦ୍ଧା ୮୧ ବର୍ଷ ବୟସ୍କ ଖାଁ ଅବ୍‌ଦୁଲ ଗଫର ଖାଁ (ସୀମାନ୍ତଗାନ୍ଧୀ) ୧୯୬୭ର "ଜବାହାର ଲାଲ ନେହେରୁ ପୁରସ୍କାର" ପାଇଁ ମନୋନୀତ ହୋଇଛନ୍ତି । ଏହି ପୁରସ୍କାର ପାଇଁ ଗଠିତ ବିଚାରକ ମଣ୍ଡଳୀ ପୃଥିବୀର ବିଭିନ୍ନ ସ୍ଥାନରୁ ବହୁ ମନୋନୟନ ପତ୍ର ପାଇଥିଲେ । ବହୁ ବିଚାର ଆଲୋଚନା ପରେ "ଗାନ୍ଧୀ ଶତବାର୍ଷିକ" ବର୍ଷରେ ଶ୍ରୀ ଖାନ୍‌ଙ୍କ ପରି ଜଣେ ବିଶିଷ୍ଟ ଗାନ୍ଧିବାଦୀ ନେତାଙ୍କୁ ଏହି ପୁରସ୍କାର ଦେବାପାଇଁ ବିଚାରକ-ମଣ୍ଡଳୀ ସ୍ଥିର କରିଥିଲେ ।

ବିଚାରକ-ମଣ୍ଡଳୀ ଅନୁଭବ କରିଥିଲେ ଯେ, ବର୍ତ୍ତମାନ ପୃଥିବୀ ଭେଦଭାବ ଓ ଘୃଣାରେ ଅତ୍ୟନ୍ତ ସଂକୀର୍ଣ୍ଣ ହୋଇ ପଡ଼ିଥିବା-ବେଳେ, ଯେଉଁ କେତେକ ଲୋକ ଆନ୍ତର୍ଜାତିକ ବୁଝାମଣା ଓ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ଉଦ୍ୟମ କରୁଛନ୍ତି, ସେମାନଙ୍କ ପକ୍ଷରେ ଖାନ୍ ଅବଦୁଲ ଗଫୁର ଖାଁଙ୍କ ଜୀବନଯାତ୍ରା ଏକ ମହତ ପ୍ରେରଣା ସ୍ୱରୂପ ହେବ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଜଣେ ମୁଖ୍ୟ ସେନାପତି ଏବଂ ମହାତ୍ମାଗାନ୍ଧୀଙ୍କର ଅନ୍ୟତମ ସହକର୍ମୀ "ସୀମାନ୍ତ ଗାନ୍ଧୀ" ନାମରେ ଭାରତର ସର୍ବତ୍ର ସୁପରିଚିତ । ଖାଁ ଅବ୍‌ଦୁଲ୍ ଗଫୁର ଖାଁ ଭାରତକୁ ଦୁଇଖଣ୍ଡ କରି ପାକିସ୍ଥାନ ଗଠନ କରିବାକୁ ଚାହୁଁ ନ ଥିଲେ । ଭାରତ ବିଭାଗ ଓ ସ୍ୱାଧୀନତାପ୍ରାପ୍ତି ବେଳେ ସୀମାନ୍ତ ସେଥିପାଇଁ ଗାନ୍ଧୀ ପାକିସ୍ଥାନ କାରାଗାରରେ ବହୁକାଳ ଆବଦ୍ଧହୋଇ ରହିଥିଲେ । କିଛିକାଳ ହେଲା ସେ ମୁକ୍ତିଲାଭ କରିବା ପରେ କାବୁଲରେ ବାସ କରୁଛନ୍ତି । ପାକିସ୍ଥାନ ଠାରୁ ତାଙ୍କ ପଠାଣ ଜାତିକୁ ଅଲଗା କରି ସ୍ୱତନ୍ତ୍ର "ପାଖତୁନି ସ୍ଥାନ" ଗଠନ କରିବା ଲାଗି ସୀମାନ୍ତଗାନ୍ଧୀ ଉଦ୍ୟମ କରି ଆସୁଛନ୍ତି । ଭାରତ ଏବଂ ଭାରତର ସ୍ୱାଧୀନତା ସଂଗ୍ରାମ ସହିତ ନିବିଡ଼ ଭାବେ ସଂଶ୍ଳିଷ୍ଟ ଏବଂ ଅଖଣ୍ଡ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳର ଅଧିବାସୀ ଭାବରେ ସୀମାନ୍ତ-ଗାନ୍ଧୀଙ୍କର ଚିର ଆନୁଗତ୍ୟ ଭାରତ ପ୍ରତି ରହିଛି । ସେ ସବୁବେଳେ ଭାରତ ଓ ଭାରତବାସୀଙ୍କର ପରମ ହିତୈଷୀ ।

---

# ॥ ସେଦିନ ଏଦିନ ॥

ଶ୍ରୀ ଉପେନ୍ଦ୍ର ମିଶ୍ର

ପାହାଡ଼ ପର୍ବତ ଘେରା, ନିଶନଜଙ୍ଗଲ ଭିତରେ ଖେଳ ଉପାସରେ ଖଣ୍ଡିଏ ଖଣ୍ଡିଏ ଝାଟିମାଟି କୁଡ଼ିଆରେ ଯେଉଁମାନେ ରହନ୍ତି ସେମାନଙ୍କ ବିଷୟରେ ଦି ପଦ ଲେଖିବା ମୋର ନିଶା । ଏହା ଭିତରେ କ'ଣ ଅଛି, କାହିଁକି ଲେଖିବାକୁ ଯାଉଛି ସବୁବେଳେ ପ୍ରଶ୍ନ ଆସେ । ମୋର ବନ୍ଧୁ ପରମାନନ୍ଦ କେତେଥର ଏ ପ୍ରଶ୍ନ ଉଠାଇଛନ୍ତି । ବେଳେ ବେଳେ କଥାରେ ଗୋଳାଇ ଦିଏଁ । କେତେବେଳେ ଦି ପଦ ଆରମ୍ଭ କରେ । ଆଉ କେତେବେଳେ ଚୁପ୍ ରହେଁ; କିନ୍ତୁ ପରମାନନ୍ଦ ଛାଡ଼ିବା ଲୋକ ନୁହଁନ୍ତି ।

ବନ୍ଧୁଙ୍କ ବିଷୟରେ ଦି ପଦ ନ ଲେଖି ରହି ପାରୁନାହିଁ । ପରମାନନ୍ଦ ଓଡ଼ିଶାର ବିଶିଷ୍ଟ ଜମିଦାର ରାଧାଶ୍ୟାମ ଚୌଧୁରୀଙ୍କ ସାନପୁଅ । ପିଲାଦିନରୁ ଅତି ଅଲଅଲରେ ଦାସଦାସୀ ଯତ୍ନରେ ବଢ଼ିଥିଲେ । ତାଙ୍କର ମା' ଅତି ପିଲାଦିନରୁ ତାଙ୍କୁ ଛାଡ଼ି ଯାଇଥିଲେ । ତେଣୁ ମାତୃ ସ୍ନେହରୁ ସେ ବଞ୍ଚିତ ଥିଲେ । ତାଙ୍କୁ ତାଙ୍କର ପିତା କଟକରେ ଏକ ନବନିର୍ମିତ ଅଟ୍ଟାଳିକାରେ ବହୁ ବିଳାସ ମଧ୍ୟରେ ବୁଡ଼ାଇ ରଖିଥିଲେ । ସଂସାର ବିଷୟରେ ବନ୍ଧୁଙ୍କର ଖୁବ୍ କମ୍ ଜ୍ଞାନ ଥିଲା । କୈଶୋର ଅବସ୍ଥାରେ ଟିକେ ଟିକେ ପଲ୍ଲୀମାୟା ତାଙ୍କୁ ଟାଣିଲା । ଦିନେ ସେ ମୋ ସହିତ ଯାଜପୁର ଯାଇ ପବିତ୍ର ବୈତରଣୀ କୂଳରେ ରହିଲେ । ଯାଜପୁର ଟାଉନଠାରୁ ପ୍ରାୟ ଚାରି ମାଇଲ ଦୂର ସିଦ୍ଧେଶ୍ୱର ଗ୍ରାମରେ ଏକ ଝାଟିମାଟି ଘର । ଖଜୁରୀ ମଞ୍ଚିଣାରେ ବିଶ୍ରାମ ନେବାକୁ ହେଲା, ସକାଳେ ଓ ସନ୍ଧ୍ୟାବେଳେ ଆମେ ଦୁଇବନ୍ଧୁ ଗାଁପାଖ ନଈକୂଳକୁ ବୁଲିଯାଉଁ । ନଈକୂଳରେ ସିଦ୍ଧନାଥ ମହାଦେବଙ୍କ ମନ୍ଦିର ଅଛି । ଦାର୍ଶନିକ ମାନେ ଯେପରି ସ୍ଥାନଟିକୁ ପସନ୍ଦ କରିବେ ବୈଜ୍ଞାନିକମାନେ ମଧ୍ୟ ସେଥିରୁ ପଛେଇବେ ନାହିଁ । ବୈତରଣୀ ନଦୀ କେନ୍ଦୁଝରର ଗୋନାସିକା ପର୍ବତରୁ ବାହାରି ତାର କୂଳେ କୂଳେ ତୀର୍ଥସ୍ଥାନ ବିତରଣ କରି ଆସିଥିବାରୁ ପୁଣ୍ୟ ବୈତରଣୀ ନାମକୁ ସାର୍ଥକ କରିଛି, ରାଜା ଯଯାତି କେଶରୀ ଏହି ପବିତ୍ର ନଦୀ କୂଳରେ ନିଜର ନବନିର୍ମିତ ରାଜଧାନୀ ନିର୍ମାଣ କରିଥିଲେ । ସିଦ୍ଧନାଥ ମହାଦେବଙ୍କ ନାମାନୁସାରେ ଗ୍ରାମଟିର ନାମ ସିଦ୍ଧେଶ୍ୱର । ଏଠାରେ ସବୁ ଜାତିର ଲୋକେ ବାସ କରନ୍ତି । ଦିନେ ବନ୍ଧୁଙ୍କୁ ନେଇ ନଈକୂଳ ପଠା ଉପରେ ବସି ଗାଁର ପ୍ରାକୃତିକ ଦୃଶ୍ୟ ଦେଖାଇଲି । ପଲ୍ଲୀକବି ନନ୍ଦକିଶୋରଙ୍କ ପଲ୍ଲୀଚିତ୍ର ଉପରେ ଆଖି ପଡ଼ିଲା ।

ସହରର ଅଟ୍ଟାଳିକା ଅପେକ୍ଷା ଏହି ପଲ୍ଲୀ ଗ୍ରାମଟି ଶାନ୍ତିର ସ୍ଥାନ । ଏ ପଲ୍ଲୀରେ ଶୀତଳ ପବନ ସହିତ କଅଁଳିଆ ପତ୍ରଗୁଡ଼ିକର ଶଯ୍ୟା ଆଜିକାଲି ଡନ୍‌ଲପ ଗଦିଠାରୁ ବେଶ୍ ଆରାମ ବନ୍ଧୁ ଏଥିରେ ସବୁ ଭୁଲିଗଲେ । ଏହିପରି କେତୋଟି ଦିନ କଟିବା ପରେ ଦିନେ ବୈତରଣୀର ଉତ୍ପତ୍ତିସ୍ଥାନ ଗୋନାସିକାକୁ ବାହାରିଲୁ । ଯାଜପୁରଠାରୁ ଗୋନାସିକା ପ୍ରାୟ ଦେଢ଼ଶତ ମାଇଲ । ପୁରୁଣା ଜିପ୍ ଖଣ୍ଡିକ ଧରି ବାହାରି ପଡ଼ିଲୁଁ ଦୁଇବନ୍ଧୁ । ବେଳ ବୁଡ଼ିବା ପୂର୍ବରୁ କେନ୍ଦୁଝରଗଡ଼ରେ ପହଁଞ୍ଚିଲୁ । ପ୍ରାୟ ତିନି ଚାରି ମାଇଲ ଗିନାପରେ ସାନ ସାଧର ଜଳପ୍ରପାତ ପଡ଼ିଲା । ଖରାଦିନର ସୁଲୁସୁଲିଆ ପବନ ସହିତ ଝରଣାର କୁଳୁକୁଳୁ ଶବ୍ଦ ଆମକୁ ସତେ ଯେପରି କେଉଁ ଏକ ଅଜଣା ଜାଗାକୁ ଟାଣିନେଇ ଥିଲା, ସଞ୍ଜ ସଞ୍ଜିଆ ବେଳରେ ଦୁଇ ତିନିଜଣ ବାଟୋଇ ସେବାଟେ ଯାଉଥିଲେ । ଆମେ ସେମାନଙ୍କ ସାଙ୍ଗରେ କଥା ଛଳରେ ଜାଣିବାକୁ ପାଇଲୁଁ ଜଣେ ଶିକାରୀ ବାବୁ କଟକରୁ ଆସିଛନ୍ତି । ସେ ଆଜି ରାତିରେ ଏ ପାଖରେ ଶିକାର କରିବେ ତାଙ୍କପାଇଁ ଖାଇବା ନେଇ ଯାଉଛନ୍ତି, ଆମେ ସେମାନଙ୍କୁ କହିଲୁଁ ତୁମେ ଆମକୁ ଖାଇବାକୁ

ଦେବନାହିଁ ? ସେମାନେ ଅତି ଶରଧାରେ ଆମକୁ ତାଙ୍କ ଶିକାର ଛାଉଣୀକୁ ଡାକିନେଲେ ।

ଆମେ ଆମର ସମବୟସ୍କ ଶିକାରୀ ବନ୍ଧୁଙ୍କ ଆତିଥ୍ୟ ଗ୍ରହଣ କରି ପ୍ରାୟ ରାତି ଦୁଇ ଘଡ଼ିରେ ଶିକାରକୁ ବାହାରି ପଡ଼ିଲୁଁ; ଅତି ଘନ ଜଙ୍ଗଲ ମଧ୍ୟରେ ରାତିରେ ଶିକାର କରିବା ଯେତିକି ଆରାମ ତା' ଠାରୁ ଅଧିକ ହେଉଛି ବିପଦ । ମଣିଷ ଯେପରି ବାଘକୁ ଖୋଜି ଖୋଜି ଶିକାର କରେ, ବାଘ ମଧ୍ୟ ମଣିଷ ପାଇଲେ ଶିକାର କରିବାକୁ ଛାଡ଼େନାହିଁ । ଶିକାରରେ ଯିବା ପୂର୍ବରୁ କେତେଗୁଡ଼ିକ ଶବ୍ଦ ଓ ସଙ୍କେତ ପ୍ରତି ନଜର ଦେବାକୁ ହୋଇଥାଏ । ବଣ ଭିତରେ ଗଛ ଉପରେ ମୟୂର ଧ୍ୱନିରେ ରାବିଲେ ତା' ମୂଳରେ ବାଘ ଛପିଥାଏ । ଯେମିତି ସକାଳ ହୁଏ ମୟୂର ତଳକୁ ଆସି ପୁଚ୍ଛ ହଲାଇ ନାଚିବା ଆରମ୍ଭ କଲେ ବାଘ ତାକୁ ଶିକାର କରେ । ରାତିରେ ମହିଷ ପଲ ଭିତରେ ବାଘ ପଶି ଶିକାର କରିପାରେ ନାହିଁ । ଅତି ଭୋରରୁ ମହିଷ ଛୁଆ ଏପାଖ ସେପାଖ ଟିକେ ହେଲେ ବାଘ ତା' ଶିକାର ଆରମ୍ଭ କରେ । ସ୍ଥାନେ ସ୍ଥାନେ ବାଲିଆ ଜାଗାରେ ଚିତାବାଘ ତା ଦେହକୁ ବାଲିରେ ପୋତି କେବଳ ଆଖି ଦିଓଟିରେ ଉପରକୁ ଅନାଇ ଥାଏ । ଯେତେବେଳେ ହରିଣ ପଲ ସେ ବାଟେ ଯାଆନ୍ତି ସେ ଡିଆଁମାରି ଗୋଟାଏ ହରିଣ ଧରି ଚମ୍ପଟ ମାରେ ।

ହରିଣ ବି କମ୍ ଚାଲାକ ନୁହେଁ । ତାକୁ ଯଦି ନଈ ପାରି ହେବାକୁ ପଡ଼େ ତା'ହେଲେ କୁମ୍ଭୀରକୁ ଠକାଇବା ପାଇଁ ନଈ ଉପର ମୁଣ୍ଡରେ ବୋବାଇ ତଳ ମୁଣ୍ଡରେ ପହଁରି ପଳାଏ । କୁମ୍ଭୀର ତାକୁ ଶିକାର କରିବା ପୂର୍ବରୁ ସେ ଚମ୍ପଟ ମାରେ ।

ଜଙ୍ଗଲ ଭିତରେ ଛୋଟ ଛୋଟ ନଈ ଥାଏ । ଆମେ ଦେଖିଲୁଁ ଗୋଟିଏ ଛୋଟ ନଈ ଭିତରେ ଦୁଇଟି ଛୋଟ ନିଆଁ ପିଣ୍ଡୁଳା ପରି ଭାସି ଭାସି ଯାଉଛି । ଆମେ କିଛି ବୁଝି ନ ପାରି ଶିକାରୀ ବନ୍ଧୁଙ୍କୁ ପଚାରି ବୁଝିଲୁଁ ଗୋଟିଏ ଓଧ ରାତିରେ ନଈ ଭିତରେ ମାଛ ଶିକାର ପାଇଁ ବୁଡ଼ି ଚାଲିଛି । ଏହି ଆଲୁଅ ଦେଖି ମାଛ ଆସିଲେ ଓଧ ତାକୁ ଶିକାର କରେ । ଏହିପରି ଭାବରେ ଆମେ କଥାବାର୍ତ୍ତା ଇଙ୍ଗିତରେ ହୋଇ ଚାଲିଛୁଁ । ହଠାତ୍ ଗୋଟାଏ ଚିତାବାଘ ନଈ ଅଡଡ଼ା ତଳେ ଦେଖିବାକୁ ମିଳିଲା । ସେ ପାଣି ପିଇସାରି ନଖ ଚାଟି ଚାଟି ଆସୁଛି । ଆମ ଉପରେ ତାର ଯେପରି ଦୃଷ୍ଟି ପଡ଼ୁଛି, ସେ ରାଗରେ ପଳାଇଗଲା ଏବଂ ଆମକୁ ଆକ୍ରମଣ କରିବାକୁ ଆରମ୍ଭ କଲା-ବେଳକୁ ବନ୍ଧୁ କରୁ ଗୋଟାଏ ଗୁଳି ତା ଉପରେ ବାଜିଗଲା । ସେ ଗୁଳିମାଡ଼ ଖାଇ ଛପିଗଲା । ଆଉ ଗୋଟାଏ ଗୁଳି ବାଜିବାରୁ ବିକଟ ଗର୍ଜନ କରି ଆମ ଆଡ଼କୁ କୁଦାମାରି ସେହିଠାରେ ଢଳି ପଡ଼ିଲା । ଆମେ ଅତି ସାବଧାନତା ସହକାରେ ତା' ଆଡ଼କୁ ଯାଇ ଦେଖିଲୁଁ ସେ ସୁକ୍ ସୁକ୍ ହେଉଛି । ଶିକାରୀ ବନ୍ଧୁ ଆଉ ଗୋଟାଏ ଗୁଳି ଚଢ଼ାଇଲେ । ତା' ଶେଷ ଗର୍ଜନରେ ସେ ଅଞ୍ଚଳ କମ୍ପିଗଲା । ମୋର ବନ୍ଧୁ ଏକୁ ଦେଖି ସେଠାରେ ବେହୋସ । ମୁଁ ତାଙ୍କୁ ପାଣିଆଣି ଚେତା କରାଇଲାବେଳକୁ ଶିକାରୀ ବନ୍ଧୁ ଚିତାବାଘକୁ ଘୋଷାରି ଘୋଷାରି ଆମ ପାଖରେ ହାଜର । ରାତି ସେତେବେଳକୁ ସାଢ଼େଚାରି । ଅତି ଭୋକ ଓ ଶୋଷ । ଚାଲିବାକୁ ଶକ୍ତି ନ ଥାଏ । ଶିକାରୀ ବନ୍ଧୁ ଆଗରୁ ଦୁଇଟା ବଣ କୁକୁଡ଼ା ଧରିଥିଲେ । ସେ ସମସ୍ତ ଜିପ୍‌ରେ ପକାଇ ଛାଉଣୀରେ ପହଞ୍ଚିଲୁଁ । ଆମର ସରଳ ଆଦିବାସୀ ବନ୍ଧୁ ଆମ ପାଇଁ ସଙ୍ଗେ ସଙ୍ଗେ ଦୁଇଖଣ୍ଡ ଗରମ ମାଂସଭଜା ଆଣି ପହଞ୍ଚାଇଲେ । ଆମେ ତାକୁ ଖାଇ ଟିକେ ଗରମ ପାଣି ପିଇଲୁଁ । ଅତି ସକାଳୁ ନିଦ ଭାଙ୍ଗିଗଲା ।

ତିନିବନ୍ଧୁ ଉଠି ପରସ୍ପର ମଙ୍ଗଳ ପ୍ରଶ୍ନ ଜଣାଇ ଚା' ପାନ ଆରମ୍ଭ କଲୁଁ । ସେ ରାତିର ଘଟଣା ନେଇ ବେଶ୍ ମଜାଗପ ଜମିଲା ।

କିଛି ସମୟ ପରେ ଚାଲିଲୁଁ ନିକଟସ୍ଥ ଆଦିବାସୀ ପଲ୍ଲୀକୁ । ସେଠାକାର ପିଲମାନଙ୍କ ସହିତ ଟିକିଏ ଆଳାପ ହେଲା । ତା' ପରେ ଜିପ୍ ଚାଲିଲା ଗୋନାସିକା ଅଭିମୁଖେ । ଚିମା ପଥର ଉପରେ ଜିପ୍ ଟାୟାର ଯୁଦ୍ଧ କରି କରି ଆଗେଇଲା । କିଛି ସମୟ ପରେ ପହଞ୍ଚିଲୁଁ ବୈତରଣୀର ଜନ୍ମସ୍ଥାନ ଗୋନାସିକା ଠାରେ । ପବିତ୍ରଜଳରେ ସ୍ନାନକରି ଦେବଦର୍ଶନ କଲୁଁ । ଆମ ପାଖରେ ଖାଇବାକୁ କିଛି ନ ଥାଏ । ସେଠାରେ ମଧ୍ୟ କିଣିବା ପାଇଁ କିଛି ମିଳେନାହିଁ । ଏହି ଅବସ୍ଥାରେ ଜଣେ ଭକ୍ତ କାନ୍ଦିଏ ପାଚିଲା କଦଳୀ ଓ ଗୋଟାଏ ପାଚିଲା ପଣସ ଆଣି ପହଞ୍ଚାଇଲା । ଅଧେ ପ୍ରସାଦ ବିତରଣ କରିବାକୁ ପୂଜକଙ୍କୁ କହିଲା । ଯେଥିରୁ ଆମ ଭାଗରେ କିଛି ପଡ଼ିଗଲା । ସନ୍ଧ୍ୟା ପୂର୍ବରୁ ଫେରିବାକୁ ଆରମ୍ଭ କଲୁଁ, ବାଟରେ ଗାଡ଼ି ଖରାପ ହେଲା । କିଛି ଉପାୟ ନ ପାଇ ଗୋଟିଏ ଆଦିବାସୀ ପଲ୍ଲୀ ଆଡ଼କୁ ଚାଲିଲୁଁ । ବୁଢ଼ାଟିଏ ଆମକୁ ଦେଖି ତାଙ୍କ ନାଟ୍ୟଶାଳାକୁ ନେଇଗଲା ।

ଗଣ୍ଡିଏ ଗଣ୍ଡିଏ ଭୁଜା, ମକା ଆମକୁ ଖାଇବାକୁ ଦେଲା। ରାତିରେ ନାଚ ଗୀତ ଆରମ୍ଭ ହେଲା, ପରମାନନ୍ଦକୁ ବଂଶୀ ବଜାଇ ଆସେ। ମୁଁ ସେଠାରେ ହୁଣ୍ଡାହୋଇ ବସିଲି। ପରମାନନ୍ଦ ତାର ବାହାଦୁରୀ ଦେଖାଇଲା।

କିଛି ସମୟ ପରେ ଆମକୁ ସେମାନେ ଖାଇବାକୁ ଡାକିଲେ, ଆମେ ଉପରେ ଉପରେ ମନାକରି ଶେଷରେ ଖାଇଲୁଁ। ରାତିଟି ବେଶ୍ ଆନନ୍ଦରେ କଟିଲା। ଡନଲପ ଗଦି କିମ୍ବା ମଶାରି ଦରକାର ପଡ଼ିଲା ନାହିଁ। ପରଦିନ ସକାଳୁ ଆମ ଗାଡ଼ି ଠେଲାରେ ସେମାନେ ସାହାଯ୍ୟ କଲେ। ଆମେ ସିଧା କଟକ ଫେରିଲୁ। ଏହା ଭିତରେ ଆମେ ସବୁକିଛି ଭୁଲି ଯାଇଥିଲୁଁ।

ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଏମିତି କେତେ ଗଡ଼ି ଯାଇଛି। ଆଜି ସେ ଅଭୁଲା ସ୍ମୃତି ମନେ ପଡ଼ିଲେ ଏକ ଶିହରଣ ଆସିଯାଏ। ମୋ ଜୀବନରେ ବହୁ ଘାତପ୍ରତିଘାତ ଆସିଛି। କିନ୍ତୁ ପରମାନନ୍ଦ ତା' ଠାରୁ ଦୂରରେ। ସୁକୋମଳ ତରୁଣୀ ଧରି ପରମାନନ୍ଦ ପରିରାଜ୍ୟରେ ବିଚରଣ କଲେ। ଦୁଇଟି ପଞ୍ଚବାର୍ଷିକ ଯୋଜନା ବିତି ଗଲାଣି ବନ୍ଧୁ ପରମାନନ୍ଦଙ୍କର ପାଖ ଯାଇ, ପୁଅହେବା ଆଶାରେ ଛଅଟି କନ୍ୟାରତ୍ନ ଧରି ବସିଛନ୍ତି। ଆଉ ସଦାସର୍ବଦା ଭାଗ୍ୟକୁ ନିନ୍ଦା କରୁଛନ୍ତି। ସେ ଟେରେଲିନ୍ ଶାଢ଼ୀ-ବ୍ଲାଉଜ ଶ୍ରୀମତୀଙ୍କ ପାଇଁ ଆଣୁନାହିଁ। ରଜନୀଗନ୍ଧା ଫୁଲର ଦେଖା ଦର୍ଶନ ନାହିଁ। ଭିତରେ ଘିଅ ପଡ଼ିବା ଦୂରର କଥା; ଲୁଣ ପଡ଼ୁନାହିଁ। ମୁଁ ତାଙ୍କୁ ଯେତେ ବୁଝାଇଲି ତତଲା ଜାଉ ଧୀରେ ଧୀରେ ଖାଅ। ସେ ମୋ କଥାକୁ ଏକାନ ଦେଇ ସେ କାନେ ଉଡ଼ାଇ ଦେଲେ। ସବୁବେଳେ ତାଙ୍କର ଅଭାବ, ଅନାଟନ, ଗାଁ ଗଣ୍ଡା ଗୁରୁଆଡ଼ୁ ଧାର ଉଧାର। ତେଣୁ ଝିଅମାନଙ୍କର ରୁଗ୍ଣ ବେଉଶା, ଦିନ-ରାତି ଚିନ୍ତା ଯଦି ସେ ଦୁଇ ବା ତିନୋଟି ସନ୍ତାନର ବାପା ହୋଇଥାନ୍ତେ, ତାଙ୍କୁ ଏତେ ଭାବିବାକୁ ହେଉ ନ ଥାନ୍ତା। ନେଡ଼ିଗୁଡ଼ କହୁଣୀକୁ ବୋହି ଯାଉଛି। ତାର ବୟସର ନିତାଇ ଦୁଇଟି ସନ୍ତାନ କରି ବେଶ୍ ଆନନ୍ଦରେ ଅଛି। ଛୋଟ ପରିବାରଟି ସୁଖରେ ଚଳୁଛନ୍ତି। ଆୟ ଅନୁସାରେ ବ୍ୟୟ, ଅଭାବ ନାହିଁ କି ଉଧାର ନାହିଁ।

ବନ୍ଧୁ ପରମାନନ୍ଦଙ୍କର ସେଦିନ ଏ ଦିନ ଭିତରେ ଆକାଶ ପାତାଳ ପ୍ରଭେଦ। ଆଜି ଯେଉଁମାନେ ତରତର ହୋଇ ସଂସାର କରିବାକୁ ବ୍ୟାକୁଳ, ସେମାନେ ଟିକେ ପରମାନନ୍ଦଙ୍କ କଥାକୁ ମନେ ପକାଇ ପରିବାର ନିୟୋଜନ ସଂସ୍ଥା ଆଡ଼େ ବୁଲି ଆସନ୍ତୁ। ଦେଖିବେ ଏ ଦିନ ଅପେକ୍ଷା ଆସନ୍ତା ଦିନ ଉଜ୍ଜ୍ୱଳମୟ ହେବ।





**ଘର ଅଗଣା ସଫା ସୁତୁରା ରଖନ୍ତୁ। ରାସ୍ତାକୁ ଭଙ୍ଗାକାଚ, ଲୁହା, ଅଳିଆ ଇତ୍ୟାଦି ପକାନ୍ତୁ ନାହିଁ।**

# ଏ ସଂଖ୍ୟାରେ.........

# ସମ୍ପାଦକୀୟ

ଅଗଷ୍ଟ ୧୫ ତାରିଖ । ବିଶାଳ ଭାରତର ସ୍ୱାଧୀନତା ଦିବସ । ଆମେ ଭାରତର ଅଗଣିତ ନାଗରିକ ମୁକ୍ତ, ସ୍ୱତନ୍ତ୍ର, ସ୍ୱାଧୀନ । ଅଗଷ୍ଟ ୧୫ ତାରିଖ ଆମକୁ ସୂଚେଇ ଦିଏ ··ଆମେ ସ୍ୱାଧୀନ; କିନ୍ତୁ ବାସ୍ତବିକ କ'ଣ ଆମେ ସ୍ୱାଧୀନ ? ଉତ୍ତର ଖୋଜି ହତାଶ ହେବାକୁ ପଡ଼େ । ବିଦେଶୀ ଶାସନରୁ ମୁକ୍ତ ରହିବା କେବଳ ନିଜ ଦେଶକୁ ନିଜେ ଶାସନ କରିବା ସ୍ୱାଧୀନତା ନୁହେଁ । ସ୍ୱାଧୀନତାର ଅର୍ଥ ଭିନ୍ନ, ମର୍ଯ୍ୟାଦା ଭିନ୍ନ ଭାରତୀୟ । ସ୍ୱେଚ୍ଛାଚାରୀ ହୋଇନାହିଁ...ହୋଇଛୁ ସ୍ୱାଧୀନ । ତଥାପି ଆମେ ସ୍ୱାଧୀନ ନ ହୋଇ ପାରିବାର କାରଣ କ'ଣ ? ରାଜନୈତିକ ସ୍ୱାଧୀନତା କେବଳ ସ୍ୱାଧୀନତା ନୁହେଁ । ଆମେ ଏକ ମତବାଦୀ ଦେଶର ନାଗରିକ । ତେଣୁ ରାଜନୈତିକ ସ୍ୱାଧୀନତା ସହିତ ଆମର ଲୋଡ଼ା ଆର୍ଥନୀତିକ, ସାମାଜିକ, ନୈତିକ, ବସ୍ତୁତାନ୍ତ୍ରିକ ଓ ମୌଳିକ ସ୍ୱାଧୀନତା । ଚିକାଗୋ ଗହମ ଖାଇ ଅନ୍ନଂ ଦେହି, ବସ୍ତ୍ରଂ ଦେହି, ଚିତ୍କାର ଭିତରେ ଶହେଅଶି କମାଣ ଆବାଜରେ ଜାତୀୟ ଝଣ୍ଡା ଉତ୍ତୋଳନ କରିବାର ଅର୍ଥ ନାହିଁ । ନିର୍ଜନ ଅରଣ୍ୟରେ ପର୍ଣ୍ଣକୁଟୀରରେ ବେଦବ୍ୟାସ ଭଳି ଜ୍ଞାନାଲୋକର, ବୌଦ୍ଧିକତାରେ ଜୀବନଯାପନ ଆମର ପରମ୍ପରା । ଆମେ ବେଦ, ଗୀତା, ମହାଭାରତ ଦେଶର ବ୍ୟକ୍ତି । ଟପ୍‌ଲେସ୍, ବଟମ୍‌ଲେସ୍ ସଭ୍ୟତା ଆମକୁ ସ୍ପର୍ଶ କରିନାହିଁ କିମ୍ବା କରିପାରିବ ନାହିଁ ।

ପୁଣ୍ୟାତ୍ମା ମହାତ୍ମା ଗାନ୍ଧୀ ଆମକୁ ଯେଉଁ ସ୍ୱାଧୀନତା ପାଇଁ ଉତ୍ସାହିତ କରିଗଲେ, ଯୁଦ୍ଧ କରିବାକୁ ଶିକ୍ଷା ଦେଇଗଲେ ସେ ସ୍ୱାଧୀନତା ଗୋଧନ ଅଧିକାରୀ ଗୋପାଳ କୃଷ୍ଣ, ହଳ ଲଙ୍ଗଳ ଅଧିକାରୀ ବଳରାମ ଓ ଧନୁର୍ବିଦ୍ୟା ବିଶାରଦ ରାମଙ୍କ ସ୍ୱାଧୀନତା । ଏ ଦେଶର ନାଗରିକ ଗୋ-ସମ୍ପଦ ପରି ସମ୍ପଦରେ ପରିପୂର୍ଣ୍ଣତା ଲାଭ କରିବ, କୃଷିରେ ନୂତନ ଦିଗନ୍ତର ସୂଚନା ଦେବ ଓ ଧନୁର୍ବିଦ୍ୟା ଅର୍ଥାତ୍ ନିଜେ ଶକ୍ତିଶାଳୀ ହୋଇ ବୈଦେଶିକ ଆକ୍ରମଣରୁ ନିଜ ଦେଶକୁ ରକ୍ଷା କରିବ ।

ଅବଶ୍ୟ ଅହିଂସା ଆମର ପରମ ଧର୍ମ; କିନ୍ତୁ ଅହିଂସାର ଅର୍ଥ ନୁହେଁ ପରର ଦ୍ରାବକ ହେବା । କଥାରେ କହନ୍ତି— ପରାନ୍ନ ଭୋଜିର ବଞ୍ଚିବା ମରିବା ସଙ୍ଗେ ସମାନ । ବୈଦେଶିକ ପୁଞ୍ଜି ଯେ ଆମ ଆତ୍ମନିର୍ଭରଶୀଳତାକୁ ତ୍ୱରାନ୍ୱିତ କରି ପାରିବ—ଏହା କେବଳ ସ୍ୱପ୍ନ ମାତ୍ର ।

ଅବଶ୍ୟ ବିଶାଳ ଭାରତ ପକ୍ଷରେ ମାତ୍ର ୨୨/୨୩ ବର୍ଷର ସ୍ୱାଧୀନତା ଯଥେଷ୍ଟ ନୁହେଁ । ତଥାପି ଏକ ସ୍ୱାଧୀନତା-ପ୍ରୟାସୀ ନାଗରିକ ପକ୍ଷରେ ଏ ସମୟ କମ୍ ନୁହେଁ । ସୁନାର ଭାରତ ଗଠନ ପାଇଁ ଯଥେଷ୍ଟ; କିନ୍ତୁ ଆମେ କ'ଣ ସତରେ ସ୍ୱାଧୀନ ହୋଇ ସୁନାର ଭାରତ ଗଠନ କରିବାକୁ ସକ୍ଷମ ହୋଇ ପାରିଛୁ ? ନାଁ···, ଆମ ଜାତୀୟ ଜୀବନରେ ଏକ ବିରାଟ ଅଭାବ ରହି ଯାଇଛି । ଆଜି ପ୍ରତ୍ୟେକ ନାଗରିକ ଭାବୁଛନ୍ତି ମୁଁ ଯାହା ଜାଣିଛି ତାହା ଅନ୍ୟକେହି ଜାଣନ୍ତି ନାହିଁ । ମୋର ଉକ୍ତି ହିଁ ଧ୍ରୁବ ସତ୍ୟ । ତେଣୁ ବହୁ ମତ, ବହୁ ପଥ, ବହୁ ପାର୍ଟି, ବହୁ ବ୍ରତ ଧାରୀ ବ୍ୟକ୍ତି ଦେଶର ତଥାକଥିତ ସେବାପାଇଁ ଆଗ୍ରହୀ । ଏ କ'ଣ ସତରେ ଜନସେବାର ପଥ ଉନ୍ମୁକ୍ତ କରିବ ?

ସଙ୍ଘତ କେବଳ ବାଚନିକ ଅର୍ଥରେ ବ୍ୟବହୃତ ହେଲେ ହେବନାହିଁ । ଏହା ନିରାଶା ଓ ହତୋତ୍ସାହର କାରଣ ହେବ । ସମସ୍ୟାର ସମାଧାନ ପାଇଁ ଭାବ ବିନିମୟ ଓ ସମନ୍ୱୟ ହିଁ ଆବଶ୍ୟକ ।

ଅବଶ୍ୟ ଭାରତ ଏକ ସମସ୍ୟା ବହୁଳ ଦେଶ । କେବଳ ବ୍ୟାଙ୍କ ଜାତୀୟକରଣ ବା ରାଷ୍ଟ୍ରପତି ନିର୍ବାଚନ ନୁହେଁ; ଏହିପରି ବହୁ ସମସ୍ୟା ଆମ ସ୍ୱାଧୀନତାକୁ ପଙ୍ଗୁ କରିବା ଲାଗି ଚେଷ୍ଟା କରିବ । ଆମେରିକାର ପୁଞ୍ଜିପତି ଭାବନା ଓ ରୁଷିଆର କମ୍ୟୁନିଜିମ୍ ଚେତନା ଏ ସୁବିଧା ନେଇ ଫାଇଦା ଉଠାଇବାକୁ ସକ୍ରିୟ ହୋଇ ଉଠିବ । ଆମେ କିନ୍ତୁ ନିର୍ଲିପ୍ତ ଦର୍ଶନର ଦ୍ରାବକ । ତେଣୁ ଆମର ସ୍ୱାଧୀନତା ବିରଲା, ଡାଲମିଆ ବା ସ୍ୱେଚ୍ଛାଚାରୀ ଶିଳ୍ପପତିଙ୍କ ସ୍ୱାଧୀନତା ନୁହେଁ । ଏକ ନମ୍ର ଭାରତୀୟର ସ୍ୱାଧୀନତା । ଏହିପରି ଏକ ଆଶୁ ସ୍ୱାଧୀନତା ଦିବସର ପାଳନ ପାଇଁ ଆମେ ଆକାଂକ୍ଷିତ ।

ଆଜିର ସ୍ୱାଧୀନତା ଦିବସରେ ଆମେ ତା'ର ଅଭିନନ୍ଦନ ଜଣାଉଛୁ ।

ଜୟହିନ୍ଦ୍

**ଉପେନ୍ଦ୍ର ମିଶ୍ର**

# ଭାରତର ସ୍ୱାଧୀନତା ଦିବସରେ ଶ୍ରୀଅରବିନ୍ଦଙ୍କ ବାର୍ତ୍ତା

## ୧୫ ଅଗଷ୍ଟ, ୧୯୪୭

—

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖ ସ୍ୱାଧୀନ ଭାରତର ଜନ୍ମଦିବସ । ଏହି ଦିବସ ଭାରତବର୍ଷ ପାଇଁ ଏକ ପ୍ରାଚୀନ ଯୁଗର ଅବସାନ ଏବଂ ଏକ ନବୀନ ଯୁଗର ଅଭ୍ୟୁତ୍ଥାନର ସୀମା ନିର୍ଦ୍ଧାରଣ କରିଛି । ବିଶ୍ୱରେ ମାନବ-ସମାଜର ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଭବିଷ୍ୟତ୍ ନିର୍ମାଣରେ ଏହି ଯେଉଁ ନୂତନ ଯୁଗ ଆସିଛି, ତାହା ମଧ୍ୟରେ ଏହି ଦିବସର ଗୁରୁତ୍ୱ, ଏକ ସ୍ୱାଧୀନ ଜାତିଭାବେ ଆମେ ନିଜ ଜୀବନ ଓ କର୍ମଦ୍ୱାରା ବଜାୟ ରଖିପାରିବା ।

ଅଗଷ୍ଟ ୧୫ ତାରିଖ ମୋର ଜନ୍ମଦିନ । ସ୍ୱାଭାବିକଭାବେ ମୋ ପକ୍ଷରେ ଏହା ଆନନ୍ଦର ଦିନ । କାରଣ ଏହି ଦିନଟି ଅର୍ଜନ କରିଛି ଏକ ବୃହତ୍ତର ଅର୍ଥ । ଏହି ଯୋଗାଯୋଗକୁ ମୁଁ ଏକ କାକତାଳୀୟ ଘଟଣା ବୋଲି ଗ୍ରହଣ କରେନାହିଁ, ବରଂ ମନେକରେ ଯେଉଁ ଭଗବାନ୍ ଶକ୍ତିଙ୍କର ପରିଚାଳନାରେ ମୋର କର୍ମଜୀବନ ଆରମ୍ଭ ହୋଇଥିଲା, ଯାହାର ପୂର୍ଣ୍ଣ ଫଳୋଦ୍‌ଗମର ସମୟ ସମାଗତ, ତାହା ଆଜି ତାଙ୍କର ସ୍ୱୀକୃତି ଓ ସମର୍ଥନ ଲାଭ କରିଛି । ବାସ୍ତବରେ ଏହି ଦିବସରେ ମୁଁ ବିଶ୍ୱ-କ୍ରିୟାବଳୀକୁ ଲକ୍ଷ୍ୟ କରୁଛି ଏବଂ ଯାହାସବୁ ମୋ ଜୀବନକାଳ ମଧ୍ୟରେ ସଫଳ ହେବବୋଲି ବିଶ୍ୱାସ କରିଥିଲି, ସେଗୁଡ଼ିକ ଯଦିଓ ସେତେବେଳେ ଦିବାସ୍ୱପ୍ନ ଭଳି ବୋଧ ହେଉଥିଲା, ଆଜି କିନ୍ତୁ ଲକ୍ଷ୍ୟ କରୁଛି ସେ ସବୁ ସଫଳ ହେବାକୁ ଯାଉଛି ଅଥବା ସଫଳତାର ପଥରେ । ଏହିସବୁ କ୍ରିୟାଧାରା ମଧ୍ୟରେ ସ୍ୱାଧୀନ ଭାରତ ଏକ ବିଶାଳ ଭୂମିକା ଗ୍ରହଣ କରିପାରେ କିମ୍ବା ଗୁରୁତ୍ୱପୂର୍ଣ୍ଣ ନେତୃତ୍ୱ ନେଇପାରେ ।

ମୋର ପ୍ରଥମ ସ୍ୱପ୍ନ ହେଲା ଏକ ବୈପ୍ଳବିକ ଆନ୍ଦୋଳନ ଯାହାଦ୍ୱାରା ଏକ ଅଖଣ୍ଡ ଏବଂ ସ୍ୱାଧୀନ ଭାରତ ଆତ୍ମ-ପ୍ରକାଶ କରିବ । ଭାରତ ଆଜି ସ୍ୱାଧୀନତା ପାଇଛି ସତ୍ୟ; କିନ୍ତୁ ସେ ଅଖଣ୍ଡତା ଲାଭ କରିନାହିଁ । ବ୍ରିଟିଶ୍ ଶାସନର ଅବ୍ୟବହିତ ପୂର୍ବେ ଭାରତ ଯେପରି ବହୁ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇ ବିଶୃଙ୍ଖଳିତ ହୋଇ ପଡ଼ିଥିଲା, ଏକ ସମୟରେ ମନେ ହେଉଥିଲା, ସ୍ୱାଧୀନତାଦ୍ୱାରା ପୁଣି ସେହି ସ୍ଥିତିକୁ ଭାରତ ଖସି ପଡ଼ିବ । କିନ୍ତୁ ସୌଭାଗ୍ୟର କଥା ବର୍ତ୍ତମାନ ବୋଧ ହେଉଛି ଏହି ବିପଦକୁ ଦୂର କରାଯାଇ ପାରିବ ଏବଂ ପରିପୂର୍ଣ୍ଣ ଅଖଣ୍ଡତା ପ୍ରତିଷ୍ଠିତ ନ ହୋଇ ପାରିଲେ ମଧ୍ୟ ଏକ ସୁଦୃଢ଼ ଏକତା ପ୍ରତିଷ୍ଠା କରାଯାଇ ପାରିବ । ପୁନଶ୍ଚ ଶାସନ-ବିଧାୟକ ସଭାର କୌଶଳପୂର୍ଣ୍ଣ ସୁଦୃଢ଼ ନୀତି ସମସ୍ତ ମତାନୈକ୍ୟ ଏବଂ ସଙ୍କୀର୍ଣ୍ଣତା ଦୂରକରି ଦଳିତ ଜାତି-ମାନଙ୍କର ସମସ୍ୟା ସମାଧାନ କରିପାରିବ ବୋଲି ଧାରଣା କରୁଛି; କିନ୍ତୁ ମନେହୁଏ ଯେପରି ହିନ୍ଦୁ ମୁସଲମାନଙ୍କର ପ୍ରାଚୀନ ଧର୍ମଗତ ବିଦ୍ୱେଷ ଆଜି ଅତ୍ୟନ୍ତ ତୀବ୍ର (ଭୟଙ୍କର) ହୋଇ ଦେଶର ସ୍ଥାୟୀ ରାଜନୈତିକ ବିଭକ୍ତୀକରଣ କରୁଛି । କିନ୍ତୁ ଏହାକୁ ଏକ ମୀମାଂସିତ ଘଟଣା ବୋଲି ଚିରକାଳ ଗ୍ରହଣ କରାଯାଇ ନ ପାରେ । ବରଂ ବିଶ୍ୱାସ ରହିବା ଉଚିତ୍, ଏହା ଏକ ସାମୟିକ ଅସ୍ଥାୟୀ ବ୍ୟବସ୍ଥାଠାରୁ ଅଧିକ କିଛି ନୁହେଁ । କାରଣ ଯଦି ଏହି ଅବସ୍ଥା ରହେ, ଭାରତ ଗୁରୁତର ଶୋଚନୀୟଭାବେ ଦୁର୍ବଳ ହୋଇ ପଡ଼ିବ, ଏପରିକି ପଙ୍ଗୁ ହୋଇ ଯାଇପାରେ । ଗୃହ-ବିବାଦର ସମ୍ଭାବନା ସ୍ଥାୟୀ ସର୍ବଦା ରହିପାରେ । ଏପରିକି ଭାରତ ଉପରେ ବିଦେଶୀର ନୂତନ ଆକ୍ରମଣ ଓ ଅଧିକାର ସମ୍ଭବପର ହୋଇପାରେ । ଭାରତର ଆଭ୍ୟନ୍ତରୀଣ ଉନ୍ନତି ଏବଂ ବିକାଶ ବାଧାପ୍ରାପ୍ତ ହୋଇପାରେ । ଅନ୍ୟ ଦେଶମାନଙ୍କ ପାଖରେ ତା'ର ଆସନ ଦୁର୍ବଳ ହୋଇଯାଇପାରେ, ଏପରି କି ତା'ର ଭବିତବ୍ୟ ବି ନୈରାଶ୍ୟଜନକ ହୋଇଯାଇପାରେ । କିନ୍ତୁ ଏହା ଯେପରି ନ ଘଟେ—ଏ ବିଭକ୍ତୀକରଣ ନିଶ୍ଚୟ ଦୂରହେଉ । ବିଶ୍ୱାସ ରଖିବା, ଏହି ଏକତ୍ୱ ଯେପରି ସ୍ୱାଭାବିକରୂପେ ଆସିପାରେ କେବଳ ଶାନ୍ତି ଓ ଐକ୍ୟପାଇଁ ବର୍ତ୍ତମାନ ଆବଶ୍ୟକତା ଅନୁଭବ ଦ୍ୱାରା ନୁହେଁ ବରଂ ମିଳିତ କର୍ମଧାରାର ଅଭ୍ୟାସଦ୍ୱାରା ତଥା ଲକ୍ଷ୍ୟଲାଭର ଉପାୟ ସୃଷ୍ଟି ଦ୍ୱାରା । ଏହିପରି ଭାବେ ପରିଶେଷରେ ଏକତା ସ୍ଥାପିତ ହେବ, ଯେକୌଣସି ଉପାୟରେ ହେଉ ନା

ନାହିଁକି, ସେହି ଉପାୟର ମୂଲ୍ୟ କେବଳ ବ୍ୟାବହାରିକ, ମୌଳିକ ପ୍ରୟୋଜନ କର୍ମ ନୁହେଁ । ଯେକୌଣସି ଉପାୟରେ ହେଉ, ଯେକୌଣସି ପନ୍ଥାରେ ହେଉ ଏ ଦେଶବିଭାଗ ନଷ୍ଟ ହିଁ ଲୋପ ପାଇବ, ଯେକୌଣସି ମତେ ଐକ୍ୟପ୍ରତିଷ୍ଠା କରିବାକୁ ହିଁ ହେବ; କାରଣ ଭାରତର ଭାବୀ-ମହାନତା ପାଇଁ ଏହା ପ୍ରୟୋଜନ ।

ଅନ୍ୟ ଏକ ସ୍ୱପ୍ନ ହେଲା, ଏସିଆର ରାଷ୍ଟ୍ରମାନଙ୍କର ପୁନରୁତ୍ଥାନ ତଥା ସ୍ୱାଧୀନତା ଏବଂ ମାନବ ସଭ୍ୟତାର ବିକାଶରେ ମହାନ ଏସିଆର ଅଂଶ ଗ୍ରହଣ ।

ଏସିଆ ଆଜି ଜାଗ୍ରତ । ତାର ଅଧିକାଂଶ ରାଷ୍ଟ୍ର ଆଜି ସ୍ୱାଧୀନ କିମ୍ବା ସ୍ୱାଧୀନତା ପଥର ଯାତ୍ରୀ । ଯେଉଁ ରାଷ୍ଟ୍ରମାନେ ସମ୍ପୂର୍ଣ୍ଣ ବା ଆଂଶିକ ଭାବେ ପରାଧୀନ, ସେମାନେ କୌଣସି ନା କୌଣସି ପ୍ରକାରେ ସ୍ୱାଧୀନତା ସଂଗ୍ରାମ ଚଳାଇଛନ୍ତି । କେବଳ ଅତି ସାମାନ୍ୟ ମାତ୍ର କରିବାକୁ ବାକି ଅଛି, ଆଜି ହେଉ ବା କାଲି ହେଉ, ସେତକ ହେବହିଁ ହେବ । ସେଥିରେ ଭାରତର କିଛି କର୍ତ୍ତବ୍ୟ ରହିଛି ଏବଂ ସେହି କର୍ମ ସେ ଅତି ସାମର୍ଥ୍ୟ ଓ ଦକ୍ଷତାର ସହ ଆରମ୍ଭ କରିଛି । ଏଥିରୁ ସୂଚିତ ହେଉଛି ତାର ଭବିଷ୍ୟତ୍ ସମ୍ଭାବନା ଏବଂ ଜାତି-ଗୋଷ୍ଠୀରେ ସେ କେଉଁ ସ୍ଥାନ ଅଧିକାର କରିବ ।

ତୃତୀୟ ସ୍ୱପ୍ନ ହେଲା ମାନବ-ସମାଜର ବାହ୍ୟ ଜୀବନକୁ ଅଧିକ ସୁନ୍ଦର, ଉଜ୍ଜ୍ୱଳ ଓ ଆଦର୍ଶ ସ୍ଥାନୀୟ କରିବା ପାଇଁ ଜାତି-ସଂଘ ପ୍ରତିଷ୍ଠା । ମାନବ ସମାଜର ଐକ୍ୟ ବର୍ତ୍ତମାନ ପ୍ରସ୍ତୁତ ପଥରେ । ଆରମ୍ଭରେ ତ୍ରୁଟିବିହ୍ୱଳ ହେଲେ ମଧ୍ୟ, ବିପୁଳ ବାଧା ବିରୁଦ୍ଧରେ ତାକୁ ଅଗ୍ରସର ହେବାକୁ ପଡ଼ୁଛି । କିନ୍ତୁ ତା'ମଧ୍ୟରେ ରହିଛି ଏକ ପ୍ରବେଗ । ଏହା କ୍ରମଶଃ ବୃଦ୍ଧି ପ୍ରାପ୍ତ ହୋଇ ବିଜୟ-ମଣ୍ଡିତ ହେବ ।

ଏ କ୍ଷେତ୍ରରେ ମଧ୍ୟ ଭାରତ ଏକ ପ୍ରଧାନ ଅଂଶ ଗ୍ରହଣ କରିଛି । ଯେଉଁ ଉଦାରତର ରାଷ୍ଟ୍ରନୀତି ଉପସ୍ଥିତ ଘଟଣାବଳୀ ଏବଂ ଆଶୁ ସମ୍ଭାବନା ମଧ୍ୟରେ ଆବଦ୍ଧ ନୁହେଁ, ଯାହାର ଦୃଷ୍ଟି ଭବିଷ୍ୟତ୍‌ମୁଖୀ ଏବଂ ଯାହା ଭବିଷ୍ୟତ୍‌କୁ ନିକଟତର କରିପାରେ; ଭାରତ ଯଦି ସେହି ନୀତି ଅନୁଶୀଳନ କରେ, ତେବେ ତାର ଉପସ୍ଥିତିର ପ୍ରଭାବରେ ମନ୍ଥର ଓ ଶଂକିତ ବିକାଶ କ୍ଷିପ୍ର ଓ ନିଶ୍ଚିନ୍ତ ହୋଇ ଉଠିବ । ଦୈବଦୁର୍ବିପାକ ହୁଏତ ବାଧା ସୃଷ୍ଟି କରିପାରେ ଏପରି କି ଯେଉଁ କାର୍ଯ୍ୟ ହୋଇଯାଇଛି ତାର ବିଧ୍ୱଂସ ସାଧନ କରିପାରେ; ତଥାପି ମଧ୍ୟ ବାଞ୍ଛିତ ଲକ୍ଷ୍ୟ ସାଧିତ ହେବହିଁ ହେବ । କାରଣ ପ୍ରକୃତି ଧାରାରେ ଏହା ଏକ ପ୍ରୟୋଜନୀୟ ତଥା ଅପରିହାର୍ଯ୍ୟ ପ୍ରକ୍ରିୟା । ରାଷ୍ଟ୍ରମାନଙ୍କ ପାଇଁ ତାର ଆବଶ୍ୟକତା ସୁସ୍ପଷ୍ଟ, କାରଣ ଏହା ବ୍ୟତୀତ କ୍ଷୁଦ୍ରତର ରାଷ୍ଟ୍ରସମୂହ ଯେକୌଣସି ମୁହୂର୍ତ୍ତରେ ବିପଦର ସମ୍ମୁଖୀନ ହୋଇ ପାରନ୍ତି, ଏପରିକି ବଡ଼ ବଡ଼ ରାଷ୍ଟ୍ରମାନେ ମଧ୍ୟ ନିରାପଦ ରହି ପାରିବେ ନାହିଁ । ଏଣୁ ସମସ୍ତଙ୍କ ସ୍ୱାର୍ଥ ଦୃଷ୍ଟିରୁ ଐକ୍ୟ ଆବଶ୍ୟକ । କେବଳ ମାନବୀୟ ଦୁର୍ବଳତା ତଥା ମୂଢ଼ ସ୍ୱାର୍ଥପରତା ଏହାକୁ ପ୍ରତିହତ କରିପାରେ । କିନ୍ତୁ ଏହା କେବେହେଁ ଚିରକାଳ ପାଇଁ ପ୍ରକୃତିର ଆବଶ୍ୟକତା ଓ ଭଗବତ୍ ଇଚ୍ଛା ବିରୁଦ୍ଧରେ ତିଷ୍ଠି ପାରିବ ନାହିଁ । କିନ୍ତୁ ଏକ ବାହ୍ୟ ଭିତ୍ତି ଯଥେଷ୍ଟ ନୁହେଁ; ଏକ ଆନ୍ତର୍ଜାତୀୟ ମନୋଭାବ ଓ ଦୃଷ୍ଟିର ବିକାଶ, ଆନ୍ତର୍ଜାତୀୟ ଅନୁଷ୍ଠାନର ପ୍ରତିଷ୍ଠା ହେବା ନିତାନ୍ତ ପ୍ରୟୋଜନ । ଆଉ ମଧ୍ୟ, ଏହିପରି ବିକାଶ ଯଥା: ଦୈତ୍ୟ ବା ବହୁ ନାଗରିକତ୍ୱର ପ୍ରଥା, ଅଥବା ବିଭିନ୍ନ ସଂସ୍କୃତିର ସ୍ୱେଚ୍ଛାକୃତ ବା ସହୃଦୟଯୁକ୍ତ ପରସ୍ପର ଆଦାନପ୍ରଦାନ ବା ଅନ୍ତର୍ମିଳନ ଏହି କାର୍ଯ୍ୟରେ ସହାୟକ ହେବ । ଜାତୀୟତାର କଥା ସମାପ୍ତ ହୋଇଥିବ, ତାହା ନିଜର ଯୋଦ୍ଧୃଭାବ ହରାଇଥିବ । ଆଉ ଏହି ଆନ୍ତର୍ଜାତୀୟ ମନୋଭାବ ସହ ତା'ର ଆତ୍ମ-ସଂରକ୍ଷଣ ବା ପୂର୍ଣ୍ଣାଙ୍ଗ ଦୃଷ୍ଟିର କୌଣସି ବିରୋଧ ଘଟିବ ନାହିଁ ।

ଅନ୍ୟ ଏକ ସ୍ୱପ୍ନ ହେଲା, ବିଶ୍ୱକୁ ଭାରତର ଆଧ୍ୟାତ୍ମିକ ଦାନ—ଇତିମଧ୍ୟରେ ତାହା ଆରମ୍ଭ ହୋଇଯାଇଛି । ୟୁରୋପ ଓ ଆମେରିକାରେ ଭାରତର ଅଧ୍ୟାତ୍ମିକତା ଅଧିକରୁ ଅଧିକଭାବେ ପ୍ରବେଶ କରୁଛି । ଏହି ଗତିଧାରାର କ୍ରମଶଃ ପ୍ରସାର ହେଉଛି । ଏ ଯୁଗର ବିପର୍ଯ୍ୟୟ ଓ ଅଶାନ୍ତି ମଧ୍ୟରେ ଅଧିକରୁ ଅଧିକ ବ୍ୟକ୍ତି ଭାରତ ପ୍ରତି ଆଶା ଓ ଭରସା ସହ ଦୃଷ୍ଟିପାତ କରୁଛନ୍ତି, ସେମାନେ କେବଳ ତା'ର ଶାସ୍ତ୍ର ପ୍ରତି ନୁହେଁ, ବରଂ ତାହାର ଅନ୍ତରାତ୍ମିକ ଓ ଅଧ୍ୟାତ୍ମିକ ସାଧନାର ଆଶ୍ରୟ ଖୋଜୁଛନ୍ତି ।

ସର୍ବଶେଷ ସ୍ୱପ୍ନ ହେଲା ବିବର୍ତ୍ତନର ଧାରାରେ ଏପରି ଏକ ପଦକ୍ଷେପ ନେବା ଯାହା ମନୁଷ୍ୟକୁ ଏକ ଉଚ୍ଚତର ଓ ବିଶାଳତର ଚେତନାରେ ଉନ୍ନୀତ କରିବ ଏବଂ ସେହିସବୁ ସମସ୍ୟାର ସମାଧାନ ଆଣିବ ଯେଉଁ ସମସ୍ୟା ସକଳ ମନୁଷ୍ୟକୁ ବ୍ୟସ୍ତ ଓ ବିଚଳିତ କରିଛି, ଯେତେବେଳୁ ସେ ବ୍ୟକ୍ତିଗତ ପୂର୍ଣ୍ଣତା ଓ ସାମାଜିକ ପୂର୍ଣ୍ଣତାର କଥା ଚିନ୍ତା କରିଛି ଓ ସ୍ୱପ୍ନ ଦେଖିଛି । ଅବଶ୍ୟ ଏହା ଏବେବି ଏକ ବ୍ୟକ୍ତିଗତ ଆଦର୍ଶ ଓ ବିଶ୍ୱାସ, ଯଦିଓ ଏହା ଭାରତ ଓ ପାଶ୍ଚାତ୍ୟର ଅଗ୍ରଗାମୀ ଚିନ୍ତାଶୀଳ ବ୍ୟକ୍ତିଙ୍କ ହୃଦୟରେ କ୍ରମଶଃ ପ୍ରବେଶ କରୁଛି । ମନୁଷ୍ୟର ଅନ୍ୟାନ୍ୟ ଉଦ୍ୟୋଗ-କ୍ଷେତ୍ର ଅପେକ୍ଷା ଏ କ୍ଷେତ୍ରରେ ବାଧା-ବିପତ୍ତି ଅଧିକ ଦୁର୍ଜ୍ଜୟ; କିନ୍ତୁ ବାଧା-ବିପତ୍ତିର ଅର୍ଥ ତାକୁ ଅତିକ୍ରମ କରିଯିବା, ଆଉ ଯଦି ଭଗବାନଙ୍କ ଇଚ୍ଛା ଥାଏ, ତେବେ ଏହି ବାଧା-ବିପତ୍ତିକୁ ଅତିକ୍ରମ କରାଯାଇପାରେ । ପୁନଶ୍ଚ ଯଦି ବିବର୍ତ୍ତନରେ ଏହି ପଦକ୍ଷେପ ଗ୍ରହଣ କରିବାକୁ ହୁଏ ଏବଂ ଯେହେତୁ ଏହା ସଘଟିତ ହେବ କେବଳ ଅନ୍ତର୍ଚେତନା ଓ ଅନ୍ତରାତ୍ମାର ବିକାଶ ଦ୍ୱାରା, ତେଣୁ ଏ କ୍ଷେତ୍ରରେ ମଧ୍ୟ ଭାରତ ପ୍ରଥମେ ଉଦ୍ୟମ ଆରମ୍ଭ କରିବ । ଯଦିଓ ଏହାର ପରିସର ବିଶ୍ୱବ୍ୟାପକ, ତଥାପି କେନ୍ଦ୍ରୀୟ ଗତି ହିଁ ଭାରତରୁ ଆରମ୍ଭ ହେବା ନିଶ୍ଚିତ ।

ଆଜି ଭାରତର ଏହି ସ୍ୱାଧୀନତା ଦିବସକୁ ମୁଁ ଏହି ସକଳ ସୂଚନା ପ୍ରଦାନ କରୁଛି । ମୋର ଏହି ଆଶା ସଫଳ ହେବ କି ନାହିଁ ଏବଂ କେତେଦୂର ପରିମାଣରେ ହେବ ତାହା ନିର୍ଭର କରେ ନୂତନ ସ୍ୱାଧୀନ ଭାରତ ଉପରେ ।

—o— (ନବଜ୍ୟୋତି)

## —ପ୍ରବନ୍ଧ—



# ଆଧୁନିକ ସଭ୍ୟତା ସମ୍ବନ୍ଧେ ଗାନ୍ଧିଜୀଙ୍କ ବାଣୀ

### ସରଳା ଦେବୀ

ମହାତ୍ମା ଗାନ୍ଧୀ ଚଳନ୍ତି ଶତାବ୍ଦୀର ଶିକ୍ଷା ଓ ଦୀକ୍ଷାଗୁରୁ । ସେ ଭାରତରେ ଜନ୍ମହୋଇ ହିନ୍ଦୁ-ସଂସ୍କୃତିରେ ଆଜନ୍ମ ଲାଳିତ ହୋଇ ଭାରତର ଆତ୍ମା-ପୁରୁଷକୁ ଚିହ୍ନିଥିଲେ ବୋଲି ୪୫ କୋଟି ଭାରତୀୟ ଲୋକଙ୍କର ମନ ଜିଣିପାରି ନେତୃତ୍ୱ କରିଥିଲେ ମୁକୁଟହୀନ ସମ୍ରାଟଙ୍କ ଭଳି । ସେ ଯାହା ଲେଖିଛନ୍ତି କହିଛନ୍ତି ତାହା ଆଗାମୀ ଶତଯୁଗର ଲୋକ ସାଧାରଣଙ୍କର ମନ ବିକାଶର ସହାୟକ ଅଟନ୍ତି । ପାଶ୍ଚାତ୍ୟ ସଭ୍ୟତା ଓ ଶିକ୍ଷା ବିଲାତରେ ପାଇଥିଲେ ସୁଦ୍ଧା ସେ ଜନ୍ମଦାତ୍ରୀ ଭାରତକୁ ସେବାକରି ସ୍ନେହ କରୁଥିଲେ । ତାଙ୍କର ମନକୁ ବିଜାତୀୟ ସଭ୍ୟତା ନଷ୍ଟକରି ପାରି ନ ଥିଲା । ସେ ଆଧୁନିକ ସଭ୍ୟତାର ଘୋର ବିରୋଧୀ ଥିଲେ ।

ସେ ଲେଖିଛନ୍ତି "ମୁଁ ଆଧୁନିକ ସଭ୍ୟତାକୁ ଘୋର ନିନ୍ଦା କରିବା ପାଇଁ ସାହସ କରୁଛି । କାରଣ ଏହାର ପ୍ରେରଣା ତତ୍ତ୍ୱ ଅନିଷ୍ଟକାରୀ । ଅବଶ୍ୟ ଏ ସଭ୍ୟତା ପରିଶେଷରେ କିଛି ଭଲ ରହିଛି; କିନ୍ତୁ ଏହାର ଆଗୃର ବଗୃର ମାଡକୁ ମୂଳରୁ ଚନଖି କରିଛି । ଯେଉଁମାନେ ଏ ସଭ୍ୟତା ବାତାବରଣରେ ବଢ଼ି କିଛି ଉପରକୁ ଉଠିଛନ୍ତି ତନ୍ମଧ୍ୟରେ ଆଧୁନିକ ଖ୍ରୀଷ୍ଟଧର୍ମ ଓ ଆଧୁନିକ ସଭ୍ୟତାରେ ଭେଦ ଅଛି । ଆଧୁନିକ ସଭ୍ୟତାର କର୍ମକ୍ଷେତ୍ର କେବଳ ୟୁରୋପ ଭିତରେ ସୀମିତ ନୁହେଁ । ଏହାର ପ୍ରଭାବ ଜାପାନ ଦେଶରେ ପୂରିଯାଇ ଭାରତକୁ ବିନାଶ କରିବାକୁ ବସିଲାଣି । ଯେଉଁ ଲୋକେ ଏ ସଭ୍ୟତା ଭଉଁରି ଭିତରେ ପଡ଼ିଲେଣି, ସେମାନଙ୍କ ଭବିଷ୍ୟତ ଗସ୍ତା ସେମାନଙ୍କୁ ଛୁଯୁରିବାକୁ ପଡ଼ିବ । ମୋର ଏହି ନିବେଦନ ଯେ ଯେଉଁମାନେ ଏ ସଭ୍ୟତା ପ୍ରଭାବରୁ ବାହାରି ଅଛନ୍ତି, ଯେଉଁମାନଙ୍କ ନିକଟରେ ଏକ ସୁପରୀକ୍ଷିତ ସୁପ୍ରତିଷ୍ଠିତ ସଭ୍ୟତା ରହିଛି, ସେମାନଙ୍କୁ ସେହି ସୁପରୀକ୍ଷିତ ସଭ୍ୟତାର ଭିତ୍ତି ଉପରେ ଠିଆ ହେବାପାଇଁ ସହାୟତା କରିବା

ଉଚିତ । ଏଥିରେ ଦୂରଦର୍ଶିତା ରହିଛି । ମୋର ଦାବୀ ଏହି ଯେ ମୁଁ ଆଧୁନିକ ସଭ୍ୟତା ଜୀବନ ଓ ପ୍ରାଚୀନ ସଭ୍ୟତା ଜୀବନକୁ ଆମୂଳଚୂଳ ବିଶ୍ଳେଷଣ କରି ଦେଖିଛି । ମୁଁ ଏହି ବିଚାରକୁ ଦୃଢ଼ତା ସହିତ କହୁଛି ଯେ ଭାରତକୁ ଜାଗ୍ରତ କରିବା ପାଇଁ ପାଶ୍ଚାତ୍ୟ ଆଧୁନିକ ସଭ୍ୟତା ଦର୍କାର ନାହିଁ । ମୁଁ ବିଶୋଧନ କରି ରହି ପାରୁନାହିଁ । ଆଧୁନିକ ପ୍ରତିସ୍ପର୍ଦ୍ଧି ଓ ଭୌତିକ ସଭ୍ୟତା ଭାରତୀୟ ମନରେ ଉତ୍ତେଜନା ଜାତ କରାଉଛି । ଏଥିରେ ତାର ମନବେଗ ବାସନାତ୍ମକ, ହୋଇ ପଡ଼ୁଛି । ଏଥିରେ ବୌଦ୍ଧିକ ଉତ୍ତେଜନା ରହିଛି । ଏଥିରେ ଭାରତର ନୈତିକ ସଭ୍ୟତା ଇଞ୍ଚେ ବି ବଢ଼ିବ ନାହିଁ ।

ଆଧୁନିକ ସଭ୍ୟତା ମନୁଷ୍ୟକୁ ନୈତିକ ଦୃଷ୍ଟି-କୋଣ ଦେଇନାହିଁ । ଏ ସଭ୍ୟତା ଦେହ ଓ ଦେହକୁ ସୁଖଦେବା ସାଧନ ପ୍ରଣାଳୀ ଉପରେ ଠିଆ ହୋଇଛି । Herbert Spencer ଆଧୁନିକ ଲୋକଙ୍କ ସମ୍ବନ୍ଧରେ କହିଛନ୍ତି ଏ ସଭ୍ୟତା ମନୁଷ୍ୟ ଜୀବନକୁ ଜଟିଳ କୁଟିଳ ଓ ବିକୃତ କରି ଦେଇଛି । ଏହି ପ୍ରଶ୍ନ ଉପରେ ବର୍ଷ ବର୍ଷ ପଢ଼ି ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଛି ଯେ, ଆଧୁନିକ ସଭ୍ୟତା ମାନବ ସମସ୍ୟା ସମାଧାନ ପଥ ନ କାଢ଼ି ମାନବକୁ ବିକୃତ କରିଛି । ମନୁଷ୍ୟ ଜାତି ବିରକ୍ତ ଯାଇଛି । ମୁଁ ଦେଖିଛି ଜଟିଳ ଜୀବନଠାରୁ ସାଧା ସରଳ ଜୀବନ ଭଲ । କାରଣ ତହିଁରେ ଉଚ୍ଚ ଚିନ୍ତା ଓ ପ୍ରବୃତ୍ତି ପାଇଁ ସମୟ ମିଳେ । ପ୍ରାଚୀନ ସଭ୍ୟତାରେ ଭାଗବଣ୍ଟା ଦୌଡ଼ା ନାହିଁ । ଲୋକ ଆଜ ଇହଲୋକ ଚିନ୍ତା କରୁଛି । କିନ୍ତୁ ଆମେ ପରଲୋକ ଚିନ୍ତା କରୁଥିଲେ । ସେମାନଙ୍କ ଧ୍ୟାନ ଶରୀରକୁ ଛାଡ଼ି ଆତ୍ମା ଉପରେ କେନ୍ଦ୍ରିତ ଥିଲା । ସେମାନେ ଦେହଠୁଁ ଆତ୍ମାକୁ ଅଲଗା ବୋଲି ଭାବୁଥିଲେ । ସେମାନେ ଭୋଗବିଳାସକୁ ଜୀବନର ଚରମ ଲକ୍ଷ୍ୟକରି ନ ଥିଲେ । ଏବେ ଲୋକେ ସେ ଶଇତାନ ସେବା କରୁଛନ୍ତି, ପୂର୍ବେ ଲୋକେ ଭଗବାନଙ୍କ ସେବା କରୁଥିଲେ । ଯଦି ସମସ୍ତଙ୍କ ଆତ୍ମା ଏକ ଏବଂ ସମସ୍ତଙ୍କ ଭିତରେ ମୁଁ ଏକାତ୍ମା ଦର୍ଶନ ନ କରେ, ତେବେ ଏ ସଂସାରରେ ରହିବାକୁ ବି ମୁଁ ପସନ୍ଦ କରିବ ନାହିଁ । ମୁଁ ମରି-ଯିବାକୁ ଚାହିଁବି । ଶରୀର ତ ଆତ୍ମାର ନିୟନ୍ତ୍ରଣରେ ଚଳାଇବାର ଏକ ରଥ ମାତ୍ର । ଏହି ଶରୀର ଅତି ହେୟ ଓ ଅପବିତ୍ର ମାଟିର ପିତୁଳା ଅଟେ । ପୂର୍ବ କାଳରେ ଆମର ଜୀବନ ଧ୍ୟାନମାର୍ଗୀ ଥିଲା । ଈଶ୍ୱରଙ୍କ ପ୍ରତି ପ୍ରେମ, ପଡ଼ୋଶୀଙ୍କ ପ୍ରତି ଶିଷ୍ଟାଚାର ଆତ୍ମାର ଅନୁ-ଶୀଳନ କରାଯାଉଥିଲା । ପୁରୁଷମାନଙ୍କର ଅଭ୍ୟାସ କରି ମନୁଷ୍ୟ ସମାଜ ଜୀବନର ଓ ବ୍ୟକ୍ତିଗତ ଜୀବନର ମଙ୍ଗଳ ହେଉଥିଲା ।

ଯଥାର୍ଥ ସଭ୍ୟତାର ଆଦର୍ଶ:—ସତ୍ୟ ସଭ୍ୟତା ଆଧୁନିକ ସଭ୍ୟତାଠାରୁ ଭଲ ଥିଲା । ଆଧୁନିକ ସଭ୍ୟତା ଈଶ୍ୱରଙ୍କୁ ଭୁଲିବା, ଦମ୍ଭପୂର୍ଣ୍ଣ ଓ ଖାଦରେ ଭରିଛି । ଯଥାର୍ଥ ସଭ୍ୟତାରେ ମନୁଷ୍ୟକୁ ଦୟାବାନ ଭଗବତ ପରାୟଣ ଓ ସରଳ ହୁଏ । ଆଧୁନିକ ସଭ୍ୟତାରେ ମନୁଷ୍ୟ ମୁଖ୍ୟତଃ ଶରୀର ପାଇଁ ଉଦ୍ୟୋଗ କରେ । କିନ୍ତୁ ପୂର୍ବ ଯୁଗରେ ଶରୀରକୁ ଆତ୍ମିକ ସାଧନର ଅଙ୍ଗ ବୋଲି ଲୋକେ ଶରୀର ଯତ୍ନ କରୁ-ଥିଲେ । ସେଥିପାଇଁ ମନୁଷ୍ୟର ସରଳ ଜୀବନ ଓ ସାଧା ଚଳଣି ଗ୍ରାମ୍ୟ ଜୀବନକୁ ପସନ୍ଦ କରିବା ଉଚିତ । ପ୍ରାଚୀନ ସଭ୍ୟତାକୁ ପୁନର୍ଗ୍ରହଣ କରିବା ଉଚିତ । ଭାରତୀୟ ସଭ୍ୟତା ପୃଥିବୀର ଶ୍ରେଷ୍ଠ ସଭ୍ୟତା ଅଟେ ।

ୟୁରୋପର ଚାରିଆଡ଼େ ଅଶାନ୍ତି ରହିଛି, ଝଗଡ଼ା ଚାଲିଛି । ଏଥିରୁ ଜଣାପଡ଼େ ଆଧୁନିକ ୟୁରୋପୀୟ ସଭ୍ୟତା ଅଶିବ ଓ ଅନ୍ଧକାରମୟ ଶକ୍ତିଗୁଡ଼ିକର ପ୍ରତିନିଧିତ୍ୱ କରେ । ଭାରତର ପ୍ରାଚୀନ ମୂଳ ସଭ୍ୟତାରେ ଦେବୀ ଶକ୍ତିର ପ୍ରତିନିଧିତ୍ୱ କରୁଥିଲେ । ଆଧୁନିକ ସଭ୍ୟତା ଭୌତିକବାଦୀ ମାତ୍ର, ଆମ ସଭ୍ୟତା ଆଧ୍ୟାତ୍ମିକ ଅଟେ । ଆଧୁନିକ ସଭ୍ୟତା ମୁଖ୍ୟରୂପେ ଭୌତିକବାଦୀ । ମାତ୍ର ଆମ ସଭ୍ୟତା ମୁଖ୍ୟତଃ

ଆଧ୍ୟାତ୍ମବାଦୀ । ଆଧୁନିକ ସଭ୍ୟତା ଭୌତିକ ନିୟମ ଖୋଜୁଛି-ଲାଗିଛି ଓ ମାନବ ପ୍ରକୃତିକୁ ଉତ୍ପାଦନ ଓ ବିନାଶର ସାଧନ ପାଇଁ ଜୁଟାଇଛି । ଆମ ସଭ୍ୟତା କେବଳ ଅଧ୍ୟାତ୍ମ ନିୟମ ଖୋଜିବାରେ ଲାଗିଛି । ଆମ ଶାସ୍ତ୍ରବାଣୀ କହେ ସତ୍ୟ ଜୀବନ ପାଇଁ ସତ୍ୟକୁ ଠିକ ଠିକ ଭାବେ ପାଳିବା, ପବିତ୍ର ଆଚରଣ, ପ୍ରତି ଜୀବପ୍ରତି ଅହିଂସା ଭାବନା, ପରଧନ ପ୍ରତି ଆକୃଷ୍ଟ ଓ ଆଶାୟୀ ନହେବା ଓ ଦୈନିକ ଜୀବନ ପାଇଁ ଯେତିକି ଦରକାର ସେତିକି ମାତ୍ର ସଞ୍ଚିବା ଆବଶ୍ୟକ ଅଟେ । ଶାସ୍ତ୍ର ଏକଥା କହେ ଯେ ଏହା ନ କଲେ ଆତ୍ମ-ଜ୍ଞାନ ତତ୍ତ୍ୱ ଜାଣି ହେବନାହିଁ । ଆମ ଶାସ୍ତ୍ର ଅତି ଦମ୍ଭ ସାହସରେ କହୁଛି ଯେ ଅହିଂସାର ଉଚିତ ପ୍ରୟୋଗ ଓ ବିକାଶ ଦ୍ୱାରା ସଂସାର ସାରା ଆମ ପାଦତଳେ ପଡ଼ିବ । ସଂକ୍ଷିପ୍ତ ରୂପରେ ଅହିଂସା ଅର୍ଥ ହେଉଛି ପବିତ୍ରତମ ପ୍ରେମ ଓ କରୁଣା । ଏହି ବଚନକୁ ଉଚ୍ଚାରଣ କରିଥିବା ମହାତ୍ମାଗଣ ଅନନ୍ତ ଉଦାହରଣ ଦେଇ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଓ ପ୍ରମାଣିତ କରୁଛନ୍ତି ।

ରାଷ୍ଟ୍ରୀୟ ପୋଷାକ:—ପାଶ୍ଚାତ୍ୟ ସଭ୍ୟତାର ଶ୍ରେଷ୍ଠ ଶ୍ରେଷ୍ଠ ସୁଖ ସୁବିଧା ସଙ୍ଗେ ମୋର ପରିଚୟ ନ ଥିବାରୁ ମୁଁ ମୋର ରାଷ୍ଟ୍ରୀୟ ପୋଷାକକୁ ଆଦର କରି ଶିଖିଲି । ମୁଁ ଭାରତୀୟ ପୋଷାକ ଏଥିପାଇଁ ପିନ୍ଧେ ଯେ ମୁଁ ମନେକରେ ଭାରତୀୟଙ୍କ ପାଇଁ ଏହା ଅତି ଶୋଭନୀୟ ଓ ସ୍ୱାଭାବିକ ଅଟେ । ମୋର ବିଶ୍ୱାସ ଏହି ଯେ ସାହେବୀ ପୋଷାକ ପିନ୍ଧି ଆମର ନୈତିକ ପତନ ହୋଇଛି ଓ ଏହା ଆମର ଅପମାନ ଏବଂ ଦୁର୍ବଳତାର ଚିହ୍ନ । ଯେଉଁମାନେ ଦେଶୀ ପୋଷାକ ନ ପିନ୍ଧି ବିଲାତି ପୋଷାକ ପିନ୍ଧନ୍ତି, ସେମାନେ ରାଷ୍ଟ୍ରୀୟତା ବିରୁଦ୍ଧରେ ରାଷ୍ଟ୍ରୀୟ ପାପ କରନ୍ତି । ଆମ ପୋଷାକ ଭାରତୀୟ ଜଳବାୟୁ ପାଇଁ, ସ୍ୱାସ୍ଥ୍ୟରକ୍ଷା ପାଇଁ, ପରିଚ୍ଛନ୍ନତା ପାଇଁ ପୃଥିବୀରେ ଶ୍ରେଷ୍ଠ ପୋଷାକ ଓ ପୃଥିବୀରେ ଅତୁଳନୀୟ । ଇଂରାଜଙ୍କୁ ନକଲ କରି ଇଂରାଜଙ୍କର ମିଥ୍ୟାଭିନୟ ଓ ଇଂରାଜଙ୍କ ନକଲ କରିବାରେ ଆମ ଲୋକେ ଆତ୍ମପ୍ରସାଦ ଆତ୍ମଗୌରବ ବୋଧ ନ କରୁଥିଲେ ଏଠି ରହୁଥିବା ସାହେବମାନେ ବହୁକାଳରୁ ଆମ ପୋଷାକ ଲୁଗା ପିନ୍ଧନ୍ତେଣି ।

ୟୁରୋପୀୟ ସଭ୍ୟତା ଆସୁରୀ ଅଟେ:—

ମୋର ବିଶ୍ୱାସ ଏହି ଯେ ଆଧୁନିକ ୟୁରୋପ ଈଶ୍ୱର ବା ଖ୍ରୀଷ୍ଟଙ୍କ ଧର୍ମର ପ୍ରତିନିଧିତ୍ୱ ନ କରି ଶଇତାନର ପ୍ରତିନିଧିତ୍ୱ କରୁଛି ।

•

ଶଇତାନ ସେଠାରେ ସଫଳ ହୋଇଛି । ଚରମ ସୀମାରେ ପହଞ୍ଚିଛି । ଶଇତାନୀ ସିଦ୍ଧାନ୍ତରେ ଈଶ୍ୱରଙ୍କ ସ୍ଥାନ ନାହିଁ । ଆଜି ୟୁରୋପ ନାସ୍ତିକ । ନାମ ମାତ୍ରକ ପାଇଁ ଖ୍ରୀଷ୍ଟାନ ଅଟେ । ବାସ୍ତବିକ ୟୁରୋପ ଲକ୍ଷ୍ମୀଙ୍କ ପୂଜକ ଅଟେ । ପ୍ରକୃତରେ ଯୀଶୁଖ୍ରୀଷ୍ଟ କହିଥିଲେ ଗୋଟିଏ ଛୁଞ୍ଚି ଛିଦ୍ରରେ ଓଟ ସହଜରେ ଗଳି ଯାଇ-ପାରେ, ମାତ୍ର ଧନୀର ଈଶ୍ୱରଙ୍କ ରାଜ୍ୟରେ ପ୍ରବେଶ କଠିନ ଓ ଅସମ୍ଭବ । ସେମାନେ ନୈତିକ ଉନ୍ନତି ଧନ ବୃଦ୍ଧିର ମାପକାଠିରେ କରନ୍ତି । ଇଂଲଣ୍ଡର ରାଷ୍ଟ୍ରୀୟ ଗୀତହିଁ ଖ୍ରୀଷ୍ଟଧର୍ମ ବିରୋଧୀ । ହଜରତଈସା, ଯେ କି ନିଜ ଶିଷ୍ୟମାନଙ୍କୁ, ଅନୁରକ୍ତମାନଙ୍କୁ ଶତ୍ରୁକୁ ସ୍ନେହ-ପ୍ରେମ କରିବାକୁ ଶିକ୍ଷା ଦେଇଥିଲେ, ସେ ନିଜ ଶତ୍ରୁମାନଙ୍କୁ ଆସୁରୀ ବଳଦ୍ୱାରା କଷ୍ଟଦେଇ ଆସୁରୀ ଉପାୟରେ ସେମାନଙ୍କୁ ବିଫଳ କରିବାକୁ କହି ନ ଥିଲେ । ଡାକ୍ତର ଓ୍ୱାଲେସ ନିଜ ଅନ୍ତିମ ପୁସ୍ତକରେ ଲେଖିଛନ୍ତି କି ବହୁଚର୍ଚ୍ଚିତ ବିଜ୍ଞାନର ଉନ୍ନତି ୟୁରୋପର ନୈତିକ ଚରିତ୍ରକୁ ଇଞ୍ଚେ ବି ଉନ୍ନତ କରିନାହିଁ । ଅନ୍ୟ ଘଟଣା ଛଡ଼ା ବିଗତ ମହାଯୁଦ୍ଧ ସଭ୍ୟତାର ଏହି ଆସୁରୀ-ବୃତ୍ତି ଅତି ସ୍ପଷ୍ଟ କରି ୟୁରୋପ ଦେଶମାନଙ୍କରେ ଠିଆ କରି ଦେଇଛି । ସେହି ଆସୁରୀ ସଭ୍ୟତା ୟୁରୋପର ନିୟନ୍ତା ଓ ଗୁରୁ । ବିଜେତାମାନେ ସେଠାରେ ଭଲ କରିବା ବାହାନା କରି ସାର୍ବଜନିକ ନୈତିକତାକୁ ଓ ପ୍ରତ୍ୟେକ ନିୟମକୁ ଭଙ୍ଗ

କରିଛନ୍ତି । ରାଜନୀତିକାରିମାନଙ୍କ ନାନାପ୍ରକାର ମିଥ୍ୟା ଭାଷଣକୁ କେହି ମନ୍ଦବୋଲି ସେଠାରେ କହି- ନାହାନ୍ତି ଓ ମନ୍ଦ ବିଚାରି ନାହାଁନ୍ତି । ପ୍ରତ୍ୟେକ ଅପରାଧକୁ ଧାର୍ମିକ ସେବା ଆଧ୍ୟାତ୍ମିକ ଉଦ୍ଦେଶ୍ୟ ନ ହୋଇ ସ୍ଥୂଳରୂପରେ ଭୌତିକ ଉଦ୍ଦେଶ୍ୟ ହୋଇ ରହିଲା । କିନ୍ତୁ ଯେଉଁ ହିନ୍ଦୁ ଓ ମୁସଲମାନ ଇଂରାଜ ବିରୁଦ୍ଧରେ ସଂଗ୍ରାମ କରୁଥିଲେ, ସେମାନଙ୍କ ଉଦ୍ଦେଶ୍ୟ ଧର୍ମ ଓ ସମ୍ମାନ ଉପରେ ଅବଧାରିତ ହୋଇଥିଲା ।

ଏବେ ଗାନ୍ଧୀ ଶତବାର୍ଷିକୀ ଭାରତ ସରକାର ଓ ରାଜ୍ୟ ସରକାରମାନେ ବହୁ ବ୍ୟୟକରି ପାଳନ କରିବାକୁ ଯାଉଛନ୍ତି । ମୋର ମନେହୁଏ, ଯାହା ନିଜେ ଗାନ୍ଧୀ ଲେଖିଛନ୍ତି, ଭାରତର ଓ ରାଜ୍ୟର ସରକାର ଗାନ୍ଧୀଙ୍କ ବାଟରେ ନିଜେ ଚାଲୁ ନାହାଁନ୍ତି କି ଲୋକ ଚାଲୁ ନାହାଁନ୍ତି । ଗାନ୍ଧୀ ଶତାବ୍ଦୀ କମିଟିର ସଭ୍ୟସଭ୍ୟା ଓ ନେତାନେତ୍ରୀମାନେ କେହି ଏ ଯୁଗରେ ଗାନ୍ଧୀଙ୍କ ସରଳ ସୁଗମ ସୁସ୍ଥ ସତ୍ୟ ଅହିଂସା ଜୀବନକୁ ଅନୁଶୀଳନ କରନ୍ତି ନାହିଁ । କେବଳ ରେଡ଼ିଓ ଏସେମ୍ବ୍ଲି ପାର୍ଲିମେଣ୍ଟ ଟାଉନହଲରେ ଗାନ୍ଧୀଙ୍କ ଜୀବନ ଓ ଆଦେଶ ପ୍ରଚାର ହୁଏ — ତାହା ବକ୍ତା ଓ ଶ୍ରୋତା କେହି ମନେରଖନ୍ତି ନାହିଁ କି କାମରେ କରନ୍ତି ନାହିଁ କାରଣ ଆମର ଅନ୍ୟାୟ ଅସତ୍ୟ ଓ ହିଂସା ବିରୋଧ କରିବାର ନୈତିକବଳ ଲୁପ୍ତ ହୋଇଛି । ଗାନ୍ଧୀ ବାଣୀରେ ନାହାଁନ୍ତି ଆଚରଣରେ ଅଛନ୍ତି । ତାହା ଏ ଜାତି ହରାଇ ବସିଛି । ବହୁକାଳରୁ ଗାନ୍ଧୀ ମଲାପରେ ।—

ଆମର ଅବିସ୍ମରଣୀୟ ଦେଶନେତା:—

ଗାନ୍ଧିଜୀଙ୍କର ପୃଥିବୀର ଆଧୁନିକ ବର୍ବର ଅଧ୍ୟୁଷିତ ଲୋକମାନଙ୍କୁ ଶ୍ରେଷ୍ଠଦାନ—ଅହିଂସାତ୍ମକ ଜୀବନ ଏବଂ ଜୀବନର ସବୁ ସମସ୍ୟାର ସମାଧାନ ପାଇଁ ଅହିଂସାର ପ୍ରୟୋଗ । ଅବଶ୍ୟ ବିଦେଶୀ ରାଜନୀତିର ବିରୁଦ୍ଧରେ ସେ ଅହିଂସାତ୍ମକ ଉପାୟରେ ଯେପରି ଜନମତ ଜାଗ୍ରତ କରି ଭାରତକୁ ଓ କେତେକ ଦେଶକୁ ସ୍ୱାଧୀନତାପ୍ରାପ୍ତିର ଉପାୟ ବତାଇ ଦେଇଥିଲେ, ତାହା ଏ ଯୁଗର ପାରଂପରିକ ସଭ୍ୟତାରେ ଏକ ବିଶ୍ୱ- ବିସ୍ମୟ । ଗାନ୍ଧୀ ବଞ୍ଚିଥିବାବେଳେ ପଟେଲ, ନେହେରୁ, ରାଜେନ୍ଦ୍ରବାବୁ, ସୁଭାଷବୋଷ ପ୍ରଭୃତି ସହକର୍ମୀମାନଙ୍କ ସହିତ ସବୁ ବିଷୟରେ ଏକମତ ନ ଥିଲେ । ତାଙ୍କ ମୃତ୍ୟୁପରେ ଏକା ବିନୋବାବାଭେ ହିଁ ତାଙ୍କର ପ୍ରକୃତ ଶିଷ୍ୟ ଥିବାର ଜଣାଯାଏ । ନିୟମିତ ଜୀବନ ଯାତ୍ରା, ନିୟମିତ ନିୟନ୍ତ୍ରିତ ଆହାର, ବିହାର, ଶୟନ, ଅଧ୍ୟୟନ ତାହା ମଧ୍ୟ ଭାରତବାସୀଙ୍କର ଶିଖିବା କଥା । ଗାନ୍ଧିଜୀ, ମହମ୍ମଦ ଆଲି, ସୌକତ ଆଲି ଦୁଇଭାଇଙ୍କୁ ଯେତେ ସ୍ନେହ କରୁଥିଲେ, ତାହା ବଦଳରେ ପାଇ- ଥିଲେ ସେମାନଙ୍କର ବିନା ବିଚାର ବିନା କାରଣରେ ନିରପେକ୍ଷ ଅସହଯୋଗ ଓ ଶତ୍ରୁଭାବ ।

ଥରେ ଓ୍ୱାର୍ଦ୍ଧା ଭଙ୍ଗୀମାନେ ଲୋକସେବା ନ କରି ଧର୍ମଘଟ କଲେ । ଖବର ପାଇ ଗାନ୍ଧିଜୀ ସଦଳ ବଳେ ଝାଡ଼ୁ ବାଲ୍ଟି ନେଇ ଲୋକଙ୍କର ଏପରି କି ଭଙ୍ଗୀ ପାଇଖାନା ସଫା କଲେ । ଏହା ଦେଖି ହାଡ଼ିମାନେ ଧର୍ମଘଟ ଭାଙ୍ଗିଦେଲେ । ୧୯୩୮ ସାଲରେ ଗାନ୍ଧିଜୀ ସୀମାନ୍ତ ପ୍ରଦେଶକୁ ଯାଇଥିଲେ । ସେଠାରେ ବନ୍ଧୁକଧାରୀ ଜଗୁଆଳୀ ଦେଖି ବିରୋଧ କରିଥିଲେ । ତାଙ୍କ ଆଦେଶରେ ବନ୍ଧୁକ ଓ ଜଗୁଆଳୀ ଚାଲିଗଲେ । ଏଥିରେ ସେହି ଭୀଷଣ ପ୍ରକୃତିର ପଠାଣମାନଙ୍କ ମନରେ ବିସ୍ମୟ ସୃଷ୍ଟି ହୋଇଥିଲା ଓ ସେମାନେ ବି ଗାନ୍ଧିଜୀଙ୍କ ଅହିଂସାରେ ଉଦ୍‌ବୁଦ୍ଧ ହୋଇ ଅସ୍ତ୍ର ଓ ହିଂସାମାତ୍ର ତ୍ୟାଗ କରିଥିଲେ । ଶତ ସହସ୍ର ପ୍ରତିଶୋଧ ସ୍ପୃହ ପଠାଣ ଗାନ୍ଧୀଙ୍କ ମତ ପୋଷଣ କରିଥିଲେ । ଇଂରାଜ ଅତ୍ୟାଚାରରେ ସେଠା ଲୋକେ ଭୀରୁଆ ଓ କାପୁରୁଷ ନିଃସହାୟ ହୋଇ ପଡ଼ିଥିଲେ । ସେମାନଙ୍କୁ ଗାନ୍ଧିଜୀ ସାହସ, ମନୁଷ୍ୟତା ଓ ଅନ୍ୟାୟର ପ୍ରତିବାଦ କରି ଶିଖାଇଥିଲେ । ସେହି ପଠାଣମାନେ ଅହିଂସ

ହୋଇଥିଲେ ଓ ଏକତାବଦ୍ଧ ହୋଇ ଇଂରାଜଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ସେମାନେ ଇଂରାଜ ସେନାକୁ ବା ଜେଲକୁ ଡରି ନ ଥିଲେ । ୧୯୨୮ ସାଲରେ ଗାନ୍ଧିଜୀ କଲିକତାରେ କଂଗ୍ରେସର ମିଟିଂରେ ଭାଷଣ ଦେଲାବେଳେ ଜଣେ ଯୁବକ ପାଟିକରି ତାଙ୍କୁ କାପୁରୁଷ କହି ଗାଳିଦେଲା । ଗାନ୍ଧିଜୀ ରାଗିଲେ ନାହିଁ । ହସି ହସି ନିଜର ଭାଷଣ ଦେଇଥିଲେ । ଗାନ୍ଧିଜୀ କହୁଥିଲେ ଦେହ ଓ ମନରେ ବଳିଷ୍ଠ ଲୋକ କେବଳ ଅହିଂସ ହୋଇପାରେ । ମାଡ଼ ଅପମାନ ଖାଇ ପ୍ରତିଶୋଧ ସ୍ପୃହା ନ ହୋଇ ହସି ହସି ତାହା ହଜମ କରେ, ମାତ୍ର ଦୁର୍ବଳ ଲୋକ ଟିକିଏ ବିରୋଧ ସହି ନ ପାରି ପ୍ରତିଶୋଧ ଚିନ୍ତାକରେ ଓ ପ୍ରତିହିଂସାଶୀଳ ହୁଏ । ପଠାଣମାନେ ସୀମାନ୍ତ ପ୍ରଦେଶରେ ବରାବର ଦଂଗା-ହାଙ୍ଗାମା କରୁଥିଲେ । ମାତ୍ର ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ଓ ଶିକ୍ଷା ଫଳରେ ସେମାନେ ସଭ୍ୟ-ଭଦ୍ର ଆଚରଣ ଶିକ୍ଷା କରିଥିଲେ ।

ବିହାରରେ ହିନ୍ଦୁ-ମୁସଲମାନ ସଂଘର୍ଷ ହୋଇଥିଲା । ମୁସଲମାନମାନେ ଗାନ୍ଧୀଙ୍କୁ କହିଲେ ଆମ ଘରଦ୍ୱାର ନାହିଁ । ସବୁବେଳେ ଆମର ପ୍ରାଣ ଭୟ । ଆମେ କେଉଁଠିକୁ ଯିବୁ ? ହିନ୍ଦୁମାନେ ଆମକୁ ହତ୍ୟା କରିବେ । ଗାନ୍ଧିଜୀ କହିଥିଲେ ତୁମେମାନେ ନିଜ ନିଜ ଘରକୁ ଯାଇ ରହ । ନିର୍ଭୟରେ ଚଳ । ମୁଁ ତୁମକୁ କି ଜାମିନ୍ ଦେବି ? କିନ୍ତୁ ତୁମ ଭିତରୁ ଜଣକୁ ଯଦି ହତ୍ୟା କରାଯାଏ, ତେବେ ଜାଣିବ, ହିନ୍ଦୁମାନଙ୍କୁ ମୋର ଜୀବନକୁ ମୂଲ୍ୟ ଦବାକୁ ହବ । ମୁଁ ଏହି ନିରାପତ୍ତାର ସର୍ତ୍ତ କେବଳ ତୁମମାନଙ୍କୁ, ଦେଉଛି । ଏହି ଉତ୍ସାହବାଣୀ ମୁସଲମାନମାନଙ୍କୁ ନିର୍ଭର ପ୍ରେରଣା ଦେବାରୁ ସେମାନେ ଘରକୁ ଫେରିଗଲେ । ସେଦିନ ପ୍ରାର୍ଥନା ସଭାରେ ଗାନ୍ଧିଜୀ କହିଲେ I have given the Muslim of this Place the assurance that any of them is killed, the Hindus of Bihar will pay for it with Gandhi's life".

ଗାନ୍ଧିଜୀ ଜନ୍ମିଥିଲେ, ପୃଥିବୀର ପ୍ରଥମ ମହାଯୁଦ୍ଧଠାରୁ ଦ୍ୱିତୀୟ ମହାଯୁଦ୍ଧ ମନୁଷ୍ୟ ଜାତିପ୍ରତି ବଡ଼ ଭୟଙ୍କର ହୋଇଥିଲା । ତହିଁରେ ସୃଷ୍ଟି ଓ ମାନବ ସଭ୍ୟତା ନାଶ ହୋଇଛି । ଏତେ ଶାନ୍ତି କମିଟି ଆନ୍ତର୍ଜାତିକ ସଦ୍‌ଭାବ କମିଟି ହେଲା, ମାତ୍ର ପୃଥିବୀରେ ଶାନ୍ତି ପ୍ରତିଷ୍ଠା ହୋଇନାହିଁ । ହିଂସା ହିଂସାର ଜନନୀ, ତାର ନିବୃତ୍ତି ନାହିଁ । ଭଗବାନଙ୍କୁ ଭଲ ପାଇବା, ଦେଶ ଲୋକଙ୍କୁ ଭଲ ପାଇ ଅହରହ ସେମାନଙ୍କର ସେବା ନିଃସ୍ୱାର୍ଥ ଭାବରେ କରିବାରେ ଅହିଂସା ରହିଛି । ପୃଥିବୀର ଶାନ୍ତି ପ୍ରତିଷ୍ଠା ଯେଉଁମାନେ ଚାହାଁନ୍ତି, ସେମାନଙ୍କ ଚିନ୍ତାରେ ଅହିଂସା ସଦ୍‌ଭାବ ଓ ନିଜର ତ୍ୟାଗ ନ ଥିଲେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ । ଗାନ୍ଧିଜୀ ପ୍ରୀତିଭାବରେ ମନୁଷ୍ୟର ସେବା କରିବାରୁ ସେ ଅମର ହୋଇଛନ୍ତି ।

ଗାନ୍ଧୀହତ୍ୟା ଭଗବାନ୍‌ଙ୍କ ବିରୁଦ୍ଧରେ ପାପ କରିବା । ଯେଉଁ ଲୋକ ଦେଶପାଇଁ ଜୀବନ ଦେଲା, ଜେଲ୍‌ରେ ଜୀବନ କାଟିଲା, ଦୁଃଖ କଷ୍ଟ ସହିଲା ଦେଶବାସୀଙ୍କ ପାଇଁ, ସେହି ଲୋକକୁ ଆମ ଲୋକେ ହତ୍ୟାକଲେ । ଆଜି ଗାନ୍ଧୀ ସଭ୍ୟତା ଓ ଗାନ୍ଧୀ ସଂସ୍କୃତି ଭାରତରୁ ଲୁପ୍ତ ହୋଇଯିବାରୁ ଭାରତର ଆତ୍ମା ସେହି ପାପର ଫଳ ଭୋଗକରି ନୀରବରେ ଅଗ୍ନିରେ ଝଲସି ଝଲସି ପୋଡ଼ି ଜଳି ଯାଉଛି । —

ଗାନ୍ଧିଜୀ ଦରିଦ୍ରର ବନ୍ଧୁଥିଲେ । ଗରିବଙ୍କୁ ଶିକ୍ଷା ସ୍ୱାସ୍ଥ୍ୟ ଅନ୍ନ ବସ୍ତ୍ରରୁ ବଞ୍ଚିତ କରି ନିଜେ ଜମିଦାରୀ କରି ଧନରତ୍ନ ଓ ଜମି ଭୋଗକରି ମାଲିକ ବନିବାର ସେ ଘୋର ବିରୋଧୀ ଥିଲେ । ସେ କହୁଥିଲେ ରଜା ଜମିଦାର ଯେଉଁ ଧନ ପାଇଛନ୍ତି ତାହା ପ୍ରଜାଙ୍କର ଏବଂ ଏହି ପ୍ରଜାଙ୍କ ଧନର ରକ୍ଷକ ହେବେ କେବଳ ଧନୀକ ଜମିଦାର ଓ ରଜା । ଭକ୍ଷକ ହେବେନାହିଁ । ସେମାନେ ଭକ୍ଷକ ହେଲେ ଦେଶରେ ଯେଉଁ ଶୋଷଣ

ଲୋକପ୍ରତିକ୍ରିୟା ବିପ୍ଳବ ହେବ, ସେହି ବିପ୍ଳବ ପ୍ରତି-କ୍ରିୟାରୁ ଧନୀ ଲୋକଙ୍କୁ କେଉଁ ସରକାର ରକ୍ଷା କରିପାରିବ ନାହିଁ । ତେଣୁ ଜାପାନର ସାମୁରାଇ ଧନୀମାନେ ଯେପରି ଗରିବ ପ୍ରଜାମାନଙ୍କୁ ଦାନ ଦାକ୍ଷିଣ୍ୟ କରି ସେମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ଜମି ଓ ଖାଦ୍ୟ ବସ୍ତୁର ଅଭାବ ମୋଚନ କରିଥିଲେ, ଭାରତର ଧନୀ ଜମିଦାର ମହାଜନମାନେ ସେପରି ଗରିବ ପ୍ରଜାମାନଙ୍କୁ ସଦା-ସ୍ମରଣ ଦେଖାଇବା ଉଚିତ । ଧନୀର ଯଦି ବଳକା ଘରବାଡ଼ି ଥିବ, ସେ ତାହା ଡାକ୍ତରଖାନା ବା ସ୍କୁଲରେ ପରିଣତ କରିବା ଉଚିତ । ଜମିଦାରର ବଗିଚା ଥିଲେ ପ୍ରଜାକୁ ସେ ବଗିଚାରୁ ଫଳ ପରିବା ଦେବା ଉଚିତ । ଧନୀର ଯେତିକି ଦରକାର, ତାଠୁଁ ଅଧିକା ରଖିବା ବା ସଞ୍ଚିବା ଉଚିତ ନୁହେଁ । ଏ ଯୁଗରେ ଆମେ ଗାନ୍ଧୀ ଶତବାର୍ଷିକୀ ପାଳନ କରୁଛୁଁ— କିନ୍ତୁ ଲୋକଙ୍କ ଅନ୍ନ ବସ୍ତ୍ର ସମସ୍ୟା ମେଣ୍ଟାଇ ଲୋକଙ୍କୁ ସୁଖି ରଖିବାରେ ହିଁ ଗାନ୍ଧୀଙ୍କ ପ୍ରତି ଆମର ଶ୍ରେଷ୍ଠ ସେବା ହେବ । ମନୁଷ୍ୟକୁ ଅଛୁଆଁ ରଖିବା, ମଦ୍ୟ ବର୍ଜନ ନ କରିବା ଯାଏ ଆମେ ଗାନ୍ଧୀଙ୍କ ଉତ୍ତର ଦାୟାଦ ହୋଇପାରିବୁ ନାହିଁ । —

—*—

# ଜାତୀୟ ସଂହତି

## ( ବଙ୍ଗଳା ଓ ଓଡ଼ିଶା )

ଡଃ ମାୟାଧର ମାନସିଂହ

ଗତ ( ୧୯୬୯, ଏପ୍ରିଲ ୧୩ ) ପ୍ରଜାତନ୍ତ୍ର-ପ୍ରଚାର-ସମିତିର ବିଷୁବ ମିଳନ-ଉତ୍ସବକୁ ଜନୈକ ବଙ୍ଗୀୟ ଅଧ୍ୟାପକ—ପଣ୍ଡିତ ମୁଖ୍ୟ-ଅତିଥି ରୂପେ ନିମନ୍ତ୍ରିତ ହୋଇ ଆସିଥିଲେ । ତାଙ୍କର ବକ୍ତୃତା ମୁଁ ଖବର କାଗଜରେ ହିଁ ପଢ଼ିଛି ଏବଂ ପଢ଼ି ବିସ୍ମିତ-ଆନନ୍ଦ ଉପଭୋଗ କରିଛି । କାରଣ, ଏତେଦିନେ ଜଣେ ବଙ୍ଗାଳୀ ବୁଦ୍ଧିଜୀବୀ ବୀରଭୂମ-ଜିଲ୍ଲାର କେନ୍ଦୁଲି ଗ୍ରାମ ଓ ପୁରୀଜିଲ୍ଲାର କେନ୍ଦୁଲି ଗ୍ରାମର ଐତିହ୍ୟ ଓ ପରିବେଶର ତୁଳନା କରି, ଗୀତଗୋବିନ୍ଦର କବି ଜୟଦେବ ଯେ ବଙ୍ଗଳାରେ ନୁହେଁ, ଓଡ଼ିଶା ମାଟିରେ ହିଁ ଜନ୍ମିଥିଲେ, ଏହା ସ୍ପଷ୍ଟ ଘୋଷଣା କରିଗଲେ ।

କିନ୍ତୁ, ଘୋଷଣାଟା ହେଲା ଓଡ଼ିଶାର କଟକ ନଗରରେ ଏବଂ ବାହାରିଲା କେତୋଟି ଓଡ଼ିଆ କାଗଜରେ ମାତ୍ର, ଯାହାକୁ କି ବାହାରର ଲୋକ କେହି ପଢ଼ନ୍ତିନ ।

ସମଗ୍ର ଭାରତରେ ଅବସ୍ଥା ଏପର୍ଯ୍ୟନ୍ତ ଯାହା ରହି ଆସିଛି, ସେଥିରୁ ଏଇଆ ଅବବୋଧ ହେଉଛି ଯେ, ଯେଉଁ ସତ୍ୟ କଲିକତାର ଇଂରେଜି ପତ୍ର-ପତ୍ରିକା-ମାନଙ୍କରେ ବା ଅନ୍ୟ ଯେଉଁସ୍ଥାନରୁ ହେଉପଛେ, ପ୍ରାମାଣିକ ଇଂରାଜି ପୁସ୍ତକରେ ବିଘୋଷିତ ହୁଏ, ସାରା ଭାରତ ତାକୁଇ ଗ୍ରହଣ କରିବ ବା କରି ଆସୁଛି ।

ତେଣୁ ଯେତେବଡ଼ ବଙ୍ଗୀୟ ପଣ୍ଡିତ ହେଉନ୍ତୁ, ଓଡ଼ିଆଙ୍କ ରାଜକୀୟ ଆତିଥ୍ୟ ବଦଳରେ ଓଡ଼ିଶା ମାଟିରେ ଦି'ପଦ ମିଠାକଥା ଶୁଣାଇ ଦେବାରେ କୌଣସି ବୌଦ୍ଧିକ ସିଦ୍ଧାନ୍ତ ହୋଇଗଲା ବୋଲି ମନେ କରିବାର କୌଣସି କାରଣ ନାହିଁ ।

ବୌଦ୍ଧଗାନ ଓ ଦୋହାଁ ଯେ ଓଡ଼ିଆ ଏବଂ ଜୟଦେବ ଓ ଗୀତଗୋବିନ୍ଦ ଯେ ଓଡ଼ିଆ, ମେଦିନୀ-ପୁର ଜିଲ୍ଲା ଯେ ଓଡ଼ିଶା,—ଏ ସବୁ ଦାବୀ, ଲେଖକର ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ ପ୍ରକାଶିତ History of Oriya literature ରେ ପ୍ରଥମ କରି ସର୍ବଭାରତୀୟ ପାଠକ ଓ ବୁଦ୍ଧିଜୀବୀଙ୍କି ଲକ୍ଷ୍ୟକରି, ଇଂରେଜିରେ ଦୃଢ଼ତାର ସହିତ କୁହାଗଲା ବୋଲି ଲେଖକର ଅନୁମାନ । କର୍ତ୍ତୃପକ୍ଷଙ୍କ ସ୍ପଷ୍ଟ ନିର୍ଦ୍ଦେଶ ଥିଲା ଓ ଅଛି ଯେ, ଏ ପ୍ରକାର ଗ୍ରନ୍ଥମାନଙ୍କରେ ଆନ୍ତଃ-ପ୍ରାଦେଶିକ ବିବାଦ-ମୂଳକ କଥା ସବୁ ରହିବ ନାହିଁ । ଓଡ଼ିଆ ଆଡ଼ଭାଇଜରୀ ବୋର୍ଡ଼ ମଧ୍ୟ ଏ ପୁସ୍ତକର ପାଣ୍ଡୁଲିପିର ବିଚାରବେଳେ ଏ ପ୍ରକାର ଆଞ୍ଚଳିକ ବିବାଦ ସବୁର ଉଲ୍ଲେଖ ନ କରିବାକୁ ଉପଦେଶ ଦେଇଥିଲେ । କିନ୍ତୁ ତାହା ହୋଇଥାନ୍ତା ଧୃଷ୍ଟତା । ଲେଖକ, ଧୃଷ୍ଟ ଉପଦେଶ ଗ୍ରହଣ ନ କରି ଯେତିକି ଭଦ୍ରତା ଓ ସଂଯମ ସହିତ ଓଡ଼ିଆ ଜାତିର ନ୍ୟାଯ୍ୟ ଦାବୀ ବିଶ୍ୱ ଆଗରେ ବାଢ଼ିବାର କଥା, ସେ ତାର

ହିଷ୍ଟ୍ରୀ-ଅବ୍ ଓଡ଼ିଆ ଲିଟରେଚରରେ କରିଛି ଏବଂ ଲେଖକ ଅନୁଭବ କରୁଛି ଯେ, History of Oriya literatureର ପ୍ରକାଶନ ପରଠାରୁହିଁ, ବଙ୍ଗୀୟ ବୁଦ୍ଧିଜୀବୀ ମହଲରେ ମଧ୍ୟ ପରିବର୍ତ୍ତନ ଦେଖା ଦେଇଛି। କାରଣ ସେ ପୁସ୍ତକର ପ୍ରକାଶନର ଅଳ୍ପ କେତେକାଳ ପରେ ସେକାଳର କେନ୍ଦ୍ରମନ୍ତ୍ରୀ ଅଧ୍ୟାପକ ହୁମାୟୁନ୍ କବୀର, ଏଇ ଓଡ଼ିଶାରେ, ଜୟଦେବ ଓଡ଼ିଆ ବୋଲି ବକ୍ତୃତା ଦେଇଯାଇ ଥିବାରୁ, ଲେଖକ କାଗଜରେ ପଢ଼ିଛି। ଏହା ଫଳରେ ବଙ୍ଗ-ପଣ୍ଡିତଙ୍କ ମୁଖରୁ ସେ ପ୍ରକାର ଘୋଷଣା ବୋଧହୁଏ ସର୍ବପ୍ରଥମ ନୁହେଁ।

କିନ୍ତୁ, ହିଷ୍ଟ୍ରି-ଅବ୍-ଓଡ଼ିଆ ଲିଟରେଚରର ସର୍ବ-ଭାରତୀୟ-ସମ୍ପାଦପତ୍ର—ଜଗତରେ ଏକମାତ୍ର ନିନ୍ଦା ପ୍ରକାଶ ପାଇଥିଲା ବଙ୍ଗଳାର 'ମଡ଼ର୍ଣ୍ଣରିଭ୍ୟୁ' ପତ୍ରିକାରେ। ରିଭ୍ୟୁଅର୍ ଥିଲେ ଜଣେ ଜଣାଶୁଣା ବଙ୍ଗାଳୀ ଐତିହାସିକ। ସେ ହିଷ୍ଟ୍ରି-ଅବ୍-ଓଡ଼ିଆ—ଲିଟରେଚରକୁ ସାହିତ୍ୟିକ ଦୃଷ୍ଟିରୁ ଯେତେ ନୁହେଁ ସେତେ, ଐତିହାସିକର ଦୃଷ୍ଟିରୁ ଆଲୋଚନା କରିଥିଲେ ଏବଂ ସ୍ୱାଭାବିକ ବଙ୍ଗୀୟ ଦୃଷ୍ଟିକୋଣରୁ, ମେଦିନୀପୁର କେବେ ଓଡ଼ିଆ ଅଞ୍ଚଳ ଥିଲା ବୋଲି କଟାକ୍ଷ କରି, ଲେଖକର ଅଜ୍ଞତା ହିଁ ପ୍ରମାଣିତ କରିବାକୁ ଚେଷ୍ଟା କରିଥିଲେ।

ମେଦିନୀପୁର କେବଳ ନୁହେଁ, ଏବର ପଶ୍ଚିମ-ବଙ୍ଗର ଦକ୍ଷିଣ-ପଶ୍ଚିମସ୍ଥ ଏକ ବୃହତ୍ତ୍ୟାଂଶ ଯେ ପୂର୍ବ "ଓଡ଼ିଶା" ଥିଲା, ତାହା ଲେଖକ ତା'ର ନିକଟରେ ପ୍ରକାଶ ପାଉଥିବା The Saga of the Land of Jagannath ରେ ଅଧିକ ଦୃଢ଼ତାର ସହିତ ପ୍ରମାଣ ଓ ଘୋଷଣା କରିବାକୁ ଯାଉଛି। ଲେଖକ "ମଡ଼ର୍ଣ୍ଣରିଭ୍ୟୁ"କୁ ମଧ୍ୟ ଏକ ପ୍ରତିବାଦ ଲେଖି ଥିଲା, କିନ୍ତୁ ଏଡ଼ିଟରର ବହୁ ବରେଣ୍ୟପୁତ୍ର ଠିକ୍ ସେହି ସମୟରେ ତା'ର History of Oriya literature ପାଇଁ ଲେଖକ ବଗୁଡ଼ିକୁ ହିଂସ-ବଦ୍ଧ ଓ ଅଗ୍ନିଦଗ୍ଧ କରିବାର ସବୁ ବ୍ୟବସ୍ଥା କରିବାରୁ, ସେହି ଜଞ୍ଜାଳ ଭିତରେ ସେ ପ୍ରତିବାଦଟା ଆଉ ପଠା-ହୋଇ ପାରିଲାନି। କିନ୍ତୁ ଲେଖକର ଦୃଢ଼ ବିଶ୍ୱାସ, 'ମଡ଼ର୍ଣ୍ଣରିଭ୍ୟୁ' ଯେ ପ୍ରତିବାଦ ହୁଏତ ଆଦୌ ଛାପି ନ ଥାନ୍ତେ। କାରଣଟା, ପାଠକମାନେ ନିମ୍ନଲିଖିତ ଘଟଣାରୁ ଅନୁମାନ କରନ୍ତୁ।

୧୯୬୯, ଜାନୁୟାରୀ ୨୦। ୨୧ ର 'ଷ୍ଟେଟସ୍‌ମାନ' ପତ୍ରିକାରେ ଏପରି ଦୁଇଟି ଲେଖା ବାହାରିଥିଲା, ଯାହା ଭାଷାଗତ ଓ ଶିଳ୍ପଗତ ପ୍ରମାଣ ଦୃଷ୍ଟିରୁ ଦୃଢ଼ତର ଭାବରେ ପ୍ରମାଣିତ କରୁଛି ଯେ, ସମଗ୍ର ମେଦିନୀପୁର ଓ ହୁଗ୍ଳୀ ଜିଲ୍ଲା ନୁହେଁ, କଲିକତା ସହର ମଧ୍ୟ ଆଜି ଯେଉଁଠି ଠିଆ ହୋଇଛି, ସେ ମାଟି ମଧ୍ୟ ଦିନେ ଖାଣ୍ଟି ଓଡ଼ିଶୀ ମାଟି ଥିଲା ଏବଂ ବୀରଭୂମି ଜିଲ୍ଲାର କେନ୍ଦୁଲି-ଗ୍ରାମ ଜୟଦେବଙ୍କ ଜନ୍ମସ୍ଥାନ ବୋଲି କହିବା, କେବଳ ନିଛକ ବାଲି-ବକ୍ତୃତା ଛଡ଼ା ଆଉକିଛି ନୁହେଁ।

ବିଷବ ମିଳନରେ ବଙ୍ଗ-ପଣ୍ଡିତ ଭଟ୍ଟାଚାର୍ଯ୍ୟ ମହାଶୟ ବକ୍ତୃତା ଦେବାର ଛଅମାସ ଆଗରୁ ଲେଖକ ତେଣୁ ଏ ସଂପର୍କରେ ଷ୍ଟେଟ୍‌ସ୍‌ମାନ କାଗଜକୁ ଏକ "ସମ୍ପାଦକଙ୍କୁ ପତ୍ର" ପଠାଇଥିଲା। କିନ୍ତୁ ଘୋର ପରିତାପର କଥା ଏହି ଯେ, ବଙ୍ଗାଳୀ—ପ୍ରଭାବାନ୍ୱିତ କଲିକତା-ଷ୍ଟେଟ୍‌ସ୍‌ମାନ ସେ ପତ୍ର ଆଦୌ ପ୍ରକାଶ କଲେନାହିଁ। ପାଠକପାଠିକାଙ୍କ ଜ୍ଞାତାର୍ଥେ ଏବଂ ଉଚିତ ବିଚାରାର୍ଥେ ସେହି ପତ୍ରଟିକୁ ନିମ୍ନରେ ଛାପି ଦେଉଛୁ। ଜାତିପ୍ରାଣ ଓଡ଼ିଆପୁଏ ଏ ଦିଗରେ ଅଧିକା କିଛି କାମ କଲେ ଲେଖକ ନିଶ୍ଚୟ ସୁଖୀହେବ।

ତେଣୁ, ଶେଷ ମନ୍ତବ୍ୟ ଏହି ଯେ, ଭଟ୍ଟାଚାର୍ଯ୍ୟ ମହାଶୟେ, ପ୍ରଜାତନ୍ତ୍ର—ପ୍ରଚାର—ସମିତିର—ଆତିଥ୍ୟ ବାନମପୁରେ କିଛି ମିଠାକଥା କଟକ ମାଟିରେ ଶୁଣାଇ ଦିବାରେ ଆମର ସାମାନ୍ୟତମ ଲାଭ ନାହିଁ। କିମ୍ବା

ଭଞ୍ଜି "ବଙ୍ଗ-କବି" ବୋଲି, ଆମେ ମେଳା-ମଉଚ୍ଛବ ନାଟ-ତାମସା ଓ ଲମ୍ଫଝମ୍ପ-ପୂର୍ଣ୍ଣ ବକ୍ତୃତା ସହସ୍ର ବର୍ଷ ପର୍ଯ୍ୟନ୍ତ କରି ଗଲେ ବି ସାମାନ୍ୟତମ ଲଭନାହିଁ । ଏ ସବୁ ଖାଣ୍ଟି ବୌଦ୍ଧିକ ବିଷୟ । ଏହାର ପ୍ରକୃଷ୍ଟ ପରିବେଷଣ, ଇଂରାଜ ପରି ଏକ ବିଶ୍ୱ-ଭାଷାରେ ପ୍ରକାଶ ପାଉଥିବା ଉଚ୍ଚ କୋଟୀର ଓ ବହୁଜନ ପଠିତ ପତ୍ର—ପତ୍ରିକାରେ ସ୍ତମ୍ଭ ଓ ପୃଷ୍ଠା ନେଇ । କିନ୍ତୁ ପରିତାପର କଥା ଏହି ଯେ ଓଡ଼ିଆ-ମାନଙ୍କର ଏ ସୁବିଧା ଆଦୌ ନାହିଁ, ଯେପରି ଅଛି, ବଙ୍ଗାଳୀମାନଙ୍କର । ତେଣୁ ଇଂରାଜରେ ପ୍ରାମାଣିକ ଓ ସର୍ବମାନ୍ୟ ପୁସ୍ତକ ଲେଖିବାହିଁ ଓଡ଼ିଆ ବୁଦ୍ଧିଜୀବୀଙ୍କ ପକ୍ଷେ ଏକମାତ୍ର ପନ୍ଥା । ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।

## ଷ୍ଟେଟସ୍ମ୍ୟାନକୁ ଦେଇଥିବା ପତ୍ର

Editor,
The Statesman,
Calcutta-1.

Mansinha Lane
Cuttack-1
23-1-1969

Sir,

This has reference to the two feature sories entitled "Language Controversy and Calcutta Madrassa" and "the Bauls Mela at Kenduli" which appeared in The Statesman of January 20/21.

The south-western portions of West Bengal came under the administration of Calcutta only after Clive's acquisition of the Dewani of Bengal, Bihar and Orissa. Traditionally as well as historically, Orissa extended from the Ganga in the north to the Godavari in the south. In the 19th century memories of the link with Orissa had not died out on the banks of the Ganga. The Census returns for 1891 show that there were 572, 798 Oriya speakers in the Midnapore district.

Interestingly enough, your feature on the Calcutta Madrassa tells us that Warren Hastings had purchased land for the institution at Boita Connah. Boita Connah is a pure Oriya expression, meaning quayside. Boita ( from Sankrit Bahitra ) means a ship and connah (kona) means corner, the literal meaning of Boita Connah being ship corner. Probably Boita Connah was later transformed into Baithak-khana.

It is difficult to understand that a place which boasted of a Baithak-khana or assembly hall ( presumably forming part of a palace ) was found uncongenial for the Madrassa which had to be shifted elsewhere. Hastings himself was acquainted with several Asiatic languages and the Britishers at that time were not so ignorant of the local language as to record Baithak-khana as Boita Connah.

The other feature story gives an account of a mela at Kenduli village in the Birbhum district of West Bengal and calls it the birth place of poet Jayadeva.

One wonders what relationship there is between the Buddhist-Tantric Bauls and the Vaisnava author of Gita Govinda, if this annual gathering of the mystic minstrels is adduced as an agrument to prove the poet's birth at Kenduli in the Birbhum district. That Jayadeva who flourished in the 12th century worshipped at the Radhagovinda temple which does not seem to be more than 300 years old, is the height of wishful thinking.

On the other hand, Kenduli village in tne Puri district of Orissa has a better claim to be the birth-place of Jayadeva, for it is still a strong centre of Brahmanism with temples and other monuments of the 11th and 12th centuries and the Gita Govinda ( not the Baul songs ) is still recited daily in the local Sakti temple.

National integration demands that we state only proven facts arrived at through co-ordinated objective discussions rather than by unilateral projections.

Yours faithfully

M. Mansinha.

## ( ଓଡ଼ିଆ ଅନୁବାଦ )

ଷ୍ଟେଟ୍‌ସମାନର ସଂପାଦକ — ମାନସିଂ ଲେନ

ମହୋଦୟେଷୁ, — କଟକ-୧

୨୩ । ୧ । ୧୯୬୯

ଷ୍ଟେଟସ୍‌ମାନର ଜାନୁୟାରୀ ୨୦-୨୧ର ସଂସ୍କରଣରେ ପ୍ରକାଶିତ ହୋଇଥିବା ଦୁଇଟି ଲେଖା ଉପରେ ମୋ ଏହି ପତ୍ର । ଲେଖା ଦୁଇଟି ହେଲା, "ଭାଷାଗତ ବାଦାନୁବାଦ" ଓ କଲିକତା ମାଡ୍ରାସ" ଏବଂ "କେନ୍ଦୁଲିରେ ବାଉଲ୍‌ମାନଙ୍କର ମେଳା"

ଲର୍ଡ଼ କ୍ଲାଇଭ୍ ମୋଗଲ ସମ୍ରାଟଙ୍କଠାରୁ ବଙ୍ଗ-ବିହାର-ଓଡ଼ିଶାର ଦେବାନୀ, ଅର୍ଥାତ୍ ଖଜଣା-ଆଦାୟ ଦାୟିତ୍ୱ ନେବାପରେ ହିଁ; ପଶ୍ଚିମ-ବଙ୍ଗର ଦକ୍ଷିଣ-ପଶ୍ଚିମ—ଜିଲ୍ଲାଗୁଡ଼ିକ କଲିକତାର ପ୍ରତ୍ୟକ୍ଷ ଶାସନାଧୀନ ହେଲେ । ଐତିହ୍ୟ ଓ ଇତିହାସ, ଉଭୟ ଅନୁସାରେ, ଓଡ଼ିଶା ରାଜ୍ୟ ଦକ୍ଷିଣରେ ଗୋଦାବରୀଠାରୁ ଉତ୍ତରରେ ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଊନବିଂଶ ଶତାବ୍ଦୀରେ ମଧ୍ୟ ଗଙ୍ଗାର ତଟ ଦେଶରୁ, ଓଡ଼ିଶାର ସ୍ମୃତି ଏକାବେଳେକେ ଉଭେଇ ଯାଇ ନଥିଲା । କାରଣ, ୧୮୯୧ ଖ୍ରୀ ଅ: ର ଜନ-ସୁମାରି ଅନୁସାରେ କେବଳ ମେଦିନୀପୁର ଜିଲ୍ଲାରେ ହିଁ ଓଡ଼ିଆଙ୍କ ସଂଖ୍ୟା ଥିଲା-୫, ୨୨, ୨୯୮ ଏବଂ ଅତ୍ୟନ୍ତ କୌତୁହଳର ବିଷୟ ଏହି ଯେ, ଆପଣଙ୍କର କଲିକତା-ମାଡ୍ରାସ ଉପରେ-ଲେଖା ପ୍ରବନ୍ଧଟି ମଧ୍ୟ ଗଙ୍ଗାତଟର ଏହି ଓଡ଼ିଶୀ ସଂପର୍କ ପ୍ରମାଣିତ କରୁଛି । ଏହି ପ୍ରବନ୍ଧ କହେ ଯେ, ଓ୍ୱାରେନ୍ ହେଷ୍ଟିଂସ୍ କଲିକତା-ମାଡ୍ରାସା ସ୍ଥାପନ ପାଇଁ କଲିକତାର ଏକ ଜାଗାରେ ଜମି କିଣିଲେ, ଯାହାର ନାମ ଥିଲା, 'ବୋଇତ-କୋଣ' । 'ବୋଇତ-କୋଣ' ଏକ ପୁରାପୁରି ଓଡ଼ିଆ କଥା ।

ଓଡ଼ିଆ 'ବୋଇଲ ଶବ୍ଦ ସଂସ୍କୃତ 'ବଲ୍ମୀକ' ଶବ୍ଦରୁ ଆସିଛି, ଏବଂ 'ବୋଇତ-କୋଣ' ହେଉଛି, ବଙ୍ଗଳାଭାଷୀଙ୍କ ଲୋକଭାଷା। ଆପଣ ଏବର 'କଲ୍‌ଠଖ୍‌-ଖାନା ଘୋଡ଼'କୁ ଓ୍ୱାରେନ୍‌ ହେଷ୍ଟିଂଙ୍କ ରେକର୍ଡ, ଭୁଲରେ, "ବୋଇତ କୋଣ" ବୋଲି ଲେଖିଥିବାର ବ୍ୟଞ୍ଜନା ଦେଇଛନ୍ତି। କିନ୍ତୁ ବସ୍ତୁତଃ 'ବୋଇତକୋଣ' ହିଁ ପରେ ଲୋକମୁଖରେ "ବୈଠକ୍‌-ଖାନା" ହୋଇଥିବାର ଯଥେଷ୍ଟ ସମ୍ଭାବନା। ହେଷ୍ଟିଂସ୍‌ ଯେଉଁଠି ମାଦ୍ରାସା ପ୍ରଥମେ ଠିଆ କରାଇଲେ, ସେଠି ଯଦି ଏକ ସୁନ୍ଦର ପ୍ରାସାଦ ଓ ତାର ଅଂଶ ସ୍ୱରୂପ ଏକ ପ୍ରସିଦ୍ଧ 'ବୈଠକ୍‌ଖାନା' ଥିଲା, ତେବେ ହେଷ୍ଟିଂସ ସେପରି ଜାଗାକୁ ମାଦ୍ରାସା ପାଇଁ ଅବାଞ୍ଛନୀୟ ଭାବି, ତାକୁ ଅନ୍ୟ ସ୍ଥାନକୁ ନେଲେ କାହିଁକି ? ପୁଣି ହେଷ୍ଟିଂସ୍‌ ନିଜେ ବହୁ ଏସୀୟ-ଭାଷାରେ ସୁପଣ୍ଡିତ ଥିଲେ। ସେ କିପରି "ବୈଠକ-ଖାନା"କୁ ଭୁଲ୍‌ରେ "ବୋଇତ କୋଣ" ଲେଖନ୍ତେ ? *

ଆପଣଙ୍କର ଦ୍ୱିତୀୟ ପତ୍ରରେ ବର୍ଣ୍ଣନା କରିଛନ୍ତି ବୀରଭୂମ୍‌ ଜିଲ୍ଲାର କେନ୍ଦୁଲି ଗ୍ରାମରେ ହେଉଥିବା ବାର୍ଷିକ ବାଉଲ୍‌—ମେଳା ଏବଂ ସେହି ସୂତ୍ରରେ ପ୍ରମାଣିତ କରିବାକୁ ଯାଉଛନ୍ତି ଯେ, ଏହି କେନ୍ଦୁଲି ଗ୍ରାମ, କବି ଜୟଦେବଙ୍କ ଜନ୍ମସ୍ଥାନ। ବାଉଲ୍‌ମାନେ ବୌଦ୍ଧ-ତନ୍ତ୍ର-ସାଧନାର ଗୋଷ୍ଠୀ। ଗୀତଗୋବିନ୍ଦର ଲେଖକ ସମ୍ପୂର୍ଣ୍ଣ ବୈଷ୍ଣବ। ତେଣୁ ବାଉଲ୍‌-ମେଳା କେନ୍ଦୁଲି ଜୟଦେବଙ୍କ ଜନ୍ମସ୍ଥାନ ବୋଲି କିପରି ପ୍ରମାଣିତ କରୁଛନ୍ତି ଭାବିଲେ ଆମକୁ ଟିକିଏ ବିସ୍ମିତ ହେବାକୁ ପଡ଼ୁଛି। ପୁଣି ଜୟଦେବ ଦ୍ୱାଦଶ ଶତାବ୍ଦୀର, ଅର୍ଥାତ୍‌ ଆଜିକି ୮ଶ ବର୍ଷ ତଳର ଲୋକ ବୋଲି ଧରାଯାଉଛି। ଆପଣଙ୍କ କାଗଜରେ ଏକ ରାଧାଗୋବିନ୍ଦ ମନ୍ଦିରର ଫଟୋ ପ୍ରକାଶିତ କରି କୁହାଯାଇଛି ଯେ, ଜୟଦେବ ଏହି ମନ୍ଦିରରେ ହିଁ ପ୍ରତ୍ୟହ ରାଧାଗୋବିନ୍ଦଙ୍କୁ ପୂଜା-ପ୍ରାର୍ଥନା କରୁଥିଲେ। କିନ୍ତୁ ଏ ମନ୍ଦିରର ଟେରାକୋଟା ନିଶ୍ଚିତ ପ୍ରମାଣ କରେ ଯେ, ଏହା କେବେ-ହେଲେ ୩ଶ ବର୍ଷରୁ ସେ ପାଖ ନୁହେଁ। ତେଣୁ ୮ଶ ବର୍ଷ ତଳର ଜୟଦେବ ଏଠି ପ୍ରତ୍ୟହ ପୂଜା ପ୍ରାର୍ଥନା କରୁଥିଲେ ବୋଲି କହିବା କେବଳ ଅଭିଳଷିତ ଚିନ୍ତା ଛଡ଼ା ଆଉ କିଛି ନୋହିପାରେ !

ଅନ୍ୟ ପକ୍ଷରେ ଜୟଦେବଙ୍କ ଜନ୍ମସ୍ଥାନ ଭାବରେ ପୁରୀଜିଲ୍ଲାର କେନ୍ଦୁଲି ଗ୍ରାମର ଦାବୀ ଅଧିକ ସଙ୍ଗତ। କାରଣ ଏହା ଏବେ ବି ବ୍ରାହ୍ମଣ୍ୟ-ସଂସ୍କୃତିର ଏକ ମୁଖ୍ୟ-କେନ୍ଦ୍ର। ଏଠାରେ ଏପର୍ଯ୍ୟନ୍ତ ଏକାଦଶ ଓ ଦ୍ୱାଦଶ ଶତାବ୍ଦୀର ବହୁ ମନ୍ଦିର ଓ ସ୍ଥାପତ୍ୟ-ଶିଳ୍ପ ଦେଖିବାକୁ ମିଳେ ଏବଂ ଏହାର ଏକ ଶକ୍ତି-ପୀଠରେ ମଧ୍ୟ ଏବେ ବି 'ବାଉଲ୍‌-ଗାନ୍‌' ନୁହେଁ, ସ୍ୱରମତ "ଗୀତ-ଗୋବିନ୍ଦ" ହିଁ ଦୈନନ୍ଦିନ ପାରାୟଣ କରାଯାଇଥାଏ।

ଆମେ ବି ସମଗ୍ର ଭାରତର ଜାତୀୟ ଐକ୍ୟ ଓ ସଂହତି ଚାହୁଁ। ସେଥିପାଇଁ ପରସ୍ପର ଭିତରେ ଥିବା ବିବାଦୀୟ ବିଷୟ ଗୁଡ଼ିକର ଏକାଠି ବସି ବୈଜ୍ଞାନିକ ଭିତ୍ତିରେ ଆଲୋଚନା ଓ ସେହି ପନ୍ଥାରେ ଆସିବା ସିଦ୍ଧାନ୍ତକୁ ହିଁ ଉଭୟ ପକ୍ଷ ଗ୍ରହଣ କରିବା ଉଚିତ। ନିଜର ଆତ୍ମ-ଗରିମା ବଢ଼ାଇବା ପାଇଁ ନିଜ କଳ୍ପନାନୁ-ଯାୟୀ ତତ୍ତ୍ୱ ଠିଆ କରେଇବା ବା ସେ ପ୍ରକାର ପ୍ରଚାର ନେଇ, ଜାତୀୟ ସଂହତିର ଆଶା ବୋଧହୁଏ ବେଶୀ ନୁହେଁ।

|| ଇତି ||

ମାୟାଧର ମାନସିଂହ

---

*"ବୋଇତକୋଣ"ରୁ ହେଷ୍ଟିଂସ୍‌ ମାଦ୍ରାସାକୁ କଲିକତାର ଯେଉଁ ନୂଆ ଜାଗାକୁ ସ୍ଥାନାନ୍ତରିତ କଲେ, ତାର ନାମ ପୁଣି "କଲିଙ୍ଗ" ! ଏହା ଷ୍ଟେଟ୍‌ସମ୍ୟାନର ସମ୍ପୃକ୍ତ ପ୍ରବନ୍ଧରେ ଲେଖାଅଛି। କିନ୍ତୁ ଦୁଃଖର ବିଷୟ ଆମ ପତ୍ରରେ ତାହା କହିବାକୁ ଆମେ ଭୁଲି ଯାଇଥିଲୁ।

——*——

# ।। ଓଡ଼ିଶାର ଆଦିବାସୀ ସଂସ୍କୃତି ।।

ଉପେନ୍ଦ୍ର ମିଶ୍ର

ଆଦିବାସୀମାନେ କେବଳ ଓଡ଼ିଶାର ଆଦିମ ଅଧିବାସୀ ନୁହନ୍ତି, ସମଗ୍ର ଭାରତର ଆଦିମ ଅଧିବାସୀ। ଏଇମାନଙ୍କ ସଂସ୍କୃତି ହିଁ ଭାରତର ଅମୂଲ ମୌଳିକ ସଂସ୍କୃତି ବୋଲି କୁହାଯାଇପାରେ ।

ଓଡ଼ିଶାରେ ଯେତେ ଜାତିର ଆଦିବାସୀ ଦେଖାଯାଆନ୍ତି ସେମାନଙ୍କ ମଧ୍ୟରେ ଶବର (ଶଉରା), କନ୍ଧ, କୋହ୍ଲ, ଭୂୟାଁ, ବାଥୁଡ଼ି, ଝଡ଼ିଆ, ସାନ୍ତାଳ, ମୁଣ୍ଡା, କୋୟା ଇତ୍ୟାଦି ପ୍ରଧାନ । ଏହିସବୁ ଆଦିବାସୀଙ୍କ ମଧ୍ୟରେ ଶବର ବା ଶଉରା ସମ୍ପ୍ରଦାୟ ଅତୀବ ପୁରାତନ ବୋଲି ଐତିହାସିକମାନେ ସ୍ଥିର କରିଛନ୍ତି । ବର୍ତ୍ତମାନ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ବାସ କରୁଥିବା ଶଉରାମାନେ ଏମାନଙ୍କର ବଂଶଧର । ଏ ସଂପର୍କରେ G. V. Rammurtyଙ୍କ ଦ୍ୱାରା ରଚିତ ଶଉରା ଇଂରାଜୀ ଡିକ୍‌ସିନାରୀର ମୁଖବନ୍ଧ ଦ୍ରଷ୍ଟବ୍ୟ ।

ସମାଲୋଚକମାନେ କହନ୍ତି ଯେ, ଭାରତର ଆଦିମ ଇତିହାସ ଏହି ଶଉରାମାନଙ୍କର ଇତିହାସ । ଟାଇଗ୍ରେସ, ୟୁଫ୍ରେଟିସ୍‌ଠାରୁ ଦକ୍ଷିଣ ଗୃଲ୍‌ଡ଼ିଆରେ ଥିବା ସୁଦୂର ସୁମେରୀୟ ଗୋଷ୍ଠୀ ଓ ସିଂହଳର ବ୍ୟାଧ ଗୋଷ୍ଠୀଙ୍କ ସହିତ ଶଉରାମାନଙ୍କର ସଂପର୍କ ଥିଲା । ଗ୍ରୀକ୍ ପଣ୍ଡିତ ପ୍ଲିନି ଏହାଙ୍କୁ 'ସୁଆରି', ଟଲେମି ସାହେବ ଏହି ଜାତିକୁ ଶବରାଇ ଜାତି ବୋଲି ଅଭିହିତ କରିଛନ୍ତି । ଆମର ଆଦିମ ଗ୍ରନ୍ଥ ଋଗ୍‌ବେଦରେ ଏ ଜାତିର ନାମ ଶବର ବୋଲି ରହିଛି । ସେହିପରି ଐତରେୟ ବ୍ରାହ୍ମଣରେ ଶବର ଜାତିର ନାମୋଲ୍ଲେଖ ଦେଖିବାକୁ ମିଳେ ଓ ରାମାୟଣର ଗୁହ ଶବର, ମହାଭାରତର ଜରାଶବର କଥା ନ ଜାଣେ କିଏ ?

ତେଣୁ ଓଡ଼ିଶାର ଆଦିବାସୀ ବା ଶବର ଜାତି ଏ ଜାତିର ପ୍ରାଥମିକ ଇତିହାସର ଉତ୍ସ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏମାନେ ପଶୁ-ପକ୍ଷୀ ଶୀକାର କରି ଜୀବିକା ଅର୍ଜନ କରୁଥିଲେ । ଏମାନଙ୍କର ଜୀବନ ଥିଲା ସରଳ ଓ ନିରାଡ଼ମ୍ବର । ଦାରୁ ଦେବତାର ଲେଖକ ଡକ୍ଟର ବେଣୀମାଧବ ପାଢ଼ୀ ମତ ଦିଅନ୍ତି ଯେ—"ଏମାନେ ଘୋର ଅରଣ୍ୟରେ କାଷ୍ଠ ସଂଘର୍ଷରୁ ଜାତ ଅଗ୍ନି ଦେଖି ବିସ୍ମୟରେ ଅଭିଭୂତ ହୋଇ ପଡ଼ୁଥିଲେ ଓ ତାକୁ ଅଲୌକିକ ଶକ୍ତି ସଂପନ୍ନ ଦେବତାର କର୍ମ ବୋଲି ଭୟ କରୁଥିଲେ । ଏହି ବାଦଶୂନ୍ୟ ବାତାବରଣରେ ଜଙ୍ଗଲ ମଧ୍ୟସ୍ଥିତ ଦ୍ରୁମ ବିଶେଷକୁ ଏକ କଲ୍ୟାଣମୟ ଶକ୍ତି ବୋଲି ଭୀତି ମିଶ୍ରିତ ଭକ୍ତି କରି ଆସୁଥିଲେ । ଏହା ଜୀବୋପାସନା ପୂର୍ବର ଦେବଧାରଣା ବୋଲି ପଣ୍ଡିତମାନେ ମତ ଦିଅନ୍ତି ।" Encyclopaedia Britarica ପୁସ୍ତକରେ ଏ ମତକୁ ସ୍ୱୀକାର କରାଯାଇଛି । ଏଣୁ ଏହି ହେଉଛି ବୃକ୍ଷ ଓ ଦାରୁ ପୂଜାର ପ୍ରାଥମିକ ପ୍ରୟାସ । ବୃକ୍ଷ ନିର୍ବିବାଦରେ ଅଗ୍ନି ଓ ଗୁପ୍ତ

ପ୍ରଦାନ କରୁଥିବା ହେତୁ ତାକୁ ଶବରମାନେ ବଡ଼ ଭଲ ପୂଜା କରୁଥିଲେ ।

ଏହି ଦାରୁ ପୂଜକ ଶବର ସମ୍ପ୍ରଦାୟ ହିଁ ଆମ ଜଗନ୍ନାଥ ସଂସ୍କୃତିର ମୂଳ ଆଧାର । ଦେବ ଦେବ ଜଗନ୍ନାଥ ଦାରୁରୁ ନିର୍ମିତ ବୋଲି ସମସ୍ତେ ଜାଣନ୍ତି । ତେଣୁ ଶବର ସଂପ୍ରଦାୟର ମୌଳିକତାରେ ଆଉ ସନ୍ଦେହ ନାହିଁ ।

ଦାରୁ ଶବ୍ଦଟି ଗୋଟିଏ ଅର୍ବାଚୀନ ଶବ୍ଦ ନୁହେଁ । ଋଗ ବେଦରେ ଅଛି—

"ଆଦୋ ଯଦ୍ଦାରୁ ପ୍ଲବତେ
ସିନ୍ଧୋଃ ପାରେ ଅପୁରୁଷମ୍
ତଦାରଭସ୍ୱ ଦୁର୍ହଣୋ
ତେନ ଗଚ୍ଛ ପରସ୍ତରମ୍" (୨୯)

ସେହିପରି କପିଳ ସଂହିତାରେ ଅଛି—

କ୍ଷେତ୍ରଂ ନୀଳାଚଳଂ ପୁଣ୍ୟଂ ଦାରୁବ୍ରହ୍ମ ସ୍ୱରୂପିଣଃ

ସ୍କନ୍ଦ ପୁରାଣରେ ଏହି ଦାରୁ ମୂର୍ତ୍ତିର ବର୍ଣ୍ଣନାରେ ଲେଖାଅଛି ଯେ—ଅହୋ ଭବାୟଂ ଖଳୁ ଭାଗ୍ୟରାଶି—
ଯେନାବତୀର୍ଣ୍ଣ ଭୁବି ଦାରୁ ମୂର୍ତ୍ତିଃ ।

ଶାରଳା ମହାଭାରତରେ ଏହି ଦାରୁ ମୂର୍ତ୍ତିର ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ଶବରୀ ଚନ୍ଦନବନ ଭିତରେ ବିପ୍ରଙ୍କୁ ଅନ୍ଧପୁଟୁଳି ବାନ୍ଧି ନେଇ ଦାରୁ ବ୍ରହ୍ମଙ୍କୁ ଦେଖାଇବା ପରେ ସେ ଯାଇ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଆଗରେ କହିଲେ—

ଦାରୁବ୍ରହ୍ମ ମୂରତି ମୁଁ ଦେଖିଲି ବୋଲିବ
ଯମନକ ବଚନ ଏବେ ଖଳନ୍ତୁ ହେ ଦେବ ।

ତେଣୁ ଦାରୁବ୍ରହ୍ମର ଐତିହାସିକତା ସଂପର୍କରେ ସନ୍ଦେହ କରିବାର କାରଣ ନାହିଁ । ଅବଶ୍ୟ କେତେକ ପଣ୍ଡିତ ମତ ଦିଅନ୍ତି ଯେ—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧ ମତବାଦର ଦେବତା । କାରଣ ବୌଦ୍ଧ ଶାସ୍ତ୍ରରେ ଜଗନ୍ନାଥଙ୍କ ନାମୋଲ୍ଲେଖ ରହିଛି ଓ ଏପରି କି ଗୋଟିଏ ବୌଦ୍ଧମୂର୍ତ୍ତି ତଳେ ଜଗନ୍ନାଥ ବୋଲି ଲିଖିତ ହୋଇଅଛି ।

କିନ୍ତୁ ଗବେଷଣାରୁ ଜଣାଯାଏ ଯେ ଏହା ଠିକ୍ ନୁହେଁ । ଅପର ପକ୍ଷରେ ଜୈନ ଧର୍ମରେ 'ବରଂ ନାଥ ଦେବ' ଅଧିକ ପ୍ରଚଳନ ରହିଛି । ଜଗନ୍ନାଥ ବୌଦ୍ଧ ବା ଜୈନ ଦେବତା ନୁହଁନ୍ତି । ଆଦିବାସୀ ସଂସ୍କୃତିରୁ ସୃଷ୍ଟ ଓ ବ୍ରାହ୍ମଣ୍ୟ ଧର୍ମରେ ପରିପୁଷ୍ଟ ଦେବତା । ଏ ଦାରୁ କେବଳ ବୃକ୍ଷ ଉପାସନା ଓ ବୃକ୍ଷର ସମ୍ବନ୍ଧିତ ଗୁଣରୁ ହିଁ ଜନ୍ମ ନେଇ ବଡ଼ ରୂପେ ଆଜି ବଡ଼ଦେଉଳରେ ପୂଜିତ । ତେଣୁ ଜଗନ୍ନାଥ ଆଦିବାସୀ ତଥା ଶବର ଦେବତା ବୋଲି ଦୁଃଖିତ ହେବାରେ କୌଣସି ବାଧା ନାହିଁ ।

ଆଜି ମଧ୍ୟ ଓଡ଼ିଶାର ବଣ-ପାହାଡ଼ ଅଞ୍ଚଳରେ ବୃକ୍ଷ ଦେବତା ପୂଜିତ । ସିନ୍ଦୁର-ହରିଦ୍ରା ବୋଳି ଆଦିବାସୀମାନେ ଏକତ୍ରିତ ହୋଇ ବୃକ୍ଷ ଦେବତାର ପୂଜା ସଂପନ୍ନ କରି ଥାଆନ୍ତି । କେବଳ ଦାରୁ ନୁହେଁ···ଆଦିବାସୀମାନେ ରଥକୁ ମଧ୍ୟ ପୂଜା କରୁଥିବାର ଦେଖାଯାଏ । ବସନ୍ତ ଉତ୍ସବ ସମୟରେ ଏମାନେ ଛୋଟ ଛୋଟ ରଥକରି ପୂଜା କରି ଥାଆନ୍ତି ।

ତେବେ ସେ ଯାହାହେଉ—ରଥଯାତ୍ରା ମଧ୍ୟ ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରେଷ୍ଠ ଯାତ୍ରା ବା ପର୍ବ । ଏ ପର୍ବ କେବଳ ଓଡ଼ିଶା ବା ଭାରତ କାହିଁକି ସମଗ୍ର ପୃଥିବୀରେ ଅଦ୍ୱିତୀୟ କହିଲେ ଠିକ୍ ହେବ । ପୁରୀର ରଥଯାତ୍ରା ନଅଦିନ ହୋଇଥାଏ । ବଡ଼ଦେଉଳରୁ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ତିନି ରଥରେ ବସାଇ ଗୁଣ୍ଡିଚା ଘରକୁ ନେଇ ସେଠାରୁ ପୁଣି ଏକ ସପ୍ତାହ ପରେ ସେହି ରଥରେ ସେମାନଙ୍କୁ ଫେରାଇ ଅଣାଯାଏ । ଏହି ଯାତ୍ରା ହିଁ ମହାନ୍ ରଥଯାତ୍ରା ଭାବରେ କେଉଁ ଆଦିମ ଯୁଗରୁ ହୋଇଅଛି । ଗୁଣ୍ଡିଚା ମଣ୍ଡପ, ମହାଦେବୀ, ଯଜ୍ଞ ମଣ୍ଡପ, ଜନ୍ମସ୍ଥାନ, କନକପୁରୀ ଭାବରେ ମଧ୍ୟ କଥିତ । ଇନ୍ଦ୍ରଦ୍ୟୁମ୍ନ ରାଜା ଏଠାରେ ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ପ୍ରବାଦ ରହିଛି ।

ଗୁଣ୍ଡିଚ୍ଚ ମଣ୍ଡପଂ ନାମ ଯାତ୍ରାହମ ଜନଂ ପୁର ।
ଅଶ୍ୱମେଧ ସହସ୍ରସ୍ୟ ମହାବେଦୀ ତଦାଭବତ୍ ।

ଏହି ଗୁଣ୍ଡିଚ୍ଚ ମଣ୍ଡପକୁ ତିନି ଠାକୁର ତିନୋଟି ରଥରେ ଆଗମନ କରିଥାଆନ୍ତି । ବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ, ସୁଭଦ୍ରାଙ୍କ ରଥର ନାମ ଦେବଦଳନ ଓ ଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ, ରଥରେ ଠାକୁର ବିଜେ କରିଥିବା ସମୟରେ ହଜାର ହଜାର ନରନାରୀ ଏକତ୍ରିତ ହୋଇ ଜଗନ୍ନାଥ, ବଳଭଦ୍ରସୁଭଦ୍ରାଙ୍କର . ଏ ବିଜୟ ଯାତ୍ରା ଦର୍ଶନ କରିଥାଆନ୍ତି ।

ଦାରୁ ନିର୍ମିତ ଜଗନ୍ନାଥ ମୂର୍ତ୍ତି କାଳକ୍ରମେ ନଷ୍ଟ ହୋଇଯିବା ସ୍ୱାଭାବିକ୍ । ତେଣୁ ଜଗନ୍ନାଥଙ୍କ ନିତ୍ୟ, କର୍ମ, ମାନ୍ତ ମଧ୍ୟରେ ନବକଳେବର ଏକ ଚମକପ୍ରଦ ଅନୁଷ୍ଠାନ । କିନ୍ତୁ ନବକଳେବର ସଂପର୍କରେ କୁତ୍ରାପି ସବିଶେଷ ବିବରଣୀ ମିଳେନାହିଁ । କାରଣ ଏଇଟି ଠାକୁରଙ୍କର ଗୁପ୍ତ ଅନୁଷ୍ଠାନ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଯେଉଁବର୍ଷ ଦୁଇଟି ଆଷାଢ଼ ପଡ଼େ—ସେହିବର୍ଷ ନବକଳେବର ଉତ୍ସବ ଅନୁଷ୍ଠିତ ହୋଇଥାଏ । କାରଣଦୁଇଟି ଆଷାଢ଼ ନ ହେଲେ ନୂତନ ବିଗ୍ରହ ନିର୍ମାଣ ପାଇଁ ସମୟ ମିଳିବ ନାହିଁ ।

ନବକଳେବର ଦୁଇ ପ୍ରକାର । ପ୍ରଥମତଃ ନବ-କଳେବର ବା ବିଗ୍ରହ ପରିବର୍ତ୍ତନ ଓ ଶ୍ରୀଅଙ୍ଗ ଫିଟା ।

ନବକଳେବର ହେବା ନିଶ୍ଚିତ ହେଲେ ଚୈତ୍ର ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶୁଭଦିନ ମଧ୍ୟରେ ଶୁଭଦିନ ନିର୍ଘଣ୍ଟ କରାଯାଏ । ଦେଉଳ କରଣ ଦୈବଜ୍ଞ ଖୁରୀନାୟକ ଏ ଦିନ ନିର୍ଦ୍ଧାରଣ କରନ୍ତି ।

ନବକଳେବର ପୁସ୍ତକର ଲେଖକ ଶ୍ରୀ ଅନିରୁଦ୍ଧ ଦାଶ ଆଇ. ଏ.ଏସ. କହନ୍ତି ଯେ—"ଦିନ ନିର୍ଦ୍ଧାରିତ ହେଲେ, ସେଦିନ ଜଗନ୍ନାଥଙ୍କର ଶିରୋପା ଯାତ୍ରାବାସୀ ଦଳଙ୍କ ସଂଖ୍ୟା ଅନୁସାରେ ଗୃଙ୍ଗଡ଼ାମେକାପ ରଖି ଯାଆନ୍ତି × × ସେତେବେଳେ କଳାହାଟ ଦ୍ୱାରରେ ଦାରୁଯାତ୍ରୀ ଦଇତାପତିମାନେ ଠିଆ ହୋଇଥାନ୍ତି । ଭିତରଛ ମହାପାତ୍ର ଓ ଦେଉଳ କରଣଙ୍କ ଉପସ୍ଥିତିରେ ସ୍ୱରବାଡ଼ି ଅର୍ଥାତ୍ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ନିମନ୍ତେ ଦଇତାପତିମାନଙ୍କୁ ସ୍ୱର ଭାଗରେ ବିଭକ୍ତ କରି ଦିଅନ୍ତି । ଦଇତାପତିମାନେ କାକଟପୁର ମଙ୍ଗଳାଙ୍କ ଜଗମୋହନରେ ଧାରଣା ପଡ଼ନ୍ତି । ସେମାନଙ୍କ ମଧ୍ୟରୁ ବଡ଼ ଦଇତାମାନଙ୍କୁ ଦେବୀ ସ୍ୱପ୍ନାବେଶରେ ଦାରୁମାନଙ୍କର ସ୍ଥାନ ବତାଇ ଦିଅନ୍ତି ।

ଏହିପରି ଯୁଗ ଯୁଗ ଧରି ଜଗନ୍ନାଥ ନବକଳେବର ପର୍ବ ପାଳିତ ହୋଇ ଆସୁଛି । ବିଂଶ ଶତାବ୍ଦୀରେ ବିଜ୍ଞାନ ଉଚ୍ଚତର ଆସନରେ ଆସୀନ ହୋଇଛି । ଏପରି କି ସେହି ଏକାଦଶ ରଥଯାତ୍ରା ଦିବସ ୧୬ତାରିଖରେ ଆମେରିକା ଚନ୍ଦ୍ର ଅଭିମୁଖେ ମଣିଷ ପଠାଇଛି । ତଥାପି ସେହି ପୁରାତନ ଦାରୁବ୍ରହ୍ମ ଜଗନ୍ନାଥ ଓଡ଼ିଶାର ମାଟି ପାଣିରେ ରହିଛନ୍ତି—ଜଗନ୍ନାଥ ହୋଇ । ଆଜି ମଧ୍ୟ ଶବରମାନଙ୍କର କର୍ତ୍ତୃତ୍ୱ ଜଗନ୍ନାଥଙ୍କ ସେବା ପୂଜାରୁ ବାଦ୍ ପଡ଼ିନାହିଁ । ଶବରଙ୍କ ଇଷ୍ଟଦେବତା ଜଗନ୍ନାଥ ସିନ୍ଧୁ ଖାଡ଼ିରେ ବିରାଜିତ ହୋଇଛନ୍ତି ପତିତପାବନ ହୋଇ ସମଗ୍ର ମାନବ ଜାତିର ଦୁଃଖ, ଦାରିଦ୍ର୍ୟ ଲୋପ କରିବା ଲାଗି ।

କବି ଠିକ କହିଛନ୍ତି—

ଜଗନ୍ନାଥ ଯେ ଷୋଳ କଳା
ତହୁଁ କଳାଏ ନନ୍ଦ ବଳା ।

ବାସ୍ତବିକ୍ ଜଗନ୍ନାଥ ପୂର୍ଣ୍ଣ ବ୍ରହ୍ମ । ସେ ଅବତାରୀ, ଅବତାର ନୁହଁନ୍ତି । ତାଙ୍କର ସଂସ୍କୃତି ହିଁ ଆମ ଜାତିର ସଂସ୍କୃତି । ତେଣୁ ଜଗନ୍ନାଥ ଯେପରି ଆମର ପୂଜ୍ୟ, ଶବର ବା ଆଦିବାସୀମାନେ ମଧ୍ୟ ସେହିପରି ଆମର ପୂଜ୍ୟ । ତାଙ୍କର ଇତିହାସ ହିଁ ଆମର ଇତିହାସ ।

---



ସୁପ୍ରତିଷ୍ଠିତ ସାହିତ୍ୟିକ, ଶିଶୁସାହିତ୍ୟ ସ୍ରଷ୍ଟା, ଦୈନିକ ସମ୍ବାଦପତ୍ର 'ମାତୃଭୂମି'ର ପ୍ରତିଷ୍ଠାତା ୰ ବାଳକୃଷ୍ଣ କରଙ୍କ ତା ୨୨-୮-୭୯ରିଖ ଶ୍ରାଦ୍ଧ ବାର୍ଷିକୀ ଉପଲକ୍ଷେ 'ବନଫୁଲ'ର ବିନମ୍ର ଶ୍ରଦ୍ଧାଞ୍ଜଳି ।

ସମ୍ପାଦକ—**'ବନଫୁଲ'**

# ତୁମକୁ ଏ ଜାତି ଆଜି ପୁଣି ଖୋଜେ......

**—ଶ୍ରୀ କ୍ଷିରୋଦଚନ୍ଦ୍ର ପୋଥାଲ**

( ୧ )

**କା**ହିଁ କେଉଁଆଡ଼େ ଗଲ ତୁମେ ହଜି,
ଅହରହ ଆମେ ତୁମ କଥା ହେଜି;
ମନେ ମନେ କେତେ ହେଉଅଛୁଁ ଖୋଜି,
ତୁମେ କି ନ ବୁଝ ଆମକଥା ଆଜି ?

( ୨ )

ପରତେ ନ ହୁଏ 'ତୁମେ ନାହିଁ' ବୋଲି
ତୁମର ରୂପଟି ବସିଯାଏ ଖୋଲି;
କୋଟିଏ ରୂପରେ ଯାଇଅଛ ସିନା,
କୋଟିଏ ରୂପରେ ଆସ ପୁଣି ଚଳି !

( ୩ )

'ସତୀଚଉରା'ରେ ତୁମର ସମାଧି,
ସେ 'ସ୍ମୃତି'ଟି ଧରି ରଖିଛୁ ଅବଧି;
ସକଳ ସାଧନା କରିବାକୁ ସିଦ୍ଧି—
ଏ ଜାତିକୁ ତୁମେ ଦିଅ ସଦ୍‌ବୁଦ୍ଧି ।

( ୪ )

ସାରସ୍ୱତ-ପୀଠ-'ସହକାର' କୁଂଜେ,
'ଜହ୍ନମାମୁଁ' ସତେ ଉଇଁବ କି ସଂଜେ ?
ମାତୃଭୂମିର ଅରଚନା ଲାଗି—
ତୁମକୁ ଏ ଜାତି ଆଜି ପୁଣି ଖୋଜେ !!






ଆଦିବାସୀ ଭାଇ-ଭଉଣୀମାନଙ୍କୁ ଅନୁରୋଧ ହଳଦୀ, ସୋରିଷ, ମହୁ ଇତ୍ୟାଦି ବଦଳାଇବାବେଳେ ନିକିତି, ବଟିକରା ଓ ଲିଟରଗୁଡ଼ିକରେ ଓଜନ ମାପ ବିଭାଗର ମୋହର ଦେଖି ନିଅନ୍ତୁ ।

ସୁଲଭ ମୂଲ୍ୟ ଦୋକାନଗୁଡ଼ିକରେ ବ୍ୟବହୃତ ହେଉଥିବା ନିକିତି, ବଟିକରା ଓ ଲିଟର ମାପଗୁଡ଼ିକ ଓଜନ ମାପ ବିଭାଗଦ୍ୱାରା ପରୀକ୍ଷିତ ।

ଓଜନ ଓ ମାପ ବିଭାଗ, ଓଡ଼ିଶା ସରକାର ।

# ≡ ଗଳ୍ପ ≡

## ଗଙ୍ଗା-ଯମୁନା

ଉଦୟନାଥ ଷଡ଼ଙ୍ଗୀ

୧୯୭୮ ମସିହା ଅକ୍ଟୋବର ମାସ ପଚିଶ ତାରିଖଟିକୁ କେବେ କିଏ ଭୁଲି ହେବ ? ସେ ଦିନର ପ୍ରବଳ ଝଡ଼ ଯେପରି ଖଣ୍ଡପ୍ରଳୟ ସୃଷ୍ଟି କଲା, ଚିଲିକା କ୍ରୋଧରେ ପାଗଳିନୀ ଭଳି ଯେଉଁ ଭୀଷଣ ମୂର୍ତ୍ତି ଧଇଲା, ଚିଲିକାକୂଳବାସୀ ଆଗରୁ କେବେହେଲେ ଦେଖି ନ ଥିଲେ ।

ସବୁଦିନ ପରି ଗଙ୍ଗା ତାର ଶ୍ରେଷ୍ଠ ଡଙ୍ଗାଟିରେ ବସି ମାଛ ଧରିବାକୁ ଯାଇଥିଲା । ଏକା କିଏ ଗଙ୍ଗା ? ତା ଗ୍ରାମର, ପାଖଆଖ ଗ୍ରାମର ଶହ ଶହ ସାଙ୍ଗସାଥୀ ନୋଳିଆ ସେତେବେଳେ ଚିଲିକା ବକ୍ଷରେ ଘୂରି ବୁଲୁଥିଲେ ।

ଡଙ୍ଗା ସେମାନଙ୍କର ପ୍ରଧାନ ସମ୍ବଳ, ଜାଲ ସର୍ବସ୍ୱ ସମ୍ପତ୍ତି, ଚିଲିକା ଧାନକିଆରୀ । ବର୍ଷର ବାରମାସ ଯାକ ସାରା ଦିନ ଚିଲିକା ପାଣିର ଏ ମୁଣ୍ଡରୁ ସେ ମୁଣ୍ଡକୁ ଖେଦି ମାଛ ଧରିବା ସେମାନଙ୍କର ଏକମାତ୍ର ବେଉସା । ପିଲାଟି ଦିନୁ ଚିଲିକା ସହିତ ସେମାନେ ଘନିଷ୍ଠ ଭାବରେ ପରିଚିତ । ଚିଲିକା ସେମାନଙ୍କର ଚିରକାଳର ବନ୍ଧୁ, ସବୁଦିନର ଖେଳପଡ଼ିଆ । ଠୁକୁର୍ ଠୁକୁର୍ ଚାଲିବା ଆରମ୍ଭ ଦିନୁ ସତେ ଯେପରି ସେ ହାତଠାରି ସେମାନଙ୍କୁ ଡାକି ଦିଏ; ନିଜ କୋଳକୁ ଟାଣିନେବା ପାଇଁ କେତେ ଲୋଭ ଦେଖାଏ ।

ପାଣିର ମୃଦୁ-ମନ୍ଦ ଲହରୀରେ ଡଙ୍ଗାଗୁଡ଼ିକ ଦୋହଲି ଦୋହଲି ଏପାଖ ସେପାଖ ହେଉଛି । ଉପରେ ମେଘାଚ୍ଛନ୍ନ ଆକାଶ; ଏଣେ ସୁଲୁସୁଲିଆ ପବନ ଲୁଚକାଳି ଖେଳିବାରେ ବ୍ୟସ୍ତ । କେଉଁ ଡଙ୍ଗାରୁ ପଦେ ରସରସିଆ ଗୀତର ସ୍ୱର ଭାସି ଆସୁଛି; ପୁଣି କେଉଁ ଡଙ୍ଗାରୁ ଦୁଇ ତିନିଜଣ ବନ୍ଧୁଙ୍କର ଠହ ଠହ ହସର ଢେଉ ।

ଗଙ୍ଗା କିନ୍ତୁ ତା' ଡଙ୍ଗାରେ ଏକୁଟିଆ । ଜାଲ ଖଣ୍ଡିକ ପାଣିକୁ ପକାଇ ଦେଇଛି, ତାକୁ ଘୋଷାରି ଘୋଷାରି ଆଗକୁ ମୁହାଁଇଛି । ମନ ଭିତରେ କେତେ ପୁରୁଣା ଦିନର କଥା ଉଙ୍କି ମାରୁଛି ।

କାଲି ତା' ଭାଗ୍ୟକୁ ମାଛ ଜାଲରେ ପଡ଼ିଲେ ନାହିଁ । ଝିଅଟିକୁ ମୁଠାଏ ଚୁଡ଼ା କିଣି ନେବାକୁ ପଇସା ପାଇଲା ନାହିଁ । ଦିନଟି ଯାକ ଖାଡ଼ା ଉପାସ । ତା' ଭୋକଟା ତାକୁ ବାଧିନାହିଁ, କିନ୍ତୁ ଶ୍ରେଷ୍ଠ ଶ୍ରେଷ୍ଠ ପିଲାଗୁଡ଼ିକ ଭୋକ ସମ୍ଭାଳିବେ କିପରି ? ସେମାନଙ୍କର କଅଁଳ ମୁହଁସବୁ ଶୁଖିଗଲା । ସାନଟି ତ ଗଡ଼ାଧରି କାନ୍ଦିଲା ଯେ, ତାକୁ ବୁଝାଇବା ସହଜ ହେଲାନାହିଁ ।

କେବଳ କାଲି ଦିନଟି ନୁହେଁ, ବର୍ଷକ ଭିତରେ ବହୁତ ଦିନ ତା ଭାଗ୍ୟରେ ଏହା ଘଟେ । ସେ ସେତେବେଳେ ବାହାହୋଇ ନ ଥିଲା, ସେତେବେଳେ ବେଶ୍ ଉଡ଼ା ବୁଲୁଥିଲା । ଘର ନ ଥିଲା, ଡଙ୍ଗା ନ ଥିଲା କି ଜାଲ ନ ଥିଲା । ଯା' ଡଙ୍ଗାରେ ତା ଡଙ୍ଗାରେ ବସି ମାଛ ଧରେ, ଯାହା ପଇସା ମିଳେ ଖାଇପିଇ ଆନନ୍ଦରେ ଦିନ କାଟିଦିଏ ।

ଏଭଳି ଏକୁଟିଆ ଜୀବନ ଆଉ ବେଶିଦିନ ସୁଖ ଲାଗିଲା ନାହିଁ । ସେ ବିବାହ କଲା, ଆଉ ଗାଁର ଟିକି ଝିଅ ଯମୁନା ବୋହୂ ହୋଇ ତା' ପାଖକୁ ଆସିଲା ।

ସେହି ଯମୁନା ଶିଖାରେ ପଡ଼ି ଗଙ୍ଗା ଖଣ୍ଡିଏ କୁଡ଼ିଆ ତିଆରି କଲା । ଏପର୍ଯ୍ୟନ୍ତ ତାର ନିଜର ହୋଇ କିଛି ନ ଥିଲା । ଏଣିକି ନିଜର ଘର ହେଲା, ଜାଲ ହେଲା, ଡଙ୍ଗା ହେଲା ।

ବର୍ଷ ପରେ ବର୍ଷ ବିତିଗଲା । ଦୁହିଁ ଦୁହିଁ ଗୁଡ଼ୁରୁ ଗାଡ଼ୁରୁ ହୋଇ ପାଞ୍ଚଗୋଟି ପିଲା ହେଲେ । ସେ କୁଡ଼ିଆ ଘର ଖଣ୍ଡି ହସି ଉଠିଲା । ଯମୁନା ହସିଲା, ଗଙ୍ଗା ମଧ୍ୟ ସେ ହସରେ ତାଳଦେଲା ।

ସକାଳୁ ଉଠି ଗଙ୍ଗା ମାଛ ଧରିବାକୁ ଚାଲିଯାଏ । ଘରେ ଯମୁନା ପିଲାଙ୍କୁ ସମ୍ଭାଳି ରହେ, ନୂଆ ଜାଲ ବୁଣେ, ଚିରା ଜାଲକୁ ସଜାଡ଼େ । ଯତ୍ନରେ ଭାତ ଡାଲି ରାନ୍ଧି ସଞ୍ଜବେଳକୁ ଚାହିଁ ରହିଥାଏ । ଗଙ୍ଗା ଆସିବା କେଉଁଦିନ କେମିତି ଡେରିହେଲେ ଦଶଥର ଦାଣ୍ଡକୁ ଦଉଡ଼ିଯାଏ । ଚିଲିକା କୂଳକୁ ଯାଇ ଦୂର ଦିଗ୍‌ବଳୟକୁ ଚାହେଁ । ଯେତେ ଡଙ୍ଗା ଫେରୁଛି, ସେଥିରୁ କେଉଁ ଡଙ୍ଗାଟି ତାଙ୍କର, ତାହା ଚିହ୍ନିବାକୁ ଚେଷ୍ଟା କରେ ।

ଗଙ୍ଗା ଆଙ୍ଗୁଠି ଗଣି ହିସାବ କଲା—ଏହା ଭିତରେ ଦଶଟି ବର୍ଷ ବିତିଗଲାଣି । ସୁଖ ଦୁଃଖର ଦିନଗୁଡ଼ିକ ପାଣିପରି ବୋହି ଯାଉଛି; ବେଶ ଆନନ୍ଦରେ, ହସ ଖୁସିରେ । ତାର ବୟସ ବଢ଼ିଛି । ବଳ ବଢ଼ିଛି, ରୋଜଗାର ବି ବଢ଼ିଛି । ଚିନ୍ତା ନାହିଁ, ଦୁଃଖ ନାହିଁ କି ଡରଭୟ ନାହିଁ । କେହି ଶତ୍ରୁ ନାହାନ୍ତି; ସମସ୍ତେ ସାଙ୍ଗ, ବନ୍ଧୁ, ଅତି ଆପଣାର ।

ଗଙ୍ଗାର ଭାବନା ଅଟକି ଗଲା । ହଁ, ହଁ, ଜଣେ ଶତ୍ରୁ ଅଛି । ଗାଁମୁଣ୍ଡର ପଦନା ବୁଢ଼ା । କେଜାଣି କାହିଁକି, ଗଙ୍ଗାର ଛାଇ ପଡ଼ିଲେ ତାର ନାକ ଡେଉଁଥିଲା । ଦୁଇ ଥରଟର ସେ ଗଙ୍ଗାକୁ ଗାଳିଗୁଲଜ କରିଛି, ଗଙ୍ଗା ମଧ୍ୟ ଛାଡ଼ିନାହିଁ । ସେ ଅବଶ୍ୟ ମରିଗଲାଣି । ଘରେ ରହିଛି ବୁଢ଼ୀ, ଆଉ ଅଛନ୍ତି ଦୁଇଟି ଝିଅ । ଥାଆନ୍ତୁ ସେ ତାଙ୍କ ଘରେ; ସେଥିରେ ମୋର ଯାଏଆସେ କେତେ ?

ଗଙ୍ଗା ଜାଲକୁ ଟାଣି ଆଣିଲା । ବେଶି କିଛି ମାଛ ନାହାନ୍ତି । ତେବେ ବଡ଼ ସାନ ଯେ କେତୁଟା ଥିଲେ, ତାଙ୍କୁ ଡଙ୍ଗା ଖୋପରେ ରଖିଦେଲା । ପାଣି ଭିତରେ ପୁଣି ଜାଲ ମେଲାଇ ଦେଲା ।

ପିଲାମାନଙ୍କ କୁନି କୁନି ମୁହଁଗୁଡ଼ିକ ତା' ଆଖି ଆଗରେ ନାଚିଗଲା । ସେମାନେ ବର୍ତ୍ତମାନ ଖୁସିରେ ଖେଳୁଥିବେ । ଯମୁନା ଜାଉ ରାନ୍ଧୁଥିବ । ପିଲାଙ୍କ ଆଗରେ ମୋର କଥା ହିଁ ଗପୁଥିବ । କେତେ ଗୁଲୁଗୁଲିଆ ସେମାନେ ?

ପବନର ବେଗ ଯେ କେତେବେଳେ ଅତି ଜୋର ହେଲାଣି, ଗଙ୍ଗା ତାହା ଜାଣିପାରି ନାହିଁ । ହଠାତ୍ ଧକ୍କା ଖାଇ ଚାରିଆଡ଼କୁ ଚାହିଁଦେଲା । ପାଖ ଆଖରେ ଆଉ କାହାରି ଡଙ୍ଗା ଦିଶୁନାହିଁ । କଳା ଘୁମର ଅନ୍ଧାର ଘୋଟି ଯାଇଛି । ଚିଲିକାର ପାଣି ସାତତାଳ ଉଚରେ ଉଠୁଛି, ପଡ଼ୁଛି । କି ଭୀଷଣ ସେ ରୂପ, କି ଭୟଙ୍କର ଗର୍ଜନ !

ଗଙ୍ଗା ମନ ଦବିଗଲା । ମୁହୂର୍ତ୍ତକ ମଧ୍ୟରେ ଓଲଟି ପଡ଼ିଲା ।

× × ×

ସାରା ଦିନ ବିତିଗଲା । ରାତି ଆସିଲା । ବାତ-ବରଷା ତ ବରାବର ଲାଗି ରହିଛି । ଯମୁନାର କଲିଜା ଫାଟି ପଡ଼ୁଛି । କଣ ସେ କରିବ? ଘରେ ପିଲାମାନେ, ତେଣେ ଚିଲିକା ପାଣିରେ ଗଙ୍ଗା । କେଉଁ ପାଖ ସମ୍ଭାଳିବ ସେ ? ଗଙ୍ଗା ଏତେବେଳଯାଏ ଗଲା କୁଆଡ଼େ ? ଚାରିଆଡ଼ୁ ଘୁ ଘୁ ଗର୍ଜନ ମାଡ଼ି ଆସୁଛି । ଦୁହୁଁ ଦୁହୁଁ ଘରସବୁ ଅଜାଡ଼ି ହୋଇ ପଡ଼ୁଛି, ବଡ଼

ବଡ଼ ଗଛ ଭାଙ୍ଗି ତଳେ ଲୋଟି ଯାଉଛି । ପାଣି ଲହଡ଼ି ମାଡ଼ିଆସି ଘର ଭିତରେ ପଶିଲାଣି । ସେ ଏକୁଟିଆ, ପିଲାଙ୍କୁ ସମ୍ଭାଳିବ କେମିତି ? ଗଙ୍ଗାକୁ କେଉଁଠି ଖୋଜିବ ?

ଝନଝଟା ଅବା କଟିଗଲା । କିନ୍ତୁ ରାତି ଆସିବାରୁ ଯମୁନା ବେଶି ଛଟପଟ ହେଲା । ଗଙ୍ଗା ବାଟକୁ ପ୍ରତି ମୁହୂର୍ତ୍ତରେ ଚାହିଁ ରହିଲା ।

ଘର ତଳରେ ପାଣି ସୁଅ, ଉପରେ ଛାତ ଉଡ଼ିଗଲାଣି । କୋଣରେ ଖାଡ଼ ଉପରେ ପିଲାମାନଙ୍କୁ ଶୁଆଇ ପକାଇଲା । ମନ ଅଥୟରେ ପଦାକୁ ବାହାରି ଆସିଲା ।

ଜଟି କଟି ଅନ୍ଧାର, ପାଣି ପବନର ବିରାମ ନାହିଁ । ମିଞ୍ଜି ମିଞ୍ଜି ଝଶୁଥିବା ଲଣ୍ଠନଟିକୁ ଟିକିଏ ତେଜିଦେଲା, ତାକୁ ଧରି ଚାଲିକା କୂଳ ଆଡ଼କୁ ମୁହାଁଇଲା ।

ଗାଁର ବହୁତ କୁଡ଼ିଆ ଭାଙ୍ଗି ତଳେ ଲୋଟୁଛି । କୌଣସିଠାରେ ମଣିଷର ଶବ୍ଦବର୍ତ୍ତି ନାହିଁ, ପାଟି ଭୁଣ୍ଡ ନାହିଁ । କେବଳ ପବନର ସୁ ସୁ ଗର୍ଜନ ।

କୂଳ ଆଡ଼କୁ ଯାଉ ଯାଉ ଗାଁ ମୁଣ୍ଡର ସଦନା ଘର ତା' ଆଖି ଆଗରେ ପଡ଼ିଗଲା । ଘର ଭାଙ୍ଗି ପଡ଼ୁଛି । ସବୁ ଶୂନ୍‌ଶାନ । ତାଙ୍କ ଘରର ପୁରୁଣା ଶବ୍ଦ ସେ ।

ତଥାପି ତା' ମନ ଥୟ ହେଲାନାହିଁ । ଘର ଭାଙ୍ଗି ପଡ଼ୁଛି । ଏତେବେଳେ ବୁଢ଼ା କଣ କରୁଥିବ ? ପିଲା ଦୁଇଟି କିପରି ଥିବେ ?

ଲଣ୍ଠନ ଆଲୁଅକୁ ଆଉ ଟିକିଏ ତେଜିଦେଇ ସେ ଭଙ୍ଗାଘର ଭିତରକୁ ପଶିଗଲା । ଦେଖିଲା, ଘରର ରୁଅ, ବାଉଁଶ ପଡ଼ି ବୁଢ଼ୀର ତାଳୁ ଫାଟି ଯାଇଛି । ରକ୍ତରେ ପାଣି କାଦୁଅ ଲାଲ ହୋଇ ଯାଇଛି । ଅଳ୍ପ ଦୂରରେ ଖାଡ଼ ଉପରେ ପିଲା ଦୁଇଟି ଗଭିର ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ଆହା ବିଚରା, କିଛି ଜାଣିପାରୁ ନାହାନ୍ତି ।

ଯମୁନାର ମା' ମନ ଅଧୀର ହୋଇ ଉଠିଲା । ମାଆଛେଉଣ୍ଡ ପିଲା ଦୁଇଟି । ନିଦ ଭାଙ୍ଗିଗଲେ ମାଆର ଏ ଅବସ୍ଥା ଦେଖିବେ । ସେତେବେଳେ କେତେ ବିକଳ ନ ହେବେଟି ! ଭୋକହେଲେ ଆଉ କାହାକୁ ଖାଇବାକୁ ମାଗିବେ ? କାହା ପାଖରେ ଆଉ ଅଳି କରିବେ ?

ପିଲା ଦୁହିଁଙ୍କ ଆଡ଼କୁ ଥିର୍ କରି ହାତ ବଢ଼ାଇଲା । ପୁଣି ହାତ ଫେରି ଆସିଲା । ଗଙ୍ଗା କଣ ଭାବିବ ? ତାକୁ ନ ପଚାରି·········

ଯମୁନା ଆଉ କିଛି ଭାବି ପାରିଲା ନାହିଁ । ପିଲା ଦୁଇଟିଙ୍କୁ କାନ୍ଧରେ ପକାଇ ନିଜ ଘରକୁ ଫେରି ଆସିଲା । ଗଙ୍ଗାକୁ ଖୋଜିବାକୁ ଯିବା କଥା ଭୁଲିଗଲା ।

× × ×

କୌଣସି ମତେ ରାତି ପାହିଲା । ଝଡ଼-ବତାସ ଟିକିଏ କମିଛି । ଜାଲ ଓ ଡଙ୍ଗା ହରାଇ ଥରି ଥରି ଗଙ୍ଗା ଆସି ଘରେ ପହଞ୍ଚିଲା । ଦେଖିଲା, ଦୁଆର ମୁହଁରେ ଯମୁନା ତା ବାଟକୁ ଚାହିଁ ଠିଆ ହୋଇଛି ।

ଗଙ୍ଗା ପ୍ରଥମେ କଥା କହିଲା, ଏଭଳି ଦୁର୍ଯୋଗ କେବେ ଦେଖା ନ ଥିଲା । ଗୋଟିଏ ହେଲେ ତ ମାଛ ନାହିଁ, ତା ଉପରେ ଡଙ୍ଗାଟି କୁଆଡ଼େ ଭାସିଗଲା, ଜାଲର ମଧ୍ୟ ପତ୍ତା ମିଳିଲା ନାହିଁ । କାଲିଠୁ ପିଲାଏ ଉପାସ ରହିଥିବେ, ଆଜି ପୁଣି କଣ ଖାଇବେ ?

ଯମୁନା ବା କି ଉତ୍ତର ଦେବ ? ତା ମନରେ ହୁନିଆଁଟା ଯାକର ଭୟ ଜମାଟ ବାନ୍ଧିଗଲାଣି । ପାଞ୍ଚଟି

ପିଲଙ୍କୁ ଖାଇବାକୁ ଦେବାର ଚିନ୍ତା ଗଙ୍ଗାକୁ ଘାରୁଛି, ତା' ଜାଗାରେ ଯଦି ସାତୋଟି ହୁଅନ୍ତି ?

ସେ ତର ତର କ୍ଷୀଣ ସ୍ୱରରେ କହିଲା, ଆମ ଗାଁର ବହୁତ ଘର ଭାଙ୍ଗି ପଡ଼ୁଛି । ସେ ମୁଣ୍ଡର ପଦନା ଘର ମଧ୍ୟ । ମୁଣ୍ଡ ଫାଟି ବୁଢ଼ୀଟି ମରିଯାଇଛି ।

ଗଙ୍ଗା ପାଟିଟା ମେଲା ହୋଇଗଲା । "ବୁଢ଼ୀ ମରି ଯାଇଛି ? ପିଲା ଦୁଇଟି ? ତୁ ଏଇଲାଗ ଯାଅ— ପିଲା ଦୁହିଁଙ୍କୁ ଆମ ଘରକୁ ନେଇ ଆସିବୁ—ତାଙ୍କ ନିଦ ଭାଙ୍ଗିବା ଆଗରୁ । ନିଦରୁ ଉଠି ପଡ଼ିଲେ ବୁଢ଼ୀ ଦଶା ଦେଖି ଘୁନିଆ ହୋଇଯିବେ ନାହିଁ ?"

ତଥାପି ଯମୁନା ନିଶ୍ଚଳ ଭାବରେ ଠିଆହୋଇ ରହିଲା । ଗଙ୍ଗାକୁ ଏହା ଅସହ୍ୟ ବୋଧହେଲା । ସେ ବଡ଼ ପାଟିରେ ଆଉଥରେ କହିଲା,—ଡେରି ହେଉଛି ଯେ, ଶୀଘ୍ର ଯାଅ । ଠିଆହୋଇ ରହିଲୁ କାହିଁକି ?

ଯମୁନା ମାରବରେ ଘରର କୋଣ ପାଖକୁ ଘୁଞ୍ଚିଗଲା । ଛିଣ୍ଡା ମଇଳା ମଶାରିଟି ଭାଡ଼ ଉପରୁ ଟେକିଦେଲା ।

ଗଙ୍ଗା ଦେଖିଲା, ସାତଗୋଟି ପିଲା ନିଶ୍ଚିନ୍ତ ମନରେ ଶୋଇ କଣ ସ୍ୱପ୍ନ ଦେଖୁଛନ୍ତି ।

ଦୁହେଁ ଦୁହିଁଙ୍କ ମୁହଁକୁ ଏକ ସମୟରେ ଚାହିଁ-ଦେଲେ । ଏ ଦୁର୍ଯୋଗରେ ମଧ୍ୟ ଉଭୟଙ୍କ ମୁହଁ ସରସ ଦେଖାଗଲା ।

ଗଙ୍ଗା କହିଲା—ଯାଉ ଓଙ୍ଗା, ଯାଉ ଜାଲ । ମୁଁ ପୁଣି ଓଙ୍ଗା ତିଆରି କରିବ, ତୁ ଜାଲ ବୁଣିଦେବୁ । ଏଣିକି ଆଉ ଅଧିକ ଖଟିବ, ବେଶି ମାଛ ଧରିବ । ପାଞ୍ଚଟି ଜାଗାରେ ସାତୋଟି ପିଲଙ୍କୁ ପେଟ ପୂରାଇ ଖାଇବାକୁ ଦେବା ।

—*—

# ॥ ଏକ ଆଧ୍ୟାତ୍ମିକ ପରାଜୟ ॥

ଗୌର ପଟ୍ଟନାୟକ (ବେତାର)

ମୁଁ କାହିଁକି କଳିଙ୍ଗ ଆକ୍ରମଣ କଲି ଜାଣ କାରୁବାକୀ ? ତମ ରୂପ ଗୁଣରେ···

ସମ୍ରାଟଙ୍କୁ ବାକ୍ୟ ଶେଷ କରିବା ପାଇଁ ସୁଯୋଗ ନ ଦେଇ କାରୁବାକୀ କହିବାକୁ ଆରମ୍ଭ କଲେ, ଜାଣେ, ମୋର ରୂପ ଗୁଣ ହିଁ ଏ ସ୍ୱର୍ଣ୍ଣାସ୍ତୁ ପବିତ୍ର କଳିଙ୍ଗର ଧ୍ୱଂସର କାରଣ । କଳିଙ୍ଗର ପତନ ହୋଇଛି । କାରୁବାକୀ ଆପଣଙ୍କର ଅକ୍ତିଆର ଭିତରେ ରହିଛି । ଆପଣ ଇଚ୍ଛାକଲେ ତାକୁ ହତ୍ୟାକରି ପାରିବେ, ବନ୍ଦୀକରି ପାରିବେ, ମୁକ୍ତିଦେଇ ପାରିବେ···

ନା, ମୁଁ କଳିଙ୍ଗ ଆକ୍ରମଣ କରିଛି କ'ଣ ତମକୁ ହତ୍ୟା କରିବାକୁ ? ବନ୍ଦୀ କରିବାକୁ ? ମୁକ୍ତି ଦେବାକୁ ?

ଅଶୋକ ହୋ ହୋ ହୋଇ ହସିଉଠି କାରୁବାକୀଙ୍କର ମନର ଦୁର୍ବଳ ତନ୍ତ୍ରୀଗୁଡ଼ାକୁ ଆନ୍ଦୋଳିତ କରିଦେଲେ ।

ମୁଁ ତୁମକୁ ବିବାହ କରିବାକୁ ଚାହେଁ କାରୁବାକୀ; ଅଶୋକଙ୍କର ଶେଷ ଶବ୍ଦ ଗୁଡ଼ାକ ହସର ସୁଅରେ ଭାସିଯାଇ ଅସ୍ପଷ୍ଟ ଶୁଣାଗଲା । କାରୁବାକୀଙ୍କର ମନେ-ହେଲା ସତେ ଯେମିତି ତାଙ୍କ ଚାରି ପାଖରେ ଥିବା ଜିନିଷଗୁଡ଼ାକ ପବନଠାରୁ ବି ଆହୁରି କ୍ଷିପ୍ର ବେଗରେ ଘୂରି ବୁଲୁଛି । ପାଦ ତଳର ମାଟି ଧସି ଯାଇଛି ଏବଂ ସେ ଏକ ଅନ୍ଧକାର ଗର୍ତ୍ତ ଭିତରେ ପତିତ ହେଉଛନ୍ତି । ତାଙ୍କର ସମସ୍ତ ବାକ୍‌ଶକ୍ତି ଲୋପ ହୋଇଯାଉଛି ।

ଅଶୋକ କାରୁବାକୀଙ୍କ ଆଡ଼କୁ ଦୁଇପାଦ ଆଗେଇ ଆସି ସିଧା ଭାବରେ ତାଙ୍କୁ ଚାହିଁଲେ, କହିଲେ, ନୀରବ ରହିଲ ଯେ ?

କାରୁବାକୀ ତଳ ମାର୍ବଲ ପଥରର କୌଣସି ଏକ ବିନ୍ଦୁରେ ଦୃଷ୍ଟି ସ୍ଥିରକରି ବାଁ ଗୋଡ଼ର ବୁଢ଼ା ଅଙ୍ଗୁଳିରେ ପଥର ଦେହରେ ଅଦୃଶ୍ୟ ଗାର ଟାଣୁ ଟାଣୁ ଉତ୍ତର ଦେଲେ, ଆପଣ କୋଧେ ଭୁଲି ଯାଉଛନ୍ତି ଯେ ମୁଁ ଜଣେ କୈବର୍ତ୍ତ କନ୍ୟା, ପୁଣି ଅନ୍ୟର ଧର୍ମପତ୍ନୀ ।

ଆଃ ! ସମ୍ରାଟ ବିରକ୍ତି ପ୍ରକାଶ କଲେ, ଜାଣେ, ସବୁଜାଣେ । ତଥାପି ମୁଁ ତମକୁ ଚାହେଁ । ତମେ ଯଦି ମନାକର ତେବେ ବାଧହୋଇ ମତେ ଅନ୍ୟ ପନ୍ଥା ଧରିବାକୁ ହେବ ।

କଳିଙ୍ଗର ଧର୍ମ ସଂସ୍କୃତି ଅତି ମହାନ ସମ୍ରାଟ । ମୁଁ ସେଥିପାଇଁ ଯଥେଷ୍ଟ ସଚେତନ । ମୁଁ ମୋର ସ୍ୱାର୍ଥ ତ୍ୟାଗ କରିପାରେ, ମୋର ଜୀବନକୁ ବଳି ଦେଇ-ପାରେ, କିନ୍ତୁ ଇତିହାସ ପୃଷ୍ଠାରେ କୌଣସି ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି କରିବା ପାଇଁ ଚାହେଁନା । ମତେ ଆତ୍ମହତ୍ୟା କରିବା ପାଇଁ ବେଶି ସମୟ ଲାଗିବନି ।

କାରୁବାକୀ···! ଅଶୋକ ଚତ୍କାର କରି ଉଠିଲେ । ତାଙ୍କ ଆଖି ଡୋଳା ଯୋଡ଼ିକ ଅସମ୍ଭବ ରକମର ବଡ଼ ବଡ଼ ହୋଇଗଲା । କାରୁବାକୀଙ୍କ ଆଡ଼କୁ ଆଉ ଦୁଇ-ପାଦ ଅଗ୍ରସର ହୋଇ କହିଲେ, ତା'ହ ଜାଣେ, କଳିଙ୍ଗ ଯୁଦ୍ଧରେ ଯେଉଁ ବୀରାଙ୍ଗନା କାରୁବାକୀ ଅସ୍ତ୍ର ଧାରଣ କରି ଅସାଧାରଣ ବୀରତ୍ୱ ପ୍ରଦର୍ଶନ କରିଛନ୍ତି, ଦେଶ ଜାତି ଧର୍ମର ସମ୍ମାନ ଲାଗି ଆତ୍ମବଳୀ ଦେଇ ପାରନ୍ତି, ଏ କଥା ମୁଁ ହୃଦୟଙ୍ଗମ କରି ପାରୁଛି । ସେଇଥିପାଇଁ ତ ମୁଁ ତମକୁ ବିବାହ କରିବି ବୋଲି ପ୍ରତିଜ୍ଞାବଦ୍ଧ !

କାରୁବାକୀ ଜାଣି ପାରିଲେ ଯେ ସେ ନିଜ ଅସ୍ତ୍ରରେ ହିଁ ନିଜେ ଆହତ ହୋଇଛନ୍ତି । ଏଥର ଅମୋଘ ଅସ୍ତ୍ର ପ୍ରୟୋଗ ନ କଲେ ସମ୍ରାଟ ଅଶୋକଙ୍କର ନିଷ୍ଠୁର ହୃଦୟକୁ ସଂଯତ କରି ହବନି ।

ବଜ୍ରାତ୍ମିକା ସର୍ବ ଧର୍ମା ବଜ୍ରାତ୍ମିକୋ୍ଽହଂ······ ମନେ ମନେ ସର୍ବଶକ୍ତିମାନ ଶୂନ୍ୟ ବ୍ରହ୍ମ ସେଇ ଆଦି ବୁଦ୍ଧଙ୍କୁ ସ୍ମରଣ କରିସାରି ସମ୍ରାଟ ଅଶୋକଙ୍କୁ ପ୍ରଶ୍ନ କଲେ, ଆପଣ ମହାତ୍ମା ବୁଦ୍ଧଦେବଙ୍କୁ ଜାଣନ୍ତି ?

ଅଶୋକ ମୁଣ୍ଡ ହଲାଇ ନାଁ କଲେ ।

କାମନାଠାରୁ ନିଜକୁ ଦୂରେଇ ସଂଯମିତ ଲାଗି ସାଧନା ନ କଲେ ମଣିଷର ମୁକ୍ତିନାହିଁ । ବଜ୍ର ହେଉଛି ଅନନ୍ତ ଶୂନ୍ୟ ଏବଂ ସତ୍ତ୍ୱ ହେଉଛି ତାହାର ସାରତତ୍ତ୍ୱ । ବୁଦ୍ଧ ହିଁ ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡର ଆଦି-କାରଣ । ସେ ଗଗନ ପବନ ବ୍ୟାପ୍ତ, ସର୍ବବୁଦ୍ଧମୟ, ସର୍ବଜନ ପୂଜିତ, ଶୂନ୍ୟ ପୁରୁଷ, ଠୁଳ ପୁରୁଷ, ବିରାଟ ପୁରୁଷ, ଶୂନ୍ୟ ବ୍ରହ୍ମ, ଆଦି ବୁଦ୍ଧ ପୁଣି ଅବତାଣ୍ଡ । ଏହି ଉପଲବ୍ଧିରୁ ଆସେ ନିରାଟ ବାସ୍ତବତା ମଧ୍ୟରେ ଚୈତ୍ତିର ଶୂନ୍ୟତା । ବୁଦ୍ଧ ଜ୍ଞାନରେ ଅଭିଭୂତ ହୋଇ ନିଜକୁ ନ ଭୁଲିଲେ, ନିଜ ମନ ଭିତରୁ ବିକୃତ କାମନାକୁ ବହିଷ୍କାର ନ କଲେ ମଣିଷ ମଣିଷରୂପୀ ପଶୁ ହୋଇଯାଏ । ଜୀବନର ସାର୍ଥକତା ଲାଗି ମଣିଷ କାମନାହୀନ ହେବା ଉଚିତ । ମୋ ଧନ, ମୋ' ସ୍ତ୍ରୀ, ମୋ ପରିବାର ଏ ସବୁ କେତେଦିନ ? ମୃତ୍ୟୁ ସୁନିଶ୍ଚିତ । ମଲାବେଳେ ସାଙ୍ଗରେ କେହି କିଛି ନିଏ ନାହିଁ । କେବଳ ଧର୍ମ କର୍ମ କରିଥିଲେ ହିଁ ପରବର୍ତ୍ତୀ ଭବିଷ୍ୟତରେ ବୁଦ୍ଧତ୍ୱ ପ୍ରାପ୍ତିଲାଗି ପଥ ସୁଗମ ହୁଏ ।

ତମେ ମତେ ଉପଦେଶ ଦେଉଛ ନା ପରିହାସ କରୁଛ କାରୁବାକୀ ? ଅଶୋକଙ୍କର ପ୍ରତ୍ୟେକଟି ଶବ୍ଦରେ ତୀବ୍ର କଟାକ୍ଷ ।

ସମ୍ରାଟ ଅଶୋକଙ୍କୁ ଉପଦେଶ ଦେବାର ଧୃଷ୍ଟତା ମୋର କାହିଁ ? ପରାଜୟରେ ମୋର ଦୁଃଖ ନାହିଁ କିମ୍ବା ବିଜୟରେ ମୁଁ ଖୁସି ହୁଏନାହିଁ । ମୋର ଉତ୍ସର୍ଗୀକୃତ ଦେହ ମନ ସେଇ ପରମ ପୂଜ୍ୟ ଶୂନ୍ୟ ଆଦି ବୁଦ୍ଧଙ୍କ ପାଖରେ ଲୀନ ହୋଇ ସାରିଛି । ଏ ଦେହ ମନ ମୋର ନୁହେଁ, ଏହାର ଉପରେ ମୋର କୌଣସି ଅଧିକାର ନାହିଁ ।

କାରୁବାକୀ ନୀରବ ରହିଲେ । ଅଶୋକ ଗୁରୁ-ଗମ୍ଭୀର ସ୍ୱରରେ କହିଲେ, ନା-ନା-ନା, ମୁଁ ଆଉ କିଛି ଶୁଣିବାକୁ ଚାହେଁନା । ମୁଁ ଚାହେଁ ମୋ ପ୍ରଶ୍ନର ସଂକ୍ଷିପ୍ତ ଉତ୍ତର, ହଁ···କି ନା···।

କାରୁବାକୀ ଏଥର ନିଜକୁ ଟିକିଏ ସାବଧାନ କରି ଉତ୍ତର ଦେଲେ, କହିଲି ତ, ଏ ଦେହ ମନ ଉପରେ ମୋର କୌଣସି ଅଧିକାର ନାହିଁ । ଆପଣ ଏହାକୁ ଯେଉଁ ଦୃଷ୍ଟିରେ ଦେଖନ୍ତୁ ମୋର କିଛି କହିବାର ନାହିଁ । ତେବେ ମୁଁ ଆଶାକରେ, ତଥାଗତ ଆପଣଙ୍କୁ ସଦ୍‌ବୁଦ୍ଧି ଦେବେ ।

× × ×

ଗତ ସନ୍ଧ୍ୟାରେ ପୁତ୍ର ଶୋକରେ ମର୍ମାହତା ଯେଉଁ ବୃଦ୍ଧା ଅଶୋକଙ୍କ ସମ୍ରାଟ ମନକୁ ସ୍ପନ୍ଦିତ କରି ଦେଇଥିଲା, ତାହାର ସେଇ ଭଗ୍ନ କଣ୍ଠର ପ୍ରଶ୍ନବାଚୀ-

ଗୁଡ଼ାକ ପୃଷ୍ଠରେ ଅଶୋକଙ୍କ ମନରେ ପ୍ରତିଧ୍ୱନିତ ହୋଇ ଉଠିଲା ।

କ୍ରୁଦ୍ଧ ସମ୍ରାଟ, ଲକ୍ଷ ଲକ୍ଷ ନିରୀହ ଜୀବନକୁ ହତ୍ୟାକରି ତମେ କ'ଣ ଲାଭ ପାଇଲ ? ଦଶମାସ ଦଶଦିନ ପେଟରେ ଧରି ନିଜ ରକ୍ତରୁ ରକ୍ତ ଦେଇ ଜନ୍ମକରି ଯେଉଁ ପୁଅକୁ ମୁଁ ଜୀବନଠାରୁ ଅଧିକ ଭଲ ପାଉଥିଲି ତାକୁ ତମେ ହତ୍ୟାକଲ କାହିଁକି ? ସେ ତମର କ'ଣ ଦୋଷ କରିଥିଲା ? ତମେ ଯଦି ମାଆ ହୋଇଥାନ୍ତ, ତମର ଯଦି ପୁଅ ମରିଥା'ନ୍ତା ତେବେ ଯିନା ମୋର ଦୁଃଖ ତମେ ଅନୁଭବ କରି ପାରିଥାନ୍ତ । ତମେ ତ ପୁରୁଷ, ସମ୍ରାଟ । ତମର କ'ଣ ହୃଦୟ ଅଛି । କ୍ରୁଦ୍ଧ ସମ୍ରାଟ, ତମେ କ'ଣ ଜୀବନ୍ୟାସ ଦେଇ ପାରିବ ? ନା' କଦାପି ନୁହେଁ । ଯାହାର ଗୋଟିଏ ମଣିଷକୁ ଜୀବନ୍ୟାସ ଦେବାର ଶକ୍ତିନାହିଁ, ସେ ଲକ୍ଷ ଲକ୍ଷ ଜୀବନକୁ ହତ୍ୟା କରିବ କାହିଁକି ? କି ଅଧିକାରରେ ?

ନିରବତାରେ ସମୟର ବ୍ୟବଧାନ ଦୀର୍ଘରୁ ଦୀର୍ଘତର ହେଲା ।

ଅଶୋକ ମନ୍ତ୍ରମୁଗ୍ଧପରି ଅବିଚଳିତ, ନିର୍ବାକ । ସତେ ଯେମିତି ତାଙ୍କ କର୍ଣ୍ଣକୁହରରେ କିଏ ଜଣେ କହି ଯାଉଥିଲା, ବୁଦ୍ଧଂ ଶରଣଂ ଗଚ୍ଛାମି······

ଅଶୋକଙ୍କ ମୁଖମଣ୍ଡଳ ଏକ ଅପୂର୍ବ ଜ୍ୟୋତିରେ ଉଦ୍‌ଭାସିତ ହୋଇ ଉଠିଲା ।

କଳିଙ୍ଗ ଯୁଦ୍ଧର କାରଣ ନିରୂପଣ ସମ୍ପର୍କରେ ଇତିହାସ ନିରବ । ରାମାୟଣ, ମହାଭାରତଠାରୁ ଇଲିୟାଡ୍, ଓଡ଼େସି ପର୍ଯ୍ୟନ୍ତ ବିଶ୍ୱ ସାହିତ୍ୟ ଘୋଷଣା କରିଛି ଯେ ଲୋମହର୍ଷଣକାରୀ ମହାଯୁଦ୍ଧ ଲାଗି ନାରୀ ହିଁ ଦାୟୀ ।

କିମ୍ବଦନ୍ତୀରୁ ଜଣାଯାଏ କଳିଙ୍ଗ ଯୁଦ୍ଧର କାରଣ ମଧ୍ୟ ସେଇ ନାରୀ । ସେ ଯାହାହେଉ, ଯୁଦ୍ଧ ପରେ କାରୁବାକୀଙ୍କ ଦ୍ୱାରା ପ୍ରଭାବିତ ହୋଇ ଅଶୋକ ପ୍ରଥମେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ଏବଂ ପରେ ତାଙ୍କୁ ବିବାହ କରିଥିଲେ ବୋଲି ଅନୁଶାସନ କହେ । ଏଲ୍ଲାହାବାଦଠାରେ ଥିବା ଅଶୋକଙ୍କ ଶିଳା ସ୍ତମ୍ଭରେ ଥିବା ଅନୁଶାସନରେ ଲିପିବଦ୍ଧ ହୋଇଛି ଯେ କାଲୁବାକୀ ( କାରୁବାକୀ ) ଅଶୋକଙ୍କର ଦ୍ୱିତୀୟା ମହିଷୀ । କାଲୁବାକୀଙ୍କର ପୁତ୍ରଙ୍କ ନାମ ତିବଲ ( ତିବର ) ।

ଅଶୋକଙ୍କର ତ୍ରୟୋଦଶ ଶିଳା ଶାସନରୁ ସ୍ପଷ୍ଟ ଜଣାଯାଏ, ଖ୍ରୀଷ୍ଟଜନ୍ମର ୨୬୧ ବର୍ଷ ପୂର୍ବେ ଏହି ପ୍ରଳୟଙ୍କର, ରୋମାଞ୍ଚକର ଦୁଃଖଦାୟକ ଯୁଦ୍ଧ ଘଟିଛି । ଏହି ଯୁଦ୍ଧରେ ଏକଲକ୍ଷ ସୈନ୍ୟ ଯୁଦ୍ଧଭୂମିରେ ମୃତ୍ୟୁ-ବରଣ କଲେ, ଦେଢ଼ଲକ୍ଷ ବନ୍ଦୀ ହେଲେ ଏବଂ ଦେଢ଼-ଲକ୍ଷ ଲୋକ ଆହତ ହୋଇ ବ୍ୟାଧିଗ୍ରସ୍ତ ହୋଇ କିମ୍ବା ଅନାହାରରେ ଜୀବନ ଦେଲେ । କଳିଙ୍ଗର ଏପରି କୌଣସି ପରିବାର ବାଦ୍ ଯାଇ ନ ଥିଲା, ଯେଉଁ ପରିବାରର କେହି ମରି ନ ଥିଲେ କିମ୍ବା ବନ୍ଦୀହୋଇ ନ ଥିଲେ ।

ସେ ଯାହାହେଉ, କଳିଙ୍ଗ ଯୁଦ୍ଧରେ ସମ୍ରାଟ ଅଶୋକ ଜୟଲାଭ କଲେ ସତ; କିନ୍ତୁ ତାଙ୍କର ଏକ ଆଧ୍ୟାତ୍ମିକ ପରାଜୟ ଘଟିଥିବା କଥା ସେ ନିଜେ ସ୍ୱୀକାର କରିଛନ୍ତି । ଅଶୋକ ବୌଦ୍ଧ ହେବା ପରେ ପରେ ଏହି ଧର୍ମ ଗ୍ରୀସ୍, ବ୍ରହ୍ମଦେଶ, ଚୀନ, ସିଂହଳ, ତିବ୍ବତ, ନେପାଳ ଇତ୍ୟାଦି ପୃଥିବୀର ପ୍ରାୟ ସମସ୍ତ ଦେଶରେ ପ୍ରଚୁର ତଥା ପ୍ରସାର ଲାଭ କରିଥିଲା ।

—*—



ଖୁରି ଭଲ ଲାଗୁଛି ବାପା

ଏହି ମଣିରାଜ ବିସ୍କୁଟ-ଲଜେଞ୍ଜ
ମୋ ପାଇଁ ଆଉ ଆଣିବ














# ମହିଳା ମହଲ

## ॥ ବିବାହିତା କନ୍ୟାର ଖେଦୋକ୍ତି ॥

ଶ୍ରୀମତୀ ହରପ୍ରିୟା ଦେବୀ

ପିତା ଧର୍ମ ପିତା ସ୍ୱର୍ଗ ପିତା ତପଃ ପର
ସେହି ପିତା ହେଲେ ମୋର ଜୀବନର ଅରି ॥
ଦଶମାସ ଗର୍ଭେ ଧରି ସହି ନାନା ଦୁଃଖ
ଆଜନମ ସ୍ନେହେ ପାଳି ସେହି ମାତା ଦେଖ ॥
କାହାର ମୋହିନୀ ମନ୍ତ୍ରେ ମୋହ ହେଲା ମନ
କେଉଁ ଇନ୍ଦ୍ର ଜାଲ ତାର ଘାରିଲା ନୟନ ॥

ହେଉଁ ସ୍ତୁର ପଦଘାତେ ଅକାରଣ ଭୁଲ
ମର୍କଟ ହସ୍ତେ ରମ୍ଭାଫଳ ଦେଲେ ତୋଳି ॥
ଜମି ଜମା ବୁନିଆଦି ଘରଦ୍ୱାର ବିକି
ଋଣଗ୍ରସ୍ତ ପିତା ମାତା ହାସ୍ୟ କଲେ ଏକି ? ॥
ବିଳାସୀର ହେବ ବୋଲି କେବଳ ବ୍ୟସନ
ଯୋଗାଇଲେ ଜୀବନକୁ ଜାଳିବା ଇନ୍ଧନ ॥

ପଦେ ପଦେ ସ୍ୱାର୍ଥ ଯା'ଙ୍କ ଅଟେ ସୂତ୍ରସାକ୍ଷୀ
ସ୍ୱାର୍ଥପାଇଁ ନିଜ ନାରୀ ପାରନ୍ତି ଯେ ବିକି ॥
ଅହଂକାରି ମଦେ ମତ୍ତ ହିଂସ୍ର ପଶୁ ଭଳି
ନ ଥିଲେ ହେଁ କିଛି ସେହୁଁ ପଦଗର୍ବେ ବଳୀ ॥
ଅସାର ସମ୍ମାନ ଲଭ ଆଶାରେ କେବଳ
ପ୍ରଭୁପଦ ଲେହନରେ ସର୍ବଦା ବିକଳ ॥
ଅନ୍ତରେ ବାହାରେ କାହିଁ ନାହିଁ ତିଳେ ଶୁଚି
ଗୃହସ୍ୟ ଦେବତା ଯାଙ୍କ ଭୟେ ଯାନ୍ତି ଲୁଚି ॥
ପର ଧନ ପରଘର ବୁଡ଼ା ମାତ୍ର ପଣ
ବ୍ୟବସାୟ ଅଟେ ଯାଙ୍କ ପର ସ୍ତ୍ରୀହରଣ ॥
ପର ପଇସାରେ ଦେଖାଇ ଯେ ବଡ଼ପଣ
ମନୁଷ୍ୟତ୍ୱରେ ଦିଅନ୍ତି ସଦା ଅପମାନ ॥

ମୋହ ମୁଗ୍ଧ ପିତା,ମାତା କି ମୋହରେ ପଡ଼ି
ଏହାଙ୍କ ହାତରେ ଦେଲେ ଅନ୍ଧର ଲଉଡ଼ି ॥
ଶବର କି କରି ଜାଣେ ମୁକ୍ତାର ଆଦର
ବାନର ଗଳାରେ ଶୋଭେ ନାହିଁ ରତ୍ନହାର ॥
ଦୁର୍ବଳ କି କନ୍ୟା ବସି କ୍ଷମତା ବୋଇତେ
କ୍ଷେପଣୀ ଚଳିବ ସୁଖ ସଂସାରର ସ୍ରୋତେ ?
ସୁବର୍ଣ୍ଣ ତଣ୍ଡୁଳେ ଅବା ଭକ୍ଷିବ ସେ ଅର୍ଦ୍ଧ
ନବପତ୍ରି ହେବ ତାର ସୁଦୀର୍ଘ ଜୀବନ ॥
ହାୟରେ ସ୍ନେହାନ୍ଧ ମୋର ଜନକ ଜନନୀ
ହୀରକ ଭ୍ରମେ କରକା ଧରିଲ ଯା ଭୁଲି ॥

ଆଜିର ଏ ଦୁନିଆଁରେ ଇନ୍ଦ୍ରଜାଲ ପରି
ମୁହୂର୍ତ୍ତିକେ ମିଳାଉଛି ସକଳ ଗୃହଶ୍ରୀ ॥
ଶାସିତ ନାହାନ୍ତି କେହି ଶାସକ ବା କିଏ ?
ବଳ ଯାର ଦୁନିଆଁ ତା' ପଛେ ପଛେ ଧାଏଁ
ବଳ କଉଶଳେ ଆଜି ରଜା ପରେ ପ୍ରଜା
ଉତ୍ତମେ ଦଳି ଅଧମେ ଟେକେ ଜୟଧ୍ୱଜା
କୋଟି କୋଟି ଜନତାର ନଉକରି କରି
କି ବଡ଼ିମା ଦେଖାଇବ ଜାମାତା ତୁମରି ॥

—*—

# ॥ ମାୟା ॥

**ସୌଦାମିନୀ ମହାନ୍ତି,** ରାଜାବଗିଚ୍ଚ

**ଚନ୍ଦ୍ର ଆସୁଛି...।** ରାତିର କାଳିମାକୁ ଚିରି ଚିରି ଚନ୍ଦ୍ର ଆସୁଛି। **ଆଦିମ,** ପୁରାତନ, **ଆଦୃତ** ଚନ୍ଦ୍ର। **ଅନେକ ମନରେ ଦୋଳାୟିତ** ପ୍ରଶ୍ନବାଚୀ ? ଏଁ... ଚନ୍ଦ୍ର ଆସିଯିବ ? ହଁ...ହଁ... ନଳଠା ଆକାଶ ପିଠିକୁ ଚନ୍ଦ୍ର ଆସିଯିବ। ଉଠ... ଉଠ...ସଜହୁଅ। ଆଉ ନିମିଷକ ପରେ ଜ୍ୟୋତ୍ସ୍ନାର ରଥଗୁଡ଼ିକ ଦୌଡ଼ିବାକୁ ଆରମ୍ଭ କରିବ। ଏଇ ବେଶ!

ନିରସିଆ ଜ୍ୟୋତ୍ସ୍ନା ସ୍ନାନ ପାଇଁ ? ଲଜରେ ଯେ ମୁଣ୍ଡ **ଟେକ** ହେଉନି.. । କୁମୁଦମା! କୁମୁଦମା !! ତୋ ନିଦ କ'ଣ ଭାଙ୍ଗିବ ନାହିଁ ? ଚନ୍ଦ୍ରପରା ଦୂତ ପଠାଇ ଡେଙ୍ଗୁରା ଦେଇ ଗଲାଣି। ମାନିନୀ,...ଏଥର ମାନ ଭାଙ୍ଗ...। ନାଁ...ନାଁ...ସେ କଥା ଶୁଣିବ ନାହିଁ। ଅଭିମାନରେ ସେ ସରି ଯାଇଛି।

ଚନ୍ଦ୍ର ଏଥର ଆସିଗଲାଣି। ଧରଣୀର ବକ୍ଷରେ ମାଳ ଆଲଟର ଇଶାରା। ଉତ୍କଣ୍ଠିତ ହୋଇ ଅପଲକ ନେତ୍ରରେ ମୁଁ ବସିଛି ତା'ର ବାଟ ଚାହିଁ। ଗଗନ ଓ ପବନରେ ଚନ୍ଦ୍ରର ଘୋଷଣା। ଇସ୍... ଏତେ ଫୁଲ ଝାଡ଼। ଟିକି ଟିକି ତାରା ଫୁଲର ଆଲୁଅ ଦପ୍ ଦପ୍ ହୋଇ ଉଠୁଛି। କୁଶଳୀ କାରିଗର ଖଞ୍ଜି ଦେଇଛି ଏ ଘୋଷଣା। ଚନ୍ଦ୍ର ଆସୁଛି...ହସର ପ୍ଲାବନ ବିଚ୍ଛୁରିତ ହୋଇ ଯାଉଛି ମଣିଷର ମନ ଭିତରେ।

କୁମୁଦମାର ଗ୍ରୁଡ଼ ଭିତରଟା ଥରି ଥରି ଉଠୁଛି। ଦେହରେ ବେପଥୁ। ଠିକ୍ ଏତିକି ବେଳରେ ଚନ୍ଦ୍ରର ମୁକ୍ତାଝରା ହସର କେତୋଟି ରେଖା ପଡ଼ିଗଲା କୁମୁଦମାର ଗ୍ରୁଡ଼ ଭିତରେ। ଶତ କଦମ୍ବର ରୋମାଞ୍ଚ ନେଇ କୁମୁଦମାର ଶରୀର ରୋମାଞ୍ଚିତ ହୋଇ ଉଠିଲା। ଅଭିମାନର ପେଡ଼ି ତାର ଭାଙ୍ଗି ରୁଜି ଧୂଳିସାତ୍ ହୋଇଗଲା। ଧଳା ପଣତ ଉହାଡ଼ୁ ଫିକ୍ କିନା ହସି-ଦେଲା ସେ। ଚନ୍ଦ୍ରର ଆଖି ସହିତ ତା ଆଖି ମିଶିଲା। ଲଜରେ ସେ ଅଣ୍ଟିକାଲା ତଳକୁ। ତରବର ହୋଇ ତାର ରୂପ ପଶରାକୁ ସଜାଡ଼ି ଦେଲା ସେ। ଏତେରୂପ... ଏତେ ମଧୁ...ଏତେ ଗନ୍ଧ...। ଫୁଲରାଣୀ ବେଶରେ କୁମୁଦମା ଦିଶୁଛି ସୁନ୍ଦର। ସସ୍ନେହ ଦୃଷ୍ଟିରେ ଚାହିଁ ରହିଛି ଚନ୍ଦ୍ର। ମଉଳିଆଳା ହୋଇ ଉଠିଲା କୁମୁଦମା ଜ୍ୟୋତ୍ସ୍ନାର ପରଶରେ। ମନ୍ଦ ସମୀରଣରେ ଚହଲି ଚହଲି ସରସୀର ଜଳରାଶି ନୂପୁର ନିକ୍ୱଣ ତୋଳିଲା କୁରୁକୁରୁ ହୋଇ। କୁମୁଦମାର ରୂପ ଛଟାରେ ଚନ୍ଦ୍ର ପାଗଳ। ତା' ଦେହର ତେଜ ଚତୁଃଗୁଣରେ ବଢ଼ିଯାଇ ଉଠିଲା।

ତା'ଣ ଅନତି ଦୂରର ସରସୀ କଡ଼ର ସୁନ୍ଦର୍ ଆ ଘାସୁଆ ଜାଗାରେ ଚକୋରଟିଏ ବସି ଚିଁ...ଚିଁ...କରି ପିଇ ଯାଉଛି ସେହି କିରଣରୁ କେଇଧାରେ। ତା'ର ମନ ପେଟ ସବୁଟା ପୂରି ଉଠୁଛି। ଦେହ ତା'ର ଉଲ୍ଲସି ଉଠୁଛି। ବିରହର ଚାବୁକ୍‌ରେ ସେ ହେଉଛି ମର୍ମାହତା। ଚନ୍ଦ୍ରକୁ ଚାହିଁ ଅନ୍ତର ତା'ର ବାହୁନି ଉଠୁଛି।

ରୂପା ଥାଳପରି ଚନ୍ଦ୍ର ଝକଝକି ଉଠିଛି ଗଗନରେ ମାଳିମା ଦେହରେ । ଥପ୍ ଥପ୍ ହୋଇ ଝରି ପଡ଼ୁଛି ରୂପେଲି ଜ୍ୟୋସ୍ନା । ଏଇ ଜ୍ୟୋସ୍ନାବିଧୌତ ରଜନୀ, ମନରେ ଭରୁଛି ମିଳନର ତୃଷ୍ଣା । ବୀଣାର ଝଙ୍କାର ପରି ପ୍ରାଣରେ ଛୋଟାଉଛି ମୂର୍ଚ୍ଛନା । ଗାର ଭୂମିର ତପ୍ତ ବାଲିରେଣୁ ଦେହରେ ଭରୁଛି ମାଦକତା । ମୂର୍ଚ୍ଛନାରେ କାତର ହୋଇ ସାଗର କୂଳ ହରଣ ପରି ଚଞ୍ଚଳ ହୋଇ ପଡ଼ୁଛି । ଚନ୍ଦ୍ରର ଆଗମନରେ ବକ୍ଷ ତା'ର ଫୁଲି ଫୁଲି ଉଠୁଛି । ପର ମୁହୂର୍ତ୍ତରେ ସାଗର ମନରେ ଜାଗିଛି ହିଂସାର ବହ୍ନିଶିଖା । କୁମୁଦିନୀ ଆଜି ଚନ୍ଦ୍ରର ମିଳନକୁ ସହି ପାରୁନାହିଁ ସେ ।

ରାଗରେ ଗର୍ଜି ଉଠିଲା ସାଗର । ଫୁତ୍କାର କରି ଉପରକୁ ଫିଙ୍ଗିଲା ତା'ର ଜଳରାଶି । ବଧିମହନ ପରି ମନ୍ଥି ହୋଇଗଲା ସାଗରର ସୁଷମା । ଗର୍ଜନରେ ଚମକି ପଡ଼ିଲା ଚନ୍ଦ୍ର । ଆଖି ଫେରାଇଲା କୁମୁଦିନୀର ଉପରୁ । ହସଇ କଲ୍ଲୋଳରେ କହିଲା ଚନ୍ଦ୍ର—"ଶାନ୍ତହୁଅ···ଶାନ୍ତହୁଅ···ସାଗର । ଏପରି ଅଧୈର୍ଯ୍ୟ କାହିଁକି ? ଥରେ ଚାହିଁଦେଖ···କାହାର ନିକଟରେ ମୋର ସ୍ନେହ ପ୍ଲାବନ ବେଶି । ତୁମର ଏହି ବିସ୍ତୀର୍ଣ୍ଣ ବକ୍ଷରେ ଯେ ନିଷ୍କଣ୍ଟକ ମୋର ରୂପେଲି ପର୍ଦ୍ଦା । କୁହତ··· ? କୁମୁଦିନୀ କ'ଣ ତୁମ ଅପେକ୍ଷା ବେଶି ସ୍ନେହର ଅଧିକାରୀ ହୋଇ ପାରିଛି ? ତୁମେ ଶାନ୍ତହୁଅ ସାଗରିକା···।"

ଏଥର ସାଗରର ବକ୍ଷରେ ହସର ଜୁଆର ଓ ଭଟ୍ଟା । ଖଳ ଖଳ ହୋଇ କହିଲା ସେ—"ହିଁ··· ହିଁ···ମୁଁ ଶାନ୍ତହେବି ଚନ୍ଦ୍ର । ତୁମେ ଆସ, ମୁଁ ମୋର ଏହି ନେଳୀ ପଣତ ଉହାଡ଼ରେ ତୁମକୁ ଲୁଚାଇ ଦେବି । କେହି ଦେଖି ପାରିବେ ନାହିଁ ତୁମକୁ ।"

ଉଚ୍ଛ୍ୱସିତ ହେଲା ସାଗରର ପ୍ରାଣ । ତରଙ୍ଗର ବାହୁକୁ ପ୍ରସାରିତ କରି ନାଚ ଉଠିଲା ଅଧୀର ହୋଇ । ବେଳାଭୂମି ଦେହରେ ପାଦ ପିଟି ପିଟି ସେ ଭରିଲା ଛନ୍ଦ । କିନ୍ତୁ···କିନ୍ତୁ ଚନ୍ଦ୍ର ହସୁଛି । ଗଗନର ଊର୍ଦ୍ଧ୍ୱରେ ରହି ପ୍ରେମର ବାହ୍ନୁଲାକୁ ଫିଙ୍ଗୁଛି ମନଇଚ୍ଛା ।

କିନ୍ତୁ···ଏଣେ କୁମୁଦିନୀର ନୃତ୍ୟର ଶୈଳୀରେ ଚନ୍ଦ୍ରର ଆଖି । ନୃତ୍ୟରତା କୁମୁଦିନୀର ପାଦ ସ୍ଥିର ହେଉଛି । ପ୍ରେମ ବାହ୍ନୁଲା ଆଘାତ ପାଉଛି କୁମୁଦିନୀର ରୂପ ଦେହରେ । ପ୍ରେମଶୀକାଣ୍ଡ ଗୁଡ଼ିକ ଫର୍ଫାର୍ ଉଡ଼ି ଆସୁଛନ୍ତି ତା'ର ଉପରକୁ । ଦଳ ଦେହରେ ଲୋଟିପଡ଼ି ମଧୁପାଇଁ ଅଳି କରୁଛନ୍ତି ସେମାନେ । ବ୍ୟତିବ୍ୟସ୍ତ ହେଉଛି କୁମୁଦିନୀ । କ'ଣ କରିବ ସେ । ନାଁ···କିଛି ଉପାୟ ନାହିଁ । ନିଜକୁ ସମର୍ପି ଦେବ ଚନ୍ଦ୍ର ନିକଟରେ ।

ସରଳା କୁମୁଦିନୀ କ'ଣ ବୁଝିପାରୁଛି ଚନ୍ଦ୍ରର ଦୁଷ୍ଟାମୀ । ଚନ୍ଦ୍ରକୁ ଦେଖିଲେ ଚକୋରୀ ପାଗଳୀ, ସାଗରିକା ପାଗଳୀ, ତାରକା ପାଗଳୀ, ଧରିତ୍ରୀ ଲତାକୁଞ୍ଜ ପାଗଳୀ, ଧରି ନିଜେ ମଧ୍ୟ ପାଗଳୀ, ଚନ୍ଦ୍ର ସମସ୍ତଙ୍କ ନିକଟରେ ହସୁଛି, ଖେଳୁଛି, ଆନନ୍ଦ ଦେଉଛି । ସେ ଏକା କ'ଣ କୁମୁଦିନୀର ହୋଇପାରେ ? ରୂପର ଦୁଷ୍ଟାମୀରେ ସେ ଆଜି ଦୁଷ୍ଟ । ମାୟାବିନୀ ଶର୍ବରୀର ପଣତ ଉହାଡ଼ୁ ଚନ୍ଦ୍ର ଯେତେବେଳେ ବାହାରେ, ସେତେବେଳେ ଦୁଷ୍ଟାମୀର ଉଚ୍ଚୁରେ ଗୁଡ଼େଇ ତୁଡ଼େଇ ହୋଇ ଅଣନିଶ୍ୱାସୀ ହୋଇ ପଡ଼ନ୍ତି ସମସ୍ତେ ।

ଚନ୍ଦ୍ର·· । ହର୍ଷ, ବିଷାଦ, ପ୍ରେମ ପ୍ରଣୟପୂର ଚନ୍ଦ୍ର । କୁମୁଦିନୀ, ସାଗରିକା, ତାରକା ଓ ଆକାଶର ଚନ୍ଦ୍ର । ସେ ଆସୁ···ଆସୁ ସବୁଦିନ ଭଳି । ଚଟଚୋଉ ଅମାବାସ୍ୟାର କାଳିମାରେ ଲୁଚି ଲୁଚି ଅଥବା କୁମାର-ପୂର୍ଣ୍ଣିମାର ଜ୍ୟୋସ୍ନାରେ ପହଁରି ପହଁରି । ମୁଁ ତାକୁ ସ୍ୱାଗତ ଜଣାଏ ।

—*—

# ॥ ପୁରାଣଯୁଗର ଛୁଆଁ ଅଛୁଆଁ ॥

ସତ୍ୟଭାମା ମିଶ୍ର

ଭାରତ ବର୍ଷରେ ସ୍ମାର୍ତ୍ତ ହିନ୍ଦୁମାନେ ଅସ୍ପୃଶ୍ୟତାକୁ ଧର୍ମଯାଜନର ଏକ ଅଚ୍ଛେଦ୍ୟ ଅଙ୍ଗ ବୋଲି ମନେକରି ମନୁଷ୍ୟଠାରୁ ମନୁଷ୍ୟକୁ ପରକରି ରଖୁଥିଲେ । ବୁଦ୍ଧଦେବଙ୍କ ଧର୍ମରେ ଅସ୍ପୃଶ୍ୟତା ନ ଥିଲା । ସେ ବେଦବିଧିକୁ ଓ ଯଜ୍ଞରେ ପଶୁବଧକୁ ନିନ୍ଦାକରି କରୁଣାର ଧର୍ମ ପ୍ରଚାର କରୁଥିଲେ । ସେହିପରି ରାମାନନ୍ଦ ଆଚାର୍ଯ୍ୟ, କବିର, ଗୁରୁନାନକ ମଧ୍ୟ ହିନ୍ଦୁଧର୍ମର ଶୁଷ୍କ ଆଚାର ବିଚାର ଭାଙ୍ଗିଦେଇ ହିନ୍ଦୁଧର୍ମ ପ୍ରଚାର କରିଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ବୈଷ୍ଣବ ଧର୍ମ ମଧ୍ୟ ଭାରତବର୍ଷରେ ହିନ୍ଦୁଧର୍ମର ମର୍ମାନୁସାରେ ପ୍ରଚାରିତ । ସେ ମନୁଷ୍ୟକୁ ମନୁଷ୍ୟରେ ବା ଅସ୍ପୃଶ୍ୟ ଭାବରେ ବିଚାର କରୁ ନ ଥିଲେ । ଆଚଣ୍ଡାଳ ଜୀବଜଗତ ପର୍ଯ୍ୟନ୍ତ ସବୁପ୍ରାଣୀମାନଙ୍କ ଭିତରେ ଶ୍ରୀକୃଷ୍ଣଙ୍କ ଅଧିଷ୍ଠାନ ରହିଛି ବୋଲି କହୁଥିଲେ । ଅତଏବ ସର୍ବଜୀବଙ୍କୁ ସମ୍ମାନ କରିବା ଓ କୃଷ୍ଣ ଅଧିଷ୍ଠାନ ଜାଣି ସର୍ବଜୀବଙ୍କୁ ପ୍ରଣାମ କରିବା ଉଚିତ୍ ବୋଲି ସେ କହୁଥିଲେ । ତାନ୍ତ୍ରିକାଚାରରେ ବଙ୍ଗଳାର ଲୋକେ ନାନାବିଧ ଅପକର୍ମ କରି ହିନ୍ଦୁଧର୍ମକୁ ନଷ୍ଟଭ୍ରଷ୍ଟ କଲାବେଳେ ଓ ମଦ୍ୟ ମାଂସ ନାରୀକୁ ଧର୍ମାଚାରର ଅଙ୍ଗ ଭାବି କୁକର୍ମରେ ଆସକ୍ତ ହୋଇ ସମଗ୍ର ହିନ୍ଦୁସମାଜ ଓ ଧର୍ମରେ ଗ୍ଲାନି ଆସିଲାବେଳେ, ହିନ୍ଦୁଧର୍ମକୁ ରକ୍ଷାକରିବା ପାଇଁ ଚୈତନ୍ୟମହାପ୍ରଭୁ ଉଦ୍ୟତାୟୁଧ ହୋଇଥିଲେ । ଭଗବାନଙ୍କୁ ଓ ମାନବିକତାକୁ ଛାଡ଼ି ବ୍ରାହ୍ମଣମାନେ ଲୋକାଚାର କୁଳାଚାରକୁ ଧର୍ମ ବୋଲି ଲୋକଙ୍କ ଉପରେ ଲଦି ଦେବାବେଳେ ଶ୍ରୀଚୈତନ୍ୟ ହିନ୍ଦୁଧର୍ମକୁ ସଂକୀର୍ଣ୍ଣତା, କୁସଂସ୍କାର କବଳରୁ ବଞ୍ଚାଇଲେ । ଯେ ହରିନାମ ଧରିଲେ ସେ ଯେକୌଣସି ଜାତିର ଲୋକ ହେଲେ ମଧ୍ୟ ସେ ସ୍ପର୍ଶୀ । ଏହି ମତରେ ହିନ୍ଦୁ ସନାତନ ସ୍ମାର୍ତ୍ତ ଧର୍ମରେ ବିପ୍ଳବ କରିବାରୁ ସେ ନବଦ୍ୱୀପରୁ ପୁରୀ ଆସିଲାବେଳେ ପୁରୀର ସ୍ମାର୍ତ୍ତ-ବ୍ରାହ୍ମଣମାନେ ତାଙ୍କୁ ଶାସନର ଗାଁ ଗଣ୍ଡାରେ ପୂରାଇ ଦେଲେନାହିଁ । ମନୁଷ୍ୟ ମନୁଷ୍ୟକୁ ଦୟା କରିବ, ସ୍ନେହ କରିବ, ଘୃଣାକରି ଅସ୍ପୃଶ୍ୟ କରିବ ନାହିଁ । କାରଣ ସମସ୍ତେ ଭଗବାନଙ୍କର ସନ୍ତାନ । ଏହି ଧର୍ମ ଆମ ପୁରୀର ଜଗନ୍ନାଥ ଧର୍ମ ଓ ସଂସ୍କୃତି । ତେଣୁ ଚୈତନ୍ୟଦେବଙ୍କ ଉଦାର ଧର୍ମ ହିଁ ଓଡ଼ିଶାର ଜଗନ୍ନାଥ ଧର୍ମ ବୋଲି ବୁଝିବାକୁ ହେବ ।

ଜଗନ୍ନାଥ କ୍ଷେତ୍ରରେ ବ୍ରାହ୍ମଣ-ହାଡ଼ିଙ୍କ ଭିତରେ ଭେଦନାହିଁ । ମହାପ୍ରସାଦ ଖାଇଲେ ସମସ୍ତେ ଶୁଦ୍ଧ ହୁଅନ୍ତି । ଜଗନ୍ନାଥଙ୍କଠାରେ ଉଚ୍ଚନୀଚ ଭେଦଭାବ ନାହିଁ । ଲକ୍ଷ୍ମୀ ଶ୍ରୀୟାଚଣ୍ଡାଳୁଣୀ ଘରେ ଭୋଗ ଖାଇଥିଲେ । ପୁରୀର ଏହି ଉଚ୍ଚ ନୀତରେ ଧର୍ମକୁ ମହାମାନବର ଧର୍ମ ବୋଲି କୁହାଯାଇଛି । ପୁରୀ-ରାଜା ମଧ୍ୟ ରଥଯାତ୍ରାବେଳେ ଚଣ୍ଡାଳ ବେଶ ଧରି ତିନି ଠାକୁରଙ୍କ ରଥ ଓଳାନ୍ତି । ଏହା ଅସ୍ପୃଶ୍ୟତାର ବିରୋଧ କରେ । ଏହି ପାରସ୍ପରିକ ଭିତ୍ତିରେ ଚୈତନ୍ୟ ଧର୍ମ ପ୍ରଚାର କରି ହିନ୍ଦୁଧର୍ମରୁ ଜାତିଭେଦ ଉଠାଇ ଦେଇଥିଲେ । ଏହି ଉଦାର ମାନବିକତା ଚୈତନ୍ୟ-

ଧର୍ମର ମୂଳଭିତ୍ତି ଓ ଏହି ଧର୍ମହିଁ ଭାରତର ଧର୍ମ ବୋଲି ଲୋକସ୍ୱୀକୃତ ପାଇଛି । ଗାନ୍ଧିଜୀ ମଧ୍ୟ ଏହି ଧର୍ମ ପ୍ରଚାର କରିଥିଲେ । ଗାନ୍ଧିଜୀ ଅସ୍ପୃଶ୍ୟତା ନିବାରଣ ଉପରେ ଦୃଢ଼ ପଦକ୍ଷେପ ନେଇ ଦେଶର ଅଧିକାଂଶ ସ୍ଥଳରୁ ଏହି ଅସ୍ପୃଶ୍ୟତାକୁ ଉଠାଇଦେବାକୁ ସକ୍ଷମ ହୋଇଥିଲେ । ଯେଉଁ ହରିଜନମାନଙ୍କୁ ଲୋକ-ସମାଜର ଅନ୍ତରାଳରେ କାଳଯାପନ କରିବାକୁ ଆଦେଶ ଦିଆଯାଉଥିଲା ବା ଆର୍ଯ୍ୟ ସମାଜରେ ପ୍ରବେଶାଧିକାର ନ ଥିଲା, ସେହି ହରିଜନମାନଙ୍କୁ ଗାନ୍ଧିଜୀ ପ୍ରଥମେ ନିଜର ପ୍ରିୟସଙ୍ଗୀ କରି ଲୋକ-ଲୋଚନକୁ ଆଣିଥିଲେ । ଗାନ୍ଧିଜୀଙ୍କର ଚିନ୍ତାଧାରା ଥିଲା ସମସ୍ତେ ଏକ ଈଶ୍ୱରଙ୍କର ସନ୍ତାନ । ଭାଇଠାରୁ ଭାଇକୁ ଅବହେଳିତ କରି ରଖିଲେ ସମାଜମଙ୍ଗଳ ଅସମ୍ଭବ । ଦେଶର ଉନ୍ନତି ପଥରେ ଏହା ଏକ ପ୍ରଧାନ ଅନ୍ତରାୟ ସୃଷ୍ଟି କରିବ । ଦୁଇଟି ହାତଥିବା ମନୁଷ୍ୟ ଯାହା କରିପାରିବ, ଗୋଟିଏ ହାତରେ ତାହା କରିବା ଅସମ୍ଭବ । ଦେଶର ଅଗଣିତ ଜନତା ଓ ମା ଭଉଣୀ-ମାନଙ୍କୁ ଗାନ୍ଧିଜୀ ଆହ୍ୱାନ କରୁଥିଲେ ଏହି ଅସ୍ପୃଶ୍ୟତା ନିବାରଣରେ ସାହାଯ୍ୟ କରିବାକୁ । କାରଣ ବ୍ରାହ୍ମଣ-ସମାଜ ଓ ନାରୀମାନେ ହିଁ ଅସ୍ପୃଶ୍ୟତା ନିବାରଣର ଘୋର ବିରୋଧୀ ଥିଲେ । ଗାନ୍ଧିଜୀଙ୍କର ଚିନ୍ତାଧାରା ଯେ କାର୍ଯ୍ୟକାରୀ ନ ହୋଇଛି ଏପରି ନୁହେଁ, ତଥାପି ଲୋକସମାଜର କୋଣ-ଅନୁକୋଣ ଅନୁସନ୍ଧାନ କଲେ ଦେଖାଯିବ ଯେ ଏପରି କୁସଂସ୍କାର ଏବେ ବି ମନୁଷ୍ୟ ମନରେ ପୂରି ରହିଛି । ଏ କୁସଂସ୍କାରକୁ ସମୂଳେ ବିନାଶ କରିବା ଦିଗରେ ଆଗ୍ରହୀ ହେବା ଆମ ଦେଶର ନାରୀମାନଙ୍କର ହିଁ ପ୍ରଧାନ କର୍ତ୍ତବ୍ୟ । ଏହି ଅସ୍ପୃଶ୍ୟତାକୁ ନେଇ ଆମ ପୁରାଣମାନଙ୍କରେ ଏକ ଗଳ୍ପ ରଚନା କରାଯାଇଛି । ତାହା ହେଲା ମହାଲକ୍ଷ୍ମୀପୂଜା ।

ମାର୍ଗଶିର ମାସ ପ୍ରଥମ ଗୁରୁବାର । ଶ୍ରୀୟା ଜାତିରେ ଚଣ୍ଡାଳୁଣୀ ହେଲେ ବି ତାର ନିଷ୍ଠା ଓ ସାଧନାକୁ ଏଡ଼ିଦେବାର ଶକ୍ତି ଜଗତ୍‌ମାତା ଲକ୍ଷ୍ମୀଙ୍କର ବି ନ ଥିଲା । ଶ୍ରୀୟା ଚଣ୍ଡାଳୁଣୀର ଅର୍ଚ୍ଚନାରେ ସନ୍ତୁଷ୍ଟ ହୋଇ ମହାଲକ୍ଷ୍ମୀ ଆଗେଇ ଆସିଲେ ଭକ୍ତର ମନ-ବାଞ୍ଛା ପୂର୍ଣ୍ଣ କରିବାକୁ । ଚଣ୍ଡାଳ ହାତରୁ ନୈବେଦ୍ୟ ଗ୍ରହଣ କରି ଥିବାରୁ ମହାଲକ୍ଷ୍ମୀଙ୍କୁ ମନ୍ଦିର ପ୍ରବେଶ ନିଷେଧ କରାଯାଇଥିଲା । ମହାପ୍ରଭୁ ଜଗନ୍ନାଥ ମନ୍ଦିର ଦ୍ୱାର ଅବରୋଧ କରି ଜଗତ୍‌ମାତାଙ୍କୁ ଗୃହତ୍ୟାଗ କରିବାକୁ ଆଦେଶ ଦେଇଥିଲେ । ସର୍ବ ଶକ୍ତିମାନ୍ ଜଗନ୍ନାଥ ଭଲଭାବରେ ଜାଣିଥିଲେ ଯେ ସୃଷ୍ଟି ନିଜର ସର୍ଜନା । ତାଙ୍କର ପ୍ରିୟ ସନ୍ତାନଗଣ କେବେ ଅସ୍ପୃଶ୍ୟ ନୁହଁନ୍ତି । ତଥାପି ଭାତୃଭକ୍ତିର ଆଦର୍ଶ ସୃଷ୍ଟି କରିବାକୁ ନେଇ ଅର୍ଦ୍ଧାଙ୍ଗିନୀଙ୍କୁ ତିରସ୍କାର କରି ବାରବର୍ଷ ଅନାହାରରେ କଟାଇଥିଲେ । ମହାଲକ୍ଷ୍ମୀ ନାରୀର ଦୁର୍ବଳତାକୁ ପ୍ରଶ୍ରୟ ନ ଦେଇ ନିଜେ ହିଁ ନିଜର ରକ୍ଷାକର୍ତ୍ତ୍ରୀ ହୋଇଥିଲେ । ମାତୃତ୍ୱର ସମ୍ମାନ ରକ୍ଷା କରିବା ଉଦ୍ଦେଶ୍ୟରେ ବିଶ୍ୱକର୍ମା ତୋଳି ଦେଇଥିଲେ ଏକ ସୁରମ୍ୟ ଅଟ୍ଟାଳିକା । ବାକ୍‌ଦେବୀ ପ୍ରତିକଣ୍ଠରେ ବିଜୟକରି ମହାଲକ୍ଷ୍ମୀଙ୍କର ଆଦେଶ ପାଳନ କଲେ । ଶେଷରେ ବଳଦେବଜୀ ନିଜର ଭୁଲ ବୁଝିପାରି ଲକ୍ଷ୍ମୀଙ୍କୁ ଫେରାଇ ଆଣିବାକୁ ଜଗନ୍ନାଥଙ୍କୁ ଅନୁମତି ଦେଇଥିଲେ । ମହାଲକ୍ଷ୍ମୀଙ୍କର ସର୍ତ୍ତଗୁଡ଼ିକ ବି ପୂରଣ କରିବାକୁ ଜଗନ୍ନାଥ ମହାପ୍ରଭୁ ପ୍ରତିଜ୍ଞାବଦ୍ଧ ଥିଲେ । ତାଙ୍କର ସର୍ତ୍ତ ଥିଲା ଶ୍ରୀକ୍ଷେତ୍ରରେ ଭେଦଭାବ ରହିବ ନାହିଁ । ଯେକୌଣସି ଜାତିର ପୂଜା ଅର୍ଚ୍ଚନାକୁ ଦେବଦେବୀ-ମାନେ ସାଦରେ ଗ୍ରହଣ କରିବେ । ସମସ୍ତେ ଏକ ଭଗବାନଙ୍କର ସନ୍ତାନ ହୋଇ ଥିବାରୁ ପରସ୍ପର ପରସ୍ପରକୁ ସ୍ନେହ ପ୍ରୀତିରେ ସନ୍ତୁଷ୍ଟ କରି ବିଶ୍ୱ ପ୍ରେମର ସମ୍ମାନ ରକ୍ଷା କରିବେ । ଚଣ୍ଡାଳକୁ ବ୍ରାହ୍ମଣ ଅସ୍ପୃଶ୍ୟ ନ ଭାବି ଭାତୃ ଭାବରେ ଗ୍ରହଣ କରିବା ଉଚିତ । ଲକ୍ଷ୍ମୀଙ୍କର ଏହି ସର୍ତ୍ତଗୁଡ଼ିକ ପୂରଣ କରି ଜଗନ୍ନାଥ ମହାପ୍ରଭୁ ନିଜର ପତିତପାବନ ନାମକୁ ସାର୍ଥକ କରିଛନ୍ତି ।

—*—



# ସାଲାଙ୍ଗୀଲାକା

**ଶ୍ରୀ କଳାଧର ସ୍ୱାଇଁ, ଏମ୍. ଏସ୍. ସି.**
ଆଦିବାସୀ ଗବେଷଣାଗାର
ଭୁବନେଶ୍ୱର

ଆମ୍ଭମାନଙ୍କ ଭଳି ଫୁଲବାଣୀର କନ୍ଧ ଆଦିବାସୀମାନେ ପ୍ରକୃତିର କରାଳ କବଳରୁ ମୁକ୍ତି ପାଇବାକୁ ଯାଇ ବିଭିନ୍ନ ପ୍ରକାର ପୂଜା ପଦ୍ଧତିରେ ବହୁ ଦେବାଦେବୀଙ୍କର ଉପାସନା କରିଥାନ୍ତି । 'ଗୁହାଳପୂଜା' ତନ୍ମଧ୍ୟରୁ ଗୋଟିଏ । ମୁଁ ୧୯୭୭ ମସିହାରେ ଫୁଲବାଣୀ ଜିଲ୍ଲାର ନୂଆଗାଁ ବ୍ଲକ ନିକଟସ୍ଥ ରାଜଗରି ଗ୍ରାମର ରାଜା ପ୍ରଧାନ ନାମକ କନ୍ଧ ଘରେ ଏହି ପୂଜାଟିକୁ ଦେଖିବାର ସୁଯୋଗ ପାଇଥିଲି ।

କନ୍ଧମାନେ ସେମାନଙ୍କର ଲିପିବିହୀନ କୁଇ ଭାଷାରେ ଗୁହାଳପୂଜାକୁ 'ସାଲଙ୍ଗୀଲାକା' ବୋଲି କହନ୍ତି । ( ସାଲଙ୍ଗୀ-ଗୁହାଳ, ଲାକା-ପୂଜା ) । ଉକ୍ତ ପୂଜାଟି ବର୍ଷରେ ଦୁଇଥର ଅର୍ଥାତ୍ ମାର୍ଗଶିର ଓ ଜ୍ୟେଷ୍ଠ ମାସରେ ପାଳନ କରାଯାଏ । କୁଇ ଭାଷାରେ ଦେବତାଙ୍କୁ 'ପେନୁ' ଓ ପୁରୋହିତ ବା ପୂଜକଙ୍କୁ 'ଜାନ୍ନି' କୁହାଯାଏ । ଏହି ପୂଜାଦିନ ଜାନ୍ନି ପ୍ରଥମେ ମାଟି ଦେବତା ( ଧରଣୀପେନୁ )ଙ୍କୁ ପୂଜାକରେ । ପୂଜାଲାଗି ଜାନ୍ନି ଶିଆଳୀପତ୍ର, ବଡ଼୍‌ହଫଳ, କାନ୍ଦୁଲଫୁଲ, ମାଣ୍ଡିଆ, ଅରୁଆ ଚାଉଳ ଆଦି ନେଇ ଧରଣୀପେନୁଙ୍କ ନିକଟରେ ଗୋଷେଇ କରିଥାଏ । ଘରର ସବୁଠାରୁ ବୟସ୍କ ପୁରୁଷ ଲୋକ ( ବୁଢ଼୍‌ଢ଼ା ), ଲାଙ୍ଗାଲପେନୁ ଅର୍ଥାତ୍ ପୂର୍ବପୁରୁଷଗଣଙ୍କୁ ଏବଂ 'ସିରପେନୁ' ( ଗୋଷେଇଘର ଦେବତା )ଙ୍କୁ ପୂଜା କରିଥାଏ । ଗାଈଗୋରୁ, ପୋଢ଼ ଆଦି ଗୃହପାଳିତ ପଶୁଙ୍କୁ ବନ୍ୟଜନ୍ତୁମାନଙ୍କ ଦାଉରୁ ରକ୍ଷା କରିବା ପାଇଁ ସେମାନେ ଏହି ପୂଜା ପାଳିଥାଆନ୍ତି ।

ପୂଜାର ପୂର୍ବଦିନ ସେମାନେ ଘରକୁ ଲିପାପୋଛି କରି ଲୁଗାପଟା ସଫାସୁତରା କରିବାରେ ବ୍ୟସ୍ତ ରହନ୍ତି । ପୂଜାଦିନ କନ୍ଧମାନେ ଗୋଷେଇ ଶାଳରୁ ସବୁ ରାନ୍ଧିବା ହାଣ୍ଡି ପଦାକୁ ବାହାର କରି ନୂଆ ମାଟିହାଣ୍ଡି ବ୍ୟବହାର କରନ୍ତି । ଜାନ୍ନି ପୂଜା ଶେଷ ହେବା ପର୍ଯ୍ୟନ୍ତ ଉପବାସ ଥାଏ । ପ୍ରତ୍ୟେକ ଘରେ ଘରର ବୁଢ଼୍‌ଢ଼ା ଏବଂ ସ୍ତ୍ରୀ ଲୋକମାନେ ମଧ୍ୟ ଉପବାସ ରହନ୍ତି । ସ୍ତ୍ରୀମାନେ ଗାଧୋଇ ଆସି ଗୋଷେଇ କରନ୍ତି । ଜାନ୍ନି ପୂଜାକାଳ ସମୟରେ ଧରଣୀପେନୁଙ୍କ ନିକଟରେ ନିମ୍ନଲିଖିତ ଶ୍ଳୋକଟି କୁଇ ଭାଷାରେ ଗାଇଥାଏ

"ଟାଡ଼ାପେନୁଡ଼, ବାସାପେନୁଡ଼, ଆଥାଜଆଡ଼, କରମଜଆଡ଼, କୋଡ଼ସିଆଡ଼, କୋରୁସିଆଡ଼, ଢନାପିଲ୍ଲିଆଡ଼, ଦେଶପିଲ୍ଲିଆଡ଼, ଜନାଗାଡ଼ଜଆଡ଼, ବସାଗାଡ଼ଜଆଡ଼, ଇହାକାନିଙ୍ଗା ଲାକାଇଞ୍ଜାନାମ୍ ଇଡାକାଇଞ୍ଜାନାମ୍, ପୁନିଦିନାବାଟା, ପୁନିପାଲି ସିପିକ୍ ଇଞ୍ଜାନାମ୍, ଇହିଙ୍ଗା ଆମୁ ଡିନାମୁ ଇଡ଼ନିଜଡାଡ ଇଞ୍ଜାନାମ୍ ।"

ଏହାର ଅର୍ଥ "ହେ ଭୂମିଦେବତା ! ତୁମେ ଆମକୁ ସୃଷ୍ଟି କରିଛ, ଆମର କ୍ଷେତ ଫସଲକୁ ବଢ଼ାଇଛ, ଗାଈ ଗୋରୁ ରକ୍ଷା କରିଛ, ତେଣୁ ଆମେ ନୂଆ ଫୁଲ ଫଳର ପ୍ରସାଦ ଦେଉଛୁ । ତୁମେ ତାକୁ ସାଦରେ ଗ୍ରହଣ କରି ଆମ୍ଭମାନଙ୍କୁ ଯାବତୀୟ ପ୍ରକାର ବିପଦରୁ ଉଦ୍ଧାର କର ।" ଚ୍ଛମ୍ବା ଦରଣୀ ପୂଜା କରିବା ପରେ ପ୍ରତ୍ୟେକ ପରିବାରର ବୁଢ଼ୁଢ଼ାମାନେ ଗୁହାଳପୂଜା ଆରମ୍ଭ କରନ୍ତି । ଗୁହାଳର ପୂର୍ବଦିଗକୁ ଗୃହିଁ 'ଲଙ୍ଗାଲପେନ୍' ଅର୍ଥାତ୍ ସାପ, ପୋଡ଼, ମଣିଷ, ଗାଈଗୋରୁ, ହାତୀ, ଘୋଡ଼ା, ଜନ୍ତୁଆଳୀ ପ୍ରଭୃତିର ଦରବ ରଖି ପୂଜା କରାଯାଏ । ଏହି ଦରବଗୁଡ଼ିକ ଏକ ବାକ୍ସ କମ୍ବା ପେଡ଼ିରେ ଥାଏ ଓ ବର୍ଷସାରା ଏ ପୂଜା ଦିନ ବ୍ୟତୀତ ଅନ୍ୟ ଦିନ ଗୁଡ଼ିକରେ ବାହାରକୁ ବାହାର କରିବା ନିଷେଧ । ଏହି ଦରବଗୁଡ଼ିକ ବନ୍ଦ-କରି ପେଡ଼ିରେ ରଖିଲାବେଳେ ମୁଠାଏ ଅରୁଆଚାଉଳ ରଖନ୍ତି ଓ ପୁନର୍ବାର ବାହାର କଲେ ଆଉ ମୁଠାଏ ଅରୁଆଚାଉଳ ରଖି ପୂର୍ବଟାକୁ ବାହାର କରି ଦିଅନ୍ତି । ଏହି ପୂଜାରେ ବୁଢ଼ୁଢ଼ା ଅରୁଆଚାଉଳ, ମଦ, ଅଣ୍ଡା, ଶିଆଳିପତ୍ର, ବଉଡ଼ିହ, ଆଦି ସାମଗ୍ରୀ ଦରକାର କରେ । ଗୁହାଳଦେବତା 'ସାଲ୍ଲପେନ୍ଙ୍କୁ' ଏକ କୁକୁଡ଼ା ବଳୀ ଦିଆଯାଏ । ଏହିଦିନ କାର୍ଯ୍ୟଗ୍ରାହୀ ତାର କେତେକ କୁଟୁମ୍ବ (ଗସି)ଲୋକ ତଥା ମୁଠା ମଲକମାନଙ୍କୁ ଡାକିଥାଏ କାରଣ ଏହି ପ୍ରଥା ବାଧ୍ୟତା ମୂଳକ ନୁହେଁ । ଏହି ପୂଜାପାଇଁ କୌଣସି ଗୋଟିଏ ଦିନର ନିର୍ଦ୍ଦିଷ୍ଟତା ନ ଥାଏ, ମାତ୍ର ମାର୍ଗଶିର ଓ ଜ୍ୟେଷ୍ଠ ମାସରେ କରିବାଟା ବାଧ୍ୟ । ଗୁହାଳରେ ବଳୀ ଦେଇଥିବା କୁକୁଡ଼ାର ମାଂସକୁ ସ୍ତ୍ରୀମାନେ ଛୁଇଁବା ମନା । ତେଣୁ ପୁରୁଷମାନେ ଭୋଜିକରି ଖାଆନ୍ତି । କନ୍ଧମାନଙ୍କର ବିଶ୍ବାସ ଯେ ଏଭଳି ପୂଜାଦ୍ୱାରା ସେମାନଙ୍କର ଗାଈ ଗୋରୁଙ୍କୁ ବନ୍ୟଜନ୍ତୁମାନେ ଆକ୍ରମଣ କରିବେ ନାହିଁ କି ପୂର୍ବପୁରୁଷମାନେ କୌଣସି ରୋଗ ଆଣିବେ ନାହିଁ । ବୁଢ଼ୁଢ଼ା ଲୋକ ପୂଜାବେଳେ ଉକ୍ତ ଶ୍ଳୋକଟି କୁଇ ଭାଷାରେ ଗାଏ ।

"ଡ଼ୁମାଲ ଗୌଡ଼େନ୍ତ, ସାରଦା ଗୌଡ଼େନ୍ତ,
ପ୍ରାକୁଡ଼ଙ୍ଗାଭାଇ ପ୍ରସୁନା ଝୁଟୁ ପ୍ରସୁନା,
ଛପାଜପ୍ପାମ୍, କ୍ଲାଡ଼ତାଙ୍ଗୀ, ଆଲ୍ଡାତାଙ୍ଗୀ,
ସ୍ରାପୁତାଙ୍ଗୀ, ପାନାତାଙ୍ଗୀ, ନାସାଜଆ,
ହାସାଜଆ, ନେକାଡ଼ାପ୍ପୀ, ଇଦୁତାଙ୍ଗୀ,
ଗୁଡ଼ତାଙ୍ଗୀ, ତାସାଜପ୍ପାମ୍ ।"

ଏହାର ଅର୍ଥ "ଡ଼ୁମାଲ ଓ ସାରଦା ଗୌଡ଼ ଦୁହେଁ ଉଲଗ୍ନବନରେ ଗାଈଙ୍କୁ ପେଟେପୁରାଇ ଚରାନ୍ତୁ । ସବୁ ଗାଈଙ୍କୁ ଘରକୁ ଆଣନ୍ତୁ । କୌଣସି ଗାଈ ଗୋରୁକୁ ବାଘ, ସାପ କମ୍ବା ସିଂହକୁ ଦିଅନ୍ତୁ ନାହିଁ । କପୁମିତ ଭାବରେ ସଦାସର୍ବଦା ଗାଈଗୋରୁଙ୍କୁ ଘରକୁ ଫେରାଇ ଆଣି ସେ ଗୁଡ଼ିକର ସଂଖ୍ୟା ବୃଦ୍ଧି କରାନ୍ତୁ ।"

ଏହା ବ୍ୟତୀତ ରୋଷେଇଘରେ ମଧ୍ୟ ଉକ୍ତ ବୁଢ଼ୁଢ଼ା ଲୋକ ପୂର୍ବପୁରୁଷଙ୍କ ଅଭିଶାପରୁ ରକ୍ଷାପାଇଁ ରୋଗ ମୁକ୍ତିପାଇଁ ଇଷ୍ଟଦେବତା 'ପିଦେରପିତା'ଙ୍କୁ ପୂଜାକରେ । ଏଠାରେ ମଧ୍ୟ ଏକ କୁକୁଡ଼ା ବଳୀ ଦିଆଯାଏ । ଶିଆଳିପତ୍ର ସାତଟା ଅଲଗା କରି ଅରୁଆଚାଉଳ, ମଦ ଓ ଅଣ୍ଡା ପ୍ରଭୃତି ରଖି କୁକୁଡ଼ା ରକ୍ତ ପକାଏ । ଏହି ପୂଜାକୁ 'ଟେକଙ୍ଗାଲକା' କହନ୍ତି । ରୋଷେଇ ଶାଳରେ ପୂଜାବେଳେ ବୁଢ଼ୁଢ଼ା ନିମ୍ନଲିଖିତ ଶ୍ଳୋକଟି ବୋଲେ ।

"ପୁନଦେନା, ପୁନଦେଣା, ଆଡେ ତାକମଗ୍ ପିନାମ୍ବ,
କୁଦ୍ଧ କୁଇଡ଼, ବଡ଼େନଜନା, ବାଲେଦାଇ ଆପାକାଗ୍,
କାଦକାରୁ, ବାଲେଦାଇ ଗ୍ରଲ ଆପାକାଗ୍ ।"

ଉପରଲିଖିତ ମନ୍ତ୍ରର ଅର୍ଥ "ହେ ପୂର୍ବପୁରୁଷଗଣ ! ଆମ୍ଭେ ତୁମ୍ଭଙ୍କୁ ଆମର ବାପା ଅଜାମାନେ ପୂଜା କଲାଭଳି ପୂଜା କଲୁ । ନୂଆବର୍ଷ ଆସିଗଲା ଏବଂ ଆମେ ହାଣ୍ଡି ବଦଳାଇ ପରିଷ୍କାର ହୋଇ ପୂଜା କଲୁ । ତୁମେ ଆମ ପ୍ରତି ଦୟାରଖି ପ୍ରତ୍ୟେକ କାର୍ଯ୍ୟରେ

ସାହାଯ୍ୟ କରିବ ବୋଲି ଆମର କାମନା ।" ଏହି ପୂଜାରେ ବଳୀ ପଡ଼ିଥିବା କୁକୁଡ଼ାକୁ ନେଇ ସ୍ତ୍ରୀ ଲୋକମାନେ ଭୋଜିକରି ଖାଆନ୍ତି । ପୁରୁଷମାନେ ଉକ୍ତଦିନ ଅନ୍ୟ କୌଣସି କାର୍ଯ୍ୟ କରିବା ନିଷେଧ । ମାର୍ଗଶିର ମାସରେ ଏହି ପୂଜା କରିସାରିବା ପର୍ଯ୍ୟନ୍ତ କନ୍ଧମାନେ ଧାନ ଅମଳ କରି ଘରେ ରଖନ୍ତି ନାହିଁ କି ଜ୍ୟେଷ୍ଠ ମାସରେ ଏହି ପୂଜା ନ କରି ବିହନ ବୁଣନ୍ତି ନାହିଁ । ଧାନ ବୁଣିଲାବେଳେ ଉକ୍ତ ମନ୍ତ୍ରଟି କନ୍ଧମାନେ ପାଠ କରିଥାନ୍ତି । "ପୂର୍ବ ଆକେଆବା, ଆଜା, ମିଲକା ମାସି ଡେଞ୍ଜି ଅମୁଲ୍‌କାଇନାମୁ, ନେକଦାଇଗଛି ଆପକାମୁ ବିହନଜନା, ବାଲେଦାଇ ଆପାକାସି ।

ଉପରଲିଖିତ ମନ୍ତ୍ରର ଅର୍ଥ "ହେ ପୂର୍ବପୁରୁଷମାନେ ! ଆମେ ବିଧିମୁତାବକ ପୂଜାକଲୁ । ଉପବାସ ପାଳନ କରି ସେଥିରେ ଭାଙ୍ଗି ବଦଳକଲୁ । ତେଣୁ ତୁମର ଶୁଭ ଦୃଷ୍ଟିରୁ ଆମର ବିହନ ଭଲ ଭାବରେ ଗଜାହେଉ । ତୁମେ ପୋକ ଜୋକ ହାତରୁ ରକ୍ଷା କରି ଆମକୁ ବେଶୀ ଧନ ଦିଅ ।" ଏହି ପୂଜା ସାମୂହିକ ଭାବରେ ପାଳନ ନ କରି ବ୍ୟକ୍ତିଗତ ଭାବରେ ପାଳିଥାନ୍ତି ଓ ଖର୍ଚ୍ଚାନ୍ତ ହୁଅନ୍ତି । ଧନୀ, ଗରିବ ଉଭୟେ ଏହାକୁ ପାଳନ କରି ନିଜ ନିଜର ଅଭିଳାଷ ପୂରଣ କରନ୍ତି । ଆମ୍ଭମାନଙ୍କ ଭଳି କନ୍ଧ ଭାଇଭଉଣୀମାନେ ମଧ୍ୟ ଅର୍ଥନୈତିକ ଜୀବନରେ ସଫଳତା ହାସଲ କରିବାକୁ ଯାଇ ସେମାନଙ୍କର ଦୈନନ୍ଦିନ ଜୀବନରେ ଖର୍ଚ୍ଚାନ୍ତ ହୋଇ ସୁଦ୍ଧା କୃଷି, ବାଣିଜ୍ୟ, ଶିକାର ଓ ଗୃହନିର୍ମାଣ ଆଦିରେ ଶୁଭ ମୁହୂର୍ତ୍ତ ଦେଖି ନାନାପ୍ରକାର ବିଧିବିଧାନ ପାଳନ କରିବାରେ ବ୍ୟସ୍ତ ରହନ୍ତି ।

ମୋଟଉପରେ କନ୍ଧମାନଙ୍କର ଅଗାଧ ବିଶ୍ୱାସ ଯେ ଏହି ପୂଜାବିଧି କରିବାଦ୍ୱାରା ସେମାନେ ସୁଖରେ ରହିବେ । ଗାଈଗୋରୁ ବିପଦରୁ ରକ୍ଷା ପାଇବେ ଓ ସେମାନଙ୍କର ସଂଖ୍ୟା ବୃଦ୍ଧି ପାଇବ । ପୂର୍ବପୁରୁଷମାନେ ଖପାହୋଇ କୌଣସି ଲୋକକୁ 'କାଇଲ' ଅର୍ଥାତ ରୋଗଗ୍ରସ୍ତ କରିବେ ନାହିଁ । ସାପ, ଭାଲୁ, ବାଘ, ସିଂହ ଆଦି ହିଂସ୍ରଜନ୍ତୁମାନେ ସେମାନଙ୍କୁ କିମ୍ବା ସେମାନଙ୍କର ଗାଈଗୋରୁଙ୍କୁ ଆକ୍ରମଣ କରିବେ ନାହିଁ । ଫସଲ ପୋକଜୋକରେ ନଷ୍ଟ ହେବନାହିଁ ଓ ଭଲ ଧରଣର ଗଜା ହେବ । ଧନଜନ ପୂର୍ବପୁରୁଷଙ୍କ ଶୁଭାଶିଷରୁ ବୃଦ୍ଧି ପାଇବ । ତେଣୁ କନ୍ଧମାନେ ବର୍ଷସାରା ବିଭିନ୍ନ ଦେବତାଙ୍କ ନିକଟରେ ଅଟଳ ବିଶ୍ୱାସ ରଖି ବିଭିନ୍ନ ପ୍ରକାର ପୂଜାବିଧିରେ ରତ ରହନ୍ତି ।

—*—

# ॥ ବେରେଦ୍ ବେରେଦ୍‌ମେ ॥

( ଆଦିବାସୀ ସାନ୍ତାଳୀ ଭାଷା )

ଶ୍ରୀ ରତନଚନ୍ଦ୍ର ଟୁଡ଼ୁ, ଗୋବିନ୍ଦପୁର

ବେରେଦ୍ ବେରେଦ୍‌ମେ ଏହୋ, ଆଦିବାସୀ
ମାସେ ବେରେଦ୍‌ମେ ଲଗନ୍ ଲଗନ୍
ଆଦିମ୍ ଜାଃତି ମେନ୍‌ତେ ଆଦିବାସୀ ଆଲ୍‌ଗେ
ଚେଦାଃ ଆଲ୍‌ଦ ଲିତାର ଜତ ହଳ୍‌ଖନ୍ ।
ମାଣାଂ ହଳ୍‌ଗେ ଯଖନ୍ ଜତ ହଳ୍‌ଖନ୍ ତାପୁମ୍
ବାରେମ୍ ଲିଜାଅ କାନା ହଳ୍‌ଠେନ୍ ଞେଁପେଲ୍
ଅରନ୍ ବରନ୍ ବରେମ୍ ଝାଣ୍ଡି ଗୁବାକେଆ
ଆରହୁଁମ୍ ବଲନ୍ ଆଲ୍‌ଦ ବିର୍ ଜଂଗଲ୍ ।
ବିର୍ ବୁରୁରେମା ମାର୍ଶାଲ୍ ବାନୁଃଆନା
ଦାରେ ଝୁଲ୍‌ତେ ଲେତାଳ୍ ଞୁତାଡ୍‌କଃଆ
ଞୁତ୍ କାଣାଂ କୁମ୍ବୁଂ ଚେଦ୍‌ହଁ ବାଂଗେ ଞେଲଃ
ମାର୍ଶାଲ୍‌ରେଦ ଜଛମ୍ ଉରୁମ୍‌କେଆ ।
ବିର୍ ବୁରୁରେମା ହର୍ ଡାହାର ବାନୁଃ
ଜାନୁମ୍ ଖଗୁ ଗଟା ପେରଜ୍ ଅକାନ୍
ଲଗନ୍ ତାଳାମ୍ ସାନାମ୍ ଜାଂଗା ପେରେଜ୍ ଜାନୁମ୍
ଚକାମ୍ ତାଳାମ୍‌କେଆ ଲଗନ୍ ଲଗନ୍ ।
ଯୁଗ୍ ସେଟେରେନା ହଳବ ଲଗନେନା
ଲଗନ୍ ଲଗନ୍ ଜତ କାମି ତାବ
ବାସ୍ ଲଗନଃଆ ଆଲ୍‌ଗେମ୍ ତାୟୁମଆ
ତାୟୁମ୍‌ରେଦ ଆଦ ଚକାୟୁାବ ।
ତାୟୁମ୍‌ରେମା ଖାଲି ଗୁଡ ଜୁନ୍ତୁ ଞାମଃ
ମାଗାଂରେସେ ଜୁନ୍ତୁ ମାଗାଂ ମେନାଃ
ମାଣାଂ ହଳ୍‌ଗେ ଇଖାନ୍ ଆଲ୍‌ଦମ୍ ତାପୁମେନା
ସେୟାନ୍ ବାଂଚେ ଆଲ୍‌ଦମ୍ ଛଟୁଏନା ।
ଆଲ୍‌ଖନ୍ ତାୟୁମ୍ ହଳ୍‌କ ଞେଲ୍‌କମ୍ ତିନାଃରେତାନ୍
ଜାପାଃ କେରେଦ୍ ଆଲ୍‌ଦ ଉନ୍‌କୁ ସୁରରେ
ଇନାଃ ବତର୍‌କଚେ ଇନାଃ ଲିଜାଅ କଚେ
ଉନ୍‌କୁ ଞେଲ୍‌ତେମ୍ ଉକୁନ୍ ଦାନାଂ କରେ ।
ବେରେଦ୍ ବେରଦ୍‌ମେ ଏହୋ ଆଦିବାସୀ
ମାସେ ବେରେଦ୍‌ମେ ଲଗନ୍ ଲଗନ୍
ବୁରୁ ଝୁଲ୍ ଞୁତ୍‌ରେ ତିନାଃ ଧନ୍‌ବାସ୍ ଜାପିଦ୍
ତାକା ବେରଦ୍ କଛାମ୍ ଜତ ହପନ୍ ।
ଏଭେନ୍ କାଚେ ମାସେ କଯୁଃ ଆଚୁରଲେମେ
ଜାନାମ୍ ଦିଶମ୍ ଆମାଃ ମାର୍ଶାଲ୍‌କାନ
ମାର୍ଶାଲ୍ ଦିଶମ୍ ରେମା ସାସ୍ତା ଲିଲେଗୁପେ
ଞୁତ୍ ବତର ଜତ ଗୁବା ହାକାନ୍ ।
ମାର୍ଶାଲେନା ଦିଶମ୍ ଚର୍ଗାଲ୍‌କାନ୍ ହଳ୍‌କ
ହାଁଶା ହାପିଦ୍ ଅଜୟୁ ବାନୁଃକଆ
ଆଲ୍‌ହଁ ବେରେଦ୍‌ମେ ଉନ୍‌କୁ ସାଙ୍ଗତେ ଲଗନ୍
ଚଲି ହଁଗେ ବାକ ଚକା ମେଆ ।
ନଓ୍ୱା ଦିଶମ୍ ମାତ ଆମେମ୍ ଛେଂଙ୍ଗେନ୍ ଲେଆ
ଆମାଃ ଯାଂଜା ଗଟା ପେଛେଜ୍ ଲେନା
ଅଉନ୍ ବଉନ୍ ଗାଜାଳ୍ ବିର୍ ଜଂଗଲ୍ ସାନାମ୍
ଦିଲ୍ ଦାଲେ କାଟେମ୍ ବଲଲେନା ।
ଅନା ଦିଲ୍ ଦତାମ୍ ଅକାୟେନା ହୋ
ଅନା ଦାଲେ ଦତାମ୍ ଉକୁରନାଃ

ହଲ୍ ଗୁବାଏନା ଦାଲେଁ ମୁଗୁଦେନା
ରଁହଲ୍ ହଲମ୍ ଖାଲ ପାଂଜାର ମେନାଃ ।
କାମି ଖାନେମ୍ ସାର ଜୁଲୁମ୍ ଖାନେମ୍ ଇଖାନ୍
ରହଲ୍ ହଲମ ହଁଡାମ୍ ସାଗରଆ
ଆମାଃ ସେଦାୟ୍ କାହେଦ୍ ବାଇ ବାଇତେ ଆର୍ ହଁ
ହଲ୍ ଦାଲେ ହଁଡାମ୍ ସେଟେରଆ ।
ଏହୋ, ଆଦିବାସୀ ବେରଦଃମେ ତବେ
ଆମାଃ ଜାନାମ୍ ଦିଶମ୍ ଆମାଃ ଲଗିଦ୍
ଜାନାମ୍ ଆୟୁ ଯଖନ୍ ବାମ୍ ସେବାଲେଖାନ୍
ଜାନାମ୍ ଦିଶମ୍ ଆମାଃ ହୁୟୁଃ ମୁସ୍କିଦ୍ ।

*

## "ବେରେଦ୍ ବେରେଦ୍‌ମେ"—(ଜାଗିଉଠ)

(ସାନ୍ତାଳୀ କବିତାର ଓଡ଼ିଆ ସାରାଂଶ)

ହେ, ଆଦିବାସୀ ! ଆଦିମ୍ କାଳରୁ ଏ ଦେଶରେ ତୁମର ବସତି ଯୋଗୁଁ ତୁମକୁ ଆଦିବାସୀ ଆଖ୍ୟା ଦିଆ ଯାଇଛି । ତୁମେ ଆଦିମାନବ: କିନ୍ତୁ କାହିଁକି ସମସ୍ତଙ୍କଠାରୁ ପଛରେ ପଡ଼ି ରହିଛ ? ଘୋର ଅରଣ୍ୟକୁ କାଟି ସଫାକରି ତୁମେ ଏ ଦେଶର ପାହାଡ଼ ତଳେ ପ୍ରଥମ ବସତି ସ୍ଥାପନ କରିଥିଲ । ଏ ଦେଶରେ ପ୍ରଥମ ମାନବ ସମାଜ ହିସାବରେ ତୁମର ତ କୌଣସି ବିଶେଷତ୍ୱ ଦେଖାଯାଉ ନାହିଁ ? ନିଜର ବ୍ୟକ୍ତିତ୍ୱକୁ ଫୁଟାଇବା ଦୂରେ ଥାଉ ତୁମେ ଆହୁରି ସେଇ ଅରଣ୍ୟର ଘଞ୍ଚ ତରୁଲତା ଛାୟାର ଅନ୍ଧକାରରେ ନିଜର ବ୍ୟକ୍ତିତ୍ୱକୁ ଆତ୍ମହତ୍ୟା କରୁଛ । ସେଇ ଅନ୍ଧକାର କ'ଣ ତୁମକୁ ଭଲ ଲାଗୁଛି ? ଅନ୍ଧକାରେ ତ କିଛି ଦେଖି ଯାଏ ନା । ସେଠି ଆଲୋକର ସନ୍ଧାନ ବି ମିଳେନା । ଆହୁରି ଘଞ୍ଚ ଜଙ୍ଗଲରେ ତ ସୁଗମ ପଥ ନାହିଁ । ସେଠିକାର ରାସ୍ତା ସବୁ କଣ୍ଟକିତ । ଏଣୁ ସେଠି ଚଞ୍ଚଳ ଚାଲି ହୁଏନା । ଯୁଗ ଆସିଛି ମଣିଷ ଚଞ୍ଚଳ ହୋଇ ପଡ଼ିଛି । କେହି ପଛରେ ପଡ଼ି ରହିବାକୁ ଚାହୁଁ ନାହିଁ । ପଛରେ ପଡ଼ିଲେ ଭାଗ କମ୍ ମିଳେ । ଏଣୁ ସମସ୍ତେ ଆଗକୁ ଚଞ୍ଚଳ ଚାଲିବାରେ ବ୍ୟସ୍ତ । ତୁମେ ବି ଜାଗି ଉଠ । ଆଉ ଲମ୍ବା ଲମ୍ବା ପାଦ ପକାଇ ସମସ୍ତଙ୍କ ସହିତ ତାଳ ଦେଇ ଆଗେଇ ଚାଲ । କେତେଦିନ ସେଇ ପାହାଡ଼ ତଳ—ଅନ୍ଧକାରରେ ଶୋଇ ରହିଥିବ ? ଜାଗିଉଠି ଥରେ ଚାହିଁ ଦେଖ । କେହି ତ ଶୋଇରହି ନାହାନ୍ତି । ତେବେ ତୁମେ କାହିଁକି ଶୋଇ ରହିଛ ? ତୁମେହିଁ ତ ହିଂସ୍ରଜନ୍ତୁ ପୂର୍ଣ୍ଣ ଘଞ୍ଚ ଅରଣ୍ୟକୁ ସାହାସର ସହିତ କାଟି ସଫାକରି ଏ ଦେଶରେ ପ୍ରଥମ ମାନବ ସମାଜ ସୃଷ୍ଟି କରିଥିଲ । କାହିଁ ସେ ସାହସ କାହିଁ ସେ ବଳ ? ଶରୀରରେ ସାହସ ଆଉ ବଳ ଅଭାବ ଯୋଗୁଁ ଖାଲି ପଶ୍ଚାତ୍‌ଗାମୀ ଦିଶୁଛ । ଜାଗି ଉଠ, ସେ ସାହସ ସେ ବଳ ଫେରାଇ ଆଣ । ତୁମର ଜନ୍ମ ମାଟି ତୁମକୁ ଅନାଇ ରହିଛି, ତୁମର ସେବା ପାଇବା ଆଶାରେ ।

—×—

# =କବିତା=

## ଏଇ ମୋର ଜୀବନର
## ବିଚିତ୍ର ତର୍ଜମା...!!!

ଜେନାକବ ମୁରଲୀମୋହନ

॥ ଏକ ॥

କାଉଁରିଆ କାଠି ଇଏ
ଭାଙ୍ଗିଯିବ ନଇଁବ ନାଇଁରେ...
ଏ ଜୀବନ କେବେ ପୁଣି ଖୋଜ ଲୋଡ଼ ନାଇଁ
କାହା ଦାନ-କାହା ଦୟା...
କାହାରିବା ଅଯାଚିତ କ୍ଷମା..
କିନ୍ତୁ ତୁମ୍ଭ...ଜାଣୁ ଭଲକରି
ଅତି ପ୍ରିୟ ପରିଚିତ...ଏଇ ମୋର
ଜୀବନର ବିଚିତ୍ର ଭଙ୍ଗିମା... !!!

॥ ଦୁଇ ॥

ତେଣୁ ଆଜି ଜୀବନର ପ୍ରତି ପଦେ ପଦେ
ଜୀବନର ଘାତ ପ୍ରତିଘାତେ...
ସବୁ ମୋତେ ଭୁଲ୍ ବୁଝିଲେରେ...
ଯାହାପାଇଁ ଅଜାଡ଼ିଲି ଶ୍ରାବଣର
ଅମାନିଆ ବର୍ଷାଧାରା ପରି...
ଏ ନୟନୁ ବାର ବାର ଲୁହ...
ଯାହାପାଇଁ ଛାତିକୁ ପଥର କରି
ସବୁ ନିନ୍ଦା...ସବୁ ଅପମାନ...
ସମ୍ବାଳରେ ବୁକୁଫଟା କୋହ ଖାଲି
କୋହ... !!!
ସେ ସମସ୍ତେ ମୋତେ କଲେ ପର
ଯାହାକୁ ମୁଁ ମଣିଥିଲି...
ଏଇମାନେ ମୋ ସର୍ବସ୍ୱ—ଏଇମାନେ
ମୋହର ନିଜର... !!!

॥ ତିନି ॥

ତେଣୁ ଆଜି ଜୀବନର ବଡ଼ଦାଣ୍ଡେ
ଠିଆହୋଇ ଯେତେବେଳେ ମୁଁ ଇଚ୍ଛିଲି
ଚଳିବାକୁ ଜୀବନ ରଥକୁ...
ମାୟା ଆଉ ମମତାର ଦଉଡ଼ିରେ
ଏଠି ଭିଡ଼ି ଭିଡ଼ି...
ସେତେବେଳେ ମେଳବାନ୍ଧି
ବନ୍ଧୁ ଓ ବାନ୍ଧବ...
ଈର୍ଷ୍ୟା ଛୁରୀକାରେ ଟିକି ଟିକି
କାଟିଦେଲେ...ସେ ଦଉଡ଼ି
ତାହା ଗଲା ଛିଡ଼ି...
ତଥାପି...ତଥାପି
ଏଥିପାଇଁ ଦୁଃଖନାହିଁ ତିଳେ କ୍ଷୋଭନାହିଁ
କିନ୍ତୁ ମୋହ ଅଜାଣତେ ପୁଣି
ମୋହରି ପଛରେ ତାଙ୍କ ନିନ୍ଦା ତାଙ୍କ ଅପମାନ
କେବଳ ବାଧୁଛି...
ବାଘ କାମୁଡ଼ାଠୁଁ ବାଘର ଘୋଷଡ଼ା ତୁହାଇଁ ତୁହାଇ

॥ ଚାରି ॥

କେବଳ ଏତିକି ନୁହେଁ
ଆସିଛନ୍ତି ଦଳେ ଦଳେ...

ମୋ ଦାରିଦ୍ର୍ୟ ପଳେପଳେ
କରିବାକୁ ଏଠି ଉପହାସ···
ମୋତେଇ ଅଯୋଗ୍ୟ କହି କରିଛନ୍ତି ଅତ୍ୟନ୍ତ
ଧିକକାର
ଯେ ହେତୁ ନାହିଁରେ ମୋହର ବୋଲ
ଟଙ୍କା ସୁନା କୋଠାବାଡ଼ି ଗାଡ଼ି ବା ମଟର···
ତାଙ୍କର ଏ ସବୁ ଯୁକ୍ତି···ତାଙ୍କର ଉକ୍ତିକୁ
ଯିଏସିଏ ହେଉପଛେ ମୁଁ ମାରିଛି ନଧୂମ ଗୋଇଠା
ଅତି ଦମ୍ଭେ ତାଙ୍କର ସାମ୍ନାରେ···
ଘୋଷଣା କରିଛି, ସେଥିରେ ଅଛି କି ବନ୍ଧୁ
ଜୀବନ ପିଠାରେ ପୁଣି ଜୀବନର ମିଠା···

## ॥ ପାଞ୍ଚ ॥

ପୁଣି ବି କହୁଚି···
ଧନ ଝାଲି କମେଇଲେ
ଗାଡ଼ି ଆଉ ମଟର ଚଢ଼ିଲେ
ନଭସ୍ପୃଶୀ କୋଠାବାଡ଼ି କଲେ
ମଣିଷତା ସେଠି ଫୁଟେ ନାଇଁ
ବରଂ ସେଠି ମଣିଷର ମଣିଷତା ଲୋପ ପାଇ
ପଶୁତ୍ୱ ରାଜତ୍ୱ କରେ···
ତାର ଯେତେ ସାଙ୍ଗସାଥି
ବଡ଼ ବେଶୀ ଅବିବେକକତା
ଗୋଟାଇ ପୋଟାଇ···

## ॥ ଛଅ ॥

ତେଣୁ କହେ ଆଜକାର
ଏଇ ଆମ କୁବେର ସମାଜେ
ଯେତେ ଯେତେ ଆମଭଳି ବୃହସ୍ପତିଙ୍କର
ଯଥେଷ୍ଟ ଯଥେଷ୍ଟ ଅଛି···
ବଞ୍ଚିବାର ଯେତେ ଆମ ଏଠି ହକ୍ ଦାବୀ
କାହିଁକି ନା ଆମର ଏ···
ମଣିଷତା ଭରପୂର ଜୀବନର କୋଠରୀରେ
ପରଚଣ୍ଡି କଟା ଏଇ ଖଣ୍ଡଦଳ ଧନିକ ସମାଜ
ଠୁଙ୍କିଦେଇ ପାରିବେନି କେବେ ତାଲଗୁଡ଼ିକ··· !!!

## ॥ ସାତ ॥

ଏଇପରି ଆମେ ଯେତେ
ଆମର ଏ ନିଶ୍ୱାସରୁ
ଆମର ଏ ପ୍ରଶ୍ୱାସରୁ
ଜନ୍ମ ନେବ ଯେ ମାନବିକତା
ସେ ମାପିବ ଏଠି ସବୁ ମଣିଷର
ମଣିଷ ଓ ପଶୁର ପ୍ରକୃତି ଖାଲି କଥା କଥା···
ଶୁଣାଇବ ମଣିଷର ମଣିଷତା ଯଦି କିଛି ଥାଏ
ତା'ର ଏଠି ଚରମ ଓ ପରମ ସତ୍ତ୍ୱତା···
ଏଇ ହେଲା ଆଜ ମୋର
ଜୀବନର ହତଭ ତର୍ଜମା···
ଏଇ ସତ୍ୟ ଏଇ ସାଧନାରେ···
ମୁଁ ସହୁଚି ବହୁଥିବା ଜୀବନର ଝଡ଼···
ମିଥ୍ୟା ଛଳେ ନାହିଁ କଂଧୂ ଜମା···
ଯେନପାର ନ ଯେନ ବି ପାରୁ···
ଏ ଜୀବନ ଦୁରନ୍ତ କାହାଣୀ···
ଏ ମୋର ଚରମ ପନ୍ଥ···ଏଇ ମୋର
ଜୀବନର ବନ୍ଧନ ଗୃହାଣୀ··· !!!

—୦—

# ॥ କାଳ-ଭୈରବୀ ॥

ତୁଳସୀ ଦାସ

ନିଃସ୍ୱର ହାତଗୋଡ଼ ବାଂଧିଦେଅ
ବାଂଧିଦଅ ପ୍ରଭୁ,
ଭାଂଗିଦଅ ସମୟର କଟି-କିଙ୍କିଣୀକି
ଶୁଣାଅନ ଘଡ଼ିଘଡ଼ି କାଳର ଭୈରବୀ
ବେଦନାର ବତ୍ତୀ ଜାଳନାହିଁ ଦକାଦକା...

ଜୀବନର ଜୟ-ଯାତ୍ରା ହେଉ ଶୁଭମୟ
ବ୍ରହ୍ମାନନ୍ଦ ବପୁ ପୁଣି ନବମୟ ରଖ
ଅଶ୍ରୁର ସାଗର ତୀରେ, ବଘ୍ନ ବଡ଼ଦାଣ୍ଡେ
ଗଡ଼ାଅନ ଜୀବନର ନନ୍ଦିଘୋଷ ଚକ...

ଚନ୍ଦ୍ରାଙ୍କୁ ବିଭ୍ରାନ୍ତ ପୋଛ, କାଳ ପାପଚକ୍ରା
ମନ ମନ୍ଦାକିନୀ ବାଂକେ, ଅସ୍ପୃଶ୍ୟା ସହିତ
ବିଷକୁମ୍ଭ ପୟୋମୁଖ, କରନାହିଁ କେବେ
ଅମନୀଷ କବିତା ବି ନ ହେବ ଉଚିତ ।

---



# ॥ ମୋ ମନ ଅରଣ୍ୟ ॥

ଅଧ୍ୟାପକ ରାମଚନ୍ଦ୍ର ରାଉତ
କେଉଁଝର

ମୋତେ ଭଲଲାଗେ ନାହିଁ ଉପବନର ଛବି
ମୁଁ ଶ୍ୟାମକାନ୍ତ ଅରଣ୍ୟର କବି ।

ଯିବ ମୁଁ ଅରଣ୍ୟରେ ପଶି
ଯେଉଁଠି ଶ୍ୟାମଘନ ହସି ଶ୍ୟାମଳ ସାବ୍‌ଜା ସ୍ୱର୍ଗରଚ
ଶୁଣୁଛି ଝର୍ଝରର ବଂଶୀ...
ଯେଉଁଠି ମୃଗୁଣୀର ଶିଶୁ
ଓ ଚମ୍ରୀ ଗାଈର ପିଲା
ଖେଳୁଛନ୍ତି ଲୁଚକାଳି ।
ଯେଉଁଠି ହସ୍ତିନୀର ମଦ
ଭାଂଗିଯାଏ ଶୁଣି ଶୁଣି ବଣ ମୟୂରୀର ଗୀତ—
ମୁଁ ଶୁଣିବି ସେଠି ହରିତ ମେଘର ହାର୍ମୋନ
ଝରଣାର ଜଳ ତରଂଗ ଓ
ହସ୍ତିନୀର କାମାର୍ତ୍ତି କାହାଳୀ ।

ମୁଁ ଦେଖିବି ଶାଳ ପିଆଶାଳ ଚନ୍ଦନ ଗଛର ଦୋସ୍ତି
ଛଂଦାଛଂଦ ଡାଳ ପତ୍ର, ଫୁଲ ଫଳର ପ୍ରୀତି ।
ଆକାଶର ତଂବୁ ତଳେ ବନସ୍ତର କୁଟୁଂବ
ତଳେ ଶୁଷ୍କ ପତ୍ରର ନରମ ଶେଯ—
ମଝିରେ ମୁଁ ଅବାଚନ ବଂଧୁ ଡମ୍ବିଖି ବଣର
ମନରେ ମୋ ଅସଂଖ୍ୟ ମଲ୍ଲଂଗର ବୋଝ ।

ବେଳେ ବେଳେ ଏଥି ହସ୍ତିର ନାସିକାରେ ଏଂଡୁଅ ।
ଅବା ମୃଗୁଣୀ ଯୂଥରେ ବାଘପିଲାର ଅନୁପ୍ରବେଶ ।
ଜଙ୍ଗଲର ହୃତ୍‌ପିଣ୍ଡରେ ଥରେ ଥରେ
ଶ୍ୱେନ ଶିବାର ଗର୍ଜନ ।

ମୁଁ ବଣର କୁଣିଆ ମଲଂଗ ଆତ୍ମୀୟ
ମୋର ସେଥିରେ ଯାଏ ଅବା କ'ଣ ?
କେବେ ଯଦି ମୋ' ଆଖିରେ ପଡ଼େ
ଚମତ୍କାର କୃଷ୍ଣ ଲଂଜ ଅବା ହରିଣୀର ନୀଳଭୂରୁ ଆଖି
ଏବଂ ହସ୍ତିନୀର ପେଟତଳ ବହଳିଆ ଚର୍ବି—
ମୁଁ ହାତଟେକ, ଆଖିବୁଜି ଖାଲି, ହାଇମାରି ଭଡ଼ମୋଡ଼ ହେବ ।

ଅରଣ୍ୟର ବତାସ ନିଶ୍ୱାସରେ ଯଦି
ଉଡ଼ିଯିବ ମୋର ସେଇ ବଣ ମଲଂଗର ପ୍ରୀତି—
ବହଳ ଘାସର ଚେଉଳ ପିଠିପରେ
ମୁଁ ଚାଲିବି ପାଦ ଥାପି ଥାପି,
ହାବଡ଼ା ପଥର ଜଟିଳତାରେ ଲେଖି ଲେଖି ମୋର ଉପସ୍ଥିତି ।'

ତା'ପରେ ଫେରିବ ଯଦି ନିଜ ଗୁମ୍ଫାରେ—
ମୋ ଆକାଶ ଜଂଗଲରେ ଅନ୍ଧାର ଘୋଟିବ
ପରସ୍ତ ପରସ୍ତ ଅତୀତର ବର୍ଷା ଲଭିଯିବ ।

ଶୁଆ ଶାଖାର ଡଂବ ଚୂରିବ ମୁଁ
ହସ୍ତିନୀର ବହଳ ଗର୍ଭରେ
ଡିଂବସ୍ଥ ବଣର ରସ ପାନ କଲା ପରେ ।

---



ସବୁବେଳେ ବାମ ଦିଗକୁ ମାଡ଼ି ଚାଲନ୍ତୁ ।

## ଭାରତ-ଭାରତୀ [ ଅସମୀୟା ]

# ॥ ସେଇ ରହସ୍ୟ ନୀଳ ଧୁତୁରା ॥

ନୀଳମଣି ଫୁକନ

ଚୟନ ଓ ଅନୁବାଦ ସୁକାନ୍ତା ପ୍ରିୟଂବଦା

ଅହରହ ମୁଁ ସେଇ ଆବହମାନ ରହସ୍ୟର ଅନୁସନ୍ଧାନ କରୁଛି

ପୃଥିବୀର ଅତଳ ଗର୍ଭରେ ପ୍ରସ୍ଫୁଟିତ ଶାଶ୍ୱତ ଏକ ବିରାଟ
ନୀଳ ଧୁତୁରା,
ସେଇ ରହସ୍ୟ

ଶାଶ୍ୱତ ଏକ ବିରାଟ ନୀଳ ଧୁତୁରାର ମୁଁ ଅନୁସନ୍ଧାନ କରୁଛି;
ତା'ର ଗର୍ଭରେ ମୁଁ ଲୀନ ହେବାକୁ ଚାହେଁ,
ଯେଉଁଠି ଅଦୃଶ୍ୟ ହୋଇ ରହିଛି ଅସଂଖ୍ୟ ରକ୍ତାକ୍ତ ଶବର ଶଙ୍ଖ,
ଶଙ୍ଖ ଭିତରେ ଚିରନ୍ତନ ମାନବ-ହୃଦୟର ନିଭୃତ ଦୁଃଖ

ନୀଳ ଧୁତୁରା
ସେଇ ରହସ୍ୟ

ଶବର ଶଙ୍ଖ
ସେଇ ରହସ୍ୟ

ନିଭୃତ ଦୁଃଖ
ସେଇ ରହସ୍ୟ

ଅହରହ ମୁଁ ସେଇ ଆବହମାନ ରହସ୍ୟର ଅନୁସନ୍ଧାନ କରୁଛି ।

---

[ ମୂଳ କବିତାର ଉତ୍ସ : ଆସାମର ପ୍ରଖ୍ୟାତ କବି ଶ୍ରୀ ନୀଳମଣି ଫୁକନଙ୍କ ଅଧୁନା ପ୍ରକାଶିତ କାବ୍ୟ ଗ୍ରନ୍ଥ 'ଆରୁ କି ନୈଶବ୍ଦ'ରୁ କବିତାଟି ଗୃହୀତ । ସୁ. ପ୍ରି. ]

—o—



## ॥ ସ୍ମୃତିର ସଂଳାପ ॥

**ରମାକାନ୍ତ ବେହେରା,** ରାଧାନାଥ ଟ୍ରେନିଂ କଲେଜ

ସେ ଯେ ଏମିତି ଭୁଲ କରିପାରେ ଏ ବିଶ୍ୱାସ ମୋର ନ ଥିଲି···ମୁଁ ବେଶ୍ ଜାଣିଥିଲି ସେ ମୋତେ ଭୁଲ ବୁଝି-ପାରେନା ...କିନ୍ତୁ ଅକାଳରେ ସେ ଯେ ଝାଉଁଳି ପଡ଼ିବ ଏଇ ସାମାନ୍ୟ କଥାପାଇଁ—ଆଶ୍ଚର୍ଯ୍ୟ ଅବଶ୍ୟ ! ତେବେ ଏ ପାଇଁ ମୁଁ ଯେ ଦାୟୀ ନୁହେଁ ବା ମୋର ଯେ କିଛି ଦୋଷ ନାହିଁ ତାହା ନୁହେଁ...ମଞ୍ଜୁ ତ ଏ ପାଇଁ ମୋତେ ଦୋଷଦେଇ ନ ପାରେ—ଯୁକ୍ତି ଦେଖାଇ ମୁଁ ମଧ୍ୟ ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରିପାରେ; କିନ୍ତୁ ଯୁକ୍ତିର ଊର୍ଦ୍ଧ୍ୱରେ ହୃଦୟର ଯେଉଁ ଅସ୍ପଷ୍ଟ ଅନୁଚ୍ଚାରିତ ଅନୁଭୂତି ଅଛି, ତା ନିକଟରେ ମୁଁ କେବେ ନିଜକୁ ନିର୍ଦ୍ଦୋଷ ବୋଲି କହି ପାରିବିନି...ସରଳ ଗାଉଁଲି ଝିଅର ହୃଦୟକୁ ମୁଁ ବେଶ ଷ୍ଟଡ଼ି କରିପାରିଛି ବୋଲି ମୋର ଇଂରାଜୀ ଶିକ୍ଷିତ ମନର ଯେଉଁ ଅହମିକା ଥିଲା, ତାହା ସମ୍ପୂର୍ଣ୍ଣ ଭୁଲ ବୋଲି ମଞ୍ଜୁ ପ୍ରମାଣ କରିଦେଇଗଲା—କାରଣ ମୋର ଧାରଣାଥିଲା ମଞ୍ଜୁ ଭଳିଆ ସ୍ୱଳ୍ପ ଶିକ୍ଷିତ ଗାଉଁଲି ଝିଅ ମନରେ ଏତେ ଭାବ, ଏତେ ଅଭିମାନ ଥାଇ ନ ପାରେ···ସେ ଠିକ୍ ବନଫୁଲ ବନେଫୁଟି ମନେ ମନେ ମଉଳେ, ସହରର ବଗିଚାର ରଙ୍ଗଛଟା ମହକ ଆସିବ କେଉଁଠୁଁ ? ସେମାନେ କେବଳ ଜୀବନକୁ ଉପଭୋଗ କରିପାରନ୍ତି ମରହଟ୍ଟୀକାଳିଆ ରାଗ ଅଭିମାନ ଭିତରେ, ଅନ୍ୟ ଜୀବନର ସମସ୍ତ ଉଚ୍ଛଳ ପ୍ରବାହକୁ ଅମୃତର ଆସ୍ୱାଦ ଦିଅନ୍ତି କଲେଜ ଶିକ୍ଷିତା ମିସ୍ ଇନ୍ଦିରା ଭଳି ସହରୀ ଝିଅମାନେ······ ।

କିଶୋର ଜୀବନରେ ମୁଁ ଯେବେ ଗାଁ ସ୍କୁଲ ଛାଡ଼ି ହାଇ-ସ୍କୁଲରେ ପାଦଦେଲି, ସେତେବେଳେ ମୋର ପିଲାଳିଆ ମନ ପ୍ରଜାପତି ଭଳି ବେଶ୍ ରଙ୍ଗୀନ୍ ଥିଲା···ସ୍ୱଭାବତଃ ହାଇସ୍କୁଲ ପିଲାଙ୍କ ଯାହା ହୋଇଥାଏ···ବେଶ ପୋଷାକ, ମୁଣ୍ଡର ଫ୍ଲେନ୍ଟ୍ ବାଳ, ଟେରିଲିନ୍-ଟେରିକୋର ଟି-ସାର୍ଟ, ନାରୋକଟ୍ ବଟମ୍‌ଲେସ ଷ୍ଟାଇଲ୍ ସହ ସଯତ୍ନ ସଚେତନ ଭାବରେ ନିଲିପ୍ତ ଦାର୍ଶନିକ ଗୃହାଣୀର ଆଦବ କାଇଦା ଯାହାକିଛି ସହରୀ କଲେଜରୁ ଝିଟ୍‌କି ଆସୁଥାଏ, ଧୀରେ ଧୀରେ ମୁଣ୍ଡରେ ପୂରୁଥାଏ···ତା' ଛଡ଼ା ପୃଥିବୀର ସୁଖ ସମ୍ପଦର ଗନ୍ତାଘର ଯେପରି କେବଳ ଆମପାଇଁ ପ୍ରତୀକ୍ଷା କରିଥିଲା···ଖାଲି ସ୍କୁଲ କଲେଜ ଡେଇଁ ବିବାହ ପରେ 'ଆଲିବାବା' ଭଳି ସେ ସମ୍ପଦର ଗନ୍ତାଘର ଖୋଲିପାରିବା—ମନରେ କେତେ ଆଶା··· କେତେ ଆକାଂକ୍ଷା ବୟୋପୋଚିତ ସମସ୍ତ କିଛି ଭାବନା··· ସହଳ ଯୌବନର ଶିହରଣ ବସନ୍ତ କୋଇଲିର ମନଛୁଆଁ କୁହୁ ସମସ୍ତ କିଛି ଜମାଟ୍ ବାନ୍ଧି ଆସୁଥାଏ ଆପଣା ଛାଏଁ···କେତେ ପ୍ରତୀକ୍ଷା···କିନ୍ତୁ ହାୟ ! ମୋର ବହୁ ପ୍ରତୀକ୍ଷିତ ସେ ଗୁଞ୍ଜରିତ ବସନ୍ତ ପ୍ଲାବନର ହଠାତ୍ ଭଟ୍ଟା ଆସିଲା, ଯେତେବେଳେ ନିଜକୁ ମୁଁ ଆବିଷ୍କାର କଲି କେଉଁ ଅଜଣା ଅଶୁଣା ପଲ୍ଲୀବାଳା ସହ ମୋ ଜୀବନ ଛନ୍ଦା ସରିଛି । ମୋ ମନରେ ଯେ ସେତେବେଳେ ପୁଲକ ଶିହରଣ ଜାତହୋଇ ନ ଥିଲା ତାହା ନୁହେଁ—ମୁଁ ବି ନ ଜାଣିଲା ଭଳି ବେଳେ ବେଳେ ମଞ୍ଜୁକୁ ଚାହିଁ ଦେଉଥିଲି··· ଆଉ ଯେତେବେଳେ ମଞ୍ଜୁର ନିରଭିମାନ ସ୍ନିଗ୍ଧ ଦୃଷ୍ଟିରେ ଆଖି ମିଳି ଯାଉଥିଲା, ସେତେବେଳେ ମୋର ଠିକ୍ ମନେଅଛି— ଛାତି ଭିତରେ କେଉଁ ଅବ୍ୟକ୍ତ ଶିହରଣ ସ୍ପନ୍ଦିତ ହେଉଥିଲା; ଛାଡ଼, ସେ ସବୁ ଯାହା ସ୍ୱାଭାବିକ !

ହଁ, ସେତେବେଳେ ବାପାଙ୍କ ଆଗରେ ମୋର କଥା କହିବାର ସାହସ ନଥିଲା, ତା' ଛଡ଼ା ଏ ତ ବିବାହ କଥା—ପୁଣି ପ୍ରତିବାଦ ! କେବଳ ମୋର ଜଣେ ସମ୍ପର୍କୀୟ ବଡ଼ଭାଇଙ୍କ ମାର୍ଫତ ମୋର ଅସମ୍ମତି ପେଶ୍ କରିଥିଲି, ଯାହାକୁ ଅତି ତାଚ୍ଛଲ୍ୟ ଭାବରେ ଉଡ଼ାଇ ଦେଲେ ଗ୍ରାମର ହରିମୌସା— "ଅରେ ପାଠ ପଢ଼ିଛି ବୋଲି ପୁଅ ବାପର ଅବାଧ ହେବ, ଦେଖୁନ, ମୋ ପୁଅକୁ ମୂର୍ଖ କରିଥିଲି ବୋଲି ତ ସେ କିଛି ଉଁ ଚୁଁ ନ କରି ମୋ କଥାରେ ଗୋଟେ ଗ୍ଲେଟୀ ଝିଅକୁ ବାହା ହେଲା ।" ସେ ଦିନ ହରିମୌସାଙ୍କ କଥାରେ ବାପାଙ୍କ ଅବାଧ ସନ୍ତାନ ହେବାକୁ ଯାଇ ମୁଁ ତାଙ୍କ ମୂର୍ଖ ପୁଅଠୁ ହୀନ ହେଲି ସିନା; କିନ୍ତୁ ଆଜି ଭାବୁଛି ସେଦିନ ହରି ମୌସାଙ୍କ କଥାର ସୁନ୍ଦର ଜବାବ ହୋଇଥାନ୍ତା ଯଦି କହିଥାନ୍ତି—ତୁମ ପୁଅ ମୂର୍ଖ ବୋଲି ତ ଅନ୍ଧଭାବରେ ଯୌତୁକ ଲୋଭରେ ତୁମ କଥାରେ ହଁ ଭରିଲା, ମୁଁ ତ ତା' ନୁହେଁ ପଢ଼ିଛି ଯେତେ-ବେଳେ ଭଲମନ୍ଦ ଜାଣିବାର ଶକ୍ତିହେଲା···ମୋର ମତ ନ ଦେବ କିମିତି ? ସେତେବେଳେ ଅବଶ୍ୟ ମନରେ ଏ ଯୁକ୍ତି ଆସି ନ ଥିଲା, ଆଉ ଆସିଥିଲେ ବି କହିବାର ସାହସ ଆସି ନ ଥାନ୍ତା।

ଯାହାହେଉ ବିବାହ-ଯାହାକି ଜୀବନ ଇତିହାସର, ସବୁଠୁ ବଳି ସ୍ମରଣୀୟ ଘଟଣା ଘଟିଗଲା ନିହାତି କଞ୍ଚା ବୟସରେ, ଯେତେବେଳେ ବୈବାହିକ ଶିହରଣ ସମ୍ୟକ୍ ବୁଝିବାର ଅବସ୍ଥାରେ ପହଞ୍ଚି ନଥିଲି ! ତା' ପରେ ସ୍କୁଲ ପିଲାଙ୍କ ଆଗରେ ଯେଉଁ ଅବସ୍ଥା···ମୁହଁ ଦେଖାଇବାକୁ ଲାଜ··· ମନକୁ ମନ ବୁଝାଇବାକୁ ଚେଷ୍ଟାକଲି ମହାତ୍ମା ଗାନ୍ଧୀ ତ ପୁଣି ବିବାହ କଲେ ତେର ବର୍ଷରେ, ମୁଁ ଏମିତି କ'ଣ ଅକାମ କଲିଯେ ମହାଭାରତ ଅଶୁଦ୍ଧ ହେଲା ! ଦିନାକେତେ ପରେ ସବୁ ଠିକ୍‌ଠାକ୍···

ବୃତ୍ତି ପାଇଲି । କଲେଜର ସ୍ୱପ୍ନିଳ ଜୀବନ । ପରେ-ପରେ ଇଂରାଜୀ ଅନର୍ସ ପାଇ ରେଭେନ୍ସାରେ ଉପାଧ୍ୟନ୍ତର ଛାତ୍ରହେଲି । ହାଇସ୍କୁଲ ପିଲାଳିଆ ମନ ଆଉ ନାହିଁ । ଜୀବନଟା କ୍ରମେ ଦୁର୍ବୋଧ ଓ ଓଜନିଆ ହୋଇଉଠୁଛି । କଲେଜର ଉଚ୍ଚଶିକ୍ଷିତା ତରୁଣୀମାନଙ୍କ ସାନ୍ନିଧ୍ୟରେ ଆସିଲା-ବେଳେ ବହୁ ଦୂର ପଲ୍ଲୀର କେଉଁ କୋଣରେ ମଞ୍ଜୁର ଛବି ଭାସିଆସେ···ଏମାନେ କେଡ଼େ ଛଳ ଛଳ ଉଚ୍ଛଳ···ଠିକ୍ ପାହାଡ଼ି ଝରଣା ପରି ବେପରୁଆ···ଜୀବନଟା ଠିକ୍ ନାଇଲନ୍ ଶାଢ଼ୀପରି ରଙ୍ଗ୍‌ବେରଙ୍ଗ୍—ଫୁଲ ଓ ସ୍ୱପ୍ନର ମିଶାମିଶି ଏମିତି କିଛି···କିନ୍ତୁ ମଞ୍ଜୁ ? ମଞ୍ଜୁ ଠିକ୍ ବନରଫୁଲ—ଅନାଘ୍ରାତ ଅବହେଳିତ...ଅନାବିଲ ଆଉ ଅକୃତ୍ରିମ.. ଛନ୍ଦନାହିଁ...ଛଳନା ନାହିଁ—ଠିକ୍ ଓ୍ୱର୍ଡସ୍‌ୱାର୍ଥଙ୍କ ଲୁସୀ...ମୋ ମନ କ୍ରମେ କ୍ରମେ ସେ ସହରୀ ମାୟା ଛାଡ଼ି ଗାଆଁର ଛାୟା ଭିତରେ ହଜିଯିବାକୁ ଅସ୍ଥିର ହୋଇ ଉଠୁଥିଲା···ଆଉ ସେହି ଅସ୍ଥିରତା ଭିତରେ ମୁଁ ମନର ସମସ୍ତ କିଛି ଲେଖନୀରେ ରୂପ ଦେଉଥିଲି ମଞ୍ଜୁ ପାଇଁ...ମଞ୍ଜୁର ଉପଲବ୍ଧି କରିବାର ଶକ୍ତି ତାର ଶିକ୍ଷାଦୀକ୍ଷା ଅନୁସାରେ ସେତେ ଖାପଛଡ଼ା ହେବାର କଥା ନୁହେଁ...ଜଣେ ଏମ୍. ଏ. ଛାତ୍ରର ଏ ଉଚ୍ଛଳ ମନର ପ୍ରବାହ ସହ ସାମିଲ ହେବାକୁ ସରସ୍ୱତୀ ତାକୁ ଦୟାକରି ନ ଥିଲେ—କିନ୍ତୁ ମୁଁ ବେଳେବେଳେ ଆଶ୍ଚର୍ଯ୍ୟ ହେଉଥିଲି ମଞ୍ଜୁର ହାତଲେଖା ପଢ଼ି ଅକ୍ଷର ତ ନୁହେଁ ଛପା...ଆଉ ମୋର ତ ବଳେଇ ଆମ୍ବୁଡ଼ା ! ନିଜର ବଡ଼ିମା ଦେଖେଇବାକୁ ଯାଇ ପ୍ରଥମେ ପ୍ରଥମେ ତାକୁ କହୁଥିଲି ଇଂରାଜୀ ଲେଖିଲେ ଅକ୍ଷର ଏମିତି ହୁଏ; ସୁତରାଂ ଅକ୍ଷର ତୋଠାରୁ ଖରାପ ହେଲେ ବି ତୋ ଭଳି ଅକ୍ଷରର ଗୌରବ ମୋଠାରୁ କମ୍ ଛାଡ଼, ଏ ତ ଅକ୍ଷର କଥା, ପାଠ-ଶାଳାର ପଦ୍ମ ଫୁଲର 'କଳସୀ' ସରସ୍ୱତୀ କିନ୍ତୁ କଲେଜର ନାଇଲନ୍ ପରିହିତା ଷୋଡ଼ଶୀ ତରୁଣୀ ସରସ୍ୱତୀଙ୍କଠୁ ତାକୁ ବେଶି କିଛି ଦେଇଛନ୍ତି—ତା ହୋଇ ନ ଥିଲେ ତା' ମନର କଥାକୁ ଏମିତି ଭାଷାରେ ପ୍ରକାଶ କରୁଥାଏ କେମିତି ? ଜଣେ ସିଦ୍ଧହସ୍ତ ଔପନ୍ୟାସିକଙ୍କ ନାୟିକାର ଲେଖନୀ ବି ଏତେ ମନଛୁଆଁ ହେବନି ! ତା ଛଡ଼ା ମୋର ଜୀବନର ଗତି ଓ ଗନ୍ତବ୍ୟର ଭୂମିକା ଉପରେ ଏମିତି ଟିପ୍ପଣୀ ଦେଉଥାଏ ଯେ ତାର ସାରାଂଶ ନେଇ ଏମ୍. ଏ. କୋର୍ସର କୌଣସି ଅନୁରୂପ ପ୍ରଶ୍ନର ଉତ୍ତର ବେଶ୍ ଲେଖାଯାଇପାରେ !

ଯାହାହେଉ ଆମର ତରୁଣ ଦାମ୍ପତ୍ୟ କୃଷ୍ଣଚୂଡ଼ା ଭଳି ବେଶ୍ ରଙ୍ଗୀନ୍ ଥିଲା...ଦୁହେଁ ଅନେକ ଅଙ୍ଗୀକାର କରିଛୁ ସେ ମୋ ପାଇଁ, ମୁଁ ତା ପାଇଁ...କିନ୍ତୁ... !

ଏଇଠି ଆସେ କିନ୍ତୁ ଯାହାପାଇଁ ଏତେ !

ଇଂରାଜୀ ନୋଟ୍ ଦେଖେଇବାକୁ ମୁଁ ପ୍ରଫେସରଙ୍କ ବସାକୁ ବେଳେ ବେଳେ ଯାଉଥାଏ...ମୁଁ ଥିଲି ତାଙ୍କର ଅତି ପ୍ରିୟ... କାରଣ ମୁଁ ଜଣେ ସାଧାରଣ ମେଧାବୀ ଛାତ୍ର ନୁହେଁ, ନିଜକୁ

ଜଣେ ତରୁଣ ଲେଖକ ହିସାବରେ ପ୍ରତିଷ୍ଠା କରି ପାରିଥାଏ... ସେ ମୋତେ ସ୍ନେହ କରୁଥିଲେ ଏବଂ ନିମନ୍ତ୍ରଣ କରୁଥିଲେ ମଧ୍ୟ...ତାଙ୍କ ଘର ସହିତ ମୋର ଘନିଷ୍ଠତାରୁ ହିଁ ମିସ୍ ଇନ୍ଦିରା ସହ ସମ୍ପର୍କ...ଆତ୍ମୀୟତା ! ...ଇନ୍ଦିରା ପ୍ରଫେସରଙ୍କ ଏକମାତ୍ର କନ୍ୟା ପାଞ୍ଚବର୍ଷ ବେଳୁ ତାର ମାତୃ-ବିୟୋଗ ଘଟେ.. ସେ ଯାହାହେଉ, ଦିନେ ପ୍ରଫେସର ନ ଥାନ୍ତି ··ଏକା ଇନ୍ଦିରା... ଅନେକ ଆଳାପ, ପ୍ରାଣଖୋଲା ହସ ଆଉ ଗପ ପରେ ମୁଁ ବିଦାୟ ନେଲାବେଳେ ସେ ଅପ୍ରତ୍ୟାଶିତ ଭାବେ ଅଳି କଲା କଲେଜ ମାଗାଜିନ୍ ପାଇଁ ଗୋଟିଏ ଆର୍ଟିକିଲ ! ମୁଁ ସମ୍ମତ ହେଲି...ସଙ୍ଗେ ସଙ୍ଗେ ତକେଇଲି...ଇନ୍ଦିରା ଲେଖି ଚାଲିଲି; ଆଶ୍ଚର୍ଯ୍ୟ ହେଲା ଇନ୍ଦିରା, ଏତେ ସୁନ୍ଦର ଲେଖା ଏତେ ଅପ୍ରସ୍ତୁତ ବ୍ୟବସ୍ଥାରେ ବିନା ଚିନ୍ତା ଓ ଭାବନାରେ ! ମୁଁ ବି କମ୍ ଆଶ୍ଚର୍ଯ୍ୟ ହୋଇନି—ଯେମିତି କେଉଁ ଅଜଣା ଭାବନାର ଉଚ୍ଛଳ ତରଙ୍ଗ ମୋ ଭିତରେ ଇନ୍ଦିରା ଯଦି ଲେଖନ୍ତା ତେବେ ଆହୁରି ଆହୁରି ତକେଇ ଯା'ନ୍ତି ଠିକ୍ ଯୋଷା କବିତା ଆବୃତ୍ତି କଲାଭଳି ସ୍ୱତଃସ୍ଫୂର୍ତ୍ତି ଭାବରେ···ଇନ୍ଦିରାର ସାନ୍ନିଧ୍ୟ କେଉଁ ଉଚ୍ଛଳ ସୋତଧାରର ରୁଦ୍ଧଦ୍ୱାର ଖୋଲି ଦେଇଛି ସତେ ! ମୋ ଅଜ୍ଞାତରେ ମୋର ଏ ସ୍ୱତନ୍ତ୍ର ସତ୍ତାର ପରିଚୟ ପାଇଲି. କେବଳ ଇନ୍ଦିରା ପାଇଁ—ଜୀବନରେ କେବେ ଏମିତି ସୁନ୍ଦର ଲେଖା ଲେଖିନି—କେବଳ ଇନ୍ଦିରାର ଟିକିଏ ପ୍ରଶଂସା କିଛି ପ୍ରେରଣା ଆଉ ମିଠା ମିଠା କଥା ମୋତେ...ଆଃ, ଜୀବନର ସାରା ଇନ୍ଦିରାକୁ ପାଆନ୍ତି କି ? ! ଜୀବନର ମୋର ପ୍ରଥମ ଦୁର୍ବଳତା...ପ୍ରଥମ ଦୁର୍ବଳତା କେବଳ ଇନ୍ଦିରା ପାଇଁ··· ମୁଁ ବିବାହ କରି ନ ଥାନ୍ତି କି ! ହଠାତ୍ ଏ ଅବଶୋଷ ମନର କେଉଁ କୋଣରେ ଉଙ୍କି ମାରିଲା...ସେମାନେ ଜାଣନ୍ତି ମୁଁ ବାଚେଲର ମୁଁ ବି ସେମିତି ଛଳନା କରିଛି ଜାଣି ଜାଣି ଏଇ ଛଳନା ପାଇଁ ସେମିତି ମୋର ଆତ୍ମୀୟତାର ଓଜନ ଅନେକ ବେଶୀ ଆଉ ଏତକ ନ ଥିଲେ ଅର୍ଥାତ୍ ମୁଁ ବିବାହିତ ବୋଲି ଜଣାଗଲେ ସେମିତି ମୋ ବ୍ୟକ୍ତିତ୍ୱ ଅନେକ ଓଜନହୀନ ହୁଅନ୍ତା...ଏହି ଛଳନା ହିଁ ମୋର ଶ୍ରେଷ୍ଠ ଅପରାଧ...ମୁଁ ନିଜକୁ ବେଶି ଖୋଲିଦେଇ ପାରିଆନ୍ତି କିନ୍ତୁ ନା ସେତିକି ପାରିନି .ମୋର ତରୁଣ ପ୍ରାଣରେ ଜଣେ ପ୍ରସ୍ଫୁଟିତ ଯୌବନା ତରୁଣୀର ସାନ୍ନିଧ୍ୟ, ଯେଉଁ ଅସ୍ପଷ୍ଟ ଆବେଗର ଉଚ୍ଛ୍ୱାସ ସୃଷ୍ଟି କରୁଥିଲା ତାକୁ ଲୁଖାଇ ପାରିଲିନି ଅନେକ ଲୋଭ ଅନେକ ତୃଷା ନେଇ ମୁଁ ଆଗେଇଛି କିନ୍ତୁ କାହିଁକି ? ନିଜକୁ ନିଜେ ପ୍ରଶ୍ନ କରିଛି ଉତ୍ତର ବି ଦେଇଛି ଏମିତି ମିଳାମିଶା, ଆଳାପ, ପିକ୍ନିକ୍ ଏ ତ ସ୍ୱାଭାବିକ—ମୁଁ ତ ବିବାହ କରିନି .ମୁଁ କେବେ ମଞ୍ଜୁକୁ ପ୍ରତାରିତ କରି ପାରେନା—ତେବେ ଏ ଛଳନା କାହିଁକି ? ଏ କାହିଁକିର ଉତ୍ତର ସେଦିନ ମୁଁ ଜାଣିଥିଲେ ବି ଗ୍ରହଣ କରିନି—ହୁଏତ ସେଇ କାରଣରୁ ବୈଷ୍ଣବ ଧର୍ମ ଏହି ପରକୀୟା ପ୍ରେମକୁ ଶ୍ରେଷ୍ଠ ଆସନ ନ ଦେଇଛି ସେଇ ସୋତରେ କେଇଦିନ ଭାସିବି—କ୍ଷତି କଣ... ?

କ୍ଷତି କିନ୍ତୁ ହେଲା··· ଯେଉଁ କ୍ଷତିର ପୂରଣ ମୁଁ କେବେ ଦେଇ ପାରିବିନି···ଶ୍ରୀକୃଷ୍ଣ ସିନା ରାଧିକାକୁ କ୍ଷତି ପୂରଣ ଦେଇ ପାରିଲେ; କିନ୍ତୁ ମୋର ସେ ଶକ୍ତି କାହିଁ ଆଜୀବନ ମୋତେ ନିଃସଙ୍ଗ ଭାବେ ବିରହ ବନ୍ୟାରେ ବୁଡ଼ିରହି ଏ କ୍ଷତିର ଖାଲ ପୂରେଇବାକୁ ହେବ ।

ବଡ଼ଦିନ ଛୁଟି, ଘରକୁ ଆସିବି ସେ ଦିନ କାଠଯୋଡ଼ି କୂଳେ ସାଂଧ୍ୟ ଭ୍ରମଣରେ ମୁଁ ଏବଂ ଇନ୍ଦିରା ··ହଠାତ୍ ସେ ମୋତେ ତାର ସମସ୍ତ କିଛି ଅଜାଡ଼ି ଦେଇ ଅଳି କରିଛି ପ୍ରତିଦାନରେ ମୋତେ—ମୋର ପ୍ରତିଶ୍ରୁତି ବିବାହ ପାଇଁ ! ମୁଣ୍ଡ ଝିମ୍ ଝିମ୍ ହେଲା କ'ଣ କରିବି—'ନା' କି 'ହଁ' ବାଛିବା ମୁସ୍କିଲ, କହିବା ମୁସ୍କିଲ ! ତେବେ...? ? ଇନ୍ଦିରା କିନ୍ତୁ ମୋର କୌଣସି କୈଫିୟତ୍ ଶୁଣିବାକୁ ପ୍ରସ୍ତୁତ ନୁହେଁ...ଆଉ ସେ ବି ଆଶା କରି ନ ଥିଲା ଯେ ତାର ଏ ଅଯାଚିତ ଦାନକୁ ମୁଁ ଅସ୍ୱୀକାର କରିବି...ସେ ନିଶ୍ଚିତ ଥିଲା ମୋ ଭିତରଟା ଉଠିଥିଲା ପଡ଼ୁଥିଲା ସମ୍ମୁଖରେ ଇନ୍ଦିରା ମୋ ଦେହରେ ତାର ସମର୍ପିତ ଭରା ଯୌବନ ଆଖିରେ ତୀକ୍ଷ୍ଣ କଟାକ୍ଷ ଝୀନ ବାସ ବିବସ୍ତ୍ର ଅତି କ୍ଲାନ୍ତ ଗୋଧୂଳିର ବିରହ ବଇଁଶୀ ଝରିଯାଏ ନୀଡ଼ଫେରା ପକ୍ଷୀର କୁହୁ କାକଳୀରେ ସାଂଧ୍ୟ ମୌସୁମୀ ଚୁମି ଚୁମି ଯାଏ ଝିଲ୍ମିଲ୍ ଢେଉର ତାଳେ ତାଳେ...ଅନେକ ମାୟା କଟେଇବା ମୁସ୍କିଲ ଭିଡ଼ିଧରି ତାର ଯୌବନକୁ ଦଳିତ ମନ୍ଥିତ କରି ଗୋଲାପୀ ଅଧରରେ ଅଜସ୍ର ଚୁମ୍ବନ ଆଙ୍କିବାକୁ ଦୁର୍ବାର ଲୋଭ ! କିନ୍ତୁ ! କାହିଁକି କେଜାଣି ମନର କେଉଁ କୋଣରେ ଦୂର ବହୁଦୂର ପଲ୍ଲୀବାଲା ମଞ୍ଜୁର ମ୍ଳାନ ମୌନ ଛବି ହଠାତ୍ ଭାସି ଉଠିଲା ଦୁର୍ବଳତାର ଚରମ ମୁହୂର୍ତ୍ତରେ...ଅଜ୍ଞାତ କେଉଁ ନିର୍ଦ୍ଦେଶରେ ନିଜକୁ ଅକ୍ତିଆର କରିନେଲି— କୌଣସି ପ୍ରକାରେ ସେ ଦିନ ଊର୍ଦ୍ଧ୍ୱଶ୍ୱାସ ହୋଇ ଏଡ଼େଇ ଦେଲି ଆଗାମୀ ସନ୍ଧ୍ୟାରେ କହିବାର ପ୍ରତିଶ୍ରୁତି ଦେଇ ।...

ତା’ ପରେ ସିଧା ଘରକୁ ।

ଘରର ଜୀବନ ଯଥା-ପୂର୍ବଂ ମଞ୍ଜୁ ବି ଠିକ୍ ପୂର୍ବପରି—କିନ୍ତୁ ମୁଁ, ମୁଁ ଯେପରି ଅନେକ ପରିବର୍ତ୍ତିତ ହୋଇଛି ଗୁଡ଼ି, ମୋ ଭିତରର ଦୁର୍ବଳତାକୁ ବେଶ୍ ଲୁଚାଇ ରଖିଥିଲି ସୁଦକ୍ଷ ଅଭିନେତା ଭଳି କିନ୍ତୁ ଇନ୍ଦିରା ? ସେ କି ଭୁଲିପାରେ ? ଠିକ୍ ପରଦିନ ସନ୍ଧ୍ୟାରେ ମୋତେ ନ ପାଇ ବେଶ୍ ଲମ୍ବା ଚଉଡ଼ା ପତ୍ର ଦେଇଛି ତା ଅନ୍ତରର ସବୁକିଛି ଖୋଲି ସବୁ ସ୍ମୃତିକୁ ମନ୍ଥନ କରି ତା ସ୍ମୃତି-ସାଗର ମନ୍ଥନରେ ବିଷତକ ହୁଏତ ସେ ମୋ ପାଇଁ ପଠାଇ ଦେଇଥିଲା ଅମୃତତକ ନିଜ ପାଖରେ ରଖି—କିନ୍ତୁ ନୀଳକଣ୍ଠ ସାଜିବାର ମୋର ସାଧ କାହିଁ ? ସେତିକ ମୋତେ କିନ୍ତୁ ଗ୍ରାସକଲା...ମୁଁ ଚିଠିପାଇ ଅସ୍ଥିର ହେଲି-ଯଦି ବାରମ୍ବାର ପତ୍ର ଦିଏ ବିପଦ ନା, ମୁଁ ଆଉ ଛଳନା କରିବିନି...ସବୁ ଖୋଲି କହିବି ଇନ୍ଦିରାକୁ ମୁଁ ବିବାହିତ ମୋଠି ତାର ଏ ଆତ୍ମନିବେଦନ ବ୍ୟର୍ଥ...ମନେ ମନେ ସିଦ୍ଧାନ୍ତ ନେଇ କଟକ ଆସିଲି ହଠାତ୍ ।

ଇନ୍ଦିରା ପାଖରେ ପହଞ୍ଚିଲି ପୂର୍ବରୁ ପୁଣି ସେ ମୋତେ ପତ୍ର ଦେଇଛି ଯେଉଁଥିରେ ପ୍ରଫେସରଙ୍କ ସମ୍ମତି ଆଉ ବିବାହର ସାମ୍ଭାବ୍ୟ ତିଥି ବି ନିର୍ଦ୍ଧାରିତ ଥିଲା—ମୁଁ ତ ଜାଣିନି ଇନ୍ଦିରା ଆଗରେ ଯେତେବେଳେ ମୋର ସମସ୍ତ ଖୋଲିଦେଲି, ସେ କିନ୍ତୁ ଖିଲ୍ ଖିଲ୍ ହସି ଉଠିଲା...ଜଣେ ଗାଉଁଲୀ ଅଶିକ୍ଷିତା ଝିଅର ଜୀବନ ଯେପରି ତାର ହସପରି ଶସ୍ତା ଚରିତ୍ର ନେଇ ସହଜରେ ତାକୁ ଗୁଡ଼ପତ୍ର ଦିଆଯାଇପାରେ...ସେ ପାଇଁ ସେ ଦାୟୀ...ମୁଁ ଅବାକ୍—ସମ୍ମତ ହୋଇ ପାରିଲିନି ଇନ୍ଦିରାର ଯୁକ୍ତି; ତା ବାପାଙ୍କ ପ୍ରାସାଦ ସମସ୍ତ ଐଶ୍ୱର୍ଯ୍ୟ ସହ ଇନ୍ଦିରା ଏ ସମସ୍ତଠାରେ ସାଧାରଣ ଅଶିକ୍ଷିତା ଗାଉଁଲୀ ଝିଅର ମୂଲ୍ୟ କ’ଣ ଏତେ ଅଧିକ ? ତଥାପି ନୁହେଁ ହଠାତ୍ ରାଗରେ ନିଆଁ ଭଳି ଜଳି ଉଠିଲା ଇନ୍ଦିରା ଠିକ୍ ତା ଦେହର ରଙ୍ଗ ବେରଙ୍ଗ ନାଇଲନ୍ ଶାଢ଼ୀଭଳି ତାର ଉଗ୍ର ଆଧୁନିକା ରକ୍ତ ଲାଲ ହୋଇଗଲା—ମନଇଚ୍ଛା ଶୋଧାଶୋଧି କଲା ମୋର ଛଳନା ପାଇଁ...ନୀରବତା ପାଇଁ ମଞ୍ଜୁ ପାଇଁ ସବୁ ଅପମାନ ମୁଣ୍ଡେଇ ନେଲି ! କିନ୍ତୁ...

ଗାଁରେ ପହଞ୍ଚି ହଠାତ୍ ସ୍ତବ୍ଧ ହୋଇଗଲି କଳ୍ପନାରେ ଯାହା ଅସମ୍ଭବ ତାହାହିଁ ଘଟିଛି...ଊର୍ଦ୍ଧ୍ୱଶ୍ୱାସ ହୋଇ ଦୌଡ଼ିଲି ଏଇ ସେଇ ବେଳାଭୂମି, ଏଇ ସେଇ ଝାଉଁବନର ଶ୍ୟାମଳିମା, ଯାହା ଭିତରେ ମଞ୍ଜୁର କୋମଳ ରକ୍ତମାଂସ ସମସ୍ତ କିଛି ଚିତାରେ ଜଳି ନିଃଶେଷ ହୋଇଛି ।

ମୋ ଗଲାପରେ ଇନ୍ଦିରାର ଚିଠିଗୁଡ଼ିକ ପଡ଼ିଛି ମଞ୍ଜୁ ହାତରେ—ଆଉ— !!

ମଞ୍ଜୁର ଅଣୁ ପରମାଣୁ ହଜି ଯାଇଛି ବହୁ ଦୂର ଅଜ୍ଞାତର ସେହି ଅଶିକ୍ଷା ( ? ) ଅନାବିଳ ସାରଲ୍ୟ ଭିତରେ ଆଧୁନିକତାର ବିଷାକ୍ତ ଶର ଦଂଶନ ନେଇ—ମୋ ଆଗରେ ଶାୟିତ ସେଇ ବେଳାଭୂମି—ସେଇ ଚିତା— ଗର୍ଜ୍ଜନୋଦ୍ୟମାନ ସମୁଦ୍ରର ସେଇ ଉଚ୍ଛ୍ୱାସ—ଅସ୍ତାୟମାନ ସୂର୍ଯ୍ୟ ଦେହରେ ସେଇ ରକ୍ତର ଢେଉ—ଆଉ ଶ୍ୟାମଳ ଝାଉଁବନର ପକ୍ଷୀ କାକଳୀରେ ସେଇ କ୍ରନ୍ଦନର ଜ୍ୱାଳା—ଏବଂ ମୋ ଭିତରେ ନିରଭିମାନିନୀ ସରଳା ପଲ୍ଲୀବଧୂ ମଞ୍ଜୁର ବିଦଗ୍ଧ ଆତ୍ମାର ଊର୍ଦ୍ଧ୍ୱଶ୍ୱାସ ଆଉ ଆସନ୍ନ ରାତିର ଅବସନ୍ନତା ସହ କ୍ଳାନ୍ତ, ଶ୍ରାନ୍ତ, ବେଦନାକ୍ଳିଷ୍ଟ ମୁଁ— ।

---

# ॥ ଏଇ ମନ କେତେ ଦହନ ॥

ପ୍ରସନ୍ନ କୁମାର ପ୍ରଧାନ, ଭୁବନେଶ୍ୱର

ବାହାରେ ଶେଷ ବସନ୍ତର ଅସ୍ତରାଗ୍ନ ସଙ୍ଗୀତ ।

ଗଗ୍‌ଲସ୍‌ର ନୀଳକାଚ ଦେଇ ପ୍ଲାବନର ଦୃଷ୍ଟି ଲନ୍‌ ମଝିରେ ଥିବା ରକ୍ତ ଗୋଲାପର ଗେନ୍ଥାରୁ ଫେରି ଆସି ଅଟକି ଗଲା ସଞ୍ଜିତାର ଗୋଲାପୀ ତନୁ-ବଲ୍ଲରୀ ଉପରେ ।

ସଞ୍ଜିତା କହିଲା, "ଘର ଭିତରେ ଗଗ୍‌ଲସ୍‌ ପିନ୍ଧି ବସିବା କ'ଣ ନିହାତି ଦରକାର, ପୁରୁଣା ବଦଭ୍ୟାସଗୁଡ଼ାକ ଏ ଯାଏ ଛାଡ଼ି ପାରିନା ।"

"ସୂର୍ଯ୍ୟର କିରଣଠାରୁ ତମେ ଆହୁରି ଉଜ୍ଜ୍ୱଳ ଜିତା, ସେଥିପାଇଁ ଖାଲି ଆଖିରେ ଦେଖିଲେ ନିଜ ଆଖି ଦିଓଟି ନଷ୍ଟ ହେବାର ଭୟ ତ ଲାଗୁଛି ।" ପ୍ଲାବନର କଣ୍ଠରେ ଆମୋଦର ଢେଉ । ସଞ୍ଜିତା ତା ଶୁଣିନା ପରି କହିଲା, ତମ ଚ'ହା ବିଲ୍‌କୁଲ୍‌ ଥଣ୍ଡା ହେଲଣି, ଆଉଥରେ ବନେଇ ଦେଉଛି ।

"ଆଉ ଜିତା, ତମେ ଜାଣ ମୁଁ ସାମାନ୍ୟ ଥଣ୍ଡା ହେଲେ ଚ'ହା ପିଏ । ତମେ ବସ । ସଞ୍ଜିତା ସାମନା ସୋଫାଟିରେ ବସିବାକୁ ଯାଉଥିଲା, ପ୍ଲାବନ ତାକୁ ଟାଣି ନେଇ ନିଜ ପାଖରେ ସୋଫା ଉପରେ ବସେଇ କହିଲା, ମୋଠୁ ଦୂରେଇ ରଖିବାର ଏତେ ଚେଷ୍ଟା କାହିଁକି ଜିତା ?

ସଞ୍ଜିତା ନିଜକୁ ସମ୍ଭାଳି ନେଇ ପ୍ଲାବନ ପାଖରେ ତଳକୁ ମୁହଁପୋତି ବସିଲା । ଏବେସୁଦ୍ଧା ତାର କଅଁଳ ହାତଟି ପ୍ଲାବନର ବଳିଷ୍ଠ ହାତ ମୁଠାରେ ରହି ଥରୁଥିଲା । ନିଜ ହାତଟିକୁ ମୁକ୍ତ କରୁ କରୁ ସଞ୍ଜିତା ମୁଣ୍ଡଟେକି ଚାହିଁଲା ।

ପ୍ଲାବନର ଆଖିରେ ନିଗୂଢ଼ ଚାହାଣୀ, ମୁହଁରେ ଶାନ୍ତ ସରଳ କାନ୍ତ --କାମନାର ଶିଖା ନୁହେଁ, ଆଶ୍ୱସ୍ତ ହେଲା ସଞ୍ଜିତା । ପ୍ଲାବନ ମୁହଁ ପୋଛି ଏଥର ସିଗାରେଟ୍‌ କେଶ୍‌ରୁ ସିଗାରେଟ ଓଠରେ ଦେଲା । ବୋଧହୁଏ ଲାଇଟର୍‌ଟା ଖୋଜୁଛି । ଖୋଜିଦେବ କି ସଞ୍ଜିତା ଲାଇଟର୍‌ଟା, ହଁ ଟିପୟ୍‌ ପାଖରେ ଲାଇଟରଟା ଅସହାୟ ଭାବେ ଓଲଟି ପଡ଼ିଛି । ଅଜାଣତରେ ତା' ହାତ ଚାଲିଗଲା ଲାଇଟର୍‌ଟା ପାଖକୁ, ପ୍ଲାବନର ମୁହଁ ସାମ୍‌ନାରେ ଜଳାଇ ଧରିଲା ।

ସିଗାରେଟ୍‌ ଜଳାଇ ସାରି ପ୍ଲାବନ କହିଲା, "ଧନ୍ୟବାଦ ।"

ସେ ଫର୍ମାଲିଟି ନ କରିଲେ ଚଳିବ ପ୍ଲାବନ, ବିଶେଷତଃ ମୋ' ଘରେ ।

ପ୍ଲାବନ ଏଥର ସାମାନ୍ୟ ହସିଲା । ସତରେ ହସଟା ପ୍ଲାବନର ଓଠରେ କି କରୁଣ ମନେ ହେଉଛି । ଅଥଚ ଏଇ ପ୍ଲାବନ ଦିନେ ମନ ଖୋଲି ହସୁଥିଲା, କହୁଥିଲା ଆଜିକାଲିର ଦୁନିଆଁରେ ବଞ୍ଚିବା ପାଇଁ ହସିବାଠାରୁ ବଳି ଅଧିକ ଭିଟାମିନ୍‌ର କିଛି ପ୍ରୟୋଜନ ନାହିଁ । ସେଇ ପ୍ଲାବନ ତା' ପାଇଁ ବିଶ୍ରାନ୍ତ ସଙ୍ଗୀତର ଶେଷଧାଡ଼ି ।

ପ୍ଲାବନ ହଠାତ୍ ମାଉବତା ଭାଙ୍ଗି କହିଲା, ମୋତେ ତମେ ପାଖକୁ ଆଣି ଏମିତି ଦୂରକୁ ଠେଲିଦିଅ କାହିଁକି ଜନ୍ତା, ଅଜ୍ଞାତର ସେଇ ଅଧ୍ୟାୟ ପାଇଁ ମୁଁ କ'ଣ କେବେହେଲେ କ୍ଷମା ପାଇବିନି ।

ପୁଣି ସେଇ ପ୍ରଶ୍ନର ପୁନରାବୃତ୍ତି, ସଞ୍ଜନ୍ତା ଭାବିଲା 'କ୍ଷମା', ଏ ଶବ୍ଦର ମହନୀୟତାକୁ ସମ୍ବଳ କରି ସେ ଦିନେ ନିଃସ୍ୱ ହୋଇ ଆଖିର ଲୁହକୁ ଅମୃତ ଭାବି ପିଇଥିଲା । ସେ ଅବସ୍ଥା ମନେ ପଡ଼ିଲେ ଏବେ ମଧ୍ୟ ସାଗର ତେଉ଼ରେ ନିଜକୁ ମିଶେଇ ଦେବାର ଇଚ୍ଛା ବଳବତୀ ହୁଏ । ସମସ୍ତ ଅପମାନର କାଳିମାକୁ ନିଜର କରି ସେ ଚିରଦିନ ନିଜକୁ ଏକାନ୍ତ ଭାବେ ନିଜ ଗୋଡ଼ରେ ଠିଆ କରିବା ପାଇଁ ସଂକଳ୍ପ କରିଥିଲା, ସଫଳ ହୋଇଥିଲା ମଧ୍ୟ । ଯିଏ ତାକୁ ଦିନେ ଏକାନ୍ତ ନିଃସହାୟ ଅବସ୍ଥାରେ ଜୀବନର କରାଳ ତରଙ୍ଗ ମଧ୍ୟରେ ନିକ୍ଷେପ କରିଥିଲା, ସେଇ ପ୍ଲାବନ ଶ୍ରେଷ୍ଠରାୟ ଆଜି ଅସହାୟ ଅବସ୍ଥାରେ ଡକ୍ଟର ସଞ୍ଜନ୍ତା ଦାସ ଘରେ ସୋଫାରେ ପଡ଼ିଛି ଏକ ଅର୍ଦ୍ଧମୃତ ଶିଶୁ ଶାବକ ପରି ବିଚରା !

ପ୍ଲାବନ ଅର୍ଦ୍ଧନିମିଳିତ ଚକ୍ଷୁରେ କରୁଣ ଝଙ୍କାର ତୋଳି ଗୁହାରିଛି ସତେ ଯେମିତି କହୁଛି ମୋ ଭୁଲ୍‌ର କ'ଣ ପ୍ରାୟଶ୍ଚିତ୍ତ ନାହିଁ ଜନ୍ତା ।

ଆଜି ପରିହାସ ପ୍ଲାବନର ଏ ଅବସ୍ଥା ଦେଖିଲେ ସତରେ ଦୟା ଲାଗୁଛି । ସେଦିନର କଥା ମନେ ପଡ଼ିଲେ କାହିଁକି ଏକ ଅବ୍ୟକ୍ତ ବେଦନାରେ ଆଚ୍ଛନ୍ନ ହୋଇପଡ଼େ ସେ । ଡାକ୍ତରଖାନାରେ ପହଞ୍ଚିଲା ପରେ ଖବର ପାଇଲା ଯେ ଜଣେ ମହିଳା ବିଷ ଖାଇଦେଇ ଏଠାକୁ ଅଣାହୋଇଛନ୍ତି । ଇମର୍‌ଜେନ୍‌ସି ବେଡ୍ ଉପରେ ଜଣେ ମହିଳାଙ୍କର ଶରୀର ପଡ଼ିଥିଲା । ସାରା ଦେହ ନୀଳ ପଡ଼ିଯାଇଥିଲା, ନାଡ଼ୀ ଦେଖିଲା ସେ, ନାଁ ବହୁତବେଳୁ ପ୍ରାଣପକ୍ଷୀଟି ଦେହର ପଞ୍ଜୁରୀ ଛାଡ଼ି ଚାଲିଯାଇ ସାରିଲାଣି ।

ଏ ମହିଳାଙ୍କର କ'ଣ କେହି ନାହାନ୍ତି ସିଷ୍ଟର ?

ତାଙ୍କର ସ୍ୱାମୀ ବାହାରେ ବସିଛନ୍ତି, ସିଷ୍ଟର କହିଲା ।

ବାହାରେ ଜଣେ ଭଦ୍ରବ୍ୟକ୍ତି ମୁଣ୍ଡପୋତି ବସିଥିଲେ । ସେ ଆସିଲାବେଳେ ଲକ୍ଷ୍ୟକରି ପାରିନ ଥିଲା ।

ଆପଣ କ'ଣ ସେଇ ମହିଳାଙ୍କର···ଏ କ'ଣ ଦେଖୁଛି, ଏ ଯେ ପ୍ଲାବନ । "ହଁ ଡକ୍ଟର ଦାସ୍ ମୁଁ ସେଇ ମହିଳାଙ୍କର ସ୍ୱାମୀ ।"

ହଠାତ୍ ଆଶ୍ଚର୍ଯ୍ୟ ହୋଇପଡ଼ିଲା ସଞ୍ଜନ୍ତା, ଶିଳ୍ପପତି ପ୍ଲାବନ ଶ୍ରେଷ୍ଠରାୟର ପତ୍ନୀ ଆତ୍ମହତ୍ୟା କରିବା ପାଇଁ ମନୋବଳ ପାଇଲା କେଉଁଠୁ ? ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ଜଣେ ନିଜକୁ ନଷ୍ଟ କରିପାରେ; ବିସ୍ମିତ ହେଲା ସେ । ହୁଏତ ପ୍ଲାବନର ଉଚ୍ଛୃଙ୍ଖଳତା ତାକୁ ବାଧ୍ୟକରି ଥାଇପାରେ ।

ତାକୁ ଅନୁସରଣ କରିବା ପାଇଁ ପ୍ଲାବନକୁ ଇସାରା ଦେଲା ସେ । ଦୁହେଁଯାକ ତା' ରୁମ୍‌ରେପହଞ୍ଚିଲେ, ଗୋଟାଏ ଚଉକିରେ ପ୍ଲାବନକୁ ବସିବାକୁ ଦେଇ କ୍ଷୀଣ କଣ୍ଠରେ ପଚାରିଲା ସେ, "କୁହନ୍ତୁ ପ୍ଲାବନ ବାବୁ ଗୋଟାଏ ଝିଅ ଏପରି ଭାବେ ନଷ୍ଟ ହୋଇଯିବାର କାରଣ କ'ଣ ହୋଇପାରେ ?"

ନୀରବରେ ମୁଣ୍ଡ ପୋତିଲା ପ୍ଲାବନ, କେମିତି କହିବ ଭାବୁଥିଲା ବୋଧହୁଏ । "ଜ୍ଞାନଦାମୀ ଇକ୍ସିତ୍ ପଦାରେ ପଡ଼ିଯିବ ବୋଲି ଭାବୁଛନ୍ତି କି ? ମୋତେ ସେତିକି ନୀଚ ଭାବନ୍ତୁନି ।

"ଓଃ ଜନ୍ତା ! ମୁଁ ଯଥେଷ୍ଟ ଶାସ୍ତି ପାଇଲିଣି, ତମ ଆଗରେ ମୁହଁଟେକି କଥା କହିବାକୁ ସାହସ ଆଜି ମୋର ନାହିଁ, ତେବେ ଶୀଳାର ଆତ୍ମହତ୍ୟା ତାର କୃତକର୍ମର ପ୍ରାୟଶ୍ଚିତ୍ତ ।" "ମାନେ— ଆପଣଙ୍କ ମନମୁତାବକ ସେ କ୍ଲବରେ ନାଚି ପାରୁ-

ନ ଥିବ ବା ପୁରୁଷ ବନ୍ଧୁଙ୍କ ସଙ୍ଗେ ସାମୀପ୍ୟର ସଦୁପଯୋଗ କରି ପାରୁ ନ ଥିବ । ଏଇଟା ତା ଦୋଷ ବୋଧହୁଏ ?" "ତା ନୁହେଁ, ତମକୁ ସବୁ ଖୋଲି କହୁଛି ଜିତା, ଯେଉଁ ସାମାଜିକ ସମ୍ମାନ ବଜାୟ ରଖିବା ପାଇଁ ମୁଁ ଶୀଳାକୁ ବିବାହ କରିଥିଲି, ସେ ସମ୍ମାନ ମୋର ଭୂଲୁଣ୍ଠିତ ହୋଇଛି । ମୋ ବିବାହର ପ୍ରାୟ ସାତବର୍ଷ ବିତିଯାଇଥିଲେ ସୁଦ୍ଧା କୌଣସି ସନ୍ତାନ ନ ହେବାରୁ ଶୀଳାର ଅନିଚ୍ଛା ସତ୍ତ୍ୱେ ମୁଁ ତାକୁ କଲିକତାର ଜଣେ ଲେଡି ଡକ୍ଟର ପାଖରେ ପରୀକ୍ଷା କରାଇଥିଲି । ତା'ର ରିପୋର୍ଟ କାଲି ଆସି ପହଞ୍ଚିଲା । ସେଥିରେ ଲେଖାଥିଲା ଏକାଧିକ ବାର ଭ୍ରୂଣହତ୍ୟା ଫଳରେ ସେ ତାର ସନ୍ତାନ ଉତ୍ପାଦିକା ଶକ୍ତି ଚିରଦିନ ପାଇଁ ହରାଇ ବସିଛି । ମୁଁ ସେତେବେଳେ ବୁଝିଲି ସାମାଜିକ, ଆର୍ଥିକ ଆଭିଜାତ୍ୟକୁ ନେଇ ମନୁଷ୍ୟର ମାନ ନିର୍ଣ୍ଣୟ କରାଯାଏନା । ତା' ପରେ ସେ ରିପୋର୍ଟଟା କେମିତି ଶୀଳା ହାତରେ ପଡ଼ିଯାଇଛି । ମୁଁ ରାତିରେ ସହର ବାହାରକୁ ଯାଇଥିଲି ସକାଳେ ଦେଖେ ତ ଶୀଳା ବିଷ ଖାଇଦେଇଛି । ମୁଁ କେବେହେଲେ ଭାବି ନ ଥିଲି ଜିତା, ଶୀଳା ଆତ୍ମହତ୍ୟା କରି ବସିବ ବୋଲି । ସେ କାଗଜ ଖଣ୍ଡିକରେ ଲେଖି ଯାଇଛି, "ମୋ ଭୁଲ୍ ପାଇଁ ମୁଁ ପ୍ରାୟଶ୍ଚିତ କରୁଛି ।"

ମୁଁ ଆଜି ଭାବୁଛି ମୋ ଭୁଲ ପାଇଁ ମୁଁ କେମିତି ପ୍ରାୟଶ୍ଚିତ କରିବି, ସେଥିପାଇଁ ତମ ପାଖରୁ ସହଯୋଗ ଯେମିତି ପାଏ ଜିତା—

ପାଗଳ ଭଳି ହଠାତ୍ ପ୍ଲାବନ ଉଠି ଚାଲିଗଲା । ସଂଜିତା ନିସ୍ତବ୍ଧ ହୋଇ ଚାହିଁ ରହିଥିଲା କେବଳ । ଭାବୁଥିଲା, ପ୍ଲାବନ ଗୌରବମୟ ଦର୍ପ ଆଜି ଚୂର୍ଣ୍ଣ ହୋଇଛି, ଚେତନା ଉଦୟ ହୋଇଛି ।

ଅନେକ ଥର ସେ ନିଜର ଭୁଲ ପାଇଁ ତା' ପାଖରେ କ୍ଷମା ମାଗିଛି । ତଥାପି ସଂଜିତା ଖୋଲା ହୃଦୟରେ ତାକୁ କ୍ଷମା ଦେଇ ପାରିନ । କାହିଁକି ସେ ଏତେ ନିଷ୍ଠୁର ହୋଇ ପଡ଼ୁଛି । ପ୍ଲାବନ ଏଥର ଉଠି ଠିଆହେଲାଣି, ଦିନ ବୋଧହୁଏ ସଂଧ୍ୟା ହୋଇ ଆସିଲାଣି, ଯାଉ ସେ, ତାର ମଧ୍ୟ ରୋଗୀ ଦେଖିବା ବେଳ ହୋଇଗଲାଣି । କୋର୍ଟଟାକୁ ପିନ୍ଧୁ ପିନ୍ଧୁ ପ୍ଲାବନ କହିଲା, "ମୁଁ ଯାଉଛି ଜିତା ।"

ସଂଜିତାଠାରୁ ନୀରବ ଉତ୍ତର ପାଇ ପୁଣି କହିଲା, ତମେ ମୋତେ ଦିନେ ଏତେ ଭଲ ପାଉଥିଲ, ଆଜି ମୋ ପ୍ରତି କ'ଣ ତମର ଟିକିଏ ହେଲେ ଦୟା ନାହିଁ ଜିତା —ଏ ଜୀବନରେ ବଞ୍ଚିବାର ମୋହ ମୋର ଶେଷ ହୋଇ ଆସୁଛି । ତମେ ମୋତେ ଏବେ ଭଲ ନ ନ ପାଇଲେ ମଧ୍ୟ ଘୃଣା କରନାହିଁ, ଏତିକି ଜାଣିଲେ ମୁଁ ଶାନ୍ତିପାଇବି । ଏ କ'ଣ କହୁଛି ପ୍ଲାବନ, ପ୍ଲାବନର କଥାଗୁଡ଼ାକର ଉତ୍ତାପରେ ତାର ବରଫ ମନ ତରଳି ଯିବାକୁ ଆରମ୍ଭ କରୁଛି । କିନ୍ତୁ ମନରେ ଦୃଢ଼ତା ନେଇ ଉତ୍ତର ଦେଲା ସେ, "ଜୀବନରୁ ଓ ବାହାରି ଯିବାର କାମନା କାପୁରୁଷତାର ଲକ୍ଷଣ ପ୍ଲାବନ, ତମେ ଏକଦା ବିଖ୍ୟାତ ଖେଳଓ୍ୱାଡ଼୍ ଥିଲ—"

"...ଜୀବନ ଖେଳରେ ମୁଁ ଭୀଷଣ ଭାବେ ହାରିଗଲା ପରେ ସେ ଖେଳଓ୍ୱାଡ଼ ମନୋବୃତ୍ତି ମୋର ସମାଧି ନେଇଛି ଜିତା ।" ସାମାନ୍ୟ ଉଚ୍ଚ ସ୍ୱରରେ ଏତିକି କହି ନିଶବ୍ଦରେ କକ୍ଷ ତ୍ୟାଗକରି ଚାଲିଗଲା ପ୍ଲାବନ ।

ସଂଜିତାର ମନର ତଟରେ ଲକ୍ଷ ଲକ୍ଷ ଅବୋଧ ତରଙ୍ଗ ମଥା ପିଟିବାକୁ ଆରମ୍ଭ କରୁଛି । କ'ଣ କରିବ ସେ, ପ୍ଲାବନ ପୁଣି ତାର ଦେହ, ମନର ଆଧିପତ୍ୟ ବିସ୍ତାର କରୁଛି । ବଦଳି ହୋଇ ଏଠାରୁ ଚାଲିଯିବ କି ? କିନ୍ତୁ ଯେତେ ଦୂରକୁ ଗଲେ ମଧ୍ୟ ସେ କ'ଣ ପ୍ଲାବନକୁ ଭୁଲିପାରିବ ? ଏ ଜନ୍ମରେ ମଧ୍ୟ ନୁହେଁ । ବାହାରେ କାହାର ପାଟି ଶୁଭୁଛି, ରୋଗୀ

ଆସିଲେଣି ବୋଧହୁଏ, ଆଜି ଇଚ୍ଛା ନାହିଁ ରୋଗୀ ଦେଖିବାକୁ। ସେ ନିଜେ ଆଜି ଜଣେ ରୋଗୀ, ତାର ଚିକିତ୍ସା ଆବଶ୍ୟକ। ଘରେ ସେ ନାହିଁ ବୋଲି କହି ଦେବାକୁ ତାର ଗୃହର ଧାନାକୁ ଆଦେଶ ଦେଲା ସଂଜିତା। ଚେଲ୍‌ସ୍‌ଟାକୁ ଛାଡ଼ି ଚାଲିଯାଇଛି ପ୍ଲାବନ, କଲେଜରେ ପଢ଼ୁଥିଲାବେଳେ ମଧ୍ୟ ଏଇଟାକୁ ପିନ୍ଧୁଥିଲା, ଫ୍ରେମ୍‌ଟା ସୁନାର।

ମନଟା ଯଦି ସ୍ଲେଟ୍ ହୋଇଥାଆନ୍ତା, ତାହାହେଲେ ପ୍ଲାବନର ସମସ୍ତ ସ୍ମୃତିର ଛବିକୁ ଲିଭେଇଦେଇ ବେଶ୍ ଶାନ୍ତିରେ ରହି ପାରନ୍ତା। କିନ୍ତୁ ଓଃ ଏଇ ମନ— କାହିଁକି ଭଗବାନ ଏଇ ମନଟାକୁ ସୃଷ୍ଟିକଲେ ଏତେ ଆବେଗ ଓ ସମ୍ବେଦନଶୀଳ କରି। ସଂଜିତାର ପ୍ରଚ୍ଛଦପଟ ପୁଣି ଦୃଶ୍ୟମୟ ହୋଇ ଉଠିଲା।

କଲେଜର ସେଇ ଦୁର୍ଦ୍ଦାନ୍ତ ଯୁବକ ପ୍ଲାବନ, ଝିଅମାନଙ୍କ ପାଇଁ ଟେରର୍। ସବୁ ଖେଳରେ କିନ୍ତୁ ତାର ସୁନାମ, କଲେଜର ଆଥ୍‌ଲେଟିକ୍ ଚମ୍ପିୟାନ୍। ଦୁର୍ଗୁଣ ଥାଇ ସୁଦ୍ଧା ପ୍ଲାବନର ଏଇ ପ୍ରଚଣ୍ଡ ପୌରୁଷ ପ୍ରତି ଆକର୍ଷିତ ହୋଇଥିଲା ସଂଜିତା—ସେଇ ବର୍ଷ ଖେଳ ପ୍ରତିଯୋଗିତାରେ ଶ୍ରେଷ୍ଠସ୍ଥାନ ପାଇଲା ପରେ ସଂଜିତା ତାକୁ ଅଭିନନ୍ଦନ ଜଣେଇବାର ଲୋଭକୁ ସମ୍ଭାଳି ପାରି ନ ଥିଲା। ସହପାଠିମାନେ ଶୁଣି ବିସ୍ମିତ, ଆତଙ୍କିତ ହୋଇ ପଡ଼ିଥିଲେ। କିନ୍ତୁ କି ଏକ ଦୁର୍ବାର ଆକର୍ଷଣରେ ସେ ଯାଇଥିଲା ପ୍ଲାବନ ପାଖକୁ।

ଆସନ୍ନ ସନ୍ଧ୍ୟାର ସେଇ ମୁହୂର୍ତ୍ତ, ହଷ୍ଟେଲ୍ ଆଗରେ ଥିବା କୃଷ୍ଣଚୂଡ଼ା ଗଛତଳେ ପ୍ଲାବନକୁ ଅଭିନନ୍ଦନ ଜଣାଇଲାବେଳେ କଣ୍ଠ ସ୍ୱରରେ ତାର ମୃଦୁ କମ୍ପନ, ଦେହରେ ଅଜଣା ପୁଲକର ଶିହରଣ।

ପ୍ଲାବନ ବୋଧହୁଏ ଆଶ୍ଚର୍ଯ୍ୟ ହୋଇଥିଲା ସେଦିନ।

ସେଇ ସାମାନ୍ୟ ପରିଚୟର ସୁଯୋଗ ନେଇ ପ୍ଲାବନ ତା' ସଙ୍ଗେ ମିଶିବାକୁ ଚେଷ୍ଟା କରିଥିଲା। ତା' ପରେ ଭାଷାହୀନ ଅନେକ କାହାଣୀ—

କେତେଟା ସାନିଧ୍ୟ ଆଉ ଅଙ୍ଗୀକାରର ସାହାଯ୍ୟରେ ସେ ନିଜପାଇଁ ନନ୍ଦନକାନନ ଗଢ଼ିଥିଲା। ପ୍ରୀତିର ଅଗଣନ ପାରିଜାତ ଜନ୍ମ ନେଇଥିଲା ଅଳ୍ପ ସମୟ ମଧ୍ୟରେ, ଭାବିଥିଲା ପ୍ଲାବନ ପରି ଦୁର୍ଦ୍ଦାନ୍ତ ଯୁବକକୁ ବଶ କରିପାରିଛି ବୋଲି। କିନ୍ତୁ ହଠାତ୍ ଦିନେ ନନ୍ଦନକାନନ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା, ପାରିଜାତ ସବୁ ମଉଳିଗଲେ, ଆଶାର କପୋତ ସବୁ ମାଡ଼ି ଭାଙ୍ଗି ଉଡ଼ିଗଲେ। ଯେଉଁଦିନ ସେ ଦେଖିଲା କଲେଜ, ହଷ୍ଟେଲ୍ ପ୍ରାଚୀରରେ ଅସଂଖ୍ୟ ଅପବାଦପତ୍ର ତାକୁ ଆଉ ପ୍ଲାବନକୁ କେନ୍ଦ୍ରକରି।

ନିମ୍ନ ମଧ୍ୟବିତ୍ତ ପରିବାରର ଝିଅ ସଂଜିତା, କ୍ଷତ ବିକ୍ଷତ ହୋଇପଡ଼ିଲା ବ୍ୟଙ୍ଗବିଦ୍ରୂପର ଇଙ୍ଗିତରେ। ଭାବି ନ ଥିଲା ସେ ତାକୁ ଏମିତି ଏକ ଅଶୋଭନୀୟ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି। ପ୍ଲାବନକୁ ଶେଷ ଆଶ୍ରୟ ସ୍ଥଳ ଭାବି ଧାଇଁ ଯାଇଥିଲା। କଣ୍ଠରେ ଅସହ୍ୟ ଆକୁଳତା ଭରି ସେ କହିଥିଲା, କଲେଜ୍ ଓ ହଷ୍ଟେଲ୍‌ରେ ଏ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଛି, ତାର କିଛି ସମାଧାନ ଚିନ୍ତା କରିଛ ପ୍ଲାବନ ?

"ଏହାର ସମାଧାନ ଚିନ୍ତା କରିବାଠାରୁ ମୋର ଅନେକ ଜରୁରୀ କଥା ଚିନ୍ତା କରିବାକୁ ଅଛି ସଂଜିତା, ବାପା ଆଜି କହି ଯାଇଛନ୍ତି ମୋର ବିବାହ ଏଇ ଦୁଇ ତିନିମାସ ମଧ୍ୟରେ ସ୍ଥିର କରିବାକୁ।

ସଂଜିତା ହତବାକ ହେଲା, କହିଲା "ମୁଁ ମଧ୍ୟ କହୁଥିଲି, ଏ ଅପବାଦର ଶେଷପାଇଁ ଆମକୁ ବିବାହ କରିନେବାଠାରୁ ବଳି ଶ୍ରେଷ୍ଠ ସମାଧାନ ଆଉ କ'ଣ ଥାଇପାରେ ପ୍ଲାବନ।"

ସାମାନ୍ୟ ଉଚ୍ଚ ସ୍ୱରରେ ହସିଲା ପ୍ଲାବନ, ତମ ପାଇଁ ସେଇଟା ଶ୍ରେଷ୍ଠ ସମାଧାନ ହୋଇପାରେ ଜତା, କିନ୍ତୁ ମୋ' ପାଇଁ ନୁହେଁ । ସାମାଜିକ ଓ ଆର୍ଥିକ ସମ୍ମାନ ତମକୁ ବିବାହ କଲେ କ'ଣ ମିଳିପାରିବ ? ବାପା ମୋର ବିବାହ ବିଖ୍ୟାତ କଂଟ୍ରାକ୍ଟର ଆଶୁତୋଷ ବକ୍ସିଦାରଙ୍କ ଝିଅ ସଙ୍ଗେ ଏକ ରକମ ଠିକ୍ କରି ସାରିଛନ୍ତି ।

ପ୍ଲାବନ ! ସଂଜତାକୁ ମନେହେଲା ସେ ହଠାତ୍ ଏପରି ଏକ ସ୍ଥାନରେ ପହଞ୍ଚିଲା, ଯେଉଁଠାରେ କି ଅପବାଦ ଓ ନିଃସହାୟତାର ଅସଂଖ୍ୟ ସର୍ପ ତା' ଆଡ଼କୁ ଦଂଶନ ନିମନ୍ତେ ଆଗେଇ ଆସୁଛନ୍ତି ।

କେତେ ଆକୁଳ ମିନତି ବାଡ଼ି ସେ କରିଥିଲା, ନାରୀର ଇଜ୍ଜତ ଥରେ ପଦାରେ ପଡ଼ିଲେ ଆଉ ଫେରି ଆସେନା ପ୍ଲାବନ—ତମରି କଳାକୁ ଦେହରେ ବୋଳି ମୁଁ କାହା ଆଖି ଆଗରେ ଠିଆହେବି କୁହତ ?

ବଡ଼ ନିର୍ମମ ଭାବେ ଉତ୍ତର ଦେଇଥିଲା ପ୍ଲାବନ, ମୁଁ ତମକୁ ଟିକିଏ ହେଲେ ବି ଭଲପାଇ ନ ଥିଲି ସଂଜତା, ତମର ଏ ଦେହର ଐଶ୍ୱର୍ଯ୍ୟ ପ୍ରତି ଆକର୍ଷିତ ହୋଇଥିଲି କେବଳ, ସେଥିପାଇଁ ତମକୁ ଯେ ବିବାହ କରିବି ଏମିତି ଭାବିବା ତମରି ବିଡ଼ମ୍ବନା ।

ଇସ୍, ସଂଜତା କ'ଣ ଶୁଣୁଛି, ଏପର୍ଯ୍ୟନ୍ତ ସେ ଜଣେ ଲମ୍ପଟ ପୁରୁଷର ଅଭିନୟରେ ପ୍ରଲୁବ୍ଧ ହୋଇ ନିଜକୁ ଆତ୍ମସମର୍ପଣ କରିଥିଲା । ପ୍ରତାରଣାର ଦୁଃସହ ଭାର ବୋହି ସଂଜତା ସେଠାରୁ ଆସିଥିଲା । ମନେ ମନେ ସଂକଳ୍ପ କରିଥିଲା, ନିଜ ଜୀବନ ପରିଧିରୁ ସମସ୍ତ ପୁରୁଷଙ୍କୁ ବାହାରେ ରଖିବ । ଡାକ୍ତରୀ ପଢ଼ା ସମୟରେ ନିଜକୁ ବେଶ୍ ସଂଯତ କରି ସେ ଚଳିଛି । ପ୍ଲାବନ ପାଠ ଛାଡ଼ି ବିଜିନେସ୍ କଲା, ତାର ବିଭାଘର ମଧ୍ୟ ହୋଇଯିବାର ସେ ଶୁଣିଥିଲା । କିନ୍ତୁ ଡାକ୍ତରୀ ପଢ଼ା ଶେଷ କଲାପରେ ପରିସ୍ଥିତିକ୍ରମେ ପ୍ଲାବନ ରହୁଥିବା ସହରରେ ତାର ପୋଷ୍ଟିଂ ହୁଏ । ତଥାପି ତା' ସହିତ କୌଣସି ସମ୍ପର୍କ ରଖି ନ ଥିଲା ସେ । ମାତ୍ର ପ୍ଲାବନର ପତ୍ନୀ ଆତ୍ମହତ୍ୟା କଲାପରେ ତାର ମନ ପ୍ଲାବନ ପ୍ରତି ସହାନୁଭୂତିଶୀଳ ହୋଇ ଉଠିଛି । ବିଚରା ପ୍ଲାବନ ଅତିଶୟ ଭାଙ୍ଗି ପଡ଼ିଛି । ବିରାଟ ବିଜିନେସ୍ ଠିକ୍‌ଭାବେ ଦେଖାଶୁଣା ମଧ୍ୟ କରୁନି । ବାପା-ମାଆଙ୍କ ଏକମାତ୍ର ସନ୍ତାନ ସେ, ପୁଣି ପିଲଟି ଦିନରୁ ମାତୃହରା, ପତ୍ନୀହରା ହେବାର କିଛିଦିନ ପରେ ତାକୁ ପିତୃହରା ହେବାକୁ ପଡ଼ିଛି ।

ଧନର ଅଭାବ ନାହିଁ ପ୍ଲାବନର, ସେ ବିବାହ କରି ପାରନ୍ତା, ସୁନ୍ଦରୀ ଝିଅଟିଏ ବାଛି । କିନ୍ତୁ ସେ ଜାଣେ ପ୍ଲାବନ ତାକୁ ହିଁ ଖୋଜି ବସିଛି, ତାର ଅବଶିଷ୍ଟ ଜୀବନକୁ କଟେଇ ଦେବାକୁ । ଯିବ କି ସେ, ପୁଣି ସଜାଡ଼ି ଦେବ ପ୍ଲାବନର ଉଜୁଡ଼ା ସଂସାର; କିନ୍ତୁ—ପୁଣି ସେଇ ଦ୍ୱନ୍ଦ୍ୱ, ମମତାର ଅହଂକାର । ଦିନେ ପ୍ଲାବନ ଗ୍ରେଟ୍‌ରଗ୍ ତା' ପାଖରେ ଆର୍ଥିକ ଆଉ ସାମାଜିକ ମାନର ସଉଦା କରିଥିଲା । ଆଜି ସେ ସମାଜରେ ତାର ମାନନିର୍ଦ୍ଧାରଣ କରିସାରିଛି, ଏ ଅଞ୍ଚଳରେ ସେ ଏକ ନାମଜାଦା ଡାକ୍ତର, ବେଶ୍ ଜନପ୍ରିୟତା ହାସଲ୍ କରିଛି ସେ । ମାତ୍ର ପ୍ଲାବନ ଯେଉଁ ଆଭିଜାତ୍ୟର ରଙ୍ଗୀନ୍ ପ୍ରତିଫଳନରେ ଆକୃଷ୍ଟ ହୋଇ ଧାଇଁଥିଲା, ସେ ରଙ୍ଗ-ବେରଙ୍ଗ ଆଭିଜାତ୍ୟର କାଚଘର ଆଜି ଭାଙ୍ଗି ପଡ଼ିଛି ।

ସେମିତି ଜ୍ୱଳନ, ଦହନକୁ ଧରି ବଞ୍ଚିରହୁ ପ୍ଲାବନ ଏ ଜନ୍ମପାଇଁ । ଏ କଙ୍କରିତ ଜୀବନ ପଥରେ ଚାଲିବା ପାଇଁ ପିଛିଲା କେଇ ଦିନରୁ ଯଥେଷ୍ଟ ସାହସ, ସଂଯମ ସେ ନିଜପାଇଁ ସଞ୍ଚୟ କରି ରଖିଛି ।

ସନ୍ଧ୍ୟା ଗାଢ଼ ହୋଇ ଆସିଲାଣି, ସୁଇଚ୍ ଟିପି ଆଲୁଅ ଜଳେଇଲା ସଂଜତା । ବାହାରେ ଖାନାର

ବୋଧହୁଏ ପାଟି ଶୁଭୁଛି, କେଉଁ ରୋଗୀପାଇଁ ଜରୁରୀ ଡାକରା ମଧ୍ୟ ଆସି ଥାଇପାରେ; କିନ୍ତୁ ସେ ଆଜି କେଉଁଆଡ଼େ ଯିବନି । ମଳିନ ମୁଖରେ ଧାନା ପ୍ରବେଶ କଲା ।

"କଣ ହେଲା ଧାନା ?" ସଂଜିତା ପ୍ରଶ୍ନ କଲା ।

"ଆଜ୍ଞା ପ୍ଲାବନ ବାବୁଙ୍କର ଚାକର ଆସିଛି, କହୁଛି ବାବୁଙ୍କର କାର୍ ଆକ୍‌ସିଡେଣ୍ଟ୍ ହୋଇ-ଯାଇଛି—"

"ଧାନା ! ଯା ଶୀଘ୍ର ରିକ୍‌ସା ଡାକ୍, ଧାନାର କଥା ଶେଷ ନ ହେଉଣୁ ସଂଜିତା ଏକରକମ ଚିତ୍କାର କଲା ।

ଇସ୍ ଏ କ'ଣ ହେଲା ପ୍ଲାବନର, ଯଦି କିଛି ହୋଇଯାଏ ତାହାହେଲେ—ନାଁ ନାଁ, ଅଶୁଭ ଚିନ୍ତା-ଗୁଡ଼ାକୁ ମନରୁ ଫୋପାଡ଼ି ସଂଜିତା ମନେ ମନେ ସବୁ ଦେବଦେବୀଙ୍କୁ ଡାକିଲା ।

---

# ॥ ରାତ୍ରି ॥

ରବୀନ୍ଦ୍ରନାଥ ପ୍ରଧାନ, ସମ୍ବଲପୁର

ମୁଁ ଚାଲିଛି...ରାତି କେତେ ହେବ କେଜାଣି । ଦିନବେଳେ ଯେଉଁ ରାଜପଥ ଜନସମାଗମଦ୍ୱାରା ବ୍ୟସ୍ତ ଥାଏ.. ବର୍ତ୍ତମାନ ଶୂନ୍ୟ···ଆରାମରେ ସୁପ୍ତ । ପଥ କଡ଼ର ପ୍ରାସାଦମାନେ ପାରାଲିସିସ୍ ରୋଗୀ ପ୍ରାୟ ନୀରବ ନିଷ୍ଚଳ । ଖୁବ୍ ଦୂରରେ ପୋଲିସର ଭାରି ବୁଟ୍‌ର ଶବ୍ଦ । ମୁଁ ଚାଲିଛି...ବାତାବରଣର ନିସ୍ତବ୍ଧତାକୁ ଭାଂଗି...ମୋ ହାୱାଇ ସ୍ଲିପରର ଚଟ୍ ଚଟ୍ ଶବ୍ଦ ଦ୍ୱାରା ଇଲେକଟ୍ରିକ୍ ତାରଗୁଡ଼ା ଯେପରି ତଳକୁ ଝୁଲି ଆସିଛନ୍ତି ।

ଏଇଠି ମୁଁ ଟିକିଏ ଅଟକିବି...ଅଟକି ଗଲି... । ବାମପଟ ପ୍ରାସାଦରେ ରୁହେ— ନାଁ ତା'ର ମୁଁ ଜାଣିନି । ନାଁର ପ୍ରୟୋଜନ ବା କ'ଣ ? ଗୋଲାପ ଫୁଲକୁ ସମସ୍ତେ ଭଲ ପାନ୍ତି...ତା'ର ସୁଗଂଧରୁ ସମସ୍ତେ ଚିହ୍ନନ୍ତି । ମୁଁ ସେହି ସମସ୍ତଂକ ମଧ୍ୟରୁ ଜଣେ ।···ସବୁଦିନେ କନଭେଂଟ ସ୍କୁଲ ବସ୍‌ରେ ପଢ଼ି ଯାଏ । ମୁଁ ଯାଏ ମାର୍କେଟ । ଗତିଶୀଳ ସାଇକେଲ ଉପରୁ ହିଁ ଲକ୍ଷ୍ୟ କରି ତୃପ୍ତି ପାଏ 'ମୋର ତନ୍ଦ୍ରାବିଜଡ଼ିତ ମନ ।

କେଉଁ ଗଳି ମଧ୍ୟରୁ କୁକୁରଗୁଡ଼ାଏ ଭୁକି ଉଠିଲେ । ଶବ୍ଦ ଅସ୍ପଷ୍ଟରୁ ସ୍ପଷ୍ଟ ହୋଇ ଆସିଲା । ଆଉ ସେଠି ଠିଆହୋଇ ଲାଭ ନାହିଁ । ଏଥର୍ ଆଗକୁ ଚାଲିବାକୁ ପଡ଼ିବ···ଚାଲିଲି... ଧୀରେ ଧୀରେ···ସତେ ଯେପରି ଲଂବା ପଥର ନିଦ୍ରାରେବ୍ୟାଘାତ ସୃଷ୍ଟି କରିବାକୁ ମନ ଇଚ୍ଛୁକ ନୁହେଁ । ନିକଟ ଗଳି ମଧ୍ୟରୁ ପାଂଚ, ଛଅଟି କୁକୁର ମୋତେ ଲକ୍ଷ୍ୟକରି ଚିତ୍କାର କଲେ । ମୁଁ ଦ୍ରୁତଗତିରେ ଆଗକୁ ଚାଲିଲି । ସେମାନେ ସଂଦେହ କରି ମୋ' ପଛରେ ଚିତ୍କାର କରି ଦଉଡ଼ିଲେ । ମୁଁ ଭାବିଲି···ସେହି ଦୌଡ଼ିଥିବା ଅବସ୍ଥାରେ—କେତେ ମିଟର ଦୌଡ଼ି ମୁଁ ଦୌଡ଼ିଛି—ଦୌଡ଼ର ଶେଷ କେଉଁଠି ?······ଶୁନଶାନ ଅଂଧାର ପଥରେ ଯଦି ସେମାନେ ମୋତେ ଧରି ନିଅଂନ୍ତି... ତେବେ ହୁଏତ...ମିଳିମିଶି ମୋ 'ଆର୍ତ୍ତଚିତ୍କାର ପ୍ରତି ଭ୍ରୂକ୍ଷେପ ନ କରି ନିଜର ତୀକ୍ଷ୍ଣ ନଖ ଓ ଦଂନ୍ତ ଦ୍ୱାରା···ମୋ ଶରୀରର ନରମ ମାଂସକୁ ପୁଳା ପୁଳା କରି ବାହାର କରିନେବେ... ପରିତ୍ୟାଗ କରି ମୋ' କଂକାଳ...ସ୍କେଲଟନ୍‌ଟିକୁ । ମୁଁ ହୁଏତ ଠିକ୍ ସେହି ସ୍କେଲଟନ୍ ପରି ଦେଖାଯିବି ଯେଉଁଟି କଲେଜର ପ୍ରାଣୀବିଜ୍ଞାନ ଯାଦୁଘରେ ଅଛି, ଯେଉଁପରି ମୁଁ ସେହି ସ୍କେଲଟନ୍‌ର ପ୍ରତ୍ୟେକ ଅଂଗ ପ୍ରତ୍ୟଂଗ ପରୀକ୍ଷା କରୁଥିଲି ··ସେହିପରି ହୁଏତ ମୋତେ ଅନ୍ୟାନ୍ୟ ଛାତ୍ରମାନେ

ପରୀକ୍ଷା କରିବେ । ···ହୋଇପାରେ ମୋତେନେଇ ଠିକ୍ ସେହି ପୂର୍ବ ସ୍କେଲିଟନ୍ ନିକଟରେ ଟାଂଗାଇ ପାରନ୍ତି—ବ୍ୟଂଗରେ ପୂର୍ବ କଂକାଳଟି ଚିତ୍କାର କରିପାରେ... ଥଟ୍ଟା କରିପାରେ—ଯେପରି ଜଣେ ବ୍ୟକ୍ତି ଅପମାନିତ ହୋଇ ସାରିଲା ପରେ ଅନ୍ୟ ଏକ ଅପମାନିତ ବ୍ୟକ୍ତିକୁ ଲକ୍ଷ୍ୟକରି କୁହେ···କିଓ ଭାରି ବଡ଼ ବଡ଼ କଥା କହୁଥିଲ ତ, ଏବେ କ'ଣ ହେଲା । ମନ ମାନିଲା—ଠିକ ସେହିପରି କହିପାରେ... କିଓ ମଣିଷ ହୋଇ ମୋତେ ଖୁବ୍ ଥଟ୍ଟା କରୁଥିଲ ତ, ଏବେ ।' ଭୟରେ ଶିହରି ଉଠିଲି, ମୃତ୍ୟୁର ଭୟ କାହାକୁ ନାହିଁ... ? ଅହିଂସା ଦ୍ୱାରା କିଛି ହେବ ନାହିଁ—ହିଂସା ନୀତି ଆଦରିବାକୁ ହେବ । ଏଥର ଠିଆହୋଇ ପଛରେ ଗୋଡ଼ାଉ ଥିବା କୁକୁରମାନଂକୁ ପଥର ମାରିବାକୁ ହେବ । ହଁ ! ଏହା ବ୍ୟତୀତ ଆଉ ଉପାୟ ନାହିଁ ।

ଠିଆ ହୋଇଗଲି । କେତୋଟି ପଥର ଗୋଟେଇ ଧରିଲି । କୁକୁରମାନେ ଅଟକି ଗଲେ, ପଥର ଫିଂଗିଲି ! ଅପ୍ରତ୍ୟାଶିତ ଆକ୍ରମଣ ସେମାନଂକୁ ସ୍ତବଧ କରିଦେଲା । ମୁଁ ପଥର ଫିଂଗି ଚାଲିଥାଏ । ସେମାନେ ପଛଘୁଂଚି ଦେଇ ଚାଲିଗଲେ । ନରମ ହେଲେ ସମସ୍ତେ ଆକ୍ରମଣ କରିବେ··· ଆଘାତ ଦେବେ ।

ଟିକେ ଆଶ୍ୱସ୍ତ ହେଲି । ଯାହାହେଉ କଂକାଳ ହେବା ନୋହିଲି । ଦୂରକୁ ଲକ୍ଷ୍ୟକରି ଦୃଷ୍ଟିଗୋଚର ହେଲା ଆଲୋକମାଳାରେ ସଜ୍ଜିତ ଛକ...ମୋର ଲକ୍ଷ୍ୟପଥ, ପ୍ରାୟ ଶୂନ୍ୟ । କେତୋଟି ରିକ୍ସା ସେକେଂଡ଼ ସୋ'ର ସମାପ୍ତିକୁ ନିଜର ଚାଳକମାନଂକ ସହ ଅପେକ୍ଷା କରି ରହିଛଂତି । ଦୁଇ ତିନୋଟି ଦୋକାନ ଖୋଲିଅଛି । ଉଚ୍ଚ ସ୍ୱରରେ କେଉଁ ଏକ ଷ୍ଟେସନରୁ କର୍ଣ୍ଣମଧୁର ସଂଗୀତ ଭାସି ଆସୁଛି । ସଂଗୀତ ଭାବ ଓ ସ୍ୱର ବର୍ତ୍ତମାନର ବାତାବରଣଠାରୁ ସମ୍ପୂର୍ଣ୍ଣ ଭିନ୍ନ । ମୁଁ ହାତ ଛାଟି ଚାଲିବା ଆରଂଭ କଲି ଏବେ ମୁଁ ଚାଲୁଛି··· ହାଓ୍ୱାଇ ସ୍ଲିପରର ଯେ ଚଟ ଚଟ ଶବ୍ଦ ଆଉ ଖାପଛଡ଼ା ଲାଗୁନାହିଁ । ରେଡ଼ିଓରୁ ଆସୁଥିବା ସଂଗୀତ ସହିତ ସ୍ଲିପରର ଚଟ ଚଟ ଶବ୍ଦ ଠିକ ଏକ ଅତିରିକ୍ତ ବାଦ୍ୟଯନ୍ତ୍ର ପ୍ରାୟ । ଛକ ନିକଟ ସିନେମା ହଲର ପୋଷ୍ଟର ବଦଳୁଛି ବୋଧହୁଏ କୌଣସି ନୂତନ ଛବି···କାଲି ସହରରେ ଚହଲ ପକେଇବ··· ଆଡ଼ଭାନ୍ସ ବୁକିଂ ଘରେ ଲୋକଭିଡ଼ ହେବ···ଟିକେଟ ବ୍ଲାକ ହେବ ··ହଲ୍ ଭିତରେ ସୋ' ସମୟରେ ।

ନିକଟରେ ପହଂଚିଲି । ଟ୍ରାଫିକ ପୋଲିସର ଠିଆହେବା ସ୍ଥାନରେ ଦୁଇଟି ବ୍ୟକ୍ତି ଘୋଡ଼ାଘାଡ଼ି ହୋଇ ଶୋଇଛଂନ୍ତି । ତାଂକ ନିକଟ ଦେଇ ସିନେମା ହଲ ହତା ମଧ୍ୟକୁ ପ୍ରବେଶ କଲି । ଜୋସେଫ ··ପାନ ଦୋକାନୀ···ନିଜର ଦୋକାନ ବଂଦ କରୁଛି । ମୋତେ ଦେଖିଲେ ନମସ୍କାର କରିବ...କାରଣ ସବୁଦିନେ ମୋତେ ଦେଖିଲେ ନମସ୍କାର କରେ । ମୁଁ ଡାକିଲି । ସେ ଚାଲି ଲକ୍ଷ୍ୟକଲା···କିନ୍ତୁ ନମସ୍କାର କଲାନାହିଁ । ମନଟା ବ୍ୟସ୍ତହେଲା । ଥରେ ଥରେ ଏମିତି ବି ହୁଏ । ମନୁଷ୍ୟ ଯାହା ଆଶା କରିଥାଏ...ମିଳେନି । ସିନେମା ହଲ ମଧ୍ୟରୁ ଅସ୍ପଷ୍ଟ ଶବ୍ଦ ଭାସି ଆସୁଥାଏ । ମୁଁ ପୋଷ୍ଟର ବଦଳୁ ଥିବା ସ୍ଥାନକୁ ଚାଲିଗଲି । ହଲ୍‌ର ହତା ଭିତରେ ଓ ବାହାରେ ଚାରିଆଡ଼େ ନୂଆ ପୋଷ୍ଟର ଲଗା ହେଉଛି···ପୁରୁଣା ପୋଷ୍ଟର ଚିରାହୋଇ ଫୋପାଡ଼ ଦିଆ ଯାଉଛି ଓ ନୂଆ ପୋଷ୍ଟର ଟି ଅତି ଯତ୍ନରେ ଅଠା ଦିଆହୋଇ ଲଗାଯାଉଛି—ଦିନେ ଏଇ ନୂଆ ମଧ୍ୟ ପୁରୁଣା ହେବ ଏବଂ ଏକ ଅନାଗତ ଅପରିଚିତ ନୂଆ ହୋଇ ସମ୍ମୁଖରେ ଠିଆହେବ । ମୁଁ ଭାବିଲି ..ମୁଁ ଏକ ପୋଷ୍ଟର ନୁହେଁକି ? କାଲି ସକାଳେ ଏକ ନୂତନ ରୂପରେ ମୁଁ ନିଜକୁ ସଜେଇ ଆତ୍ମପ୍ରକାଶ କରିବିନି କି ? ପ୍ରତିଦିନ.. ଛୟାଅଶୀ ହଜାର ଚାରିଶ ସେକେଂଡ଼ ମୋ ଶରୀରକୁ ପରିବର୍ତ୍ତିତ କରୁ ନାହିଁକି ? ଛୟାଅଶୀ ହଜାର ଚାରିଶ ସେକେଂଡ଼ ମୋତେ ଦିନେ ପୁରୁଣା କରି ଦେଉ ନାହିଁକି ? ପ୍ରତ୍ୟେକ ଦିନର ସମାପ୍ତିରେ ମୋ ପୁରୁଣା ଆତ୍ମା ଉପରେ ଏକ ନୂଆ ପୋଷ୍ଟର ମରାଯାଇ···ସକାଳେ ଏକ ନୂତନ ରୂପରେ ଆତ୍ମପ୍ରକାଶ କରୁ ନାହିଁକି ? ତେଣୁ ମୋ ଶରୀରଟା ଏକ ମୃତ୍ୟୁର ବିଜ୍ଞାପନ... ପୋଷ୍ଟର । ସହରର ପ୍ରତ୍ୟେକ ସ୍ଥାନରେ ମରା ଯାଇଥିବା ବିଜ୍ଞାପନ, ଯାହା ପ୍ରତ୍ୟେକ ଦିନ ବଦଳୁଛି...ମୃତ୍ୟୁ ପାଖେଇଉଛି...ମନୁଷ୍ୟ ସହିତ ବୟସ ଆଗେଇଉଛି...ପାହାଚ ଖସୁଛି··· ।

ଜୋସେଫ ଦୋକାନ ବନ୍ଦକରି ଗଲାଣି । ହତା ମଧ୍ୟରେ ଆଉକେହି ନାହାନ୍ତି । ହତାର ଏକ କୋଣରେ ଏକ ଉଜ୍ଜ୍ୱଳ... ଆକର୍ଷକ ଶାଢ଼ୀ ପରିହିତା ନାରୀ...ଯା'ର ମୁଖ ମୁଁ ଦେଖିବା ନିମନ୍ତେ ଅକ୍ଷମ...ଠିଆହୋଇ କାହାକୁ ଲକ୍ଷ୍ୟକରି ରହିଛି ।

ମନ ବ୍ୟସ୍ତହେଲା...କାରଣ ସେ ସ୍ଥାନରେ ରୂପଜୀବୀମାନେ ଠିଆହୋଇ ପ୍ରତ୍ୟେକ ଦିନ ନିଜର ଗ୍ରାହକ ଖୋଜନ୍ତି । ନିକଟରେ ପହଂଚି ପରିଦର୍ଶନ କଲି । ନାଗ୍ନି ବୁଲି ଚାହିଁଲି । ତାଠଲି ଲୁହା ଉପରେ ପାଡଦେଲି ତା'ର ମୁଖ । କଙ୍କାଳର ପ୍ରତିଚ୍ଛବି । ବୃଦ୍ଧାର କଷ୍ଟ କହିବା ପୂର୍ବରୁ ମୁଁ ସେ ସ୍ଥାନ ପରିତ୍ୟାଗ କରି ଦ୍ରୁତଗତିରେ ଆଗକୁ ଚାଲିଗଲି ।

ପୋଲିସଶେଡ଼୍ ନିକଟରେ ଠିଆହୋଇ ପକେଟରେ ହାତ ମାରିଲି, ଲକ୍ଷ୍ୟ ମୋର ମନେ ପଡ଼ିଲା, ନିକଟ ପାନ ଦୋକାନରେ ଦଶପଇସା ଟିଏ ଦେଇ କିଣିବାକୁ ହେବ... ସିଗାରେଟ ଟିଏ ଦିଅ । ମୁଁ ଯେ ଘରୁ... ଆସିନ୍ଥି ସିଗାରେଟ ପିଇ । ପରୀକ୍ଷା ପାଖେଇ ଥିବାରୁ... ସାରାରାତି ପାଠ ପୁସ୍ତକ ନିକଟରେ କଟାଇବାକୁ ହେବ—ଘରେ ସିଗାରେଟ ପିଇ ହେବନି... ତେଣୁ ମନ ପରିବର୍ତ୍ତନ କରିବା ପାଇଁ ବୁଲି ଆସିଥିଲି...ସିଗାରେଟ ପିଇ ।

---

# ॥ ହେମ ହରିଣୀ ॥

**ଶ୍ରୀ କାହ୍ନୁଚରଣ ମିଶ୍ର**
ଆଦିବାସୀ ବିଭାଗ

ମନ୍ଦାକିନୀ—

ସ୍ୱର୍ଗର ନୁହେଁ ।

ଏଇ ଧୂଳି ମାଟିର ଧରଣୀତଳେ ତାର ଜନ୍ମ —ପଲ୍ଲୀ ଗାଁର ପ୍ରାଣଭରା ପ୍ରାକୃତିକ ପରିବେଶ ଭିତରେ ତାହାର ଦୈହିକ ବିକାଶ ।

ପୂର୍ବ ଦିଗବଳୟରେ ରକ୍ତ ରଙ୍ଗ ଚହଟି ଉଠି ପୁଣି ସଞ୍ଜୁଆ ଅନ୍ଧାର ହେବା ଯାଏ, ସେ କେତେଥର ସବୁଜ ବନାନୀ ଘେରା ମଧୁପୁରର ଶ୍ରେଷ୍ଠ ବଡ଼ ପାହାଡ଼ ଘେରରେ ହଜିଯାଇ, ପୁଣି ସ୍ୱଚ୍ଛନୀରା ବ୍ରାହ୍ମଣୀ ବକ୍ଷରେ ଆତ୍ମପ୍ରକାଶ କରିଛି ।

ଆଦ୍ୟ ଆଷାଢ଼ର ନୃତ୍ୟରତା ମୟୂରୀ ପରି ଗାଁ ଦାଣ୍ଡରେ ତାର ନିତିଦିନ ଚଳ ଚଞ୍ଚଳ ଚରଣ ଛନ୍ଦ କେତେ ଯୁବକ ପ୍ରାଣରେ ମଧୁ ଝଙ୍କାର ତୋଳିଛି —ଆଶାର ତାଜ ଗଢ଼ିଛି ।

ପୁଣି କେତେଥର ଶାରଦୀୟ ସୁନ୍ଦର ଆକାଶ ତଳେ ପୌର୍ଣ୍ଣମାସୀର ଦୁଗ୍ଧ ଫେନ ନିଭ ଚନ୍ଦ୍ରା-ତପକୁ ଊର୍ଦ୍ଧ୍ୱରେ ରଖି ସେ ଦେଖାଦେଇ ଶିଳ୍ପୀ ତୁଳୀରେ ରୂପ ପାଇଛି ।

ତାଳ ତମାଳ ବଂଶକୁଞ୍ଜରେ ମନ୍ଦାକିନୀର ଛନ୍ଦଭରା ଚଳନ ଦେଖି କବି କାନରେ କେତେ କବିତା ଦେଇଛି —ଗ୍ରୀଷ୍ମାବକାଶର ଗୋ-ଧୂଳି ଗଗନରେ ନିଃସଙ୍ଗ ନକ୍ଷତ୍ର ପରି, ବ୍ରାହ୍ମଣୀ ବାଲି ଶଯ୍ୟାରେ ଅସଂଯତ ଅଭିସାରିକା ବେଶରେ ଆବିର୍ଭାବ ପୂର୍ବକ ପୁଣି ପଲ୍ଲୀ ବକ୍ଷରେ ଅନେକ ଥର ସେ ମିଶି ଯାଇଛି । କେହି ତାର ସଠିକ ହିସାବ ଦେଇ ପାରିବେନି— ଅତି ଆବେଗଭରା କଣ୍ଠରେ ଅମରେନ୍ଦ୍ର କହି ଚାଲି-ଥାଏ ।

ମୁଁ ନିସ୍ତବ୍ଧ ଚିତ୍ତରେ ସବୁଗୁଡ଼ାକ ଶୁଣୁଥାଏ । ସେ ଦିନ ରୌଦ୍ର ରଜନୀର ଏକ ଅମା ଅନ୍ଧାରିତ ମୁହୂର୍ତ୍ତ—ପାଖ ପଡ଼ିଶା ଘରୁ ଦ'ଦିନିଆ ଦୁନିଆର

ହିସାବ ନିକାଶ କରି ସିଂହ ବୁଢ଼ା ଆଖି ବୁଜି ଥାଆନ୍ତି ।

ଗଭିର ନିର୍ଜନତା ମନରେ ଭୟ ଆଣୁଥାଏ । ଅହେତୁକ ଶଙ୍କାରେ ଆଖିକୁ ଆମର ନିଦ ଆସୁ ନ ଥାଏ । ଅଯଥା ସମୟର ସଦୁପଯୋଗ ପାଇଁ ଅମରେନ୍ଦ୍ର ଆରମ୍ଭ କରିଥାଏ ତାର ଦୈନିକ ବଂଧୁ ଶୀତକଣ୍ଠ ଜୀବନ ଇତିହାସର କେତୋଟି ଛିନ୍ନପୃଷ୍ଠା—ପ୍ରତି ପୃଷ୍ଠାରେ ଥାଏ ତା' ଜୀବନର ଆଦର୍ଶ, ତା' ଜୀବନର ଦର୍ଶନ, ଆଉ ଥାଏ ଗୋଟାଏ ରୂପଗର୍ବୀ ନାରୀର ମନସ୍ତତ୍ତ୍ୱ—ଅପରିସୀମ ମନ ଲାଳସା । ସେ ପୁଣି ଆରମ୍ଭ କଲା—

ଦଶ ବର୍ଷର ତଳର କଥା ।

ମନ୍ଦାକିନୀ ପଢ଼ୁଥାଏ ଗାଁ ହାଇସ୍କୁଲରେ ।

ସେତେବେଳକୁ ତା ତନୁ-ପୃଷ୍ଠରେ ସୁରଭି ଲାଗି—ଲାଣି । ମନ ତାର ଚଞ୍ଚଳ ହୋଇ ଉଠୁଥାଏ,—ହୃଦୟରେ ଅନୁଭବ କରୁଥାଏ ସେ ନିଃସଙ୍ଗତା । ତପ୍ତ ବୈଶାଖର ଘୂମନ୍ତ ଦିପହର ପାଖ ପଡ଼ଶା ଘରର ମହାବିଦ୍ୟାଳୟ ଛାତ୍ର ଧୀର ଦତ୍ତ ଆଉଜି ଯାଇଥିଲା ମନ୍ଦାକିନୀର ତନୁବଲ୍ଲରୀରେ—ଟିକେ ଆଶ୍ଳେଷ, ଚେନାଏ ଗୃହାଣୀ ଆଉ ଅଳ୍ପକିଛି ଦରଘା କଣ୍ଠରେ "ତୁମକୁ ମୁଁ ଭଲପାଏ"—ଏଇ ପଦକ ପାଇଁ ।

ମନ୍ଦାକିନୀର ମନ୍ଦ ମନ୍ଦ ଜଳ-କଲ୍ଲୋଳରେ ସେ ଆତ୍ମହରା ହୋଇ ଉଠିଲା—ଭୁଲିଗଲା ସବୁକିଛି—ଭୁଲିଗଲା ତାର ଅତୀତ, ଭବିଷ୍ୟତ ଆଉ ବର୍ତ୍ତମାନ ।

ସେଥିପାଇଁ ତାକୁ ଅନେକ ଭର୍ତ୍ସନା, ଅନେକ ଅପମାନ, ଅପବାଦ ସହିବାକୁ ପଡ଼ିଛି—ତଥାପି ସେ ହେମ—ହରିଣୀର ପଶ୍ଚାତ୍ ଧାବନରୁ ଖସି ପାରିଲାନି । ସକାଳ ଆସେ ପୁଣି ସଞ୍ଜହୁଏ ।

ମନ୍ଦାକିନୀ ଆଉ ଧୀର ଦତ୍ତ ଅନେକ ସମୟ ତୋଟିଏ କୋଠରୀରେ ପଢ଼ାରତ ଥାଆନ୍ତି । ଜଣେ ପଢ଼ାଏ—ଆଉ ଜଣେ ପଢ଼େ । ପାଠ ଭିତରେ ସେମାନେ ଖୋଜି ପାଇଥିଲେ ଉପଭୋଗର ଉପକୂଳ—ଉନ୍ମତ୍ତତାର ଉପୋଦଘାଟ, ଜଣକ ମନରେ ସ୍ୱାର୍ଥ—ସିଦ୍ଧିର ପ୍ରବଳ ଲାଳସା—ଆଉ ଜଣକ ହୃଦୟରେ ଭଲ ପାଇବାର ତୀବ୍ର ନିଶା ।

ବାସନା କାମନାର ମୋହ ଭିତରେ ଦୁଇଟି ସରଳ ପ୍ରାଣ ସମର୍ପିତ ହୋଇଥିଲେ—ଭବିଷ୍ୟତକୁ ଅମାଅନ୍ଧକାରରେ ରୁଦ୍ଧକରି ।

ଗାଁର ସମବୟସ୍କ ମହଲରେ ଗୁଞ୍ଜନ—ମନ୍ଦାକିନୀ ନଷ୍ଟ ଚରିତ୍ରା, ବିରାଟ ପଚ୍ଛନାୟକ ବଂଶର କୁଳ-କଳଙ୍କ--ପିତା-ମାତାଙ୍କର ନଷ୍ଟ ନକ୍ଷତ୍ର । ଆଉ ଅନେକ କଥାକୁ ବିଶ୍ୱାସ କରନ୍ତିନି ।

ମାତ୍ର ଯେଉଁଦିନ ମନ୍ଦାକିନୀ ଧୀର ଦତ୍ତଠାରୁ ସ୍ୱ--ସ୍ୱାର୍ଥ ଟିକିକ ହାସଲ କରିସାରି ସହପାଠୀ ଶ୍ୟାମାକାନ୍ତ ସହ ସଂପର୍କ ସ୍ଥାପନ କଲା—ମନର ଭାବ, ଆଖିର କଥାକୁ କାଗଜ କଲମରେ ବାଙ୍ମୟ କଲା, ସେଦିନ ଆଖପାଖ ଗାଁ ବିଶ୍ୱାସ କଲା—ମନ୍ଦାକିନୀକୁ ଦୋଷଦେଲା—ତାର ଚରିତ୍ରକୁ ଖିନ୍ ଭିନ୍ କରି ସମାଲୋଚନା କଲା ।

ମନୁଷ୍ୟ ମନର ସାମାନ୍ୟ ଟିକେ ଦୁର୍ବଳତା, ଅଳ୍ପ ଟିକେ ବ୍ୟତିକ୍ରମ, ଯୋଗାଇ ଦିଏ ସୁବିଧାବାଦୀ ଦଳକୁ ଆହାର—ଉନ୍ମୋଚନ କରିଦିଏ ପାପାଭିପ୍ରାୟର ପ୍ରଶସ୍ତ ପାଥେୟ ।

ବିଶ୍ୱରଂଜନବାବୁ ମନ୍ଦାକିନୀର ଶିକ୍ଷକ । ସେ ତାଙ୍କ ଗ୍ରାସୀର ଏଇ ଟିକିକ ଦୁର୍ବଳତାର ସୁଯୋଗ ନେଲେ—କୃତ୍ରିମ କରୁଣା କଣା ମିଶ୍ରିତ ସ୍ନେହ ଦେଖାଇ ତାକୁ ଆପଣାର କରିନେଲେ । ସେହି ସ୍ନେହ ଭିତରେ ଲୁଚିରହି ଥିଲା ଦେହ ଭୋଗର ପ୍ରଳୟଙ୍କରୀ ପ୍ରସ୍ୱାସ -ହୀନ ମୀଚ ମନୋବୃତ୍ତିର ପରିପ୍ରକାଶ ।

ଉତ୍ତପ୍ତ ଗ୍ରୀଷ୍ମାବକାଶ ମଧ୍ୟାହ୍ନର ରୌଦ୍ର-ଜର୍ଜ୍ଜରିତ ଧୂଳିକଣା ଉପରେ ମନ୍ଦାକିନୀର ଚରଣ ଯୁଗଳ ବଂଶକୁଞ୍ଜ ଭେଦକରି ଯେତେବେଳେ ଛୁଟି ସ୍କୁଲ-ଥାଏ ବସ୍ତିଭାଇ ଘରକୁ—ଲୋକେ ଲୁଚି ଲୁଚି ଦେଖନ୍ତି—କେତେ କ'ଣ ଅସ୍ପଷ୍ଟ ଉଚ୍ଚାରଣରେ ମନ୍ଦାକିନୀ ଚରିତ୍ରକୁ ଅବିଶ୍ୱାସ କରନ୍ତି ।

ଶରୀରର ଉଦ୍ଦାମ ଶିହରଣ, ମନର ଅତୃପ୍ତ ଲାଳସା, ହୃଦୟର ଅସୀମ ଆସକ୍ତି ମନ୍ଦାକିନୀକୁ ବଳାଇଦିଏ—ଏ ସବୁକୁ ସେ ଭ୍ରୂକ୍ଷେପ ନ କରି ନିଜ-ଦ୍ୱାରା ଚାଲି ପଥରେ ଧୂଳି ଉଡ଼ାଇ ସେ ଆଗେଇ ଚାଲେ । ପିତା-ମାତାଙ୍କର କଡ଼ା ଶାସନ, କଠିନ ନିୟନ୍ତ୍ରଣ ସବୁ ତା' ନିକଟରେ ନିରର୍ଥକ ହୁଏ ।

ପୃଥିବୀ ପୃଷ୍ଠରେ ଘଟଣା ପ୍ରବାହର ପାଦ୍ୟା ଦେଇ ସମୟର ଚକ ଆଗେଇ ଚାଲିଲା । ମନର ଆଶା ପକ୍ଷୀ ତାର ଊର୍ଦ୍ଧ୍ୱକୁ ଡେଣା ହଲେଇ ଉଡ଼ିବାକୁ ଲାଗିଲା । ଗାଁ ଉଚ୍ଚ ବିଦ୍ୟାଳୟର ପାଠ ଶେଷ କରି ସେ କଟକ ମାଟିରେ ପାଦଦେଲା । ଶୈଳବାଳା ମହାବିଦ୍ୟାଳୟ—ପ୍ରଗତିଶୀଳା ନାରୀ ସମାଜର ନିଦର୍ଶନ—ତାରି ଭିତରେ ସେ ଉଚ୍ଚ ଶିକ୍ଷାପାଇଁ ସ୍ଥାନ ବାଛିନେଲା ।

ବିରାଟ ବିତଳ ପ୍ରାସାଦ, ସୁରମ୍ୟ ପୁଷ୍ପବାଟିକା, ପ୍ରଶସ୍ତ କ୍ରୀଡ଼ା ପ୍ରାଙ୍ଗଣ, ସର୍ବୋପରି ଇଟାବାଲିର ସୁଉଚ୍ଚ ମେଘନାଦ ପ୍ରାଚୀର—ସତେ ଯେପରି ଉତ୍କଳ ଗୌରବଙ୍କ ସ୍ନେହମୟୀ କନ୍ୟା ଶୈଳବାଳାଙ୍କ ସ୍ୱପ୍ନ ସାର୍ଥକ କରୁଛି—ନାରୀ ଜାଗରଣ, ନାରୀ ସ୍ୱାଧୀନତାର ସଘୋଷ ଡିଣ୍ଡିମ ପିଟୁଛି—ଆଜି ନେଇହାନ ଉଜ୍ଜ୍ୱଳ ଶିଖା ବିସ୍ତାର କରି ନାରୀ ଶିକ୍ଷା—ବର୍ତ୍ତିକା ପ୍ରଜ୍ଜ୍ୱଳିତ କରୁଛି ।

ତାରି ଭିତରେ କେତେ ବିଦେଶୀ, ସ୍ୱଦେଶୀ—ସଭ୍ୟତାର କେତେ ପ୍ରାର୍ଥକ୍ୟ, ଆଗ୍ରହ ବସ୍ତ୍ରରେ ଫରକ, ପୋଷାକ ପରିଚ୍ଛଦରେ ଅସମାନତା—ତଥାପି ସେ ମାନେ ଏକ—ଗୋଟିଏ ପରିବାରର ପରିଜନ ପରି ଚଳନ୍ତି । ମନ୍ଦାକିନୀ ସେମାନଙ୍କୁ କେଇ-ଦିନ ଭିତରେ ଅତି ଆପଣାର କରି ନେଲା—ସମସ୍ତଙ୍କୁ ନେତୃତ୍ୱ ଦେଲା ।

× × ×

ପୂଜା ପାର୍ବଣର ଏକ ଶାରଦୀୟ ସଂଧ୍ୟା ।

ଊର୍ଦ୍ଧ୍ୱରେ ମେଘ ବିମୁକ୍ତ ନୀଳାଭ ନଭମଣ୍ଡଳ—ମାଡ଼ମୁଖୀ ପକ୍ଷୀ ଦମ୍ପତିଙ୍କର କଳ କୂଜନ—ନିମ୍ନରେ ବର୍ଣ୍ଣ ପାଟବା ଶ୍ୟାମାୟିତ ସବୁଜ ଧରଣୀ, ତରଙ୍ଗାୟିତ ପୂର୍ଣ୍ଣଗର୍ଭା ପୁଷ୍କରିଣୀ ବକ୍ଷରେ ଢଳ ଢଳ କମଳ କୂଳ ସହ ମଧୁପର ପ୍ରେମାଳାପ—ଚତୁର୍ଦ୍ଦିଗରୁ ମାତୃପୂଜାର ମଙ୍ଗଳ ଧ୍ୱନୀ—ଶିରି ଶିରି ବାଆ ଭିତରେ ଝୁଣା ଦୁକୁଳର ଭୁରୁ ଭୁରୁ ଗନ୍ଧ··· ମନ୍ଦାକିନୀକୁ ଆମୋଦିତ କରୁଥାଏ—ପୂଜା ଅବସର ତାକୁ ବେଶ୍ ଭଲ ଲାଗୁଥାଏ । ବେଶୀ ତାକୁ ଭଲ ଲାଗୁ ଥାଏ ଦୂର ସମ୍ପର୍କୀୟ ଭାଇ ଶ୍ରୀକଣ୍ଠର ଉପସ୍ଥିତିରେ ।

ଶ୍ରୀକଣ୍ଠ—

ବ୍ରିସାବରେ ମନ୍ଦାକିନୀର ମାଉସୀ ପୁଅ ଭାଇ । ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟର ଜଣେ ସର୍ବାଦୃତ ଛାତ୍ରନେତା ।

ପଚିଶିଟି ବୟସ—ବସନ୍ତରେ ପାଦଦେଇ ଅନେକ ମହାପୁରୁଷ, ମହାମାନବଙ୍କ ଜୀବନ—ସୁରଭିରେ ତାର ପ୍ରାଣ—ପୁଷ୍ପ ସୁରଭିତ ହୋଇଛି—ସେଥିପାଇଁ ସାଥୀ ମହଲରେ ସେ ଆଦର୍ଶ ଯୁବକର ଆସନ ପାଇଛି ।

ତାର କଥା ଆଉ କାମ ଭିତରେ କମ୍ ପାର୍ଥକ୍ୟ । ପରପାଇଁ ପ୍ରାଣ ଦେବା ତାର ଧର୍ମ—ପଥ ଭ୍ରଷ୍ଟଙ୍କୁ ପଥ ଦେବାପାଇଁ ସେ ତିଳ ତିଳ ଯନ୍ତ୍ରଣାକୁ ଭଲ

ଯାଏ—ଭଲପାଏ ଅପର ଅଧରରେ ହସ ଫୁଟେଇ ନିଜେ କାନ୍ଦି କାନ୍ଦି ମରିବାକୁ ।

ଘଣ୍ଟ ଘଣ୍ଟା ଭେରୀ ତୂରୀର ତୁଙ୍ଗନାଦ ଭିତରେ ଯେତେବେଳେ ମୃଣ୍ମୟୀ ମା'ଙ୍କ ଆରାଧନା ଚାଲିଥାଏ— ଶିତିକଣ୍ଠ ଆଗରେ ମନ୍ଦାକିନୀ ବାଡ଼ି ବସିଥାଏ ତା' ଜୀବନର ଅସହାୟ କାହାଣୀ ।

ଶିତିକଣ୍ଠ ସବୁ ଶୁଣିଲା—ମନେ ମନେ ଦୃଢ଼ ପ୍ରତିଜ୍ଞା ହେଲା—ମନ୍ଦାକିନୀର ଚଲାପଥକୁ ପୁଷ୍ପିଳ କରିବ—ସେ ପୁଷ୍ପରେ ସୁଗନ୍ଧି ଦେବ—ତାକୁ ଅମଡ଼ାବାଟରୁ ରାଜପଥକୁ ଫେରାଇ ଆଣିବ ।

ଜଣେ ମନସ୍ତାତ୍ତ୍ୱିକ ମନନେଇ ସ୍ନେହ, ଭଲ ପାଇବା, ସମବେଦନା, ସହାନୁଭୂତିକୁ ଅସ୍ତ୍ରକରି ମନ୍ଦାକିନୀର ପ୍ରତ୍ୟେକ ଅପରାଧୀ ଇନ୍ଦ୍ରିୟକୁ ଅସ୍ତ୍ର ଚିକିତ୍ସା ଉଦ୍ଦେଶ୍ୟରେ ଶିତିକଣ୍ଠ ସ୍ଥିର ସଂକଳ୍ପ କଲା ।

କିନ୍ତୁ କାମ ନ ଥିଲେ ବି ଶିତିକଣ୍ଠ ଅନେକ ସମୟ ଛାତ୍ରୀନିବାସରେ ପରିଦର୍ଶକ ତାଲିକାଭୁକ୍ତ ହୋଇ ମନ୍ଦାକିନୀର ଭଲମନ୍ଦ ବୁଝିଛି । ଘରର ସ୍ନେହ ପୀୟୂଷ ମନ୍ଦାକିନୀ ଅନେକବାର ପାନ କରିଛି—ଚେଷ୍ଟା କରିଛି ହଜିଲା ଅତୀତକୁ ଭୁଲି ଯିବାକୁ । ଭୁଲିବାକୁ ଚେଷ୍ଟା କରିବି ସେ ଭୁଲି ପାରିଲାନି—ଧୀର ଦତ୍ତ, ଶ୍ୟାମାକାନ୍ତ ଓ ବିଶ୍ୱରଞ୍ଜନଙ୍କ ସମ୍ମିଳିତ ନିରାଶା ମରୁର 'ଲୁ', ନୟନର ରୋଷକଷାୟିତ ସ୍ଫୁଲିଙ୍ଗ—ଦୀର୍ଘ ଶ୍ୱାସର ପ୍ରଳୟଙ୍କରୀ ଝଡ଼ଝଞ୍ଜାରେ ମନ୍ଦାକିନୀ ଅତିଷ୍ଠ ହୋଇ ଉଠିଲା ।

ଅତୀତର ମଧୁ ସ୍ୱାଦ ଚାଖିବାକୁ ପୁଣିଥରେ ସେ ସୁଷ୍ଟୁ ସୁନ୍ଦର ଘରଖିଆ ଜଓ୍ୱାନକୁ ନିଜ ଚଲା ପଥରେ ଖୋଜି ପାଇଲା ।

ଶିତିକଣ୍ଠର ପ୍ରତିବାଦ ଅନେକ ସମୟ ନିରର୍ଥକ ହୁଏ । ତଥାପି ସେ ନିଜ କର୍ତ୍ତବ୍ୟରେ ହେଳା କରେନି । ମନ୍ଦାକିନୀର ଅନ୍ଧକାରମୟ ଅତୀତକୁ ମନେ ପକେଇ ସେ ଆଖି ମୁଦିଦିଏ ।

ବର୍ଷାପୁଷ୍ଟ ନଦୀଶଯ୍ୟା ଉତପ୍ତ ଗ୍ରୀଷ୍ମ ମଧ୍ୟାହ୍ନରେ ଶୁଷ୍କ ଦିଶିଲେ ବି ବାଲିଖୋଳି ବସିଲେ ଯେପରି ନିମ୍ନକୁ ନିମ୍ନକୁ ଜଳ ଝରି ପ୍ରସରି ଉଠେ—ସେହିପରି ମନ୍ଦାକିନୀର କାର୍ଯ୍ୟ ଧାରାରେ ଶିତିକଣ୍ଠ ବିରକ୍ତି ପ୍ରକାଶ କରି ରୁକ୍ଷ ଦିଶିଲେ ବି ତା' ମନ-ମାଟିକୁ ଟିକେ ଖୋଳି ଆଡ଼େଇ ଦେଲେ ମନ୍ଦାକିନୀ ପାଇଁ ଯେଉଁ ମମତା ଝରି ଝରିପଡ଼େ ତାହା କେହି କେବେ ଦେଖିବାକୁ ଚେଷ୍ଟା କରିନି—ନିଜେ ମନ୍ଦାକିନୀ ମଧ୍ୟ ।

ମନ୍ଦାକିନୀକୁ ଭଲବାଟକୁ ଆଣିବାକୁ ସେ ଅନେକ ଆକଟ କରିଛି—

ମନ୍ଦାକିନୀ ସବୁ ଶୁଣେ—ନିଜ କାର୍ଯ୍ୟାବଳୀକୁ ସେ ନିଭୃତରେ ଅନେକ ବିଶ୍ଳେଷଣ କରେ ।

ସେ ବହୁ ସମୟ ଅନ୍ୟମନସ୍କ ରହେ—ଖାଇବା ବେଳ ଗଡ଼ିଯାଏ ଜାଣି ପାରେନା । ସାଥୀମାନେ କଲେଜ ସମୟ ସୂଚେଇ ନ ଦେଲେ ତାର କଲେଜ ଯିବା ଅସମ୍ଭବ ହୋଇପଡ଼େ ।

ଅପରିସୀମ ଚିନ୍ତା—ଅନୁଶୋଚନା, ଅପମାନ, ଅପବାଦତାକୁ ଦୁର୍ବଳ କରି ଦେଲା—ଭୀଷଣ ମାନସିକ ବ୍ୟାଧିରେ ସେ ଆକ୍ରମିତ ହେଲା ।

ହଠାତ୍ ଦିନେ ମହିଳା କଲେଜରୁ ଫୋନ ଆସିଲା—ମନ୍ଦାକିନୀ ଅସୁସ୍ଥ ।

ଶିତିକଣ୍ଠର ମସ୍ତିଷ୍କ—ମେସିନ୍‌ର ସବୁ ଯନ୍ତ୍ର ଗୁଡ଼ାକ ସତେ ଯେପରି ଅଚଳ ହୋଇ ଆସିଲା । ଆଖି ଆଗରେ ତାର ଭାସି ଉଠିଲା ମନ୍ଦାକିନୀ ମା'ଙ୍କର ଦୟନୀୟ ରୂପ—କାନରେ ପ୍ରତିଧ୍ୱନିତ କଲା ମିନତି-

ମିଶ୍ରିତ ତା'ଙ୍କର କେଇପଦ ମିଠାକଥା । ସେ ଆଉ ସ୍ଥିରହୋଇ ପାରିଲେନ ।

ଷ୍ଟାଣ୍ଡରୁ ସାଇକେଲ ବାହାର କରି ମନ୍ତ୍ରିନା କଲେଜ ଗ୍ରୀଷ୍ମନିବାସ ଆଡ଼େ ପବନସହ ତାଳଦେଇ ଛୁଟି ଚାଲିଲ ।

ଦେହଟା କେବଳ ସାଇକେଲ ଉପରେ ଆଶ୍ରା ନେଇଥାଏ—ମାତ୍ର ମନ ତାର ଘୂରି ବୁଲୁଥାଏ ମନ୍ଦାକିନୀର ଦେହ ପାଖରେ ।

ବାଙ୍କାବଜାରର ଜନଗହଳି ମୋଡ଼ରେ ହଠାତ୍ ଗୋଟାଏ କାର ସହ ଶିତିକଣ୍ଠର ସାଇକେଲ ବାଡ଼େଇ ହୋଇଗଲା—ଶିତିକଣ୍ଠ ରାସ୍ତା ଉପରେ ଛିଟିକି ପଡ଼ିଲ ।

ଅଳ୍ପଦୂରରୁ ଆସୁଥିବା ଜିପ ତାର ସେଇ ରକ୍ତାକ୍ତ ଶରୀର ଉପର ଦେଇ ଚାଲିଗଲା—ଖାଲି ପଡ଼ି ରହିଲା ହାଡ଼ ମାଂସ ମିଶ୍ରିତ ପେଣ୍ଡୁଳାଟିଏ । ଅମରେନ୍ଦ୍ର ଆଖି ଆଗରେ ସେ ମର୍ମଭେଦୀ କରୁଣ ଦୃଶ୍ୟ ଭାସି ଉଠିଲା, ସେ ନିଜ ଆଖିର ଲୁହ—ମନର କୋହକୁ ଅଣ୍ଡୁ ଲୁଚେଇ ପାରିଲେନି । ଛୋଟ ପିଲାଙ୍କ ପରି କହିଁ କହିଁ ହୋଇ କାନ୍ଦି ଉଠିଲେ ।

ଥରେ ଅମରେନ୍ଦ୍ର ଆଡ଼େ ଆଉ ଥରେ ଝରକା ଫାଙ୍କରେ ଦୂର ଆକାଶକୁ ମୁଁ ଚାହିଁଲି ।

ଶାନ୍ତ ଗମ୍ଭୀର ମହାକାଶରେ ଉଲ୍କାର ପ୍ରଚଣ୍ଡ ଜ୍ୟୋତି ରେଖାଦେଇ ପୁଣି କ୍ଷଣକ ଭିତରେ ସେଇ ମହାକାଶରେ କେତେବେଳୁ ମିଳେଇ ଯାଇଥାଏ ।

ମୋ ଭିତରେ ମୁଁ ନିଜକୁ ଦେଖିଲି—ଅର୍ଦ୍ଧ-ନିମିଳିତ ନୟନରେ ପୁଣିଥରେ ସେଇଆଡ଼େ ଚାହିଁଲି ।

ଖାଲି ଅନ୍ଧକାର—ନିରନ୍ଧ୍ର ଅନ୍ଧକାର ।

—— * ——




ବସ୍‌ରେ ଯିବା ଆସିବା କରିବାବେଳେ ହାତ ବାହାରକୁ ଦିଅନ୍ତୁ ନାହିଁ ।



# ।। ମନ ଓ ସଂସ୍କୃତି ।।

ଶ୍ରୀ ଗଙ୍ଗାଧର କର, (ଭୁବନେଶ୍ୱର)

ପ୍ରକୃତିର ବିଚିତ୍ର ଗତିରେ ମଣିଷ ମନର ଯେଉଁ ରୂପ ବଦଳି ହୁଏ, ତା'ର ଫଳରେ ସଂସ୍କୃତିର ଯେଉଁ ବିରାଟ ପରିବର୍ତ୍ତନ ଘଟେ ତାହା କ'ଣ ଅବଶ୍ୟମ୍ଭାବୀ ? ଏ ପରିବର୍ତ୍ତନକୁ କ'ଣ ବନ୍ଦ କରାଯାଇ ନ ପାରେ ? ଏହା କ'ଣ—"ଦଇବ ଦଉଡ଼ି ମଣିଷ ଗାଈ
ଯେଣିକି ଓଟାର ତେଣିକି ଯାଇ !"
ପରି ସତ୍ୟ ?

ଏହାର ଉତ୍ତର କିଏ ଦେବ ! ଯେଉଁମାନଙ୍କଠାରୁ ଏ ଉତ୍ତର ଆଶା କରାଯା'ଆନ୍ତା, ସେମାନେ ପ୍ରାୟ ସମସ୍ତେ ଏ କରାଳ ଶକ୍ତିର ଖାପରୁ ଭିତରେ । ପରିବର୍ତ୍ତନର ତୁଙ୍ଗ ଦେଶରେ ଓ ପୁରାତନ ସଂସ୍କୃତିର ଲୋପ ସାଧନର ଉଚ୍ଚତମ ସୋପାନରେ ଦଣ୍ଡାୟମାନ ।

ଆମର ପୂର୍ବ ସଂସ୍କୃତି ଆଡ଼େ ଦୃଷ୍ଟି ଫେରାଇଲେ ଆଜି ଆଶ୍ଚର୍ଯ୍ୟ ବୋଧହୁଏ, ଏପରି ସଂସ୍କୃତି କ'ଣ ଏଇ ମଣିଷ ମନର ସୃଷ୍ଟି ? କିନ୍ତୁ ଇତିହାସ କହେ—ପୁରାଣ କହେ-ଏହା ଦିବାଲୋକ ପରି ସ୍ପଷ୍ଟ । ସଂସ୍କୃତିର ଜୀବନ୍ତ ପ୍ରମାଣ ଆମର ଲିଙ୍ଗରାଜ ନଗର ଆଜି ବି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ, ତଦାନୀନ୍ତନ ସଂସ୍କୃତିର ଓ ଏଇ ମଣିଷ ମନର ମହାନତା ସୂଚାଇ ଦେବାକୁ ଦଣ୍ଡାୟମାନ ହୋଇ ରହିଅଛି ।

କିନ୍ତୁ ଆମେ କ'ଣ କରୁଛୁ ? ମୂକସାକ୍ଷୀ ହୋଇ ଦେଖୁଛୁ, ପୂର୍ବପୁରୁଷର ଚାରୁକଳା ଓ କାରୀଗର କୁଶଳତାକୁ ବାହାବା କରୁଛୁ । ଏ ଚାରୁକଳା ସୃଷ୍ଟିର ଅନ୍ତରାଳରେ ଯେଉଁ ନୈତିକ ଶକ୍ତି ନିହିତ ଥିଲା, ସେ ଶକ୍ତି ଆମର କ'ଣ ଅଛି ? ଆମେ କ'ଣ ସେ ଶକ୍ତି କିପରି ସୃଷ୍ଟିହୁଏ ଓ ସେ ନୈତିକବୋଧର ମୂଲ୍ୟ କ'ଣ ସେ କଥା କେବେ ଚିନ୍ତା କରୁଛୁ ? ଚିନ୍ତା କରୁଥିଲେ ସେ ପୁରାତନ ସଂସ୍କୃତିକୁ ଲୋପ କରିବାକୁ ଦ୍ରୁତଗତିରେ ଆଗେଇ ଆସୁ ନ ଥା'ନ୍ତୁ—ମନ୍ଦିର ଭାଙ୍ଗି ମନ୍ଦିର ସ୍ଥାନରେ ମନ୍ଦିରର ପଥର ଓ ଚୂନରେ ରମ୍ୟ ବାସଗୃହ ନିର୍ମାଣ କରିବାରେ ବ୍ୟସ୍ତ ନ ଥା'ନ୍ତୁ ।

ଆମର ଆଖି ଥାଉଁ ଥାଉଁ ଆମେ ଜଳକା । ଆମେ ପଢ଼ି ଶୁଣି ଆମେ ମୂକ-ବଧିର । ଆଉଥରେ ଶିବ ପୁରାଣ ପଢ଼ନ୍ତୁ । ଦେଖନ୍ତୁ ଏ ଲିଙ୍ଗରାଜ ସଂସ୍କୃତି ଓ ଐତିହ୍ୟକୁ ବଜାୟ ରଖିବା ପାଇଁ ସେଥିରେ କିପରି ବ୍ୟବସ୍ଥା କରାଯାଇଛି ।

ଏକାମ୍ର ପଞ୍ଚକ୍ରୋଶ । ଅତି ପ୍ରିୟ ବନସ୍ଥଳୀ ଦେବ ଦେବ ମହାଦେବଙ୍କର । ବାରାଣସୀକୁ ବାଦ୍ ଦେଲେ ଏକାମ୍ର କ୍ଷେତ୍ର ଈଶ୍ୱର ପାର୍ବତୀଙ୍କର କ୍ରୀଡ଼ାସ୍ଥଳୀ । ଯେଉଁଠାରେ ସମସ୍ତ ରୁଦ୍ରଗଣ ଓ ଅଷ୍ଟଶମ୍ଭୁ ଓ ଅଷ୍ଟ ଦୁର୍ଗାଙ୍କୁ ନେଇ ଶିବ-ପାର୍ବତୀ ଆଶ୍ୱିନ ପୂର୍ଣ୍ଣିମୀ ରାତିରେ ରାସ ବିହାର କରିଥିଲେ ।

ରାସବିହାର ପରେ ସ୍ୱେଚ୍ଛାନୁଯାଇ ରୁଦ୍ରଗଣଙ୍କୁ ବିଭିନ୍ନ ସ୍ଥାନରେ ଅଷ୍ଟଶମ୍ଭୁ ଓ ଅଷ୍ଟ ଦୁର୍ଗାଙ୍କ ତତ୍ତ୍ୱା-ଧାନରେ ରଖାଇ ବ୍ରହ୍ମା, ସୂର୍ଯ୍ୟ, ଧର୍ମଦେବଙ୍କୁ ସ୍ଥାନ ଦେଇ ପରିଶେଷରେ ନାରାୟଣଙ୍କୁ (ଅନନ୍ତ ବାସୁଦେବ) ଅନୁରୋଧ କରି ବିନ୍ଦୁସାଗର ର ପୂର୍ବ ଭାଗରେ ରଖାଇଛନ୍ତି । ସବୁ ତୀର୍ଥରୁ ଜଳବିନ୍ଦୁ ଆଣି ବିନ୍ଦୁ-ସାଗରର ସୃଷ୍ଟି କରାଇ ଅତି ପବିତ୍ର ଓ ମନୋରମ ସ୍ଥଳୀ ସୁବର୍ଣ୍ଣଗିରିରେ ନିଜେ ରହିଛନ୍ତି । ଯେଉଁ ବିନ୍ଦୁସାଗରରେ ଆଜି ବି ଗୋଦାବରୀର ଗର୍ବକୁ ଖର୍ବ କରିବାର ନମୁନା (ବିନ୍ଦୁସାଗରରୁ ଗୋଦାବରୀର ସ୍ୱାତନ୍ତ୍ର୍ୟ ) ପରିଲକ୍ଷିତ ହୁଏ ଓ ଶିବଙ୍କ ଅଭିଶାପରେ ଯେଉଁ ଗୋଦାବରୀ ତୀର୍ଥ ଜଳ ସବୁଦିନେ ଅସ୍ପୃଶ୍ୟ (ସିଂହ ବୃହସ୍ପତି ୧୩ ମାସ ସମୟ ବ୍ୟତୀତ )

ଶିବ ଦ୍ରବ୍ୟଂ ନ ଲଭେତ୍—

ଶିବ ପୁରାଣ ବିଭିନ୍ନ ଅଧ୍ୟାୟରେ ଶିବ ଦ୍ରବ୍ୟ ଓ ଶିବସ୍ୱକୁ ଉପଭୋଗ କରିବା ନିମିତ୍ତ ବାରଣ କରା-ଯାଇଛି ।

ଧର୍ମାତ୍ମା କୃଷ୍ଣ ଦାସ ସ୍ନାନ ସମୟରେ ଶିବ ମନ୍ଦିରର ଭଗ୍ନାବଶେଷ ପଥର ଖଣ୍ଡକୁ ପାଦଘଷା କାର୍ଯ୍ୟରେ ବ୍ୟବହାର କରିଥିବାରୁ ତା'ର ସମସ୍ତ ଧର୍ମବିନଷ୍ଟ ହେଲା ଓ ଶେଷରେ ଯମାଳୟରେ ଦଣ୍ଡ ପାଇ ପିଶାଚରୂପ ହୋଇ ସେହି ପୁଷ୍କରିଣୀର ବୃକ୍ଷରେ ବହୁବର୍ଷ ରହିବା ପରେ ନିଜ ଶିଷ୍ୟଠାରୁ ଶିବ ଚତୁର୍ଦ୍ଦଶୀର ପୂଣ୍ୟ ଫଳକୁ ଦାନ ଲଭ କରି ପାପମୁକ୍ତ ହୋଇଥିଲା । ଉକ୍ତ ଉପାଖ୍ୟାନରୁ ଜଣାଯାଏ ଯେ ଶିବସ୍ୱ କିପରି ହଳାହଳ ଓ ଭୟଙ୍କର ।

ଏବେ ବି ନିପଟ ମଫସଲ ଅଞ୍ଚଳରେ ପୁରୁଣା କାଳିଆ ଲୋକମାନେ ଶିବ ସମ୍ପତ୍ତିକୁ ଲୋଭ କରନ୍ତି ନାହିଁ । ଏପରିକି ଶିବମନ୍ଦିରର ପଥରରେ କାଙ୍କ, କଟୁରୀ ଘଷି ଧାର କରିବା କାର୍ଯ୍ୟକୁ ବାରଣ କରିଥା'ନ୍ତି । କିନ୍ତୁ ଏ ସବୁ ଆଜି ମାନୁଛି କିଏ ? ଯେଉଁ ଏକାମ୍ର ପାଞ୍ଚକୋଶ ଭିତରେ ସେବକ ବିନା ଅନ୍ୟମାନଙ୍କୁ ମଳମୂତ୍ର ତ୍ୟାଗ କରିବାକୁ ମନା ଓ ଏହା ଅପରାଧ, ସେ ସ୍ଥାନରେ ଆଜି ଦେଉଳ ଉପରେ ପ୍ରାସାଦ ଓ ଧନ ଗର୍ବରେ ଶିବ ସମ୍ପତ୍ତି ଦଖଲ ଭୋଗ କରିବାରେ ପ୍ରାୟ ସମସ୍ତେ ବ୍ୟସ୍ତ । ଶିବସ୍ୱ ଅପହରଣ କରିବାର ଲାଳସା ଅତି ମାତ୍ରାରେ ବେଶୀ । ଏହାର ପରିଣାମ କ'ଣ ଆମେ ଉପରୋକ୍ତ ଉପାଖ୍ୟାନରୁ ଅନୁମାନ ବି କରି ପାରିବା ନାହିଁ ?

ଯେତେ ଶତ କାରୁକାର୍ଯ୍ୟ ଶୋଭିତ ଦେଉଳର ଅବସ୍ଥାକୁ ଦେଖିଲେ ଆଖିରୁ ଲୁହ ଗଡ଼ିପଡ଼େ । ହିନେ ଏଗୁଡ଼ିକ ତତ୍କାଳୀନ ସମାଜର କର୍ଣ୍ଣଧାରଙ୍କ ନିର୍ଦ୍ଦେଶରେ ଓ ଶାସକଙ୍କ ମନ ଓ ଧନରେ ଗଢ଼ା ଯାଇଥିଲା । ବେଦ ବର୍ଣ୍ଣନାନୁଯାୟୀ ରାଜା ଗୋଟିଏ ରାଜ୍ୟ ଜୟକରି ଫେରିବା ପରେ ୧୦୮ ଲିଙ୍ଗ ପ୍ରତିଷ୍ଠା କରି ଯଜ୍ଞ କରିଥା'ନ୍ତି । ତଦନୁଯାୟୀ ବହୁରାଜ୍ୟ ଜୟ କରିଥିବାର ପ୍ରମାଣ ଭୁବନେଶ୍ୱରରେ ବିଭିନ୍ନ ସ୍ଥାନରେ ୧୦୮ ଲିଙ୍ଗ ସ୍ଥାପନାରୁ ଜଣାପଡ଼େ । ତନ୍ମଧ୍ୟରେ ଦେବୀ ପାଦହରା ପୁଷ୍କରିଣୀର ଚତୁଃପାର୍ଶ୍ୱରେ ୧୦୮ ଲିଙ୍ଗର ଜ୍ୱଳନ୍ତ ନମୁନା ଏବେ ବି ରହି-ଅଛି ।

ସେ ଯାହାହେଉ ଏକାମ୍ର କ୍ଷେତ୍ର ଯେ ସର୍ବଶ୍ରେଷ୍ଠ ଶିବପୀଠ ଓ ଏ କ୍ଷେତ୍ରର ପାଞ୍ଚକୋଶ ବ୍ୟାପୀ ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି କେବଳ ଯେ ଶିବଙ୍କର, ଏଥିରେ କୌଣସି ଦ୍ୱିଧା ନାହିଁ ।

ଏଣୁ ଶିବସ୍ୱକୁ ନିଜସ୍ୱ କରିବାର ଅପଚେଷ୍ଟା, ଦୁରାକାଙ୍କ୍ଷା ବା ଔଦ୍ଧତ୍ୟ ଆମକୁ ଓ ଆମର ସଂସ୍କୃତିକୁ ଯେ ନିଶ୍ଚିହ୍ନ କରିଦେବ, ଏଥିରେ ଆଦୌ ସନ୍ଦେହ ନାହିଁ ।

ଆମର ପୂର୍ବପୁରୁଷମାନେ ଯେଉଁ କଷ୍ଟ ଓ ତ୍ୟାଗ ସ୍ୱୀକାର କରି ଏପରି କୀର୍ତ୍ତିମାନ ସୃଷ୍ଟି କରିଯାଇଛନ୍ତି ତାକୁ ଆମେ କ'ଣ ବଞ୍ଚାଇ ରଖି ପାରିବା ନାହିଁ ? ଆମେ କି ଏତେ ନିଃସ୍ୱ—ଦରିଦ୍ର-ଶକ୍ତିହୀନ ।

ଆମେ ବଞ୍ଚାଇ ନ ପାରିବା ସତ ! ଧ୍ୱଂସର ମୂକ ସାକ୍ଷୀ ତ ହୋଇ ପାରିବା । କିନ୍ତୁ ଧ୍ୱଂସ କରିବା କାହିଁକି ? ସତ୍ୟ କହିବାକୁ ଯଦି ଆମର କଣ୍ଠରୋଧ ହୋଇଯାଉଛି, ମୌନ ତ ରହି ପାରିବା । ତେବେ ମିଥ୍ୟା କାହିଁକି ? କାହାର ଭଲ ନ କରି ପାରିଲେ ନିଶ୍ଚେଷ୍ଟ ରହିବା । ଅନିଷ୍ଟ କରିବାକୁ ଚେଷ୍ଟା କରୁଛେ କାହିଁକି ବୁଝି ହେଉନାହିଁ ।

ଆମେ କ'ଣ ବିଦେଶୀ ଗୋରା ସରକାର, ଯାହାକୁ କି ବିଧର୍ମୀ ବୋଲି ଏଇ ଦେଶରେ ଆଖ୍ୟା ଦିଆ ଯାଇଥିଲା, ତାଙ୍କଠାରୁ ବି ନ୍ୟୂନ ? ସେମାନେ ତ ପୁଣି ଏତେବଡ଼ ତ୍ୟାଗ ସ୍ୱୀକାର କରିପାରିଲେ—ବିଭବଶାଳୀ ଭାରତକୁ ତ୍ୟାଗକରି ଯାଇ ପାରିଲେ ।

ତେବେ ଆଗେଇ ଆସ ଏହି ପୁଣ୍ୟ ତ୍ୟାଗ ଦିବସ ଅଗଷ୍ଟ ପନ୍ଦରରେ ଆମେ ଶପଥ କରିବା ଶିବ ସମ୍ପତ୍ତିକୁ ଭୋଗ ନ କରି—ତ୍ୟାଗ କରିବା ଆଉ ଶିବ ମନ୍ଦିର—ଦେବ ପ୍ରାଙ୍ଗଣ ଓ ଦେବସ୍ୱ ରକ୍ଷଣାବେକ୍ଷଣ ପାଇଁ କଷ୍ଟ ଓ ତ୍ୟାଗ ସ୍ୱୀକାର କରି ଆଗେଇ ଯିବା ।

ପୁଣିଥରେ ଏକାମ୍ର ପଞ୍ଚକ୍ରୋଶ, ଶିବଙ୍କର ବନ ବିହାରସ୍ଥଳୀ ସରସ ସୁନ୍ଦର ଓ ରମଣୀୟ ହୋଇ ବିଶ୍ୱ ଜନକ—ଜନନୀ ଶିବ ପାର୍ବତୀଙ୍କର ମନ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ଆମ-ମନରେ ପୁନଶ୍ଚ ଆଧ୍ୟାତ୍ମ-ନୈତିକ ଶକ୍ତିର ଉତ୍ସ ସୃଷ୍ଟିକରୁ । ଏହାହିଁ ଆଜିର କାମନା ଓ ବାସନା ।



ଘର ଅଗଣା ସଫା ସୁତୁରା ରଖନ୍ତୁ ।
ରାସ୍ତାକୁ ଭଙ୍ଗାକାଚ, ଲୁହା, ଅଳିଆ
ଇତ୍ୟାଦି ପକାନ୍ତୁ ନାହିଁ ।

# ଗୁଡ଼ିଏ ଅପେକ୍ଷା ଯୋଡ଼ିଏ ନିଶ୍ଚୟ ଭଲ ।

କାରଣ—



❋- ପିତାମାତାଙ୍କର ଉପଯୁକ୍ତ ସ୍ନେହମମତା ସେମାନେ ପାଇ ପାରନ୍ତି ।

❋- ଖାଦ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ସେମାନଙ୍କୁ ଯୋଗାଇ ଦେବା ସୁବିଧା ହୋଇଥାଏ ।

❋- ସେମାନଙ୍କୁ ଭବିଷ୍ୟତରେ ଉନ୍ନତ ନାଗରିକ ଭାବରେ ଗଢ଼ି ତୋଳିବା ସମ୍ଭବ ହୋଇପାରେ ।

**ମୋଟ ଉପରେ ଏହାଦ୍ୱାରା ଆପଣଙ୍କର ପରିବାରଟି ପରିପୂର୍ଣ୍ଣ ସୁଖ ଉପଭୋଗ କରିଥାଏ ।**

ଜିଲ୍ଲା ପରିବାର ନିୟୋଜନ ସଂସ୍ଥା, ସୁନ୍ଦରଗଡ଼ ।

# ＝ରମ୍ୟରଚନା＝

## ॥ ସାଙ୍ଗାତିକ ବାହାଦୁରୀ ॥

ଶ୍ରୀ ସୋମନାଥ ଖୁଣ୍ଟିଆ, ପୁରୀ

କୋଦଣ୍ଡରାମ ଓ ଦାଣ୍ଡମୁକୁନ୍ଦ ଦୁଇବନ୍ଧୁ । ସେମାନେ ଖୁବ୍ ବାହାଦୁରୀରେ କଥାବାର୍ତ୍ତା କରନ୍ତି । ଆକାଶରୁ ଚୋଳ ଆଣିଲା ପରି କଥା କହିବାରେ ସେମାନେ ବୋଧହୁଏ ପୃଥିବୀରେ ପ୍ରଥମ ସ୍ଥାନ ଅଧିକାର କରିବେ । ଯାହା ସେମାନେ ଦେଖି ନ ଥିବେ, ସେ ବିଷୟରେ କହିଲାବେଳେ ସେ ବାର ଗୁଣ ନିୟମ ପକେଇଦେବେ, ଆଖି ଛୁଇଁ ଦେବେ ଏପରି କି ଶ୍ରେଷ୍ଠ ପିଲାଙ୍କର ମୁଣ୍ଡ ପାଣି ଛଡ଼େଇ ଦେବେ ।

ତାଙ୍କୁ ସମସ୍ତେ ଜାଣନ୍ତି । ମୁହଁରେ ନ କହି ପଛରେ ଉଚ୍ଚାଙ୍ଗ ସାହିତ୍ୟରେ ଗାଳି ଦିଅନ୍ତି । ମୁହଁ ଉପରେ ଗାଳିଦେଲେ ବି ସେମାନେ ଦାନ୍ତ ଘଡ଼କ ଦେଖାଇ ହେଁ ହେଁ କରି ହସି ଦିଅନ୍ତି ।

ଥରେ ଦୁଇ ବନ୍ଧୁଙ୍କର ଦେଖା ହେଲା, ବହୁ କଥାବାର୍ତ୍ତା ପଡ଼ିଲା । କୋଦଣ୍ଡରାମ ନିଜର ବିଭାଘର କିପରି ଜାକଜକମରେ ହୋଇଥିଲା, ତାହା ବଖାଣିବାକୁ ଲାଗିଲେ । ସେ କହିଲେ, ଜାଣ ମୁକୁନ୍ଦ ମୋ ବିଭାଘରକୁ ଯାହା ହୋଇଥିଲା ନା ଏହି ସାରା ପୃଥିବୀରେ ତାହା ହୋଇ ନ ଥିବ ।

ପ୍ରାୟ ଲୋକ ସାତକୋଟି ନିମନ୍ତ୍ରଣ ହୋଇଥିଲେ । ସମସ୍ତେ କିନ୍ତୁ ଆସିପାରିଲେ ନାହିଁ ।

ଦାଣ୍ଡମୁକୁନ୍ଦ କହିଲେ ସମସ୍ତେ ନ ଆସି ଲୋକ ତିନକୋଟି ଆସିଥିବେ ।

କୋଦଣ୍ଡରାମ ବଡ଼ ବଡ଼ ଆଖିକରି କହିଲେ ନା ନା ସେପରିଗୁଡ଼ାଏ ଅତିରଞ୍ଜିତ କଥା କହନ୍ତୁ ନାହିଁ । ତିନକୋଟି ଆସିବାଟା ମିଛ ଅଢ଼େଇକୋଟି ଆସିଥିଲେ । ବଡ଼ ବଡ଼ ମଞ୍ଜି କଦଳୀପତ୍ର ଲାଗିଲା । ସାତପ୍ରକାର ଅନ୍ନ, ବାଇଶପ୍ରକାର ତରକାରି, ଦଶ-ପ୍ରକାର ପିଠା, ପାଞ୍ଚପ୍ରକାର ରସା ହୋଇଥିଲା । କଦଳୀ ଚକଟା, ବୁନ୍ଦିଆ ଖୀର, ରସାବଳୀ, ସୁଜିଖୀର, ଛେନା ପାୟସ ଏହି ହେଲା ପାଞ୍ଚପ୍ରକାର ରସା !

ସାଧା ଅନ୍ନ, ଖେଚେଡ଼ି, କାନିକା, ଘି’ଅନ୍ନ, ଦହି ପଖାଳ, ଭଜା, ମିଷ୍ଟାନ୍ନ ଏବଂ ଶେଷକୁ ଜନତା ଇଚ୍ଛା କଲେ ଦି’ଟା ଅଉଡ଼ା ପଖାଳ ଲାଗୁ; ତେଣୁ ଏମିତି ସାତପ୍ରକାର ଅନ୍ନ ରାନ୍ଧିବାକୁ ଛଅଶହ ରାନ୍ଧୁଣିଆ କି ହଇରାଣ ତମେ ତ ନିଶ୍ଚେ ଜାଣିଥିବ ।

ଦାଣ୍ଡମୁକୁନ୍ଦ କହିଲେ, ଦଶପ୍ରକାର ପିଠା କ’ଣ କରିଥିଲ ହେ·········

ତମେ ଜାଣି ଜାଣି ପୁଣି ପଚାରୁଛ ? ପିଆଜି, ବରା, ଗୁଲୁଗୁଲା, ପକୋଡ଼ି, ଆଳୁଚପ, ବାଇଗଣି, ଗୁପଚୁପ, ଦହିବରା—ଆଉ ବା କଣଟା ମନେ ପଡ଼ୁନାହିଁରେ ମୁକୁନ୍ଦ । ସାଢ଼େ ଦୁଇକୋଟି ଲୋକ ଖାଇ ଖାଇ ସାହି-ସାହି ହଇଜା ଲାଗିଲା । ଡାକ୍ତରଖାନାକୁ ତ ଲୋକେ ଉଠି ଗଲେ ନାହିଁ ।

ଓଳି ଓଳି ଭିଡ଼ ଲାଗିବାରେ ସେମାନଙ୍କ ପେଟ ଖରାପ ହୋଇଗଲା, ନଚେତ କୌଣସି ବିପଦର

ସମ୍ଭାବନା ନ ଥାଆନ୍ତା । ଏତେ ଘିଅ ଲାଗିଲା ଯେ ତା' ପରଦିନ ଦାଣ୍ଡ ଓଳେଇବା ହାଡ଼ି ଏଗାର ମହଣ ଘିଅ ରାସ୍ତାରୁ ପାଇଲା । ବଡ଼ଦାଣ୍ଡ ପର୍ଯ୍ୟନ୍ତ ଘିଅ ଭାସି ଯାଇଥିଲା । ବାଟସାରା ଗରିବ ହାଡ଼ି ପାଉ, ମୋର ସେଥିରେ ଆନନ୍ଦ କ'ଣ କହିଲ ମୁକୁନ୍ଦ ।

'ବାଣ କରିଥିଲ ନା ଖାଲି ଖାଇବାରେ ଟଙ୍କା ଉଡ଼େଇଦେଲ ହୋ' ।

ଆରେ ବେଶୀ ବାଣ କରି ନ ଥିଲି । ମିଛ କାହିଁକି କହିବି ମୋଟେ ଏଗାରହଜାର ଗଛବାଣ, ଦୁଇଲକ୍ଷ ବଡ଼ଚକି, ନଅଶହ ବମ୍ବାଜି, ଆଉ ମୋଟେ ଶହେ ହାବେଳୀ ! ବାଣ ଫୁଟିବାରେ ପରା ତିନିଶହ ଅଠର ଜଣ ଲୋକ ଟଣ୍ଡିଆ ହେଲେ ଆଉ ତୋ ହାତ ଝାଙ୍ଗି ଯାଇଥିଲା ତୁ ଜାଣିନୁ ?

ମୁକୁନ୍ଦକୁ ଅପମାନ ହେଉଥାଏ, କିନ୍ତୁ ସେ ସମ୍ଭସମ୍ଭାଳି ସବୁ ଶୁଣୁଥାଏ ଏବଂ ତା' ବାହାଦୁରୀ କିପରି ଅଧିକ ହେବ ସେ କଥା ଭାବୁଥାଏ ।

ହଁ ଭାଇ ଭୁଲିଯାଉଛି । ମୋ ସ୍ତ୍ରୀ ଯେଉଁଭଳି ସୁନ୍ଦରୀ ଓହ ଦେହ ଶିଟେଇ ଯାଉଛିରେ ଭାଇ । ତାର ସରୁ ସୁନ୍ଥା, ସରୁକଥା, ସିଧାନାକ, ଧାରୁଆ ମୁହଁ, ଥିରି ଗୁଲି, ମିଠା ଆଖି ଖାଲି ଦେହଠାରୁ ମୁଣ୍ଡ ପର୍ଯ୍ୟନ୍ତ ଜଳୁଥାଏ । ମହଣେ ସୁନା ଗହଣା ଲାଗେଇ କି ସେ ସିଧା ଚାଲୁଥାଏ । କେତେ ଗୁଆଘିଅ ନ ପିଇଥିବେ ସେ । ତାଙ୍କ ଘରେ କେହି ପାଣି ପିଅନ୍ତି ନାହିଁ । ସମସ୍ତେ ଘିଅ ପିଅନ୍ତି । ଭାତ ଖାଆନ୍ତି ନାହିଁ ଖାଲି ସର, ରାବିଡ଼ି, ମଲେଇ, ଛେନା,ଖୁଆ ଏ ହାତ ସେ ହାତ କରନ୍ତି ।

ମୋ ବିଭାଘରକୁ ହାଉବାଜା, ନାଗାବାଜା, ତେଲିଙ୍ଗିବାଜା, ବ୍ୟାଣ୍ଡପାର୍ଟି କେତେ କ'ଣ ହୋଇଥିଲା ସେ ସବୁ ମନେ ପକେଇବାକୁ ସାତମାସ ଲାଗିବ ।

ବାଣ, ବାଜା, ଲାଇଟ, ଫୁଲଗଛ, ଖାଇବା ଜିନିଷ, ଲୋକବାକ ଯା'ଆସ ଗ୍ରମୁଣ୍ଡିଆ ସବୁକୁ ମିଶାଇଦେଲେ·······

କଥାଟାକୁ ଛଡ଼ାଇନେଇ ମୁକୁନ୍ଦ କହିଲେ "କୋଟିଏ ଟଙ୍କା ଖର୍ଚ୍ଚ ହୋଇଥିବ ।"

'ନା ଭାଇ !' ସେମିତି ମିଛ କୁହ ନାହିଁ ତାହାହେଲେ ମୋତେ ଅପମାନ ହେଉଛି । ମୋଟେ ସାତଲକ୍ଷ ଅଶୀହଜାର ବାରଶହ ଅଠସ୍ତରୀ ଟଙ୍କା ଅଶୀ ପଇସାରେ କାମ ଚଳମ !

ସାଙ୍ଗଠାରୁ ଏ ସବୁ କଥାଶୁଣି ମୁକୁନ୍ଦର ନାହିମୁଣ୍ଡା ଝେଞ୍ଚି ହେଉଥାଏ ଏବଂ ଅଜାଣତରେ ତା' ହାତ ନିଶ ଉପରକୁ ପଳାଉଥାଏ । ବାହାଦୁରୀ ପ୍ରଦର୍ଶନରେ ସେ କ'ଣ ଭାଗିବ ନାହିଁ । ଏ ସବୁ କଥା ଶୁଣିବାରେ ତା' ପେଟରୁ ଖାଲି ହୁଳା ଉଠିଥାଏ ।

ଏହି କୋଦଣ୍ଡରାମ ଛଟଛଟିଆ, ବାଉହାର ବୁଲା ମାଇଝିଆ, ହାନଛଟରିଆଳ ପୁଣି ଏଡ଼େ ବହପ । ସେ ବିଭାଘର ସମୟରେ କହିବା କଥାରୁ ଲକ୍ଷେଭାଗରୁ ଭାଗେ ଖର୍ଚ୍ଚ କରି ଥାଆନ୍ତା ତା' ହେଲେ ବାହାଦୁରୀଗୁଡ଼ାକ ପିଚି ପିଚି ବାହାରି ପଡ଼ୁଥାନ୍ତା !

ଯା' ସ୍ତ୍ରୀ ପୁଣି ସୁନ୍ଦରୀ । ମାସ ଦି'ଟା ଯାଇନି ଗୋବର ହେଲା ଯେ ତାକୁ ଲୁଗୁଉ ଲୁଗୁଉ ପ୍ରାଣ ଯାଉଥାଏ । ବାତେଶ ଝିଅଟାକୁ ବିଭାହୋଇ କ'ଣ ନା ଅପୂର୍ବ ସୁନ୍ଦରୀ ଆରେ !

ଏ ସବୁ ଭାବୁ ଭାବୁ ମୁକୁନ୍ଦା ଗୋଟିଏ ଆଡ଼କୁ ଝାଙ୍କି ହୋଇଗଲା । ତା' ମୁଣ୍ଡର ଦାନ୍ତ ଚହଲି ଗଲା, ଆଖି ବାଟେ ଜୁଳୁ ଜୁଳୁ ହୋଇ ନିଆଁ ବର୍ଷା ହେଲା, ସେ ତା' ଭାବୁଥିବା କଥାଗୁଡ଼ାକୁ ବାନ୍ତିକରି ପକେଇଲା ।

ସେ ଆରମ୍ଭ କଲା ହଇରେ ବାହାଦୁରିଆ, ତୁ ତ ଧାର ଉଧାର କରି ଚଳୁ, ସବୁଦୋକାନରେ ବାକି ହେବାରୁ ତୁ ଘରୁ ବାହାରୁ ନାହୁଁ । ଧୋବା, ଭଣ୍ଡାରୀ, ପଡ଼ିବାବାଲା, ଶାଢ଼ୀଦୋକାନୀ ସମସ୍ତେ ତତେ ଛକଛନ୍ତି । କିଏ କେତେବେଳେ ତୋ ଶାର୍ଟରେ

ଠିଆ ହୋଇପିବ କହିହେବ ନାହିଁ, ଏତେ ଫୁଟାଣି ତ କଲୁ !

କିନ୍ତୁ ଜାଣୁ ତୋ ବଗିଚାରେ ମୁଁ ଶହ ଶହ, ହଜାର ହଜାର, ଲକ୍ଷ ଲକ୍ଷ ପାଣିଭଳି ଉଡ଼େଇ ଦେବାରେ ପଛେଇ ନାହିଁ । ମୋ'ଠାରୁ ନେଇଥିବା କରଜର ସୁଧ ତୋ ମାଇପ ପିଲା ବିକିଦେଲେ ଦେଇ ପାରିବୁ ନାହିଁ । ଆରେ ହାରାମୀ ସବୁକଥାରେ ବାହାଦୁରୀ ଦେଖେଉଛୁ ମୋ ଆଗରେ ।

ମୋତେ ଚିହ୍ନିଛୁନି ମୁଁ କିଏ ? ମୋବାବା ଉଦ୍ଧବ ଶର୍ମାଙ୍କଠାରୁ ତୁ କ'ଣ ଅଧିକ କଥା ବୁଝାଇଲୁ ? ଆଜି ଯଦି ଭାରତର ରାଷ୍ଟ୍ରପତି ହୋଇଥାଆନ୍ତି, ପୃଥ୍ବୀଟାକୁ ବନ୍ଧୁକ ତାଡ଼ ଅଗରେ ଥୋଇ ଥୋଇ କରି ପକାଉ ଥାଆନ୍ତି ଜାଣି ଘୋଡ଼ାର ଶିଙ୍ଗ ନାହିଁ, ଘୋଡ଼ା ଥିଲେ ଶିଙ୍ଗ ରହନ୍ତା ନାହିଁ ଓ ଭୁଲ ହୋଇଗଲା, ଶିଙ୍ଗଥିଲେ ଘୋଡ଼ା ରହନ୍ତା ନାହିଁ !

ହଇରେ କୋଦଣ୍ଡ, ଅମେ ଦୁହେଁ ପିଲାଦିନୁ ଜାଣି । ଏକାଠି ଖେଳ ନାଚ କଲ, ଏକାଠି ସବୁ କଲୁ କିନ୍ତୁ ଶେଷାଙ୍କ ପରି ତୁ ମୋ ନାଁ ସ୍ମରଣ ନ କରି ଖାଲି 'ମୁଁ ମୁଁ' କହିଗଲୁ, ମଲେ ତୋତେ ଯମ ଦଣ୍ଡିପୋଲ କରି ପୃଥ୍ବୀ ଭେଜିବ ।

ତୋ ବଗିଚରେ ଯେତେ ଲୋକ ହୋଇଥିଲେ ଦଶଟା ରଥଯାତ୍ରାରେ ତା ହେବନାହିଁ ବୋଲି ଯେଉଁ ଗର୍ବ କଲୁ, ଶୁଣିଲୁ ପରସ୍ତରିବା ମୋ' ଠାରୁ ତୁ ଏଯାବତ୍ କେତେ ଟଙ୍କା ଧାରିଲୁଣି ! ଘରେ ପଛେ ହ ହନରେ ଚୁଲି ନ ଜଳୁ—ବାହାଦୁରୀଆଡ଼ୁ ବାରଣ୍ଡା ଢକଡ଼ା ।

କଥା କହୁ କହୁ ଉଛ ବାତ ହଜ ହଜ ହାଲ ଗୋଡ଼ର ବ୍ୟବହାର ହେଲା, ମୁହଁକୁ ମୁଥ, ପିଠିକି ଜାବୁଡ଼ା, ପେଟକୁ ଗୋଇଠା, ଆଖିରେ ଆଙ୍ଗୁଠି ଗେଞ୍ଜା, ମୁଣ୍ଡ ବାଳକୁ ଭିଡ଼ା, ସବୁ ରକମର ହା'ରସିଂ ଢାଉ ପରୀକ୍ଷା ଯଡ଼ଗଲା; ତେବେ ସୁଦ୍ଧା ଦୁହିଁଙ୍କୁ ହେଉଁ ଗୁଡ଼ିଏ ନାହାନ୍ତି । ଲୁଗା ଫିଟିଯାଏ ପଡ଼ୁଛି, ସେଥିପ୍ରତି ନଜର କାହାର ନାହିଁ ।

ଲୋକ ଜମିଗଲେ; କିନ୍ତୁ କେହି କାହାକୁ ସାହାଯ୍ୟ କରୁ ନ ଥାଆନ୍ତି । ଲୋକେ ହସ କୁତୁକ କରିବା ଦେଖି ଆହୁରି ରଗାରଗି ହୋଇ ଦୁହେଁ ସାହୁ ଯାହାରେ ଝଣ୍ଡା ବୁଲାଇଲା ପରି ହେଲେ ।

ହଠାତ୍ ଅବସ୍ଥା ଥଣ୍ଡା ପଡ଼ିଗଲା, ଦୁହେଁ ଲୁଗାପଟା ସଜାଡ଼ି ସଜାଡ଼ି ହେଲେ, କୋଦଣ୍ଡରାମ ଲୋକମାନଙ୍କ ଆଡ଼କୁ ନଜର କରି କହିଲେ ଯାଅ ଭାଇ, ଗସ୍ତାଗୁଡ଼, ଯାଦୁ କାଳୁ ମଲମ ଏଠି ବିକି ହେଉନାହିଁ । ଦେହକୁ ସୁସ୍ଥ ରଖିବା ପାଇଁ ଆମେ ସବୁଦିନ ଏପରି ଅଧଘଣ୍ଟାଏ ଲଢୁ । ଆରେ ମୁକୁନ୍ଦ ଘରକୁ ଆ ମଲେଇ ସରବତ ଟିକିଏ ପିଇଦେବୁ !

ମୁକୁନ୍ଦ ଦାନ୍ତମୂଳରୁ ରକ୍ତ ପୋଛୁ ପୋଛୁ କହିଲେ, ସବୁଦିନ ମଲେଇ ଖାଇ ଖାଇ ଗଉସାଗ କଲେଇ-ଦଲେଇ ହେଉଛୁ । ପେଟରେ ଯାଉ ନାହିଁ, କେତେବେଳେ ସିନା ହାତ ସାଙ୍ଗରେ ଲଢୁଥିଲ ଏବେ ତୋଭଳି ଅଣ୍ଟାଭଙ୍ଗା କୁସ୍ତିଆଙ୍ଗ ପାରୁନାହିଁ ।

ଭାଇମାନେ କାହିଁକି ଗହଳି କରିଛ । କ'ଣ ସୁକୁଟ ଦେଖୁଛ ? ପ୍ରିୟ୍ରାପ୍ରୀତିରେ କ'ଣ ନ ହୁଏ କହିଲ !

କେହିଜଣେ ନାଲପ୍ୟାଣ୍ଟ, ଚଟ୍ଟା ଯୋତା ପିନ୍ଧିଥିବା ଭଦ୍ରଲୋକ ମନ୍ତବ୍ୟ କରିବାର ଶୁଣାଗଲା 'ସାଙ୍ଘାତିକ ବାହାଦୁରୀ' ।

କୋଦଣ୍ଡ କହିଲା, 'ତୋଠାରୁ କମ' ଦୁଇବନ୍ଧୁ, କୋଳାକୋଳି ହୋଇଯିବାରେ ସର୍ବସାଧାରଣ ଆଚମ୍ବିତ ହେବା ସ୍ୱାଭାବିକ ।

—*—



# ପ୍ରକାଶ ପାଇଲା

| | |
|---|---|
| ଏକନଦୀ ଦୁଇଧାର —ସୁରେନ୍ଦ୍ର ମହାନ୍ତି | ଟ୨. ୨୫ |
| ବିପ୍ଳବ— ଅନିରୁଦ୍ଧ ପରିଡ଼ା | ଟ୩. ୦୦ |
| ନୂତନ ପ୍ରଭାତ— ରାଜକିଶୋର ମିଶ୍ର | ଟ୨. ୦୦ |
| ମୁଁ କେମିତି ପିଲା- ବିଦ୍ୟୁତପ୍ରଭା ଦେବୀ | ଟ୧. ୫୦ |
| ପିଲାଙ୍କ ବାପୁଜୀ- ଘନଶ୍ୟାମ ମହାନ୍ତି | ଟ୧. ୨୫ |
| | ଟ୧୦. ୦୦ |

ଉପର ଲିଖିତ ପାଞ୍ଚଖଣ୍ଡି ବହି ଏକକାଳୀନ ନେଲେ ଟ୫-୦୦ରେ ମିଳିବ। ସ୍କୁଲ ମେଗାଜିନ, ରସିଦ, ଛାତ୍ର ଉପସ୍ଥାନ, ଶିକ୍ଷକ ଉପସ୍ଥାନ, ପ୍ରବେଶିକା ବହି, ଓଡ଼ିଆ ଓ ଇଂରାଜୀ ହସ୍ତଲିପି ଇତ୍ୟାଦି ସୁବିଧା ଦରରେ ଶୀଘ୍ର ଛପାଇ ଯୋଗାଇ ଦିଆଯାଏ। ଅର୍ଡ଼ର ପାଇଲେ ପୁସ୍ତକ ଓ ଖାତାପତ୍ର ଭି.ପି.ପି. ଯୋଗେ ପଠାଯାଏ।



ପତ୍ରାଳାପ କରିବାକୁ ଅନୁରୋଧ—
ଶ୍ରୀ ମା' ପ୍ରେସ
ରାଜାବଗିଚା, କଟକ-୧
ଫୋନ—୧୭୧୭

ପିଲାଙ୍କ ବିଭାଗ--




## ରକେଟ ଭାଇର ଚିଠି

ସ୍ନେହର ସାଥିମାନେ !

ଆଶାକରେ କୁଶଳରେ ଥିବ । ଏଥର ତୁମମାନଙ୍କଠାରୁ ଅନେକ ଚିଠି ପାଇ ଖୁସୀ ହେଲି । ଆଜି ଆମେ ଏଇ ଜହ୍ନମାମୁଁ ବିଭାଗଟି କଥା ବିଚାର କଲାବେଳକୁ ସତକୁ ସତ ଜହ୍ନମାମୁଁଙ୍କ ଦେଶକୁ ବାଟ ଫିଟି ଗଲାଣି । ତୁମେମାନେ ତ ରେଡ଼ିଓ ଏବଂ ପତ୍ରପତ୍ରିକାରୁ ଆପୋଲୋ ୧୧ ଓ ତହିଁରେ ଯାଇଥିବା ୩ ଜଣ ବୈଜ୍ଞାନିକ ଆଲଡ୍ରିନ୍, ଆର୍ମଷ୍ଟ୍ରଙ୍ଗ ଓ କଲିନ୍‌ସଙ୍କ କୃତିତ୍ୱ ସମ୍ପର୍କରେ ସବୁକଥା ଜାଣିଥିବ । ସମୟ ଆସିବ, ଆମେମାନେ ବି ଦିନେ ଆମର ସେଇ ପ୍ରିୟ ଜହ୍ନମାମୁଁଙ୍କ ଘରେ ଯାଇ ଆସନ ପକାଇ ବସି ପଡ଼ିବା । ସେତେବେଳେ କେତେ ମଜା ଲାଗୁଥିବ ଆମକୁ !

ଏହାଛଡ଼ା, ଏ ମାସରେ କେତେଗୋଟି ସ୍ମରଣୀୟ ଦିବସ ପଡ଼ୁଛି । ସେହି ଦିବସମାନଙ୍କରେ ଆମେ ଆମର କର୍ତ୍ତବ୍ୟ ପାଳନ କରିବାକୁ ହେବ । ସେଥିଲାଗି ଆଗରୁ ତୁମମାନଙ୍କୁ ସେ ସମ୍ପର୍କରେ ଟିକେ ସୂଚେଇ ଦେଉଛି ।

ଆଗାମୀ ୧୫ ତାରିଖରେ ଆମର ପ୍ରିୟ ଜନ୍ମଭୂମି ଭାରତର ସ୍ୱାଧୀନତା ଦିବସ । ଏହି ଦିନଟି କେବଳ ଆମରି ଲାଗି ନୁହେଁ, ସମଗ୍ର ଦେଶବାସୀଙ୍କ ପକ୍ଷେ ଯେପରି ଗୁରୁତ୍ୱପୂର୍ଣ୍ଣ ସେହିପରି ଚିର ସ୍ମରଣୀୟ । ଯେଉଁମାନେ ଚିରଦିନ ଲାଗି ଏ ଦେଶ ଓ ଜାତିକୁ ପରାଧୀନତା କଷ୍ଟରୁ ମୁକ୍ତକଲେ, ସେହି ଯୋଗଜନ୍ମା ମହାପୁରୁଷମାନଙ୍କୁ ଆମେ ଆଜି ମନେପକାଇ ସେମାନଙ୍କ ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଏବଂ ଆମର ଜନନୀ ଜନ୍ମଭୂମି ଭାରତମାତାର ସୁରକ୍ଷା ଓ ସମୁନ୍ନତି ଲାଗି ସର୍ବଦା ସଜାଗ ରହିବାକୁ ସପଥ ନେବା ହିଁ ସ୍ୱାଧୀନତା ଦିବସ ପାଳନର ମୁଖ୍ୟ କାର୍ଯ୍ୟକ୍ରମ ହେଉ ।

ଏହାଛଡ଼ା ସେହି ଅଗଷ୍ଟ ପନ୍ଦର ତାରିଖରେ ସ୍ୱାଧୀନତା ସଂଗ୍ରାମର ଜଣେ ବିପ୍ଳବୀ ନେତା ଏବଂ ବିଶ୍ୱବିଖ୍ୟାତ ପଣ୍ଡିଚେରୀସ୍ଥ ଶ୍ରୀ ଅରବିନ୍ଦ ଆଶ୍ରମର ପ୍ରତିଷ୍ଠାତା ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ଜନ୍ମଦିବସ। ଏହି ଉପଲକ୍ଷେ ଉକ୍ତ ଆଶ୍ରମର ଅଧିଷ୍ଠାତ୍ରୀ ଦେବୀ ଶକ୍ତି ସ୍ୱରୂପା ଶ୍ରୀ ମା'ଙ୍କ ଦର୍ଶନୋତ୍ସବ ଏବଂ ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ଆଶ୍ରମର ଶାଖାକେନ୍ଦ୍ର, 'ପାଠଚକ୍ର'ମାନଙ୍କରେ ମଧ୍ୟ ଏହି ଉତ୍ସବ ପାଳିତ ହେବ। ସେହି ଋଷିପ୍ରାଣ ଶ୍ରୀ ଅରବିନ୍ଦ ଆଜି ନାହାନ୍ତି ସତ; କିନ୍ତୁ ଆମମାନଙ୍କ ଲାଗି ସେ ରଖି ଯାଇଛନ୍ତି ଏକ ମହାନ ଆଦର୍ଶ ତାଙ୍କର 'ଯୋଗଦର୍ଶନ'। ତୁମେମାନେ ବଡ଼ହେଲେ ସେହି ମହାଯୋଗୀଙ୍କ ସମ୍ପର୍କରେ ଓ ତାଙ୍କ ପ୍ରତିଷ୍ଠିତ ଆଶ୍ରମ ସମ୍ପର୍କରେ ଅନେକ କଥା ଜାଣି ପାରିବ ଓ ସେହି ଆଶ୍ରମ ଦେଖି ଆସିବ।

ଆଉ ଗୋଟିଏ କଥା। ଏଇମାସ ୨୨ ତାରିଖରେ ଆମ ଦେଶର ଜଣେ ବରିଷ୍ଠ ସାହିତ୍ୟିକ, ସାମ୍ବାଦିକ ଓ ଶିଶୁ ସାହିତ୍ୟ ସ୍ରଷ୍ଟା ସ୍ୱର୍ଗତ ବାଳକୃଷ୍ଣ କର୍ କଙ୍କର ଶ୍ରାଦ୍ଧଦିବସ ପଡ଼ୁଛି। ସ୍ୱ ବାଳକୃଷ୍ଣ କର ନିଜର ଜୀବନଦଶା ଭିତରେ ୩ ଗୋଟି ପତ୍ରିକାର ପ୍ରକାଶନ ସମ୍ପାଦନା କରିଥିଲେ। ତାଙ୍କଦ୍ୱାରା ପ୍ରତିଷ୍ଠିତ ମାସିକ ସାହିତ୍ୟ ପତ୍ରିକା 'ସହକାର' ଯେତେବେଳେ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଯୁଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଅନେକ ସାହିତ୍ୟପ୍ରେମୀଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଇ-ଥିଲା। ଏହାପରେ ସେ ସର୍ବପ୍ରଥମେ ଓଡ଼ିଆରେ ଶିଶୁସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ। ସେ ପତ୍ରିକାଟିର ନାଁ ଥିଲା— 'ଜହ୍ନମାମୁଁ'। ସେହି 'ଜହ୍ନମାମୁଁ' ପତ୍ରିକାଟି ଅଗଣିତ ଶିଶୁଙ୍କୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଶିଶୁ ସାହିତ୍ୟକୁ ବଞ୍ଚାଇ ରଖିବାରେ ଯଥେଷ୍ଟ ଖୋରାକ ଯୋଗାଇଥିଲା। ଶେଷରେ ସେ ଗୋଟିଏ ସମ୍ବାଦପତ୍ର ପ୍ରତିଷ୍ଠା କରି ଜନସାଧାରଣଙ୍କ ସୁଖ ଦୁଃଖକୁ ବିଶ୍ୱ-ଦରବାରରେ ଉପସ୍ଥାପିତ କରିବାର ଉଦ୍ୟମ କରିଥିଲେ। ତାଙ୍କ ପ୍ରତିଷ୍ଠିତ ସମ୍ବାଦପତ୍ର ଦୈନିକ 'ମାତୃଭୂମି' ଆଜି ମଧ୍ୟ ତୁମେମାନେ ପଢ଼ୁଥିବ। ଅତଏବ ଏଭଳି ଜଣେ ଯୋଗଜନ୍ମା ତଥା ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକଙ୍କ ପ୍ରତି ତାଙ୍କର ଶ୍ରାଦ୍ଧ ଦିବସରେ ଆମେ ଆମର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା।

ହଉ, ଆଜି ତ ଲେଖୁ ଲେଖୁ ଅନେକ କଥା ଲେଖି ଗଲିଣି। ଯେଉଁ ସାଥୀମାନେ ଲେଖା ପଠାଇଛନ୍ତି, ସେ ସବୁ କ୍ରମଶଃ ପ୍ରକାଶ ପାଇବ। ଲେଖା ଶୀଘ୍ର ପ୍ରକାଶ ନ ପାଇଲା ବୋଲି ବ୍ୟସ୍ତ ହେବନି। କେତେକ ସାଥି କୁପନ ସହ ସାଥିଶ୍ରଦ୍ଧା ପଠାଇବାକୁ ଭୁଲି ଯାଉଛନ୍ତି। ଏପରି କୁପନ ଏଣିକି ଗ୍ରହଣ କରାଯିବନାହିଁ। ଆଜି ଏତିକିରେ ରହିଲି। ତୁମେମାନେ ସବୁ ସ୍ୱାଧୀନତା ଦିବସ କିପରି ପାଳନ କଲ ଚିଠିଦ୍ୱାରା ଜଣାଇବ।

। ଇତି ।

ସ୍ନେହ, ଶୁଭେଚ୍ଛାସହ

ରକେଟ୍ ଭାଇ

C/o. ସମ୍ପାଦକ ବନଫୁଲ

ରାଜାବଗିଚା, କଟକ-୧

---



# ଅଗଷ୍ଟ-ପନ୍ଦର

ଅତୀତର ସେଇ ଅଭୁଲା 'ସ୍ମୃତି'କି
ମନରେ ଧରି,
ଆସିଛି ଆଜିରେ 'ଅଗଷ୍ଟ-ପନ୍ଦର'
ଆସିଛି ଫେରି ।

ଆସ ଆସ ମୋର ଭାଇ, ଭଉଣୀଏ
ନ କରି ହେଳା,
ଶୁଚିମନ୍ତ ହୋଇ ସଜାଡ଼ିବା ସଜ —
କୁସୁମ-ମାଳା ।

ଯୁଗସ୍ରଷ୍ଟା ବିଶ୍ୱପିତାଙ୍କ ଧିଆନେ
ପ୍ରଣାମ କରି,
ତାଙ୍କର ଉଦ୍ଦେଶ୍ୟ କରିବା ହରଷେ
ପ୍ରଭାତ ଫେରି ।

ରଘୁପତି ରାଘବ ରାଜା ରାମ
ଶବଦେ ଭାଇ !

ଗଗନ, ପବନ, ମରତ ଭୁବନ
ଦେବା କମ୍ପାଇ ।

ଜାତୀୟ ନିଶାଣ କରି ଉତ୍ତୋଳନ
ତାହାରି ତଳେ,
ଗାଇବାରେ 'ଜନଗଣମନ' ଗାନ
ଭକତି ଭରେ ।

ନୂଆ ଭାରତର 'ଜନ୍ମଦିବସ'
ଏ ଶୁଭ ଦିନେ,
ଯାଗିଉଠ ଭାଇ ! ସ୍ୱଦେଶ ପିରତି
ସବୁରି ମନେ ।

ଭୁଲି ଭେଦାଭେଦ ଯିବା ନିଜ ନିଜ
ଗୃହକୁ ଫେରି,
'ଜୟ ଗାନ୍ଧି', 'ଜୟ ସ୍ୱାଧୀନଭାରତ'
ତୁଣ୍ଡରେ ଧରି ।

—ବେଙ୍କଟେଶ୍ୱର

—*—



## ଭାରତୀୟ ହାତୀ ଛୁଆ—'ଇନ୍ଦିରା'

ଟୋକିଓରେ ରହୁଥିବା ଜାପାନୀ ଶିଶୁମାନଙ୍କ ପକ୍ଷରେ ୧୯୪୯ ସେପଟେମ୍ବର ୨୩ ତାରିଖ ଦିନଟି ସ୍ମରଣୀୟ ହୋଇ ରହିଛି । ସେହିଦିନ ଜାପାନର ଅଗଣିତ ଶିଶୁ ଏକ ହାତୀ ଦେଖିବାର ସୁଯୋଗ ପାଇଥିଲେ । ଶିଶୁମାନଙ୍କର ଅତି ପ୍ରିୟ 'ଚାଚା ନେହରୁ' ଭାରତୀୟ ଶିଶୁମାନଙ୍କ ସ୍ନେହର ସ୍ମାରକୀରୂପେ ଜାପାନୀ ପିଲାମାନଙ୍କ ପାଖକୁ 'ଇନ୍ଦିରା' ନାମ୍ନୀ ଗୋଟିଏ ଛୁଆ ହାତୀ ପଠାଇଥିଲେ । ଜାପାନର ସିବାଉରା ବନ୍ଦରରେ ପହଞ୍ଚିବା କ୍ଷଣି ଇନ୍ଦିରାକୁ ଜାପାନୀ ଶିଶୁମାନଙ୍କ ପକ୍ଷରୁ ବିରାଟ ସ୍ୱାଗତ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ଜାପାନୀ ଶିଶୁମାନଙ୍କର ସ୍ନେହରେ ଇନ୍ଦିରାର ଶିଶୁମନ ଅନେକ ସାଙ୍ଗ ଖୋଜି ପାଇଥିଲା । ବନ୍ଦରଠାରୁ ଚାଲି ଚାଲି ଇନ୍ଦିରା ଟୋକିଓ ସହର ଭିତର ଦେଇ ତାର ନୂତନ ବାସସ୍ଥାନ ଚିଡ଼ିଆଖାନାକୁ ଗଲା ।

ଜାପାନର ଖବରକାଗଜମାନେ ଇନ୍ଦିରାର ପହଞ୍ଚିବା ସମ୍ବାଦକୁ ବଡ଼ ବଡ଼ ଅକ୍ଷରରେ ଛାପିଥିଲେ । ଜାପାନର ସବୁଠାରୁ ବଡ଼ ସମ୍ବାଦପତ୍ର "ଆଶାହି-ସିମ୍ବୁନ୍" ଏହି ଉପଲକ୍ଷେ ଏକ ସ୍ୱତନ୍ତ୍ର ସପ୍ତାହ ପାଳନ କରିବା ପାଇଁ ସମଗ୍ର ଜାପାନର ଶିଶୁମାନଙ୍କୁ ନିବେଦନ କରିଥିଲେ । ପ୍ରଥମ ଦିନ ଚିଡ଼ିଆଖାନାରେ ଇନ୍ଦିରାକୁ ଏକଲକ୍ଷ ଦଶ ହଜାର ଶିଶୁ ଦେଖିବାକୁ ଯାଇଥିଲେ । ଟୋକିଓର ଚିଡ଼ିଆଖାନା ପକ୍ଷରେ ଏହା ଏକ ନୂତନ ରେକର୍ଡ଼ । ଯେଉଁସବୁ ଶିଶୁମାନେ ଟୋକିଓ ବାହାରେ ରହୁଥିଲେ, ସେମାନଙ୍କ ପାଇଁ ଇନ୍ଦିରା ସମ୍ପର୍କରେ ସ୍ୱତନ୍ତ୍ର ଚିତ୍ର ବହି ଓ ଖେଳଣା ସବୁ ବାହାର କରାଯାଇ ବିକ୍ରୀ ପାଇଁ ପଠାଯାଇଥିଲା ।

ଜାପାନୀ ଶିଶୁମାନେ ଭାରତୀୟ ଶିଶୁମାନଙ୍କର ଏହି ବନ୍ଧୁତାରେ ମୁଗ୍ଧ ହୋଇ ଭାରତକୁ ବହୁ ଖେଳନା ଓ ଉପହାର ପଠାଇଥିଲେ । ଏହି ଉପହାର ଭିତରେ ଛ'ରୁ ଦଶବର୍ଷ ବୟସ୍କ ଜାପାନୀ ପିଲାମାନଙ୍କଦ୍ୱାରା ଅଙ୍କନ କରାଯାଇଥିବା ଅନେକଗୁଡ଼ିଏ ହାତୀର ଚିତ୍ର ଅନ୍ତର୍ଭୁକ୍ତ ।

ଆଜି ଇନ୍ଦିରାକୁ ୨୦ ବର୍ଷ । ବର୍ତ୍ତମାନ ସୁଦ୍ଧା ସେ ଜାପାନୀ ଶିଶୁମାନଙ୍କର ଅତି ପ୍ରିୟ ହୋଇ ରହିଛି । ଆଜି ବି ରବିବାର ଓ ଅନ୍ୟାନ୍ୟ ଛୁଟିଦିନ ମାନଙ୍କରେ ହଜାର ହଜାର ଜାପାନୀ ଶିଶୁ ଟୋକିଓ ଚିଡ଼ିଆଖାନାକୁ ଇନ୍ଦିରାକୁ ଦେଖିବାକୁ ଆସୁଛନ୍ତି ।

( ପ୍ରେସ୍ ଇନ୍‌ଫରମେସନ ବ୍ୟୁରୋ )

—*—

ସାଥିମାନଙ୍କ କଲମରୁ—

# କ୍ଷୀରଚୋରା ଗୋପୀନାଥ

—ଶ୍ରୀ ରାଜକିଶୋର ପ୍ରଧାନ
ସାଥି ନଂ ୩୦

ପୁରାଣଯୁଗର କଥା । ପିତା ସତ୍ୟପାଳି ରାମଚନ୍ଦ୍ର ଚଉଦ ବର୍ଷ ବନବାସ ଯାଇଥିଲେ । ଓଡ଼ିଶାର ବହୁତ ଦୂରରେ ଚିତ୍ରକୂଟ ବୋଲି ଗୋଟିଏ ପର୍ବତ ଅଛି । ରାମ, ଲକ୍ଷ୍ମଣ ଓ ସୀତା ସେହି ପର୍ବତରେ କିଛିଦିନ ରହିଥିଲେ ।

ଦିନକର କଥା । ରାମଚନ୍ଦ୍ର କୁଡ଼ିଆ ଦୁଆରେ ବସି ବଣର ଗାଈଗୁଡ଼ିକୁ ଘାସ ଖାଇବାକୁ ଦେଉଥାଆନ୍ତି । ସୀତା ରାମଚନ୍ଦ୍ରଙ୍କୁ ଏହାର କାରଣ ପଚାରିଲେ । ରାମଚନ୍ଦ୍ର କହିଲେ "ମୁଁ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ରୂପେ ଜନ୍ମହୋଇ ବୃନ୍ଦାବନରେ ଗାଈ ଚରାଇବି । ସେହି ଭବିଷ୍ୟତ କଥା ମନେ ପଡ଼ିବାରୁ ମୁଁ ଆଜି ଏଇ ଗାଈଗୁଡ଼ିକୁ ଘାସ ଖୁଆଉଛି ।"

ସୀତା ହସି ହସି କହିଲେ, ତୁମର ସେ ଶ୍ରୀକୃଷ୍ଣ ରୂପ ଯଦି ଥରେ ଦେଖାନ୍ତି ମୁଁ ଖୁସୀ ହୁଅନ୍ତି । ରାମଚନ୍ଦ୍ର ଶର ମୁନରେ ଖଣ୍ଡିଏ ପଥର ଦେହରେ ସୁନ୍ଦର ଶ୍ରୀକୃଷ୍ଣ ମୂର୍ତ୍ତିଟିଏ ଖୋଳିଦେଲେ । ସୀତା ସେ ସୁନ୍ଦର ରୂପ ଦେଖି ଆନନ୍ଦରେ ଅଧୀର ହୋଇ ସେହି ପାଷାଣ ମୂର୍ତ୍ତିଟି ଉପରେ ହାତ ବୁଲାଇଲେ । ଆଶ୍ଚର୍ଯ୍ୟର କଥା ସୀତାଦେବୀଙ୍କ ହାତ ଲାଗି ମୂର୍ତ୍ତିଟି ଆହୁରି ସୁନ୍ଦର ଦିଶିଲା ।

କିଛିଦିନ ପରେ ରାମଚନ୍ଦ୍ର ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଗଲେ । କିନ୍ତୁ ସେହି ମୂର୍ତ୍ତିଟି ସେହି ଚିତ୍ରକୂଟ ପର୍ବତ ପାଖରେ ପଡ଼ି ରହିଲା । ଏହାପରେ ଅନେକ ବର୍ଷ ବିତିଗଲା ।

ଥରେ ଓଡ଼ିଶାର ରାଜା କପିଳେନ୍ଦ୍ରଦେବ ସେହି ଚିତ୍ରକୂଟ ପର୍ବତ ଆଡ଼େ ବୁଲି ଯାଇଥିଲେ । ପର୍ବତ ପାଖରେ ବୁଲୁ ବୁଲୁ ସେହି ମୂର୍ତ୍ତିଟି ତାଙ୍କ ଆଖିରେ ପଡ଼ିଲା । ସେହି ମୂର୍ତ୍ତିଟିକୁ ଆଣି କପିଳେନ୍ଦ୍ରଦେବ ରେମୁଣାରେ ଗୋଟିଏ ସୁନ୍ଦର ଦେଉଳ ତୋଳାଇ ସେଠାରେ ରଖି ସେବା ପୂଜାର ସୁବନ୍ଦୋବସ୍ତ କରିଦେଲେ । ସେହିଦିନଠାରୁ ତାଙ୍କ ନାମ ଦିଆଗଲା ଗୋପୀନାଥ । ବୃନ୍ଦାବନରେ ମାଧବେନ୍ଦ୍ର ନାମରେ ଜଣେ ବାବାଜୀ ଥିଲେ । ଦିନେ ସେ ତୀର୍ଥଯାତ୍ରାରେ ଆସି ରେମୁଣାରେ ପହଞ୍ଚିଲେ । ମନ୍ଦିର ପାଖରେ ଛୋଟ କୁଳଟିଏ । ବାବାଜୀ ସେହି କୁଳଟିରେ ରାତିଟି କଟାଇବାକୁ ସ୍ଥିର କଲେ ।

ସନ୍ଧ୍ୟା ହେବାରୁ ଗୋପୀନାଥଙ୍କ ମନ୍ଦିର ଶଙ୍ଖ ଘଣ୍ଟାରେ ଉଚ୍ଛୁଳି ପଡ଼ିଲା । ବାବାଜୀ ଜଣକ ମନ୍ଦିର ଭିତରକୁ ଗଲେ । ପ୍ରତିଦିନ ଗୋପୀନାଥଙ୍କ ପାଖରେ ବାର ଚାଟିଆ ଖୀର ଭୋଗ କରାଯାଏ । ସେ ଦିନଯାକ ବାବାଜୀ ଥିଲେ ଉପାସ । ସେ ଠାକୁରଙ୍କ ଦର୍ଶନ ପାଇ ପୁଣି ନିଜ ସ୍ଥାନକୁ ଫେରିଆସିଲେ । ଗୋପୀନାଥଙ୍କ ଖୀର କେମିତି ଟିକିଏ ଖାଆନ୍ତେ—ଏହିକଥା ଭାବି ଭାବି ବାବାଜୀ ନିଦରେ ଶୋଇ ପଡ଼ିଲେ ।

ଭକ୍ତବତ୍ସଳ ଗୋପୀନାଥ ଭକ୍ତର ଦୁଃଖ ବୁଝିଲେ । ବାରଟି ଗଟିଆ ମଧ୍ୟରୁ ଗୋଟିଏ ଗଟିଆ ନେଇ ନିଜର ଲୁଗାକାନ ତଳେ ଲୁଚାଇ ରଖିଲେ । ପୂଜାରୀ କିନ୍ତୁ ସେ କଥା ଆଦୌ ଜାଣି ପାରିଲେ ନାହିଁ ।

ସନ୍ଧ୍ୟା-ଧୂପଦୀପ-ଭୋଗରାଗ ସରିଲା । ସମସ୍ତେ ଘରକୁ ଚାଲିଗଲେ । ପୂଜାରୀ ବି ଘରେଯାଇ ନିଶ୍ଚିନ୍ତରେ ଶୋଇଲେ । ଗୋପୀନାଥ ପଣ୍ଡାଙ୍କୁ ସ୍ୱପ୍ନରେ କହିଲେ "ମନ୍ଦିରପାଖ ଚାଳରେ ମୋର ଜଣେ ଭକ୍ତ ଉପାସ ଶୋଇଛି । ମୁଁ ମୋ ଭକ୍ତପାଇଁ ଗଟିଆଏ ଖୀର ମୋ ଲୁଗାକାନ ତଳେ ଲୁଚାଇ ରଖିଛି । ତୁମେ ତାକୁ ସେ ଭୋଗ ଶୀଘ୍ର ଦେଇଆସ ।"

ପଣ୍ଡାଙ୍କ ନିଦ ଭାଙ୍ଗିଗଲା । ଘରୁ ଉଠି ଦେଉଳ ଆଡ଼େ ଚାଲିଲେ । ଦୁଆର ଫିଟାଇ ମନ୍ଦିର ଭିତରେ ପଶି ଦେଖିଲେ ସତକୁ ସତ ଠାକୁରଙ୍କ କାନତଳେ ଗଟିଆଏ ଖୀର ଲୁଚି ହୋଇଛି । ପଣ୍ଡା ଏହା ଦେଖି ଆଶ୍ଚର୍ଯ୍ୟ । ତା' ପରେ ତାକୁ ନେଇ ପାଖ ଚାଳରେ ଶୋଇଥିବା ବାବାଜୀଙ୍କୁ ଉଠାଇ ଖାଇବାକୁ ଦେଲେ । ଗତ ରାତିର ଘଟଣା ସାକ ପଣ୍ଡା ବାବାଜୀଙ୍କ ଆଗରେ କହିଲେ । ବାବାଜୀଙ୍କର ବି ଖୀର ଖାଇବାକୁ ଆଶା ଥିଲାବୋଲି ପଣ୍ଡା ଆଗରେ କହିଲେ ।

ଏକଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେହିଦିନଠାରୁ ତାଙ୍କୁ ଲୋକେ 'କ୍ଷୀରଚୋରା ଗୋପୀନାଥ' ବୋଲି କହିଲେ । ବାଲେଶ୍ୱର ଜିଲ୍ଲାଠାରୁ ଅଳ୍ପ ଦୂରରେ ରେମୁଣା ଅବସ୍ଥିତ । ଅଦ୍ୟାପି କ୍ଷୀରଚୋରା ଗୋପୀନାଥ ଉକ୍ତ ମନ୍ଦିରରେ ପୂଜା ପାଉଛନ୍ତି ।



## ॥ ପ୍ରାର୍ଥନା ॥

—ଶ୍ରୀ ବିଜୟ କୁମାର ସିହ୍ନା
ସାଥି ନଂ ୩୮

କେତେଦିନ ପ୍ରଭୁ ! ଡାକିବି ମୁଁ ଆଉ
ନୟନୁ ଲୋତକ ଢାଳି,
କେତେଦିନ ପୁଣି ଖୋଜିବି ତୁମକୁ
ହୋଇ ପାଗଳଙ୍କ ଭଳି । ୧ ।

କାଠର ଦେବତା କାଠ ହୋଇଲ କି ?
ବୁଝୁନାହଁ ମନ କଥା,
କପଟ ଭାବରେ ଡାକିଲେ ତୁମଙ୍କୁ
ବୁଝିବ ହୃଦୟ ବ୍ୟଥା । ୨ ।

ଚରଦିନ ବସି ଲୁହ ମୁଁ ଝରାଏ
ତୁମ ଦରଶନ ଲାଗି,
ଥଅ ମତେ ପ୍ରଭୁ ! ଦରଶନ ଥରେ
ଅନ୍ତର ଉଠୁ ଜାଗି । ୩ ।



# ମଜା ମଜଲିସ୍

—ରକେଟ ଭାଇ

(ତିନୋଟି ଲୋକ କାଠଯୋଡ଼ ନଈ ବାଲିରେ ଝାଡ଼ାଫେର ବସିଥିବାବେଳେ କାଠଯୋଡ଼ ପୋଲରେ ରେଳ ଯାଉଥିବାର ଦେଖି—)

୧ମ ବ୍ୟକ୍ତି କହିଲା—ଦେଇରେ ଗୋଟା ରେଳ ଯାଉଚି ।

୨ୟ ବ୍ୟକ୍ତି କହିଲା—ହଇରେ ଓଲୁ ! ଝାଡ଼ାଫେର ବସି କଥା କହୁଚୁ କପର ?

୩ୟ ବ୍ୟକ୍ତି କହିଲା—ଇରେ ହେ, ମୁଁ ପରା ସେଇଥିପାଇଁ ତୁନିହୋଇ ବସିଚି !

× × ×

ଉମେଶର ବାପା—କଥାରେ କହନ୍ତି—'ମାଡ଼କୁ ମହାଦେବ ଡରନ୍ତି' । ଗୁରୁଙ୍କର ଠୋକାଟା ଖାଇ ମାଡ଼ ଭୟରେ ଏବେ ଠିକେ କଥାବୋଲ ମାନୁଚ ।

ଉମେଶ—ତା' ହେଲେ କହିଲ ବାପା, ପରୀକ୍ଷାଖାତାରେ ଭଲ ନମ୍ବର ଦେଇ ନ ଥିବାରୁ ମୁଁ ସେ ଦିନ ପରୀକ୍ଷକଙ୍କୁ ବାଡ଼େଇବ ବୋଲି ବାଟରେ ଜଗିଥିବା ଜାଣି ତମ ମତେ ଅଟକାଇ କେଡ଼େ ଭୁଲ୍ ନ କରିଚ ?

× × ×

ମଧୁ—ବୁଝିଲୁ ଦାମ, ପଣ୍ଡିତପୁଅ ମାଙ୍କଡ଼ ମାଇଲେ ଦୋଷ ନାହିଁ ।

ଦାମ—ହଁ ତା' ନୁହେଁ ଆଉ କ'ଣ ? ମୁଁ ୩ୟ ଶ୍ରେଣୀରେ ପାଠପଢ଼ି ୨୮ ରୁ ୬ ଗଲେ କେତେ କହି ପାରିଲି ନାହିଁ । କେବଳ ବାପା କେତେଖଣ୍ଡ ଅଙ୍କବହି ଲେଖିଥିବାରୁ ସିନା ଗୁରୁଜୀ ମତେ କିଛି ନ କହି ଛାଡ଼ିଦେଲେ ?

× × ×

ବୁଲୁ—ବାପା ମୁଁ ଆଜି ଦୁଇଟି ବିଷୟରେ ପ୍ରଥମ ପୁରସ୍କାର ପାଇଲି !

ବାପା—କେଉଁ କେଉଁ ବିଷୟରେ ?

ବୁଲୁ—ଗୋଟିଏ ବିଷୟ ହେଲା—ମୋର ଅଧିକ ସ୍ମୃତିଶକ୍ତି ପାଇଁ, ଆଉ ଗୋଟିଏ ବିଷୟ କ'ଣ ମୋର ମନେ ପଡ଼ୁନି !

× × × ×

ରକେଟଭାଇ—(ଜଣେ ସାଥିଙ୍କୁ) ତୁମ ନାଁ କ'ଣ ?

ସାଥି—ମୋ ଡାକ ନାଁ—ଝୁଲି, ଠିକ୍ ନାଁ—ଲକ୍ଷ୍ମୀ ।

ଝୁଲି—ଆଚ୍ଛା, ରକେଟ୍‌ଭାଇ ! ମୋ ନାଁ ତ ଜାଣିଲେ ? ଆପଣଙ୍କ ଠିକ୍ ନାଁ କ'ଣ କି ?

ରକେଟ୍ ଭାଇ—ମୁଁ କହିବିନି ।

ଝୁଲି—ତା' ହେଲେ ମୁଁ ମୋ ନାଁ କହିଦେଲି ଯେ !

ରକେଟ୍‌ଭାଇ—ଫେରେଇ ନିଅ ପଛକେ !

## ଏଇମାନେ ଆମ ନୂଆ ସାଥି—

୨୩—ହେମଚନ୍ଦ୍ର ମହାପାତ୍ର, ବୟସ-୧୩ ଶିକ୍ଷା ୯ମ ଶ୍ରେଣୀ, ଓ/o କୃଷ୍ଣଚନ୍ଦ୍ର ମହାପାତ୍ର କ୍ୱାର୍ଟର ନଂ—୮, କ୍ୟାଣ୍ଟନ୍‌ମେଣ୍ଟରୋଡ୍‌, କଟକ—୧ ଜୀବନର ଲକ୍ଷ୍ୟ—ଜାତୀୟ ପ୍ରତିରକ୍ଷା ବିଭାଗରେ କାର୍ଯ୍ୟ ଓ ସାହିତ୍ୟ ସେବା ।

୨୪—ମହମ୍ମଦ ବଦରୁଲ ଆଲମ, ବୟସ-୧୪ ଶିକ୍ଷା—କଲେଜ ଶିକ୍ଷା ଆରମ୍ଭ, C/o ଡଃ ଏସ୍‌. ଇସ୍‌ଲାମ, ମଙ୍ଗଳାବାଗ, କଟକ—୧ । ଜୀବନର ଲକ୍ଷ୍ୟ—ଅଧ୍ୟାପନା ଓ ଅଧ୍ୟବସାୟ ।

୨୫—ରବୀନ୍ଦ୍ରନାଥ ଗୁଡ଼ଚରାୟ, ବୟସ—୧୫ ଶିକ୍ଷା—୧୧ଶ ଶ୍ରେଣୀ, କ୍ୟାପିଟାଲ ହାଇସ୍କୁଲ ୟୁନିଟ୍‌—୩, ଭୁବନେଶ୍ୱର—୭ । ଜୀବନର ଲକ୍ଷ୍ୟ—ଆଇ. ଏ. ଏସ୍‌. ଅଫିସର ।

୨୬—କୁମାରୀ ଉଷାରାଣୀ ଦାଶ, ବୟସ—୯ ଶିକ୍ଷା ୪ର୍ଥ ଶ୍ରେଣୀ, C/o ଅନିରୁଦ୍ଧ ଦାଶ, ଆଇ. ଏ. ଏସ. ସେକ୍ରେଟେରୀ—ଶିକ୍ଷାବିଭାଗ, ଭୁବନେଶ୍ୱର । ଜୀବନର ଲକ୍ଷ୍ୟ—ପାଠ ପଢ଼ିବା ଓ ଲେଖାଲେଖି କରିବା ।

୨୭—କୁମାରୀ ସୁଧାରାଣୀ ଦାଶ, ବୟସ—୧୦ ଶିକ୍ଷା—୭ମ ଶ୍ରେଣୀ, (ଉପରୋକ୍ତ ଠିକଣା) ଜୀବନର ଲକ୍ଷ୍ୟ— ଅଧ୍ୟୟନ ଓ ସାହିତ୍ୟ ସେବା ।

୨୮—ପ୍ରତାପକୁମାର ପଟ୍ଟନାୟକ, ବୟସ—୧୬ ଶିକ୍ଷା ୧୧ଶ ଶ୍ରେଣୀ, ରାଇରଙ୍ଗପୁର ହାଇସ୍କୁଲ ପୋ:—ରାଇରଙ୍ଗପୁର, ମୟୂରଭଞ୍ଜ । ଜୀବନର ଲକ୍ଷ୍ୟ—ସାହିତ୍ୟିକ ହେବା ।

୨୯—ଅଶ୍ୱିନୀକୁମାର ବେହେରା, ବୟସ—୧୫ ଶିକ୍ଷା—୧୧ଶ ଶ୍ରେଣୀ, C/o ନଟବର ବେହେରା ପୋଲିସ ଇନସ୍‌ପେକ୍ଟର, କେନ୍ଦୁଝରଗଡ଼, କେନ୍ଦୁଝର । ଜୀବନର ଲକ୍ଷ୍ୟ—ଦେଶର ନିରାପତ୍ତା ବିଭାଗରେ କାର୍ଯ୍ୟ ।

୩୦—ରାଜକିଶୋର ପ୍ରଧାନ, ବୟସ—୧୭ ଶିକ୍ଷା ୧୧ଶ ଶ୍ରେଣୀ, ଗ୍ରାମ ବରବୋ, ପୋ—ସୁନାଝଣ୍ଡି, କଟକ । ଜୀବନର ଲକ୍ଷ୍ୟ—ସାହିତ୍ୟ ସେବା ଓ ସାମ୍ବାଦିକତା ।

୩୧—ନିମାନନ୍ଦ ବେହେରା, ବୟସ—୧୫, ଶିକ୍ଷା ୧୧ଶ ଶ୍ରେଣୀ, ଏମ୍‌. କେ. ସି. ହାଇସ୍କୁଲ, ବାରିପଦା ମୟୂରଭଞ୍ଜ । ଜୀବନର ଲକ୍ଷ୍ୟ—ଡାକ୍ତର ହେବା ଓ ସାହିତ୍ୟ ସେବା ।

୩୨—କାର୍ତ୍ତିକ ଚନ୍ଦ୍ରଜେନା, ବୟସ—୧୬, ଶିକ୍ଷା—୧୦ମ ଶ୍ରେଣୀ, ଗ୍ରାମ—ମଲପୁର, ପୋ:—ମାହାଙ୍ଗା, କଟକ । ଜୀବନର ଲକ୍ଷ୍ୟ—କବି ଓ ଲେଖକ ହେବା ।

୩୩—ଦୁର୍ଗାମାଧବ ରଥ, ବୟସ—୧୪, ଶିକ୍ଷା—୧୦ମ ଶ୍ରେଣୀ, C/o ବାସୁଦେବ ରଥ, ୟୁନିଟ୍‌—୨, କ୍ୱାର୍ଟର ନଂ—୨ ଆର୍‌, ଏ / ୩୪, ଭୁବନେଶ୍ୱର, ପୁରୀ । ଜୀବନର ଲକ୍ଷ୍ୟ—ଉଚ୍ଚଶିକ୍ଷା ଲାଭ ।

୩୪ ସୀତାକାନ୍ତ ଶତପଥି, ବୟସ—୧୪, ଶିକ୍ଷା—୯ମ ଶ୍ରେଣୀ, ଜଟଣୀ, ରାମଚନ୍ଦ୍ରପୁର, ପୁରୀ ଜୀବନର ଲକ୍ଷ୍ୟ—ଦେଶ ଓ ଜାତିର ସେବା ।

୩୫—ହରପ୍ରସନ୍ନ ଦାସ, ବୟସ—୧୭, ଶିକ୍ଷା—ପ୍ରଥମ ବାର୍ଷିକ ବିଜ୍ଞାନ, କ୍ୱାର୍ଟର ନମ୍ବର—I V 39/4 ୟୁନିଟ—୧, ଭୁବନେଶ୍ୱର, ପୁରୀ । ଜୀବନର ଲକ୍ଷ୍ୟ— ଡାକ୍ତର ହେବା ଓ ଦେଶସେବା ।

୩୬—ଶଶିଶେଖର ମହାନ୍ତି, ବୟସ—୧୩, ଶିକ୍ଷା—୧୦ମ ଶ୍ରେଣୀ, C/o ଗୌରାଙ୍ଗଚନ୍ଦ୍ର ମହାନ୍ତି, ହେଡ ମାଷ୍ଟର, ରାଜ୍‌କନିକା ଟ୍ରେନିଂ ସ୍କୁଲ, ପୋ:—ରାଜ୍‌କନିକା, ସୁନ୍ଦରଗଡ଼ । ଜୀବନର ଲକ୍ଷ୍ୟ—ଡାକ୍ତର ଓ ଲେଖକ ହେବା ।

୩୭—ବାବୁରାମ ସେଠୀ, ବୟସ—୧୮, ଶିକ୍ଷା—ପି.ୟୁ. କଳା, ଫକୀରମୋହନ କଲେଜ, ବାଲେଶ୍ୱର । ଜୀବନର ଲକ୍ଷ୍ୟ—ଅଧ୍ୟାପକ ହେବା ଓ ସାହିତ୍ୟ ସେବା ।

୩୮—ଜୀବନକୁମାର ଦାସ, ବୟସ—୧୫, ଶିକ୍ଷା—୯ମ ଶ୍ରେଣୀ, C/o କୃଷ୍ଣଚନ୍ଦ୍ର ଦାସ, (E. S. O.) ଜଟଣୀ, ପୁରୀ । ଜୀବନର ଲକ୍ଷ୍ୟ—ଜାତିର ସେବା ।

୩୯—ବିଜୟକୁମାର ସିହ୍ନା, ବୟସ—୧୮, ଶିକ୍ଷା—ପ୍ରଥମ ବାର୍ଷିକ କଳା, C/o ନଟବର ସିହ୍ନା,- ହେରଗୌରିସାହି, ( ଗୋପବନ୍ଧୁ ଭବନ ସାମନା ) ପୁରୀ, ଜୀବନର ଲକ୍ଷ୍ୟ—ଉତ୍ତମ ହକି ପ୍ଲେୟାର ।

୪୦—କୁମାରୀ ଜୟନ୍ତୀ ଦାସ, ବୟସ—୧୩, ଶିକ୍ଷା ୧୦ମ ଶ୍ରେଣୀ, C/o ଗୋଲକଚନ୍ଦ୍ର ଦାସ, ରାମଗଡ଼, କଟକ—୧ ଜୀବନର ଲକ୍ଷ୍ୟ—ଅଧ୍ୟାପିକା ହେବା ।

୪୧—ଗୌରାଙ୍ଗଚନ୍ଦ୍ର ମହାନ୍ତ, ବୟସ—୧୬, ଶିକ୍ଷା—୧୦ମ ଶ୍ରେଣୀ, ଯଶିପୁର ଉଚ୍ଚଇଂରାଜୀ ବିଦ୍ୟାଳୟ, ଯଶିପୁର, ମୟୂରଭଞ୍ଜ । ଜୀବନର ଲକ୍ଷ୍ୟ—ଅଧ୍ୟୟନ ଓ ମାତୃଭାଷାର ଉନ୍ନତି ଲାଗି କାର୍ଯ୍ୟ କରିବା ।

୪୨—ଗଦାଧର ପୃଷ୍ଟି, ବୟସ—୧୬, ଶିକ୍ଷା—୧୧ଶ ଶ୍ରେଣୀ, ଏମ୍. କେ. ସି. ହାଇସ୍କୁଲ, ବାରିପଦା ମୟୂରଭଞ୍ଜ । ଜୀବନର ଲକ୍ଷ୍ୟ—ଔପନ୍ୟାସିକ ହେବା ଓ କଳାର ଉନ୍ନତି ଲାଗି ଉଦ୍ୟମ କରିବା ।

୪୩—ମନୋଜ କୁମାର ପରିଡ଼ା; ବୟସ—୧୦ ଶିକ୍ଷା—୬ଷ୍ଠ ଶ୍ରେଣୀ, C/o ଅଧ୍ୟାପକ ରମେଶଚନ୍ଦ୍ର ପରିଡ଼ା, ଗ୍ରାମ/ପୋଷ୍ଟ—ଯମପଡ଼ା, ଭାୟା—କେନ୍ଦ୍ରାପଡ଼ା କଟକ । ଜୀବନର ଲକ୍ଷ୍ୟ—ଲୋକସେବା ଓ ସାହିତ୍ୟ ସେବା ।

୪୪—କୁମାରୀ ନମିତା ମହାପାତ୍ର, ବୟସ—୬ ଶିକ୍ଷା—ପ୍ରଥମଶ୍ରେଣୀ, C/o ନୀଳକେତନ ମହାପାତ୍ର ଗ୍ରାମ—କୋଲଣପୁର, ପୋଷ୍ଟ ସାଲେପୁର, କଟକ । ଜୀବନର ଲକ୍ଷ୍ୟ—ଆଦର୍ଶ ଗୃହିଣୀ ଓ ପରୋପକାର ।

୪୫—କୁମାରୀ ସ୍ନେହଲତା ସାମଲ, ବୟସ—୧୩, ଶିକ୍ଷା—୫ମ ଶ୍ରେଣୀ, C/o ଘନବନ୍ଧୁ ସାମଲ, ଗ୍ରାମ—ଚନ୍ଦ୍ରାଦେଈପୁର, ପୋ:—ସାଲେପୁର କଟକ । ଜୀବନର ଲକ୍ଷ୍ୟ—ଆଦର୍ଶ ଗୃହିଣୀ ଓ ଅତିଥି ସେବା ।

—✳—

## ସାଥି କୁପନ

**ରକେଟ୍ ଭାଇ,**

ମୁଁ 'ବନଫୁଲ'ର 'ଜହ୍ନମାମୁଁ' ବିଭାଗରେ ସାଥି ହେବାପାଇଁ କୁପନ ପୂରଣ କରି ସାଥିଚନ୍ଦା ୨୦ ପଇସାର ଡାକ ଟିକେଟ ପଠାଇଲି । ମତେ ସାଥି କରିନେବେ ।

ନାମ.................................................ବୟସ..................ଶିକ୍ଷା.........................

ପୁରା ଠିକଣା..........................

ଜୀବନର ଲକ୍ଷ୍ୟ..............................

ସ୍ୱାକ୍ଷର.........................

ତାରିଖ.........................

ଧାରାବାହିକ ଉପନ୍ୟାସ :—




## ( ପୂର୍ବକଥା )

( ପାଣିପାଟପୁର ଅଞ୍ଚଳର ଭୂତପୂର୍ବ ଜମିଦାର, ଅବସରପ୍ରାପ୍ତ ଇଂଜିନିୟର ସଂଗ୍ରାମକେଶରୀ ବୃଦ୍ଧ ବୟସରେ ସହରର ମାୟା ତୁଟାଇ ଗ୍ରାମକୁ ଫେରି ଆସିଥିଲେ—କାରଣ ସେ ଗୋପନୀୟ ସରକାରୀ ସୂତ୍ରରୁ ସମ୍ବାଦ ପାଇଥିଲେ ଯେ ଏହି ଗ୍ରାମ ନିକଟରେ ହିଁ ବସିବ ଏକ ରାସାୟନିକ ସାର କାରଖାନା···ପାଣିପାଟପୁର ଗ୍ରାମ ହେବ ଏକ ଉନ୍ନତ ସହର···ସେଥିପାଇଁ ସରକାରୀ ଚାକିରୀରୁ ଅବସର ନେଲା ପରେ ସେ ଯେଉଁ ଗ୍ରାଚୁଇଟି, ପ୍ରୋଭିଡେଣ୍ଟ ଫଣ୍ଡ୍ ଟଙ୍କା ପାଇଥିଲେ, ସେ ଟଙ୍କା ସେ ବିନିଯୋଗ କରିଥିଲେ ପାଣିପାଟପୁର ଗ୍ରାମରେ ଜମି କିଣିବା ପାଇଁ···

ଗ୍ରାମବାସୀମାନେ ଭାବିଥିଲେ ସରକାରୀ ଚାକିରୀ କରୁଥିବାବେଳେ ସଂଗ୍ରାମକେଶରୀ ଗୃହଜମି ବିକ୍ରୀ କରିଥିଲେ, ଅବସର ନେବା ପରେ ହୁଏତ ସେ ଗ୍ରାମକୁ ଆସିଛନ୍ତି ବଗିଚା ଆଉ ଘରଦ୍ୱାର ବିକ୍ରୀ କରିବା ପାଇଁ । ସଂଗ୍ରାମକେଶରୀଙ୍କ ବଗିଚା ଓ ପୈତୃକ ଗୃହ କ୍ରୟ କରିବା ପାଇଁ ଗ୍ରାମର ବହୁ ଲୋକ ଉତ୍ସାହୀ ହୋଇ ଉଠିଥିଲେ; କିନ୍ତୁ ଜମି ବିକିବା ବଦଳରେ ଚଢ଼ା ମୂଲ୍ୟ ଦେଇ ଯେତେବେଳେ ସଂଗ୍ରାମକେଶରୀ ଜମି କିଣିବାକୁ ଆରମ୍ଭ କଲେ, ସେତେବେଳେ ସେମାନଙ୍କ ମନ ଅନେକ ସନ୍ଦେହର ଲୁଚିଆଣୀ ଜାଲରେ ଛନ୍ଦହୋଇ ପଡ଼ିଲା । ଆଜୀବନ ସହରରେ ବଢ଼ିଥିବା ଅବସରପ୍ରାପ୍ତ ଇଂଜିନିୟର ଗ୍ରାମରେ ଆସି କୃଷି କରିବେ, ଏ କଥା ବିଶ୍ୱାସ କରିବାକୁ ସେମାନେ କଷ୍ଟ ବୋଧ କରିଥିଲେ; କିନ୍ତୁ ସଂଗ୍ରାମକେଶରୀ ସ୍ୱପ୍ନକୁ ସତ୍ୟରେ ପରିଣତ କଲେ । ଗ୍ରାମରେ ସ୍ଥାୟୀଭାବରେ ବସବାସ କରିବା ପାଇଁ ସେ ସହରରୁ ଦିନେ ନେଇ ଆସିଲେ ନିଜର ପତ୍ନୀ ଏବଂ କିଶୋରୀ କନ୍ୟା ଇତିଶ୍ରୀକୁ । କିଛିଦିନ ପରେ ଏକ ସାଧାରଣ ସଭାରେ ମନ୍ତ୍ରୀ କପିଳେଶ୍ୱର ଘୋଷଣା କଲେ, ପାଣିପାଟପୁର ଗ୍ରାମରେ ବସିବ ସରକାରୀ ଉଦ୍ୟମରେ ରାସାୟନିକ ସାରକାରଖାନା । ଲୋକଙ୍କ ଆଖି ଆଗରୁ ରହସ୍ୟର ପରଦା ଅପସାରିତ ହୋଇଗଲା । କେଉଁ ଲୋଭରେ ସଂଗ୍ରାମକେଶରୀ ସହର ଛାଡ଼ି ପାଣିପାଟପୁର ଗ୍ରାମରେ ମାଟି କାମୁଡ଼ି ପଡ଼ି ରହିଛନ୍ତି, ସେ କଥା ବେଶ୍ ବୁଝି ପାରିଲେ ପାଣିପାଟପୁର ଅଞ୍ଚଳର ଜନସାଧାରଣ । ପୋଖରୀର ସ୍ଥିର ଜଳରେ ଗୋଡ଼ିଟିଏ ପଡ଼ିଲେ କ୍ଷଣକ ପାଇଁ

ପାଣି ଟିକିଏ ଯେପରି ଟହଲିଯାଇ ପୁଣି ଶାନ୍ତ, ସମତଳ ହୋଇଯାଏ, ସଂଗ୍ରାମକେଶରୀଙ୍କ ଗ୍ରାମ ପ୍ରତ୍ୟାବର୍ତ୍ତନ ରହସ୍ୟ ଉଦ୍‌ଘାଟନ ସେହିପରି ପାଣିପାଟପୁର ଅଞ୍ଚଳ ଗ୍ରାମବାସୀମାନଙ୍କ ମନରେ ଦିନ କେତୋଟି ପାଇଁ କୌତୂହଳ ସୃଷ୍ଟିକରି ବିସ୍ମୃତ ହୋଇଗଲା ।

କିନ୍ତୁ ସେ କଥା କେବଳ ଭୁଲି ପାରିଲେ ନାହିଁ ସେ ଅଞ୍ଚଳର ଲୋକପ୍ରତିନିଧି ନୀଳାମ୍ବର ବାବୁ । ତାଙ୍କର ସନ୍ଦେହ ହେଲା, ହୁଏତ ଭୂତପୂର୍ବ ଜମିଦାର ଭାବରେ ସଂଗ୍ରାମକେଶରୀଙ୍କର ଯେଉଁ ଖ୍ୟାତି ଓ ପ୍ରତିପତ୍ତି ଥିଲା, ତାର ସୁଯୋଗ ନେଇ ସେ ଆଗାମୀ ସାଧାରଣ ନିର୍ବାଚନରେ ଲୋକପ୍ରତିନିଧି ହେବାପାଇଁ ପ୍ରାର୍ଥୀ ହେବେ ସଂଗ୍ରାମକେଶରୀ ପାଣିପାଟପୁର ଅଞ୍ଚଳର ଲୋକଙ୍କ ସେବାପାଇଁ ଯେତେବେଳେ ଏକ ହାଇସ୍କୁଲ ବସାଇବା ଲାଗି ଉଦ୍ୟମ କଲେ, ସେତେବେଳେ ନୀଳାମ୍ବର ବାବୁଙ୍କ ମନରେ ସନ୍ଦେହ ସେତେ ପ୍ରଗାଢ଼ ହେବାକୁ ଲାଗିଲା ।

ପାଣିପାଟପୁର ଗ୍ରାମର ପ୍ରଧାନ-ପୁରୁଷ ଶ୍ୟାମସୁନ୍ଦର ଏକଦା ଥିଲେ ସଂଗ୍ରାମକେଶରୀଙ୍କ ଜମିଦାରୀ ସିରସ୍ତାର ଗୁମାସ୍ତା... ଜମିଦାରୀ ଉଚ୍ଛେଦ ପରେ ସଂଗ୍ରାମକେଶରୀ ଗ୍ରାମ ଛାଡ଼ି ଇଂଜିନିୟର ହୋଇ ସହରକୁ ଚାଲିଗଲା ପରେ ନୀଳାମ୍ବରବାବୁଙ୍କ ସହଯୋଗରେ ଗ୍ରାମ୍ୟ ରାଜନୀତିରେ ପ୍ରବେଶ କରି ସେ ହୋଇଥିଲେ ସେ ଅଞ୍ଚଳର ସରପଞ୍ଚ । ସଂଗ୍ରାମକେଶରୀ ଗ୍ରାମକୁ ଫେରି ଆସିଲା ପରେ ତାଙ୍କ ସହିତ ଶ୍ୟାମସୁନ୍ଦରଙ୍କର ଘନିଷ୍ଠତା ମଧ୍ୟ ବଢ଼ି ଉଠିଲା । ଏକଥା ସହ୍ୟକରି ପାରିଲେନି ନୀଳାମ୍ବର ବାବୁ । ସରପଞ୍ଚ ନିର୍ବାଚନରେ ଶ୍ୟାମସୁନ୍ଦରଙ୍କର ପରାଜିତ-ପ୍ରତିଦ୍ୱନ୍ଦ୍ୱୀ ଜଳଧରଙ୍କୁ ଅସ୍ତ୍ରରୂପେ ବ୍ୟବହାର କରି ସେ ଶ୍ୟାମସୁନ୍ଦରଙ୍କୁ ସରପଞ୍ଚ ଆସନରୁ ଘୁଞ୍ଚାଇବାକୁ ଚେଷ୍ଟାକଲେ । ସଂଗ୍ରାମକେଶରୀ ପାଣିପାଟପୁର ଗ୍ରାମରେ ଯେପରି ହାଇସ୍କୁଲ ପ୍ରତିଷ୍ଠା କରି ନ ପାରିବେ, ସେଥିପାଇଁ ମଧ୍ୟ ଚକ୍ରାନ୍ତ ଆରମ୍ଭ କରିଦେଲେ ।

ରାଜନୈତିକ ଦଳାଦଳି, ସଂକୀର୍ଣ୍ଣ ବ୍ୟକ୍ତିଗତ ସ୍ୱାର୍ଥ ଏବଂ ପାରସ୍ପରିକ ଈର୍ଷାଜନିତ ସଂଘର୍ଷ ଯୋଗୁ ଚିର ଅବହେଳିତ ପାଣି-ପାଟପୁର ଅଞ୍ଚଳର ଶାନ୍ତ ପରିବେଶ ବିଷାକ୍ତ ହୋଇ ଉଠିଲା । ସଂଗ୍ରାମକେଶରୀଙ୍କ ପତ୍ନୀ କାଦମ୍ବିନୀ ଶଙ୍କିତ କଣ୍ଠରେ ପ୍ରଶ୍ନ କଲେ, ଗ୍ରାମର ହିତପାଇଁ କାମକଲେ ଏଠାରେ ଏତେ ବିପଦ । ଆମେ ଏଠାରେ ବେଶିଦିନ ରହି ପାରିବା ତ ?

ସଂଗ୍ରାମକେଶରୀ ଉତ୍ତ୍ୟକ୍ତ କଣ୍ଠରେ ପତ୍ନୀଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ, କାଦମ୍ବିନୀ ! ବଞ୍ଚି ରହିବାକୁ ହେଲେ ସଂଗ୍ରାମ କରିବାକୁ ହୁଏ । ପୃଥିବୀରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ବଞ୍ଚିବା ପାଇଁ ସଂଗ୍ରାମ ନାହିଁ ! ବାବା ମୋର ନାମ ରଖିଥିଲେ ସଂଗ୍ରାମକେଶରୀ । ସଂଗ୍ରାମରୁ ପଛଘୁଞ୍ଚା ଦେଲେ ବାବାଙ୍କ ନାମକରଣର ଅମର୍ଯ୍ୟାଦା ହେବନାହିଁ ?

ତା'ପରେ.. ...? )

## ॥ ଚଉଦ ॥

ବାପାଙ୍କ କଥା ଶୁଣି ଦିଗମ୍ବର ଆଉ ହଳଧର ମୁଖ କୁଞ୍ଚିତ କରିଥିଲେ । ଦିଗମ୍ବର ବାପାଙ୍କ ମୁହଁ ଉପରେ କିଛି କଥା କହିପାରେ ନାହିଁ । କିନ୍ତୁ ହଳଧର ସେପରି କୌଣସି ସଂକୋଚ କିମ୍ବା ସମ୍ଭ୍ରମ-ବୋଧ ନାହିଁ । ସେ ସଂଗ୍ରାମକେଶରୀଙ୍କୁ ସ୍ପଷ୍ଟ ଭାବରେ କହିଥିଲା, ବାବା ! ଆପଣ ଗ୍ରାମରେ ଟଙ୍କାଗୁଡ଼ାକ ମିଛରେ ନଷ୍ଟ କରୁଛନ୍ତି । ନୀଳାମ୍ବରବାବୁଙ୍କୁ ମୁଁ ଜାଣେ । ସେ ଗୋଟାଏ ଗୋଖର ସାପ । ତା' ସହିତ କଳହ କରି କିଛି ଲାଭ ହେବନାହିଁ । ଗ୍ରାମ ଲୋକମାନେ ଅବହେଳିତ, କାରଣ ସେମାନେ ସରଳ । ଆପଣଙ୍କ ଅପେକ୍ଷା ନୀଳାମ୍ବରବାବୁ ସେମାନଙ୍କ ସରଳତାର ସୁଯୋଗ ନେଇ ପାରିବେ । ଆପଣ ଆଉ ଗ୍ରାମକୁ ଫେରନ୍ତୁ ନାହିଁ ।

ପୁଅର କଥା ଶୁଣି କ୍ଷୁବ୍ଧ ହୋଇଗଲେ ସଂଗ୍ରାମକେଶରୀ; କିନ୍ତୁ କାହାରି କଥାର ପ୍ରତିବାଦ କରି ନ ଥିଲେ । ସେ ମନେ ମନେ ସ୍ଥିରକରି ନେଇଥିଲେ, ନୀଳାମ୍ବରବାବୁ ଯେତେ ଶୋଷଣର ସାପ ହୁଅନ୍ତୁ, ପାଣିପାଟପୁର ଅଞ୍ଚଳର ନିରୀହ ଗ୍ରାମବାସୀଙ୍କୁ ତାଙ୍କର ସେ ଦଂଶନ ଜ୍ୱାଳାରୁ ରକ୍ଷା କରିବାକୁ ହେବ । ସେଥିପାଇଁ ଯାହାକିଛି ବାଧାବିଘ୍ନ ଆସିଲେ ବି ସେ କେବେହେଲେ ଭୟ କରିବେ ନାହିଁ ।

ସରକାରୀ ଚାକିରୀ କରୁଥିବାବେଳେ ତାଙ୍କର ଯେଉଁ ସୁଖ୍ୟାତି ଥିଲା, ସେହି ଖ୍ୟାତିକୁ ବିନିଯୋଗ କରି ସେ ପାଣିପାଟପୁର ଅଞ୍ଚଳରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା ପାଇଁ ଅନୁମତି ଆଣିଲେ ।

ଗ୍ରାମକୁ ଫେରିଲାବେଳେ ପୁଅ, ବୋହୂମାନେ ପଚାରୁଥିଲେ ବାବା ! ମାଆ ଆଉ ଇତିକୁ ନେଇ କେବେ ଆପଣ ଏଠାକୁ ଫେରି ଆସିବେ ?

ଗୀତି କହୁଥିଲା, ବାବା ! ଆପଣଙ୍କ ଜିଦ୍ ଯୋଗୁ ଇତି ଆଉ ମାଆ ସେ ପାଣିପାଟ ଗାଁଆରେ ମୁହଁମାଡ଼ି ପଡ଼ି ରହିଛନ୍ତି । ଆପଣ ସେମାନଙ୍କୁ ନେଇ ଶୀଘ୍ର ଚାଲି ଆସନ୍ତୁ ।

ସମସ୍ତଙ୍କୁ ସେହି ଗୋଟିଏ ଉତ୍ତର ଦେଇଥିଲେ ସଂଗ୍ରାମକେଶରୀ, ସମସ୍ତେ ସହରକୁ ଆସିଲେ ବି ସେ ଆଉ ଗ୍ରାମ ଛାଡ଼ି ଆସିବେ ନାହିଁ । ସେଇ ଗ୍ରାମରେ ହୋଇ ସେ ପ୍ରଥମେ ଆଖି ମେଲି ଚାହିଁଥିଲେ, ସେହି ଗ୍ରାମ ମାଟିରେ ସେ ଆଖିବୁଜି ଚିତାଗ୍ନିରେ ଶୋଇବେ, ଏ ତାଙ୍କର ଅଟଳ ପ୍ରତିଜ୍ଞା ।

ତାଙ୍କର କଥା ଶୁଣି ଗୀତି ମୁହଁରେ ଏକ କରୁଣ ଆତଙ୍କର ଛାଇ ଆଚ୍ଛନ୍ନ ହୋଇ ଆସିଥିଲା, ଆଉ ଦୁଇ ବୋହୂଙ୍କ ଆଖି କୋଣରେ ଚକ୍‌ମିକ୍ କରି ଝଲସି ଉଠିଥିଲା ଅବିଶ୍ୱାସର ହାସ୍ୟରେଖା ।

## ॥ ପନ୍ଦର ॥

ସ୍କୁଲ ଖୋଲିବା ପାଇଁ ଅନୁମତି ମିଳିଲା, କିନ୍ତୁ ସ୍କୁଲ ପରିଚାଳନା ପାଇଁ କିଛି ସରକାରୀ ସାହାଯ୍ୟ ମିଳିଲା ନାହିଁ । ନିଜ ଗୋଡ଼ରେ ଠିଆ ହେବାପାଇଁ ଗ୍ରାମବାସୀମାନଙ୍କୁ ପ୍ରବର୍ତ୍ତାଇଲେ ସଂଗ୍ରାମକେଶରୀ । ଗ୍ରାମ୍ୟବାସୀଙ୍କ ସମ୍ମିଳିତ ଉଦ୍ୟମ ଫଳରେ ଠିଆହେଲା ସ୍କୁଲ ଗୃହ ।

ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ କଲା ନିରଞ୍ଜନ । ଇତିଶ୍ରୀ ହେଲା ନୂଆ ସ୍କୁଲର ପ୍ରଥମ ଛାତ୍ରୀ । ଅଳ୍ପ କେତୋଟି ଦିନ ମଧ୍ୟରେ ପାଣିପାଟପୁର ମେଳଣ ପଡ଼ିଆ ଛାତ୍ର-ଛାତ୍ରୀଙ୍କ କଳରୋଳରେ ମୁଖରିତ ହୋଇ ଉଠିଲା ।

ନୀଳାମ୍ବରବାବୁଙ୍କ ପାଖରେ ସ୍କୁଲ ଖୋଲିବା ସମ୍ବାଦଟା ଏକ ଦାରୁଣ ଦୁଃସମ୍ବାଦ ଭଳି ମନେ ହୋଇଥିଲା । ଜଳଧର ଦାନ୍ତ କଡ଼ମଡ଼ କରି କହିଲା, ସେ ସ୍କୁଲ କିନ୍ତୁ ବେଶୀଦିନ ଟେକିବ ନାହିଁ ସାର୍ ! ସ୍କୁଲ ପରିଚାଳନା କିଛି ସହଜ କଥା ନୁହେଁ । ଆପଣ ଟିକିଏ ସ୍କୁଲ ସ୍ଥାପନା ରହସ୍ୟ ମନ୍ତ୍ରୀ କପିଳେଶ୍ୱରଙ୍କ ପାଖରେ ଖୋଲି କହି ଦିଅନ୍ତୁ । ବୁଝାଇ ଦିଅନ୍ତୁ ସଂଗ୍ରାମକେଶରୀ ବିପକ୍ଷ ରାଜନୈତିକ ଦଳରେ ଯୋଗ ଦେଇଛନ୍ତି । ଏ ସ୍କୁଲ ବସାଇବା ପଛରେ ପଲିଟିକ୍ସ ଅଛି ।

ନୀଳାମ୍ବରବାବୁ ଜଳଧର କଥା ଶୁଣିଲେ ନୀରବରେ; କିନ୍ତୁ କିଛି ଉତ୍ତର ଦେଲେନାହିଁ । ସେ କପିଳେଶ୍ୱରବାବୁଙ୍କ କାନରେ ସ୍କୁଲ ସ୍ଥାପନା ରହସ୍ୟ ଯେ ପହଞ୍ଚାଇ ନ ଦେଇଛନ୍ତି, ସେ କଥା ନୁହେଁ । କିନ୍ତୁ ତାଙ୍କୁ ଶାନ୍ତ୍ୱନା ଦେଲା ଭଳି କୌଣସି ଉତ୍ତର ଦେଇ ନାହାନ୍ତି କପିଳେଶ୍ୱରବାବୁ । ସେ ନିଜ ଚନ୍ଦା ମୁଣ୍ଡରେ ଅଙ୍ଗୁଳି ସାଉଁଳି ସାଉଁଳି ଉତ୍ତର ଦେଇଛନ୍ତି କେଉଁ ପାଣି କୁଆଡ଼କୁ ଯାଉଛି, ତାହା ସତର୍କତାର ସହ ଲକ୍ଷ୍ୟକର ନୀଳାମ୍ବର ! ଆବଶ୍ୟକ ହେଲେ ସଂଗ୍ରାମକେଶରୀଙ୍କୁ ଆମ ଆଡ଼କୁ ଟାଣ···

ନୀଳାମ୍ବରବାବୁ ହତାଶ ବୋଧ କରିଥିଲେ କପିଳେଶ୍ୱରଙ୍କ କଥା ଶୁଣି । ସେ ବୁଝି ପାରିଥିଲେ, ସଂଗ୍ରାମକେଶରୀଙ୍କୁ ନିଜ ଆଡ଼କୁ ଟାଣିବା ଅର୍ଥ, ନିଜେ

ରାଜନୈତିକ ବାନପ୍ରସ୍ଥରେ ଯିବାଭଳି ହେବ । ଏତେ ସହଜରେ ରାଜନୈତିକ ବାନପ୍ରସ୍ଥରେ ଯିବା ଲୋକ ସେ ନୁହଁନ୍ତି । ତାଙ୍କୁ ଆଉରି ଟାଣ ହେବାକୁ ପଡ଼ିବ । ଉତ୍ତାଳ ନଦୀର ସ୍ରୋତ ଭଳି ଯେଉଁ ଜନମତ ବର୍ତ୍ତମାନ ସଂଗ୍ରାମକେଶରୀଙ୍କ ପଛେ ପଛେ ଛୁଟିଛି, ସେ ସ୍ରୋତ ହଠାତ୍ ପ୍ରତିରୋଧ କଲେ ସେ ନିଜେ ସେହି ସ୍ରୋତରେ ଭାସିଯିବେ । ସେଥିପାଇଁ ସବୁକଥା ଜାଣି ସୁଦ୍ଧା କିଛି ନ ଜାଣିଲା ଭଳି ତାଙ୍କୁ ବର୍ତ୍ତମାନ ନୀରବ ରହିବାକୁ ପଡ଼ିବ । ଗ୍ରାମାଞ୍ଚଳର ଲୋକମତ କେତେଦିନ ଯେ ଗୋଟାଏ ବାଟରେ ଯିବନାହିଁ, ସେ କଥା ସେ ନିଜ ଅଭିଜ୍ଞତାରୁ ଜାଣନ୍ତି । ତାଙ୍କୁ ସୁଯୋଗର ଅପେକ୍ଷା କରିବାକୁ ପଡ଼ିବ ।

ସୁଯୋଗ ଆସିବାକୁ ବିଶେଷ ବିଳମ୍ବ ହୁଏତ ହେବନାହିଁ, ସେ ଜଳଧରକୁ ଈଷତ୍ ବକ୍ର ଦୃଷ୍ଟିରେ ଚାହିଁ କହିଲେ, ତମେ କୌଣସି କାମପାଇଁ ତତ୍ପର ହୁଅନାହିଁ । ଶ୍ୟାମ ସରପଞ୍ଚ ବିରୁଦ୍ଧରେ ପଞ୍ଚାୟତରେ ଅନାସ୍ଥା ପ୍ରସ୍ତାବ ମଧ୍ୟ ଆଜି କାଲିଦିନ ଆଣିବା ପାଇଁ ଗଡ଼ାଇ ଦିଅ । ସମସ୍ତେ ହେଲେ ଅନାସ୍ଥା ପ୍ରସ୍ତାବ ମୁଁ ନିଜେ ଆଣିବାକୁ ମେମ୍ବର—ମାନଙ୍କୁ କହିବି । ଜଳଧର ! ସଂଗ୍ରାମକେଶରୀ ଡାଳେ ଡାଳେ ଗଲେ ମୁଁ ପତ୍ରେ ପତ୍ରେ ଯିବା ଲୋକ । ପାଣିପାଟପୁର ଅଞ୍ଚଳ ଲୋକଙ୍କ ମନରେ ଧାରଣା ନ ହେଉ ଯେ ଆମେ ତାଙ୍କ ସ୍କୁଲ ବିରୁଦ୍ଧରେ ଯାଉଛୁ । ପାଣିପାଟପୁର ହାଇସ୍କୁଲ ଖୋଲିବା ପାଇଁ ସରକାର ଅନୁମତି ଦେଇଛନ୍ତି, କିନ୍ତୁ ଆର୍ଥିକ ସାହାଯ୍ୟ ଦେଇ ନାହାନ୍ତି । ଏ ସାହାଯ୍ୟ ସହଜରେ ମିଳିବ ନାହିଁ; ଅନ୍ତତଃ ମୁଁ ଏମ୍. ଏଲ୍. ଏ. ଥିବା ପର୍ଯ୍ୟନ୍ତ । ସଂଗ୍ରାମକେଶରୀର ଗ୍ରାଚୁଇଟି, ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କାକୁ ମୁଁ ଶୂନ୍ୟରେ ଶୂନ୍ୟରେ ଉଡ଼ାଇବି ।

କଥା ଶେଷକରି ମୀନାମ୍ବରବାବୁ ଖଦଡ଼ ଚଦରକୁ ନିଜ କାନ୍ଧ ଉପରକୁ ଟେକି ନେଇ ମୁରୁକି ମୁରୁକି ହସିଲେ ।

ଜଳଧର ନିଜର କ୍ଷୁଦ୍ରାକୃତି ବାମ ଆଖିକୁ ପ୍ରାୟ ବନ୍ଦକରି ଡାହାଣ ଆଖିରେ କଟେଇ କଟେଇ ଚାହିଁ ବାମ ହାତରେ ମୁଣ୍ଡ କୁଣ୍ଡାଇଲା ଏବଂ ବକ୍ର ହାସ୍ୟ କଣ୍ଠରେ କହିଲା, ମୋ କଥା ଟିକିଏ ମନେ ରଖିଥିବେ ସାର୍ ! ସରପଞ୍ଚ ନ ହେବା ପର୍ଯ୍ୟନ୍ତ ଗାଁରେ ମତେ କେହି ଖାତିର କରୁନାହାନ୍ତି···ଏମିତିକି ମୋ ସ୍ତ୍ରୀ ପଦ୍ମାବତୀ ପ୍ରତିଦିନ ସକାଳୁ ମତେ ଖୁଣ୍ଟା ଦେଉଛି । କହୁଛି, ହାରୁ, ସରପଞ୍ଚ···

ଜଳଧର କଥା ଶୁଣି ମୀନାମ୍ବର ବାବୁଙ୍କ ମୁହଁରେ କି କୁଞ୍ଚିତ୍ ହସ ଚହଲି ଉଠିଲା ।

## ॥ ଷୋଳ ॥

ସ୍କୁଲକୁ ଆସି ପହଁଞ୍ଚିବା ମାତ୍ରେ ନିରଂଜନ ସ୍କୁଲ କାନ୍ଥରେ ଚକ୍ ଖଡ଼ିରେ ଲେଖା ହୋଇଥିବା କୁତ୍ସିତ କଥାକୁ ଲକ୍ଷ୍ୟ କରି ଚମକି ଉଠିଲା ।

ଚାରିଆଡ଼କୁ ଚାହିଁ ଦେଖି ନେଲା, ନା—ଆଉ କୌଣସି ଛାତ୍ରଛାତ୍ରୀ କିମ୍ବା ଶିକ୍ଷକ ଆସି ନାହାନ୍ତି । କାହାରି ଆଖିରେ ପଡ଼ି ନାହିଁ ହୁଏତ ଏ କୁତ୍ସିତ ଲେଖା ।

ଇତିଶ୍ରୀ ଆଉ ତାର ସଂପର୍କ ସମ୍ବନ୍ଧରେ ଅଶ୍ଳୀଳ ଇଙ୍ଗିତ ଭରି ରହିଛି ସେ ଲେଖାରେ । ସହରର ସ୍କୁଲ ଛାଡ଼ି ଇତିଶ୍ରୀ ଏଠାରେ କାହିଁକି ପାଠ ପଢ଼ୁଛି, ଇଂଜିନିୟରିଂ ପାଶ୍ କରି ଇଂଜିନିୟର ନ ହୋଇ ସେ କାହିଁକି ସ୍ୱଳ୍ପ ବେତନରେ ପ୍ରଧାନ ଶିକ୍ଷକ ହୋଇଛି—ସେ ସଂପର୍କରେ ଅନେକ ବାଜେକଥା କିଏ କାଲି ରାତିରେ ସ୍କୁଲ କାନ୍ଥରେ ଲେଖି ଯାଇଛି ।

ଆଉ ଅଳ୍ପ ସମୟ ପରେ ଛାତ୍ରଛାତ୍ରୀ, ଶିକ୍ଷକମାନେ ଆସିଯିବେ; ବିଳମ୍ବ ନ କରି ନିରଂଜନ ନିଜେ ଖଣ୍ଡେ ରୁମାଲରେ ସେ ଲେଖାକୁ ଲିଭାଇବାକୁ ଆରମ୍ଭ କଲା ।

ନିରଂଜନ ଭାଇ ! ଏଠାରେ କଅଣ କରୁଛ ?—ଇତିଶ୍ରୀ କେତେବେଳେ ତା' ପଛପଟେ ଠିଆହୋଇ ପ୍ରଶ୍ନ କରୁଛି ।

ନିରଂଜନର ସାରା ଦେହ ଲଜ୍ଜା ଓ ଅପମାନରେ ଝାଳେଇ ଗଲା । ସେ ଅପ୍ରସ୍ତୁତ ହୋଇ କହିଲା, ନା — କିଏ ଗୋଟାଏ ବଦମାସ୍ ବାଜେ କଥା ସ୍କୁଲ କାନ୍ଥରେ ଲେଖି ଦେଇଯାଇଛି ।

କିଏ ଲେଖିଥିଲା, କିଛି ପଢ଼ି ହେଉନି ତ ?— ଇତିଶ୍ରୀର କୌତୁହଳ କଣ୍ଠସ୍ୱର ।

ନିରଂଜନ ବଡ଼ କୁଣ୍ଠିତ କଣ୍ଠରେ କହିଲା, ଇତି ! ସବୁଲେଖା ପଢ଼ା ଯାଏନାହିଁ, ସବୁ ଲେଖା ପାଠ ନୁହେଁ ।

ଇତିଶ୍ରୀ ବୁଝିବାକୁ- ଚେଷ୍ଟାକରି ମଧ୍ୟ କିଛି ବୁଝି ପାରିଲା ନାହିଁ ।

॥ ସତର ॥

ନୀଳାମ୍ବରଙ୍କୁ ସକାଳୁ ସକାଳୁ ନିଜ ଦ୍ୱାର ମୁହଁରେ ଦେଖି ସଂଗ୍ରାମକେଶରୀଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ଏତେଦିନ ଗ୍ରାମରେ ରହିବା ଭିତରେ ଥରେ ହେଲେ ସେ ତାଙ୍କ ପାଖକୁ ଆସି ନାହାନ୍ତି, ବରଂ ପାଣିଘାଟପୁର ହାଇସ୍କୁଲ ନେଇ ଖୋଲା ଖୋଲି ଭାବରେ ନ ହେଲେ ବି ଭିତରେ ଭିତରେ ସେ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି । ଅଥଚ ଆଜି ଏତେ ସକାଳୁ··· ।

ନୀଳାମ୍ବରବାବୁଙ୍କୁ ସେ ସ୍ୱାଗତ ଜଣାଇ କହିଲେ, ଆପଣଙ୍କ ପାଦ ଏତେ ସକାଳୁ ମୋ ଦ୍ୱାର ମୁହଁରେ ପଡ଼ିଲା କିପରି ?

ନୀଳାମ୍ବର ବାବୁ କାନ୍ଧ ଉପରକୁ ଖଦଡ଼ ଚଦରଟା ସଜାଡ଼ି ନେଇ ନେଇ କହିଲେ, କପିଳେଶ୍ୱରବାବୁ ପଠାଇଲେ ଆଜ୍ଞା ! କହିଲେ, ବସ୍‌ଷ୍ଟାଣ୍ଡରୁ ଓହ୍ଲାଇ ଘରକୁ ନ ଯାଇ ଆଗ ଜମିଦାରବାବୁଙ୍କୁ ଖବରଟା ଦେବ ନୀଳାମ୍ବର ! ଅତି ଜରୁରୀ ଖବର !

'ସଂଗ୍ରାମକେଶରୀ' ବଦଳରେ "ଜମିଦାର ବାବୁ" ଶବ୍ଦଟି ଯେ ନୀଳାମ୍ବରବାବୁ ଜାଣି ଜାଣି ବ୍ୟବହାର କରୁଛନ୍ତି ଏବଂ ତାର ପଛରେ ଯେ ପ୍ରଚ୍ଛନ୍ନ ପରିହାସ ଭରି ରହିଛି, ସେ କଥା ସଂଗ୍ରାମକେଶରୀ ବେଶ୍ ବୁଝି ପାରୁଥିଲେ । କିନ୍ତୁ ସେଥିରେ ସେ ଅପମାନିତ ବୋଧ କରିବା ଅପେକ୍ଷା, କପିଳେଶ୍ୱର ବାବୁ କଅଣ ଜରୁରୀ ଖବର ପଠାଇଛନ୍ତି, ସେ କଥା ଜାଣିବା ପାଇଁ ସେ ଅଧିକ କୌତୁହଳୀ ହୋଇ ଉଠିଥିଲେ । କଟକ ଯାଉଥିବାବେଳେ ଭୁବନେଶ୍ୱର ଯାଇ କପିଳେଶ୍ୱର ବାବୁଙ୍କୁ ସ୍କୁଲକୁ ସରକାରୀ ସାହାଯ୍ୟ ଦେବା ବ୍ୟବସ୍ଥା କରିବା ପାଇଁ ଅନୁରୋଧ କରି ଆସିଥିଲେ । ସେହି ସମ୍ପର୍କରେ କିଛି ସମ୍ବାଦ ହୁଏତ ପଠାଇଛନ୍ତି ମନ୍ତ୍ରୀ କପିଳେଶ୍ୱରବାବୁ !

ଖବରଟା ପଛରେ କହିବେ । ବସନ୍ତୁ, ମୁଁ କପେ ଚାହା ଆଣିବାକୁ କହେ । — ସଂଗ୍ରାମକେଶରୀ କଣ୍ଠରେ ଗଭୀର ଆନ୍ତରିକତାର ଅଭିବ୍ୟକ୍ତି ଫୁଟାଇ ନୀଳାମ୍ବରବାବୁଙ୍କୁ ସ୍ୱାଗତ ଜଣାଇଲେ ।

ନୀଳାମ୍ବରବାବୁଙ୍କ ମୁହଁର ରେଖାରେ କିନ୍ତୁ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ସେ କହିଲେ, ନା-ନା- ଖବରଟା ସତରେ ଅତି ଜରୁରୀ···ଏତେ ଗୁରୁତର ଘଟଣା ଯେ ଓଡ଼ିଶା ମନ୍ତ୍ରି ମଣ୍ଡଳରେ ଏଥିପାଇଁ ହଇଚଇ ପଡ଼ିଯାଇଛି···

ସଂଗ୍ରାମକେଶରୀଙ୍କ ଉତ୍କଣ୍ଠା ବହୁ ଗୁଣିତ ହୋଇଗଲା । ସେ ପ୍ରଶ୍ନ କଲେ, ସମ୍ବାଦଟା ତାହା ହେଲେ ଆପଣ କୁହନ୍ତୁ···

ନା—ଏଇ ରାସାୟନିକ ସାରକାରଖାନା କଥା ! କପିଳେଶ୍ୱରବାବୁ ଚାହୁଁଥିଲେ ତାହା ପାଣିଘାଟପୁରରେ ହେଉ, ଆଉଜଣେ ମନ୍ତ୍ରୀ ଯଦୁନନ୍ଦନବାବୁ ଧରି ବସିଲେ କାରଖାନା ତାଙ୍କ ନିର୍ବାଚନ ମଣ୍ଡଳୀ କେନ୍ଦୁଝର ଜିଲ୍ଲାରେ ବସୁ···ଆଉ ଏହି କଳହ ମଧ୍ୟରେ ଭାରତ ସରକାର କାରଖାନାଟି ବର୍ତ୍ତମାନ ନାଗାଲଣ୍ଡ ଆନ୍ଧ୍ର ପ୍ରଦେଶରେ ବସାଇବାକୁ ଶେଷ ସିଦ୍ଧାନ୍ତ କରି ଛାଡ଼ି ଦେଇଛନ୍ତି···ଖବରଟା ସିନା ଆପଣ ପାଇ ନାହାନ୍ତି, କାଲି ସନ୍ଧ୍ୟା ଖବର କାଗଜରେ ବାହାରି ଯାଇଛି···

ସମ୍ବାଦ ନିଃସନ୍ଦେହରେ ମର୍ମନ୍ତୁଦ । କିନ୍ତୁ ସଂଗ୍ରାମକେଶରୀଙ୍କ ମୁହଁରେ ସେଥିପାଇଁ କୌଣସି ବିଷାଦର ଛାୟା ଦେଖାଗଲା ନାହିଁ । ସେ ସମ୍ବାଦପତ୍ରର ସେ ଦୁଃସମ୍ବାଦକୁ ନ ଚାହିଁ ମାଳାମ୍ବରବାବୁଙ୍କ ମୁହଁକୁ ଚାହିଁଲେ । କହିଲେ, ଭାରତର ଯେକୌଣସି ଅଞ୍ଚଳରେ ସାରକାରଖାନା ବସି ଫସଲ ଉତ୍ପାଦନ ବୃଦ୍ଧି ପାଇଲେ ଆମେ ଖୁସି ହେବାର କଥା—ଏଥିରେ ଦୁଃଖିତ ହେବାର କଅଣ ଅଛି ମାଳାମ୍ବର ବାବୁ ! ଆଉ ଏ ସଂବାଦ ମୋ ପାଖକୁ ଅବା କପିଳେଶ୍ୱର ବାବୁ ପଠାଇଛନ୍ତି କାହିଁକି ?

ମାଳାମ୍ବରବାବୁ ଭାବିଥିଲେ ରାସାୟନିକ ସାରକାରଖାନା ସ୍ଥାନ ପରିବର୍ତ୍ତନ ସମ୍ବାଦ ଶୁଣି ସଂଗ୍ରାମକେଶରୀ ହୁଏତ ମୂର୍ଚ୍ଛା ଯିବେ । ଏତେଗୁଡ଼ାଏ ଟଙ୍କା ଦେଇ ଜମି କିଣିବା ବୃଥା ହେଲା ବୋଲି ସେ ସମ୍ଭବତଃ ମୁଣ୍ଡରେ ହାତଦେଇ ବସିବେ । କିନ୍ତୁ ତାଙ୍କଠାରୁ ଏଭଳି ପ୍ରତ୍ୟୁତ୍ତର ଶୁଣି ତାଙ୍କ ନିଜ ମୁହଁ ଶୁଖିଗଲା । ବଡ଼ ଅପ୍ରସ୍ତୁତ ହୋଇ ସେ କହିଲେ, ଶୁଣିଥିଲି ସାରକାରଖାନା ହେବା ଆଶାରେ ଆପଣ ଏଠାରେ ଜମି କିଣିଥିଲେ··· ।

ମାଳାମ୍ବରବାବୁଙ୍କୁ କଥା ଶେଷ କରିବାକୁ ନ ଦେଇ ହୋ' ହୋ' ହୋଇ ହସି ଉଠିଲେ ସଂଗ୍ରାମକେଶରୀ । କିଛି ସମୟ ପରେ ସହଜ ଭଙ୍ଗୀ କଣ୍ଠରେ ଉତ୍ତର ଦେଲେ, ମାଳମ୍ବରବାବୁ ! ପାଣିପାଟପୁରର ଅଜଳ ଜମି ମୁଁ ବାଛି ବାଛି କିଣିଛି । ରାସାୟନିକ ସାର ଦିଆ ନ ହେଲେ ବି ସେ ଜମିରେ ଭଲ ଫସଲ ହେବ । ସାର କାରଖାନା ବସିବା ଆଶାରେ ମୁଁ ଏଠାରେ ଜମି କିଣି ନ ଥିଲି, ଗ୍ରାମକୁ ଫେରି ଆସିବା ଆଶାରେ ମୁଁ ଏଠାରେ ଭୂମି କିଣିଛି ।

ସଂଗ୍ରାମକେଶରୀଙ୍କ କଥାଗୁଡ଼ାକ ଚାବୁକ୍‌ର ଆଘାତ ଭଳି ବାଜିଲା ମାଳାମ୍ବରବାବୁଙ୍କ କାନମୁଣ୍ଡାରେ । ସେ ଆଉ ସଂଗ୍ରାମକେଶରୀଙ୍କ ମୁହଁକୁ ନ ଚାହିଁ ଆକାଶ ଆଡ଼କୁ ଦୃଷ୍ଟି ଫେରାଇ ନେଲେ ।

## ॥ ଅଠର ॥

ପବନରେ ଉଡ଼ି ଆସିଥିବା ପୁଳାଏ ଶିମ୍ଳି ତୂଳା ଭଳି କୁଆରର ଆଲୁଅ ଯେତେବେଳେ ଝରକାର ଫାଙ୍କବାଟେ ଆସି ସଂଗ୍ରାମକେଶରୀଙ୍କ ନିଜ ଶଯ୍ୟା ସ୍ପର୍ଶକଲା, ସେତେବେଳେ ସେ ଚମକି ଉଠି ଠିଆ ହେଲେ । ତା' ପରେ ଧଳା ପାଇଜାମା ଉପରେ ଲମ୍ବା ଓଭରକୋଟ୍‌ଟା ପିନ୍ଧିନେଇ ହାତରେ ତେଲ-ପିଆ ବେତବାଡ଼ି ଖଣ୍ଡିକ ଧରି ବାହାରି ପଡ଼ିଲେ ।

ଅଗିଣର ଫୁଲ-ଉଡ଼ା ଧାନ ଗଛରେ ହିଡ଼ବାଟ ସହଜରେ ବାରିହେଉ ନ ଥିଲା । ତଥାପି ବେତବାଡ଼ିରେ ହିଡ଼ ଉପରକୁ ଝୁଙ୍କି ପଡ଼ିଥିବା ଧାନଗଛଗୁଡ଼ିକୁ ଆଡ଼େଇ ଆଡ଼େଇ ସେ ଚାଲିଲେ ଆଗକୁ ଆଗକୁ··· ।

ସକାଳର ସୂର୍ଯ୍ୟ ଯେତେବେଳେ ପୂର୍ବ ଦିଗନ୍ତ ରେଖାକୁ ରକ୍ତ-ରଙ୍ଗୀନ୍ କରି ଦେଉଥିଲା, ସଂଗ୍ରାମକେଶରୀ ସେତେବେଳକୁ ମଝି ବିଲରେ ଠିଆହୋଇ ଫସଲ କ୍ଷେତକୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲେ ।

ସାରକାରଖାନା ଓଡ଼ିଶାରୁ ଆନ୍ଧ୍ରକୁ ଘୁଞ୍ଚିଗଲା । ପାଣିପାଟପୁର ସାରକାରଖାନା ବସିଥିଲେ ସହରରେ ପରିଣତ ହୋଇ ଥାଆନ୍ତା । ଏବେ କିନ୍ତୁ ସେଇ ପାଣି, କାଦୁଅ, ଧୂଳି ମାଟିର ଗାଆଁ ହୋଇ ରହିଗଲା ।

ଦିଗମ୍ବର, ହଳଧର ସମ୍ବାଦପତ୍ରରୁ ସମ୍ବାଦ ଶୁଣି ହୁଏତ ମନେ ମନେ ହସୁଥିବେ । କେବେ ସେ ଗ୍ରାମରୁ ଆସ୍ଥାନ ଉଠାଇ ସେମାନଙ୍କ ପାଖକୁ ଫେରିଯିବେ, ସେଥିପାଇଁ ଦିନ ଗଣୁଥିବେ ।

କିନ୍ତୁ ସାରକାରଖାନା ବସିଲା ନାହିଁ ବୋଲି ସତରେ କଅଣ ସେ ଫେରିଯିବେ । ନିଜର ପ୍ରବାସ-ତୀର୍ଥ ସହର ବସା ଘରକୁ !

ବେତବାଡ଼ିକୁ ହାତରେ ଧରି ଶୂନ୍ୟରେ ଘୂରାଇ ଘୂରାଇ ମନେ ମନେ ହସିଲେ ସଂଗ୍ରାମକେଶରୀ । ଭାବିଲେ, ସାରକାରଖାନା ହେବାର ଲୋଭରେ ସେ

ଗ୍ରାମକୁ ଫେରିଥିଲେ ସତ୍ୟ; କିନ୍ତୁ ସାରକାରଖାନା ନ ବସିବାରୁ ଗ୍ରାମ ଛାଡ଼ିବା ପାଇଁ ଆଜି ତାଙ୍କର କୌଣସି ଆଗ୍ରହ ନାହିଁ । ରାସାୟନିକ ସାରକାରଖାନା ବସିବା ପ୍ରସ୍ତାବ, ପାଣିପାଟପୁର ଗ୍ରାମ ଓ ତାଙ୍କ ଭିତରେ କେବଳ ଏକ ସେତୁବନ୍ଧ ଭଳି କାମକଲା । ଗ୍ରାମ ସହିତ ଛିଡ଼ି ଯାଇଥିବା ସମ୍ପର୍କକୁ ପୁଣିଥରେ ଗଣ୍ଠି ପକାଇ ବାନ୍ଧିଦେଲା । ଆଜି ସେ ବନ୍ଧନକୁ ଛିଡ଼ାଇ ଅନ୍ୟ କୁଆଡ଼େ ପଳାଇବାକୁ ଚେଷ୍ଟାକଲେ ସେ ମନେ ମନେ ଯନ୍ତ୍ରଣା ଅନୁଭବ କରୁଛନ୍ତି !

ଏଇ ଗାଆଁରେ ଯେ ଏକ ରାସାୟନିକ ସାର-କାରଖାନା ବସିବାର ଥିଲା, ଆଉ କିଛିଦିନ ପରେ ଲୋକଙ୍କ ପକ୍ଷରେ ତାହା ଏକ କିମ୍ବଦନ୍ତୀ ଭଳି ମନେ ହେବ । କେହି କେହି ହୁଏ ତ ମନେ କରିବେ ସେ ହେଉଛନ୍ତି ଏହି କିମ୍ବଦନ୍ତୀର ନାୟକ । କିନ୍ତୁ କେହି କ'ଣ ଜାଣି ହେଲେ ବୁଝିବେ ନାହିଁ, ଏଇ ଫୁଲଝଡ଼ା ଧାନ ଗଛରଗନ୍ଧରେ ଭୁଲି ସହରର ଜଣେ ପଥହୁଡ଼ା ପଥିକ ଫେରି ଆସିଥିଲା ତାର ଭିଟାମାଟିର କୋଳକୁ !!!

ସଂଗ୍ରାମକେଶରୀ ଶୁଣିଲେ ଦୂରରୁ କିଏ ତାଙ୍କୁ ଡାକୁଛି । ତାଙ୍କ ଆଡ଼କୁ ଛୁଟି ଆସୁଛି ସ୍ତର ସ୍ତର ସବୁଜ ଧାନଗଛର ଲହଡ଼ି କାଟି କାଟି ।

ସଂଗ୍ରାମକେଶରୀ ଚିହ୍ନି ପାରି, ଡାକିଲେ କିଏ ମା ଇତି !

ଯାଉଛି ବାବା !—ଥମକି ଠିଆହୋଇ ଉତ୍ତର ଦେଲା ଇତିଶ୍ରୀ । ତା'ପରେ ବିଲ ହିଡ଼େ ହିଡ଼େ ସେ ଦୌଡ଼ିବାକୁ ଲାଗିଲା ।

କନ୍ୟାକୁ କୋଳକୁ ଟେକି ନେବାକୁ କର ସଂପ୍ରସାରଣ କଲେ ସଂଗ୍ରାମକେଶରୀ ।

( ଉପନ୍ୟାସର ପ୍ରଥମ ଅଂଶ ଶେଷ )

—*—



ଡାହାଣରୁ ବାମକୁ :—
୧—କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଉଦ୍‌ଘାଟକ । ୨—ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀ ଗୋବିନ୍ଦ ମୁଣ୍ଡା, ମୁଖ୍ୟ ଅତିଥି । ୩—ବିଶିଷ୍ଟ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି, ସଭାପତି । ୪—ବିଶିଷ୍ଟ ସାହିତ୍ୟିକ ଡଃ ମାୟାଧର ମାନସିଂହ, ମୁଖ୍ୟବକ୍ତା । ୫—ବନଫୁଲ ସମ୍ପାଦକ-ଶ୍ରୀ ଉପେନ୍ଦ୍ର ମିଶ୍ର ।

ଗତ ୪-୭-୭୯ ବୁଧବାର ଦିନ "ବନଫୁଲ"ର ବାର୍ଷିକ ଉତ୍ସବ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବିଶିଷ୍ଟ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ସଭାପତି, ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀ ଗୋବିନ୍ଦ ମୁଣ୍ଡା ପ୍ରଧାନ ଅତିଥି, ଡକ୍ଟର ମାୟାଧର ମାନସିଂହ ପ୍ରଧାନ ବକ୍ତା, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଉଦ୍‌ଘାଟକ ଭାବେ ଯୋଗ ଦେଇଥିଲେ । ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସମେତ ରାଜଧାନୀର ବହୁ ବିଶିଷ୍ଟ ବ୍ୟକ୍ତି ଓ ମହିଳା ଯୋଗ ଦେଇଥିଲେ ।

ପ୍ରଥମେ ସମ୍ପାଦକ ଶ୍ରୀ ଉପେନ୍ଦ୍ର ମିଶ୍ର "ବନଫୁଲ"ର ଇତିହାସ ଓ ଆଭିମୁଖ୍ୟ ବିବରଣୀ ପାଠ କରିଥିଲେ । ସ୍ୱାସ୍ଥ୍ୟ ଉପମନ୍ତ୍ରୀ ଶ୍ରୀ ଗୋବିନ୍ଦ ମୁଣ୍ଡା "ବନଫୁଲ"ର ବିଶିଷ୍ଟ ଲେଖକ ଶ୍ରୀ ସଦୁରାନନ୍ଦଙ୍କୁ ସ୍ୱର୍ଣ୍ଣ ପଦକ ପ୍ରଦାନ କରିଥିଲେ । ଫୁଲବାଣୀର ଆଶ୍ରମ ସ୍କୁଲ ଶିକ୍ଷକ ଶ୍ରୀ ଲୋକନାଥ ପରିଡ଼ା, ଫକୀରମୋହନ କଲେଜ ଛାତ୍ର ଶ୍ରୀ ବୈକୁଣ୍ଠନାଥ ଶତପଥୀ, ରେଭେନ୍ସା କଲେଜ ଆଦିବାସୀ ଛାତ୍ର ଶ୍ରୀ ଶ୍ରୀମନ୍ତ ମାଣ୍ଡି, ନାରୀ ଲେଖିକା ଶ୍ରୀମତୀ ସରଳା ଦେବୀଙ୍କୁ ମଧ୍ୟ ଉପାୟନ ପ୍ରଦାନ କରିଥିଲେ ।

ଏହି ଅନୁଷ୍ଠାନରେ ଭାଷଣ ଦେଇ ଉପମନ୍ତ୍ରୀ ଶ୍ରୀ ମୁଣ୍ଡା କହିଲେ; ଦେଶର ସାହିତ୍ୟିକମାନେ ତାଙ୍କର ସୃଜନଶୀଳ ଲେଖନୀ ମାଧ୍ୟମରେ କବିତା ଓ ପ୍ରବନ୍ଧ କରିଆରେ ଆମର ଶିକ୍ଷା, ସଂସ୍କୃତି, ସ୍ୱାସ୍ଥ୍ୟରକ୍ଷା ଓ କୃଷି ବ୍ୟବସ୍ଥାକୁ ଲୋକଙ୍କ ମଧ୍ୟରେ ପ୍ରଚାର କରିବା ଆବଶ୍ୟକ । ତାହାହେଲେ ସାହିତ୍ୟ ଅଧିକ ଭାବେ ଲୋକଙ୍କର ଆଦର ଲାଭ କରିବ । ଦଳୀୟ ରାଜନୀତି ଓ ବାଦ-ବିସମ୍ବାଦରୁ ଊର୍ଦ୍ଧ୍ୱରେ ରହିବା ପାଇଁ ସେ ସାହିତ୍ୟିକମାନଙ୍କୁ ପରାମର୍ଶ ଦେଇଥିଲେ ।

ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଆଦିବାସୀ ଓ ଅଣ-ଆଦିବାସୀମାନଙ୍କ ମଧ୍ୟରେ ରହି ଆସିଥିବା ସୁସଂପର୍କର ଉଲ୍ଲେଖ୍ୟ କରି ଏହା ଅଧିକ ନିବିଡ଼ ଓ ଶାଶ୍ୱତ ହେବବୋଲି ଶ୍ରୀ ମୁଣ୍ଡା ଆଶା ପ୍ରକାଶ କରିଥିଲେ । ଏଭଳି ଏକ ପ୍ରଶଂସନୀୟ କାର୍ଯ୍ୟ ହାତକୁ ନେଇଥିବା ଯୋଗୁଁ ଆଦିବାସୀ ସଂସ୍କୃତିର ବାର୍ତ୍ତାବହ "ବନଫୁଲ"ର ଉଦ୍ୟୋକ୍ତାଙ୍କୁ ସେ ଅଭିନନ୍ଦନ ଜଣାଇଥିଲେ ।

## ଜାତୀୟ ସଂହତିର ପ୍ରେରଣା –

ଡଃ ମାୟାଧର ମାନସିଂହ କହିଲେ, ପ୍ରାଚୀନ ଭାରତରେ ମଧ୍ୟପ୍ରଦେଶ ବା ହିମାଚଳ ପ୍ରଦେଶ ପ୍ରଭୃତିର ନାମଗନ୍ଧ ନ ଥିଲେ ମଧ୍ୟ ଉତ୍କଳ ବା କଳିଙ୍ଗର ନାମ ବହୁ ଆଦିମ କାଳରୁ ରହି ଆସିଛି ଏବଂ ଓଡ଼ିଶାର ଏକ ବିଶିଷ୍ଟ ଓ ସ୍ୱତନ୍ତ୍ର ସଂସ୍କୃତି ସାହିତ୍ୟ ତଥା ସଙ୍ଗୀତ ରହିଛି ।

ଆର୍ଯ୍ୟ-ଅନାର୍ଯ୍ୟ ସଂସ୍କୃତି ମିଶି କିଭଳି ଭାରତୀୟ ସଭ୍ୟତା ଗଢ଼ି ଉଠିଛି, ତାହା ଡଃ ମାନସିଂହ ପ୍ରକାଶ କରିଥିଲେ । ସେ କହିଲେ, ଖାଦ୍ୟ ସମସ୍ୟା ଅପେକ୍ଷା ଜାତୀୟ ସଂହତି ରକ୍ଷା ଆହୁରି ବଡ଼ ସମସ୍ୟା ରୂପେ ଆଜି ଆମମାନଙ୍କ ସମ୍ମୁଖରେ ଦେଖାଦେଇଛି ଏବଂ ଜଗନ୍ନାଥ ଧର୍ମକୁ ଭିତ୍ତିକରି ଅତୀତରୁ ଯୁଗ ଯୁଗ ଧରି ଓଡ଼ିଶାରେ ବିଭିନ୍ନ ଜାତି ଓ ସମ୍ପ୍ରଦାୟ ମଧ୍ୟରେ ଯେଉଁ ତ୍ୟାଗପୂର୍ଣ୍ଣ ଐକ୍ୟ ପ୍ରତିଷ୍ଠିତ ହୋଇ ଆସିଛି ଜାତୀୟ ସଂହତିକାମୀ ଲୋକେ ସେଥିରୁ ଶିକ୍ଷା ଓ ପ୍ରେରଣା ଗ୍ରହଣ କରିବା ଉଚିତ ।

## ଦଳୀୟ ରାଜନୀତିରୁ ଊର୍ଦ୍ଧ୍ୱରେ—

ଲେଖକ ଶ୍ରୀ ମୁରାରି ମୋହନ ଜେନା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବିଭିନ୍ନ ସମୟରେ ଦେଖା ଦେଉଥିବା ବିବାଦ ବିସମ୍ବାଦ ଓ ଘାତପ୍ରତିଘାତର ଉଲ୍ଲେଖ କରିଥିଲେ । ଏହାହିଁ ଓଡ଼ିଆ ସାହିତ୍ୟ ତଥା ସାହିତ୍ୟିକମାନଙ୍କର ଅଧୋଗତିର କାରଣ ବୋଲି ସେ କହିଥିଲେ । ଲେଖକ ଓ ସାହିତ୍ୟିକମାନେ ଗୋଷ୍ଠୀଗତ ବିବାଦ ଓ ଦଳୀୟ ରାଜନୀତିରୁ ଊର୍ଦ୍ଧ୍ୱରେ ରହିବା ଆବଶ୍ୟକ ବୋଲି ସେ ମତ ପ୍ରକାଶ କରିଥିଲେ ।

## ଆଦିବାସୀଙ୍କଠାରୁ ଆମର ସଂସ୍କୃତି—

ନାଟକ ଉଦ୍‌ଘାଟନ କରି କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ ଶ୍ରୀ ଜଗନ୍ନାଥ ଆଦିବାସୀମାନଙ୍କର ଦେବତା ଓ ଆଦିବାସୀମାନଙ୍କଠାରୁ ହିଁ ଆମର ସଂସ୍କୃତି ଆରମ୍ଭ ହୋଇଛି—ତେଣୁ ସେମାନଙ୍କୁ ଅନାର୍ଯ୍ୟ ବୋଲି ଅଭିହିତ କରିବା ଠିକ୍ ନୁହେଁ ବୋଲି ସେ ପରାମର୍ଶ ଦେଇଥିଲେ । ସମ୍ପ୍ରତି ଆଦିବାସୀ ଓ ଅଣ-ଆଦିବାସୀମାନଙ୍କ ମଧ୍ୟରେ ଭେଦଭାବ ଦୂରହେବା ଆବଶ୍ୟକ ବୋଲି ସେ କହିଥିଲେ ।

## ଆଦିବାସୀ ଓ ଜିପ୍‌ସି—

ସଭାପତି ଶ୍ରୀ ମହାନ୍ତି ତାଙ୍କର ଦୀର୍ଘ ଓ ତାତ୍ତ୍ୱିକ ଅଭିଭାଷଣରେ ଆଦିବାସୀମାନଙ୍କର ପୁରାତନ ଐତିହ୍ୟ ଓ ସଂସ୍କୃତି ବର୍ଣ୍ଣନା କରିଥିଲେ । ସେ କହିଲେ, ଆମେରିକାର ଜିପ୍‌ସି ସମ୍ପ୍ରଦାୟର ଲୋକେ ଏହି ପ୍ରାଚ୍ୟ ଖଣ୍ଡରୁ ଉତ୍ପତ୍ତି ଲାଭ କରିଥିଲେ ଏବଂ ଆଦିବାସୀ ଉକ୍ତ ସମ୍ପ୍ରଦାୟର ସଂସ୍କୃତି ସହିତ ସେମାନଙ୍କ ସଂସ୍କୃତିର ସାମଞ୍ଜସ୍ୟ ରହିଛି ।

"ବନ୍‌ଫୁଲ୍" ଆଦିବାସୀ ନାଟକ ପରିବାର ନିୟନ୍ତ୍ରଣ ଉପରେ ଏବଂ "କାଠ" ନାଟକ ଅଫିସରେ ମନୋମୁଖୀ କାରବାର ଉପରେ, ସମ୍ବଲପୁରୀ ନାଚ ଓ ବାଳକୃଷ୍ଣ ଦାସଙ୍କ ସଙ୍ଗୀତ ପରିବେଷଣ ହୋଇଥିଲା । ସଙ୍ଗୀତ, ନାଟକ ମନୋରମ ଓ ଉପଭୋଗ୍ୟ ହୋଇଥିଲା । ସମ୍ପାଦକ ଶ୍ରୀ ଉପେନ୍ଦ୍ର ମିଶ୍ର ନିମନ୍ତ୍ରିତ ଭଦ୍ରବ୍ୟକ୍ତିଙ୍କୁ ରାଜ୍ୟ ଅତିଥି ଭବନରେ ରାତ୍ରୀ ଭୋଜନରେ ଆପ୍ୟାୟିତ କରିଥିଲେ ।

---

# କିଏ କ'ଣ କହନ୍ତି—

### ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀ କହନ୍ତି:—

"ବନଫୁଲ" ସାଧାରଣ ପାଠକମାନଙ୍କ ପାଇଁ ଉପଯୋଗୀ ନୂଆ ନୂଆ ବିଷୟ ପ୍ରକାଶ କରେ । ଆଦିବାସୀ ଜୀବନର ଚିତ୍ର ଫୁଟାଇବା ଦିଗରେ ଏହାର ଉଦ୍ୟମ ପ୍ରଶଂସନୀୟ ।

### ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ କହନ୍ତି:—

'ବନଫୁଲ' ଗୋଟିଏ ଉପାଦେୟ ପତ୍ରିକା । ଏହାର ମୁଦ୍ରଣ ଓ ବିଷୟ ନିର୍ବାଚନ ପାଠକଙ୍କୁ ଆକୃଷ୍ଟ କରେ ।

### ଡକ୍ଟର ମାୟାଧର ମାନସିଂହ କହନ୍ତି:—

ଆଦିବାସୀ ସଂସ୍କୃତିର ବାହକରୂପେ ଶ୍ରୀ ଉପେନ୍ଦ୍ର ମିଶ୍ରଙ୍କ "ବନଫୁଲ" ଏକ ସ୍ୱାଗତ୍ୟ ଉଦ୍ୟମ । ଓଡ଼ିଆ ସାହିତ୍ୟରେ ଏହା ନୂତନ ପ୍ରଚେଷ୍ଟା । ସାଧାରଣ ସାହିତ୍ୟ ମଧ୍ୟ ଏଥିରେ ପରିବେଷିତ ହେଉଛି । ଆଦିବାସୀ ଭାଇ ଭଉଣୀମାନଙ୍କ ପାଖରେ ଦେଶ ଓ ଜାତିର ଡାକ ପହଞ୍ଚାଇବାର ଉତ୍ସାହ ମଧ୍ୟ ପ୍ରଶଂସନୀୟ । ସାନ୍ତାଳୀଭାଷାରେ ଗାନ୍ଧୀ-ତତ୍ତ୍ୱ ପ୍ରଚାର ଏହାର ଏକ ନିଦର୍ଶନ ।

### କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ କହନ୍ତି:—

'ବନଫୁଲ' ପାଠକ ମନରେ ଫୁଲ ଫୁଟାଇ ପାରିଛି । ଓଡ଼ିଆ ସାହିତ୍ୟରେ ଏହା ଏକ ଅଭିନବ ପଦକ୍ଷେପ ।

### ଅଧ୍ୟାପକ ପ୍ରାଣବନ୍ଧୁ କର କହନ୍ତି:—

"ବନଫୁଲ" ଓଡ଼ିଆ ସାହିତ୍ୟରେ ଆଦିବାସୀ ଭାଷା ପରିବେଷଣ କରି ଏକ ନୂତନ ଯୁଗ ସୃଷ୍ଟି କରିଛି ।

### ବିପ୍ଳବୀ କବି ରବୀନ୍ଦ୍ରନାଥ ସିଂହ କହନ୍ତି:—

'ବନଫୁଲ' ଯେପରି ଭାବରେ ଜନ୍ମଲାଭ କରିଥିଲା ଏବଂ ଆଜି ଯେପରି ଅବସ୍ଥାରେ ଆସି ପହଞ୍ଚିଛି, ସେଥିରେ ଆପଣଙ୍କ କୃତିତ୍ୱ ବେଶ୍ ପ୍ରଶଂସନୀୟ ।

### ଜେନାକବି ମୁରାରିମୋହନ କହନ୍ତି:—

'ବନଫୁଲ' ଏ ପର୍ଯ୍ୟନ୍ତ ଗାଉଁଲି ସଭ୍ୟତାର ମାପକାଠି ଥିଲା; କିନ୍ତୁ ବନ୍ଧୁ ଉପେନ୍ଦ୍ର ମିଶ୍ର ଏହାକୁ ସହରୀ ସଭ୍ୟତାରେ ଅତି ସାହସର ସହିତ ଭର୍ତ୍ତି କଲେ । ଏହା କମ୍ କଥା ନୁହେଁ ।

### କବି ବ୍ରଜମୋହନ କହନ୍ତି:—

ପ୍ରବାଦ ଅଛି ବନଫୁଲ ମଉଳା । କିନ୍ତୁ ସତରେ କ'ଣ କେବେ 'ବନଫୁଲ' ମଉଳି ପାରେ ? ଅନନ୍ତ ସୁଷମାର ଅଧିକାରୀ ସେ । ଆମେ ଯେ ସେ ଫୁଲର ମହକ ପାଉଛୁ—ତାହା ଫୁଲର ସୌଭାଗ୍ୟ ନୁହେଁ......ଆମର । ଏହି ଫୁଲ ବନଗ୍ରାହୀ ମନରେ ପାଖୁଡ଼ା ମେଲି ଶୋଭା ପାଉ, ସ୍ନେହ ଓ ସମ୍ମାନ ଦେଉ, ଏହାହିଁ ମୋର କାମନା ।

### ଔପନ୍ୟାସିକ ବିଭୂତି ପଟ୍ଟନାୟକ କହନ୍ତି:—

ଗତାନୁଗତିକତାର ଧାରା ଭଙ୍ଗ କରିବାରେ 'ବନଫୁଲ' ଏକ ସାହସିକ ପଦକ୍ଷେପ ନେଇଛି ।

### ଡକ୍ଟର ରାଧାନାଥ ରଥ କହନ୍ତି:—

'ବନଫୁଲ' ପତ୍ରିକାର ଭାଷା ଯେପରି ସରଳ ବିଷୟବସ୍ତୁ ସେପରି ଉପାଦେୟ । ବିଶେଷତଃ ଆଦିବାସୀ ସ୍କୁଲପିଲା ଓ ଶିକ୍ଷକମାନଙ୍କ ପାଇଁ ଏହାର ଉପାଦେୟତା ବହୁତ ବେଶି । ଏ ପ୍ରକାର ପତ୍ରିକା ଓଡ଼ିଆ ସାହିତ୍ୟରେ ପ୍ରଥମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଭବିଷ୍ୟତ ଯେ ଉଜ୍ଜ୍ୱଳ ଏଥିରେ ସନ୍ଦେହ ନାହିଁ ।

### ଡ଼କ୍ଟର ଗୋପାଳଚନ୍ଦ୍ର ମିଶ୍ର କହନ୍ତି:—

ଜଙ୍ଗଲରେ ବହୁତ ଫୁଲ । ସେ ଫୁଲର ମହକ ସବୁଠାରୁ ବେଶୀ ଅଧିକ । "ବନଫୁଲ" ସେହି ମହକ ପ୍ରକାଶ କରି ଆସୁଛି । ତାହାର ଚଲା ବାଟରେ ଫୁଲ ବିଛେଇ ଯାଉ ।

Approved by the D. P. I. Orissa.

# ବନଫୁଲ ପ୍ରତି ଶୁଭେଚ୍ଛା ଓ ସଦିଚ୍ଛା

ଶ୍ରୀମତୀ ନନ୍ଦିନୀ ଶତପଥୀ—କେନ୍ଦ୍ର ଉପମନ୍ତ୍ରୀ
ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ—ମୁଖ୍ୟମନ୍ତ୍ରୀ, ଓଡ଼ିଶା
ଶ୍ରୀ ବନମାଳୀ ପଟ୍ଟନାୟକ—ଶିକ୍ଷାମନ୍ତ୍ରୀ
ଶ୍ରୀ ନିତ୍ୟାନନ୍ଦ ମହାପାତ୍ର—ମନ୍ତ୍ରୀ, ସାଂସ୍କୃତିକ ବ୍ୟାପାର
ଶ୍ରୀ ମନମୋହନ ଟୁଡ଼ୁ—ଉପମନ୍ତ୍ରୀ, ଆଦିବାସୀ ଓ ଗ୍ରାମମଙ୍ଗଳ
ଶ୍ରୀ ଗୋବିନ୍ଦ ମୁଣ୍ଡା—ଉପମନ୍ତ୍ରୀ, ସ୍ୱାସ୍ଥ୍ୟ
ଶ୍ରୀ କାର୍ତ୍ତିକଚନ୍ଦ୍ର ମାଝୀ—ଉପମନ୍ତ୍ରୀ, ଅର୍ଥ ଓ ଢଂରୋଇ
ଶ୍ରୀ ବୃନ୍ଦାବନ ଚନ୍ଦ୍ର ତ୍ରିପାଠୀ—ଉପମନ୍ତ୍ରୀ, କୃଷି
ଦୈନିକ ସମ୍ବାଦପତ୍ର—ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ, କଲିକତା
ଦୈନିକ ସମ୍ବାଦପତ୍ର ସମାଜ—କଟକ
ଦୈନିକ ସମ୍ବାଦପତ୍ର—ମାତୃଭୂମି, କଟକ

The magazine fulfills the criteria of getting the advertisement from D. A. V. New Delhi for it is an uninterrupted publication and its circulation is 5,200 and the standard of production is satisfactory.

Asst. Director.

# ବନଫୁଲକୁ ଫୁଟାଉଛନ୍ତି

ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ
ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ
ଡକ୍ଟର ମାୟାଧର ମାନସିଂହ
ଡକ୍ଟର ରାଧାନାଥ ରଥ
କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ
ଶ୍ରୀ ଗୋପୀନାଥ ମହାନ୍ତି
ଶ୍ରୀ କାହ୍ନୁଚରଣ ମହାନ୍ତି
ଶ୍ରୀ ବିଭୂତି ପଟ୍ଟନାୟକ
ଶ୍ରୀ ରବୀନ୍ଦ୍ରନାଥ ସିଂହ

ଶ୍ରୀ ମୁରାରିମୋହନ ଜେନା
ଶ୍ରୀ ବ୍ରଜମୋହନ ମହାନ୍ତି
ଶ୍ରୀମତୀ ସରଳା ଦେବୀ
ଅଧ୍ୟାପକ ଶ୍ରୀ ପ୍ରପତ୍ତି
ଶ୍ରୀ ଗୌରାଙ୍ଗଚନ୍ଦ୍ର ମହାନ୍ତି
ଶ୍ରୀ ଶ୍ରୀମନ୍ତ ମାର୍ଣ୍ଡି
ଶ୍ରୀ ଅନିରୁଦ୍ଧ ଦାଶ, ଆଇ. ଏ. ଏସ୍.
ଶ୍ରୀ ଆର. କେ. ମିଶ୍ର ଓ. ଏଫ୍. ଏସ୍
ଶ୍ରୀ ବ୍ରଜନାଥ ରଥ

ଉପରୋକ୍ତ ଗଣ୍ୟମାନ୍ୟ ବ୍ୟକ୍ତି ଏବଂ ଅନୁଷ୍ଠାନମାନଙ୍କର ଶୁଭେଚ୍ଛା ଓ ସଦିଚ୍ଛା ପାଇଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛୁଁ ।

ସମ୍ପାଦକ—ବନଫୁଲ

# ଏ ସଂଖ୍ୟାରେ

ବିଷୟ | ପୃଷ୍ଠା

# ସମ୍ପାଦକୀୟ

## ବନଫୁଲର ବାର୍ଷିକ ଉତ୍ସବରେ ପଠିତ ସମ୍ପାଦକଙ୍କ ବିବରଣୀ

ଓଡ଼ିଶାର ବରେଣ୍ୟ ନେତା ସୁଧୀ ସାହିତ୍ୟିକ, ସାହିତ୍ୟପ୍ରେମୀ ଅତିଥିଗଣ ଓ ଉତ୍ସାହୀ କଳାପ୍ରେମୀଗଣ ! ଆଜି 'ବନଫୁଲ'ର ଏହି ବାର୍ଷିକ ଉତ୍ସବ ଦିବସରେ ଆପଣମାନେ ଗଭୀର ଶ୍ରଦ୍ଧାର ସହ ସାଦରେ ଉପସ୍ଥିତ ଥିବାରୁ ମୁଁ ମୋର ଅନ୍ତରର ଗଭୀର ସମ୍ମାନ ଆପଣମାନଙ୍କ ନିକଟରେ ନିବେଦନ କରୁଛି । 'ବନଫୁଲ' ଅନୁଷ୍ଠାନ ଏକ ଶିଶୁ ଅନୁଷ୍ଠାନ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ବା ଓଡ଼ିଆ ଗଣଜୀବନକୁ ଯେ 'ବନଫୁଲ' ପରି ଏକ କ୍ଷୁଦ୍ର ଅନୁଷ୍ଠାନ ଉଚ୍ଚତର ଆସନରେ ଆସୀନ କରିବ, ତାହା କୁହାଯାଇ ନ ପାରେ । ତଥାପି ବିକାଶର ସ୍ରୋତରେ 'ବନଫୁଲ'ର ସକ୍ରିୟ ପ୍ରଚେଷ୍ଟା ଯେ ଏକ କ୍ଷୁଦ୍ର ଜଳବିନ୍ଦୁ ସଦୃଶ ସହଯୋଗ କରିବ, ପ୍ରେରଣା ଯୋଗାଇବ,—ଏଥିରେ ସନ୍ଦେହ ନାହିଁ । ଗତ ୧୯୬୮ ମସିହା ମେ ୯ ତାରିଖର କଥା ଆଜି ମନେପଡ଼େ । ଏଇ ମାତ୍ର ବର୍ଷକ ତଳର ଇତିହାସ ନେଇ 'ବନଫୁଲ'ର ଆତ୍ମପ୍ରକାଶ । ସେଦିନ ଅନୁଭବ କରାଗଲା ଯେ, ଓଡ଼ିଶାର ସାମୁହିକ ଉନ୍ନତି ପାଇଁ ପର୍ଯ୍ୟାପ୍ତ ସୁବିଧା ସୁଯୋଗ ଥିଲେ ମଧ୍ୟ ପାହାଡ଼ ତଳର ଅଗଣିତ ଆଦିବାସୀ ଭାଇଭଉଣୀଙ୍କ ଲାଗି ଓ ସେମାନଙ୍କର ଭାଷା, ସାହିତ୍ୟ, ଗଣଚେତନାର ବିକାଶ ପାଇଁ କୌଣସି ସକ୍ରିୟ ପ୍ରଚେଷ୍ଟା କାର୍ଯ୍ୟକାରୀ ହୋଇ ପାରିନାହିଁ । ତେଣୁ ଅନ୍ଧାରି ପାହାଡ଼ ମୁଲକର ଅଗଣିତ ମଉଳା 'ବନଫୁଲ'ଙ୍କ ଜୀବନ, ଜୀବନୀ ଓ ଭାବ, ଭାଷାକୁ ସର୍ବସମ୍ମୁଖରେ ପ୍ରକାଶ କରିବା ଲାଗି ଏହି ପତ୍ରିକାର ଶୁଭାରମ୍ଭ କରାଗଲା । ତେଣୁ ଏହି ଚେଷ୍ଟାର ସ୍ମାରକୀ ସଦୃଶ ୧୯୬୮ ମେ ୯ ତାରିଖ ଦିନ ଜନ୍ମନେଲା 'ବନଫୁଲ' ମାସିକ ପତ୍ରିକା । ସେଦିନ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗର ଉପମନ୍ତ୍ରୀ ଶ୍ରୀଯୁକ୍ତ ମନମୋହନ ଟୁଡୁ ଏହି ନବଜାତ ଶିଶୁ ପତ୍ରିକାର ଶୁଭ ଉନ୍ମୋଚନ କରିଥିଲେ । ସେହିଦିନଠାରୁ ଓଡ଼ିଶାର ବହୁ ଲବ୍ଧପ୍ରତିଷ୍ଠିତ କବି, ଔପନ୍ୟାସିକ, ପ୍ରାବନ୍ଧିକ, ଗାଳ୍ପିକ ଏହାର ପାଖୁଡ଼ା ଫୁଟାଇବାରେ ଲାଗିଛନ୍ତି । ବିଶେଷ କରି ଏ ପତ୍ରିକାଟିରେ ସର୍ବପ୍ରଥମେ ସାନ୍ତାଳୀ ଭାଷା ଓ କୋୟା ଭାଷାରେ ଆଦିବାସୀ ଜୀବନର ଚିତ୍ର ପ୍ରଦାନ କରାଯାଇ ଲୋକମନକୁ ଆକର୍ଷିତ କରାଯାଇ ପାରିଛି । ତେଣୁ ଓଡ଼ିଶାର କେଉଁ ଅଖ୍ୟାତ ସୁନାବେଡ଼ାର ଆଦିବାସୀ ଆଶ୍ରମ ସ୍କୁଲ ପ୍ରାଙ୍ଗଣରୁ 'ବନଫୁଲ'ର ଜନ୍ମ ହୋଇଥିଲେ ମଧ୍ୟ ସେ ପୁଷ୍ପିତ ହୋଇଛି ନାନା ରଙ୍ଗରେ, ନାନା ଢଙ୍ଗରେ ଓଡ଼ିଶାର ପ୍ରତ୍ୟେକ ଜନପଦରେ । ସୁଖର ବିଷୟ ଯେ D. P. I. ମହାଶୟ ସ୍କୁଲ, କଲେଜ ଓ ପାଠାଗାରର ପାଠ୍ୟପତ୍ରିକା ଭାବେ ଏଇଟିକୁ ମଞ୍ଜୁରି ପ୍ରଦାନ କରିଛନ୍ତି । ବର୍ତ୍ତମାନ ପ୍ରାୟ ୩୮ ଜଣ ପରିବେଷକ ଓଡ଼ିଶାର ବିଭିନ୍ନ ସ୍ଥାନରେ ରହି ଏହାର ପ୍ରଚାର ଓ ପ୍ରସାର ଦିଗରେ ଆପ୍ରାଣ ଚେଷ୍ଟାରତ । ଲେଖକ, ପାଠକ ଓ ସମର୍ଥକମାନଙ୍କର ସାହାଯ୍ୟ ସହାନୁଭୂତି ଯୋଗୁଁ ଏବେ 'ବନଫୁଲ'ର ଭାଗ୍ୟ ଅନେକାଂଶରେ ପରିବର୍ତ୍ତିତ ହୋଇଛି । ଫଳରେ କେବଳ ଆଦିବାସୀ ନୁହଁନ୍ତି, ସହର ଓ ଗ୍ରାମାଞ୍ଚଳର ଅସଂଖ୍ୟ ବୁଦ୍ଧିଜୀବୀଙ୍କ ପାଇଁ ଏହା ଯୋଗାଇ ପାରିଛି ମାନସିକ ଖାଦ୍ୟ । ବିଭିନ୍ନ ବୈପ୍ଳବିକ ପ୍ରବନ୍ଧ, ଚିତ୍ତ ମନୋହାରୀ କବିତା, ସୁଖପାଠ୍ୟ ଗଳ୍ପ ଏବଂ ନାନାବିଧ ରମ୍ୟରଚନା ପ୍ରକାଶିତ ହୋଇଛି । ଏହାଛଡ଼ା ମହିଳା ଓ ଶିଶୁମାନଙ୍କ ନିମିତ୍ତ ମହିଳା ଓ ଶିଶୁ ବିଭାଗ ଖୋଲାଯାଇ 'ବନଫୁଲ'ର ପାଖୁଡ଼ାକୁ ଅଧିକ ସତେଜ କରିବାକୁ ଚେଷ୍ଟା କରାଯାଇଛି । ଆମେ ଆଶାକରୁଁ, ଓଡ଼ିଶାର ଅଗଣିତ ପାଠକ ପାଠିକା ଓ ସାହିତ୍ୟ ସମର୍ଥକ ତଥା ସାହିତ୍ୟିକ ବୃନ୍ଦ ଏହିପରି ସଦିଚ୍ଛା ଓ ସହଯୋଗ ସହିତ ଏ ଶିଶୁ ଅନୁଷ୍ଠାନକୁ ଜୀବନ୍ତ କରି ରଖିବେ ।

ବର୍ତ୍ତିମାନ ଓଡ଼ିଆ ସାହିତ୍ୟରେ ବହୁ ସମସ୍ୟା ଦେଖା ଦେଇଛି, ଏହି ସମସ୍ୟାଗୁଡ଼ିକ ନୂଆ ନୁହେଁ । ଅନାଦି କାଳରୁ ସାହିତ୍ୟ ସମସ୍ୟା ବହୁଳ । ସାହିତ୍ୟିକମାନେ ହିଁ ଏହି ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିଥାନ୍ତି ।

ଆଜିର ସାହିତ୍ୟ ରାଜ୍ୟରେ ପ୍ରଥମ ସମସ୍ୟା ହେଲା···ପୁରାତନ ଓ ନୂତନ ମଧ୍ୟରେ ଦ୍ୱନ୍ଦ୍ୱ । ପୂର୍ବଯୁଗରେ ଭଞ୍ଜ ଓ ରାଧାନାଥଙ୍କୁ କେନ୍ଦ୍ର କରି ଯେଉଁ ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ଯୁଦ୍ଧ ଚଳାଇଥିଲେ, ଆଜି ମଧ୍ୟ ସେହି ଅନ୍ତର୍ଯୁଦ୍ଧର ଅବସାନ ହୋଇନାହିଁ । ଛନ୍ଦୋବଦ୍ଧବୋଧ ରଚନା, ଛନ୍ଦହୀନ ଅବୋଧ ବୌଦ୍ଧିକ ଚେତନା ପ୍ରକାଶ ମୁହାଁମୁହିଁ ।

ଠିକ୍ ସେହିପରି ଉପେନ୍ଦ୍ର କିନ୍ତୁ ଜନ୍ମ ନେଇଛନ୍ତି ଅନ୍ୟ ଭାବରେ । ହିପି, ନଉଡ଼, ବିଟ୍‌ଲ୍, ଟପ୍‌ଲେସ୍, ବଟମ୍‌ଲେସ୍ ସଭ୍ୟତାର ସ୍ରୋତ ସହିତ ତାଳଦେଇ ଅଶ୍ଳୀଳତାର ଜରାୟୁରେ ଜୀବନ୍ତ ହୋଇ ଉଠୁଛି କାମବିକାର । ପୁଣି ଥୋକେ ତାହାର ପ୍ରତିରୋଧ କରିବାକୁ ଆଗଭର ।

ଦେଶୀ, ବିଦେଶୀ, ସ୍ୱାଧୀନତା, ପରାଧୀନତାର ପ୍ରାଚୀର ଭାଙ୍ଗି ପଡ଼ୁଛି । ଏହି ଭଗ୍ନସ୍ତୂପରେ ଏବେ ଜ୍ୱଳନ୍ତ ବହ୍ନିଶିଖା ଭଳି ପୁଚ୍ଛ ଟେକି ନାଚିବାକୁ ଆରମ୍ଭ କରିଛି—ନକ୍‌ସଲ ପନ୍ଥୀ ଚେତନା, ହୁଏତ ସାହିତ୍ୟରେ ମଧ୍ୟ ଏହାର ଅଖଣ୍ଡ ରାଜତ୍ୱ ସୃଷ୍ଟିହେବ; କିନ୍ତୁ ମଣିଷ ଯେ ମଣିଷ—ଏହି ମହାନ ନିର୍ବେଦଡିଣ୍ଡିମ ଯୁଗେ ଯୁଗେ ସାହିତ୍ୟ ଓ ସାହିତ୍ୟିକ ପ୍ରଚାର କରି ଆସିଛି । ତେଣୁ ସମସ୍ତ ଆଞ୍ଚଳିକତା, ସାମ୍ପ୍ରଦାୟିକତା, ଗୋଷ୍ଠୀ ଭାବନାର ଊର୍ଦ୍ଧ୍ୱରେ ଥାଇ ସାହିତ୍ୟର ଲକ୍ଷ୍ୟହେଲା ଏକ ଆନ୍ତର୍ଜାତୀୟ ଭାବୋଦ୍‌ବେଗର ପ୍ରକାଶ । ଗାନ୍ଧିଜୀଙ୍କ ଭଳି "ଯୋହି ଅଲ୍ଲା ସେହି ରାମ"ର ଧ୍ୱନିରେ ଆମେ ବିଶ୍ୱାସୀ । ଆନ୍ଧ୍ର, ତେଲେଙ୍ଗାନା, କଟକ, ସମ୍ବଲପୁରର ଭେଦ ନାହିଁ । ସରଳ, ଶାନ୍ତ, କୋଷ୍ଠା, ସାନ୍ତାଳ, ଗଦବା, ଶବର, ଖଡ଼ିଆ, କିଶାନ୍, ଅଘରିଆ, କନ୍ଧ, କୋହ୍ଲ, ଭୂୟାଁ । ପ୍ରାଣରେ ଯେଉଁ ମାନବିକ ସଚେତନତା ଅହରହ ଆତ୍ମପ୍ରକାଶ ପାଇଁ ବ୍ୟାକୁଳ; ମିଶ୍ର, ମହାନ୍ତି, ମହାରଣା, ଖାଁ, ମିଆଁ, ପିଟର, ଫ୍ଲେଚରଙ୍କ ପ୍ରାଣରେ ମଧ୍ୟ ସେହି ବୈକଲ୍ୟ । ଏହି ମହାନ୍ ସତ୍ୟକୁ ଆଖି ଆଗରେ ରଖି 'ବନଫୁଲ' ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିବାକୁ ଆଗଭର । ତେଣୁ 'ବନଫୁଲ' ନିକଟରେ ସମସ୍ୟାହିଁ କେବଳ—ସହଯୋଗ, ସହାନୁଭୂତି ଓ ଆଶୀର୍ବାଦ ।

ଓଡ଼ିଶାର ସୁଧୀ ପାଠକ, ବିଜ୍ଞ ସାହିତ୍ୟିକ ଓ ଶିକ୍ଷାପ୍ରେମୀଗଣ ଏ ଦିଗରେ ଉତ୍ସାହିତ କଲେ ନିଶ୍ଚୟ ଆମ୍ଭେମାନେ ଚିର କୃତଜ୍ଞ ରହିବୁ ।

ଶେଷରେ ଆଜିର ପ୍ରଥମ ବାର୍ଷିକୋତ୍ସବରେ ଯେଉଁ ସୁଧୀ ଅତିଥିବୃନ୍ଦ ଏଥିରେ ଉପସ୍ଥିତ ହୋଇ ସେମାନଙ୍କର ପ୍ରେରଣା ଆଶୀର୍ବାଦ ପ୍ରଦାନ କରିଛନ୍ତି, ଆମେ ସେମାନଙ୍କ ନିକଟରେ ଆମର ଅନୁଷ୍ଠାନ ତରଫରୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛୁଁ ।

**ଉପେନ୍ଦ୍ର ମିଶ୍ର**



# ଦାରୁବ୍ରହ୍ମ ଜଗନ୍ନାଥ

( ଶବର-ସଂସ୍କୃତିର ଏକ ରୂପାନ୍ତର )

ଶ୍ରୀ ଅର୍ଜ୍ଜୁନ ସିଂହ, ଆଦିବାସୀନେତା ଓ ବିଧାନସଭା ସଦସ୍ୟ

ବିଭିନ୍ନ ମାନବ ସଭ୍ୟତାର ପ୍ରସୂତି ପୀଠ, ନଦ ନଦୀ ପର୍ବତ ପୂରିତ, ଅରଣ୍ୟାନୀ ସମାକୀର୍ଣ୍ଣ, ନାନାବିଧ ପଶୁପକ୍ଷୀ ଅଧ୍ୟୁଷିତ, ତରଙ୍ଗାୟିତ ନୀଳ ସାଗର ପରିବେଷ୍ଟିତ, ଉଦ୍ଭିଦ, ଲତାଫଳପୂର୍ଣ୍ଣ, ସବୁଜ ଶସ୍ୟ ଶାଳିନୀ ଆମର ଜନ୍ମଭୂମି ଭାରତବର୍ଷ ଆଦିମାନବର ଆଦିମ—ବାସସ୍ଥଳୀ ନାମରେ ପରିଚିତ । ଏ ଦେଶର ସଂସ୍କୃତି ଓ ପରମ୍ପରା ଅତି ପ୍ରାଚୀନ । ଆର୍ଯ୍ୟ, ଅନାର୍ଯ୍ୟ, ଦ୍ରାବିଡ଼ ପ୍ରଭୃତି ବିଭିନ୍ନ ଜାତି ତଥା ବିଭିନ୍ନ ଧର୍ମର ସମନ୍ୱୟରେ ଏ ଦେଶର ସଭ୍ୟତାର ଉଦ୍ଭବ ।

ଏ ଦେଶର ପ୍ରାଚୀନ ନାମ ଜମ୍ବୁଦ୍ୱୀପ । ଆର୍ଯ୍ୟମାନଙ୍କର ଏ ଦେଶକୁ ଆଗମନ ପରେ ଏହାର ନାମ ହେଲା ଆର୍ଯ୍ୟାବର୍ତ୍ତ । ପରବର୍ତ୍ତୀ କାଳରେ ଏହାର ନାମ ହେଲା ଭାରତବର୍ଷ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଏ ଦେଶର ପଶ୍ଚିମାଂଶରେ ବାସକରି ରହୁଥିଲେ ଦ୍ରାବିଡ଼ମାନେ । କିନ୍ତୁ ସେମାନଙ୍କ ନାମାନୁସାରେ ଏ ଦେଶର ନାମକରଣ ହୋଇ ପାରିଲା ନାହିଁ, କାରଣ ଆର୍ଯ୍ୟମାନଙ୍କର ଧୀଶକ୍ତି, ଶିକ୍ଷା, ସଂସ୍କୃତି ତୁଳନାରେ ସେମାନେ ଥିଲେ ବହୁ ନିମ୍ନରେ ।

ଏ ଦେଶକୁ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଆଗମନର ବହୁକାଳ ପୂର୍ବରୁ ଏ ଦେଶ ଅନ୍ୟ ଏକ ମାନବ ସମାଜ ଦ୍ୱାରା ଅଧ୍ୟୁଷିତ ଥିଲା । ସେମାନେ ହିଁ ପ୍ରକୃତରେ ସର୍ବପ୍ରଥମ ସନ୍ତାନ ଥିଲେ ଏ ଦେଶର ଏବଂ ଏ ମାଟିର ।

ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ ତୁଳନାରେ ସେମାନେ ଥିଲେ ନିଷ୍କପଟ, ନିରାଡ଼ମ୍ବର, ସରଳ ବିଶ୍ୱାସୀ, ଶାନ୍ତିପ୍ରିୟ, ସ୍ୱାବଲମ୍ବୀ, ଆମୋଦ ପ୍ରମୋଦ ପ୍ରିୟ ଓ ସ୍ୱାଧୀନମନା । କିନ୍ତୁ ଜୀବନ ସଂଗ୍ରାମରେ ସେମାନେ ଦ୍ରାବିଡ଼ ଏବଂ ଆର୍ଯ୍ୟମାନଙ୍କ ସହିତ ସମକକ୍ଷ ନ ଥିଲେ । ପରବର୍ତ୍ତୀ କାଳରେ ଜୀବନ ସଂଗ୍ରାମରେ ସେମାନେ ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ-ଦ୍ୱାରା ପରାସ୍ତ ହୋଇ ପ୍ରକୃତିର ଶାନ୍ତିପୂର୍ଣ୍ଣ ଅରଣ୍ୟ ଉପତ୍ୟକାରେ କଣ୍ଟକ ସଂକୁଳ ହିଂସ୍ର ମାନବର ଦୃଷ୍ଟିର

ଅନ୍ତରାଳରେ ଆତ୍ମଗୋପନ କରି ରହି ଅନ୍ନଦାତ୍ରୀ,- ଆଶ୍ରୟ ଓ ଅଭୟଦାୟିନୀ ମାତୃରୂପା ପ୍ରକୃତିକୁ ପୂଜା କରୁଥିଲେ ।

ଉପରୋକ୍ତ ପ୍ରକୃତି ପୂଜକ ଏବଂ ପ୍ରକୃତି ପାଳିତ ମାନବ ସମାଜ ହିଁ ପ୍ରକୃତରେ ଏ ଦେଶର ସନ୍ତାନ ଗଣ ଯେଉଁମାନଙ୍କୁ କି ଆଧୁନିକ ଯୁଗରେ ଶବର, ଶଅର, ଶଉରା ପ୍ରଭୃତି ନାମରେ ନାମିତ କରାଯାଏ । ଆର୍ଯ୍ୟ ଏବଂ ଦ୍ରାବିଡ଼ମାନଙ୍କ ଦ୍ୱାରା ପରାସ୍ତ ଓ ବିତାଡ଼ିତ ହୋଇ ଶବରମାନେ ବହୁ ସଂଖ୍ୟାରେ ପଶ୍ଚିମ ଭାରତରୁ ଉତ୍ତର ଭାରତ, ଦକ୍ଷିଣ ପୂର୍ବ-ଭାରତ ଓ ପୂର୍ବ ଭାରତ ଅଞ୍ଚଳକୁ ପଳାୟନ କଲେ ଏବଂ ନିଜକୁ ସେଠାରେ ନିରାପଦ ମନେକରି ଜୀବିକା ନିର୍ବାହ ପୂର୍ବକ କାଳ ଯାପନ କରି ରହିଲେ । ଯେଉଁ ଶବରମାନେ ପୂର୍ବ ସାଗର କୂଳରେ ବସତି ସ୍ଥାପନ କରିଥିଲେ, ସେମାନେ ସର୍ବପ୍ରଥମେ ବୃକ୍ଷ ପୂଜା ଆରମ୍ଭ କରିଥିଲେ । ଶ୍ୟାମଳ ଶସ୍ୟ କ୍ଷେତ୍ରର ସବୁଜିମା ଏବଂ ଫଳ ପୁଷ୍ପଭରା ବୃକ୍ଷରାଜିକୁ ଶବରମାନଙ୍କର ହୃଦ୍‌ବୋଧ ହେଲା ଯେ ସେଗୁଡ଼ିକୁ ପ୍ରକୃତରେ ପ୍ରକୃତିର ରୂପାନ୍ତର ବୋଲି । ପ୍ରକାରାନ୍ତରେ ବୃକ୍ଷ ବା ଗଛର କାଠରେ ସେମାନେ ଅସ୍ତ୍ରଶସ୍ତ୍ରଠାରୁ ଆରମ୍ଭ କରି ଯାବତୀୟ ଗୃହୋପକରଣ ପର୍ଯ୍ୟନ୍ତ ନିର୍ମାଣ କରୁ-ଥିଲେ । ଉକ୍ତ ବୃକ୍ଷ ବା ଦାରୁ ଦେହରୁ ସେମାନେ ବଳ୍କଳ, ଫଳ, ପୁଷ୍ପ ଓ ପତ୍ର ସଂଗ୍ରହ ପୂର୍ବକ ସେଗୁଡ଼ିକୁ ଯଥାକ୍ରମେ ନିଜ ନିଜର ଖାଦ୍ୟ, ବସ୍ତ୍ର ଓ ପାନୀୟର ଆଧାର ଏବଂ ଔଷଧ ରୂପରେ ବ୍ୟବହାର କରୁଥିଲେ । ଅଦ୍ୟାବଧି ଶବର ଜାତୀୟ ଜନ-ସାଧାରଣ ଉପରୋକ୍ତ ପଦାର୍ଥ ସମୂହ ପୂର୍ବପରି ବ୍ୟବହାର କରି ଆସୁ ଅଛନ୍ତି । ଓଡ଼ିଶାର ଶବର ଅଧ୍ୟୁଷିତ ଅଞ୍ଚଳରେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଖି-ବାକୁ ମିଳେ ।

ବୃକ୍ଷ ବା ଦାରୁଠାରୁ ସେମାନେ ମହୋପକାର ଲାଭ କରୁଥିବା ଯୋଗୁଁ ସର୍ବଶ୍ରେଷ୍ଠ ମଙ୍ଗଳପ୍ରଦ ଦେବତା ଜ୍ଞାନରେ ତାହାକୁ ପୁରୁଷାନୁକ୍ରମେ ପୂଜା କରୁଥିଲେ । କ୍ରମଶଃ ତାହା ଏକ ଅପରିହାର୍ଯ୍ୟ ଶାବରୀ ସଂସ୍କୃତିରେ ପରିଣତ ହୋଇ ପାରିଥିଲା ।

ଭାରତୀୟ ଦର୍ଶନ ଶାସ୍ତ୍ରାନୁସାରେ, କୌଣସି ବସ୍ତୁକୁ ଗ୍ରହଣିବା ଦ୍ୱାରା ଯଦି ଦୁଃଖର ଲାଘବ ହୁଏ ଏବଂ ସୁଖାନନ୍ଦର ଅଭ୍ୟୁଦୟ ଘଟେ, ତାହାହେଲେ ବସ୍ତୁରେ ବିଭିନ୍ନ ଗୁଣରାଶିର ସମାବେଶ ନିଶ୍ଚିତ ଭାବରେ ଘଟି-ଥାଏ ବୋଲି ଦାର୍ଶନିକମାନଙ୍କର ମତ । ସାଧାରଣ ମାନବ ଉକ୍ତ ଗୁଣ ସମୂହର ଆଧାରକୁ ଦେବତା ଜ୍ଞାନରେ ପୂଜାକରେ ।

ବୃକ୍ଷ ବା ଦାରୁଠାରେ ଦୟା, କ୍ଷମା, ତିତିକ୍ଷା ପ୍ରଭୃତି ଗୁଣରାଜିର ଏକତ୍ର ସମାବେଶ ଯୋଗୁଁ ଏବଂ ଆଶ୍ରୟ, ଖାଦ୍ୟ, ପରିଧେୟ ଉକ୍ତ ବୃକ୍ଷ ବା ଦାରୁଠାରୁ ଲାଭ କରୁଥିବା ଯୋଗୁଁ ଶବର ବା ଶବରୀ ଜାତୀୟ ମାନବ ସମାଜ ବୃକ୍ଷକୁ ଜଗତର ସର୍ବ ମଙ୍ଗଳ କାରକ ଦେବତା ଜ୍ଞାନରେ ପୂଜା କରୁଥିଲେ । କିନ୍ତୁ ସର୍ବଦା ସବୁ ଋତୁରେ ଦାରୁ ବା ବୃକ୍ଷ ଦେବତାଙ୍କୁ ପୂଜା କରିବା ଶବର ପକ୍ଷରେ ସମ୍ଭବ ହୋଇପାରୁ ନ ଥିଲା । କାରଣ ହେଉଛି ଯେଉଁଦିନ ପ୍ରବଳ ଝଡ଼ ବାତ୍ୟା କିମ୍ବା ବର୍ଷା ହେଉଥିଲା, ସେତେବେଳେ ଶବରମାନେ ଦାରୁ ବା ବୃକ୍ଷ ପୂଜାରୁ ବଞ୍ଚିତ ହେଉଥିଲେ । ଉପରୋକ୍ତ କାରଣ ଯୋଗୁଁ ନିତ୍ୟ ପୂଜା ଉପାସନାର କାମନା କରି ପଥର ଗୁହା ବା ଗୁମ୍ଫାରେ ବିଶାଳ ବୃକ୍ଷର କାଠ ଗଣ୍ଡିକୁ ମସୃଣ ଓ ଚିକ୍କଣ କରି ରଖି ଜୀବନର ସର୍ବ ମଙ୍ଗଳକାରକ ଜଗତର ନାଥ ଦାରୁ ଦେବତାଙ୍କୁ ପ୍ରକୃତିର ବାଧା ବିଘ୍ନର ଅନ୍ତରାଳରେ ନାନାବିଧ ପୂଜା ଉପକରଣରେ ପୂଜାକରି ଆସୁଥିଲା ଶବର । ପୁରାଣ ବର୍ଣ୍ଣିତ ବିଶ୍ୱାବସୁ ଶବରର ଦାରୁ ପୂଜା ଉପରୋକ୍ତ ମନ୍ତବ୍ୟର ଜ୍ୱଳନ୍ତ ଉଦାହରଣ ।

ପ୍ରାଚୀନ କବିମାନେ ଜଗନ୍ନାଥଙ୍କୁ ଦାରୁବ୍ରହ୍ମ, ନୀଳାଚଳବାସୀ, ନୀଳଗିରି ବାସୀ ବୋଲି ତାହାଙ୍କ

ରଚିତ ଜଣାଣ ତଥା ଭଜନ ସମୂହରେ ବର୍ଣ୍ଣନା କରି ଅଛନ୍ତି । ଉଦାହରଣ ସ୍ୱରୂପ "ଭଜମନ ଜଗନ୍ନାଥଙ୍କୁ, ନୀଳାଚଳବାସୀ ଦାରୁବ୍ରହ୍ମଙ୍କୁ ।"

"ଜୟ ଜୟ ଜଗନ୍ନାଥ କମଳାର ବର, ନୀଳଗିରି କନ୍ଦରେ ସର୍ବଦା ବାସ ଯାର ।" ଗିରି କନ୍ଦର ନିବାସୀ ଅରଣ୍ୟର ନାଗରିକ, ଶବର ବ୍ୟତୀତ ଅନ୍ୟ କାହାରିକୁ ବୁଝାଯାଏ ନାହିଁ । ଗିରିର ଅର୍ଥ ପର୍ବତ । ନୀଳ ନାମକ ଶବର ଜାତିର ଲୋକମାନେ ଯେଉଁ ଗିରି ବା ପର୍ବତରେ ବାସ କରୁଥିଲେ, ତାଙ୍କର ଜାତିର ନାମ ଅନୁସାରେ ଉକ୍ତ ଗିରି ବା ପର୍ବତର ନାମ ବୋଧହୁଏ ନୀଳଗିରି ରଖା ଯାଇଥିଲା । ଉକ୍ତ ନୀଳଗିରିର ପଥର ଗୁହାରେ ବା ଗୁମ୍ଫାରେ ସର୍ବଦା ବାସକରି ରହୁଥିଲେ ଦାରୁବ୍ରହ୍ମ ଜଗନ୍ନାଥ ।

ପୁରାଣ ବର୍ଣ୍ଣିତ "ନୀଳଗିରି"ର ଅବସ୍ଥିତି ସମ୍ପର୍କରେ ବିଭିନ୍ନ ଗବେଷକ, ସାହିତ୍ୟିକ, ଐତି-ହାସିକ, ଲେଖକ ତଥା ପ୍ରତ୍ନତାତ୍ତ୍ୱିକ ବିଭିନ୍ନ ମତ ପ୍ରଦାନ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ମତ ଯେ ସମ୍ପ୍ରତି ଯେଉଁଠାରେ ପୁରୀ ଜଗନ୍ନାଥ ମନ୍ଦିର ଅବସ୍ଥିତ ଉକ୍ତ ସ୍ଥାନରେ "ନୀଳଗିରି" ବିଦ୍ୟମାନ ଥିଲା । ପ୍ରାଚୀନ କାଳରେ ନୀଳ ଶବରମାନେ ନିଜର ଇଷ୍ଟଦେବ "ଦାରୁ ଦେବତାଙ୍କୁ" ତହିଁସ୍ଥ "ନୀଳଗିରି" ଗୁମ୍ଫାରେ ସ୍ଥାପନ କରି ପୁରୁଷାନୁକ୍ରମେ ପୂଜାକରି ଆସୁଥିଲେ । କିନ୍ତୁ କାଳର କୁଟିଳ ଗତିରେ ପରବର୍ତ୍ତୀ କାଳରେ ଶବରେତର ଜାତିର ରଜା-ମହାରଜାମାନେ, ବ୍ରାହ୍ମଣମାନଙ୍କର ପ୍ରରୋଚନାରେ ନୀଳଶବର ବା ଶବରମାନଙ୍କୁ ଆକ୍ରମଣ କରି ସେମାନଙ୍କର ରଜ୍ୟ, ବସତି ତଥା ଇଷ୍ଟ ଦେବତା "ଦାରୁଙ୍କୁ" ଅଧିକାର କରିନେଇ କାଳକ୍ରମେ ତାହାଙ୍କୁ ନିଜର ନିଜସ୍ୱରେ ପରିଣତ କରିଥିଲେ ।

"ଦାରୁ" ସହିତ "ବ୍ରହ୍ମ"ର ସଂଯୋଗ ଫଳରେ "ଦାରୁବ୍ରହ୍ମ" ଶବ୍ଦର ଉତ୍ପତ୍ତି । କିନ୍ତୁ କୌଣସି ଭାରତୀୟ ଦର୍ଶନ ଶାସ୍ତ୍ରରେ ଦାରୁବ୍ରହ୍ମ ଶବ୍ଦର ଉଲ୍ଲେଖ ନାହିଁ । ଉଦାହରଣ ସ୍ୱରୂପ ଭାରତୀୟ ଦର୍ଶନ "କେନୋପନିଷଦରେ" ବ୍ରହ୍ମଙ୍କୁ ନିମ୍ନୋକ୍ତ ମତେ ବର୍ଣ୍ଣନା କରାଯାଇଅଛି ଯଥା :—

"ଯଦ୍ୱାଚ୍ୟନ ଭ୍ୟୁଦିତଂ, ଯେ ନ ବାଗଭ୍ୟୁଦ୍ୟତେ
ତଦେବ ବ୍ରହ୍ମତ୍ୱଂ ବିଦ୍ଧି ଯଦିଦ ମୁପାସତେ ।"
( ୧-୫ )

ଭାଷାରେ ଯାହାକୁ କୁହାଯାଇ ପାରିବ ନାହିଁ କିନ୍ତୁ ଯାହାର ଶକ୍ତିଦ୍ୱାରା ଭାଷାର ପରିପ୍ରକାଶ ସାଧିତ ହୋଇପରେ, ସିଏ କି ପ୍ରମାଣାତୀତ ଅଥଚ ଅସୀମ, ବିରାଟ ଏବଂ ସୃଷ୍ଟିର ମୂଳକାରଣ ସର୍ବୋପରି ସିଏ କି ସୃଷ୍ଟିର ଜ୍ୟୋତି-ପ୍ରକାଶର ପ୍ରଧାନ ଦ୍ୟୋତକ ଓ ନିର୍ଦ୍ଦେଶକ, ତାହାଙ୍କୁ ହିଁ ବ୍ରହ୍ମ ନାମରେ ଅଭିହିତ କରାଯାଏ ।

ବିଭିନ୍ନ ଭାରତୀୟ ଦର୍ଶନ ଶାସ୍ତ୍ର ପ୍ରଣେତାମାନେ ବ୍ରହ୍ମଙ୍କୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରି ଅଛନ୍ତି— ଯଥା:—୧-ସଗୁଣ ବ୍ରହ୍ମ ୨-ନିର୍ଗୁଣ ବ୍ରହ୍ମ । କିନ୍ତୁ କୌଣସି ବୈଦିକ ପ୍ରାଚୀନ ଦର୍ଶନ ଶାସ୍ତ୍ରରେ "ଦାରୁ ବ୍ରହ୍ମ" ଶବ୍ଦର ଉଲ୍ଲେଖ ଥିବା ପରିଲକ୍ଷିତ ହୁଏନାହିଁ । ଉପରୋକ୍ତ କାରଣରୁ ବା ସୂଚନାରୁ ଅନୁମିତ ହୁଏ ଯେ ବୈଦିକ ଯୁଗପରେ ଏ ଦେଶର ବିଶେଷକରି ପୂର୍ବସାଗର ଉପକୂଳବର୍ତ୍ତୀ ଶବରମାନଙ୍କ ଦ୍ୱାରା

"ଦାରୁ" ପୂଜା ଆରମ୍ଭ ହୋଇଥିବା ଯୋଗୁଁ ପ୍ରାଚୀନ ଭାରତୀୟ ଦର୍ଶନ ଶାସ୍ତ୍ର ବେଦରେ "ଦାରୁ-ବ୍ରହ୍ମ"ର ବର୍ଣ୍ଣନା ସ୍ଥାନ ପାଇପାରି ନ ଥିବା ସ୍ୱାଭାବିକ । ତଥାପି ନିତ୍ୟ ନୂତନତାର ଗ୍ରାହକ ବିଜ୍ଞ; ଚତୁର—ବ୍ରାହ୍ମଣ ସମାଜ "ଦାରୁ" ଦାରୁ ସହିତ "ବ୍ରହ୍ମ"ର ସଂଯୋଗ କରି "ଦାରୁବ୍ରହ୍ମ" ଶବ୍ଦ ସୃଷ୍ଟିକରି ଅଛନ୍ତି ଏବଂ ଏହି ନାମକରଣ ଶବର ଓ ବ୍ରହ୍ମ ସଂସ୍କୃତିର ମିଳନ ବା ମିଶ୍ରଣରୁ ସୃଷ୍ଟି ବୋଲି

ବିଜ୍ଞ ସୁଧୀବୃନ୍ଦଙ୍କ ଦ୍ୱାରା ସ୍ୱୀକୃତ । ତେଣୁ ଉପରୋକ୍ତ ବିଷୟରୁ ସ୍ପଷ୍ଟ ଅନୁମିତ ହୁଏ ଯେ ପରବର୍ତ୍ତୀ କାଳରେ ଶବର ସମାଜର ଉପାସ୍ୟ ଦେବତା "ବୃକ୍ଷ ବା ଦାରୁ-ଦେବତା"ଙ୍କୁ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ହେଉ କିମ୍ବା ଦେବତା ଜ୍ଞାନରୁ ହେଉ ଶବରେତର ଜାତିମାନେ ବିଶେଷତଃ ବ୍ରାହ୍ମଣ ଓ କ୍ଷତ୍ରିୟମାନେ କଳେବଳେ କୌଶଳରେ ଅଧିକାର କରିନେଇ ଆଧୁନିକ ପ୍ରସିଦ୍ଧ ତୀର୍ଥକ୍ଷେତ୍ର ପୁରୀ ଧାମରେ ଜଗତର ନାଥ—ଜଗନ୍ନାଥ ନାମରେ ପ୍ରତିଷ୍ଠିତ କରାଇ ନାନାବିଧ ପୂଜାବିଧି ବିଧାନର ବ୍ୟବସ୍ଥା କରାଇଥିଲେ । ପରବର୍ତ୍ତି କାଳରେ ଜଗନ୍ନାଥ ଦାରୁବ୍ରହ୍ମ ତଥା ଜଗନ୍ନାଥ କ୍ଷେତ୍ରର ମହାତ୍ମ୍ୟ ବିଭିନ୍ନ ପୁରାଣ ମାଧ୍ୟମରେ ଏକାଧିକ କବି, ଭକ୍ତ ସଂସ୍କାରକ, ଧର୍ମ ପ୍ରଚାରକ ତଥା ରାଜା-ମହାରାଜାମାନଙ୍କଦ୍ୱାରା ସମଗ୍ର ଭାରତ ବର୍ଷରେ ସଂପ୍ରଚାରିତ ତଥା ସଂପ୍ରସାରିତ ହୋଇଥିଲା ।

ଭାତ ହାଣ୍ଡିରୁ ଗୋଟିଏ ଚିପିଲାପରି ଏ ଦେଶର ପୌରାଣିକ କିମ୍ବଦନ୍ତୀରୁ ଗୋଟିକର ବିଶ୍ଳେଷଣ କଲେ ଦାରୁବ୍ରହ୍ମ ଜଗନ୍ନାଥ ଶବରର ଇଷ୍ଟ ଦେବତା ବୋଲି ସ୍ପଷ୍ଟଭାବେ ଜଣାଯାଏ । ଅବଶ୍ୟ ବହୁ ଗବେଷକ ଆପ୍ରାଣ ସାଧ୍ୟ ଚେଷ୍ଟାକରି ଏ ବିଷୟରେ ଏକାଧିକ ପୌରାଣିକ, ଐତିହାସିକ, ପୌରାଣିକ ତଥା ସାମାଜିକ ତଥ୍ୟ ସମୂହ ପ୍ରମାଣ ସ୍ୱରୂପ ଉଲ୍ଲେଖ କରି ଯାଇ ଅଛନ୍ତି ।

"ଥିଲା ଶବରଣୀ ହସ୍ତେ ମାଣିକ
ତାହା ଚହ୍ନି ଘେନି ଗଲା ଗୁଣିକ ।"

ପ୍ରାଚୀନ ଓଡ଼ିଆ କବି ଦନେଇ ଦାସ ତାହାଙ୍କ ରଚିତ "ଗୋପୀଭାଷା" ନାମକ ପୁସ୍ତିକାରେ ଉପରୋକ୍ତ ବିଷୟର ଉଲ୍ଲେଖ କରି ଅଛନ୍ତି । ଏହାର ବିଶ୍ଳେଷଣ କଲେ ଜଣାଯାଏ ଯେ ଶବରଣୀ ଶବରୀ ବୃନ୍ଦ କିମ୍ବା ବିଶ୍ୱାବସୁ ଶବରଙ୍କ କନ୍ୟା ଲଳିତା—ଅଥବା ଶବରୀ ସନ୍ତାନ—ଶବର ସମାଜ । ମାଣିକ—ଦାରୁବ୍ରହ୍ମ ଜଗନ୍ନାଥ ।

ଗୁଣିକ = ବିଜ୍ଞ ଚତୁର ବ୍ରାହ୍ମଣ ବିଦ୍ୟାପତି 'ବା' ବ୍ରାହ୍ମଣ ସମାଜ । ସାଧାରଣ ଭାବରେ ଆଲୋଚନା କଲେ ଜଣାଯାଏ ଯେ ବହୁ ପ୍ରାଚୀନ କାଳରୁ ଭାରତ ଭୂଖଣ୍ଡରେ ବ୍ରାହ୍ମଣମାନେ ଗୁଣୀ, ପଣ୍ଡିତ, କବି ସଂସ୍କାରକ, ଧର୍ମଯାଜକ, ଶିକ୍ଷକ, ଶାସକ ତଥା ହିନ୍ଦୁ ଧର୍ମର ସଂସ୍ଥାପକ ଭାବରେ ସକଳ ପ୍ରକାର ଗୁଣର ଅଧିକାରୀ ହୋଇ ବର୍ତ୍ତମାନ ସୁଦ୍ଧା ସମାଜରେ ଚଳି ଆସୁ ଅଛନ୍ତି । ତେଣୁ ପ୍ରାଚୀନ କବି ଦନେଇ ଦାସ ବିଜ୍ଞ ବ୍ରାହ୍ମଣ ସମାଜକୁ ଯେ ଗୁଣିକ ନାମରେ ସ୍ୱରଚିତ "ଗୋପୀଭାଷା" ପୁସ୍ତିକାରେ ବର୍ଣ୍ଣନା କରି ଅଛନ୍ତି, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଅବଶ୍ୟ "ଗୋପୀଭାଷା"ର ଆଭ୍ୟନ୍ତରଣ ବ୍ୟାଖାନ ଭିନ୍ନ ପ୍ରକାରର । କିନ୍ତୁ କିମ୍ବଦନ୍ତୀ ଦୃଷ୍ଟିରୁ ସେଇଥିରୁ ଉଦ୍ଧୃତ ବିଷୟଟି ନିରାଟ ସତ୍ୟ ଓ ବାସ୍ତବ ।

ରଥଯାତ୍ରା ସମ୍ବନ୍ଧରେ ଶବରମାନଙ୍କର ପ୍ରାଚୀନ ସାଂସ୍କୃତିକ ପ୍ରଥା ଅଦ୍ୟାବଧି ଓଡ଼ିଶାର ପୁର-ପଲ୍ଲୀରେ ଜୀବନ୍ତାବସ୍ଥାରେ ପ୍ରଭାବ ବିସ୍ତାର କରି ଆସୁ-ଅଛି । ବସନ୍ତ ଋତୁର ଆଗମନରେ ପ୍ରକୃତି ଯେତେବେଳେ ନୂତନ ପଲ୍ଲବ, ପୁଷ୍ପ ଓ ଫଳ ରାଜିରେ ବିଭୂଷିତା ହୋଇ ଅଭିନବ-ମନୋହାରିଣୀ ସୌନ୍ଦର୍ଯ୍ୟର ଅଧିକାରିଣୀ ହୁଏ, ସେତେବେଳେ ଶବର ଜାତିର ଲୋକେ କ୍ଷୁଦ୍ର ରଥ ତିଆରି କରି ସେଥିରେ ନାନାବିଧ ପୂଜା ଉପକରଣ ରଖି ପଲ୍ଲୀ ଉପକଣ୍ଠରେ ପ୍ରତିଷ୍ଠିତ ସେମାନଙ୍କର ଆରାଧ୍ୟ ଦେବତାଙ୍କ ନିକଟକୁ ପୂଜା ଉଦ୍ଦେଶ୍ୟରେ ଆନନ୍ଦ କୋଳାହଳର ସହିତ ବାଦ୍ୟଧ୍ୱନି କରି ଯାଇଥାନ୍ତି । ଉକ୍ତ ଶବର ଦେବତାଙ୍କର ମନ୍ଦିର ନ ଥାଏ । ବିଭିନ୍ନ ବୃକ୍ଷ ସମାକୀର୍ଣ୍ଣ ଶୀତଳ ଛାୟାଯୁକ୍ତ ସ୍ଥାନରେ କାଠ ଖିଲକ ରୂପ ଧାରଣ କରି ସିନ୍ଦୂର, ହରିଦ୍ରା ଏବଂ ଚନ୍ଦନ ଚର୍ଚ୍ଚିତ ନଗ୍ନ ରୂପରେ ଦେବତା ବିଦ୍ୟମାନ ଥାଆନ୍ତି । ଶବରମାନଙ୍କର ବାସନ୍ତୀ ଉତ୍ସବ ଏବଂ

ଦେବତାରାଧନା ଦେଖି ମନରେ ସ୍ୱତଃ ପ୍ରବୃତ୍ତି ଭାବରେ ଏହି ପ୍ରଶ୍ନ ଜାଗିଉଠେ - ପାଷାଣର ବା କୌଣସି ଧାତୁର ପ୍ରତିମୂର୍ତ୍ତି ପରିବର୍ତ୍ତେ ଶବରମାନେ ଦାରୁ ବା କାଠ ଖଣ୍ଡକ ସମ୍ମୁଖକୁ ପୂଜା କରିବାର ଉଦ୍ଦେଶ୍ୟ କ'ଣ ଏବଂ ବସନ୍ତ ଋତୁର ଆଗମନରେ କ୍ଷୁଦ୍ର କ୍ଷୁଦ୍ର ରଥରେ ବିବିଧ ପୂଜାର ଉପକରଣ ଆଡ଼ମ୍ବର ସହକାରେ ବାଦ୍ୟଧ୍ୱନି ସହ ଦେବତାଙ୍କ ନିକଟକୁ ପରଂପରା କ୍ରମେ ନିଅନ୍ତି କାହିଁକି ? ଏହାର ଏତିକି ମାତ୍ର ଉତ୍ତର ହୋଇପାରେ ଯେ ବୃକ୍ଷ ବା ଦାରୁ ପୂଜାର ଏହା ଏକ ଜୀବନ୍ତ ନିଦର୍ଶନ ଏବଂ ରଥଯାତ୍ରାର ମଧ୍ୟ ଏହା ଏକ ଆଦିମକାଳୀନ ନମୁନା ଯାହାକି ପ୍ରାଣବନ୍ତ ଅବସ୍ଥାରେ ଶବର ପଲ୍ଲୀରେ ଅଦ୍ୟାବଧି ପ୍ରଚଳିତ । ଉପରୋକ୍ତ ଶବର ସଂପ୍ରଦାୟର ଭକ୍ତ ପୂଜା ଏତେ ବ୍ୟାପକ ଏବଂ ପ୍ରଭାବଶାଳୀ ଯେ ଉକ୍ତ ପ୍ରଥାକୁ ଶବରେତର ଜାତିମାନେ ମଧ୍ୟ ବହୁ ସ୍ଥାନରେ ବହୁଳାଂଶରେ ଅନୁକରଣ କରି ଆସୁଅଛନ୍ତି ଏବଂ ଶବର ଓ ଶବରେତର ଉଭୟେ ମିଳିତ ଭାବରେ ଭକ୍ତ ପୂଜା ଉତ୍ସବକୁ ନିୟମିତ ପାଳନ କରନ୍ତି । ଓଡ଼ିଶାର ଶବର ଅଧ୍ୟୁଷିତ ଅଞ୍ଚଳରେ ଏହାର ପ୍ରତ୍ୟକ୍ଷ ପ୍ରମାଣ ଦେଖିବାକୁ ମିଳେ । ଏଣୁ ଦାରୁବ୍ରହ୍ମ ପୂଜା ରଥଯାତ୍ରାର ସୃଷ୍ଟି ଶବର ସଂସ୍କୃତିର ଯେ ଏକ ରୂପାନ୍ତର ଏଥିରେ ସନ୍ଦେହର ତିଳେମାତ୍ର ଅବକାଶ ନାହିଁ ।

ଅତ୍ୟନ୍ତ ଗୌରବ ଏବଂ ଆନନ୍ଦର ବିଷୟ ଯେ ଶବରର ଇଷ୍ଟଦେବ ଭାବରେ କେବଳ ଶବର ସମାଜଦ୍ୱାରା ପୂଜିତ ନ ହୋଇ ଦାରୁବ୍ରହ୍ମ ଜଗନ୍ନାଥ ଆଜି ସମଗ୍ର ବିଶ୍ୱ ଜଗତର ପରମାରାଧ୍ୟ କୈବଲ୍ୟ ଦାୟକ ଦେବତାର ବିଗ୍ରହ ଓ ବିଶ୍ୱ ବିଶ୍ରୁତ । ଏହାଠାରୁ ବଳି ଅଧିକତର ଆନନ୍ଦ ଏବଂ ଗୌରବର ବିଷୟ ଆଉ କ'ଣ ଥାଇପାରେ ?

—*—

# ॥ ବ୍ୟାସଦେବ ଓ ଭାରତୀୟ ସଂସ୍କୃତି ॥

ଡକ୍ଟର ମାୟାଧର ମାନସିଂହ

ଲକ୍ଷ ଲକ୍ଷ ହିନ୍ଦୁ, ଯେଉଁମାନେ ପ୍ରତ୍ୟହ ନିଷ୍ଠାର ସହିତ ଶ୍ରୀମଦ୍‌ଭଗବତ ଗୀତା ପାରାୟଣ କରନ୍ତି, ସେମାନେ ପ୍ରଥମେ ଗୀତାଧ୍ୟାନ କରି ସାରିଲା ପରେ ଯାଇ ଗୀତା ଗ୍ରନ୍ଥଟି ଫିଟାଇଥାନ୍ତି । ସେହି ଗୀତା-ଧ୍ୟାନରେ ପ୍ରଥମ ନମସ୍କାର ହେଉଛି ବ୍ୟାସଙ୍କ ପ୍ରତି, ଶ୍ରୀକୃଷ୍ଣଙ୍କ ପ୍ରତି ନୁହେଁ ।

"ନମୋଽସ୍ତୁତେ ବ୍ୟାସ, ବିଶାଳବୁଦ୍ଧେ" ( ହେ ବିଶାଳବୁଦ୍ଧି ବ୍ୟାସଦେବ, ତୁମ୍ଭଙ୍କୁ ମୋର ନମସ୍କାର । )

କାରଣ ?

"ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟ ପ୍ରଦୀପଃ

(ଯେହେତୁ ତୁମେ ଭାରତ ଯୁଦ୍ଧ ରୂପକ କାହାଣୀର ତୈଳ ଦେଇ, ଗୀତା ରୂପକ ଏକ ଜ୍ଞାନମୟ ପ୍ରଦୀପ ଜାଳିଦେଇ ଯାଇଛ, ସମଗ୍ର ବିଶ୍ୱପାଇଁ । )

ଏହି ଧ୍ୟାନର ଆଦ୍ୟ ଶ୍ଲୋକରେ ହିଁ ଭଗବଦ୍‌-ଗୀତାର ସଂକଳନ ନେଇ ଏହିପରି କୁହାଯାଇଛି ।

"ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତଂ" ( ମହାଭାରତ ରୂପକ ରତ୍ନମାଳା ଭିତରେ ବ୍ୟାସଙ୍କ ଦ୍ୱାରା କୌଶଳରେ ଗୁନ୍ଥା ହୋଇ-ଥିବା ଗୀତାକୁ )

କିଏ ଏହି ବ୍ୟାସ ?

ଭାରତୀୟ ଚେତନାରେ ବ୍ୟାସଦେବ ଏକ ସର୍ବମୟ ବିରାଟ ପୁରୁଷ । ସେ କ'ଣ କରିଛନ୍ତି ପଚାରିବା ଅପେକ୍ଷା ବରଂ ପଚାରିବା ଉଚିତ, ସେ କଣ କରିଯାଇ ନାହାନ୍ତି, ଭାରତର ଧର୍ମ ଓ ସଂସ୍କୃତି ପାଇଁ ।

ବସ୍ତୁତଃ, ଆଜି ହିନ୍ଦୁ ସଂସ୍କୃତି ବୋଇଲେ ଯାହା ବୁଝାଯାଏ, ତାହା ଶ୍ରୀରାମ ବା ଶ୍ରୀକୃଷ୍ଣଙ୍କର କୃତିତ୍ୱ ସେତେ ନୁହେଁ, ଯେତେ ବ୍ୟାସଙ୍କର ।

ହୁଏତ ସହସ୍ରାଧିକ ବର୍ଷ ଧରି ଆର୍ଯ୍ୟମାନେ ଦଳ ଦଳ ହୋଇ ଏ ଦେଶକୁ ଆସିଥିଲେ । ନୂତନ ଦଳ ଓ ପୁରାତନ ଦଳ ଭିତରେ ସଂଘର୍ଷ ଲାଗି ରହିଥିଲା । ଋଗ୍‌ବେଦର ଦଶରାଜାର ଯୁଦ୍ଧ, ସୂଚନା କରେ ଏହି ଗୋଷ୍ଠୀ-ସଂଗ୍ରାମ । ଏହାର ପରବର୍ତ୍ତୀ ପୁଷ୍କଳ ରୂପ ହିଁ କୁରୁପାଣ୍ଡବ ଯୁଦ୍ଧ ବା ମହାଭାରତ ମହାକାବ୍ୟ ।

କ୍ରମାଗତ ଦଳ ଦଳ ହୋଇ ଆସିବା, ଉପନିବେଶ ପାଇଁ ସଂଘର୍ଷ ଏବଂ ଉପନିବେଶମାନଙ୍କର କ୍ରମବିସ୍ତାର ଫଳରେ ଆର୍ଯ୍ୟମାନେ କ୍ରମେ ପରସ୍ପରଠାରୁ ଛିନ୍ନ ବିଚ୍ଛିନ୍ନ ହୋଇଗଲେ । ଅନାର୍ଯ୍ୟ ଜନତା ସହିତ ବସବାସ ଓ ବିବାହ ଫଳରେ, ସେହି ଭିନ୍ନ ଭିନ୍ନ ଆର୍ଯ୍ୟ-କେନ୍ଦ୍ରମାନଙ୍କରେ ବିଶୁଦ୍ଧ ଆର୍ଯ୍ୟ ସଂସ୍କୃତି ଲୋପ ପାଇବାକୁ ବସିଲା । ଫଳରେ ଆର୍ଯ୍ୟମାନେ

ପ୍ରାପ୍ତ ସମଗ୍ର ଉତ୍ତର ଭାରତ ଅଧିକାର କରି ବସିଲେହେଁ, ଏବର ଦିଲ୍ଲୀ ଆଖପାଖ ଏକ ଏକ ସଂକୀର୍ଣ୍ଣ ଅଞ୍ଚଳକୁ ହିଁ ବ୍ରହ୍ମାବର୍ତ୍ତ ବା ଆର୍ଯ୍ୟାବର୍ତ୍ତ କୁହାଗଲା । ଏମାନଙ୍କର ବାହାରେ ଥିବା ଆର୍ଯ୍ୟମାନେ ବ୍ରାତ୍ୟ ବା ଭ୍ରଷ୍ଟାଚାର ବିବେଚିତ ହେଲେ । କାରଣ, ସେ ଅଞ୍ଚଳମାନଙ୍କରେ ବିଶୁଦ୍ଧ ବୈଦିକ ସଂସ୍କୃତିକୁ ଠିଆ ରଖେଇବା ପାଇଁ ବିଶେଷଜ୍ଞଃ ବ୍ରାହ୍ମଣ ଯଥୋଚିତ ସଂଖ୍ୟାରେ ନ ଥିଲେ । ଏହା ଫଳରେ ଶତ ଶତ ସୂକ୍ତ-ସମ୍ବଳିତ ବେଦ, ଲୋକଙ୍କ ଆଖିରେ ଏକ ଆବୁରୁ-ଜାବୁରୁ ସ୍ତୋତ୍ର—ସଂକଳନ ମାତ୍ର ହୋଇ ପଡ଼ିଲା । କେଉଁ ଅବସ୍ଥାରେ, କେଉଁ ସୂକ୍ତକୁ କିପରି ବିଶୁଦ୍ଧ ଉଚ୍ଚାରଣ ବା ଧ୍ୱନି ଦେଇ ବୋଲିବ, ଅଧିକାଂଶଙ୍କୁ ତାହା କ୍ରମେ ଅଜଣା ହୋଇ ଆସିଲା । ସମଗ୍ର ଭାରତରେ ଏକ ସାଂସ୍କୃତିକ ଅନ୍ଧକାର ରଜନୀ ମାଡ଼ି ଆସିଲା କହିଲେ ଚଳେ । ଭାରତୀୟ ସଂସ୍କୃତିର ଏହି ପ୍ରଥମ ବିଷମ ସଂକଟବେଳେ ଏ ମାଟି ଏକ ପୁଅ ଜନ୍ମ କଲା, ଯେ ସେହି ଅଜ୍ଞାନତମକୁ ସଂପୂର୍ଣ୍ଣ ବିତାଡ଼ିତ କରି ଏପରି ପ୍ରଜ୍ଞାର ପ୍ରଦୀପ ସବୁ ଜାଳିଦେଲେ ଯାହାକି ଏହି ସହସ୍ର ସହସ୍ର ବର୍ଷ ଧରି, ଏହି ବିରାଟ ଉପମହାଦେଶକୁ ପ୍ରକୃତରେ ଏପର୍ଯ୍ୟନ୍ତ ଆଲୋକିତ କରିରଖିଛନ୍ତି ।

ଭାରତମାତାର ଏହି ଶ୍ରେଷ୍ଠ ସନ୍ତାନ ହେଉଛନ୍ତି ସେହି ବିଶାଳବୁଦ୍ଧି ବ୍ୟାସ, ଯାହାଙ୍କୁ କି ଗୀତା ପାରାୟଣ ପୂର୍ବରୁ ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନମସ୍କାର କରିବା ପୂର୍ବରୁ, ଲକ୍ଷ ଲକ୍ଷ ହିନ୍ଦୁ ଆଜି ବି ସଭକ୍ତିରେ ପ୍ରଥମ ନମସ୍କାର ଜଣାଇଥାନ୍ତି । କାରଣ, ସେମାନେ ଯେଉଁ ହିନ୍ଦୁ ସଂସ୍କୃତିର ଉତ୍ତରାଧିକାରୀ ରୂପେ ଗୌରବ ଅନୁଭବ କରୁଛନ୍ତି ତାହା ସେହି ବ୍ୟାସଙ୍କର ହିଁ ଦାନ ।

ସେତେବେଳକୁ ଏ ଦେଶରେ ଏବର ଜାତି-ପ୍ରଥା ନ ଥିଲା କହିଲେ ଚଳେ । ଆର୍ଯ୍ୟ ଓ ଅନାର୍ଯ୍ୟମାନେ ଅବାଧରେ ମିଶୁଥିଲେ । ସେମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ମଧ୍ୟ ହେଉଥିଲା । ଯମୁନାକୂଳସ୍ଥ ଏକ କୈବର୍ତ୍ତ ରାଜାଙ୍କର, ଅନାର୍ଯ୍ୟ ହେଲେହେଁ, ସତ୍ୟବତୀ ନାମରେ ଏକ ପରମ ରୂପବତୀ କନ୍ୟା ଥିଲା । ଯମୁନାର ଏକ ଦ୍ୱୀପରେ ତରୁଣ ବ୍ରାହ୍ମଣ ପରାଶର ଅଧ୍ୟୟନ ଓ ତପୋରତ ଥିଲେ । ସେହି ଦ୍ୱୀପରେ ପରାଶର ଓ ସତ୍ୟବତୀ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ସେ ଦୁହିଁଙ୍କର ସନ୍ତାନ ହେଲେ ବ୍ୟାସ । ଦ୍ୱୀପରେ ଜାତ ହେବାରୁ ତାଙ୍କୁ ଥଟ୍ଟାରେ କୁହାଗଲା ଦ୍ୱୈପାୟନ । ପୁଣି ତମଡ଼ାଠା ହୁଏତ ଅଜାଡ଼ର ଉଳ ଅଣି,—କୃଷ୍ଣାଭ ଦେଖା ଯିବାରୁ, ତାଙ୍କୁ ଅଧିକା କୁହାଗଲା, କୃଷ୍ଣ ଦ୍ୱୈପାୟନ । ଏଇ ହେଉଛି ତାଙ୍କର ପ୍ରକୃତ ନାମ ।

ପ୍ରାଜ୍ଞ ପିତା ପରାଶର, ବାଲ୍ୟ ବୟସରୁ ହିଁ ସନ୍ତାନର ବ୍ରହ୍ମୋଜ୍ଜ୍ୱଳ ବୁଦ୍ଧିମତ୍ତା ଦେଖିପାରି, ସତ୍ୟବତୀଙ୍କୁ ଗୃହିଣୀର ବନ୍ଧନରୁ ମୁକ୍ତ କରିଦେଲେ ଏବଂ କିଶୋର କୃଷ୍ଣ ଦ୍ୱୈପାୟନଙ୍କୁ ନେଇ ଚାଲିଗଲେ ନିମ୍ନ ହିମାଳୟର ଶାନ୍ତିମୟ ବଦରିକାଶ୍ରମକୁ । ସେହିଠାରେ ଦ୍ୱୈପାୟନ ଜ୍ଞାନୀ ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ, କେବଳ ବେଦ-ବିଦ୍ ନୁହେଁ, ସର୍ବଶାସ୍ତ୍ରବିଦ୍ ହୋଇ ଉଠିଲେ । ସେସବୁ ଅଧ୍ୟୟନ କଲାପରେ ଦ୍ୱୈପାୟନଙ୍କର ମନେହେଲା ଯେ, ସେ-ପର୍ଯ୍ୟନ୍ତ ଜଣାଥିବା ଭାରତୀୟ ଜ୍ଞାନ ଯେପରି କି ସବୁ ଆବୁରୁଜାବୁରୁ ହୋଇ ରହିଛି । ସେ ସବୁର ଶ୍ରେଣୀ ଶୃଙ୍ଖଳା ନାହିଁ । ସେ ମନେକଲେ ଯେ ଲୋକଙ୍କର ବେଦ ପ୍ରତି ବା ବୈଦିକ ସଂସ୍କୃତି ପ୍ରତି ଆଗ୍ରହ କମି ଯାଉଥିବାର ମୁଖ୍ୟ କାରଣ ଏହି ଯେ, ବେଦ ବୋଲି ଯାହା କୁହା ଯାଉଥିଲା ସେ ସମସ୍ତ ଭିତରେ କ୍ରମ-ବିଭାଗ ବା ଶ୍ରେଣୀ-ବିଭାଗ ବୋଲି କିଛି ନ ଥିଲା । ଗ୍ରାହକ କେଉଁଠୁ ଆରମ୍ଭ କରିବ, କେଉଁଠୁ ଶେଷ କରିବ, କିଏ ମୁଖ୍ୟ, କିଏ ଗୌଣ, କିଏ ପଠନୀୟ, କିଏ ଗେୟ, କିଛି ଜାଣି ପାରୁ ନ ଥିଲେ । ଭୁଲ-ଭାଲ ନ ଜାଣି, ଯିଏ ଯେଉଁଠୁ ପୁଳାଏ ମୁଖସ୍ଥ

କରି ବାନ୍ତକରି ପକାଉଥିଲା, ସେ ବୋଲଉଥିଲା ବେଦବିତ୍ ।

ତରୁଣ ହେଲେହେଁ, ପ୍ରାଜ୍ଞ ଓ ଦୂରଦ୍ରଷ୍ଟା ଦ୍ୱୈପାୟନଙ୍କୁ ଭାରତୀୟ ଜ୍ଞାନର ଏହି ବିପର୍ଯ୍ୟୟ ବଡ଼ ବାଧିଲା । ସେ ଜ୍ଞାନୀ ପିତାଙ୍କର ପ୍ରେରଣା ଓ ପରାମର୍ଶ ନେଇ ପ୍ରଥମେ, ଭାରତୀୟ ଜ୍ଞାନ, ଜୀବନଦର୍ଶନ ଓ ସଂସ୍କୃତିର ମୂଳଭିତ୍ତି ବେଦକୁ ପ୍ରଥମ କରି କୌଳିକତା ଓ ଶ୍ରେଣୀବଦ୍ଧତା ଦେଇ ପାରିଲେ । ଯାହା ଗୋଟାଏ ଆବୁରୁ-ଜାବୁରୁ ଗଣ୍ଠି ହି ଥିଲା, ତରୁଣ ଦ୍ୱୈପାୟନ ହିଁ ତାକୁ ଋକ୍, ସାମ, ଯଜୁଃ, ଅଥର୍ବ ଏହିପରି ଚାରି ବିଭାଗରେ, ପୁଣି ପ୍ରତି ବିଭାଗର ସଂପୃକ୍ତ ଉପବିଭାଗ ରୂପେ, ଆରଣ୍ୟକ ଓ ବ୍ରାହ୍ମଣଗୁଡ଼ିକୁ ସଜାଇ ରଖିଲେ । ବେଦର ମୂଳ ସଂହିତା, ଆରଣ୍ୟକ ଓ ବ୍ରାହ୍ମଣ ମିଶିଲେ ସେ ସବୁ ମିଳେଇ ଏକ ବିରାଟ ସାହିତ୍ୟ । ଏ ସବୁକୁ ଏକା ଏକା ଶ୍ରେଣୀବଦ୍ଧ କରି ସଜାଡ଼ି ରଖିବା କମ୍ ବିଦ୍‌ବତ୍ତାର କାମ ନୁହେଁ । ମନେ ରଖିବାକୁ ହେବ ଯେ, ଦ୍ୱୈପାୟନଙ୍କ ପର୍ଯ୍ୟନ୍ତ ସମଗ୍ର ଏହି ସାହିତ୍ୟ ଅ-ଲିଖିତ ଥିଲା । ଅର୍ଥାତ୍, ତରୁଣ ଦ୍ୱୈପାୟନଙ୍କର ଏହି ସମଗ୍ର ସାହିତ୍ୟ ମୂଳରୁ ଶେଷ ଯାଏଁ ବିନ୍ଦୁ ବିସର୍ଗ ଧରି ସଂପୂର୍ଣ୍ଣ ମୁଖସ୍ଥ ଥିଲା । ତାଙ୍କୁ କ'ଣ ତେଣୁ ମିଛରେ ବିଶାଳବୁଦ୍ଧି ବୋଲି କୋଟି କୋଟି ହିନ୍ଦୁ ଏପର୍ଯ୍ୟନ୍ତ ନମସ୍କାର କରୁଛନ୍ତି ?

ବେଦକୁ ଭାଗ ଭାଗ କରି ଶ୍ରେଣୀବଦ୍ଧ ଓ ପରିବାର ଭୁକ୍ତ କରିବାରୁ ହିଁ, ସେହି ବୟସରେ ହିଁ, ସମଗ୍ର ଭାରତରେ ଦ୍ୱୈପାୟନଙ୍କୁ 'ବେଦବ୍ୟାସ' ବୋଲି ସମ୍ମାନିତ କରାଗଲା । ଲୋକମୁଖରେ ସେ କଥିତ ହେଲେ—ବ୍ୟାସଦେବ ।

ବ୍ୟାସଦେବଙ୍କର ଏକମାତ୍ର ପୁତ୍ର ଏବଂ ପିତାଙ୍କ ପରି ମହାପ୍ରାଜ୍ଞ ହେଲେ, ଶୁକଦେବ ।

ଶୁକ ବିବାହ କଲେନାହିଁ । ତେଣୁ ପ୍ରତ୍ୟକ୍ଷ ଭାବରେ ବ୍ୟାସ-ଶାଖା ଲୋପ ପାଇଲା ।

କିନ୍ତୁ ବ୍ୟାସ ଜନନୀ ସତ୍ୟବତୀ ପରେ କୌରବ-ରାଜ ଶାନ୍ତନୁଙ୍କୁ ବିବାହ କଲେ । ତାଙ୍କଆଡ଼ୁ ତାଙ୍କର ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇପୁଅ ଜନ୍ମ ହେଲେ । ଏମାନେ ବଡ଼ ହୀନସ୍ୱାସ୍ଥ୍ୟ ଥିଲେ । ଚିତ୍ରବୀର୍ଯ୍ୟ ରାଜା ନ ହେଉଣୁ ଯକ୍ଷ୍ମା ରୋଗରେ ମଲେ । ରାଜା ବିବାହ ହେଲାପରେ, ବିଚିତ୍ରବୀର୍ଯ୍ୟ ମଧ୍ୟ ଅମ୍ବିକା ଓ ଅମ୍ବାଳିକା ନାମକ ଦୁଇଟି ତରୁଣୀ ବିଧବା ରାଜ-କନ୍ୟା ଛାଡ଼ିଦେଇ ପରଲୋକକୁ ଗଲେ । ସତ୍ୟବତୀ ଦେଖିଲେ ଯେ, ବିଖ୍ୟାତ କୁରୁବଂଶ ବର୍ତ୍ତମାନ ନିର୍ବଂଶ ହେବାକୁ ଯାଉଛି । ସେ ବର୍ତ୍ତମାନ ତାଙ୍କର ପ୍ରଥମ ପୁତ୍ର ଦ୍ୱୈପାୟନଙ୍କୁ ପରାମର୍ଶ ପାଇଁ ଡକାଇଲେ । ସେତେବେଳକୁ ତରୁଣ ହେଲେହେଁ, ଜ୍ଞାନବନ୍ତ ଜନ-ଭାବରେ, ସତ୍ୟବତୀ-ପୁତ୍ର ଦ୍ୱୈପାୟନଙ୍କ ଯଶ ସର୍ବବ୍ୟାପୀ । ଦ୍ୱୈପାୟନ ଜନନୀଙ୍କ ଆଦେଶରେ ବଦରିକାଶ୍ରମର ଶାନ୍ତିମୟ ଜ୍ଞାନଚର୍ଚ୍ଚା ଛାଡ଼ି ହସ୍ତିନା-ପୁରର ଜନଗହଳି ଓ ରାଷ୍ଟ୍ରୀୟ ବ୍ୟାପାର ଭିତରକୁ ଆସିଲେ । ଜନନୀ ସତ୍ୟବତୀ ବରେଣ୍ୟ ପୁତ୍ରଙ୍କୁ ଅନୁରୋଧ କଲେ ଯେ, ସେ ବିଖ୍ୟାତ କୁରୁବଂଶକୁ ରକ୍ଷା କରନ୍ତୁ । ବେଦୋଜ୍ଜ୍ୱଳବୁଦ୍ଧି ଦ୍ୱୈପାୟନ ଜନନୀଙ୍କ ବାକ୍ୟକୁ ବିନମ୍ର ଭାବରେ ମାନିଯାଇ, ସେ କାଳର 'ନିୟୋଗ' ପ୍ରଥା ଅନୁସାରେ, ଗୌରବାବହ କୁରୁବଂଶ ରକ୍ଷାପାଇଁ ରାଜିହେଲେ । ଅମ୍ବିକା ଓ ଅମ୍ବାଳିକାଙ୍କ ଆଡ଼ୁ ପାଣ୍ଡୁ ଓ ଧୃତରାଷ୍ଟ୍ର ଜାତ-ହେଲେ । ସେ ଦୁହେଁ ପୁଣି ଜନ୍ମ ଦେଲେ ବିଖ୍ୟାତ କୌରବ ଓ ପାଣ୍ଡବ ଭାଇମାନଙ୍କୁ, ଯେଉଁମାନଙ୍କ ସଂଘର୍ଷ ନେଇ ହିଁ ବିରାଟ ହିନ୍ଦୁ ସଂସ୍କୃତି ଠିଆ ହୋଇଛି, ମହାଭାରତ ମହାକାବ୍ୟରେ ।

ତେଣୁ, ଲେଖାରେ ଦୁର୍ଯ୍ୟୋଧନାଦି କୌରବ ଓ ଯୁଧିଷ୍ଠିରାଦି ପାଣ୍ଡବମାନେ ହେଲେ, ବ୍ୟାସଦେବଙ୍କ ନାତି ।

କିନ୍ତୁ, ବ୍ୟାସଦେବ ମାତାଦେଶରେ କିଛିକାଳ ମାତ୍ର ହସ୍ତିନା ପୁରରେ କଟାଇ, ପୁଣି ଚାଲିଯାଇଥିଲେ

( ୬୫ ପୃଷ୍ଠା ଦେଖନ୍ତୁ । )

## ॥ ବନ୍ଧନ ॥

ଶକୁନ୍ତଳା ପଣ୍ଡା, ଭୁବନେଶ୍ୱର

ନିଶବ୍ଦରେ କବାଟ ଖୋଲି ଶୀତାଂଶୁ ଘର ଭିତରେ ପ୍ରବେଶ କଲା ।

ଘର ଭିତରେ ଅସମ୍ଭବ ରକମ ନୀରବତାର ରାଜତ୍ୱ, ସତେକି ଲୋକ ଚଳାଚଳ ଅନେକ ଦିନରୁ ନାହିଁ ! ସୋଫାସେଟ୍‌ର ଖୋଳ ଅନେକ ଦିନରୁ ଧୋବା ଘରକୁ ଯାଇନି । ମଇଳା, ତେଲର ଗୋଟିଏ ଆସ୍ତରଣରେ ଅନ୍ୟ ଏକ ରଙ୍ଗ ତା' ଉପରେ ଲାଗି ଯାଇଥିବା ମନେ ହେଉଛି । ଟିକ୍‌ଉଡ୍ ଟିପଏ, ର୍‍ୟାକ୍, ସବୁଥିରେ ଧୂଳିର ଏକ ମୋଟା ପ୍ରସ୍ଥ । ରେଡ଼ିଓ ଟେବୁଲ ପାଖ ଫୁଲଦାନୀରେ ଗୋଲାପ ଗୁଚ୍ଛଟି ଶୁଷ୍କ, ମଳିନ, ସତେ କି ସେ ମଧ୍ୟ ଦୁଃଖରେ ଭାଙ୍ଗି ପଡ଼ୁଛି !

ଶୀତାଂଶୁର ଏ ଦୃଶ୍ୟ ଅସହ୍ୟ ମନେହେଲା । ଯଥାଶୀଘ୍ର ଚାଲିଯିବାର ଉପକ୍ରମ କରୁ କରୁ କାହିଁକି କେଜାଣି ସେଇ ବଡ଼ ଫଟୋଟା ପାଖରେ ସେ ଅଟକି ଗଲା । କାନ୍ଥରେ ଥିବା ଫଟୋରେ ସେଇ ନାରୀ ମୂର୍ତ୍ତିଟି, ହସ ହସ ମୁହଁରେ ସତେକି ଆଶିଷ ଦେଉଛନ୍ତି । ମୁଣ୍ଡ ନୁଆଁଇଲା ଶୀତାଂଶୁ, ତା'ପରେ ଆଖିପୋଛି ଭିତରକୁ ଚାଲିଗଲା ସେ ।

ପ୍ରତିଥର ଏଇ ଘରେ ପାଦ ଦେଉ ଦେଉ ସେଇ ସ୍ନେହମୟୀର ଡାକ ତା' କାନରେ ବାଜେ ।

'ବାବା ଶୀତୁ, କେଡ଼େ ଶୁଖିଲାଟା ଦିଶୁଚ ଆଜି ।'

'ନାଇଁତ ମାଉସୀ, ପଢ଼ାପଢ଼ି ଯେମିତି ନାହିଁ !'

ତମେ ଆଜି ଏଇଠି ଶାଗଭାତ ଖାଇଯିବ । ମୁଁ କିଛି ଶୁଣିବି ନି । ସମ୍ମତି ଜଣାଇବା ଛଡ଼ା ଉପାୟ ପାଏନି ଶୀତାଂଶୁ ।

ଶାଗ ଭାତ ! ସେ ତ ଅମୃତ ରାନ୍ଧଣା, ଆଉ କାହିଁ ବା ମିଳିବ ? ନିଜ ହାତରେ ବାଡ଼ିରେ କରିଥାଆନ୍ତି ସେ ବିଭିନ୍ନ ରକମର ପରିବା । ତା' ଛଡ଼ା ଶାଗ ଏଇ ଯେ ଦେଖି ଆସିଲା ସେ, ସାମନା ଫୁଲବଗିଚାରେ ଗଛଗୁଡ଼ିକ ଶୁଖି ମରିଯିବାକୁ ବସିଲାଣି······ସତରେ ମାଉସୀଙ୍କ ପ୍ରତି ଏ ଅନ୍ୟାୟ ଅସହ୍ୟ, ଘରର ଏକମାତ୍ର କାମ କରିବା ଲୋକ ସେ, ସେ ତ ଚାଲିଗଲେ, ବାକି ଏଇ ଅନନ୍ତ······ରୋଷେଇ ଘର ପାଖରେ ବସି ଢୁଳେଇବାକୁ ଆରମ୍ଭ କରି ଦେଇଛି ।

ଶୀତାଂଶୁ ତାକୁ ହଲେଇ ଦେଇ ଉଠେଇ ଦେଲେ ।

"କ'ଣ ରୋଷେଇ ବନ୍ଦ ?"

"ହଁ ବାବୁ ତା' ନୁହେଁ କଣ ।" ସେ ବି ଆଖି ପୋଛୁଛି ।

କଳିକାର ପଢ଼ାଘରେ ମଧ୍ୟ ବେଦନାର ଗଭୀର ସ୍ପର୍ଶ । ଅବେଳରେ ଶୋଇଯାଇଛି କଳି । ପାଖରେ ବିସ୍ତୃତହୋଇଛି କେତେଟା ବହି-ଖାତା । ମୁହଁରେ ବିଷଣ୍ଣତାର ଛାୟା । ଏଇ କେତେଦିନ ଭିତରେ କ'ଣ ହୋଇଛି ତା' ରୂପଶ୍ରୀ ? ଖାଇବାରେ ଠିକ୍ ନାହିଁ । ନିଜକୁ ଅଯତ୍ନ କରି ସେ କ୍ଷୀଣହୋଇ ଗଲାଣି ।

ପାଖ ଚୌକିଟା ଆଶ୍ରୟ କରି ନିର୍ବାକ ନିସ୍ପନ୍ଦରେ ବସି ରହିଲା ଶୀତାଂଶୁ । ସେ ଭାବିଥିଲା, କଳିକା ହୁଏତ ପ୍ରଫୁଲ୍ଲ ଥିବ । ମିଷ୍ଟର ଦାଶଙ୍କର ସନ୍ଧୀ ଟ୍ରେନ୍‌ରେ ଆସି ପହଞ୍ଚିବାର କଥା । ତା'ପରେ ପରଦିନ ଦିନ ୧୨ଟାରେ ସେମାନେ ଫେରିଯିବେ । ଯିବା ପୂର୍ବରୁ କଳି ସଙ୍ଗେ କେତେଘଣ୍ଟା କଥାବାର୍ତ୍ତାରେ ଅନ୍ତତଃ କଟାଇ ଦେବାକୁ ଆସିଥିଲା ସେ ।

ଅନ୍ୟମନସ୍କ ଭାବରେ ଖଟ ଉପରୁ କାଗଜ ପୁଳାକ ଉଠାଇ ଆଣିଲା ଶୀତାଂଶୁ,—ଗୋଟିଏ ଡାଏରୀର ଛିନ୍ନଅଂଶ ପଢ଼ିବାକୁ ଆରମ୍ଭ କଲା ସେ···

ଏକା ଘରେ ରହି 'ଏକାକୀ ଚଳିବା ନିହାତି କଷ୍ଟକର ମନେ ହେଲାଣି । ନାଁ—ଆଉ ପାରିବି ନି, ଆଜି ପଚାରିବି ସେ କ'ଣ ଚାହାଁନ୍ତି, ମୁଁ ହାରିଗଲି । ଏତେ ଦୃଢ଼ତା ସତ୍ତ୍ୱେ ମଧ୍ୟ ସାଧାରଣ ଝିଅମାନଙ୍କ ପରି ଅଳି କଲି ।

'ମୁଁ ଆମ ଘରକୁ ଯିବି କିଛିଦିନ ପାଇଁ ।'

ମାଳମ କହିଲେ, ମୁଁ ମଧ୍ୟ ସେଇୟା କହିବି ଭାବୁଥିଲି । ତମେ ଘରକୁ ଗଲେ ଭଲ ଚିକିତ୍ସା କରାଇ ପାରିବ, ଦିନକୁ ଦିନ ଏ ସ୍ୱାସ୍ଥ୍ୟ କ'ଣ ହେଲାଣି ? ମୁଁ ବୁଝି ପାରିଲି ନି । ଏ କଥାରେ କେତେ ଛଳନାର ଆଶ୍ରୟ ସେ ନେଇଛନ୍ତି ।

ଆଃ କି ନିଷ୍ଠୁର ଏଇ ମାଳମ ! ଅନାଗତ ଶିଶୁ ପ୍ରତି ମଧ୍ୟ ତାଙ୍କର ମମତା ନ ଥିଲା !···ମୁଁ ଭଲ ବୁଝୁଛି । ସ୍ନେହ ନ ଥିଲେ ଆଇନର ସାହାଯ୍ୟ ନେଇ କଳିକାକୁ ସେ ନେଇଗଲେ କାହିଁକି ? ଆଉ ମାନ-ସମ୍ମାନକୁ ଦାଣ୍ଡଘାଟରେ ବେଶୀ ପ୍ରଚୁର କରିଯିବା ପୂର୍ବରୁ ଛାଡ଼ପତ୍ର ଦଲିଲରେ ନୀରବରେ ମୁଁ ସ୍ୱାକ୍ଷର କରି ଦେଇଥିଲି ।···ଆଜି ତିନି ମାସର ଶିଶୁ କଳିକାକୁ ସେ ନେଇଗଲେ···ମୋର ଆଉ କ'ଣ ବାକୀ ରହିଲା ?

ଆଃ···ମମତା ତୋ ମନରେ ଯଦି ଏଇୟା ଥିଲା ବିବାହ ପୂର୍ବରୁ ମତେ କହିଲୁନି କାହିଁକି ? ମନେ ପଡ଼ୁଛି କଲେଜର ସେଇ ଦିନଗୁଡ଼ିକ ନୂଆ ହୋଇ ବିଦେଶରୁ ଫେରି ଥାଆନ୍ତି ମାଳମ । କମିତି କେଜାଣି କେତେଦିନରୁ ତାଙ୍କ ବାପା ଆଉ ମୋ ବାପା ବାହାଘର ପ୍ରସ୍ତାବ ସ୍ଥିରକରି ରଖି ଥାଆନ୍ତି ।

ସେଦିନ ପ୍ରାକ୍‌ଟିକାଲ କ୍ଲାସ୍‌ରେ ମୋ ପାଖରେ ମାଳମଙ୍କୁ ଦେଖି ମୋ ହାତରୁ ଏକ୍‌ସ୍‌ପେରିମେଣ୍ଟ କରୁଥିବା କାଚନଳୀଟି ପଡ଼ି ଚୂନା ହୋଇଗଲା । ଲାଜମିଶା ଭୟରେ ମୁଁ ଥରୁଥାଏ । ମାଳମ କହିଲେ, ବିଜ୍ଞାନ ଛାତ୍ରୀର ପୁଣି ଏତେ ଲାଜ । ସେ ହସୁଥିଲେ । ଆଉ ସେ ଯିବାପରେ ଆସି ପହଞ୍ଚିଲା ମମତା । ତା' ମୁହଁରେ ମାଳମଙ୍କ ପ୍ରଶଂସା ମତେ ଭଲ ଲାଗିଲା ନି । କେତେ-ଥର ମୁଁ କଲେଜରେ ଦେଖିଛି ବିନାକାରଣରେ ତାଙ୍କ ସଙ୍ଗେ ସେ ଗପ କରୁଥାଏ । ଆଃ ଯଦି ମୁଁ ଜାଣିଥାନ୍ତି ଅନ୍ତରଙ୍ଗ ମମତା ମନରେ ଏତେ ବିଷ—ବିବାହ ପରେ ବି ମାଳମଙ୍କୁ ମୋ'ଠାରୁ ଛଡ଼େଇ ନେବାର ଚେଷ୍ଟାକରି ସେ ଜିତିଗଲା ।

ମାଳମ ପ୍ରତିବାଦ କଲେ, ମୁଁ ରୁଗ୍‌ଣା ପ୍ଲୋରେଟ ଦଂଶନରେ ଆଉକିଛି ଦିନପରେ ମୋ ଅସ୍ତିତ୍ୱ ମଧ୍ୟ ଲୋପ ପାଇଯିବ । ବାପା ସହିପାରିଲେ ନି, ସେ ଜିଦ୍ କଲେ, ମା' ନିଦ୍ରା ତୁ ଏ ଦଲିଲରେ ଦସ୍ତଖତ କରିଦେ, ମାଳମ ଆଉ ଫେରି ଆସିବ ନାହିଁ ସେ କାଠରୁ । ଦସ୍ତଖତ କରିବା ପୂର୍ବରୁ ତିନି ଚାରିଥର ଚିଠି ବୁଝାଇ ଲେଖିଥିଲେ ମଧ୍ୟ ସେ ନିରୁତ୍ତର ରହିଗଲେ ।

ପୁରୁଷର ମନ କ'ଣ ଏଇୟା ! ନାରୀ ଅବହେଳା ସହିପାରେ; କିନ୍ତୁ ଉପେକ୍ଷା ସହିପାରେ ନା ।

ଏ ଯନ୍ତ୍ରଣା ଦଗ୍ଧ ଜୀବନ ନେଇ ମୁଁ କ'ଣ କରିବି ? ଏତେ ନିର୍ମମ ତମେ ହୋଇ ପାରିଲ ମାଳମ, ମା' କୋଳରୁ ଶିଶୁକୁ ଛଡ଼ାଇ ନେବାଠାରୁ ନିଷ୍ଠୁରତା କ'ଣ ଆଉ ଥାଇପାରେ ?

( ୨ )

ଆଜି ମୁଁ କଲେଜ ଯିବାପାଇଁ ବସ୍ ଷ୍ଟପ୍ ପାଖରେ ଅପେକ୍ଷା କରିଥିଲି । ଗୋଟିଏ ଚାରି ପାଞ୍ଚ ବର୍ଷର

ଗୋଲଗାଲ ଝିଅଟିଏ ସଂଗେ ମୋର ଚାହ୍ନାହେଲା । କାହିଁକି ମୋର ଏତେ ଆକର୍ଷଣ ତା' ପ୍ରତି ? କାହାର ଝିଅ ସେ ? ପବ୍ଲିକ୍ ସ୍କୁଲରେ ପଢ଼ୁଛି । ସେ ବି ଅପେକ୍ଷା କରିଥାଏ ତା ବସ୍‌କୁ । ସଙ୍ଗରେ ଆସିଥିବା ଆୟା ଆଦର ଯତ୍ନ ଦେଖି ଆଶ୍ଚର୍ଯ୍ୟ ହେଉଥାଏ । ମନ ହେଉଥିଲା କଲେଜ ବନ୍ଦ କରିଦେବି । ଘରକୁ ଆଣି ତାକୁ ଅଜସ୍ର ଗେହ୍ଲା କରିବି । ଆଃ···କାହାର ସେ ଝିଅ ? ମୋର କି ଅଧିକାର ଅଛି ?

ପୁଣି ଦେଖା ସେଇ ବସ୍ ଷ୍ଟପ୍‌ରେ । ତା ନାଁ କଳିକା କହିଲା । ବାପାଙ୍କ ନାମ···ନା·· ନା ଯୁାହେଇପାରେ ନା । ଡକ୍ଟର ମାଳମ ଦାଶର ଝିଅ ସେ ହେଇପାରେ ନା ।

ପୁଣି ପୂର୍ବ ରୋଗ ମୋର ଦେଖାଦେଲା । ଈ ଯୋଗ ଦେଖ ତ ମାଳମ ପୁଣି ବଦଳି ହେଇ ଆସିଲେ ମତେ ଜଳେଇବାକୁ, ଆଜ କାଧି କାଧି ବି ଲୁହ ସରୁନି କମ୍ପା ଏ ସମୟ ବି ସରୁନି ମୁଁ ଅସୁସ୍ଥ ।

ଦୁଇ, ତିନିଦିନ କଲେଜ ବନ୍ଦ ହେଲାଣି । ମୁଁ ଟିକିଏ ସୁସ୍ଥ ହେଇ ବାହାରିଛି ଫଟେ଼ଇ ଯିବାକୁ । ମୋ ମନ ଆଜି ଭାରି ଖୁସି । ବସ୍‌ଷ୍ଟପ୍‌ଠାରୁ ଅଳ୍ପଦୂର ମୋ ଘରକୁ ଆଜି କଳିକା ଆସିଥିଲା, ତା' ଆୟା ସାଙ୍ଗରେ ।

ସେ କହିଲା, ଅଣ୍ଟି ତମର କ'ଣ ହୋଇଥିଲା ? ତମେ ତମ ସ୍କୁଲ ବନ୍ଦକଲ କାହିଁକି ?

ଶିଶୁ ମନର ଶ୍ରେଷ୍ଠ କୌତୁହଳ, ମୁଁ ତାକୁ ଚାହିଁଥାଏ । ଆଉ ମୁଁ ତାକୁ ଦେଖୁଥାଏ ଏମିତି ।

ଦେଖତ ବାଲକନି ପାଖରେ ଠିଆହୋଇ ସେଇ ରାସ୍ତାକୁ ଚାହିଁ ରହିଲେ, ସତେ କଣ 'କଳିକା' ମୋର ଚାଲିଆସିବ ?

କାଲି ରାତିରେ କଣହେଲା କେଜାଣି ପଢକଥା-ଗୁଡ଼ା ଭାରି ମନେ ପଡ଼ୁଥିଲା । ସେଇ ସୁନ୍ଦର ଦିନ-ଗୁଡ଼ିକ, ଓଃ···କାହିଁକି ମନେ ପଡ଼େ । କି ମୂଲ୍ୟ ତା ପର ଦୀର୍ଘଶ୍ୱାସର ।

ସକାଳେ ଅନେକ ଡେରିରେ ମୋ ନିଦ ଭାଙ୍ଗିଲା । ମୁହଁଟା ଧୋଇ ପକାଇ ଦେଖେତ କଳିକା ଆସିଛି । ମୋ ଆଲ୍‌ସିସିଆନ୍ କୁଆସଙ୍ଗେ ଖେଳିବାରେ ବ୍ୟସ୍ତ । ମୋତେ ଦେଖି ଚାଲିଆସି କହିଲା, "ଗୁଡ଼୍-ମର୍ଣ୍ଣିଂ ଅଣ୍ଟି"

ହସି ହସି ମୁଁ ବି ପ୍ରତ୍ୟୁତ୍ତର ଦେଲି, ତୁନ୍ତର ସଜ କଳିଟି ପରି ମୋ କଳି କି ସୁନ୍ଦର ! ଠିକ୍ ମାଳମଙ୍କର କୌତୁହଳୀ ଆଖିପରି ତାର ଆଖି ଦୁଇଟି, ଦେହରେ ପବ୍ଲିକ୍ ସ୍କୁଲ ପୋଷାକ, କାନ୍ଧରେ ବହି ବ୍ୟାଗ୍, ପାଣି ବୋତଲ ଜଳଖିଆ ଡବା ।

.ସବୁ ବାହାର କରି ଅଲଗା କରିଦେଲି । ମୁଁ କହିଲି ମା' କଳି ତୁ ଟିକେ ଖେଳୁଥା । ମୁଁ ସଙ୍ଗେ ସଙ୍ଗେ କାମସାରି ଆସୁଛି । ତତେ ସ୍କୁଲ୍‌ରେ ଛାଡ଼ି ଆସିବି ।

ମୋ କଥା ନ ସରୁଣୁ ସେ କହିଲା 'ନାଇଁ·ଅଣ୍ଟି ବାବା ଆସିଛନ୍ତି ଯେ । ବସ୍ ଫେଲ୍ ହେବାରୁ ତମ ଘରକୁ ଆସିବାକୁ ଜିଦ୍ କରିବାରୁ ସେ ନେଇ ଆସିଲେ ।

ବାବା !!! ମାଳମ ଆସିଛନ୍ତି—ଏଇ ଘର, ମୁଁ ଅଛି, ମାଳମ ଅଛନ୍ତି, ଶ୍ରେଷ୍ଠ କଳି ଖେଳି ବୁଲୁଛି । ···ନା···ନା ମୁଁ ହସି ଉଠିଲି । କଳିକା ମୋର କେହି ନୁହେଁ, ସେ ମୋର ଯେ କେହି ନୁହଁ, ମୋର ପୁଣି ପୂର୍ବ ରୋଗ ବାହାରିଲା ।

କେତେକ ସମୟ ପରେ ଆଖି ଖୋଲି ଦେଖେତ ମୋ ପାଖରେ କଳି ଜଗି ବସିଛି । ମାଳମ ମୁଣ୍ଡ ପାଖରେ ପଙ୍ଖା କରୁଛନ୍ତି । ଅନନ୍ତ କ୍ଷୀର ଗ୍ଲାସ ଧରି ଆସୁଛି ।

ମୁଁ ଉଠି ବସିଲି, ଅନନ୍ତଠାରୁ ଗ୍ଲାସନେଇ କ୍ଷୀରଟା ପିଇଦେଲି । 'କଳିକାକୁ' କୋଳକଲି । ସେ ମତେ ସେଇ କୌତୁହଳୀ ଆଖିରେ ଚାହିଁ ରହିଥାଏ ।

ମୁଁ କହିଲି ମୋର କିଛି ହେଇନି ତୁ ଆଜି ସ୍କୁଲ୍ ବନ୍ଦ କଲୁ ।

ମୋ ନିର୍ଦ୍ଦେଶରେ ଅନନ୍ତ ତାଙ୍କୁ ଡାକିନେଲା ବିସ୍କୁଟ ଦେବାକୁ ।

ସାମାନ୍ୟ ନୀରବତା ପରେ ମାଳମ ମୁହଁ ଖୋଲିଲେ ନନ୍ଦା, କପରି ଲାଗୁଛି ।

ଭଲ, ମୁଁ ବି ଉତ୍ତର ଦେଲି ।

ସେ ପୁଣି କହିଲେ "ମୋ ଅବିଶ୍ବାସର ଯଥେଷ୍ଟ ଶାସ୍ତି ମୁଁ ଭୋଗି ସାରିଲଣି । ମାନସିକ ଶାନ୍ତି ହରେଇ ମୁଁ ଅନୁତପ୍ତ,...ମୁଁ ବାଧା ଦେଲି, ସେ ସବୁ ଆଜି ଅନାବଶ୍ୟକ, ସେ ପୁଣି କହିଲେ ତମେ ଶିକ୍ଷିତା ସବୁ ବୁଝ, ପୁରାଣ ଇତିହାସ, ବର୍ତ୍ତମାନର କେତେକଙ୍କ ଜୀବନ ଆଲୋଚନା କଲେ ଦେଖାଯାଏ ଯେ ଅନେକଙ୍କର ଦୁଇଟି ସ୍ତ୍ରୀ...

ଚିତ୍କାର କରିବାକୁ ଚେଷ୍ଟାକରି ଆସ୍ତେ ପାଟିକଲି ମୁଁ ।

"ଦୟାକରି ଏ ହୀନ ପ୍ରସ୍ତାବ କରନ୍ତୁ ନାହିଁ ।"

"ମୋ ପାପର ପ୍ରାୟଶ୍ଚିତ ଆଉ କପରି ହେବ ? ଆକୁଳ ହୋଇଉଠିଲେ ମାଳମ ।

ଉତ୍ତର ଦେବାକୁ ଯାଇ ମୁଁ ନୀରବ ରହିଲି ।

ବାହାରୁ ଦୌଡ଼ିଆସି ମୋ ବସିଥିବା ସୋଫାରେ ବସି ରହିଲା କଳିକା । ତାଙ୍କୁ ଭଲକରି ପାଖକୁ ଟାଣି ଆଣିଲି ।

ମାଳମ କହିଲେ "ଯା, ମା' ବାହାରେ ଖେଳୁଥିବୁ ।"

ଗୋଟିଏ ସ୍ରୋତସ୍ୱିନୀ ଝରଣା ପରି ପୁଣି ବାହାରକୁ ବାହାରିଗଲା ସେ ।

"ମୋ କଥାର ଉତ୍ତର ଦିଅ ନନ୍ଦା" ମାଳମଙ୍କ ସ୍ୱର ଆର୍ଦ୍ରହୋଇ ଉଠୁଥିଲା । ମୁଁ ନିରୁତ୍ତର, ସେ ପୁଣି କହିଲେ—

କିଛି କହିବ ନାହିଁ ?

ଯାହା କହିବ ଆପଣ ରଖିବେ ନାହିଁ ।

ମାଳମ ଖୁସିହେଲେ "ମୋ ଭୁଲର ପ୍ରାୟଶ୍ଚିତ ପାଇଁ ତମେ ଯାହା କହିବ ମୁଁ ନିଶ୍ଚୟ ମାନିନେବି ।"

"କଳିକୁ ମୁଁ ମଣିଷ କରିବି, ସେ ମୋ ପାଖରେ ରହିବ ।

ମୋ କଣ୍ଠରେ ଦୃଢ଼ତା ସୁସ୍ପଷ୍ଟ ।

ମାଳମ ନୀରବରେ ବସି ରହିଲେ । ଟିକିଏ ପରେ ସେ କହିଲେ "ତମକୁ କିଛି ଶାନ୍ତିଦେଇ ପାରିଲିନି । ବର୍ତ୍ତମାନ ତମର ଏତିକି ଅଳି ପୂରଣ କରିବାରେ ମୁ ଆଉ କାର୍ପଣ୍ୟ ହେବିନାହିଁ ।" ସେ କାନ୍ଦି ପକାଇଲେ ମୁଁ କିନ୍ତୁ ଦୁର୍ବଳ ହେଇ ପଡ଼ିନି । ଲୁହ ପୋଛିବାକୁ ଇଚ୍ଛା କରିନି, ସେମିତି ଦୃଢ଼ହେଇ ଚଉକିଆକୁ ଆଉଜି ବସିଥାଏ ।

ସେ ଉଠି ଠିଆହେଲେ ।

"ଶୁଣିଥିଲି ତମେ ବଦଳି ହେଇ ଦୂରକୁ ଚାଲିଯାଉଛ ।

"ହଁ ମୁଁ ଚେଷ୍ଟାକରି ଯାଉଛି"

ସାମାନ୍ୟ ନୀରବତା ପରେ ସେ ଚାଲିଗଲେ ।

ମୋ ମନରେ ଅଜସ୍ର ଯନ୍ତ୍ରଣା ଆରମ୍ଭ ହେଇ ଯାଇଥାଏ । କଳିକାକୁ କଣ ବୁଝାଇ ସେ କହିବାରେ ଲାଗିଥାନ୍ତି । ଆଉ ମୋ କଳି ତାଳମାରି ନାଚିବାରେ ଲାଗିଥାଏ ଖୁସିରେ, ପିଲାଙ୍କ ମନ ବୋଧହୁଏ ଏଇୟା । ଯାହାକିଛି ବୁଝେଇ ଦେଲେ ବୁଝି ଯାଆନ୍ତି ସହଜରେ, ମାନି ନିଅନ୍ତି ସହଜରେ, ଏଇଟା ତାଙ୍କ କଞ୍ଚା ମନର ଶକ୍ତି ।

ଟିକିଏ ଦୂରରେ ଭାରି ଭାରି ପାଦ ପକେଇ ମାଳମ ଚାଲିଗଲେ ।

× × ×

କଳିକା ନିର୍ବିକାର ଭାବରେ ବସି ରହିଛି ।

ଶୀତାଂଶୁ ଆଶ୍ଚର୍ଯ୍ୟ ହେଲା ।

"ମାଉସୀଙ୍କ ଜୀବନରେ ଏତେ ଦୁଃଖ ଲୁଚିଥିଲା ?" କଳିକା ଦୀର୍ଘଶ୍ୱାସ ନେଇ କହିଲା ।

"ବଞ୍ଚିଥିବାବେଳେ, ମୋର ମନ ଖରାପ ନ କରିବା ପାଇଁ ସେ କେବେ କିଛି କହି ନାହାନ୍ତି । ମରିବା ପୂର୍ବଦିନ ମତେ ଗୁହାରିକରି କହିଲେ, ମୋର ଗ୍ରେଟ ରେକ୍‌ସିନ୍ ସୁଟ୍‌କେଶ୍‌ରେ ତାଇରୀଟିଏ ଅଛି, ଖୋଲି ପଢ଼ିବୁ, ତୋ ମା'କୁ ଭୁଲ ବୁଝିବୁ ନାହିଁ । ଆଉ ବାପାକୁ କ୍ଷମା କରିବୁ । ମୁଁ କିଛି ବୁଝି ପାରିଲି ନି ଶୀତାଂଶୁ, କହୁ କହୁ ଆଖି ପୋଛିଲା କଳିକା ।

ଶୀତାଂଶୁ ମଧ୍ୟ ଆଖି ପୋଛିଲା ।

ସେ ଶୀଘ୍ର ମରିବା କଥା ଜାଣି ପାରିଥିଲେ । ମତେ ପାଖକୁ ଡାକି ତୁମ ହାତ୍ବିଣ୍ଡ ବୁଝେଇ ଦେଲେ । ସେ ପର୍ଯ୍ୟନ୍ତ ବଞ୍ଚିପାରିଲେ ନାହିଁ ବୋଲି ଭାରି ଦୁଃଖ-କରି ଗଲେ ।

କଳିକା କାନ୍ଦୁଛି । ଧନର ଅଳିଅ ମୁହଁ ଲୁଚେଇଲଣି ।

ଶୀତାଂଶୁ କହିଲା "ତମ ସ୍ୱାସ୍ଥ୍ୟ କଣ ହେଲାଣି କଳି ? ଇମିତି ଅଧୀର ହେଲେ ଚଳିବ, ଏଇତ ମୁଁ ଅଛି ତମ ପାଖରେ ।"

କଳିକା ପାଷାଣୀ ସାଜି ବସି ରହିଛି ।

ଶୀତାଂଶୁ ହାତଘଣ୍ଡ଼ି ଦେଖି ଦେଖି ଅସ୍ଥିର ହୋଇ ପଡ଼ୁଛି ।

"ମଉସାଙ୍କ ଆସିବା ବେଳ ହେଇଗଲାଣି । ଅନନ୍ତକୁ କ'ଣ ଖେଷେଇ ବନ୍ଦବସ୍ତ କରିଦିଅ । ଆମେ ଷ୍ଟେସନ ଯିବା ।

"ନା…ନା ତାଙ୍କର ଆସିବା ଦରକାର ନାହିଁ । ଏ ଘର ଛାଡ଼ି ମୁଁ କୁଆଡ଼େ ଯାଇ ପାରିବନି ।" କାନ୍ଦି କାନ୍ଦି ଲେଟି ପଡ଼ିଲା କଳିକା ।

"ଛି କଳି, ମାଉସୀଙ୍କର ଶେଷକଥା କ'ଣ ଭୁଲିଯାଉଛ ?"

"ତମେ ଶୀତାଂଶୁ, ମୋ ଜୀବନ ରକ୍ଷାରୁ…ନା …ନା…" କୁହ ଅଳି ?

"କିଏ ଜାଣେ ତମେ ବି ଇମିତି ବଦଳି ନ ଯିବ । ଜାଣି ଜାଣି ମୋ ଜୀବନକୁ ଜଳେଇବ କାହିଁକି ।"

"ମୋ ନେଇ ତମ ମନରେ ଅବିଶ୍ୱାସର ପ୍ରଶ୍ନ ଉଠିଲେ ହସି ହସି ଏ ପଥରୁ ମୁଁ ଅପସରି ଯିବି କାଳିକା ।" କିନ୍ତୁ କୁହ ତମେ ଖୁସି ହେବତ ?

କାନ୍ଦି କାନ୍ଦି ଶୀତାଂଶୁ ବକ୍ଷରେ ଲେଟିଗଲା କଳିକା ।

---




ବସ୍‌ରେ ଯିବା ଆସିବା କରିବାବେଳେ ହାତ ବାହାରକୁ ଦିଅନ୍ତୁ ନାହିଁ ।

# ॥ ଆକାଶ ନୀଳ--ସମୁଦ୍ର ନୀଳ ॥

ତରୁଣକାନ୍ତ ମିଶ୍ର

—୧—

କଳ୍ପନାର ଦୃଷ୍ଟି ଆପେ ଆପେ କାବେରୀର ଶରୀର ଉପରେ ବିଦ୍ୟୁତ୍ କ୍ଷିପ୍ରତାର ସହ ବ୍ୟାପିଗଲା ।

କାବେରୀର ଗଳାମଣ୍ଡିତ କରିଥିବା ସେଇ ନୂଆ ସୁନା ହାରଟିର ଉଜ୍ଜ୍ୱଳତା କଳ୍ପନାର ଦୃଷ୍ଟିକୁ ମ୍ଳାନ କରିଦେଲା ।

'ଅପା—କେମିତି ଦିଶୁଛି କହିଲୁ ?' କାବେରୀ ପ୍ରଶ୍ନକଲା । କଳ୍ପନା ଏ ପ୍ରଶ୍ନର କୌଣସି ଉତ୍ତର ଦେଇନାହିଁ ।

'ଏ ହାରଟା କେମିତି ହୋଇଛି ?' କାବେରୀ ପୁଣି ପଚାରିଲା, ତାଙ୍କ ଆଖିକୁ ଏ କୁଆଡ଼େ ଖୁବ୍ ସୁନ୍ଦର ଦିଶୁଛି । ଅଭିମାନ ଓ ଅଭିଯୋଗର ପ୍ରତିଧ୍ୱନି କାବେରୀ କଣ୍ଠରେ ସ୍ପଷ୍ଟହୋଇ ଉଠିଲା ।

ଏଇଥର କଳ୍ପନା ଅତି ଅସ୍ପଷ୍ଟ କଣ୍ଠରେ କହିଲା—ବେଶ୍, ଭଲ ଦିଶୁଛି ତ । ତା'ପରେ ଗୋଟିଏ ବୃଥା ଦୀର୍ଘଶ୍ୱାସ ତା' ଗୁଡି ଠେଲି ବାହାରି ଆସିଲା ।

ସ୍ୱା'କୁ ମିଶାଇ କେତୋଟି ସେଟ୍ ହେଲା କାବେରୀର ? ବୋଧହୁଏ ଆଠସେଟ୍ ଗହଣା । ଦେଢ଼-ବର୍ଷ ଭିତରେ ସୁବୋଧ ବାବୁ ତାକୁ ଆଠସେଟ୍ ଗହଣା କରି ଦେଲେଣି । କଳ୍ପନା ମନେ ମନେ ଭାବି ବସିଲା । ଆଉ ଶାଢ଼ୀ ବ୍ଲାଉଜ ? ନିଜେ କାବେରୀ ବି କହିପାରିବ ନାହିଁ ଏଇ ଦେଢ଼ବର୍ଷ ଭିତରେ କେତେ ଶାଢ଼ୀ ବ୍ଲାଉଜ ସେ ପିନ୍ଧିଲାଣି । ନିଜର ବେଶ ଅଳଙ୍କାର ସହ ସାନ ଭଉଣୀର ପରିପାଟୀ ତୁଳନା କରି ଦୀର୍ଘଶ୍ୱାସ ତ୍ୟାଗ କରିବା ଏଇ ପ୍ରଥମ ନୁହେଁ କଳ୍ପନା ପକ୍ଷରେ ।

ପ୍ରତ୍ୟେକ ଥର ନୂଆ ଗହଣା ପିନ୍ଧି କାବେରୀ ଆସି ଉଭା ହୋଇଛି ସାମନାରେ—ଅପା, ଦେଖିଲୁ କେମିତି ହୋଇଛି ?

ଏକ ଦୁଃସହ ହୀନମନ୍ୟତାର ଜ୍ୱାଳାରେ ଦଗ୍ଧ ହେଉ ହେଉ କଳ୍ପନା ହସିଛି—ବାଃ, କେଡ଼େ ସୁନ୍ଦର ଦିଶୁଛି ଲୋ କାବେରୀ ! ସେ କୃତ୍ରିମ ହାସ୍ୟରେଖା ତା' ଓଷ୍ଠ ପ୍ରାନ୍ତରେ କ୍ଷଣକ ପାଇଁ ସଂପ୍ରସାରିତ ହୋଇ ଲିଭି ଯାଇଛି ।

କାବେରୀ ଓଠ ଫୁଲାଇ ଅସନ୍ତୋଷ ପ୍ରକାଶ କରିଛି—'ମତେ ଏମିତି ଗହଣା ଭଲ ଲାଗୁନାହିଁ । ତାଙ୍କର ଯୋଉ ରୁଚି !'

ପ୍ରଥମେ ପ୍ରଥମେ କଳ୍ପନା ସୁବୋଧ ବାବୁଙ୍କ ପକ୍ଷ ନେବ, ତାଙ୍କ ରୁଚି ଓ ସୌନ୍ଦର୍ଯ୍ୟବୋଧର ଭୂୟସୀ ପ୍ରଶଂସା କରି କାବେରୀକୁ ବୋଧ ଦେବାର ପ୍ରୟାସ କରିଛି । କିନ୍ତୁ ଏବେ ସେ ପ୍ରଶଂସା ନାହିଁ, ପକ୍ଷ ସମର୍ଥନ ବି ନାହିଁ ।

କେବଳ ଏକ ତିକ୍ତ ହସ ଓଠ ଧାରରେ ପ୍ରକାଶ କରି ସେ କହିଛି—ବେଶ୍ ଭଲ ଦିଶୁଛି ତ !

ଜଣେ ପଦସ୍ଥ କିଲା ଅଧିକାରୀଙ୍କ ସ୍ତ୍ରୀର ଗୌରବ ଓ ସମୃଦ୍ଧି ଦେଖି କଳ୍ପନା ଅସହ୍ୟ ଗ୍ଳାନି ଓ ଅପମାନ-ବୋଧରେ ନଇଁ ପଡ଼ିଲା । ଜଣେ ଅଧ୍ୟାପକର ସ୍ତ୍ରୀ ହିସାବରେ ସେ ନିଜକୁ ଅବନତ ମନେକଲା ।

ଏଇ ତା'ର ଭଉଣୀ, କାବେରୀ—ଦୁର୍ବଳ ଅସୁନ୍ଦର ବୋଲି ବାପା ମାଆଙ୍କର ଚିନ୍ତା ଓ ପରି-ଚର୍ଯ୍ୟାର ଅନ୍ତନାହିଁ । କଳ୍ପନା ମଧ୍ୟ ଭଉଣୀର ଦୁର୍ବଳ ସ୍ୱାସ୍ଥ୍ୟ ଓ ଅପରିପକ୍ୱତା ଦେଖି ହୃଦୟରେ ବ୍ୟଥା-ପାଏ ।

ଆଜି ବି ସେ ବ୍ୟଥା ପାଉଛି, କାବେରୀକୁ ଦେଖି । କିନ୍ତୁ ସେ ବ୍ୟଥାର କାରଣ ବଦଳି ଯାଇଛି । ବ୍ୟଥାର ଉପସର୍ଗ ମଧ୍ୟ ଭିନ୍ନ ।

ଅପା—ତୁ ଏମିତି ଚୂପ୍‌ହୋଇ ବସି ରହିଲୁ ଯେ ! କାବେରୀ ଅଙ୍ଗମୁଦ୍ରା ପ୍ରକାଶ କରି ବିଛଣାରେ ବସୁ ବସୁ ଅଭିଯୋଗ କଲା !

କଳ୍ପନାର ସମ୍ବିତ୍ ଆସିଲା । ସ୍ୱାଭାବିକତା ଫେରାଇ ଆଣିବାକୁ ଯାଇ ସେ ପ୍ରଶ୍ନକଲା—ଆଉ, ସୁବୋଧ ବାବୁ କେମିତି ଅଛନ୍ତି ?

ତାଙ୍କ କଥା ନ ପଚାରି ତୁ ଆଉ ଯାହା ପଚାର ଅପା—କାବେରୀ ଶିଶୁସୁଲଭ ଅଭିମାନରେ କହିଲା 'ଯେମିତି ! ତାଙ୍କ tour ଭଲ ତ ସେ ଭଲ । ଏମିତି ମଣିଷ ନେଇ ଚଳିବା ମୁସ୍କିଲ୍ । କେହି ତ ଏତେ ଟ୍ରର୍ କରୁନାହାନ୍ତି, ତୁମର ଭିନାହିଁକି ! ଟିକିଏ ଶାନ୍ତିରେ ବଞ୍ଚିବା ପାଇଁ ମୋ ଜାତକରେ ନାହିଁ ଯାହା ଦେଖୁଛି ।

କଳ୍ପନାର ଏଇ ମନ୍ତବ୍ୟରେ ଆଶ୍ୱାସ ପାଇଲା ସ୍ୱାମୀଗରବିଣୀ ଏକ ନାରୀର କଣ୍ଠସ୍ୱର ।

ନାଃ···କାବେରୀ ଅତି ଉଦ୍ଧତ ହୋଇ ଉଠିଲାଣି ।

ଏଣୁତେଣୁ ଗୁରୁପଦ କଥାପରେ କାବେରୀ ବିଦାୟ ନେଲା—ତା' ଘରକୁ ଯିବାର ନିମନ୍ତ୍ରଣ ଜଣାଇ ।

କଳ୍ପନା ଏଥର ନିର୍ଜନ କୋଠରୀରେ ବସି ନିଜେ ନିଜର ହାତ, ଗଳା ଓ କାନକୁ ଗୁହିଁଲା । ହାତରେ ଦୁଇପଟ ଲେଖାଏଁ ପାଣିକାଚ, ଗଳାରେ ସରୁ ସୋରିଷ ମାଳି ଓ କାନରେ ଦୁଇଟି ସାନ ସାନ ଦୁଲ୍ ।

ସେ କାବେରୀର ସେହି ଶୋଭିତ ଶରୀରକୁ ସ୍ମରଣ କଲା । ହାତ, ଗଳା, କାନ—ପ୍ରତ୍ୟେକ ଅଙ୍ଗ ସ୍ୱର୍ଣ୍ଣାଭ—ଯେଉଁ ଆଗ ଏଇ ଦେଢ଼ବର୍ଷ ଭିତରେ ଆଠଥର ବଦଳିଛି ! ଯେଉଁ ଶରୀରର ସାମଗ୍ରିକ ରୂପ ବିନ୍ୟାସ ପ୍ରତି ମୁହୂର୍ତ୍ତରେ ବଦଳୁଛି ।

ସେ ନିଜକୁ ଗୁହିଁଲା—ଏକ ଦରିଦ୍ର ଅଧ୍ୟାପକ ଓ କବିର ସ୍ତ୍ରୀ—ଯେଉଁଥିରେ ନାମମାତ୍ର ଗୌରବ ଅଛି, ବାସ୍ତବରେ ନାହିଁ । କୋଠା, ବାଡ଼, ବଗିଚ୍ଚ ଓ ଅଧସ୍ତନ କର୍ମଚାରୀ ନାହାନ୍ତି, ଅଛନ୍ତି କେବଳ ଦଳେ ଦୁର୍ଦ୍ଦାନ୍ତ ଛାତ୍ର, ଖାତା ଓ ଟେଲ୍ସ କବିତାର ପାଣ୍ଡୁଲିପି ।

ଏଇ ଗଳ୍ପ କବିତାର ପାଣ୍ଡୁଲିପି ହୁଏତ ଏକଦା କଳ୍ପନା ଭାଗ୍ୟଡୋର ସହ ଯାଦବଙ୍କରଙ୍କ ଭାଗ୍ୟଡୋର ସଂଯୁକ୍ତ କରି ଦେଇଥିଲା—କିନ୍ତୁ ଆଜି ଯାଦବଙ୍କରଙ୍କ ସେହି ନିର୍ଜନ ନିବିଷ୍ଟ ଏକାଗ୍ରତା ଦେଖି କଳ୍ପନା ଦୀର୍ଘଶ୍ୱାସ ତ୍ୟାଗକରେ । ଜୀବନର ବିସ୍ତୃତି କ'ଣ ଏତିକିରେ ସୀମାବଦ୍ଧ—ସାହିତ୍ୟ, ଶିକ୍ଷକତ୍ୱ ଓ ଦର୍ଶନ ?

ଗୁଡ଼ାଏ ବହିର ସ୍ତୂପ ଓ ଶିକ୍ଷାସୂଚନରେ କୋଳାହଳ ଭିନ୍ନ ଆଉକିଛି ଅଧିକ ପାଇବାର, ଦେଖାଇବାର କମ୍ବା ଉପଭୋଗ କରିବାର ନାହିଁ ?

କବିତା ଭିତରେ ଯେଉଁ ରୋମାନ୍‌ସ ଫୁଟିଉଠେ, କବିଙ୍କ ଭିତରେ ତାହା ଫୁଟି ଉଠୁନାହିଁ କାହିଁକି ? ଶାନ୍ତ ନିସ୍ତରଙ୍ଗ ନୂତନତ୍ୱହୀନ ଜୀବନ ଯାହା ଭିତରେ ସେହି କାବ୍ୟିକ ସତ୍ତା କାହିଁ ?

କଳ୍ପନାର ସ୍ମରଣାଗତ ହେଲା ଏକ ଦାହମୟ ସ୍ମୃତି—ଯେଉଁ ସ୍ମୃତିର ଜ୍ୱାଳା ତା ଭିତରେ ଏବେ ବି ଜୀବନ୍ତ ।

କାବେରୀର ଏକ ନୂଆସେଟ୍ ଗହଣା ଆସିବା ପରେ ସେଇ ଗହଣାର ସୌନ୍ଦର୍ଯ୍ୟ ଦେଖି ଓ କେତେକେତେ ଈର୍ଷାପରବଶ ହୋଇ କଳ୍ପନା ଯାଦବଙ୍କରଙ୍କ ପାଖରେ ଅଳି କରିଥିଲା—



Source: KC Dash, Digitized by PPRACHIN, SOA

ମୋର ଗୋଟାଏ ଅନୁରୋଧ ରଖିବ ?

କବିତାର ପାଣ୍ଡୁଲିପି ଭିତରୁ ସମାଧିଗ୍ରସ୍ତ ଶରୀର ତାଙ୍କର କୌଣସି ଜବାବ୍ ଦେଲନାହିଁ ।

କଳ୍ପନା ପୁଣି ଆଗ୍ରହର ସହିତ ଡାକିଲା— ଶୁଣୁଚ !

ଚିନ୍ତାକୁଳ ଦୀପଙ୍କର ମଥା ଉନ୍ନତ କଲେ । ନିର୍ବାକ୍, କିନ୍ତୁ ପ୍ରଶ୍ନପୂର୍ଣ୍ଣ ଦୃଷ୍ଟି ।

ଏଇ ମାସ ଦରମା ପାଇଲେ, ଟିକଏ ରହିଗଲା କଳ୍ପନା—ତା'ପରେ ଦ୍ୱିଧାଗ୍ରସ୍ତ କଣ୍ଠସ୍ୱର ଓ ଦୃଷ୍ଟି ଯେମିତି କମ୍ପିଉଠିଲା, ଗୋଟିଏ ସୁନାହାର କିଣିଦେବ ମୋ ଲାଗି ?

ବୈବାହିକ ଜୀବନର ପାଞ୍ଚବର୍ଷର ଇତିହାସ ମଧ୍ୟରେ ଏଇ ପ୍ରଥମ ଓ ଏଇଶେଷ ।

ଦୀପଙ୍କର ଏକଲୟରେ ନିର୍ବାକ୍ ଅଥଚ ଭାଷାପୂର୍ଣ୍ଣ ଦୃଷ୍ଟିରେ କଳ୍ପନାକୁ ଚାହିଁ ରହିଲେ ।

କି ଏକ ଆଗ୍ନେୟ ପ୍ରତିଫଳନ ତାଙ୍କ ଚକ୍ଷୁର ତାରକାରୁ କଳ୍ପନା ଅଭ୍ୟନ୍ତରକୁ ବ୍ୟାପିଗଲା । ସେଇ ଆଖି ଯୋଡ଼ିକରୁ କଳ୍ପନାର ଆଖି ଫେରି ଆସିଲା । ଲଜ୍ଜା ଓ ଅପରାଧ ବୋଧରେ କଳ୍ପନା ସତେ କି ମାଟିରେ ମିଶିଗଲା । କେତେ ହୀନ, କେତେ ଶ୍ରେଷ୍ଠ ସେ ହୋଇଗଲା ସ୍ୱାମୀଙ୍କ ଆଗରେ !

ନୀରବରେ ସେ କକ୍ଷତ୍ୟାଗ କରିଥିଲା—ଏକାକିନୀ ବିଛଣାରେ ଶୋଇ ପଡ଼ିଲା ଓ ବାଧା ନ ମାନି ଦୁଇ-ବିନ୍ଦୁ ଅଶ୍ରୁ ତା' ଚକ୍ଷୁରୁ ଝରି ପଡ଼ିଲା । ଦୁଇବିନ୍ଦୁ ଅଶ୍ରୁପାତ କି ଜ୍ୱାଳାମୟ ବ୍ୟଥା ପରେ !

ସେ ସେଦିନ କାହିଁକି କାନ୍ଦିଥିଲା ଜାଣେନା— ଅପମାନରେ ? ନା ପ୍ରତାରଣାରେ ? ନା ନିରାଶାର ବ୍ୟଥା ତା' ଆଖିଲୁହ ଦେଇ ଝରି ପଡ଼ିଲା ?

ସେଦିନର ସେହି ତିକ୍ତସ୍ମୃତି ତା' ମାନସମୁକୁରରେ ଝଲି ଉଠିଲା କ୍ଷଣି ତା' ମସ୍ତିଷ୍କର କେଉଁ ଏକ ସୂକ୍ଷ୍ମଶିରା ଦେଇ ଯେପରି ବହ୍ନିସ୍ରୋତ ବହିଗଲା—

ସେଇ ବହ୍ନି ବନ୍ୟାର ଆଗ୍ନେୟତା ତା' ଖର-ନିଶ୍ୱାସକୁ ଉତ୍ତପ୍ତ କରିଦେଲା । କିନ୍ତୁ ଏକ ପ୍ରତାରଣା ଓ ବିସ୍ୱାଦ ପ୍ରଲୁବ୍ଧତାର ଗ୍ଲାନି ଓ କ୍ଷୋଭ ତା' ଭିତରେ ଆତ୍ମପ୍ରକାଶ କଲା ।

ସେ ଅତି ଦୂରକୁ ସତେ ଯେମିତି ଶୁଣିପାରିଲା ଏକ ପରିପୂର୍ଣ୍ଣପ୍ରାଣା ବିଜୟିନୀର କଳକଳ ହାସ୍ୟ ତରଙ୍ଗ —ଜୀବନ ସଂଗ୍ରାମରେ ଜୟପତ୍ର ପାଇଥିବା ଏକ ନାରୀର ବିଜୟ ଉଚ୍ଛ୍ୱାସ ତା' କର୍ଣ୍ଣକୁହରରେ ଅନୁରଣିତ ହୋଇ ଉଠିଲା—

ସେ କଳକଲ୍ଲୋଳ କାବେରୀ କଣ୍ଠରୁ ଉଚ୍ଛୁଳି ଆସୁଛି ।

—୨—

ଦୀପଙ୍କରଙ୍କର ସଦ୍ୟ ପ୍ରକାଶିତ କବିତା ଗ୍ରନ୍ଥଟିକୁ ହାତରେ ଧରି କାବେରୀ ବସି ରହିଥିଲା । ଦେଢ଼ବର୍ଷ ଭିତରେ ଏହା ତାଙ୍କର ଅଷ୍ଟମ କୃତି । କିନ୍ତୁ ସେ ମୋଟେ ବହିଟି ପଢ଼ିପାରୁ ନାହିଁ ।

ପ୍ରତିଟି ପୃଷ୍ଠା ସେ ଓଲଟାଇଲାକ୍ଷଣି ତା' ଭିତରେ ସେ ଜଣକର ମୁହଁ ଦେଖି ପାରୁଛି । ସେହି ମୁହଁଟି କଳ୍ପନାର । କବି ଦୀପଙ୍କର ନିଶ୍ଚୟ ଏଇ କଳ୍ପନାକୁ ଆଶ୍ରୟ କରି ଲେଖିଛନ୍ତି ।

ମାନସଜଗତର କଳ୍ପନା ସହିତ ବାସ୍ତବ ଜଗତର କଳ୍ପନା ଯେମିତି ଏକ ଓ ଅଭିନ୍ନ ହୋଇ ଯାଇଛନ୍ତି । ଏଇ ଅନନ୍ୟତା ପ୍ରତ୍ୟେକ ପୃଷ୍ଠାର ପ୍ରତିଟି ଅକ୍ଷର ଭିତରେ ସ୍ପଷ୍ଟ ହୋଇଛନ୍ତି, ଉଜ୍ଜ୍ୱଳ ହୋଇ ଉଠୁଛନ୍ତି ।

ଭାଷା ଓ ଭାବର ଚରମ ସମନ୍ୱୟ ଅପୂର୍ବ ମିଳନ ସଂଗୀତରେ ଧ୍ୱନିମୟ ହୋଇ ଉଠିଛି ।

କବି—

କି ପ୍ରେମାଞ୍ଜନର ସ୍ୱାଦ ଏଇ ନାମଟିରେ ! କି ଅପୂର୍ବ ପୁଲକ ସେଇ କାବ୍ୟକ ସାନ୍ନିଧରେ । ଜୀବନର ପରିପୂର୍ଣ୍ଣତା ସେଇଠି—ଯେଉଁଠି ରହିଛି ଏହି ସ୍ୱର୍ଗୀୟ ସହାବସ୍ଥାନର ମାଧୁର୍ଯ୍ୟ । କାବେରୀର ମାନସ-

ମୁକୁରରେ ଏକ ଉଦାସ ଗମ୍ଭୀର ଚିନ୍ତାଶୀଳ ମୁଖ-ମଣ୍ଡଳ ପ୍ରତିବିମ୍ବିତ ହୋଇ ଉଠିଲା । ସେ ମୁଖମଣ୍ଡଳ ଘାପଙ୍କରଙ୍କର ।

ପିଲାଟି ବନରୁ ଯେଉଁ କବିତା ଅନୁରାଗ କାବେରୀ ଭିତରେ ରହିଆସିଛି, ତାହା ବର୍ଦ୍ଧିଷ୍ଣୁ ଉତ୍ତାପ ନେଇ ଏବେ ବି ଜୀବନ୍ତ । ଯେଉଁ ବର୍ଣ୍ଣମୟ କଳ୍ପନା ସେ କରିଆସିଛି କବିକୁ ନେଇ ଓ ତା'ର କାବ୍ୟକୁ ନେଇ— ତାହା କଳ୍ପନାକୁ ଦେଖି ଚଞ୍ଚଳ ଓ ଅଥୟ ହୋଇଛି ।

ସୌନ୍ଦର୍ଯ୍ୟମୟୀ ତା'ର ବଡ଼ ଭଉଣୀର ଓଠରେ ହସ ଦେଖି ସେ ବିଚଳିତ ହୋଇ ଉଠିଛି । ସେଇ ହସରେ ଯେମିତି ଅବଜ୍ଞା ପୂର୍ଣ୍ଣ ହୋଇ ରହିଛି, ଗୌରବ ବୋଧର ପୂର୍ଣ୍ଣ ଆଭାସ ତା' ପ୍ରତିଟି କଥାରେ ସ୍ପଷ୍ଟ ହୋଇ ଉଠିଛି ।

ହଠାତ୍—କାବେରୀର ମନେପଡ଼େ—କଥାବାର୍ତ୍ତା ହେଉ ହେଉ ସେ ପ୍ରଶ୍ନ କରିଥିଲା, ଘାପୁଭାଇ କ'ଣ କରୁଛନ୍ତି ?

ଓଠରେ ବିରକ୍ତିର କୁଞ୍ଚନ ସୃଷ୍ଟି କରି କଳ୍ପନା ପ୍ରତ୍ୟୁତ୍ତର ଦେଲା—ତାଙ୍କ କଥା କ'ଣ ମୋତେ ଜଣା ନାହିଁ । ସେପଟେ ଘରେ ବସି କବିତା ଲେଖା ଚାଲିଛି । କି ଅଦ୍ଭୁତ ମଣିଷ—କଣ ସାହିତ୍ୟ ଛଡ଼ା ପୃଥିବୀରେ ଆଉ କିଛି ନାହିଁ । ମୋର ମଥାପିଟି ଦେବାକୁ ମନେ ହୁଏ ।

କଳ୍ପନା କଣ୍ଠରେ ହତାଶା ଓ ଅନୁଯୋଗର ଧ୍ୱନି । କିନ୍ତୁ ତାହାର ଅନ୍ତରାଳରେ ଯେ ଗର୍ବ ଓ ଗୌରବ ପ୍ରଚ୍ଛନ୍ନୀଭୂତ ହୋଇ ରହିଛି, ସେ କଥା କାବେରୀ ସ୍ପଷ୍ଟ ଅନୁଭବ କରିପାରେ । ସେ ଦେଖେ ନୈରାଶ୍ୟର କାଳିମା ବଦଳରେ ପରିପୂର୍ଣ୍ଣତାର ଦୀପ୍ତି କଳ୍ପନା ମୁଖମଣ୍ଡଳରେ ଝଲସି ଉଠେ ।

କଣ୍ଟକିତ ବେଦନା କାବେରୀକୁ ଅସ୍ଥିର କରିଦିଏ ।

କବି ପତ୍ନୀର ଗୌରବ ସମ୍ମୁଖରେ ନିଜର ଭୂଲୁଣ୍ଠିତ ସମ୍ମାନକୁ ତୁଳନା କରି କାବେରୀ ଅନ୍ୟ-ମନସ୍କା ହୋଇଉଠେ ।

ଜୀବନରେ କିଛି କଣ ରୋମାନସ୍ ନାହିଁ ? ଖାଲି ଅଫିସ୍, ଟୁର୍ ଓ ମିଟିଂ ଛଡ଼ା କବିତା, କଳା, ସଂସ୍କୃତି କିଛି ନାହିଁ ? କେବଳ ଅର୍ଥ ଓ ବେଶ ପୋଷାକର ପ୍ରାଚୁର୍ଯ୍ୟ ଜୀବନର ପ୍ରାଚୁର୍ଯ୍ୟକୁ ସମୃଦ୍ଧି କରିବ ?

ଜଣେ ଦାୟିତ୍ୱ ସମ୍ପନ୍ନ ଅଫିସରଙ୍କ ଗାମ୍ଭୀର୍ଯ୍ୟ ନେଇ ସ୍ୱାମୀ ଉପସ୍ଥିତ ହୁଅନ୍ତି । ହାତରେ ଶାଢ଼ୀ ଓ ନୂଆ ଗଢ଼ଣର ଗହଣା ।

କାବେରୀ—ଶୀଘ୍ର ପିନ୍ଧିନିଅ—ଟିପାର୍ଟି, ଟାଇମ୍ ହୋଇଗଲାଣି ।

ଏକ ଅବ୍ୟକ୍ତ ପ୍ରତିବାଦ କାବେରୀ ଭିତରେ ମୁକ୍ତିର ଦ୍ୱାର ଅନ୍ୱେଷଣ କଲା । ମୁଁ ଯାଇପାରିବି ନି— ଏତିକ କହିବାର ସାହସ ଶକ୍ତି କିମ୍ବା ସମୟ କାବେରୀ ପାଇପାରିଲା ନାହିଁ । ବାଧହୋଇ ପିନ୍ଧିଲା ।

ଜଣେ ମଣିଷ ହୃଦୟ ଯେ କେତେ ଶୁଷ୍କ ଓ ସ୍ୱାର୍ଥ ହୋଇପାରେ ତାହା କାବେରୀର ଅଭିଜ୍ଞତା କହିବ—

ହଠାତ୍ ଘାପଙ୍କରଙ୍କର ଗୋଟିଏ କବିତା ପାଠକରି ଆତ୍ମବିସ୍ମୃତ ହୋଇ ଉଠିଥିଲା କାବେରୀ । ଆତ୍ମବିସ୍ମୃତ ନିଶ୍ଚୟ—ନ ହେଲେ କି ସେ ସୁବୋଧଙ୍କୁ ଯାଇ କହିଥାନ୍ତା--

ଶୁଣୁଚ, ଗୋଟାଏ କବିତା ଲେଖି ମୋତେ ଦେଇ ପାରିବ ?

ଜରୁରୀ ଫାଇଲର ଅରଣ୍ୟ ଭିତରେ ହୁଏତ ସୁବୋଧ ଭାବିଲେ କିଛି ଭୁଲ ଶୁଣିଛନ୍ତି । ତେଣୁ ମଥା-ଟେକି ଚାହିଁଲେ ।

କାବେରୀ ସେ ଯାଏଁ ଆତ୍ମଗତ ନ ଥିଲା ନିଶ୍ଚୟ । ତେଣୁ କହିଲା—ତୁମେ ମୋ ଲାଗି ଗୋଟାଏ କବିତା ଲେଖିଦେଇ ପାରିବ, ଠିକ୍ ଏଇମିତି । ତା' ହାତରେ ଘାପଙ୍କରଙ୍କର ସଦ୍ୟମୁକ୍ତ କବିତା ଗ୍ରନ୍ଥ ।

ସ୍ୱାମୀ ଥରେ ଚାହିଁଲେ ବହିଟିକୁ ଓ ଥରେ ସ୍ତ୍ରୀକୁ । କ୍ଷଣିକପାଇଁ ମାତ୍ର ଦୃଷ୍ଟି ବିନିମୟ ହେଲା ।

ଯେଉଁ ଅସହାୟ ଭ୍ରାନ୍ତିର ସ୍ପର୍ଶରେ କାବେରୀ ଏ ଯାଏଁ ଅଭିଭୂତସ୍ଥ ଥିଲା, ତାହା ଏହି ମୁହୂର୍ତ୍ତକର ସ୍ଥିରଚକ୍ଷୁରେ ଦୂର ହୋଇଗଲା ।

ଏଥିରେ ଲଜ୍ଜା କରିବାର ଅନେକ କିଛି କାରଣ ପାଇଥିଲା କାବେରୀ—

କାବେରୀ ମନ ଭିତରେ ଦେଖି ପାରିଲା ତାହାର ବଡ଼ ଭଉଣୀର ସେହି ଗର୍ବୋଦ୍ଧତ ଚାହାଣୀ, ଯେଉଁ ଚାହାଣୀର ପ୍ରତ୍ୟୁତ୍ତର ଦେବାପାଇଁ ସେ ସଂପୂର୍ଣ୍ଣ ଅସମର୍ଥ । ସେହି ଚାହାଣୀ ଭିତରେ ନିଜର ନିଃସ୍ୱତା ଉଦ୍‌ଘାଟନ କରି କାବେରୀ ଅଶ୍ରୁ ସଜଳ ହୋଇ ଉଠିଲା । ଜୀବନରେ ସେ କ'ଣ ପାଇଛି ! ଯାହା ପାଇଛି ତାହା ପରାଜୟର ଗ୍ଲାନି । ମରୁଭୂମିର ମଧ୍ୟାହ୍ନ-ତୃଷାରେ କାବେରୀ ଆକୁଳ ହୋଇ ଉଠିଲା ।

— ୩ —

ଦୁଇ ଭଉଣୀଙ୍କର ଅନେକ ଦିନର ବ୍ୟବଧାନ ପରେ ହଠାତ୍ ସାକ୍ଷାତ ହେଲା । କାବେରୀ ଉଚ୍ଛ୍ୱସିତ କଣ୍ଠରେ ଅପାକୁ ସମ୍ବର୍ଦ୍ଧନା ଜଣାଇଲା, ଅପା—ଆଜି ରେଡ଼ିଓରୁ ଶୁଣିଲି ଧାପୁଧାଇଙ୍କର 'କବିତା—ଦୁଇ ବେଦନାର' ଏକାଡେମୀ ପୁରସ୍କାର ପାଇଛି । ଆଃ—ସତରେ ସେଇ ବହିଟା ପୁରସ୍କାର ପାଇବାର ଯୋଗ୍ୟ—ଅନେକ ପୂର୍ବରୁ ମୁଁ ଆଶା କରୁଥିଲି ।

କଳ୍ପନା ସାମାନ୍ୟକାଳ ଇତସ୍ତତଃ କଲା, କ'ଣ କହିବ ଭାବି ପାରିଲା ନାହିଁ ।

କିଛି କହିବାର ଉଦ୍ଦେଶ୍ୟନେଇ ଏକ ସମୟରେ ତା' ତୁଣ୍ଡରୁ ବାହାରିଲା—ସୁବୋଧବାବୁଙ୍କର କୁଆଡ଼େ ପ୍ରମୋସନ ହେଉଛି ବୋଲି ସେ ମୋତେ କାଲି କହୁଥିଲେ !

କିନ୍ତୁ ଏହା କହିସାରି କଳ୍ପନା ବୋଧକଲା, ଯେମିତି କଥାବାର୍ତ୍ତାର ଗତି କେମିତି ବକ୍ରୀହୋଇ ଉଠିଛି । ନିହାତି ଅସଂଲଗ୍ନ ଦୁଇଟି ବିଷୟର ଏକତ୍ର ସନ୍ନିବେଶ ଯେମିତି ବେଖାପ ଲାଗିଲା । ତେଣୁ କିଛିଟା ଭ୍ରମ ସଂଶୋଧନ କରିବା ପରି ସେ ମନ୍ତବ୍ୟ ଦେଲା, 'ବଡ଼ ଖୁସିର କଥା ।' କାବେରୀର ଓଷ୍ଠ ପ୍ରକମ୍ପିତ ହେଲା । ଏହାର କ'ଣ ଉତ୍ତର ସେ ଦେବ !

କାବେରୀ ଉତ୍ତର ଦେଲା—କିନ୍ତୁ ସେ ଉତ୍ତରର ଜ୍ୱାଳା ଅସହ୍ୟ—

ମାନେ ! ତୁ ମତେ ଉପହାସ କରୁଛୁ ! କିନ୍ତୁ ଏକାଡ଼େମୀ ପ୍ରାଇଜ୍‌ଟାର ମୂଲ୍ୟ ଏମିତି ବେଶୀକିଛି ନୁହେଁ ।

କାବେରୀର କଥା ଶୁଣି କଳ୍ପନା ସ୍ତବ୍ଧ ହୋଇଗଲା । ମୁଠାଏ ଜଳନ୍ତା ଅଙ୍ଗାର ଯେମିତି କିଏ ତା' ଉପରକୁ ଫିଙ୍ଗିଦେଲା ।

କାବେରୀ ? ଏ କଥା ତାକୁ କାବେରୀ କହିଲା ? କଳ୍ପନାର ମସ୍ତିଷ୍କରେ ଶତ ବୃଶ୍ଚିକର ଦଂଶନ । ଲାଭା ସ୍ରୋତର ଉତ୍ତପ୍ତତା ଯେମିତି ତା' ଶିରା ପ୍ରଶିରାରେ ବ୍ୟାପିଗଲା— ଆଉ ଜଣେ ଡେପୁଟି ମେଜେଷ୍ଟ୍ରାଣୀ ହେବାଟା ? ସେ ବୋଧହୁଏ ଏକ ମହାନ୍ ସାଫଲ୍ୟ ?

କଳ୍ପନା ଏକଥା କାବେରୀକୁ କହିଲା, ସେ କଥା ସେ ନିଜେ ବି ଜାଣିପାରିଲା ନାହିଁ ।

ଶରାହତ ଏକ ହରିଣୀର ଯନ୍ତ୍ରଣା କାବେରୀ ମୁଖରେ ମୁକୁଳିତ ହୋଇ ଉଠିଲା । ସେ ଉଠିପଡ଼ିଲା—ପରାସ୍ତ ସଂଗ୍ରାମୀର କ୍ରୋଧରେ ଉଦ୍ଦୀପ୍ତ ହୋଇ ।

ସେ ଆସ୍ତେ ଆସ୍ତେ କକ୍ଷତ୍ୟାଗ କରି ବାରଣ୍ଡାରେ ପାଦଦେଲା । ତା' ପଛେ ପଛେ କଳ୍ପନା—ସେ ମଧ୍ୟ ମୂକ ପାଲଟି ଯାଇଛି ।

କେହି ଜଣେ ଦୂରରୁ ଧାଇଁ ଆସୁଛି—

ସୁବୋଧ ବାବୁଙ୍କ ଅର୍ଡ଼ର୍ଲି—ସେମାନେ ଚିହ୍ନିଲେ— ଊର୍ଦ୍ଧ୍ୱଶ୍ୱାସ ହୋଇ ସେ ସେମାନଙ୍କ ନିକଟରେ ଉପସ୍ଥିତ ହେଲା—ଅଣନିଶ୍ୱାସୀ ହୋଇ କହିଲା—

ଯାହା କହିଲି ସେଥିରେ ଦୁଇ ଭଉଣୀଙ୍କର ମଥା ଘୂରିଗଲା ।

ସୁବୋଧ ଓ ଗୀତଙ୍କର ଆହତ ଅବସ୍ଥାରେ ଡାକ୍ତରଖାନାରେ । ଦୁହେଁ କାର୍‌ରେ ଆସୁ ଆସୁ ଧକ୍‌କା ଲାଗିଛି । ସେମାନେ ଆହତ, ଅଚେତନ—

ଦୁଇଭଉଣୀ ଉଚ୍ଚ ସ୍ୱରରେ ଚିତ୍କାର କରି ଉଠିଲେ । ଦୁହିଁଙ୍କ ଚକ୍ଷୁରେ ଅଶ୍ରୁର ବନ୍ୟା—ପରସ୍ପରଙ୍କୁ ଆଲିଙ୍ଗନ କରି ସେମାନେ ହୃଦୟ ବିଦାରକ ବିଳାପ କରି ଉଠିଲେ ।

ଡାକ୍ତରଖାନା ଯିବା ରାସ୍ତାରେ କାବେରୀ ଅଶ୍ରୁ-ସ୍ନାତ ହୋଇ ବଡ଼ ଭଉଣୀର ହାତଧରି ପକାଇଲା—ଅପା ! ସେଇ ଆବେଗ ଭିତରେ ସତେ ଯେମିତି ଏଇ ଅନୁରୋଧ ପରିସ୍ଫୁଟ ହେଲା, 'ଅପା' ତୁ ମତେ କ୍ଷମାକର ।'

ନିଜ ଅଶ୍ରୁ ଉଚ୍ଛ୍ୱାସକୁ ଦମନ କରି କଳ୍ପନା କହିଲା—ପାଗଳୀ ଭଉଣୀଟା ମୋର !

ଏଇ କଥା ପଦକରେ ବହୁଦିନର ସ୍ତୂପୀଭୂତ ଦୁଃସ୍ୱପ୍ନ ବାଷ୍ପୀଭୂତ ହୋଇଗଲା ।

ପ୍ରତିଷ୍ଠା ନୁହେଁ, ପଦ ମର୍ଯ୍ୟାଦା ନୁହେଁ—ସେଇ ଏକ ନିର୍ଦ୍ଦିଷ୍ଟ ବସ୍ତୁ ପ୍ରତ୍ୟେକ ନାରୀ ନିଜ ସ୍ୱାମୀଠାରୁ ପାଇବାକୁ ଚାହେଁ । ଯାହାର ପ୍ରାପ୍ତି ସେମାନଙ୍କ ସୀମନ୍ତରେ ଉଦ୍‌ଭାସିତ, ଯାହାର ଔଜ୍ଜ୍ୱଲ୍ୟ ସେମାନଙ୍କ ହାତର କାଚ ଓ ଗଳାର ହାରରେ ପ୍ରତିଫଳିତ, ତାହାର ସଂଜ୍ଞା କ'ଣ; ସେ କଥା ପ୍ରତ୍ୟେକ ନାରୀ ଜାଣେ । ଏଇ ଦୁଇ ନାରୀ ତାହାରି ଆଶାରେ ଛୁଟିଛନ୍ତି; ତାଙ୍କ ଆଖି ଲୁହଧାରରେ ସେଇ ପବିତ୍ର ବସ୍ତୁ ଉପରେ ଜମି ଯାଇଥିବା ଆବର୍ଜନା ଧୋଇହୋଇ ଯାଉଛି । ତେଣୁ ସେମାନେ ମନଭରି ଅଶ୍ରୁ ତର୍ପଣ କରନ୍ତୁ— ।

—*—

# ଆକାଶବାଣୀ, ଖବର ପଢ଼ୁଛନ୍ତି........

**ଶ୍ରୀ ବଳରାମ ରାଉତ, ଓ. ଏ. ଏସ୍.**

ଘରେ ପାଦ ଦେଉଁ ଦେଉଁ ଜୀବନାନନ୍ଦଙ୍କର ମନେହେଲା ଘରଟା କେମିତି ଜୀବନ୍ତ ହୋଇ ଉଠିଛି । ସବୁଦିନ ପରି ଗୃହିଣୀ ମଇଳା ଶାଢ଼ୀ ଖଣ୍ଡେ ପିନ୍ଧି ଗୃହ କର୍ମରେ ବ୍ୟସ୍ତ ନୁହଁନ୍ତି । ସେ ବୋଧହୁଏ ଆଜି ତାଙ୍କରି ପ୍ରତୀକ୍ଷାରେ ଦାଣ୍ଡ ବାରଣ୍ଡାରେ ଟହଲୁଥିଲେ । ଅବଶ୍ୟ ଗେଟ୍ ଖୋଲି ତାଙ୍କୁ ଭିତରେ ପଶିବାର ଦେଖୁ ଦେଖୁ ଟିକିଏ ଲାଜରା ହୋଇ ଘର ଭିତରେ ପଶିଗଲେ; କିନ୍ତୁ ଦାଣ୍ଡପଟ ବାରଣ୍ଡାରୁ ତାଙ୍କର ଏ ଆକସ୍ମିକ ଅନ୍ତର୍ଦ୍ଧାନ ଆଉ ତାଙ୍କର ଧୋବ ଫର ଫର ସମ୍ବଲପୁରୀ ଶାଢ଼ୀଟା ଜୀବନାନନ୍ଦଙ୍କ ଦୃଷ୍ଟି ଏଡ଼ାଇ ଦେଇପାରି ନ ଥିଲା ।

ମୁହଁ ହାତ ଧୋଇ ଇଜି ଚେୟାରଟା ଉପରେ ବସୁ ବସୁ ଗୃହିଣୀ ବେଶ୍ ଗରମ ବାଂପୁଳିଆ ଚା' କପେ ହାତକୁ ବଢ଼ାଇ ଦେଲେ । ସବୁଦିନ ପରି ସେଦିନ ଆଉ ତାଙ୍କୁ ଚିତ୍କାର କରିବାକୁ ପଡ଼ିଲା ନାହିଁ ।

( ଅରେ କିଏ ଅଛରେ ? ମୁଁ ଫେରି ଆସିଲିଣି ଅଫିସରୁ । କ'ଣ ଚା' ଟା କପେ ମିଳିବ ? ହଇହୋ ତୁମକୁ ଶୁଭୁଛି ନା ! ଝିଅଟା କୁଆଡ଼େ ଗଲା ? କ'ଣ ଚା' ଟିକିଏ କରିବ ନାହିଁ ? ଲୁଗାଗୁଡ଼ାକ ପଛରେ କାଚିବ । ଆଗେ ଚା' କପେ ଦିଅ, ମୁଣ୍ଡ ଖରାପ ହୋଇ ଗଲାଣି ) ଚା' କପଟା ପାଟି ପାଖକୁ ନେଉ ନେଉ ଗୃହିଣୀ ଟିକିଏ ପାଖକୁ ଲାଗି ଛିଡ଼ାହେଲେ । ( କ'ଣ ଗେହ୍ଲା ହେବେ ନା କ'ଣ ? ! ଭାଗ୍ୟକୁ ପିଲାଗୁଡ଼ାକ କେଉଁଠି ବାହାରେ ଖେଳୁଛନ୍ତି । ନ ହେଲେ ଏଡ଼େ ବଡ଼ ବଡ଼ ପିଲା କ'ଣ ଭାବନ୍ତେ ! ଛି ମାଇପିଟା ବୁଦ୍ଧି ଅକଲ ପୋଡ଼ି ଖାଇଲା ! ) ଜୀବନାନନ୍ଦ ପ୍ରମାଦ ଗଣିଲେ । ଗୃହିଣୀଙ୍କର ଯେଉଁଦିନ ଖର୍ଚ୍ଚ ପାଇଁ ଟଙ୍କା ଦରକାର ଥାଏ, ସେଦିନ ସେ ଏମିତି ଗେହ୍ଲେଇ ହୁଅନ୍ତି ।

କଣ କିଛି ବରାଦ ହେବ କି ? ଶାଢ଼ୀ, ବ୍ଲାଉଜ ନା ଗ୍ରେଟ ମୋଟ ଗୋଟେ ଗହଣା ? ଡାଲି କି ଚାଉଳ ଘରୁ ସରିଗଲା କି ? ନା ଆଜି ହାଟପାଳି ପରିବାପତ୍ର ଆସିବାର ଅଛି ? ଗୃହିଣୀଙ୍କର ମାଛ ଖାଇବାକୁ ମନ ହେଲାଣି କି ? ! ନା ପିଲାମାନଙ୍କ ପାଇଁ ବହି କିମ୍ବା କାଗଜ ଦରକାର ।

ଆଜି କେତେ ତାରିଖ କ'ଣ ବାଇଶି ତାରିଖ । ତା' ହେଲେ ତ ସର୍ବନାଶ । ବାକ୍ସଟାରେ ତ ଆଉ ପଇସା ନ ଥିବ !

ଜୀବନାନନ୍ଦ ଗୃହିଣୀଙ୍କ ମୁହଁକୁ ଚାହିଁଲେ । ସେ ମୁରୁକି ମୁରୁକି ହସୁଛନ୍ତି । କିଛି ଅଘଟନ ଘଟିଲା କି ? ( ଅଘଟନ ନୁହେଁ ତ ଆଉ କଅଣ ? ପିଲାପିଲି ହେବାର ଥିଲେ ସେ ଏମିତି ମୁରୁକି ମୁରୁକି ଗେହ୍ଲଣିଆ ହସ ହସନ୍ତି । ତାହାହେଲେ ତ ମୁଁ ସରିଗଲି । ସମୁଦ୍ରେ ଶୟନଂ ତଥା ! )

ଜୀବନାନନ୍ଦଙ୍କ ଭାବନାରେ ବାଧାଦେଇ ଗୃହିଣୀ କଅଁଳେଇ କହିଲେ ଛି ମୁଁ ଆଉ ଏମିତି ଧୂଆଁରେ ବସି ବସି କେତେଦିନ ରାନ୍ଧିବି ? ନିତି ଚୁଲି ଫୁଙ୍କି ଫୁଙ୍କି ଦିକ୍‌ଦାର ହେଲିଣି । ଆଖି ଦିଟାରୁ ପାଣି ଗଡ଼ି ଗଡ଼ି ଜଳକା ଦିଶିଲାଣି ।

ଗୃହିଣୀ ତା'ହେଲେ କ'ଣ ପୂଜାରୀ ରଖିବାକୁ କହୁଛନ୍ତି— ଜୀବନାନନ୍ଦ ଭାବିଲେ । କାହିଁ ନା ତ । ସେମିତି ସେ କେବେ କହନ୍ତି ନାହିଁ । ସେ ଜାଣନ୍ତି ତାଙ୍କର ସ୍ୱଳ୍ପ ବେତନର କ୍ଷୁଦ୍ର ପରିସର ଭିତରେ ଜଣେ ପୂଜାରୀର ଅନ୍ନ ସଂସ୍ଥାନ ଆଉ ବେତନର ଖର୍ଚ୍ଚ ସ୍ଥାନ ପାଇ ପାରିବ ନାହିଁ ।

ଗୃହିଣୀ ପୁଣି ଆରମ୍ଭ କଲେ ( ଏଥର ଆଉ ଟିକିଏ ଗେହ୍ଲେଇ ହୋଇ ) ଦେଖ ଜଣେ କାହାକୁ ନ ରଖିଲେ ମୁଁ ଆଉ ଚଳେଇ ପାରିବ ନାହିଁ ।

ଜୀବନାନନ୍ଦ ବଲ ବଲ କରି ତାଙ୍କ ମୁହଁକୁ ଚାହିଁଲେ, ସତେ ତ । ସେ କ'ଣ ପୂଜାଟା ରଖିବାକୁ କହୁଛନ୍ତି । ନଚେତ୍ ସଚ୍ଚାରଣ୍ଡ କମ୍-କୁକ୍ ।

କି ଗୋ ମୋ ଆଡ଼କୁ ଏମିତି ବଲ ବଲ କରି ଚାହିଁ ରହିଲ କାହିଁକି ? ( ଗୃହିଣୀ ଖୁସିଲେ କି ଜୀବନାନନ୍ଦ ତାଙ୍କର ଏଇ ଉତ୍ତର ଚାଳିଶ ବୟସରେ ବିଗତ ଯୌବନା ସହଧର୍ମିଣୀଙ୍କୁ ସତୃଷ୍ଣ ନୟନରେ ଦେଖୁଛନ୍ତି )—

—କାହିଁକି ଆମେ କ'ଣ ପୂଜାଟା କି ଚାକରଟେ ରଖି ପାରିବା ନାହିଁ ?

ଜୀବନାନନ୍ଦଙ୍କର ଆସ୍ତର ଭାଆସ ଘର କେଉଁଦିନ ଇଟା ପଥରରେ ଗଢ଼ାହୋଇ ଚାଲେଇ ଗୁଡ଼ ହେଲା, ସେ ବୁଝିପାରୁ ନ ଥିଲେ । କ'ଣ ଗୃହିଣୀ କେଉଁଠି କିଛି ପୋତାମାଲ ହାତ୍ରୁଡ଼ଲେ କି ଆଉ ! ବାଡ଼ି ବଗିଚାରେ ଭେଣ୍ଡି କି ଜହ୍ନି ମଲା ଖୋଳୁ ଖୋଳୁ କିଛି ମାଲ ମିଳିଗଲା କି ? କିଏ କହି ପାରିବ ? ଏ ତ ଐତିହାସିକ ଜାଗା । ଆଗ କାଳରେ ଏଇଠି କେତେ ବଡ଼ ବଡ଼ ରାଜାଙ୍କ ରାଜଧାନୀ ଥିଲା । ତା' ହୁଏ ତ ହୋଇଥିବ !

ଗୃହିଣୀ ଜୀବନାନନ୍ଦଙ୍କୁ ଅନ୍ୟମନସ୍କ ଥିବାର ଦେଖି କହିଲେ, କହୋ କ'ଣ ଚିନ୍ତାକରି ବସିଲ ? ଆମର ଅଉ ଚିନ୍ତା କ'ଣ, ଯାହାତ ଦରମା ମିଳୁଥିଲା ସେଥିରେ ଆମେ ଦୁଃଖେ ସୁଖେ ଚଳି ଯାଉଥିଲେ । ଏବେ ଯାହା ଅଧିକ ମିଳିବ ସେଥିରେ ଗୋଟିଏ ପୂଜାଟା କି ଚାକର ରଖିଲେ ହେବନାହିଁ ?

ଅଧିକ ଆଉ କ'ଣ ମିଳିବ ଜୀବନାନନ୍ଦ ବୁଝିପାରୁ ନ ଥିଲେ । ଗୃହିଣୀ ତାଗିଦ୍ କରି କହିଲେ କହୋ ତଥାପି ମୋ କଥା ବୁଝି ପାରୁନା । ତୁମେ ତ ସରକାର ଘରେ କାମ କରୁଛ ସରକାରଙ୍କ ଖବର କିଛି ରଖନା କେମିତ ? କୁଆଡ଼େ ପରା ତୁମର ଦରମା ବଢ଼ୁଛି । ସତେମ କେତେ ବଢ଼ିବ ? ଏଥର ଟିକିଏ ବେଶୀ ବଢ଼ୁଛି ତ ? ସରକାର କ'ଣ ଆମ ଦୁଃଖ ବୁଝୁ ନାହାନ୍ତି । ଆମ ଅବସ୍ଥା ଜାଣୁ ନାହାନ୍ତି । ସବୁତ ମହଙ୍ଗା ହେଲା । ସେଥିପାଇଁ କର୍ମଚାରୀଙ୍କ ଦୁଃଖ ବୁଝି ସରକାର ଦରମା ବଢ଼େଇ ଦେଲେ । ସତେ କ'ଣ ମୋ ଦୁଃଖ ଯିବ । ଆଉ ଧୂଆଁ ପାଖରେ ବସି ବସି କେତେ କଷ୍ଟ ପାଇବ ?

ଜୀବନାନନ୍ଦ ତଥାପି ନୀରବ ରହିଲେ ।

ଗୃହିଣୀ ପୁଣି ଆରମ୍ଭ କଲେ ଆଜି ପରା ରେଡ଼ିଓ କହୁଥିଲା ସବୁ କର୍ମଚାରୀଙ୍କର ଦରମା ବଢ଼ିବ । ମୋତେ କାହିଁକି ଲୁଚଉଛ । ମୁଁ ତୁମର କ'ଣ ଉଜାଡ଼ି ଦେଉଛି କି ? ବାଜେ ଖରଚ କରି ଉଡ଼େଇ ଦେଉଛି ନା ଆଉ କୋଉ ମାଇକିନା ପରି ଲଡ଼ୁ ଜିଲପି ଖାଇ ପଇସା ଖର୍ଚ୍ଚ କରି ଦେଉଛି । ସେଇ ଦୁଇଓଳି ଦୁଇମୁଠା । ପେଟକୁ ଟିକେ ଦେହକୁ ଖଣ୍ଡେ ।

ଜୀବନାନନ୍ଦ ଲକ୍ଷ୍ୟକଲେ ଗୃହିଣୀଙ୍କ ସ୍ୱରରେ ଅଭିମାନ ଭରି ରହିଛି ।

ସେ ଏତେବେଳେ ବୁଝିଲେ ଗୃହିଣୀଙ୍କ କଥା । ଦରମା ବଢ଼ିବା କଥା ସେ ତ ଆଜି ଶୁଣି ନାହାନ୍ତି । ଶୁଣିବାକୁ ବା ତର କାହିଁ ?

ସେ ତ ବଡ଼ବାବୁ । ଗଦା ଗଦା ଫାଇଲ । ଦୁନିଆଁ ଯାକର କାମ । ସମସ୍ତଙ୍କ ଅଡ଼ୁଆ ସେ ସହିବେ । କେଉଁଠି ଟିକିଏ ଭୁଲ ଭାଟକ ହେଲେ ଅଫିସର ତାଙ୍କୁ ଧରିବେ । କ'ଣ ଜୀବନାନନ୍ଦ-ବାବୁ ? ଆପଣଙ୍କ ପରି ଜଣେ ଦକ୍ଷ ଲୋକ ଥାଉଁ ଥାଉଁ ଏଡ଼େ ବଡ ଭୁଲଟାଏ ହୋଇଗଲା ?

ସାନବାବୁମାନେ କହିବେ—ଆଜ୍ଞା ଅମେ କ'ଣ ଜାଣୁ । ଆମେ ସବୁ ତ ପିଲା ଆମର କି ଦକ୍ଷତା ଅଛି ? ଆପଣ ଆମକୁ ଯେମିତି ଗାଇଡ଼୍ କରିବେ ଅମେ ସେମିତି ଲେଖିବୁ ।

ଖଣ୍ଡିଖାଣ୍ଡି ଫାଇଲ୍ ଦେଖୁ ଦେଖୁ ବେଳ ଯାଉଛି । ଚଷମା କାଚଟା ବର୍ଷକୁ ବର୍ଷ ମୋଟା ହେଉଛି ।

ହସି ହସି ଘର ଭିତରକୁ ପଶି ଆସିଲା ବଡ଼ଝିଅ ବନିତା—ଦେଖ ବାପା ଆର ମାସଠାରୁ ମୁଁ ଆଉ ଏମିତି ଶସ୍ତା ଶାଢ଼ୀ ପିନ୍ଧି କଲେଜ ଯିବିନି । ସାଙ୍ଗ ଝିଅମାନେ କେତେ କେତେ ଦାମିକା ଶାଢ଼ୀ ପିନ୍ଧି ଆସୁଛନ୍ତି । ମୋତେ ଖାଲି ଲାଜ ମାଡ଼ୁଛି । —ବାପା ମ, ଏଥର ଆଉ କି ଚିନ୍ତା । ତମର ତ ଦରମା ବଢ଼ିଲା । ଆର ମାସକୁ ଭଲ ଶାଢ଼ୀ ଖଣ୍ଡେ କିଣି-ଦେବ । ଏକାଦଶ ଶ୍ରେଣୀ ଛାତ୍ର ପୁଅ ରାଜୀବ ଆସି ଜୀବନାନନ୍ଦଙ୍କ ପାଖରେ ଛିଡ଼ାହେଲା । ବନିତାର କଥା ସରୁ ସରୁ ରାଗି ଉଠିଲା—ନା ବାପା ଶାଢ଼ୀ କଥା ହୋଇ ପାରିବ ନାହିଁ । ଏଡ଼େ ସଉକ କାହିଁକି ? ମୋର ଏଥର ପରୀକ୍ଷା । ଅଙ୍କରେ ମୁଁ ଟିକିଏ ଦୁର୍ବଳ ଅଛି । ବଢ଼ା ଦରମାରେ ମୁଁ ଟିଉସନ୍ ହେବ ।

ତା' ତଳପୁଅ ଡେଇଁ ଡେଇଁ ଆସୁଥିଲା । ଜୀବନାନନ୍ଦଙ୍କୁ ଦେଖି ଗେହ୍ଲେଇ ହୋଇ କହିଲା—ବାପା ତମର କାଲେ

ଦରମା ବଢ଼ିଛି । ମୋର ଗୋଟେ ଭଲ କଲମ ନ ହେଲେ ଚଳିବ ନାହିଁ । ଶସ୍ତା କଲମଗୁଡ଼ାକ ଶୀଘ୍ର ଖରାପ ହୋଇ ଯାଉଛି ।

ଜୀବନାନନ୍ଦ ସେମିତି ଇଜି ଚେୟାରରେ ବସି ସମସ୍ତଙ୍କ କଥା ଶୁଣୁଥିଲେ । ଆଖିବୁଜି ସେ କେବଳ ଭାବୁଥିଲେ ଦରମା ବଢ଼ିବା କଥା, ଏ ଖବର ଖାଲି ତାଙ୍କ ପରିବାର କାହିଁକି ଏମିତି ସ୍ୱଳ୍ପ ବେତନ ଶ୍ରେଣୀ ପରିବାରମାନଙ୍କରେ ଆଲୋଡ଼ନ ସୃଷ୍ଟି କରିଥିବ । ଆଶାର ବଉଦ ଉଠିଥିବ ଅଭାବ ସଂସାରର ଶୁଷ୍କ ଆକାଶରେ । କିନ୍ତୁ ସେ ଜାଣନ୍ତି ଦରମା ବଢ଼ିବା ଖବର ଚାରିଆଡ଼େ ପ୍ରଚାରିତ ହେଲାପରେ କ'ଣ ହେବ । ବାସନ ମଜାଳୀ (ନଉଆଣୀ, ପାଣିଆଣୀ, କାମଚୁଣୀ) କହିବ ଟଙ୍କାଟେ ଅଧିକ ଦିଅ ବାବୁ ଦରମା ବଢ଼ିଲା । ପରିବା-ବାଲା କେ. ଜି. ପ୍ରତି ପାଞ୍ଚ ପଇସା କି ଦଶପଇସା ବଢ଼େଇବ । ପଚାରିଲେ କୈଫିୟତ ଦେବ ଦରମା ବଢ଼ିଲା । ରିକ୍ସାବାଲା କହିବ—ଚାରଣା ନେବ ନାହିଁ ବାବୁ ଅଧରୁପେୟାଲୁ ଦିଅ ।

ଜୀବନାନନ୍ଦ ଜାଣନ୍ତି ଏ ବଢ଼ା ଦରମା ତାଙ୍କର ଅଭାବ ମେଣ୍ଟାଇ ପାରିବ ନାହିଁ । ତାଙ୍କର ଅଭାବଗ୍ରସ୍ତ ସଂସାରରେ ଅଭାବ ସେମିତି ରହିବ ।

ଦରମା ଆଉ କେତେ ବା ବଢ଼ିବ ? ପାଞ୍ଚ କି ଦଶ ! ତାଙ୍କ ସଂସାର ଚାଲୁଣୀରେ ସହସ୍ର ଛିଦ୍ର । ସେ ଛିଦ୍ରସବୁ କେବେ ବନ୍ଦ ହେବନି । ଖାଲି ମାନସିକ ସନ୍ତୋଷ ହେବ ଦରମା ବଢ଼ିଲା; କିନ୍ତୁ ଆର୍ଥିକମାନ କେବେହେଲେ ବଢ଼ିବ ନାହିଁ ।

କାମରେ ସିନା ବଡ଼ବାବୁ । ସେ ବଡ଼ ନୁହଁନ୍ତି କି ବାବୁ ନୁହଁନ୍ତି !

ନାମରେ ସିନା ଜୀବନାନଂଦ । କିନ୍ତୁ ତାଙ୍କ ଜୀବନଟା ଯେ ଆନଂଦରେ ନ କଟି ନିରାନଂଦରେ କଟୁଛି, ଏ କଥା ଅନ୍ୟ-କେହି ଅନୁଭବ କରି ନ ପାରିଲେ ବି ସେ ନିଜେ ଖୁବ୍ ଅନୁଭବ କରି ସାରିଲେଣି

---



ସବୁବେଳେ ବାମ ଦିଗକୁ ମାଡ଼ି ଚାଲନ୍ତୁ ।

# ॥ ଇନ୍‌ମାଇଲ୍ ॥

ରଘୁନାଥ ମହାପାତ୍ର

ସେଦିନ କଥାକୁ ଡର ଡର ନିରଞ୍ଜନ ଚାଲି ଆସିଥିଲେ ଘରକୋଶ ବାଟ । ସେଥିପାଇଁ କେତେ ଅଭିନୟ କଲେ ଲୋକଙ୍କ ପାଖରେ, ସାଇ ପଡ଼ଶା ପାଖରେ ବନେଇ ଚୂନେଇ ମିଛ ବି କହିଲେ । ସ୍କୁଲର ଛୁଟି ନାହିଁ । ମୁଁ ହେଡ୍ ପଣ୍ଡିତ । ସ୍କୁଲର ଭଲମନ୍ଦ ଦାୟିତ୍ୱ ମୋ' ଉପରେ । କାଲି ସକାଳୁ ଇନସ୍‌ପେକ୍ଟର ଆସି ଦାଉଁକିନ ପହଞ୍ଚି ଯିବ, ଦେଖିବ ସ୍କୁଲରେ ହେଡ୍‌ପଣ୍ଡିତ ନାହିଁ । ସାଙ୍ଗେ ସାଙ୍ଗେ ଲେଖିବ, ଏ ମାଷ୍ଟରକୁ ସସ୍‌ପେଣ୍ଡ୍ କର ନ ହେଲେ ଡିସ୍‌ଚାର୍ଜ କର । ଗାଆଁ ବାଲା ତ ମୋ ଉପରେ ରକ୍ତ ଚକ୍ଷୁ ଦେଖେଇ ହେଉଛନ୍ତି, ଏଇ ମଉକା ପାଇଲେ ଗାଉଁକନା ମାଡ଼ି ବସିବେ । ଇନ୍‌ସ୍‌ପେକ୍ଟର ପାଖରେ ହାତଯୋଡ଼ି କହିବେ "ହଜୁର ସେ ମାଷ୍ଟରକୁ ଶୀଘ୍ର ଏ ଗାଆଁରୁ ବଦଳି କରନ୍ତୁ, ଛୁଆଙ୍କ ଦାନା ମାରିଦେଲା ସେ । ଯେତିକି ପାଉଡ଼ର ଦୁଧ, ଅଟା, ଚୂଡ଼ା, ଚାଉଳ ସବୁନେଇ ବିକ୍ରୀ କରିଦେଉଛି ।" ଇନ୍‌ସ୍‌ପେକ୍ଟର ସାଙ୍ଗେ ସାଙ୍ଗେ ସାକ୍ଷୀ ପ୍ରମାଣ ନେଇ ମତେ ସସ୍‌ପେଣ୍ଡ୍ କରିବ । ନାଁ ନାଁ ମୁଁ କଦାପି ରହିପାରିବି ନାହିଁ......... ।

ସାହିରେ କୁଟୁମ୍ବ ଭିତରେ କେତେଜଣ ମୁରବି-ଲୋକ ସଖିନାମାଙ୍କ ବେମାରଠାରୁ ନିରଞ୍ଜନର ଚାକିରୀ ଉପରେ ବେଶି ଗୁରୁତ୍ୱ ଦେଲେ । ସାତ ବର୍ଷର ଚାକିରୀ କିଛି କମ୍ କଥା ନୁହେଁ !! ସେତିକି ଚାଲିଗଲେ ନିରଞ୍ଜନ କରିବ କ'ଣ ? ନାଁ ନାଁ ସେ ଯାଉ ଦୁଇଦିନ ପରେ ପୁଣି ଫେରି ଆସିବ । ନ ହେଲେ ସଖିନାମାର ଦେହ ଯଦି ସେମିତି ବେଶି ହୁଏ ତା' ହେଲେ ସୁରଞ୍ଜନ ଟେଲିଗ୍ରାମ କରିଦେବ ।

ଆସିଲାବେଳେ ବି ନିରଞ୍ଜନ ସଖିନାମା କଥା ଭାବି ଭାବି ଆସିଥିଲେ । ନାମା ଆଉ ମାସ ଗୋଟାଏ ଠାକ ଯାଆନ୍ତା କି ? ଭଲ ହୁଅନ୍ତା । ପୁଷମାସ ଧାନ ଅମଳ ବେଳ ଶୁଦ୍ଧିକ୍ରିୟା ପାଇଁ ଟଙ୍କାର ଅଭାବ ପଡ଼ନ୍ତା ନାହିଁ । କିନ୍ତୁ ଏବେ ଯଦି ସଖିନାନୀ ଚାଲି-ଯାଏ କ'ଣ କରିବେ କେମିତି ଶୁଦ୍ଧିକ୍ରିୟା ହେବ । ନଗିଡ଼ା କାର୍ତ୍ତିକ ମାସ, ଲୋକଙ୍କ ଘରେ ଦାନା ନାହିଁ ଆମର ବା ଆସିବ କେଉଁଠୁ ? ନାନା ଚିନ୍ତାରେ ବିବ୍ରତ ହୋଇ ନିରଞ୍ଜନ ସେଦିନ ଗାଆଁ ଛାଡ଼ି ଚାଲି ଆସିଥିଲେ ଚାକିରି ଗାଆଁକୁ ।

ଗଲାବେଳେ ସାନଭାଇ ସୁରଞ୍ଜନ ତାଗିଦ୍ କରି କହିଥିଲା ଦେଖଭାଇ ନାମା ଅବସ୍ଥା ଯଦି ଟିକିଏ ଉଦ୍‌ବେଗଜନକ ହୁଏ, ମୁଁ ଟେଲିଗ୍ରାମ କରିବି । ନ ଆସିବ ଯଦି ବାସିମଡ଼ା ଘରେ ପଡ଼ିବ ପଛେ ମୁଁ କିଛି କରି ପାରିବି ନାହିଁ । ନିରଞ୍ଜନ ମୁରବି ପଣିଆ ଦେଖେଇ କହିଲେ ନାଁ ନାଁ ମୁଁ ଟେଲିଗ୍ରାମ ପାଇବା ମାତ୍ରେ ପଳେଇ ଆସିବି, ତୁ ସେଥିରେ ଭୟ କରିବାର କିଛି କାରଣ ନାହିଁ ।

ସକାଳେ ସ୍କୁଲରେ ଗୋଡ଼ ଦେଉଁ ଦେଉଁ ଘଣ୍ଟାରେ ଟେଲିଗ୍ରାମ ପହଞ୍ଚିଲା । "ସଖିନାମାର ଅବସ୍ଥା ସାଂଘାତିକ ଶୀଘ୍ର ଆସ ।" ଟେଲିଗ୍ରାମର ସମ୍ବାଦଟା

ନିରଞ୍ଜନ ପାଇଁ ଯେମିତି ବଜ୍ର, 'ସୁନାଗ' ଗାଆଁରୁ ଛତ୍ରଗଡ଼ରେ ଧାଇଁଆସି ତାଙ୍କ ମୁଣ୍ଡ ଉପରେ କଚ୍ଛଡ଼ ପଡ଼ିଲା ଓଃ କି ଦୁର୍ଯୋଗ !!

ଷ୍ଟେଶନର ଚଷମାଟାକୁ ଆଖିରେ ଦେଇ ନିରଞ୍ଜନ ନିଠେଇ ନିଠେଇ ଟେଲିଗ୍ରାମକୁ ପଢ଼ିବାକୁ ଲାଗିଲେ । ଇଂରାଜୀରେ ଲେଖାଅଛି "ସଖିନାମା ସିରିୟସ କମ୍ ସୁନ୍ ।" ଏହି ସିରିୟସ ଶବ୍ଦଟାକୁ ତର୍ଜମା କଲେ । ଡିକ୍ସିନାରୀ ଖୋଲି ଦେଖିଲେ ତା' ମାନେ ଆଉ କ'ଣ ହୋଇପାରେ ? ଅର୍ଥାତ ଲେଖା ଯାଇଛି ଅତି ଖରାପ, ସାଂଘାତିକ ଇତ୍ୟାଦି । ସଖିନାମାତ ସବୁବେଳେ ଆସନ୍ନ ମୃତ୍ୟୁସଂକଟରେ ପଡ଼ି ଛଟପଟ ହେଉଥିଲା, ପୁଣି ସିରିୟସ କ'ଣ ହେଲା ? ସିରିୟସ ମାନେ ତ ଆଉ ମରଣ ନୁହେଁ ?? ସଖିନାମା ଏବେ ବି ବଞ୍ଚିଛି, ହୁଏତ ପାଟିଫାଟି ପଡ଼ୁଯାଇଛି, ତଣ୍ଟି ଘଡ଼ ଘଡ଼ ହେଉଛି ଏଇଆ ହୋଇ ପାରିଥାଏ । ତା' ଛଡ଼ା ଅଧିକ ଆଉ କ'ଣ ? ସେଥିରେ ଏତେ ତରବର ହୋଇ ଟେଲିଗ୍ରାମ୍‌ଟେ କରିଦେବା କି ଦରକାର ଥିଲା ?

ନିରଞ୍ଜନଙ୍କ ମନ ବୁଝିଲା ନାହିଁ । ନିଜର ସହ-କର୍ମୀ ଅନାଦିବାବୁଙ୍କୁ ଡାକି ଟେଲିଗ୍ରାମ ପଢ଼େଇଲେ । ଅନାଦିବାବୁ ବି ସେଇଆ ପଢ଼ିଲେ ସଖିନାମା ସିରିୟସ୍ କମ୍ ସୁନ୍ ଅର୍ଥାତ୍ ସଖିନାମାର ଅବସ୍ଥା ସାଂଘାତିକ । ଶୀଘ୍ର ଆସ ।

ନିରଞ୍ଜନ ମନେ ମନେ ସୁରଞ୍ଜନ ଉପରେ ମଧ୍ୟ ବିରିଡ଼ିଲେ । ରୋଗରେ ପଡ଼ିବା ମାନେ ତ ସିରିୟସ । ସଖିନାମାର ଅବସ୍ଥା ତ କେଉଁଦିନରୁ ସିରିୟସ, ଅଜ ସେହି କଥାକୁ ଟେଲିଗ୍ରାମ୍‌ରେ ପୁନରାବୃତ୍ତି କରିବାର ମାନେ କ'ଣ ? ସକାଳେ ମୁଁ ଦେଖି ଆସୁ ଆସୁ ସଞ୍ଜବେଳକୁ ଟେଲିଗ୍ରାମ !! ନିରଞ୍ଜନ ଭାବୁ-ଥିଲେ ଏ ସବୁ ମାମୁଲି କଥା । ଟେଲିଗ୍ରାମ୍ ଜଣେ ସେଇ ଭାଷାରେ ଲେଖିବାକୁ ହୁଏ, ତେଣୁ ଗାଆଁକୁ ତରବର ହୋଇ ଫେରିଯିବାର କୌଣସି ଆବଶ୍ୟକତା ନାହିଁ । ଶେଷ ସମ୍ବାଦ ଯେତେବେଳେ ପହଞ୍ଚିବ ସଖିନାମା ସଂସାର ଗୁଡ଼ି ଗୁଡ଼ି ଚାଲିଗଲା, ସେତେବେଳେ ଯାଇ ସେ ଘରେ ପହଞ୍ଚିବେ ।

ନିରଞ୍ଜନ ଗୋଡ଼ହାତ ଧୋଇ ଗୋସେଇ କରିବାକୁ ଚୂଲି ଲଗେଇଛନ୍ତି-ଗୋଟାଏ ପରିଚିତ କଣ୍ଠରୁ ଡାକ ଶୁଭିଲା ନିରବାବୁ...ନିରବାବୁ...

ନିରଞ୍ଜନ ପଦାକୁ ବାହାରି ଆସି ପଚାରିଲେ କିଏ ?

ଅନ୍ଧାର ଭିତରୁ ଉତ୍ତର ମିଳିଲା ମୁଁ ସନିଆ ।

—କ'ଣ ଏତେ ରାତିରେ କୁଆଡ଼େ ?

ବାଷ୍ପରୁଦ୍ଧ କଣ୍ଠରେ ସନିଆ କହିଲା, ସଖିନାମା ଚାଲିଗଲେ । ଠିକ୍ ବେଳ ରତ ରତ ହେଉଛି । ସୂର୍ଯ୍ୟ ଦେବତା ମାଆ କୋଳକୁ ଯାଇ ନାହାନ୍ତି । ସଖିନାମା ଚାଲିଗଲେ । ଖୁବ୍ ଭଲ ଦିନଟାଏ ନେଲେ ଏକାଦଶୀ, ସୁଦଶାବ୍ରତ । ସେମିତି ଧାର୍ମିକା ସ୍ତ୍ରୀ ନ ହୋଇଥିଲେ ସେ କ'ଣ ସହଜେ ଏ ଦିନ ପାଇଥାନ୍ତେ !!

ସନିଆ କଥାରେ କିଛି ପ୍ରତ୍ୟୁତ୍ତର ନ କରି ନିରଞ୍ଜନ ଥକାହୋଇ ଚେୟାର ଉପରେ ବସି ପଡ଼ିଲେ । ଏତେ-ଦିନ ଧରି ରୋଗଶଯ୍ୟାରେ ଗଡ଼ୁଥିବା ମମତାମୟୀ ପିଉସୀ ସଖିନାମା ସଂସାର ଗୁଡ଼ି ଗୁଡ଼ି ଯିବାଟା ତାଙ୍କୁ ଯେତିକି ବାଧୁ ନ ଥିଲା, ସଂବାଦଟା ତାଙ୍କୁ ଅନେକ ଗୁଣରେ ବାଧୁଥିଲା । ଓଃ ଆଉ ମାସ ଗୋଟାଏ ରହିଯାଇଥିଲେ...। ସନିଆ ଅନ୍ଧାରରେ କିଛି ଦେଖି ପାରୁ ନ ଥିଲା । ତାର ମନେହେଲା ନିରବାବୁ ଯେମିତି ଚେୟାର ଉପରେ ବସି ସକେଇ ସକେଇ କାନ୍ଦୁଛନ୍ତି । ସେ ମମତା ସୁଲଭ କଣ୍ଠରେ ବୁଝେଇ କହିଲା, ନିର-ବାବୁ ପିଲାଙ୍କ ପରି କାନ୍ଦୁଛ କଣ ? ସଖିନାମା ତ କିଛି ପିଲାଟୁଆ ନୁହେଁ କି ବୟସ ଥିବା ମଣିଷ ନୁହେଁ । ସତୁରି ନା ବାସ୍ତରି ବର୍ଷ ହୋଇଥିଲା । ଯିବାବେଳ ହେଲା ଚାଲିଗଲା । କମ୍ ଯାତନା ଭୋଗୁଥିଲେ କି ସେ ? ସେ ଗଲା ମୁକ୍ତି ପାଇଲା ତମେ ବି ହ' ହଟା ଭାଇ ଦହଗଂଜ ହେଉଥିଲ, ତମକୁ ବି ଟିକିଏ ଫୁରୁସତ

ମିଳିଲା । କମ୍ ଟଙ୍କା ଖର୍ଚ୍ଚ ହେଲାଣି !! କମ୍ ଔଷଧ ଗଲାଣି !

ନିରଞ୍ଜନ କାନ୍ଦୁ ନ ଥିଲେ ବି କାନ୍ଦିଲା ପରି କଣ୍ଠସ୍ୱରକୁ କରି କହିଲେ, ଆମେ ବିଧବା ମା' ଛେଉଣ୍ଡ ଛୁଆ ତାରି ପାଖରେ ବଢ଼ିକୁଢ଼ି ମଣିଷ ହୋଇଥିଲୁ ନା । ସେ ନ ବଞ୍ଚିଥିଲେ କ'ଣ ହୋଇଥାନ୍ତା ଆମ ଅବସ୍ଥା ? ସେ ଆମପାଇଁ ଯାହା କରି ଯାଇଛନ୍ତି ତା' ଋଣ କ'ଣ ଆମେ ଜୀବନସାରା ସୁଝିପାରିବୁ ?

ସନିଆ ଦୀର୍ଘ ନିଶ୍ୱାସ ପକେଇଲା, ତାଆ ତ ସତ କଥା ମାଆ ଅଧା ମାଉସୀ, ବାପା ଅଧା ପିଉସୀ । ନିଜର ପିଉସୀ ବୋଲି ସିନା ଆଇଛୁଇ କରି ରଖିଥିଲା ନ ହେଲେ କିଏ ରଖିଥା'ନ୍ତା । ଛାଡ଼ ସେ ସବୁ କଥାକୁ ଭୁଲିଯାଇ ବର୍ତ୍ତମାନ କେମିତି ଶବସତ୍କାର ହେବ ତାର ବ୍ୟବସ୍ଥା କର । ଘରେ ଯଦି ମଡ଼ା ବାସୀ ହୁଏ ଗାଆଁ ଲୋକେ କଣ କହିବେ ତୁମକୁ ? ଶୀଘ୍ର ବାହାର, ରାତି ପାହାନ୍ତି ବେଳକୁ ଆମେଯାଇ ପହଞ୍ଚିବା । ଘଣ୍ଟାକ ଭିତରେ ସବୁ ଯୋଗାଡ଼ କରନ୍ତୁ ମଡ଼ାକାନ୍ଧିଆ ଭାଇଙ୍କୁ ଡାକି ରାତି ପାହାନ୍ତାକୁ କାମ ସରେ ।

ନିରଞ୍ଜନ ତରବର ହୋଇ ଦେହରେ ମଇଳା ପଞ୍ଜାବୀ ଖଣ୍ଡେ ଗଳେଇ ବାହାରିଲେ ଗାଆଁକୁ ଯିବାକୁ । ଶୂନ୍ୟ ହାତଟାରେ କେମିତି ଯିବେ ? ଘରେ ମଡ଼ ପଡ଼ିଛି, ସାଙ୍ଗେ ସାଙ୍ଗେ ତେଲ, ଲୁଣ, ଗୁଆ, ନୂଆଲୁଗା କେତେ କଥା ଦରକାର ଟଙ୍କା ନ ହେଲେ କେମିତି ହେବ ? ଏଇସବୁ ଖର୍ଚ୍ଚ ପଡ଼ିବ ବୋଲି ସେ ବାରମ୍ବାର ନିରଞ୍ଜନକୁ କହି ଆସୁଛନ୍ତି ଟଙ୍କା ଯୋଗାଡ଼ କର ନ ହେଲେ ଜିନିଷ ପତ୍ର କିଣିରଖ । ସେ ମୋଟେ ସେ କଥାକୁ କାନରେ ଶୁଣୁ ନାହାଁନ୍ତି । ସବୁବେଳେ ନାହିଁ ନାହିଁ ମୁଣ୍ଡଗଡ଼ା । ପଇସା କେଉଁଠୁ ଆଣିବ । ଧାନ ନାଁ ବିରି ନାଁ ମୁଗ କ'ଣ ଅଛି ଘରେ ବିକିକରି ପଇସା ରଖିବ । ସତେ ଯେମିତି ସଖିନାମା ସବୁ ସମ୍ପତ୍ତି ମୋର ଭାଗରେ ଅଜାଡ଼ି ଦେଇ

ଯାଇଛନ୍ତି । ହଉ କେତେ ଗୃହଲାଗି ହେଉଛନ୍ତି ଟୋକା ଦେଖିନେବ । କେମିତି ଶୁଦ୍ଧିକ୍ରିୟା ପାଇଁ ଟଙ୍କା ନ ଦେବ !!

ନିରଞ୍ଜନ ନିଜର ଭଙ୍ଗାଟ୍ରଙ୍କ୍ ଖଣ୍ଡ ଖୋଲିଲେ । ପିଲାଙ୍କ ମୁଠି ଗୃହଉଳ ଆଉ ସ୍କୁଲ ବଗିଚାରୁ ବିକ୍ରୀ ହୋଇଥିବା ପରିବା ଟଙ୍କା ଗୋଟାଏ ଛୋଟ ମନିବ୍ୟାଗରେ ସେ ସାଇତି ରଖିଥିଲେ । ସେତକ ଖର୍ଚ୍ଚ କରିବାକୁ ତାଙ୍କର ସତ ବଳୁ ନ ଥିଲା । ତଥାପି ନିଜର ଇଚ୍ଛା ବିରୁଦ୍ଧରେ ବାଧ୍ୟ ହୋଇ ମନିବ୍ୟାଗଟା ପଞ୍ଜାବୀର ଛାତି ପକେଟ୍‌ରେ ପକେଇଲେ । ଟଙ୍କା ତେରଟା ତାଙ୍କ ଛାତିକୁ ବେଶ୍ ଓଜନିଆ ଲାଗୁଛି । ସତେ ଯେମିତି ତେରଶହ ଯାଏ ଟଙ୍କା ତାଙ୍କ ଛାତି ପକେଟ୍‌ରେ ଭର୍ତ୍ତି ହୋଇଯାଇଛି ।

ଅନ୍ଧାରରେ ସନିଆ ଆଉ ନିରଞ୍ଜନ ଚାଲିଛନ୍ତି ସ୍କୁଲଠାରୁ ପୁନାଗ ଗାଆଁ ମାତ୍ର ଦୁଇକୋଶ ବାଟ । ବିଲବାଟେ ଗଲେ କୋଶେ କମିବ । ସଡ଼କେ ସଡ଼କେ ଦୁଇକୋଶ । କାର୍ତ୍ତିକମାସ ବିଲରାସ୍ତା ଦଖଲ । ଯିବା ବି କଷ୍ଟକର । ସଡ଼କରେ ଗଲେ ନାଳ ପାର ହେବାକୁ ପଡ଼େ, ଜଂଘେ କି ଅଣ୍ଟେପାଣି । ତଥାପି ସଡ଼କରେ ଗଲେ ଚଞ୍ଚଳ ପହଞ୍ଚି ହେବ । ସେଇଥିପାଇଁ ନିରଞ୍ଜନ ସଡ଼କ ରାସ୍ତାରେ ଚାଲିଛନ୍ତି ।

ସନିଆ କଥା ଆରମ୍ଭ କରି କହିଲା, ନିଉବାବୁ ଏ ବର୍ଷ ଧାନ ଯାହା ହୋଇଥିଲା କ'ଣ ଆଉ କହିବି ସତ୍ୟ ଯୁଗ ଧାନ, ହେଲେ ଶଳା ଝଡ଼ତୋଫାନ ତାକୁ ଅଧା ଶେଷ କରିଦେଲା । ନ ହେଲେ ଏ ବର୍ଷ ଲୋକେ କ'ଣ ବୋଲି କ'ଣ କରି ପକେଇଥାନ୍ତେ । ନ ହେବ ବା କେମିତି ଭଗବାନ ତ କାହାରି ଗର୍ବ ସହି ପାରନ୍ତି ନାହିଁ, ଏ ଛାର ମଣିଷଙ୍କ ଗର୍ବ ସହିବେ କେମିତି ? ଠିକ ଧାନଫୁଲ ଉଡ଼ାବେଳେ—ହେଲା ଯେ ଝଡ଼-ତୋଫାନ ସବୁଶେଷ ।

ସନିଆ କଥାରେ ନିରଞ୍ଜନ କୌଣସି ଉତ୍ତର ଦେଉ ନ ଥିଲେ କିମ୍ବା ଟିପ୍ପଣୀ ଦେଉ ନ ଥିଲେ, ସେ

ସବୁ ଶୁଣିଥିଲେ ଘରେ ଚଢ଼ିଥିବା ସଖିନାନୀର ମଡ଼କଥା । ଆଜି ମୃତ୍ୟୁଶଯ୍ୟାରେ ସଖିନାନୀର ଗହୀରିଆ ପରଳମଡ଼ା ଆଖି, ହନୁ ହାଡ଼ ଫୁଟି ଉଠିଥିବା ବକୁଡ଼ିଆ ମୁହଁ ଘର ଭିତରେ ଭୌତିକ ପରିବେଶ ସୃଷ୍ଟି କରୁଥିବ । କିନ୍ତୁ କୋଡ଼ିଏ ବର୍ଷ ତଳେ ସଖିନାନୀର ସେହି ସ୍ନେହସିକ୍ତ ମୁହଁଟି କେତେ ଆପଣାର ନ ଥିଲା ନିରଞ୍ଜନଙ୍କର । ଯେଉଁ ଆଖିହଟା ପରଳମାଡ଼ ପଥର ପରି ନିସ୍ପନ୍ଦ ହୋଇଛି, ସେହି ଆଖି ଦୁଇଟା ଥିଲା କେଡ଼େ ମମତାଭରା କେତେ ଆପଣାର । ଟିକିଏ କଥାରେ ଛଳଛଳ ହୋଇ ଉଠୁଥିଲା, ଟପ୍ ଟପ୍ ଲୁହ ନିଗିଡ଼ି ପଡ଼ୁଥିଲା ।

କୋଡ଼ିଏ ବର୍ଷତଳେ ସ୍ୱାମୀ ସନ୍ତାନହରା ସଖିନାନୀ ଶାଶୁଘର ଗାଆଁ ଛାଡ଼ି ଚଳେଇ ଆସିଥିଲା ନିଜବାପ ଘରକୁ । ସେତେବେଳକୁ ସେ ଅଧା ପାଗେଳୀ । ଖାଇବାରେ ଠିକ୍ ନାହିଁ । ସବୁବେଳେ ବକୁଥାଏ । ବାହୁନି ବାହୁନି ତାର ପାଞ୍ଚବର୍ଷର ପୁଅପାଇଁ କାନ୍ଦୁଥାଏ । ନିରଞ୍ଜନଙ୍କ ବାପା ସେତେବେଳେ ଭଉଣୀର ଦୁଃଖରେ ଅସ୍ଥିର ହୋଇ ଘରେ ଆଶ୍ରୟ ଦେଇଥିଲେ, ସେବାଯତ୍ନ କରିଥିଲେ । ସଂସାର ବିମୁଖ ସଖିନାନୀ ଅଳ୍ପ କେତେଦିନ ଭିତରେ ଭଲହୋଇ ଭାଇଙ୍କ ସଂସାର ସହିତ ଯୋଡ଼ିହୋଇ ଯାଇଥିଲା । ଧାନମଣି ମଲେ, ତାଙ୍କ ସ୍ତ୍ରୀ ମଲେ । ଗୋଟେ ସଂସାରଟିରେ ମୁରବୀ ହୋଇ ବଂଚି ରହିଲେ ସଖିନାନୀ ମା’ ଛେଉଣ୍ଡ ଛୁଆ ଦି’ଟାଙ୍କର ଲାଳନ ପାଳନ ଭାର ଗ୍ରହଣ କରିବା ପାଇଁ ଭଗବାନ ଯେମିତି ତାଙ୍କୁ ପଠେଇ ଦେଇଥିଲେ । ସତେ ମା’ଠାରୁ ବଳି ସ୍ନେହକଲେ ମା’ଛେଉଣ୍ଡ ପିଲା ଦି’ଟାଙ୍କୁ । ନିରଞ୍ଜନ ସୁରଞ୍ଜନଙ୍କୁ ମଣିଷ କରିବା ପାଇଁ କେତେ କଷ୍ଟ ସହିଛନ୍ତି ସଖିନାନୀ ! ! ତାଙ୍କ ଜୀବନର ସବୁ ଦୁଃଖ, ସବୁ ନିର୍ଯ୍ୟାତନା ଭୁଲିଗଲେ ଏଇ ଛୁଆ ଦି’ଟାଙ୍କ ମୁହଁକୁ ଚାହିଁ ଚାହିଁ ।

ଶାଶୁଘରେ ସମ୍ପତ୍ତି ବିକ୍ରୀକରି ବାପଘର ଗାଆଁରେ କିଣିଥିଲେ ତିନିମାଣ ଜମି । କାହାପାଇଁ ବା-ଆଉ ସେ ଶାଶୁଘରେ ସମ୍ପତ୍ତି ଛାଡ଼ିଥାନ୍ତେ । ଏଠି ତ ହେଲେ ମା’ଛେଉଣ୍ଡ ପିଲାଦିଟା ବଞ୍ଚିଛନ୍ତି । ଭାଇର ପିଲାଙ୍କୁ ତ ସେ ନିଜ ଜନ୍ମକରା ପିଲାଙ୍କଠାରୁ ଅଧିକ ସ୍ନେହ କରନ୍ତି । ସେଇମାନଙ୍କୁ ସମ୍ପତ୍ତି ବାଡ଼ି ନ ଦେଇ ଦେବେ କାହାକୁ ?

ନିରଞ୍ଜନଙ୍କ ପୈତୃକ ସମ୍ପତ୍ତି ସହ ସଖିନାନୀର ତିନିମାଣ ଜମି ମିଶିଗଲା । ନିରଞ୍ଜନ ବଡ଼ହେଲେ । ଦି’ ଭାଇଯାକ ବାହାଚରା ହେଲେ, ଚାକିରି କଲେ । ସଖିନାନୀର ସଂସାର ପୁଣି ପୂରି ଉଠିଲା ।

ସଖିନାନୀ ଘରର ମୁରବୀ, ସେଇ ତ ଦି’ ଭାଇଙ୍କର ବାହାଘର କରେଇଲେ, ବୋହୂ ଆଣିଲେ । ତାଙ୍କ ନିର୍ଦ୍ଦେଶରେ ଘର ଚାଲିଲା । କିନ୍ତୁ ଗୋଟାଏ ବର୍ଷ ପରେ ସଂସାରର ସ୍ୱଚ୍ଛନ୍ଦ ଯାତ୍ରାପଥରେ ଦେଖାଗଲା ପ୍ରତିବନ୍ଧକ । ନିରଞ୍ଜନ ସୁରଞ୍ଜନଙ୍କ ଭିତରେ ମନାନ୍ତର । ଦୁଇ ବୋହୂଙ୍କ ଭିତରେ କଳି । ସଖିନାନୀର ମୁରବୀ ପଣିଆକୁ ସେମାନେ ଗ୍ରହଣ କରିବାକୁ ରାଜି ନୁହଁନ୍ତି । ସେମାନେ ଜାଣୁଛନ୍ତି ସଖିନାନୀ ଘରର କେହି ନୁହେଁ । ପିଶାଶୁ ମାତ୍ର । ତାର କ’ଣ କର୍ତ୍ତୃତ୍ୱ ଅଛି ସେ ଆମ ଉପରେ ଜାହିର କରିବ । ନାଁ ନାଁ ସେକଥା ହୋଇପାରିବ ନାହିଁ । ଆମେ ବୋହୂ, ଆମେ ଘରର ମୁରବୀ ! ସଖିନାନୀକୁ କେତେଥର ମଧ୍ୟ ଶୁଣେଇ ଶୁଣେଇ କହିଦେଲେ ଘରେ ତମେ କିଏ ହୋ ! ସଖିନାନୀ ନୀରବ ହୋଇଗଲା । ତାର ହାତଗଢ଼ା ଗୋଟେ ସଂସାରଟି ପୁଣି ଭାଗ ଭାଗ ହେବାକୁ ବସିଲା ।

ନିରଞ୍ଜନ, ସୁରଞ୍ଜନ ଦୁଇଭାଇଯାକ ଜିଦ୍ ଧରି ବସିଲେ ସେମାନେ ଭିନେ ହେବେ । ସଖିନାନୀ ପ୍ରତିବାଦ କଲା ମୁଁ ବଞ୍ଚିଥିବାଯାଏ ତୁମକୁ ଭିନେ କରେଇ ଦେବିନାହିଁ ।

ସଖିନାନୀ କଥାକୁ ଶୁଣୁଛି କିଏ ?

ବୋହୂମାନେ ଅଲଗା ଅଲଗା ଚୂଲିକରି ରୋଷେଇ ଆରମ୍ଭ କଲେ । ସଖିନାନୀ ସେମାନଙ୍କୁ କୌଣସି-

ପ୍ରକାରେ ଏକାଠି ରଖିପାରିଲେ ନାହିଁ । ଗାଁର ଭଦ୍ରଲୋକ ଆସି ଦୁ’ ଭାଇଙ୍କୁ ଭିନେବଣ୍ଟରା କଲେ । ସଖିନାମାର ତିନମାଣ ଜମି ଦୁ ଭାଗ ହୋଇଗଲା, କିନ୍ତୁ ସଖିନାମା ହୋଇ ରହିଗଲା । ଦୁ ଭାଇଯାକ ତାକୁ ଖାଇବାକୁ ଦେବେ, ଲୁଗାପଟା ଦେବେ ଓ ରୋଗ ବୈରାଗରେ ଔଷଧପତ୍ର ଦେବେ ।

ସଖିନାମାର ଆଖି ଆଗରେ ପିଲାଦୁଇଟା ଭିନ ହୋଇଗଲେ । ସେ ଯେମିତି ପାଷାଣ ହୋଇଗଲା, ମୂକ ହୋଇଗଲା କିଛି କହି ପାରୁନାହିଁ । ଯେଉଁ ଘରର ସେ ଥିଲା ମୁରବୀ, ସେ ପୁଣି ହୋଇ ସେ ଘରର ରହିଗଲା ସମ୍ପତ୍ତି । ଦୁ’ଟା ଖାଇବା ପାଇଁ ଏ ଭାଇ ମାସେ ଦେଲେ ସେ ଭାଇ ମାସେ ଦେବ । ସେ ମଲେ ତା ଶୁଦ୍ଧିକ୍ରିୟା ପାଇଁ ଦୁଭାଇ ପାଞ୍ଚ ଟଙ୍କା ଦେବେ ।

ଛ’ଅଟା ମାସ ଯାଇନି ସଖିନାମା ପଡ଼ିଲା ବେମାର । ରୋଗ ଶଯ୍ୟାରେ ପଡ଼ି ସେ ଗୁଣୁ ଗୁଣୁ ହୁଅନ୍ତି । ନିରଞ୍ଜନ ଓ ସୁରଞ୍ଜନଙ୍କୁ ବାହୁନି ହୁଅନ୍ତି । ସବୁ ନିଷ୍ଫଳ ସବୁ ନିରର୍ଥକ । କେହି ଶୁଣନ୍ତି ନାହିଁ । ବୁଝନ୍ତି ନାହିଁ ।

ରୋଗର ଆରମ୍ଭରେ ଔଷଧ ପାଇଁ ସୁରଞ୍ଜନ କିଛି ଟଙ୍କା ଦେଇଥିଲା ! ନିରଞ୍ଜନ କିଛି ଦେଇନାହିଁ । ମାଗିବାବେଳେ କହି ଦେଉଛି ଟଙ୍କା ନାହିଁ ଟଙ୍କା ନାହିଁ । ଆଜି ସକାଳୁ ତ ସେଥିପାଇଁ ନିରଞ୍ଜନ ନାନା ଆଳ ଦେଖାଇ ମିଛ କହି ଗାଆଁ ଛାଡ଼ି ଚାଲି ଯାଇଥିଲେ । କେଜାଣି କିନ୍ତୁ ଫଳ ହେଲା ଓଲଟା ।

ଏତେକଥା ଭାବନା ଭିତରେ ହଠାତ୍ ଚମକ ସୃଷ୍ଟିକରି ସନଆ ପାଟିକରି ଉଠିଲା ଧଅ…ଧ…ଅ ।

ନିରଞ୍ଜନ ଚମକିପଡ଼ି କହିଲେ କ’ଣ କି ?

—“ଏ ଶଳା ବିଲୁଆଟା ରାସ୍ତା ଉପରେ ବସିଛି ।”

ଲଣ୍ଠନ ଆଲୁଅରେ ତଳକୁ ମୁହଁ ଢାଳି ନିରଞ୍ଜନ ଚାଲିଛନ୍ତି । ପାଦ ପାଖରୁ ଦଶହାତ ଆଗକୁ ପଛକୁ ଆଲୁଅ ପଡ଼ୁଛି ସେଣିକି ଅନ୍ଧାର । କଟିକଟା ଅନ୍ଧାର । କେଉଁଠି କେତେବେଳେ ଗୋଟାଏ ଅଣ୍ଡିରା ବିଲୁଆ ହାଡ଼ ଉପରେ ବସି ଫେଣ୍ଡରା ମାରୁଛି ନ ହେଲେ ଦୂର ଗାଆଁର ଗଛ ଆଡ଼ୁଆଳ ଭିତରୁ କୁକୁରମାନଙ୍କର ଭୋ ଭୋ ଶବ୍ଦ ଶୁଭୁଛି ।

ନିରଞ୍ଜନ ଲଣ୍ଠନ ଆଲୁଅରେ ଆଗକୁ ପଛକୁ ଚାହିଁ ପଚାରୁଛନ୍ତି ସନଆ ଆଉ କେତେ ବାଟ ?

—‘ଏଇତ ମନ୍ଦାର ଗାଆଁ ତୋଟା ପଡ଼ିଲାଣି । ଆଉବାଟ କାହିଁ ? ପାଞ୍ଚମିନଟ୍ ଲାଗିବ ନାହିଁ ।’ ନିରଞ୍ଜନ କେତେକଥା ଭାବି ଭାବି ଗାଆଁ ଆଡ଼କୁ ସପଟେଇ ଚାଲିଛନ୍ତି । ଗାଆଁର ମଝି ସାହିରେ ଯଦିଓ ନିରଞ୍ଜନଙ୍କ ଘର, ମଡ଼ କାନ୍ଦଣା ବେଶ୍ ଭଲଭାବେ ଶୁଣା ଯାଉଛି ଗାଆଁ ମୁଣ୍ଡରୁ । ନିରଞ୍ଜନ କାନପାତି ଶୁଣିଲେ କିଏ ଇମିତି ଲହରେଇ ଲହରେଇ ବାହୁନି ବାହୁନି କାନ୍ଦୁଛି । ସାନବୋହୂନା ବଡ଼ବୋହୂ ? ଠିକ୍ ଠିକ୍ ମନେ ପଡ଼ୁଛି ଏ ତ ସୁରଞ୍ଜନ ସ୍ତ୍ରୀର କାନ୍ଦଣା ଶବ୍ଦ । ମୋ ସ୍ତ୍ରୀ ବୋଧହୁଏ କାନ୍ଦି କାନ୍ଦି ନୀରବ ହୋଇ ଗଲାଣି । ପି’ଶାଶୂପ୍ରତି କମ୍ ସ୍ନେହ ନୁହେଁ, କମ୍ ଶ୍ରଦ୍ଧା ନୁହେଁ !!

ସାହି ଅତିକ୍ରମ କରି ନିରଞ୍ଜନ ଘରେ ପହଞ୍ଚିଲେ । ଘର ଭିତରକୁ ପଶି ଯାଉଯାଉ ଦୁଆରବନ୍ଧ ପାଖରେ ଅଟକିଗଲେ, କାରଣ ସାନବୋହୂ ବର୍ତ୍ତମାନ ସଖିନାମା ପାଖରେ ବାହୁନୁଛି ।

ଦେଢ଼ଶୁରଙ୍କୁ ଦେଖି ସାନବୋହୂ ବାହୁନିବାର ସ୍ୱରକୁ ଅନେକ କମେଇ ଦେଇ ଲାଜକରି ପଳେଇଲେ । ନିରଞ୍ଜନ ଆଉ ଦୁଇପାଦ ଆଗେଇ ଯାଇ ସଖିନାମାର ସେହି ବିକଟାଳିଆ ମୁହଁ ପାଖରେ ଛିଡ଼ାହେଲେ । ଆଖି ଦୁ’ଟା ପଥର ଆଖିପରି ଶେଥା ଦିଶୁଛି । ମୁହଁର ଭଙ୍ଗୀ କେମିତି ଭୟଙ୍କର ।

ନିରଞ୍ଜନଙ୍କ ଆଖିରୁ ଲୁହ ଝରିଲା । ସେ ଲୁଗା କାନରେ ମୁହଁ ପୋଛି କହିଲେ ସୁନଆ ଆଉ ଡେରି କାହିଁକି ? ଚଞ୍ଚଳ ମଡ଼ା କାନ୍ଧିଆ ଭାଇଙ୍କୁ ଡାକ । ଟଙ୍କା

ଆଣି ଜିନିଷପତ୍ର କିଣାପିବ । ସୁରଞ୍ଜନ ବଡ଼କୁ ମିଶା କଣ୍ଠରେ କହିଲା ମୋ ପାଖରେ ଟଙ୍କା କାହିଁ ?

—"ଟଙ୍କା ନ ହେଲେ କାମ କେମିତି ହେବ"?

ଦୁଇଭାଇଙ୍କ ଯୁକ୍ତିତର୍କକୁ ଦାଣ୍ଡ ଦୁଆରେ ସନିଆ ବୋଧହୁଏ ବସି ଶୁଣୁଥିଲା, ସେ ମଧ୍ୟସ୍ଥି କଲାପରି କହିଲା ନିରବାବୁ ଏଇଟା କ'ଣ ଝଗଡ଼ା କରିବାର ସମୟ । ଘରେ ମଡ଼ା ପଡ଼ିଛି, କେମିତି ଉଠିବ ତାର ବ୍ୟବସ୍ଥା ନାହିଁ । ଟଙ୍କାପାଇଁ ଗଣ୍ଡଗୋଳ ଲାଗିଛି । କେତେ ବା ଟଙ୍କା ଖର୍ଚ୍ଚ ହେବ ? ଟଙ୍କା ଦଶଟା ହେଲେ କାମ ଫଟେ । ସନିଆର ତାଗିଦ୍‌ରେ ନିରଞ୍ଜନ ନୀରବ ହୋଇଗଲେ ।

ସଖିନାନୀର ମଡ଼ା ବାସୀହେଲା । କୋଡ଼କାଇ କାହାରୁ ବାହାରୁ ଗାଡ଼ି ପାହାନ୍ତା ପହର । ମଶାଣିରେ କାମ ଶେଷ ହେଲାବେଳକୁ ଦିନ ପହଡ଼େ । ସୁରଞ୍ଜନଙ୍କ ଟଙ୍କାରେ ସେତକ ସିନା ହେଲା, ଆଉରତ କାମ ଅଛି ।

ମଶାଣିରୁ ଫେରି ଦୁଇଭାଇଙ୍କ ଭିତରେ ଲାଗିଲା ପୁଣି କଳି । ସଖିନାନୀର ଶୁଦ୍ଧିକ୍ରିୟା କେମିତି ହେବ ? କିଏ ଟଙ୍କା ଦେବ ? ସୁରଞ୍ଜନ ପାଖରେ ଧାନବିକ୍ରି ଟଙ୍କା ଦୁଇଶହ ଅଛି । ସେକଥା ନିରଞ୍ଜନ ଜାଣେ । ବଡ଼ଭାଇ ପୋଷ୍ଟଅଫିସ ପାଶ ବୁକ୍‌ରେ ଚାରିଶହ ଟଙ୍କା ରଖିଛନ୍ତି ସେକଥା ମଧ୍ୟ ସୁରଞ୍ଜନଙ୍କୁ ଅଛପା ନାହିଁ । କେହି ନିଜ ଟଙ୍କାରୁ ଶୁଦ୍ଧି କାମ ପାଇଁ ଦେବାକୁ ରାଜି ନୁହଁନ୍ତି । ନିରଞ୍ଜନର ସ୍ତ୍ରୀ ପାଟିକଲା ସମ୍ପତ୍ତି ଖାଇଲାବେଳକୁ ସମସ୍ତେ ଶୁଦ୍ଧି ହେଲାବେଳକୁ ହେବୁ ଆମେ !! କାହିଁକି ଆମକୁ କ'ଣ ସଖିନାନୀ ତାଙ୍କ ଅଙ୍ଗକରା ଧନରୁ ପାଞ୍ଚଶ ହଜାରେ ଲୁଚେଇ ଦେଇ ଯାଇଛନ୍ତି ? ସେପାଖ ଘରୁ ମଧ୍ୟ ସେହିପରି ଚଡ଼ା ଗଳାରେ ଉତ୍ତର ଆସିଲା ତିନି ତିନି ମାସ ନାନୀ ବେମାର ପଡ଼ିଲା କିଏ ଦେଉଥିଲା ଔଷଧପାଇଁ ଟଙ୍କା ? ଭାଗ ନେଲାବେଳକୁ ସଖିନାନୀ ଜମିରୁ ନେବ ଅଧେ, ଶୁଦ୍ଧିପାଇଁ ଟଙ୍କା ଦେବନାହିଁ କାହିଁକି ? ଦୁଇ ସ୍ତ୍ରୀଙ୍କ କଳି କ୍ରମେ ବଡ଼ ଆକାର ଧାରଣକଲା । ଶେଷରେ ଗାଆଁ ପଞ୍ଚାୟତ ନିଷ୍ପତ୍ତି କଲେ ଦୁଇ-ଭାଇଯାକ ସମାନ ଭାବରେ ଟଙ୍କା ଦେବେ । କିନ୍ତୁ ଦୁଇଭାଇ ଟଙ୍କା ଦେଲେନାହିଁ । ସଖିନାନୀ ମଲା ପୂର୍ବରୁ ଯେମିତି ଥିଲା ଇଜ୍‌ମାଇଲ୍, ମଲାପରେ ମଧ୍ୟ ତା' ଶୁଦ୍ଧିକ୍ରିୟାଟା ହେଲା ଇଜ୍‌ମାଇଲ୍ । ସେ ଗୁଡ଼ ଯାଇଥିବା ରୁପା ଗହଣା କେତେଖଣ୍ଡ ବନ୍ଧାହୋଇ ତା'ର ଶୁଦ୍ଧିକ୍ରିୟା ହେଲା ।

---



ଘର ଅଗଣା ସଫା ସୁତୁରା ରଖନ୍ତୁ । ରାସ୍ତାକୁ ଭଙ୍ଗାକାଚ, ଲୁହା, ଅଳିଆ ଇତ୍ୟାଦି ପକାନ୍ତୁ ନାହିଁ ।

# ॥ ଅନାହତ ॥

**ବ୍ରଜମୋହନ ମହାନ୍ତି, ଏମ୍. ଏ.**

କ୍ଳାନ୍ତ ଅପରାହ୍ଣ ।

ମୌସୁମୀର ପ୍ରଥମ ପଦପାତରେ ଆକାଶର ବକ୍ଷ ଗମ୍ଭୀର । ସ୍ଥିରହୋଇ ନିଜର ଘୂର୍ଣ୍ଣୀୟମାନ ଚେୟାରଟି ଉପରେ ବସି ଏକ ସଦ୍ୟ ପ୍ରକାଶିତ ପତ୍ରିକା ଉପରେ ଦୃଷ୍ଟି ନିକ୍ଷେପ କରୁଥିଲେ ଶାନ୍ତନୁ । ହଠାତ୍ ଚକିତ ହୋଇ ଚଞ୍ଚଳ ହୋଇଗଲା ତାଙ୍କ ଚକ୍ଷୁର ଚଞ୍ଚଳତା ପୃଥ୍ୱୀ ଅଗେଇବାରେ ଲାଗିଛି । ତା' ସହିତ ଆଗେଇବାରେ ଲାଗିଛି ବିଜ୍ଞାନର ଆବିଷ୍କାର । ବିଚିତ୍ର ଏ ସୃଷ୍ଟିର ପ୍ରକ୍ରିୟା । ରହସ୍ୟମୟ ଏ ମଣିଷର ସ୍ଥିତି ।

ତରୁଣ ବିଜ୍ଞାନ ଅଧ୍ୟାପକ ଶାନ୍ତନୁ । ନୂତନ ଆବିଷ୍କାର କଥା ଶୁଣିଲେ ମନଦେଇ ସେ ଚିନ୍ତା କରନ୍ତି । ଗୁପ୍ତ ତଥ୍ୟ ଜାଣିବା ପାଇଁ ଇଚ୍ଛା କରନ୍ତି । ଅବଶ୍ୟ ଆମ ରାଜ୍ୟରେ ତାଙ୍କ ପାଇଁ ଗବେଷଣାର ସୁଯୋଗ ବା ସୁବିଧା ନାହିଁ । ତଥାପି...। ନିଜ ମନର ଦୌଡ଼କୁ ରୋକି ପାରନ୍ତି ନି ସେ । ମନ ଦୌଡ଼େ । କଳ୍ପନା ଏକ ନୂତନ ସାମ୍ରାଜ୍ୟ ସୃଷ୍ଟିକରେ । ସେ ବିଜ୍ଞାନ ଅଧ୍ୟାପକ ।

ଅନେକ ସମୟରେ ନବ ବିବାହିତା ପତ୍ନୀର କଥା ଭୁଲି ଅଧ୍ୟୟନରେ ଧ୍ୟାନ ଦିଅନ୍ତି ସେ । ଆଜି ସେମିତି ଗୋଟିଏ ଦିନ । ଶାନ୍ତନୁଙ୍କ କପାଳର ରେଖାଗୁଡ଼ିକ କୁଞ୍ଚିତ ହୋଇ ଆସିଲା ପତ୍ରିକାଟି ଆପେ ଆପେ ଖସି ପଡ଼ିଲା ଟେବୁଲ ଉପରେ ।

ଘ୍ରୈ' କଟିଏ ଅଣ୍ଡା ହେବାରେ ଲାଗିଛି । ଦରଜଳା ସିଗାରେଟ୍‌ଟି ଆହୁରି ଆହୁରି ଜଳି ଅଙ୍ଗୁଳିକୁ ସ୍ପର୍ଶ କରିବା ଉପରେ । ନା...ଶାନ୍ତନୁଙ୍କ ଶାନ୍ତି ନାହିଁ । ସେ ଅନେକ ପଛରେ ପଡ଼ିଛନ୍ତି । ତାଙ୍କ ଆଗରେ, ପଛରେ, କଡ଼ରେ, ଉପରେ ଅନେକ ବିଜ୍ଞାନର ଆତ୍ମଗୋପନ । ତାଙ୍କୁ ଗବେଷଣା କରିବାକୁ ହେବ । ରହସ୍ୟମୟ ପୃଥିବୀକୁ ଆବିଷ୍କାର କରିବାକୁ ପଡ଼ିବ ।

ପତ୍ରିକାଟି ଉପରେ ମୁଣ୍ଡ ରଖି ଆଖି ବୁଜିଲେ ଶାନ୍ତନୁ । ଏ କ'ଣ ? କିଏ ପିଠିରେ ହାତ ମାରୁଛି ? ମୁହଁ ଫେରାଇ ଚାହିଁଲେ ଶାନ୍ତନୁ । ଚମକି ପଡ଼ି ଥରି ଉଠିଲା ତାଙ୍କ ସମଗ୍ର ଶରୀର । ଏଁ । ମୃତ ପିତା ଶଶଧର ପଶ୍ଚାତରେ ରହି ତାଙ୍କ ପିଠିରେ ହାତ ବୁଲାଇ ଆଶୀର୍ବାଦ କରୁଛନ୍ତି । ଆଶ୍ଚର୍ଯ୍ୟ, ମୃତ ଆତ୍ମାର ଆତ୍ମପ୍ରକାଶ । ମୁଣ୍ଡ ଝାଡ଼ି ଭଲକରି ଚାହିଁବାକୁ ଚେଷ୍ଟା କଲେ ଶାନ୍ତନୁ । ଚିହ୍ନିବାକୁ ଚେଷ୍ଟାକଲେ ନିଜର ପିତାଙ୍କୁ ।

ନା...ଆଖିକୁ ଭୁଲ୍ ବୁଝି ହେବନାହିଁ । ମୃତ ପିତା, ଶରୀର ଗ୍ରହଣ କରି ସମ୍ମୁଖରେ ବିଦ୍ୟମାନ । ଭୟ ଓ ଆନନ୍ଦରେ କମ୍ପିଉଠି ଠିଆ ହୋଇ ପଡ଼ିଲେ ସେ । ଏଁ ...ପିତାଙ୍କ କଡ଼କୁ ଲାଗି ଠିଆ ହୋଇଛନ୍ତି ଆବାଲ୍ୟରୁ ମୃତ୍ୟୁ ବରଣ କରିଥିବା ସ୍ନେହମୟୀ ମାତା । ଏଥର ଅସ୍ଥିର ହୋଇ ପଡ଼ିଲେ ଶାନ୍ତନୁ । କି ଅସମ୍ଭବ କଥା । ସେ ବିଜ୍ଞାନର ଅଧ୍ୟାପକ । ଭୂତ ପ୍ରେତଙ୍କୁ ବିଶ୍ୱାସ କରନ୍ତିନି ସେ । ତେବେ । ...ତେବେ ଏ କି ଭୌତିକ କାଣ୍ଡ ??

ପୁଣି ନିଥକରି ଚେୟାର ଉପରେ ବସି ପଡ଼ିଲେ ଶାନ୍ତନୁ । ବିକଳରେ ସେ ଚାହିଁ ରହିଲେ ସେମାନଙ୍କୁ । ନା...ଆହୁରି ଆଶ୍ଚର୍ଯ୍ୟର କଥା । ଏମାନେ ସେ ଏକା ନୁହନ୍ତି । ତାଙ୍କ ପଛକୁ ଲାଗି ଧାଡ଼ିବାନ୍ଧି ଠିଆ ହୋଇଛନ୍ତି ଅନେକ ବ୍ୟକ୍ତି । ଏକ...ଦୁଇ ...ତିନି...ଚାରି...ଦଶ ..ପଚାଶ...ଶହେ । ନାଁ ଗଣି ହେଉ ନାହିଁ । ଅସଂଖ୍ୟ...ଅସଂଖ୍ୟ ।

ଶାନ୍ତନୁଙ୍କ ବିକଳତା ଦେଖି ହସି ଉଠିଲେ ସେମାନେ । ତା' ପରେ...କୋଠରୀ ଭିତରେ ସେମାନେ ପଦଚାରଣ କରିବାକୁ ଆରମ୍ଭ କରିଦେଲେ । ଶାନ୍ତନୁ କେବଳ ଅବାକ୍ ହୋଇ ସେମିତି ଚାହିଁଥାନ୍ତି । ସେମାନେ ଆଗେଇବାରେ ଲାଗିଲେ ।

ଚେୟାର ଉପରୁ ଉଠି ପୁଣି ଠିଆ ହେଲେ ଶାନ୍ତନୁ । ଭିଡ଼ ଭିତରୁ ବାହାରି ଆସି ଜଣେ ଦଖଲ କରିନେଲ ଚେୟାରଟିକୁ । ପ୍ରଶ୍ନାୟିତ ଦୃଷ୍ଟିରେ ସେମାନଙ୍କୁ ସେମିତ ଗୃହିଆନ୍ତ ଶାନ୍ତନୁ । ହଠାତ୍ ଦ୍ରୁତ ଗତରେ ସେମାନେ କୋଠରୀ ଭିତରେ ଗୁଲବୁଲ କରିବାକୁ ଲଗିଲେ । ଶାନ୍ତନୁଙ୍କ ଆଗ, ପଛ, କଡ଼ରେ ଭରିପୁରି ହୋଇଗଲେ ସେମାନେ ।

ଏଁ ...ନାଁ ...ସେତକ ନୁହେଁ । ଶାନ୍ତନୁଙ୍କ ମୁଣ୍ଡ ଉପରେ ମଧ୍ୟ ଚଢ଼ିବାକୁ ଆରମ୍ଭ କରି ଦେଇଛନ୍ତି କେତେଜଣ । ହୁଏତ ସମସ୍ତଙ୍କ ମନରେ ଗୋଟିଏ କଥା···ଆମେ ଅଛୁ...ଠିକ୍ ତୁମ ଭଳି । ନାଁ···ଆଉ ସହ୍ୟକରି ହେବନାହିଁ । ଶାନ୍ତନୁଙ୍କ ନାକ ପୂଡ଼ାଦେଇ ପଶିବାକୁ ଚେଷ୍ଟା କରୁଛନ୍ତି କେହି କେହି । ନିଶ୍ୱାସ ରୁଦ୍ଧ ହୋଇଯିବ । ଭୟ, ଆତଙ୍କ, ଆଶଙ୍କାରେ ଚିତ୍କାର କରି ଉଠିଲେ ସେ ।

କିନ୍ତୁ କାହିଁ । ତାଙ୍କ ଦୁଃଖ ଶୁଣିବାକୁ କେହି ନାହାନ୍ତି । ଘେରି ରହିଛନ୍ତି କେବଳ ଭୂତ ଦଳ । ପ୍ରଳୟ ଚିତ୍କାର କରୁଛନ୍ତି ସେମାନେ । ସେ ଚିତ୍କାର ଭେଦକରି ଶାନ୍ତନୁଙ୍କ ଚିତ୍କାର ଦୂରକୁ ଯାଇପାରୁ ନାହିଁ । ଅସହାୟ ଶାନ୍ତନୁ । କ'ଣ କରିବେ ? ରକ୍ଷା ପାଇବେ କେମିତି ?

ଧୀରେ ଧୀରେ ଶାନ୍ତନୁଙ୍କ ଚେୟାର, ଟେବୁଲ, ପଲଙ୍କ, ଆଲଣା, ଆଲମିରା, ଝରକା, କବାଟ, ଫୁଲଦାନୀ ସବୁସ୍ଥାନ ଭୂତମାନେ ଦଖଲ କରି ନେଲେଣି । ଝରକା, କବାଟ, ଆଲଣା, ଫୁଲଦାନୀ ଉପରେ ମଧ୍ୟ ଅକ୍ଳେଶରେ ଆରାମରେ ବସି ପାରୁଛନ୍ତି ସେମାନେ । ତେବେ···। ଓଃ···ପଳାଇବାକୁ ବାଟ ନାହିଁ । ମୁକ୍ତି ପାଇବାକୁ ଉପାୟ ନାହିଁ । ତେବେ କ'ଣ ସତରେ ଶାନ୍ତନୁଙ୍କୁ ଏମାନେ ଗ୍ରାସ କରିଯିବେ ?

ହଠାତ୍ ବୁଦ୍ଧି ପଶିଲା ଶାନ୍ତନୁଙ୍କର । ପିତାଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ନିବେଦନ କରି କହିଲେ···"ଏ କ'ଣ ବାପା ! ତୁମ ଅଲଅଲ ଶାନ୍ତନୁକୁ ତୁମେ କ'ଣ ଗ୍ରାସ କରିଯିବାକୁ ଚାହଁ ? କାହିଁକି ? ତୁମ ନିକଟରେ କି ଭୁଲ୍ କଲି ମୁଁ ?"

ଗୃହୁଁ ଗୃହୁଁ...ତୋଫାନ୍ ଭଳି ଖେଳି ଉଠିଲା ହସର କୁଅର ।

ଶାନ୍ତନୁଙ୍କ ପିତା ସମସ୍ତଙ୍କୁ ଶାନ୍ତ କରାଇ କହିଲେ—"ନାଁ ବାପା ! ଏମାନେ ତୋ' ଉପରେ ଆକ୍ରମଣ କରୁ ନାହାନ୍ତି । ଏମାନେ ସମ୍ପର୍କରେ ଏଇ ଘରର ମଣିଷ । ତୋର ପୂର୍ବପୁରୁଷ । ଅନାଦି ଅନନ୍ତ କାଳରୁ ଏ ଘର ଉପରେ ଏମାନଙ୍କର ରାଜତ୍ୱ । ତୁ ଏ ସମସ୍ତଙ୍କୁ ଦେଖିଛୁ । ଆଜି ନୂଆ ନୁହେଁ ।"

କଥା ସରିନାହିଁ ...ହଠାତ୍ ଚିହୁଙ୍କି ଉଠିଲେ ଭୂତମାନେ । ଅ.ଶ୍ଚର୍ଯ୍ୟ ହୋଇ ସେମାନଙ୍କୁ ଅନାଇ ରହିଲେ ଶାନ୍ତନୁ । ଏଁ ···। ନବବିବାହିତା ତରୁଣୀର ରୂପ ନେଇ ଠିଆ ହୋଇଛି ଜଣେ ଯୁବତୀ । ମନରେ ତା'ର ଆକାଶର କଳ୍ପନା । ଅତର୍କିତ ଭାବରେ ତାକୁ ଆକ୍ରମଣ କରି ତା'ର ତଣ୍ଟି ଚିପି ହତ୍ୟା କରିବାକୁ ଚେଷ୍ଟା କରୁଛି ଆଉଜଣେ ।

ବିଶୃଙ୍ଖଳିତ ହୋଇ ଉଠିଲେ ଭୂତମାନେ ।

ଭିଡ଼ ଦେହରୁ ଆଗେଇ ଆସି ଶାନ୍ତନୁଙ୍କ ମାଆ କହିଲେ "ନାଁ·· ନାଁ···ଆଶ୍ଚର୍ଯ୍ୟ ହୁଅନା । ଆଜିକୁ ଅନେକ ବର୍ଷ ପୂର୍ବେ ଏଇ ଘର ଭିତରେ ମୋ ଶ୍ୱଶୁର ତାଙ୍କ ପ୍ରଥମ ସ୍ତ୍ରୀଙ୍କୁ ଚରିତ୍ର ଦୋଷ ପାଇଁ ତଣ୍ଟି ଚିପି ହତ୍ୟା କରିଥିଲେ । ଏମାନେ ସେହି ।"

ଏଥର ଭୀଷଣ ଡରିଗଲେ ଶାନ୍ତନୁ । ନାଁ...ଏ ଭୂତମାନଙ୍କ ଦାଉରୁ ରକ୍ଷା ପାଇବାକୁ ହେବ । ସ୍ଥାନ ଛାଡ଼ି ପଳାଇ ଯିବାକୁ ହେବ । ନଚେତ୍ ···। ପ୍ରାଣ ବିକଳରେ ଭିଡ଼ ଠେଲି ପଦାକୁ ବାହାରି ଆସିଲେ ସେ । ନାଁ...ପଦାରେ ଯେ ସେହି ଭୂତମାନଙ୍କର ଭିଡ଼ । ଅଗଣା, ଦାଣ୍ଡ, ବାହାର, ରାସ୍ତା ସବୁଆଡ଼େ କେବଳ ସେମାନେ ପଦଚାରଣ କରିବାରେ ଲଗିଛନ୍ତି ।

କିଂକର୍ତ୍ତବ୍ୟବିମୂଢ଼ ହୋଇ ପ୍ରାଣମୂର୍ଚ୍ଛା ଦୌଡ଼ିବାରେ ଲଗିଲେ ଶାନ୍ତନୁ । ଆସ୍ତେ ଆସ୍ତେ ଭୂତମାନଙ୍କର ଭିଡ଼ କମି କମି ଆସିଲା । ଶେଷରେ କାଠଯୋଡ଼ୀର ଖୋଲା ବନ୍ଧ ଉପରେ ଆସି ବେଦମ୍ ହୋଇ ଠିଆ ହୋଇଗଲେ ଶାନ୍ତନୁ । ନାଁ···ନିର୍ଜନ କାଠଯୋଡ଼ୀ ବନ୍ଧ । ଭୂତମାନେ ବହୁ ଦୂରରେ ରହିଯାଇଛନ୍ତି । ଆଉ ଏତେବାଟ ଆସି ପାରିବେନି ସେମାନେ । ବେଶ୍ ନିଶ୍ଚିନ୍ତରେ ବିଶ୍ରାମ ନେଇ ହେବ ଏଠି ।

ଆଶ୍ୱସ୍ତ ହୋଇ ଶାନ୍ତନୁ ନିର୍ଜନ କାଠଯୋଡ଼ୀର ପଥରବନ୍ଧ ଉପରେ ବସି ପଡ଼ିଲେ । ଆତଙ୍କ ଧୀରେ ଧୀରେ ଦୂରେଇ ଯାଉଥିଲା । ଏ ବିଚିତ୍ର ଅନୁଭୂତ ..ବିଚିତ୍ର ଅଭିଜ୍ଞତା କଥା ଚିନ୍ତା କରୁଥିଲେ ସେ । ତାଙ୍କ ନିଶ୍ଚଳ ଚକ୍ଷୁ ସ୍ଥିର ରହିଥିଲା ଦୂର ଆମ୍ରତୋଟମାଳର କେଉଁ ଅସ୍ପଷ୍ଟ ଅନ୍ଧାର ବନ୍ଧୁ ଦେହରେ ।

ପୁଣି ଏକ ନୂତନ ସ୍ପର୍ଶ । ଶାନ୍ତନୁଙ୍କ ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠିଲା ।......"ତୁମେ ?"

..."ମୁଁ ମିତା ।"

..."ମିତା !!!"

...' ହଁ ମୁଁ ମିତା ! ମୋତେ କ'ଣ ତୁମେ ଚହ୍ନିପାରୁ ନାହଁ ? ଏଇ କାଠଯୋଡ଼ୀର ପଥର ବନ୍ଧ ଉପରେ ଆମେ କେତେ ଉନ୍ନଦ ରଜନୀ ବିତାଇ ଦେଇଛୁ । ତଥାପି ମୋତେ ତୁମେ ଚହ୍ନି ପାରୁନାହଁ ।

"କିନ୍ତୁ ତୁମେ ।"

..."ଆଉ କିନ୍ତୁ କ'ଣ ? ହୁଏତ ତଥାପି ତୁମେ ମୋତେ ଚହ୍ନି ପାରୁ ନାହଁ । ମୁଁ ମିତା । ମିତା ମହାନ୍ତି ।"

..."ମିତା ମହାନ୍ତି ??"

..."ଓଃ ତଥାପି ତୁମେ ମୋତେ ଚହ୍ନି ପାରିଲ ନାହିଁ । ମୁଁ ମିତା ମହାନ୍ତି । ଅଧ୍ୟାପକ ନରୋତ୍ତମ ମହାନ୍ତିଙ୍କ ଆଦରଣୀୟା କନିଷ୍ଠା କନ୍ୟା । ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରୀ ।"

"କିନ୍ତୁ.. ।"

..."ନାଁ...ଆଉ କିନ୍ତୁ କ'ଣ ? ତୁମେ କ'ଣ କହୁଛ ଯେ ତୁମର ମୋର କେବେ ସମ୍ପର୍କ ନ ଥିଲା ?"

..."ନାଁ...ନାଁ... ମୁଁ ସେ କଥା କହୁନାହିଁ । ସମ୍ପର୍କ ଥିଲା ନିଶ୍ଚୟ । ...ହେଲେ...।"

..."ଆଜି ତୁମର ଯୁକ୍ତି ଶୁଣିବାକୁ ମୁଁ ପ୍ରସ୍ତୁତ ନାହିଁ ଶାନ୍ତନୁ । ଅନେକବାର ଏ ଯୁକ୍ତି ଶୁଣିଛି । ମୁଁ ଚାହେଁ ...।"

"କ'ଣ ତୁମ ଚାହଁ...??"

..."ମୋ କାମନାର ପରିପୂର୍ତ୍ତି । ମନା କରନା ଶାନ୍ତନୁ । ଏଇ କାଠଯୋଡ଼ୀର କାଉଁଗୁଡ଼ା ମାଙ୍କଡ଼ା ପଥର ହେଉ ଆମ ବାସର ଶଯ୍ୟା । ଆସ ଏତେ ଶୀଘ୍ର କ'ଣ ତୁମେ ତୁମ ମିତାକୁ ଭୁଲିଗଲ ? ସେ ଯେ ତୁମକୁ ମନେ ରଖିଛି ଦେମିତ ।"

"କିନ୍ତୁ ମିତା !!!"

..."ମୁଁ ଜାଣେ । ସେ ଦିନ ପିଅର୍ସ କାର୍‌ରେ କଲେଜରୁ ଫେରୁ ଫେରୁ ମୋର ଯେଉଁ ଏକ୍‌ସିଡେଣ୍ଟ ହେଲା... ସେହି କଥା ତୁମେ କହୁଛ । ଅବଶ୍ୟ ତୁମର ବିଖ୍ୟାତ ବିଖ୍ୟାତ ସର୍ଜିକାଲ ଡାକ୍ତରମାନେ ମୋର ଫଟା ମୁଣ୍ଡକୁ ଯୋଡ଼ିବାକୁ ସକ୍ଷମ ହେଲେନାହିଁ ।"

..."ହଁ...ସେହି ଦୁଃଖଦାୟକ ଏକ୍‌ସିଡେଣ୍ଟ ଦିନଠୁ ଯେ ତୁମେ ମୃତ୍ୟୁବରଣ କଲଣି ମିତା !!"

..."ହଁ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ମୁଁ ମରିଛି... ମୋର କଥା ଭାବି ଭାବି ମୋ ବାପା ବି ମରିଛନ୍ତି । କିନ୍ତୁ...ତୁମକୁ ବାର ବାର ଖୋଜି ଖୋଜି ଯେ ଅସଂଖ୍ୟ ଥର ମୁଁ ଜନ୍ମ ନେଉଛି ଏଇ କାଠଯୋଡ଼ୀର ପଥର ବନ୍ଧ ଉପରେ । ତୁମେ ସବୁ ମୋତେ କଥା ଦେଇଥିଲ ଯେ—ଜୀବନର ପ୍ରଥମ ରାତ କଟିବ ଏଇ କାଠଯୋଡ଼ୀ ବନ୍ଧରେ ।"

..."ମିତା !!"

..."ଆସ...ଟିକେ ନଜର କର ।"

..."ଭୂତ...ଭୂତ...ମିତା !...ମିତା ! ...ମିତା !!!"

ପୁଣି ଘରଆଡ଼େ ପ୍ରବଳ ଗତିରେ ଦୌଡ଼ିବାକୁ ଆରମ୍ଭ କରିଛନ୍ତି ଶାନ୍ତନୁ । ମନରେ ଆତଙ୍କର ବହ୍ନିଶିଖା । ମୁହଁରେ ଉତ୍କଣ୍ଠିତ ଚିତ୍କାର "ମିତା...ଭୂତ...ମିତା...ଭୂତ...।"

ଟେବୁଲ ଉପରୁ ଗ୍ଲାସ୍ କପ୍‌ଟି ଖସି ପଡ଼ିଲା ତଳେ ।

ବେଡ଼୍‌ରୁମ ଘରୁ ଧାଇଁ ଆସୁ ଆସୁ ପାଟିକରି ଉଠିଲେ ସଙ୍ଘମିତ୍ରା... "କ'ଣ ହେଲା ? କ'ଣ ହେଲା ତୁମର ...??"

..."ଭୂତ...ଭୂତ ମିତା...!"

..."ଏଁ ...ସନ୍ଧ୍ୟା ବେଳଟାରେ ଭୂତ । ତୁମ ମୁଣ୍ଡ କ'ଣ ଠିକ୍ ନାହିଁ ?

"ତୁମେ ..ତୁମେ...ମିତା..."

"...ମୁଁ ମିତା ନୁହେଁ...ସଙ୍ଘମିତ୍ରା...।"

"କିନ୍ତୁ..."

..."ଦେଖ...ମୁଣ୍ଡ ପିଟି ମରିବ କହୁଛି । ଥରେ ନୁହେଁ ଦୁଇଥର ନୁହେଁ ଅନେକ ବାରତ' ତୁମଠାରୁ ଶୁଣିଲି ଯେ ତୁମେ ମିତାକୁ ଭଲ ପାଉଥିଲ । ଦୈବକ୍ରମେ ସେ ଏବେ ଏକ୍‌ସିଡେଣ୍ଟରେ ମଲେ । ତେଣୁ ଇଚ୍ଛାକରି ତୁମେ ମୋତେ ବାହାହେଲ । ପୁଣି ବାରମ୍ବାର ତାଙ୍କ କଥା ମନେ ପକାଇ ମୋତେ ଦୁଃଖ ଦେଉଛ କାହିଁକି ?"

..."ସଙ୍ଘମିତ୍ରା ...!!"

"କ'ଣ ହେଉଛି ତୁମର ?"

"ତୁମେ ଟିକେ ମୋ ପାଖକୁ ଆସ ସଙ୍ଘମିତ୍ରା । ମୁଁ ତୁମକୁ ପ୍ରାଣଭରି ଆଲିଙ୍ଗନ କରିବ ।"

"ଏଁ କ'ଣ କହିଲ ?"

...“ହିଁ...ହିଁ...ସଂଘମିତ୍ରା ! ମୁଁ ତୁମକୁ ଆଲିଙ୍ଗନ କରି ଏଇ ଅନନ୍ତ ବାୟୁ ଦେହରେ ରଖିଯିବାକୁ ଚାହେଁ ତାହାର ଅବିନଶ୍ୱର ସ୍ୱରୂପ ।”

...“ମାନେ ?”

...“ଟିକେ ପାଖକୁ ଲଗିଆସ ସଂଘମିତ୍ରା !”

କହୁ କହୁ ଶାନ୍ତନୁ ଧଡ଼କରି ଚେୟାରରୁ ଉଠିପଡ଼ି ଜାବୁଡ଼ି ଧରିଲେ ସଂଘମିତ୍ରାଙ୍କୁ । ଆଶ୍ଚର୍ଯ୍ୟ ବିମୂଢ଼ ହୋଇ କେବଳ ଚାହିଁଥିଲେ ସଂଘମିତ୍ରା ।

ଶାନ୍ତନୁଙ୍କ ଅତୃପ୍ତ କାମନାର ନିଶ୍ୱାସରେ ଉତ୍ତପ୍ତ ହୋଇ-ଉଠିଲା ସମଗ୍ର କୋଠରିଟି ।

---

* ଶାନ୍ତନୁ ବିଜ୍ଞାନ ପତ୍ରିକା ଦେହରୁ ଯେଉଁ ସମ୍ବାଦଟି ପଢ଼ୁଥିଲେ......ତାହାର ସାରମର୍ମ ହେଲା......

“ଆମେରିକାର ବୈଜ୍ଞାନିକମାନେ ଆବିଷ୍କାର କରିଛନ୍ତି ଯେ ଏ ବାୟୁମଣ୍ଡଳରୁ ମଣିଷର ସ୍ୱରୂପ ବା ଶବ୍ଦ ଲିଭିଯାଏ ନାହିଁ । ଆଜି ଇଚ୍ଛାକଲେ ପାଞ୍ଚ ହଜାର ବର୍ଷ ତଳର କୌଣସି ଏକ ମଣିଷର କଣ୍ଠସ୍ୱରକୁ ରେକର୍ଡ଼ କରି ହେବ । ତାହାର ଚିତ୍ରକୁ ମଧ୍ୟ କ୍ୟାମେରାରେ ଗ୍ରହଣ କରାଯାଇ ପାରିବ । ତେଣୁ ମଣିଷର ଶବ୍ଦ ଓ ସ୍ୱରୂପ ଅବିନଶ୍ୱର । ଏପରି କି ଆମେ ଯେଉଁଠି ବୁଲୁଛୁ, ବସିଛୁ, ଶୋଇଛୁ, ସେଠାରେ ହଜାର ହଜାର ଅଦୃଶ୍ୟ ସ୍ୱରୂପ ଆଟମ୍ ଭଳି ଘୂରି ବୁଲୁଛନ୍ତି । ଏହି ଶବ୍ଦ ଓ ଚିତ୍ର ଗ୍ରହଣ ପାଇଁ ସଫଳ ଯନ୍ତ୍ର ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନ ଥିଲେ ମଧ୍ୟ, ଗବେଷଣା ଅନେକାଂଶରେ ସଫଳ ହୋଇଛି ।

ଖୁବ୍ ନିକଟରେ ଏହା କାର୍ଯ୍ୟକାରୀ ହେବା ସମ୍ଭବ ।

---

# ରମ୍ୟରଚନା

## ॥ ଖାସୁଆ ଖାସୁକେନ୍ଦ୍ର ॥

**ଫତୁରାନନ୍ଦ**

ମନ୍ତ୍ରୀ ଯୁଗ୍ମ ନିର୍ଦ୍ଦେଶକଙ୍କୁ କଡ଼ା ତାଗିଦ କରି ଶୁଣେଇ ଦେଲେ "ଦେଖ ଏ ଖାସୁ କରଣ କେନ୍ଦ୍ରରେ ବହୁଦିନ ଧରି ଆଶାନୁରୂପ କାର୍ଯ୍ୟ ନ ହେବାରୁ ସରକାର ଏ କେନ୍ଦ୍ର ତଥା ଯୁଗ୍ମ ନିର୍ଦ୍ଦେଶକ ପଦ ଉଠାଇ ଦେବାକୁ ସ୍ଥିର କରିଥିଲେ । କିନ୍ତୁ ମୁଁ କର୍ମଚାରୀମାନଙ୍କୁ ବଦଳି କରି ଖାସୁକରଣ କେନ୍ଦ୍ରରେ ନୂତନ ପ୍ରାଣ ସଞ୍ଚାର କରାଇବାକୁ ଜିଗର କରିବାରୁ ଏ କେନ୍ଦ୍ର ରହିଲା ଓ ଆପଣଙ୍କୁ ଏଠାକୁ ଅଣାଗଲା । ଏଣୁ ଆପଣଙ୍କ ପାରିଲାପଣ ଉପରେ ସବୁ ନିର୍ଭର କରୁଛି । ଦେଖନ୍ତୁ ମୁଁ ସାଫ୍ ସାଫ୍ କହି ଦେଉଛି, ଆପଣ ଯଦି ଦିନକୁ ଖୁବ୍ କମ୍‌ରେ ୩୨ଟି ଲୋକଙ୍କୁ ଖାସୁ ନ କରିବେ ତେବେ ଏ କେନ୍ଦ୍ର ସହି ଆପଣ ନିଜେ ଉଭେଇ ଯିବେ । ଏଣୁ ସବୁକିଛି ଆପଣଙ୍କ ଦକ୍ଷତା ଉପରେ ନିର୍ଭର କରୁଛି । ଲୋକଙ୍କୁ ପ୍ରଭାବିତ କରି କେନ୍ଦ୍ରକୁ ଅଣେଇବା, ଲୋକଙ୍କୁ ବୁଝେଇ ସୁଝେଇ ଖାସୁ ହେବାଲାଗି ମଙ୍ଗେଇବା, ଏ ସବୁ କାର୍ଯ୍ୟରେ ନିଯୁକ୍ତ ଲୋକ ଓ ଦଲାଲମାନଙ୍କୁ ପ୍ରଲୁବ୍ଧ କରିବା ପାଇଁ ଆପଣଙ୍କୁ ଟଙ୍କା ଦିଆ ଯାଇଛି । ଏହି ଟଙ୍କାକୁ ବିଜ୍ଞତାର ସହି ଖର୍ଚ୍ଚ କଲେ ଖୁବ୍ ସୁଫଳ ପାଇବେ । ଦିନକୁ ୩୨ କାହିଁକି ୫୦।୬୦ ବି ଖାସୁ କରିପାରିବେ । କେମିତି ପ୍ରଚାର ହେବ, କେଉଁଠି ପ୍ରଚାର ହେବ ସେ ସବୁ ଆପଣ ଠିକ୍ କରିବେ । ଆମେ ସେ ବିଷୟରେ ପାଟି ଫିଟେଇବୁ ନାହିଁ । ଆମେ କେବଳ ଦେଖିବୁ ଆପଣ ନିତି ଖୁବ୍ କମ୍‌ରେ ୩୨ଟି ଲୋକଙ୍କୁ ଖାସୁ କରି କେନ୍ଦ୍ରରୁ ବିଦାୟ ଦେବେ । ଓଃ ! "କଅଣ କହୁଛ ?"

ଆଙ୍ଗୁଠି ମଳି ମଳି ଯୁଗ୍ମନିର୍ଦ୍ଦେଶକ କହିଲେ—"ଆଜ୍ଞା ମୋ ଉପରେ ଆସ୍ଥା ରଖନ୍ତୁ, ଗୋଟାଏ ବର୍ଷରେ ସାରା ପ୍ରଦେଶଟାକୁ ଖାସୁ କରିଦେବି । କେମିତି କରିବାକୁ ହେବ ସେ ସବୁ ମୋ ନଖ ଦର୍ପଣରେ ରହିଛି । ଆଜ୍ଞା ମୋ ସାନଭାଇ ଜଣେ ପଶୁ ଡାକ୍ତର । ସେ ତା' ଅଞ୍ଚଳରେ ସବୁ ଷଣ୍ଢ, ବୋଦା, କୁକୁର, ଭୁଆଙ୍କୁ ଖାସୁକରି ଦେଇଛି । ଗୋଟିଏ ହେଲେ ନିସ୍ତାର ପାଇ ନାହାନ୍ତି । ମୁଁ ମଣିଷ ଡାକ୍ତର । ତା'ର ବଡ଼ଭାଇ । ମୋତେ ବଳେଇ ଯିବନି । ଦି ତିନିଟା ବର୍ଷରେ ସବୁ ପ୍ରଜନନକ୍ଷମ ବାପମାନଙ୍କୁ ଖାସୁକରି ସାଫ୍ କରିଦେବି । ଆପଣ ନିଶ୍ଚିନ୍ତ ରହନ୍ତୁ । ବର୍ଷକ ପରେ ମୋତେ ପଚାରିବେ ।"

ମନ୍ତ୍ରୀ ଖୁସିହୋଇ ଚାଲିଗଲେ । ଯୁଗ୍ମନିର୍ଦ୍ଦେଶକ ବିଭାଗର ବଛା ବଛା ପାରିଲାବାଲା କେତେକ କର୍ମଚାରୀଙ୍କୁ ଧରି ଯୋଜନାରେ ଲାଗି ପଡ଼ିଲେ । ତାଙ୍କର ଆନ୍ତରିକତା କର୍ମକୁଶଳତା ଯୋଗୁଁ ଖାସୁ କେନ୍ଦ୍ରଟି ସରଗରମ ହୋଇ ଉଠିଲା । ଲୋକଙ୍କ ପାଖରେ କ୍ରମେ ସେ 'ଖାସୁସାହାବ' ବୋଲି ପରିଚିତ ହୋଇଗଲେ । ବର୍ଷକ ଭିତରେ ଘରର ବାରିପଣ ଲୋକଙ୍କୁ ଯେକୌଣସି ମତେ ଖାସୁ କରାଯିବ ଏ ଚିନ୍ତା ଖାସୁସାହାବଙ୍କୁ ସର୍ବଦା ବିଚଳିତ କରି ପକାଉଥାଏ । ପୁରୁଣା କାଳିଆ ମାମୁଲି ବିଜ୍ଞାପନ ଉପରେ ତାଙ୍କର ଆସ୍ଥା ନ ଥିଲା । କିନ୍ତୁ ଗୋଟାଏ ନୂଆ ଆଖି ଦୃଶିଆ କାମ ନ କଲେ ଲୋକେ ହଠାତ୍ ଆକୃଷ୍ଟ ହେବେନାହିଁ । କାମ ବି ଚଟାପଟ ଆଗେଇବ ନାହିଁ । ମନ୍ତ୍ରୀଙ୍କ ପାଖରେ ହାସ୍ୟାସ୍ପଦ ହେବାକୁ ପଡ଼ିବ ।

"ଖାସୁସାହାବ ପ୍ରଥମ ଯୋଜନା ସ୍ୱରୂପ ଆରମ୍ଭ କଲେ— 'ଖାସୁ ଲଟରି' । ଏହି ଯୋଜନା ଅନୁଯାୟୀ ଯେଉଁ ଲୋକ ଖାସୁ ହେବ ତାକୁ ଗୋଟିଏ ଟିକେଟ୍ ମିଳିବ । ଖାସୁ ଲୋକଟି ଏ ଟିକେଟକୁ ଯତ୍ନର ସହିତ ସାଇତି ରଖିବେ । ଛ'ମାସ ଭିତରେ ଯେତେ ଲୋକ ଖାସୁ ହେବେ, ସେମାନଙ୍କର ନମ୍ବର ସବୁ ଖାଲେଇରେ ଭର୍ତ୍ତିକରି ଲଟରି ଉଠାଣ କରାଯିବ । ପ୍ରଥମ ପୁରସ୍କାର ଏକ ହଜାର, ଦ୍ୱିତୀୟ ପୁରସ୍କାର ପାଞ୍ଚଶହ ଏବଂ ତୃତୀୟ ପୁରସ୍କାର ଦୁଇଶହ ଟଙ୍କା ଦିଆଯିବ । ଏହାର

ପ୍ରଚ୍ଚାର ପତ୍ର ବହୁ ସଂଖ୍ୟାରେ ଛପା ଯାଇ ଗାଁ ଗଣ୍ଡା, ସହର ଓ ସହରତଳି ଅଞ୍ଚଳମାନଙ୍କରେ ବଣ୍ଟାଗଲା । ଖାସୁସାହାବଙ୍କର ଖବର କାଗଜ ଅପେକ୍ଷା ପ୍ରଚ୍ଚାର ପତ୍ର ଉପରେ ଅଧିକ ଆସ୍ଥା ଥିଲା । ଦିନ କେଇଟା ପରେ ଲୋକେ କ୍ରମେ ଖାସୁ କେନ୍ଦ୍ରକୁ ଗଡ଼ିବାକୁ ଆରମ୍ଭ କଲେ । ଛ'ମାସ ପରେ ଯେତେବେଳେ ୭ଟି ଖାସୁଆ ବନ୍ଧୁ ଲୋକଙ୍କ ସାମନାରେ ୭ଟିଯାକ ପୁରସ୍କାର ହାତରେ ଧରି, ହେଣ୍ଡିମାରି ହସ ହସ ବଦନରେ ଘରକୁ ଫେରିଲେ, ସେତେବେଳେ ଖାସୁ କେନ୍ଦ୍ରଟା ଅଧିକ ଜନପ୍ରିୟ ହୋଇ ଉଠିଲା । ଆହୁରି ଅଧିକ ଲୋକ ଖାସୁ କେନ୍ଦ୍ରକୁ ଗଡ଼ିଲେ । ହେଲେ ଖାସୁସାହାବଙ୍କ ମନରେ ତୃପ୍ତି ନ ଥାଏ । ସେ ଚାହୁଁଛନ୍ତି ଆହୁରି ଅଧିକ ଲୋକ କିପରି ଖାସୁହେବେ । ଆହୁରି ଗୋଟିଏ ଯୋଜନା ସେ ପୂର୍ବ ଯୋଜନା ସହିତ ଯୋଖିଲେ । ଏହା ଅନୁଯାୟୀ ଅନେକ ଦଲାଲ ରଖାଗଲେ । କଂସେଇ ଖାନାକୁ ନେବାଲାଗି ବେପାରୀମାନେ ଯେପରି ଗୁରିଆଡ଼ୁ ଗୋଟିଆ ଗୋଟେଇ କରି ଛେଳି ମେଣ୍ଢାଙ୍କୁ ଏକାଠି କରନ୍ତି, ଏ ଦଲାଲମାନେ ସେମିତି ଫୁସୁଲା ଫୁସୁଲି କରି ଖାସୁ-କେନ୍ଦ୍ର ପାଇଁ ଉଦ୍ଦିଷ୍ଟ ଲୋକମାନଙ୍କୁ ପଛେଲେ ଏକାଠି କରି ଖାସୁକେନ୍ଦ୍ରକୁ ଅଡ଼େଇ ନଅନ୍ତି । ସେମାନେ ମୁଣ୍ଡପିଛା ଟଙ୍କାଏ ଲେଖାଏଁ ଅଣ୍ଟାରେ ଖୋସି ଚାଲି ଯାଆନ୍ତି । ସେମାନଙ୍କୁ ସେ କେବଳ ଏତିକ ମିଳେ ତାହାନୁହେଁ । ଲଟେରି ପୁରସ୍କାର ପାଇଥିବା ଖାସୁଆମାନଙ୍କୁ ଯେଉଁ ଦଲାଲମାନେ ଆଣି ଥାଆନ୍ତି ସେମାନେ ଚାରିଶହ, ଦୁଇଶହ ଓ ଶହେ ଟଙ୍କା ବକ୍‌ସିସ୍ ସ୍ୱରୂପ ପାଆନ୍ତି । ଏ ବ୍ୟବସ୍ଥା ଆହୁରି ଭଲକାମ ଦେଖେଇଲା । ଦଲାଲମାନେ ଗାଲୁ ମାଲୁ କରି ଏମିତି ପ୍ରଚ୍ଚାର ଚଲେଇଲେ ଯେ ଅନେକ ଓଅଡ଼ା ବି ଖାସୁ କେନ୍ଦ୍ରକୁ ଧାଇଁଲେ । ଖାସୁ-କେନ୍ଦ୍ରର କର୍ମଚ୍ଚାରୀମାନେ ଖାସୁସାହାବଙ୍କ ଯୋଜନାକୁ ମନେ ମନେ ଖୁବ ତାରିଫ୍ କଲେ । କେନ୍ଦ୍ର ବନ୍ଦହୋଇ ଯିବାର ତଥା ସେମାନଙ୍କର ଛଟେଇ ହୋଇ ଯିବାର ଭୟ ଆଉ ରହିଲା ନାହିଁ । ମନ୍ତ୍ରୀ ଯେ ଖାସୁସାହାବଙ୍କୁ ବହୁତ ବହୁତ ବଧେଇ ଦେବେ ସେ ବିଷୟରେ ସେମାନଙ୍କର ଆଉ ତିଳେ ହେଲେ ସନ୍ଦେହ ରହିଲା ନାହିଁ । ହେଲେ ଖାସୁସାହାବଙ୍କ ମନରେ ତୃପ୍ତି ନ ଥାଏ ସେ ଖୋଜୁ ଥାଆନ୍ତି ଆହୁରି ବେଶି, ଆହୁରି ବେଶି । କଣ୍ଟ ସମୟର ଅଧାରେ କେମିତି କାମଟା ହାସଲ କରିଦେଇ ମନ୍ତ୍ରୀଙ୍କୁ ଖୁସି କରିଦେବେ ସେହି ବିଷୟ ତାଙ୍କ ମୁଣ୍ଡରେ ଘାଣ୍ଟି ଚକଟି ହେଉଥାଏ । କର୍ମଚ୍ଚାରୀମାନେ ଆଉ ବେଶି ହୋ ନ କରିବାକୁ ବୁଝେଇଲେ । ଅତି ଲୋମ୍ଭ ଚପୁଡ଼ିଲେ ପିତା ହେବବୋଲି ବତେଇଲେ । ବଳେଇ କରି ଖାଇଲେ ପେଟ ଫମ୍ପାଏ ବୋଲି କହିଲେ । ଖାସୁସାହାବଙ୍କ କାନରେ କିନ୍ତୁ ଏଗୁଡ଼ାକ ବିଲକୁଲ ପଶିଲା ନାହିଁ । ସବୁ କଥାକୁ ସେ ବେଖାତର କରି ଉଡ଼େଇ ଦେଲେ । ସେ ଆହୁରି ଆଗେଇବାର ଯୋଜନା ତିଆରି କଲେ । ଖାସୁଆ ତାଲିକା ଦେଖି ସେ ଜାଣି ପାରିଲେ ସେଗୁଡ଼ିକ ସମସ୍ତେ ପ୍ରାୟ ନିମ୍ନ ଶ୍ରେଣୀର ଲୋକ; ମଜୁରିଆ, ରିକ୍ସାବାଲା ଆଦି । ଶିକ୍ଷିତ ଭଦ୍ର-ଲୋକ ତହିଁରେ ଗୋଟିଏ ହେଲେ ଦେଖିବାକୁ ମିଳୁନି । ଶିକ୍ଷିତ ଭଦ୍ରଲୋକମାନେ ଏ ତାଲିକା ଭିତରକୁ ନ ଆସିଲେ ଉଦ୍ଦେଶ୍ୟ ସଫଳ ହେବନାହିଁ । ହଜାରେ ମୂର୍ଖଙ୍କୁ ଖାସୁକଲେ ଯେଉଁ ଫଳ ମିଳିବ, ଗୋଟିଏ ଶିକ୍ଷିତଙ୍କୁ ଖାସୁକଲେ ତହିଁରୁ ଅଧିକ ଫଳ ମିଳିବ । ଜଣେ ଖାସୁଆ ଶିକ୍ଷିତର ମୌଖିକ ପ୍ରଚ୍ଚାର ଢେରି ଭଲ କାମ ଦେଖେଇବ । ଜନସାଧାରଣ ସେମାନଙ୍କ କଥାରେ ବେଶି ବିଶ୍ୱାସ କରିବେ, ବେଶି ଆସ୍ଥା ରଖିବେ ଆଉ ବହୁ ସଂଖ୍ୟାରେ ଖାସୁକେନ୍ଦ୍ରକୁ ଧାଇଁବେ । ଦଲାଲ ଆଣିଥିବା ଲୋକେ ପ୍ରଲୋଭନରେ ପଡ଼ି ଆସୁଛନ୍ତି । ଯୋଜନାର ଗୁରୁତ୍ୱ କିଛି ବୁଝୁନ୍ତି ନାହିଁ । ତେଣୁ ସେମାନଙ୍କ ଦ୍ୱାରା ମୌଖିକ ପ୍ରଚ୍ଚାରଟା ହୋଇ ପାରେନାହିଁ, ଯେଉଁଟାକି ଶିକ୍ଷିତ ଖାସୁଆମାନଙ୍କ ପକ୍ଷେ ସମ୍ଭବ । ସେହିମାନଙ୍କ ତୁଣ୍ଡ ବାଇଦ ସହସ୍ର କୋଶଯାଏ ଖେପିଯିବ । ଦଲାଲମାନେ ତ ତାଙ୍କ ପାଖ ମାଡ଼ି ପାରିବେ ନାହିଁ । ସେମାନଙ୍କ ପାଖ ମାଡ଼ିବ ଖବର କାଗଜ । ଶିକ୍ଷିତ ଲୋକ ମାନେ ହିଁ ଖବର କାଗଜ ପଢ଼ନ୍ତି । ଏହି ଖବର କାଗଜ ମାଧ୍ୟମରେ ସେମାନଙ୍କୁ ପକଡ଼ିବାକୁ ହେବ । ଶିକ୍ଷିତମାନେ ଆସିଗଲେ ଖାସୁ ଯୋଜନା ପୂର୍ଣ୍ଣାଙ୍ଗ ହୋଇଯିବ ।

ଏହିପରି ବହୁ କଳ୍ପନା ଜଳ୍ପନା କରି ଖାସୁସାହାବ ଦୈନିକ ଖବର କାଗଜମାନଙ୍କରେ ସର୍ବସାଧାରଣଙ୍କୁ ଖାସୁ ହେବାଲାଗି ନିମନ୍ତ୍ରଣ କରିବାର ବିଜ୍ଞାପନ ଦେଲେ । ଗୋଟିଏ କାଗଜରେ ବାହାରିଲା—"ତେଲୁଣିପୋକ ପରି ଘାଲୁ ଘାଲୁ ଛୁଆ ଖେଳେଇବା ଏକ ଅମାନୁଷିକ କାର୍ଯ୍ୟ । ଏପରି ହୀନ ଅବସ୍ଥା ଆସିବା ପୂର୍ବରୁ ଖାସୁହୋଇ ପଡ଼ନ୍ତୁ ।"

ଆଉ ଗୋଟିକରେ ବାହାରିଲା—"ସୁଖୀ ପରିବାରଟିଏ ଚାହାନ୍ତି ? ମାତ୍ର ଦୁଇଟି ସନ୍ତାନ ପରେ ଖାସୁହୋଇ ପଡ଼ନ୍ତୁ ।"

ଅନ୍ୟଟିରେ ବାହାରିଲା—"ବହୁ ସନ୍ତାନର ଅର୍ଥ ବହୁ ଜଞ୍ଜାଳ । ବହୁ ଜଞ୍ଜାଳର ଅର୍ଥ ବହୁ ଦୁଃଖ କଷ୍ଟ, ବହୁ ଆଶଙ୍କା

ଉଦ୍‌ବେଗ, ବହୁ ମନସ୍ତାପ । ଏଥିରୁ ମୁକ୍ତ ପାଇବାକୁ ହେଲେ ଅତଶୀଘ୍ର ଖାସୁହୋଇ ପଡ଼ନ୍ତୁ ।"

ଏମିତଆ ଏମିତଆ ବହୁ କଥା ବଜ୍ଞାପନରେ ବାହାରଲା । ବୃଢ଼ୀଆଣି ଜାଲ୍ ମେଲଇ ଦେଇ ମାଛଙ୍କୁ ଚ଼ାକ ରହଲ ପର ଖାସୁସାହାବ ବଜ୍ଞାପନ ଦେଇ ଶିକ୍ଷିତ ଲୋକମାନେ କପର ଖାସୁକେନ୍ଦ୍ରର ଜାଲରେ ଆସି ପଡ଼ବେ ତାହା ଦେଖିବାକୁ ଚ଼ାକ ରହଲେ । ସାତ ଅ଼ଠଦନ ପରେ ଜଣେ ଶିକ୍ଷିତ ଲୋକ ଖାସୁକେନ୍ଦ୍ରଆଡ଼େ ଗଡ଼ବାର ଦେଖାଗଲା । ଖାସୁସାହାବ ମନେ ମନେ କୁଳୁର ଉଠିଲେ । ଏଇଟା କେବଳ ବଜ୍ଞାପନର କରାମତ । ଆଡ଼କୁ ଶିକ୍ଷିତ ଲୋକମାନେ ଅନଳକୁ ପତଙ୍ଗ ଧାଇଁଲା ପର ଖାସୁକେନ୍ଦ୍ରକୁ ଧାଇଁବେ । ଆଗରୁ ଏପର ବଜ୍ଞାପନ ଦେଇଥିଲେ କାମକାହିଁ କେତେଦୂର ଆଗେଇ ଯାଇଥାନ୍ତା ! ଏଥିଲାଗି ଖାସୁସାହାବଙ୍କ ମନେ ମନେ ଟିକିଏ ଅନୁତାପ ବ ହୋଇଗଲା ।

ଶିକ୍ଷିତ ଲୋକଟି ସିଧା ସଳଖ ଖାସୁସାହାବଙ୍କ ପାଖକୁ ଆସି ସ୍ମିତ ହସର ସହ ସରୁ ନମସ୍କାରଟିଏ ପକେଇ ପଗ୍ଭରଲେ —"ଆଜ୍ଞା ଆପଣ ଖାସୁସାହାବ ?"

"ବସ୍ତୁ ବସ୍ତୁ ବସନ୍ତୁ ।"

ଲୋକଟି ବସିବା ପରେ ଖାସୁସାହାବ ଆଉ ଅପେକ୍ଷା ନ କର ଆରମ୍ଭ କରଦେଲେ—"ଆଜ୍ଞା ଆପଣଙ୍କର କେଇଟି ପିଲା ?"

"ଦୁଇଟି ପୁଅ ,ଗୋଟିଏ ଝିଅ ।"

"ବାଃ ! ଆପଣହିଁ ଯଥାର୍ଥ ସୁଖୀ ପରବାର ଗଢ଼ିଛନ୍ତି । ଆପଣ ଜଣେ ଶିକ୍ଷିତ ଲୋକ । ଆପଣ ନିଶ୍ଚୟ ବଜ୍ଞାପନ ପଢ଼ିଥିବେ । ମୁଁ ଦୃଢ଼ଭାବରେ ଜାଣେ ଆପଣଙ୍କ ପର ଶିକ୍ଷିତ ଲୋକମାନେ ବଜ୍ଞାପନ ଅନୁଯାୟୀ ନିଶ୍ଚୟ କାର୍ଯ୍ୟ କରବେ । ହେଁ ହେଁ ଆପଣଙ୍କ ନାମ ?"

"ଭୋପାଳ ସିଂ ।"

"ହେଁ ହେଁ ପିତାଙ୍କ ନାମ ?"

"ଗୋପାଳ ସିଂ ।"

"ଗ୍ରାମ, ପୋଷ୍ଟ, ଥାନା ?"

"ଗ୍ରାମ: ଚ଼ାଉଁଆଁ , ପୋଷ୍ଟ: ଡାଉଁଆ, ଥାନା: ହାଉଁଆ ।"

"ଦୁଇଟି ପୁଅ, ଗୋଟିଏ ଝିଅ ନା ?"

"ଆଜ୍ଞା ହଁ ।"

"ହେଁ ହେଁ ଆପଣହିଁ ଆଦର୍ଶ ପରବାର ଗଢ଼ିଛନ୍ତି । ଆଦର୍ଶ ପରବାର କାହାକୁ କହନ୍ତି ତାହା ଭଲଭାବେ ହୃଦୟଙ୍ଗମ କରଛନ୍ତି । ଆମ ଦେଶ ଏବେ ଆପଣଙ୍କ ପର ଲୋକ ଗୃହେଁ ।"

"କନ୍ତୁ—"

"କନ୍ତୁ ଫିନ୍ତୁର ପ୍ରଶ୍ନ ଏଠି ନାହିଁ । ମୋର ଦୃଢ଼ ଧାରଣା ଆପଣ ଜଣେ ଆଦର୍ଶ ନାଗରକ, ଭାରତର ହତାକାଙ୍‌କ୍ଷୀ । ଆରେ—କଏ ଅଛରେ ବାବୁଙ୍କୁ ଅପରେସନ ଟେବୁଲ ଉପରକୁ ନଅ ।"

"ଏଁ ଅପରେସନ୍ ଟେବୁଲ ? କାହିଁକ ମୋର କ'ଣ ହୋଇଛୁ କ ?"

"ଭୟ କରବାର କୌଣସି କାରଣ ନାହିଁ । ଅପରେସନ୍ ଖୁବ୍ ସହଜ । ଠିଆ ଠିଆ ବ କରଦେବୁ, ଜାଣି ପାରବେ ନାହିଁ । ଆରେ କଏ ଅଛ ବାବୁଙ୍କୁ ନେଇଯାଅ ।"

"ଆଜ୍ଞା ଆପଣଙ୍କର ଭୁଲ ଧାରଣା ବୋଧହୁଏ ହୋଇଛୁ । ମୁଁ ଖାସୁ ହେବାକୁ ଆସିନ । ମୁଁ 'ଖଣ୍ଡିଆଭୂତ' ପତ୍ରିକାର ସମ୍ପାଦକ । ଆପଣ ଖାସୁକେନ୍ଦ୍ର ବଷୟରେ ଖବର କାଗଜ-ମାନଙ୍କରେ ବଜ୍ଞାପନ ଦେଉଛନ୍ତି । ମୋ ପତ୍ରିକା ପାଇଁ ଏକ ବଜ୍ଞାପନ ଆପଣଙ୍କଠାରୁ ନେବାପାଇଁ ଆସିଛୁ । ଆପଣ ବଜ୍ଞାପନ-ଟିଏ ଦେଇ ଦେଖନ୍ତୁ । ସଙ୍ଗେ ସଙ୍ଗେ ଫଳ ପାଇବେ ।"

"ବନ୍ଦ କରନ୍ତୁ । ମୋର ଆଉ ଶୁଣିବାର ଧୈର୍ଯ୍ୟ ନାହିଁ । ମୁଁ ଖବର କାଗଜରେ ବଜ୍ଞାପନ ଦେଇଥିଲି, ଲୋକମାନଙ୍କୁ ଏଠାକୁ ଖାସୁ ହେବାଲାଗି ଆସିବା ପାଇଁ । ଆପଣଙ୍କୁ ବଜ୍ଞାପନ ମାଗି ଆସିବାପାଇଁ ନୁହେଁ । ଏଠୁ ଉଠନ୍ତୁ ରାସ୍ତା ଦେଖନ୍ତୁ ।"

"ଆପଣତ ଖବର କାଗଜରେ ବଜ୍ଞାପନ ଦେଇଛନ୍ତି । ଫଳ ତ ଦେଖିଥିବେ । ଆମ 'ଖଣ୍ଡିଆଭୂତ' ପତ୍ରିକାରେ ଗୋଟିଏ ବଜ୍ଞାପନ ଦେଇ ଦେଖନ୍ତୁ । ଡବଲ ଫଳ ଯଦ ନ ପାଇବେ ତେବେ ଆମେ ପତ୍ରିକା ପ୍ରକାଶନ ବନ୍ଦ କରଦେବୁ ।"

"ଆଉ ବେଶି ଗପନ୍ତୁ ନାହିଁ । ମୁଁ ଜାଣେ ଫଳ ମିଳୁ ବା ନ ମିଳୁ ଆପଣଙ୍କ ପତ୍ରିକା ବଞ୍ଚିବ ନାହିଁ । କେଇଟା ଘଣ୍ଟା କାଢ଼ି ଅଫିସରେ ତାଲା ପକେଇବେ । ଯାଆନ୍ତୁ, ମୋର ସମୟ ନଷ୍ଟ କରନ୍ତୁ ନାହିଁ ।

"ଆଜ୍ଞା ଆପଣ ଏତେ ବ୍ୟସ୍ତ ହେଲେ ଚଳିବ ? ଆପଣଙ୍କର କାମ ହେଲା ଲୋକସଂଖ୍ୟା କମେଇବା । ଯେଉଁମାନେ ରହିବେ ତାଙ୍କର ଶିକ୍ଷା, ସ୍ୱାସ୍ଥ୍ୟର ଅଭିବୃଦ୍ଧି ତ ଦରକାର । ସେ କାମ ଆମେ କରୁଛୁ । ଆମକୁ ବିଜ୍ଞାପନଟିଏ ଦେଲେ ଆପଣଙ୍କର ଖାସୁ କରଣ କାମ ଆଗେଇବ । ଆମ ପତ୍ରିକା ବି ଉପକୃତ ହୋଇ ସାହିତ୍ୟ, ସ୍ୱାସ୍ଥ୍ୟର ଅଭିବୃଦ୍ଧି କରିବ । ଯାହାକି ଜନସାଧାରଣଙ୍କ ପାଇଁ ନିହାତି ଦରକାର । ସବୁଆଡ଼ୁ ଆପଣଙ୍କର ଲାଭ ଛଡ଼ା କ୍ଷତି ନାହିଁ ।"

"ଓଃ ଆପଣ କାହିଁକି ଜୀବନବୀମା ପ୍ରତିନିଧି ପରି ମୋତେ ଘେରିଛନ୍ତି । ମୋ କାମ ହେଲା ଖାସୁକରିବା । ଆପଣ ଖାସୁ ହେବେ ତ ଆସନ୍ତୁ ।"

ଏହା କହି ଖାସୁସାହାବ ସମ୍ପାଦକଙ୍କ ହାତଧରି ଅପରେସନ୍ କୋଠରୀକୁ ନେବାପାଇଁ ଟାଣିଲେ । ସମ୍ପାଦକ ଜଣକ ଭୟଭୀତ ହୋଇ ସେଠାରୁ ପଳାଇଲେ । ଅଧଘଣ୍ଟାଏ ଯାଇଛି କି ନା ଆଉଜଣେ ଶିକ୍ଷିତ ପରି ଦିଶୁଥିବା ଲୋକ ତାଙ୍କର ଆଡ଼କୁ ଗଡ଼ିଲେ । ଭଦ୍ରଲୋକ ଜଣକ ନମସ୍କାର କରି ଟଙ୍କୋଟ ପତ୍ରଟିଏ ଖାସୁସାହାବଙ୍କ ହାତକୁ ବଢ଼ାଇ ଦେଲେ । ଖାସୁସାହାବ ତାକୁ ପଢ଼ୁ ପଢ଼ୁ ତାଙ୍କର ଗୋଡ଼ଆଡ଼ୁ ଶିର୍‌ଶିରେଇ ଉଠିଲା । ସେଥିରେ ଲେଖାଥିଲା—ଶ୍ରୀ ଧଡ଼କନ ମଳିକ, ସମ୍ପାଦକ, 'ଝଗଡ଼ୁଆ' । ରାଜ୍ୟର ସୁନାମ ଧନ୍ୟ ସର୍ବଶ୍ରେଷ୍ଠ ନିର୍ଭୀକ ମାସିକ ପତ୍ରିକା । ଖାସୁସାହାବ ଟଙ୍କୋଟ ପତ୍ରଟି ଟେବୁଲ ଉପରେ କଚଡ଼େଇ କହିଲେ—"ମୁଁ ପତ୍ରପତ୍ରିକା ବିଷୟରେ ଆଗ୍ରହାନ୍ୱିତ ନୁହେଁ ।"

"ଆପଣ କିନ୍ତୁ ଖାସୁକରଣ ବିଷୟରେ ଆଗ୍ରହାନ୍ୱିତ ।"

"ଓଃ ବୁଝିଲି ଆପଣ ତେବେ ଖାସୁ ହେବାକୁ ଆସିଛନ୍ତି ?"

"ନା ଅନ୍ୟମାନେ ଯେପରି ଏଠାକୁ ଆସି ଖାସୁହେବେ ତା'ର ବ୍ୟବସ୍ଥା କରିବାକୁ ଆସିଛି ।"

"ଓହୋ ଆପଣ ତେବେ ସମ୍ପାଦକତ୍ୱ କରିବା ସଙ୍ଗେ ସଙ୍ଗେ ଖାସୁଆମାନଙ୍କ ଦଲାଲି କରନ୍ତି ?"

"ନା, ନା, ସେ ସବୁ କିଛି ନୁହେଁ । ଆମ ପତ୍ରିକାରେ ଆପଣ ଯଦି ଗୋଟିଏ ବିଜ୍ଞାପନ ଦେବେ ତେବେ ଦେଖିବେ କିପରି ଲୋକେ ପିମ୍ପୁଡ଼ି ଧାର ପରି ଏ ଖାସୁକେନ୍ଦ୍ରକୁ ଛୁଟିବେ ।"

"ମାଫ୍ କରିବେ । ଏଠି ଲୋକଙ୍କୁ ଖାସୁ କରାଯାଏ । ବିଜ୍ଞାପନ ଦିଆଯାଏ ନାହିଁ ।"

"ଆପଣ କିନ୍ତୁ ଖବର କାଗଜକୁ ବିଜ୍ଞାପନ ଦେଇଛନ୍ତି । ପତ୍ରିକା ପ୍ରତି ଏପରି ବିମୁଖ କାହିଁକି ? ଏହା ଏକ ପ୍ରିୟାପ୍ରୀତି ତୋଷଣର ଜ୍ୱଳନ୍ତ ନିଦର୍ଶନ ନୁହେଁ କି ?"

"ଓଃ ଦେଖୁଛି ଆପଣ ପତ୍ରିକାର ନାମକୁ ସାର୍ଥକ କରିଛନ୍ତି । ମୁଁ ଆପଣଙ୍କ ସଙ୍ଗେ ଝଗଡ଼ା କରି ପାରିବିନି କି ଆପଣଙ୍କୁ କୌଣସି ବିଜ୍ଞାପନ ଦେଇ ପାରିବିନି । ଆପଣ ଏଠୁ ଶୀଘ୍ର ଯାଆନ୍ତୁ ।"

ସମ୍ପାଦକ ପୁଣି କଅଣ କହିବାକୁ ଯାଉଥିଲେ । କିନ୍ତୁ ଖାସୁସାହାବଙ୍କୁ ଚପରାସିକୁ ଡାକିବାର ଦେଖି କ୍ରୋଧ ଓ ଅପମାନରେ ସ୍ଥାନ ପରିତ୍ୟାଗ କଲେ । ଖାସୁସାହାବ ଟେବୁଲ ଉପରେ ବିଧାଟାଏ ମାରିଦେଇ କହିଲେ—"ଏ ବିଜ୍ଞାପନ ଭିକାରୀଗୁଡ଼ାକ ମଣିଷକୁ ବସେଇ ଉଠେଇ ଦେବେନାହିଁ ।"

ଦିନେ ଦିନେ ଅନ୍ତରରେ ଧାରାବାହିକ ଭାବରେ ଖାସୁସାହାବଙ୍କ ଉପରେ ପତ୍ରିକା ସମ୍ପାଦକମାନଙ୍କର ଚଢ଼ାଉ ଲାଗି ରହିଲା । ଖାସୁସାହାବ କ୍ରମେ ଏତେଦୂର ଉତ୍ୟକ୍ତ ହୋଇ ଉଠିଲେ ଯେ ଚଢ଼ାଉ କଲାବାଲାଏ ଯଦି ସମ୍ପାଦକ ନ ହୋଇଥାନ୍ତେ ତେବେ ସେମାନଙ୍କୁ ସେ ଠେଙ୍ଗେଇ ବିଦାକରି ଦେଇ ଥାଆନ୍ତେ । ବ୍ୟତିବ୍ୟସ୍ତ ହୋଇ ସେ ଭାବିବାକୁ ଲାଗିଲେ— "କି ବିଚିତ୍ର କଥା ମୁଁ ବିଜ୍ଞାପନ ଦେଲି ଲୋକେ କେମିତି ଅଧିକରୁ ଅଧିକ ଆସି ଖାସୁଆ ହେବେ । ସେମାନେ ଗଲେ ଗାଧୋଇ । ମୋ ବିଜ୍ଞାପନ ଓଲଟି ନିମନ୍ତ୍ରଣ କରି ଆଣିଲା ଖାଉଡ଼େ ବିଜ୍ଞାପନ ଶିକାରୀ !"

ବିଜ୍ଞାପନ ଶିକାରୀଦଳଙ୍କୁ ଦୂରରେ ରଖିବା ପାଇଁ ଖାସୁସାହାବ ଗୋଟିଏ ନିୟମ କଲେ । ଯେଉଁ ସମ୍ପାଦକ ଆଗ ଖାସୁହେବେ ତାଙ୍କୁଇ ବିଜ୍ଞାପନ ଦିଆଯିବ । ଅଧିକାଂଶ ସମ୍ପାଦକ କଞ୍ଚା ବା ଦରପାକଲା । କେହିହେଲେ ପୂରା ପାକଲା ହୋଇ ନାହାନ୍ତି । ଗୋଟାଏ ବିଜ୍ଞାପନ ପାଇଁ ଖାସୁହେବା କଥାଟା କାହାରି ପସନ୍ଦ ହେଲାନାହିଁ । ବିଜ୍ଞାପନ ପାଇବାର ଆଶା ସମସ୍ତଙ୍କର ତୁଟିଗଲା । ସମସ୍ତେ ରକ୍ତଗୁଳା ଗ୍ରେବେଇ କିପରି ଖାସୁସାହାବଙ୍କୁ ପଟାଏ ଦେବେ ସେହି ବିଷୟରେ ଧନ୍ଦି ହେବାକୁ ଲାଗିଲେ ।

କଥାରେ ଅଛି ଏକା କାଠର ଚଢ଼େଇ ସବୁବେଳେ ଏକାଠି ରହନ୍ତି । ନିର୍ଣ୍ଣ ହୋଇଥିବା ବିଜ୍ଞାପନ ଶିକାରୀ ଦଳ ଏ ବିଷୟରେ ମଧ୍ୟ ଚଳେଇବାକୁ ଦିନେ ଏକଯୁଟ ହେଲେ । ଖୁବ୍ ତନାଘନା ଆଲୋଚନା ଚାଲିଲା । ଶେଷରେ ମେଣ୍ଟା ସମ୍ପାଦକ ଜଣକ କହିଲେ—"ଦେଖ ଖାସିସାହାବ ଯଦି ଆମର ପୃଷ୍ଠପୋଷକତା ନ କଲା, ତେବେ ଆମେ କାହିଁ ତା'ର ପୃଷ୍ଠପୋଷକତା କରିବା ? ଆମେ ଆଉକୁ ମୁହାଁମୁହିଁ ତା'ର ଦୋଷ ଘୋଷକତା କରିବା । ଦୁନିଆରେ ସବୁ ଜିନିଷର ଭଲ-ମନ୍ଦ ରହିଛି । ଆମେ ବାଛି ବାଛି ଖାସିକରଣର ମନ୍ଦତିକ ଗାଇ ଚାଲିବା । ଲାଗିପଡ଼ି ତା' ଖାସିକେନ୍ଦ୍ରକୁ ଖାସି କରିଦେବା । ସେ କେନ୍ଦ୍ରର ନାଁ କରିଦେବା "ଖାସୁଆ ଖାସିକେନ୍ଦ୍ର" । ଆସନ୍ତା ସଂଖ୍ୟାରେ ସମସ୍ତେ କେନ୍ଦ୍ର ଓ ତା' ବିରୁଦ୍ଧରେ ଲେଖିବା ।

X X X X

ସାତ ଆଠ ଦିନ ମଧ୍ୟରେ ସବୁଯାକ ପତ୍ରିକା ଛୋଟିଆ ମୋଟିଆ ହୋଇ ବାହାରି ପଡ଼ିଲା । ବଡ଼ ବଡ଼ ଅକ୍ଷରର ଶିରୋନାମା ସହ ଆଖି ଦୃଶିଆ ଲେଖାମାନ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା ।

'ଖଣ୍ଡିଆଭୂତ' ପତ୍ରିକାରେ ବାହାରିଲା—"ଭାରତୀୟ-ମାନଙ୍କର ନୈତିକତା ନଷ୍ଟ କରିବାର ଅପଚେଷ୍ଟା । ଖାସିକେନ୍ଦ୍ର ବାଛବିଚାର ନ କରି ଗଜା ଭେଣ୍ଡିଆମାନଙ୍କୁ ଖାସିକରି ପକାଉଛନ୍ତି । ଏ ଗଜା ଭେଣ୍ଡିଆମାନେ ଓଳିଆ ଷଣ୍ଢପରି ଚରିଅଡ଼େ ବୁଲି ଓଦା ଖାଇବାପାଇଁ ଜାଣିଶୁଣି ଖାସି ହୋଇ ପଡ଼ୁଛନ୍ତି । ଏମାନେ ଦେଶରେ ଭ୍ରଷ୍ଟାଚାରର ସୁଅ ଛୁଟାଇ ଦେବେ । ସମାଜ କଳଙ୍କିତ ହୋଇଯିବ । ନୈତିକତା-ହୀନ ଜାତିର ମେରୁଦଣ୍ଡ ଭାଙ୍ଗି ପଡ଼ିବ । ଦେଶ ଭୂଷୁଡ଼ି ପଡ଼ିବ । ଖାସିକରଣ ତୁରନ୍ତ ବନ୍ଦ କରିବା ଲାଗି ଜନସାଧାରଣଙ୍କର ସରକାରଙ୍କ ଉପରେ ଚାପ ପଡ଼ିବା ଏକାନ୍ତ ପ୍ରୟୋଜନ ।"

'ଝଗଡ଼ିଆ' ପତ୍ରିକାରେ ବାହାରିଲା—"ହିନ୍ଦୁମାନଙ୍କୁ ନିଶ୍ଚିହ୍ନ କରିଦେବା ପାଇଁ ଘୋର ଷଡ଼ଯନ୍ତ୍ର । ଖାସିହେବା ଧର୍ମବିରୁଦ୍ଧ ବୋଲି ଦର୍ଶାଇ ଏ ଦେଶରେ ଅଣହିନ୍ଦୁମାନେ ଖାସି ହେଉ ନାହାନ୍ତି । ସେମାନେ ନିଜ ନିଜ ଜାତି ଭାଇଙ୍କୁ ମଧ୍ୟ ଖାସି ନ ହେବାଲାଗି ପ୍ରବର୍ତ୍ତାଉଛନ୍ତି । ଫଳରେ ଅଣହିନ୍ଦୁଙ୍କ ସଂଖ୍ୟା ଆମ ଦେଶରେ ବଢ଼ି ଚାଲିଛି । ଅଥଚ ଅଗଣିତ ହିନ୍ଦୁ ଗଜା ଭେଣ୍ଡିଆମାନଙ୍କୁ ନାନା ଉପାୟରେ ପ୍ରଭାବିତ କରି ଖାସି କରାଯାଉଛି । ଆଉ କିଛିଦିନ ଏହା ଅବ୍ୟାହତ ରହିଲେ ହିନ୍ଦୁ-ମାନେ ହିନ୍ଦୁସ୍ଥାନରେ ସଂଖ୍ୟାଲଘୁ ସମ୍ପ୍ରଦାୟରେ ପରିଣତ ହୋଇ ଅଣହିଂନ୍ଦୁମାନଙ୍କର ଗୋଲାମ ହୋଇ ରହିବେ । ପୁରାଣ ପ୍ରସିଦ୍ଧ ଆମର ଦେବଭୂମି ଅସୁର ଭୂମିରେ ପରିଣତ ହେବ । ହିଂନ୍ଦୁମାନେ ଜାଗ, ଲାଗ, ବାନ୍ଧି ପାଗ, ସରକାରଙ୍କୁ ଆଗ ପ୍ରତିକାର ମାଗ । ଯଦି ଏହା ସରକାରଙ୍କ ମନରେ ଦାଗ ନ ପକାଏ ତେବେ ସାଗର ବହ୍ନି ଜଳାଇ କୁହ—ରେ ସରକାର ଏ ଖାସୁଆ ସାହାବ ସଙ୍ଗେ ତୁରନ୍ତ ଭାଗ ।"

'ଦୁମ୍‌ଦୁମା' କାଗଜରେ ଗୋଟିଏ ନିମନ୍ତ୍ରଣ ପତ୍ରର ବ୍ଲକ୍ ଛପା ବାହାରିଲା । ନିମନ୍ତ୍ରଣର କର୍ତ୍ତା ହେଉଛନ୍ତି ଖୋଦ୍ ଖାସି-ସାହାବ । ସେଥିରେ ଅନ୍ୟାନ୍ୟ ଗତାନୁଗତିକ ବିଷୟ ସହ ଲେଖାଥିଲା—X X ମୋର ଅଷ୍ଟାଦଶ ପୁତ୍ର ଆୟୁଷ୍ମାନ୍ ଗଣ୍ଡଭୈରବ ସହ ଦାନ୍ତୁଡ଼ା ଗ୍ରାମ ନିବାସୀ ଚଣ୍ଡୀଚରଣଙ୍କର ପଞ୍ଚଦଶ କନ୍ୟା ଆୟୁଷ୍ମତୀ ଚେମଟୀଙ୍କ ଶୁଭ ବିବାହ—ଇତ୍ୟାଦି ଇତ୍ୟାଦି । ଏ ବ୍ଲକ ଛପା ତଳେ ଲେଖାଥିଲା—"ଖାସି ସାହାବଙ୍କ ଅପୂର୍ବ କୃତିତ୍ୱ । ଖାସି ସାହାବ ଗଜା ଭେଣ୍ଡିଆମାନଙ୍କୁ ନିର୍ବିଚାରରେ ଖାସି କରୁଥିଲାବେଳେ ନିଜେ ଅଷ୍ଟାଦଶ ପୁତ୍ରର ଜନକ ହୋଇ ସୁଦ୍ଧା ଖାସି ହୋଇ ନାହାନ୍ତି କାହିଁକି ? ସରକାର ଏପରି ଏକ ଆଦର୍ଶ ପୁରୁଷକୁ ଖାସିସାହାବ ରୂପେ ନିଯୁକ୍ତି ଦେବାରେ କି ରହସ୍ୟ ରହିଛି ?"—

ଅନ୍ୟାନ୍ୟ ପତ୍ରିକାମାନେ ଖାସିସାହାବଙ୍କ ଉପରେ ଅଗ୍ନି ବର୍ଷଣ କରି ଲାଗିଲେ । କିଏ ଲେଖିଲା ଖାସିସାହାବଙ୍କୁ ବରଖାସ୍ତ କର । କିଏ ଲେଖିଲା ଖାସିକେନ୍ଦ୍ରକୁ ତାଡ଼ିଦିଅ । କେହି କେହି ଲେଖିଲେ ଖାସିସାହାବଙ୍କ ସହିତ ତାଙ୍କର ଅଠରଟିଯାକ ପୁଅଙ୍କୁ ଅବିଳମ୍ବେ ଖାସି କରାଯାଉ ।

ପତ୍ରିକାମାନଙ୍କର ସଂଘବଦ୍ଧ ଆକ୍ରମଣରେ ଖାସିସାହାବ ପ୍ରମାଦ ଗଣିଲେ । ଦି ଚାରିଟା ଦଲାଲ ଉଦ୍ୟକ୍ତ ଲୋକଙ୍କଠାରୁ ମାଡ଼ ଖାଇବା ଫଳରେ ଆଉ କେହି ଲୋକ ସଂଗ୍ରହ କରିବାକୁ ଗଲେନାହିଁ । କ୍ରମେ ଖାସି କେନ୍ଦ୍ରଟି ଖାସୁଆ ଖାସିକେନ୍ଦ୍ରରେ ପରିଣତ ହେଲା । ଅର୍ଥାତ୍ ଖାସିକେନ୍ଦ୍ରର ଖାସୁଆ ପ୍ରଜନନ ଶକ୍ତି ବିଲ୍‌କୁଲ୍ ଲୋପ ପାଇଲା । ମାନେ ଖାସିକେନ୍ଦ୍ର ଭିତରୁ ଆଉ ଖାସୁଆ ବାହାରିବାର ଦେଖାଗଲା ନାହିଁ ।

ଚାକିରିଟା ଗଲାବୋଲି ଖାସିସାହାବ ନିଶ୍ଚିତ ହୋଇ ଯାଇଥିଲେ । ହେଲେ ମନ୍ତ୍ରୀ ଅବସ୍ଥା ବୁଝି ତାଙ୍କ ଚାକିରିଟାକୁ ରଖିଲେ । ବିଜ୍ଞାପନ ଶିକାରୀମାନଙ୍କୁ ବିଜ୍ଞାପନ ଦେଇ ପାକଳା ପାକଳି କରି ପୁଣି କାମ ସୁରୁ କରିବାକୁ ଉପଦେଶ ଦେଲେ ।

# ॥ ସ୍ୱାମୀ-ସମୀକ୍ଷା ॥

ଶ୍ରୀ ପୁଲିନ ବିହାରୀ ରାୟ

ଗୋଟିଏ ସାହି, ସାହିରେ ମରଦଙ୍କ ଭିତରୁ କିଏ କେତେ ରକମର କାମକରି ଚଳନ୍ତି । କେତେକ କାଠ-କାମ କରି ଚଳନ୍ତି । କେତେକ ଦୋକାନ କରି ଚଳନ୍ତି । କେତେକ ମୂଲ ଲାଗନ୍ତି । କିଏ ଗାଈ ଗୁଡିଏ ରଖି ତାର କ୍ଷୀର ବିକି ଚଳେ । କିଏ ଦଲାଲି କରି ଚଳେ । ଇମିତି କେତେ ରକମର ଜୀବିକା·········

ଆଉ ମାଇପିମାନଙ୍କ ମଧ୍ୟରେ କେତେକ ଧାନ କୁଟନ୍ତି । କେତେକ କାହାରି କାହାରି ଘରେ ଯାଇ ଚକିରେ ଗହମ ପେଷି, ଡାଲି ରଗଡ଼ି କିଛି ରୋଜଗାର କରନ୍ତି । କିଏ କାହା ଘରେ ପାଣିକାଢ଼ି ଯୋଗେଇ ଦେଇ ସେଥିରୁ କିଛି ଅର୍ଥ ଉପାର୍ଜ୍ଜନ କରି ଚଳନ୍ତି । କିଏ କାହା ଘରେ ରନ୍ଧାବଢ଼ା, ଗୁହାଳ ପୋଛି ଭରଣପୋଷଣ ହୁଅନ୍ତି । କିଏ ବଡ଼ିପାରି ବିକି ସେଥିରେ ଚଳନ୍ତି । କିଏ ଚୂଡ଼ାକୁଟି ଚଳନ୍ତି । ତା' ଛଡ଼ା ଯେ ଯା'ର ଘରକାମ କରି ରୋଷେଇବାସ କରି ପୁଅ, ଗେରସ୍ତଙ୍କୁ ଚର୍ଚ୍ଚା କରନ୍ତି ।

ଦିନହେଲେ ମରଦମାନେ ଯେ ଯାହା କାମକୁ ବାହାରି ଯାନ୍ତି । କିଏ ଘରେବସି କାମ କରନ୍ତି ।

ମାଇପିମାନେ ମଧ୍ୟ ଯେ ଯାହା କାମରେ ଲାଗିଯାନ୍ତି । ସଞ୍ଜହେଲେ ମରଦମାନେ କାମରୁ ଫେରି ଯା' ଘରେ ଯାହା ଥାଏ, ଗଣ୍ଡାଏ ଖାଇଦେଇ ପୁଣି କିଏ କୁଆଡ଼େ ଗପ କରିବାକୁ, ତାସ, ପଶା ଖେଳିବାକୁ କମ୍ବା ଠାକୁର ଘରେ କୀର୍ତ୍ତନ କରିବାକୁ ବାହାରି ଯାନ୍ତି । ପୁଣି କେହି କେହି ଘରେ ଚୁପଚାପ ଶୋଇଯାନ୍ତି । ପୁଣି ରାତିରେ ଖାଇବା ବେଳକୁ ଉଠି ଖା'ନ୍ତି । ଆଉ ଯେଉଁମାନେ ବାହାରକୁ ଯାଇଥାନ୍ତି, ଖାଇଲା ବେଳକୁ ଫେରି ଖାଇପିଇ ଶୋଇଯାନ୍ତି ।

ଆଉ ମାଇପିମାନଙ୍କ ଭିତରୁ ସଞ୍ଜପରେ କେତେକ ଏକଯୁଟ ହୋଇ ଗପ କରନ୍ତି ।

ମାଇପିମାନଙ୍କର ଦୈନିକ ଏକଯୁଟ ହୋଇ ଗପ କରିବାର ଜାଗାହେଲା—ପଧାନବୋଉର ପିଣ୍ଡା । ସେଇଟା ଭାରି ସୁବିଧା ଜାଗା, ଭାରି ଓସାରିଆ ପିଣ୍ଡା, ରାସ୍ତା କଡ଼ । ସେଠି ସଞ୍ଜପରେ ଯେ କେତୋଟି ମାଇପି ଏକଯୁଟ ହୁଅନ୍ତି, ସେମାନଙ୍କର ସାହିରେ ବେଶ ଖ୍ୟାତି ଅଛି, ବିଶେଷତଃ କଜିଆରେ । କେହି ସେମାନଙ୍କୁ କଜିଆରେ ହରେଇ ପାରିବେ ନାହିଁ । କଥା କଥାକେ ମୁହଁ ଚୁପ କରିଦେବେ ।

ସଞ୍ଜପରେ ସେମାନଙ୍କର ଯେଉଁ ଆଲୋଚନା-ଚକ୍ର ବସେ, ସେଥିର ପ୍ରଧାନ ବିଷୟବସ୍ତୁ ହୁଏ—ଆଜି କିଏ କାହାକୁ କଜିଆରେ ହରେଇଛି, କମିତି ତାର ମରନହାଣିଛି, ଆଉଦିନେ ମୁହଁଟେକି କଥା କହି ପାରିବନି । କେମିତି କାହା ସାଙ୍ଗରେ କଜିଆ ଆରମ୍ଭ ହେଲା, କେଉଁ କଥାରୁ କଜିଆ ଆରମ୍ଭ ହେଲା, ଅପର ପକ୍ଷ କଜିଆରେ ହାରିଗଲାବେଳେ ଖାଲି ଚୁପ ରହିଲା, ନା କାନ୍ଦି ପକେଇଲା······ ।

ଏମାନଙ୍କ ମଧ୍ୟରୁ ସମସ୍ତେ ଯେମିତି ଉଗ୍ର ଧାରିଣୀ, କେବଳ ଜଣକୁ ଛାଡ଼ି, ସେ ହେଲେ କନକ-

ଲତା, ଓରଫେ କନି । ସେ ଯେମିତି ଡିଗ୍ରିବିହୀନ ସୁଦକ୍ଷ ଏଲୋପ୍ୟାଥିକ ଚିକିତ୍ସକ । କେବଳ ଡିଗ୍ରି ନାହିଁ, ତଥାପି ଏଲୋପ୍ୟାଥିକ ଚିକିତ୍ସାରେ ଦକ୍ଷତା ହାସଲ କରି ରେଜିଷ୍ଟ୍ରେସନ୍ ଲାଗି ସରକାରଙ୍କ ନିକଟରେ ଆବେଦନ କରିଛନ୍ତି । କନିର ସେହି ଅବସ୍ଥା, କନି କେତେକ ଗ୍ରେଟ ଗ୍ରେଟ କଳିଆରେ ଜୟଲାଭ କଲାପରେ ଏ ଡିଗ୍ରିଧାରିଣୀମାନଙ୍କ ସଙ୍ଗେ ଯୋଗ ଦେଉଛି । ଭବିଷ୍ୟତର ଆଶା ଉଜ୍ଜ୍ୱଳ ।

ନିତିଦିନିଆ ସଞ୍ଜପରେ ଯେମିତି କଳିଆକୁ ବିଷୟ ବସ୍ତୁ କରି ଆଲୋଚନାଚକ୍ର ବସେ, ଦିନେ ଆଲୋଚନାଚକ୍ରରେ ଗୋଟାଏ ନୂଆ ବିଷୟବସ୍ତୁର ଅବତାରଣା କରାଗଲା । ଏ ନୂଆ ବିଷୟବସ୍ତୁ ହେଲା—କାହା ସ୍ୱାମୀ କମିତି ? ଅର୍ଥାତ୍ ଟିକିଏ ବାଢେଇ କହିବାକୁ ଗଲେ—ସ୍ୱାମୀ-ସମୀକ୍ଷା ।

ସେଦିନ ଆଲୋଚନାର ଆରମ୍ଭରେ ନୀଳାମ୍ବର ସାହୁଙ୍କ ଘରଯା କହିଲେ—ତାଙ୍କ ସ୍ୱାମୀ ମରଦ ଭଳି ମରଦ । ଆଠଟା ପିଲାର ବାପ, ତାଙ୍କୁ ବାହାରୁ ଦେଖିଲେ କିଏ ବିଶ୍ୱାସ ଯିବ ? ଚୌବାହା ଲୋକ । ଚୂଲିଲେ ମାଟି ଦବିଯିବ·········

ଆଉ ସମସ୍ତେ ଏ କଥାକୁ ସମର୍ଥନ କଲାପରି ଚୁପ ରହିଲେ ।

ତା'ପରେ ଗାଁର ଯାବଜ୍ଜୀବନ ପୁରୋହିତ ଆଦିକନ୍ଦ ପାଣିଗ୍ରାହୀଙ୍କ ଘରଯା, ତାଙ୍କ ସ୍ୱାମୀଙ୍କ କଥା କହିବାକୁ ଯାଇ ଯାହା କହିଲେ, ତାର ସାର ମର୍ମ ହେଲା— ପାଣିଗ୍ରାହୀଙ୍କ ପରି ସାହିରେ ଅନ୍ୟକେହି ଇମିତି ଜ୍ଞାନୀ ନାହାନ୍ତି । ପୁରାଣ, ଶାସ୍ତ୍ର ତାଙ୍କ ଜିଭ ଅଗରେ, ଦେବତାଙ୍କୁ ସେ ଉଠବସ କରି ପାରନ୍ତି । କର୍ମ-କର୍ମାଣିରେ ତାଙ୍କୁ ଆଗେ ଡାକିବ, ସେ ନ ଗଲେ କୋଉ କାମ ହବନାହିଁ । ଯେମିତି ସୁନ୍ଦର, ସେମିତି ଆମ୍ବୁଆଳିଆ ଦେହ । ତାଙ୍କର ନଖରୁ ବାଳଯାଏ ସବୁ ପରିଷ୍କାର·········

ଏ କଥାକୁ ସମସ୍ତେ ସମର୍ଥନ କଲାଭଳି ଚୁପ ରହିଲେ । ତା'ପରେ ଆରମ୍ଭ କଲେ ଗାଁର ନାଁ-କରା କାଠ କାରିଗର ଘନବନ୍ଧୁ ମହାରଣାଙ୍କ ଘରଯା, ସେ ଯାହା ତାଙ୍କ ସ୍ୱାମୀଙ୍କ ବିଷୟରେ ପ୍ରଶସ୍ତି ଶୁଣେଇଲେ, ତାର ସାରାଂଶ ହେଲା—ତାଙ୍କଭଳି କାରିଗର ଲୁଣପାଣି ଛୁଇଁଲାଯାଏ କୋଉଠି ନାହାନ୍ତି । ତାଙ୍କ ଦେହର ଗଠନ ଯେମିତି ବଳିଷ୍ଠ କଥାଗୁଡ଼ିକ ବାଟ୍ଲି ମାଇଲା ପରି । ଭାରି ରାଗୀ, ଟିକିଏ କୋଉ କଥାରେ ଡେରି ହେଇଗଲେ ତାକୁ ସାଙ୍ଗେ ସାଙ୍ଗେ ମାଡ଼, ତାଙ୍କ ହାତର କାଠକାମ କୁଆଡ଼େ ବଡ଼-ବଡ଼ିଆ ଲୋକେ ଭାରି ପସନ୍ଦ କରନ୍ତି·········

ଅନ୍ୟ ମାଇପିମାନେ ଏ କଥାସବୁ ଶୁଣି ନୀରବ ରହିଲେ । ତା' ପରେ ଆରମ୍ଭ କଲେ—ଅଲେଖ ଟଙ୍ଗରାଜଙ୍କ ଘରଯା ଧନିବୋଉ । ସେ ତାଙ୍କର ସ୍ୱାମୀଙ୍କର ଗୁଣଗାନ କରିବାକୁ ଯାଇ ଯାହା କହିଲେ, ସେଥିରୁ ବୁଝାଗଲା ଯେ—ତାଙ୍କର ସ୍ୱାମୀ ଗାଁର ରାମଲୀଳାରେ ଲକ୍ଷ୍ମଣର ପାର୍ଟ ଯେମିତି କରନ୍ତି, ସେମିତି ଆଉ ଏ ମହୀମଣ୍ଡଳରେ କେହି କରି ପାରିବେ ନାହିଁ । ତାଙ୍କ ରୂପ ଅବିକଳ ଲକ୍ଷ୍ମଣଙ୍କ ପରି, ଯେମିତି ଗୋରା, ସେମିତି ଦେହର ଗଠନ—ଆଉ ସେମିତି ସାହସୀ·········

ଏହାର ଉତ୍ତରରେ ପଦାବୋଉ ପ୍ରତିବାଦ କଲାଭଳି ପରିହାସ କରି କହିଲା—ହଇଲୋ, ତୋ ଗେରସ୍ତ ପୁଣି ଗୋରା, ସାହସୀ ? ତୋ ମନେ ନାହିଁ ଲଇକ୍ଷଣ ଘରଯା—ଉର୍ମିଳା । ମଲୁନାହିଁ । ହଇଲୋ, ଗଲା ତିଦସ୍ତା ବର୍ଷ ଲଇକ୍ଷଣ ଶକ୍ତିଭେଦ ଯଉଦିନ ହେଇଥିଲା, ସେଦିନ ପରା ରାବଣ ଯେତେ-ବେଳେ ହାତରେ ଶକ୍ତିଶେଳ ଧରି ତୋ' ଗେରସ୍ତକୁ ଗୋଡ଼େଇ ଆସିଲା, ତା' ଲୁଗାରେ ପରା ଭୟରେ ଝାଡ଼ା ହେଇଗଲା । ଯଉ ହସ ଉଠିଲା, ପୁଣି ତୋ ଗେରସ୍ତ ଯାଇ ପୋଖରୀରେ ଧୁଆଧୋଇ ହେଇ ଆସିଲା । ଯା ହଟହଟା ! ଭୁଲିଗଲୁଣି ? ମଲୁନାହୁଁ ।

ଆହୁରି ଥୋମଣି ହଟଲଇ ଗେରସ୍ତର ବଡ଼ିଆ ନାଁ ଦେଖଉଛୁ ?

ପଧାବୋଉର ଏ ପ୍ରତିବାଦ ଶୁଣି ଅନ୍ୟମାନେ ଅଳ୍ପ ଅଳ୍ପ ହସିଲେ । ଧମାବୋଉକୁ ଲୁଚେଇ ପରସ୍ପର ଚୁମୁଟା ଚୁମୁଟି ହେଲେ । ଧମାବୋଉ ଜୋକ ମୁହଁରେ ଲୁଣ ପଇଲା ଭଳି ଚୁନହେଇ ବସିଲା ।

ତା'ପରେ ଆରମ୍ଭ କଲେ ଅତି ଦୁଃଖରେ କନି, ଅନ୍ୟ ମାଇପିମାନଙ୍କୁ ସାକ୍ଷୀ କଲାଭଳି କହିଲେ—କ'ଣ କହିବି ନାନୀ, ମୋ ଗେରସ୍ତର ତ ବାରଦିନେ ତେର-ରୋଗ । ଆଜି ପେଟମରଡ଼, କାଲି ସୁଆସ, ପଅରଦିନ ବାତ୍‌ସୁଆ ଘର ଦରଜ, ଅପୁରଦିନ ଅଣ୍ଟାଧରା···

ଶେଷକୁ ଉପସଂହାରରେ କନି କାନ୍ଦ କାନ୍ଦ ହେଇ ଅନ୍ୟମାନଙ୍କୁ କହିଲେ—ସେ କଉ ଗେରସ୍ତରେ ଗେରସ୍ତ ଯେ, କଇଁଯାଇଁ କରି ରହିଲେ ସେ ତୁମ-ମାନଙ୍କର ଗେରସ୍ତ·········

କନିର ଇମିତିଆ କହିବାର ଶୁଣି ଅନ୍ୟ ମାଇପି-ମାନେ ଝଗିଡ଼ ଯାଇ କହିଲେ—କ'ଣ କହିଲୁ ? କ'ଣ କହିଲୁ ? ହଇଲୋ କଇଁଯାଇଁ କରି ରହିଲେ ସେ ଆମମାନଙ୍କର ଗେରସ୍ତ ? ହଇଲୋ ସେ ରୋଗଣାଟା ପୁଣି ଆମ ଗେରସ୍ତ ହବ ?········

କନି ଚୁପ, ଅନ୍ୟ ମାଇପିମାନଙ୍କ ହର୍ଷଧ୍ୱନି । ତା'ପରେ ଆରମ୍ଭ କଲେ—ସାହିର ନାମଜାଦା ଅଭିନେତା ମାର୍କଣ୍ଡ ପାଣ୍ଡଙ୍କ ଭାରିଯା ଉଦିଆ । ତାଙ୍କର ସ୍ୱାମୀଙ୍କ ବିଷୟରେ ସେ ଯାହା କହିଲେ, ସେଥିରୁ ବେଶ ବୁଝାଗଲା ଯେ ତାଙ୍କ ସ୍ୱାମୀଭଳି ଇମିତି ଅଭିନେତା ସାରା ପୃଥିବୀରେ ନାହାନ୍ତି । କାରଣ ସାହିରେ ରାମଲୀଳା ହେଲେ, ସେଥିରେ ସେ ହନୁ-ମାନର ଭୂମିକାରେ ଅଭିନୟ କରି ପ୍ରକୃତ ହନୁମାନ ପରି ନିଜକୁ ଯେମିତି ଫୁଟେଇ ପାରନ୍ତି, ସେମିତି କିଏ କରି ପାରିବ ? କେଇଟା ପୁଅ ବାହାରିବେ ?···

ଏତିକିବେଳେ ଅନ୍ୟ ମାଇପିମାନଙ୍କ ମଧ୍ୟରୁ ପ୍ରତିବାଦ କରି କହି ପକେଇଲା ସାବି—ହଁ ସତ କହିଲୁ ନାନୀ, ସେ ଭଲ ହନୁମାନ ପାର୍ଟ କଲେ କ'ଣ ହବ ? ତାର ତ ଲାଞ୍ଜ ନ ଥାଏ । ଲାଞ୍ଜ ଥିଲେ ଆହୁରି ଭଲ ମନାନ୍ତା । ସେ ଯେତେ ଯାହାକରୁ, ଲୋକେ କହୁଛନ୍ତି—ସେ ଗୋଟାଏ ଲାଙ୍ଗୁଡ଼ ଛିଣ୍ଡା ହନୁମାନଟା·········

ମାର୍କଣ୍ଡ ପାଣ୍ଡଙ୍କ ଭାରିଯା ସାତପରି ଜଣେ ଗୁର ମାଇପିଟା ତାଙ୍କ ସ୍ୱାମୀଙ୍କୁ ଇମିତି ପରିହାସ କରିବାର ଶୁଣି ରାଗରେ ଜଳିଉଠି କହିଲେ—ହଇଲୋ, ତୁ ରାମଲୀଳାର କଣ ବୁଝୁ ? କିଛି ଜାଣୁ ? ହଇଲୋ, ଲାଞ୍ଜ ନ ଥାଇ ତ ଏତେ ପ୍ରଶଂସା, ଏତେ ନାଁ । ଆଉ ଲାଞ୍ଜଥିଲେ ତ ତୋ ପରିକା ଦଶଟା ମାଇପିଙ୍କୁ ବାନ୍ଧି ଆଣନ୍ତା···

ଏତିକିବେଳେ ସାବି ଗେରସ୍ତ ଦ୍ୱିଜ ମୁଦୁଲି ଆସି ପଧାବୋଉ ବାରଣ୍ଡା ପାଖକୁ ଲାଗି ସିଜୁବାଡ଼ ସେପାଖେ ଉଡ଼ାଳରେ ଠିଆହେଲା । ମାଇପିଙ୍କ ଭିତରେ କଣ ଆଲୋଚନା ପଡ଼ିଛି ଶୁଣିବ, ଆଉ କିଛିକ୍ଷଣ ପରେ ତା' ଭାରିଯା ସାବିକୁ ଘରକୁ ଡାକି-ନବ । ଗାଈ ଗୋରୁଙ୍କୁ ଖୋଇବାରେ ସାହାଯ୍ୟ କରିବ । ତା'ପରେ ଦିହେଁ ଖିଆପିଆ କରିବେ ।

ସିଜୁବାଡ଼ ସେପଟେ ଦ୍ୱିଜ ମୁଦୁଲିଙ୍କ ଉପସ୍ଥିତି କାହାରିକି ଜଣାନାହିଁ ।

ମାର୍କଣ୍ଡ ପାଣ୍ଡଙ୍କ ଭାରିଯା ପୁଣି ଆରମ୍ଭ କଲେ—ହଇଲୋ, ସେ ମୋ ଗେରସ୍ତ ହେଇଥିଲେ, ମୁଁ ତାକୁ ଗୋଡ଼ରେ ଆଡ଼େଇ ଦିଅନ୍ତି, ତୁ ପୁଣି ମୋ ଗେରସ୍ତକୁ ବାଛି ପକେଇଲୁ ?·········

ସିଜୁବାଡ଼ ସେପଟେ ଦ୍ୱିଜ ମୁଦୁଲି ନିଜ ବିଷୟରେ ମାର୍କଣ୍ଡ ପାଣ୍ଡଙ୍କ ଭାରିଯା ମୁହଁରୁ ଗୁଣ କୀର୍ତ୍ତନ ଶୁଣୁ-ଥାଏ ।

ମାର୍କଣ୍ଡ ପାଣ୍ଡଙ୍କ ଭାରିଯା ପୁଣି ଉଦ୍‌ଗାର କଲେ—ହଇଲୋ, ଯଉ ତରକାରୀରେ ରାଗନାହିଁ,

ସେ ଗୋଟାଏ ଚରକାଖରେ ନେଖା ? ଯଉ ମରଦର ରାଗ ନାହିଁ, ସେ ଗୋଟାଏ ମରଦରେ ନେଖା ? ସେ ନାମରଦା, ସେ ମାଈଆ, ସେ କାଣିଆଙ୍ଗୁଳିଆ ଘଇତା·········

ସିଜୁବାଡ଼ ସେପଟେ ଦ୍ୱିଜ ମୃଦୁଲ ଠିଆହେଇ ମାର୍କଣ୍ଡ ପାଣ୍ଡଙ୍କ ଭଉଯା ମୁହଁରୁ ନିଜର ପ୍ରଶସ୍ତି ଶୁଣି ଆଉ ତାର ଧୈର୍ଯ୍ୟ ରହିଲା ନାହିଁ । ସେ ସରମ ଆଉ ବରକ୍ତରେ ଡାକିଲା—ହଇଲୋ, ନଖିବୋଉ ଆଇଲୁ-ନା, ଗପ କରୁଥିବୁ ?···

ଦ୍ୱିଜ ମୃଦୁଳର ଡାକଶୁଣି ଆଉ ମାଇପିମାନେ ଚୂମୁଟା ଚୂମୁଟି ହେଇ ତୁନି ହେଇଗଲେ ।

ନଖିବୋଉ ନିଜର ସ୍ୱାମୀ ଦ୍ୱିଜ ମୃଦୁଲଙ୍କ ଗୁଣଗାନ ଶୁଣି ଗାଲରେ ଚୁପୁଡ଼ା ଖାଇଲା ପରି ତାକୁ ଜଣାଗଲା, ସେ ଆଲୋଚନାଚକ୍ର ଗୁଡ଼ ମୌଭବରେ ପ୍ରସ୍ଥାନ କଲେ ।

ଦ୍ୱିଜ ମୃଦୁଲ, ନଖିବୋଉ ଘରକୁ ଯାଉ ଯାଉ ବାଟରେ ଦ୍ୱିଜ ମନେ ମନେ ଭାବିଲା—ମାର୍କଣ୍ଡ ଭଉଯା କ'ଣ କହିଲା ? ତା'ଠି ରାଗ ନାହିଁ । ଯଉ ମରଦଠି ରାଗ ନାହିଁ ସେ କି ମରଦ ? ସେ ମାଈଆଟା । ସେ କାଣିଆଙ୍ଗୁଳିଆ ଘଇତା ? ତାଠି ରାଗ ନାହିଁ, ହଉ······

ନଖିବୋଉ ମନେ ମନେ ଭାବିଲା—ମାର୍କଣ୍ଡ ଭଉଯା କ'ଣ କହିଲା ? ତା' ଗେରସ୍ତ ମାଈଆଟା, କାଣିଆଙ୍ଗୁଳିଆ ଘଇତା, ତାକୁ ଗୋଡ଼ରେ ଆଡ଼େଇ ଦବ ? ତାର କି ଦୁର୍ଭାଗ୍ୟ ! ଇମିତି ଗୋଟାଏ ନାମରଦାର ଭଉଯା ହେଇଛି ? ତା'ଠି ରାଗବୋଲି ଟିକିଏ ନାହିଁ, ହଉ······

ଇମିତି ଉଭୟେ ଭାବି ଭାବି ଯାଇ ଘରେ ପହଞ୍ଚିଲେ । ବାଟରେ ଦିହେଁ ଚୁପଚାପ ହେଇଗଲେ । କେହି କାହାକୁ କିଛି କହିଲେ ନାହିଁ । ଘରେ ଯାଇ ଯିମିତି ପହଞ୍ଚିଲେ, ଦିଜୁଆ ଘର ଦୁଆର ଖୋଲୁ ଖୋଲୁ ନଖିବୋଉକୁ ପଚାରିଲା—ହଇଲୋ, ତୁ ଯାଇ ସେଇ ସେ ମାଇପିଙ୍କ ମେଳରେ କାହିଁକି ବସୁଛୁ ? ତୋତେ ମୁଁ ଯିବି ଡାକିବାକୁ ?······

ନଖିବୋଉ ଘର ଭିତରକୁ ପଶିଯାଇ କାନ୍ଥକୁ ଆଉଜି ବସିପଡ଼ି ଚଡ଼ା କଣ୍ଠରେ ଉତ୍ତର ଦେଲା—କଣ ହେଲା ? ଡାକିବାକୁ ଗଲେ ? ତୋ ଗୁଣକୁ ତ କଉଠି ମୁହଁ ଦେଖେଇ ହେଲାନାହିଁ । ମୁଁ ମରିଯାନ୍ତି କି, ତରିଯାନ୍ତି······

—କଣ ମୋ ଗୁଣକୁ ମୁହଁ ଦେଖେଇ ପାରୁନୁ ?···

—ତୁ ନିଜେ ବୁଝିପାରୁନୁ ? ମାଈଆ, ନାମରଦା, ଆଉ କି ଖୋଲି କହିବି ?······

ଦିଜୁଆ ମନଥିଲା—ସେ ମାଇପିମାନେ ଜାଣନ୍ତୁ । ତା'ଠି ରାଗ ଅଛି କି ନା ? ସେ ମରଦ କି ନା ?

ଦିଜୁଆ ଆଜି ପୁରୁଷୋଚିତ ଭଙ୍ଗିରେ ଭାରିଯାକୁ ଗୋଟାଏ ଗୋଇଠା ପକେଇ ପଚାରିଲା—କ'ଣ କହିଲୁ ? ମୁଁ ମାଈଆ ? ମୁଁ ନାମରଦା ? ପୁଣି ଗୋଇଠାଏ । ଗୋଇଠାର ପୌନପୁନିକ ଯେତେ-ବେଳେ ଆରମ୍ଭ ହେଲା, ନଖିବୋଉ ପାଟିକରି ବାହୁନା ଆରମ୍ଭ କରିଦେଲା । ଯାହା ବାହୁନିଲା, ତାର ସରଳାର୍ଥ ହେଲା—ତା' ଗେରସ୍ତ ତାକୁ ମାରି ପକେଇଲା, କିଏ କଉଠି ଅଛ, ଦଉଡ଼ି ଆସ । ତାକୁ ତାର ନିଷ୍ଠୁର ସ୍ୱାମୀ କବଳରୁ ରକ୍ଷାକର । ଏଡ଼େ ରାଗ ତାର······

ନଖିବୋଉ ଜାଣି ଜାଣି ବାହୁନିବାକୁ ଆରମ୍ଭ କଲା ଆହୁରି ଜୋରରେ । ଯେମିତି ପଧାନବୋଉ ବାରନ୍ଦାରେ ବସିଥିବା ମାଇପିମାନେ ଏବଂ ସାହିର ଅନ୍ୟାନ୍ୟ ମାଇପିମାନେ ଶୁଣିବେ—ଆଜି ତା' ଗେରସ୍ତ ତାକୁ ରାଗରେ ବାଡ଼େଇଛି । ତାଠି ରାଗ ନାହିଁ କେମିତି ? ସେ ମରଦ ନୁହେଁ ବୋଲି କମିତି କହୁଥିଲେ ?······

ନଖିବୋଉର ବାହୁନା ଶୁଣି ପଦ୍ମବୋଉ ବାରନ୍ଦାରୁ ଆଲୋଚନାଚକ୍ର ଛାଡ଼ି ମାଇପିମାନେ ଆସି ଜମା ହୋଇଗଲେ । ଆଉ ଅନ୍ୟ ମାଇପିମାନେ ଆସି ମଧ୍ୟ ନଖିବୋଉକୁ ଘେରିଗଲେ । ସମସ୍ତେ ଅବାକ୍, ନଖିବୋଉର ଅବସ୍ଥା ଦେଖିଲେ, ସେ କଲବଲ ହୋଇ ଛଟେଇ ଗଡ଼ୁଛି ।

ନଖିବୋଉକୁ ତାର ଗେରସ୍ତର ଗୋଇଠା ଯେତେ ନ କାଟିଲେ ସୁଦ୍ଧା ସେ ସମସ୍ତଙ୍କୁ ଜଣେଇବାକୁ ଚାହେଁ—ତାର ଗେରସ୍ତ ତାକୁ ଆଜି ମାରିଛି । ତା' ଗେରସ୍ତ ଭାରି ରାଗୀ·· ···

ଅନ୍ୟାନ୍ୟ ମାଇପିମାନେ ନଖିବୋଉକୁ ଟେକି ଉଠେଇ ସାନ୍ତ୍ୱନା ସୂଚକ କଣ୍ଠରେ କେତେକ କଥା ବୁଝେଇଲାବେଳେ, ନଖିବୋଉ କାନ୍ଦ କାନ୍ଦ ହୋଇ ଯା କହିଲା—ତାର ଭାବାର୍ଥ ହେଲା—ତାର ସ୍ୱାମୀ ଭାରି ରାଗୀ, ସେ ଅନେକବାର ତାକୁ ମାରିଛି । କିନ୍ତୁ ସେ ସହି ଯାଉଥିଲା, ଆଜି ଅସହ୍ୟ ହେଲାରୁ, ସେ କାନ୍ଦିଲା । ସମସ୍ତେ ଜାଣିଲେ······ ।

ନଖିବୋଉ ବାହାରକୁ କାନ୍ଦୁ କାନ୍ଦୁ ମନେ ମନେ ଭାବୁଥାଏ—ଭଲ କରିଛି, ଆଜି ତା' ସ୍ୱାମୀ ତାକୁ ଠିକଣାବେଳେ ମାରିଛି । ଆଜି ତାକୁ ମାରି-ନାହିଁ ଯେ, ଅନ୍ୟ ମାଇପିଙ୍କ ମୁହଁରେ ଚାପୁଡ଼ା ବସେଇଛି । କହୁଥିଲେ—ତା' ସ୍ୱାମୀ—ନାମରଦା, ମାଈଆ·········

---

ର
ଥ
ଯା
ତ୍ରା —କ୍ଷୀରୋଦଚନ୍ଦ୍ର ପୋଥାଳ

॥ ଏକ ॥

ମୋ ଜୀବନ-ବଡ଼ଦାଣ୍ଡେ ଆଜି
'ବ୍ୟଥା' ଆଉ 'ବେଦନା'ର
ଆଣ୍ଠିଏ କାଦୁଅ !
ମନ-ମନୋରଥ-ରଥ ଚଳେ···
'ସମସ୍ୟାର' ମନ୍ଥର ଗତିରେ,
ଦରଭଙ୍ଗା ରଥପରେ ମୁହିଁ
'ଦାରୁଭୂତମୁରାରି' ସାଜିଛି !!

॥ ଦୁଇ ॥

'କାମନା'ର କଳାପାହାଡ଼ଟା
ବେତପିଟେ !
ଗାଳିଦିଏ ଅଶ୍ଳୀଳ ଭାଷାରେ !!

'ବିବେକ'-ସାରଥି ବାଙ୍କମୋଡ଼ ଚଳେ
ସଳଖି, ସଳଖି;
ଆଷାଢ଼ର ଅମାନଆ—
ମେଘୁଆ ନିଶାରେ !!!

× × ×

॥ ତିନି ॥

ମୋ ରଥ ଚଳୁଛି
ଶୂନ୍ୟ ମଣ୍ଡଳେ ଆଜି...
ନାହିଁ ଲୋଡ଼ା—'ଦଉଡ଼ା କି ଘୋଡ଼ା';
ହେଇ ଦିଶିଲାଣି ପରା
'ଗୁଣ୍ଡିଚା ମନ୍ଦିର'...
ମୋ ରଥ ଲାଗିବା ପାଇଁ
ଆଉ ଅଛି 'ଦଉଡ଼ିଏ ବାଟ' !!! *

( ଯାହାଙ୍କ ତୀକ୍ଷ୍ଣ ଲେଖନୀ ଭଗବାନଙ୍କୁ ଠିଆ ଫାଡ଼ି ଦେବାକୁ ଉଦ୍ୟତ, ସେଇ ଦରଦୀ କବିବନ୍ଧୁ ମୁରାରିବାବୁଙ୍କ ଉଦ୍ଦେଶ୍ୟରେ......)

## ॥ ଆତ୍ମକଥା ॥

ଅଧ୍ୟାପକ ନୃସିଂହ କୁମାର ରଥ

କେବେ ଯଦି ବସିରହ୍ନ ଆନମନେ ଅଳକାପୁରୀରେ
ଆସନ୍ନ ଅନ୍ଧାରେ ଅବା ସନ୍ଧ୍ୟା ଧୀରେ ନଇଁ ଗଲାବେଳେ
ଅମେଘ ଆକାଶ ପରି ନିର୍ବିକାର ତୁମର ମନରେ
ଅଦିନର ଧୂମକେତୁ ସ୍ମୃତି ମୋର ଭାସି ଭାସି ବୁଲେଁ ;
ଶୋଚନା କରିବ କଅଁ ପାରିହୋଇ ବୃତ୍ତର ପରିଧି
ପାରିହୋଇ ସେ ଆଶ୍ୱସ୍ତ ଜୀବନର ଅଲଂଘ୍ୟ ପ୍ରାଚୀର
କାହିଁକି ଭାବିବ ତୁମେ ଅନ୍ଧାରରେ ଘୂରୁଥିଲାବେଳେ
ଅଜାଣତ ଏକତା ଏଠି ରହିଯାଇଥିଲା ପଦଚିହ୍ନ ॥

ଆଷାଢ଼ ଆକାଶ ଢେର ସେଦିନ ବି କଳା କଳା ମେଘ
ଇତସ୍ତତଃ ଯାଉଥିବ, ଯେପରି ଯେତେ ଆଶା ଓ ନିରାଶା
ତା' ଭିତରେ ଲୁଚିଯିବ, ଜୀବନର ଯେତେ ବ୍ୟର୍ଥ ଗୀତ
ହଠାତ ବି ଶାନ୍ତହେବ, ଲୁପ୍ତ ହେବ ଯେତେକ ପିପାସା ॥

ନିଶ୍ଚିତ ଆଶ୍ରୟ ଲଭି ପୋଛିଦେବ ଆଷାଢ଼ର ସ୍ୱପ୍ନ
ଅନେକ ଦୃଷ୍ଟିର ଭିଡ଼େ ହଜିଯିବ ସେ କେଉଁ ବିବର୍ଣ୍ଣ
ମୁହୂର୍ତ୍ତର ପ୍ରତିଛବି ଯାହା ଖାଲି ଗ୍ଲାନିର ଅସ୍ତିତ୍ୱ
ଜାହିର କରିବା ପାଇଁ ଦେଖାଦିଏ ସ୍ମୃତିର ଦର୍ପଣେ ॥
ହୁଏତ ପ୍ରଥମ ଦେଖା ଶାପ କେଉଁ ଅପଦେବତାର
ସେଥିରୁ ନିସ୍ତାର ନାହିଁ ଆମର ଏ ଜୀବନ କାଳରେ
ତେଣୁ ସବୁ ସତ ଏଠି, ତା' ଠାରୁ ବି ସତ ଏ ବଞ୍ଚିବା
ଏତିକି ପାରିଲେ ବୁଝି ସବୁକିଛି ଭୁଲି ହୋଇପାରେ ॥
ସବୁ ଖାଲି ଦୁର୍ଘଟଣା ଜନ୍ମ ଏବଂ ଜୀବନ, ମରଣ
ସ୍ମୃତିରୁ ବିସ୍ମୃତି ଏକ ସ୍ୱାଭାବିକ ଜୀବନ ପ୍ରକ୍ରିୟା
ଭିତରେ ଆମର ସ୍ଥିତି; ଆଉତେବେ କେଉଁ ଦୁଃଖ ଲୁହ
ଅତର୍କିତେ ଦେଖାଦେଇ ଥରାଇବ ଆମର ଚେତନା ॥

—*—

## ।। ରାଜର୍ଷିଙ୍କ ଶ୍ରାଦ୍ଧଦିବସ ଉପଲକ୍ଷେ ।। *

**ଘନଶ୍ୟାମ ମିଶ୍ର** (ଭୁବନେଶ୍ୱର ସଚିବାଳୟ)

ସେ ଦିନର ପ୍ରାଚୀବଧୂ ଅଧରରୁ
ଝରିଗଲା ଶୋଣିତ
ଦିଗଙ୍ଗନା ମେଲେ କବା ଦେଇଥିଲେ
ରୁଦ୍ର ଇଙ୍ଗିତକା
ଏ ଭୂମିର ଦୁର୍ବାଶିରେ ବୃଷ୍ଟି କରି
ଆତପ ଶୋଣିତ
ଜାଳିବାକୁ ବହ୍ନିଶିଖା, ଗାଇବାକୁ
ମୃତ୍ୟୁ ସ୍ୱାଗତିକା !......
ସେ ଦିନର ପ୍ରାତଃ ସ୍ନାତ ସାଧକର
ପୂତ ପୁଣ୍ୟୋଦକେ
ଧୂମାସ୍ଥିତ ବ୍ୟୋମପଥ ନାସ୍ତିକର
ପ୍ରଖର ନିଶ୍ୱାସେ
ପ୍ରସ୍ଫୁଟିତ ପୁଷ୍ପ ମଧ୍ୟେ ଥିଲା କାହିଁ
କାଳକୂଟ ସୁଖେ
ଦଂଶିବାକୁ ଏ ଦେଶର କର୍ମରତ
ଜନତାରେ ଶେଷେ !...
ଖେଳିଗଲା ଶୋକୋଚ୍ଛ୍ୱାସ ଅତର୍କିତେ
ସାରାଦେଶ ବ୍ୟାପୀ
ସହସା କି ହେଲା ସର୍ବେ ବାଷ୍ପାକୁଳ
ବିଗଳିତ କଣ୍ଠେ
ହାସ୍ୟରେ କପାଳ ବୋଲି ମସ୍ତକରେ
ବେଦନକର ଥାପି
ହାରିଦେଲେ ମନଜ୍ଞାନ, ନୟନରୁ
ଅଶ୍ରୁଧାର ଛୁଟେ ।......
ହେ ରାଜର୍ଷି, ଧନ୍ୟ ତୁମେ, ଧନ୍ୟ ତବ
ଜନ୍ମ ଏ ମାଟିରେ

ଗୋଟିଏ ଜୀବନ ପାଇଁ କୋଟିନେତ୍ର
ହେଲା ଲୋତକାର୍ଦ୍ର
ପୁରୁଷ ଉତ୍ତମ ତୁମେ, ଯଥାର୍ଥରେ
ବିଜୟୀ ଭାରତରେ
ଆତ୍ମା ତବ ଯେତେ ଗଲା ଅନ୍ତରର
ଶ୍ରେଷ୍ଠ ଆଶୀର୍ବାଦ ।...
ସେ କେଉଁ ଅମୃତ ଯୋଗ ଲଭିଥିଲା
ତବ ଜନ୍ମତିଥି
ତୀର୍ଥରାଜ ପ୍ରୟାଗର ପୁଣ୍ୟ ଭୂମି
ଧରା ସ୍ୱର୍ଗ କ୍ଷେତ୍ରେ
ତ୍ୟାଗ ତବ ସଂଯମର ଏକନିଷ୍ଠ
ଆଚରଣ ରୀତି
ଚମତ୍କୃତ ସାରା ବିଶ୍ୱ ଦେଖିଥିଲା
ବିସ୍ଫାରିତ ନେତ୍ରେ ।...
ପକ୍ଷପାତ ବିଶ୍ୱର ପ୍ରତିକୂଳ
ପଥ ଅନୁସରି
ନିଃସ୍ୱାର୍ଥ ସାଧନା ତବ ଯେ ଆଦର୍ଶ
ପାରିଥିଲା ତୋଳି
ଏ ଜାତିର ସ୍ମୃତିପଟେ ଉଜ୍ଜ୍ୱଳନ୍ତି
ଯୁଗ ଯୁଗ ଧରି
ପ୍ରଣୋଦିତ ଲକ୍ଷ ହୃଦ ଇଚ୍ଛେ ଆଜି
ଦେବ ଆତ୍ମବଳୀ ।...
ହେ ବିଜୟୀ ନରୋତ୍ତମ, କାରାମୁକ୍ତ
ଆତ୍ମା ତବ ଦୂରେ
ଲକ୍ଷ୍ୟ କରୁଥିବ ମହାଶୂନ୍ୟ ପଥେ
ନିଃଶଙ୍କେ ବିହରି

ଅସହାୟ ଏ ଦେଶର ଅଗଣିତ
ଦାସ୍ୟାଦ ବୁକୁରେ
ପ୍ରଜ୍ୱଳିତ ହୁତାଶନ, ତବ ଦୀକ୍ଷା
ଅହରହ ସ୍ୱର ।...
ମତିମାନ, ଏହା ତବ କେବେହେଲେ
ନୁହେଁ ଯୋଗ୍ୟକୃତ
ଏ ଜାତିର ମଜ୍ଜାଗତ ନ ହେଉଣୁ
ନିରପେକ୍ଷ ନୀତି
ଅପସରି ଗଲ ଦୂରେ ନିମିଷକେ
ହଜାଇଲ ଧୃତି

କେ ଦେବ ପ୍ରେରଣା ଯେବେ ମହାତ୍ରାସ
ଗ୍ରାସିବ ଏ କ୍ଷିତି ?...
ହେ ବାଗୀଶ, ହେ ତାପସ ଆଜି ତବ
ଅନ୍ତିମ ପ୍ରୟାଣେ
ବ୍ୟଥିତ ଅନ୍ତରେ ତୋଳି କୋଟି କଣ୍ଠ
ନମ୍ର ନିବେଦନ
ବିଶ୍ୱାତ୍ମାର ପଦପ୍ରାନ୍ତେ ଲୋଟି ଯାଏ
ଉଚ୍ଛ୍ୱସିତ ପ୍ରାଣେ—
ଶାନ୍ତି ଦିଅ ହେ ଚିନ୍ମୟ, ମୁକ୍ତିଲଭୁ
ରାଜର୍ଷି ଜୀବନ......

---

୧୮୮୨ ଖ୍ରୀଷ୍ଟାବ୍ଦରେ ତୀର୍ଥରାଜ ପ୍ରୟାଗ କ୍ଷେତ୍ରର ଅହିୟାପୁରରେ ଟଣ୍ଡନଜୀ ଜନ୍ମଲାଭ କରିଥିଲେ । ତାଙ୍କର ମହାନୁଭବତାର ପରିଚୟ ପାଇ ଭାରତ ସରକାର ତାଙ୍କୁ ସର୍ବୋଚ୍ଚ ରାଷ୍ଟ୍ରୀୟ ସମ୍ମାନ 'ଭାରତ ରତ୍ନ' ଉପାଧିରେ ଭୂଷିତ କରିଥିଲେ । ୧୯୬୨ ମସିହା ଜୁଲାଇ ୧ ତାରିଖ ପୂର୍ବାହ୍ଣ ଘ୯।୫୭ ମିନିଟରେ ଏହି ମହାପୁରୁଷଙ୍କର ଜୀବନର ଅବସାନ ଘଟିଥିଲା ।

---

# ॥ ଋତୁଚକ୍ର ॥

ଅଧ୍ୟାପକ ରାମଚଂଦ୍ର ରାଉତ

ତୁମେ କାନ୍ଦୁଥିଲ
ଏଇ ବର୍ଷାମାନଙ୍କପରି
ଝରଝର ଝରଝର
ଉଦ୍ୟାନର ପତର ଗାଲରେ ।
ତୁମେ ଶୋଭିତ ଆଜ
ତୁମରି ଫେଣ୍ଟର ଢେଉପରି
ପରସ୍ତ ପରସ୍ତ
ନଥରୀ ଶରତ ମେଘ
ଯେମିତି ବଗଂଚର ଧଳାଶେଯେ ଶୋଇଛି ।
ପୁଣି ତୁମେ ଉଠିବ
ମାର୍ଗଶିର
ବଉଳା ଗାଈର କ୍ଷେତ
ପବନ ଦୋଳରେ ଦୋହଲି ଦୋହଲି
ଯେତେବେଳେ ହୋଇବ ନିସତ ।
ତୁମରି ଖଳାରେ ମୋତେ
ସେତେବେଳେ ବଡ଼ ଶୀତ ହେବ ।
ତୁମେ ସେଠୁ ସପନ ଦେଖିବ
ମେଘମାନେ ଚମ୍ପୁ ଖର୍ଗ ନେବେ
ଶୀତସବୁ ଡି. ଡ଼. ଟି. ବାଲାଙ୍କ ପରି
ଘରେ ଘରେ ବୁଲିବାକୁ ଯିବେ ।
ସପନର ରାତି ପାହିଯିବ
ସକାଳର କୁହୁଡ଼ିରେ
ତୁମେ ଯଦି ମୋତେ ବା ଖୋଜିବ,
ମୋ ଦେହରୁ ଶୀତ ଛାଡ଼ିଯିବ
ଓ ମୁଁ —
କଅଁଳ ଖରାରେ ରୋମାଞ୍ଚିତ ହେବି ।

—*—

# ଚାଲ ବନ୍ଧୁ ନରକକୁ ଯିବା ...... ???

**କେନାଲବ ମୁରାର ମୋହନ**

( ଏକ )

ଏ ସ୍ୱର୍ଗରେ କଛୁ ଲାଭ ନାହିଁ
ଏ ସ୍ୱର୍ଗରେ କଛୁ ସୁଖ · କଛୁ ଶାନ୍ତ ନାହିଁ
ଏ ସ୍ୱର୍ଗରେ ନାହିଁ ସ୍ନେହ ନାହିଁ ମମତାବ
ଅବା କାହିଁ ଆନ୍ତରକତାବ
ତେଣୁ ଚାଲ ବନ୍ଧୁ ଆମେ ନରକକୁ ଯିବା
ଯେତେ ସୁଖ, ଯେତେ ଶାନ୍ତ, ଯେତେ ସ୍ନେହ
ଯେତକ ମମତା···
ପରପୂର୍ଣ୍ଣ ଉପଭୋଗ ଆନ୍ତରକତା
ସବୁକଛୁ ପାଇବା···ପାଇବା
ଚାଲବନ୍ଧୁ ଚାଲ ଆମେ ନରକକୁ ଯିବା···

( ଦୁଇ )

ଏଠି ଆମେ ବଞ୍ଚରହ ସତ୍ୟ କହ
ଅନ୍ୟମାନଙ୍କର ଯାବତୀୟ ଉପକାର କର
ଛିଣ୍ଡା ଆଉ ଲେଙ୍ଗଟାର ବେହରଣ ଧର
ଯେତେ ଆମେ ପୂଣ୍ୟ କଲେ···ପିମ୍ପୁଡ଼ି ଗାତରେ
ନତ ଫଜ ସକାଳରେ ଚନ ପକାଇଲେ
ପଣ୍ଡିତ ହେଲେ ବ···
ସ୍ୱର୍ଗପ୍ରାପ୍ତି ହେବାପାଇଁ ଚନ୍ତାଟା କଲେ ବ
ଆମେସବୁ ଭୋକରେ ମରୁ··
ଯାହା ବା ମିଳବ କଛୁ କେଳେ କେଳେ
ବହୁ କଷ୍ଟେ ପେଜ ମିଶା ଭାତ···ପୋଷେ ଡାଲ
ଖଣ୍ଡେ ଲଙ୍କା ଆଉ ଟିକେ ଅଳୁର ତରକାରୀ
ଇଏ କ'ଣ ଧର୍ମପ୍ରାଣ ଯୁଧିଷ୍ଠିର ଲାଗି···
ବଧାନ କର୍ମଟା···??

( ତିନି )

ଅସତ୍ୟ କହଲେ ଏଠି
ସ୍ୱେଚ୍ଛାଚାରୀ କଲେ
ଦନ ଦ୍ୱିପହରେ ଏଠି ମଣିଷ ମାଇଲେ
ଦ୍ୱାହାଡଆ ଆଖିଆଗେ ଏଠି ଲଞ୍ଚନେଲେ
ଧଳାଟାକୁ କଳାଏଠି···କଳାଟାକୁ ଧଳାପୁଣି
କର ଯେ ପାରଲେ···
ସିଏ ପଛେ ହେଉ ଏଠି
ସାମାଜକ ବଗୃରରେ ନରକର କୀଟ
କନ୍ତୁ ସେ କରୁଚ ପୁଣି ଉପଭୋଗ
ମଣିଷକୁ ମଣିଷଟା ବୋଲ···
ବଞ୍ଚବାର ଯାହାକଛୁ ଅଛୁ ସାର୍ଥକତା···
ତା'ଜୀବନେ ସେ ପଡ଼ୁଛୁ ବସି ବସି ବଜୁଳ ଆଲୁଏ
ବଳାସର ଚରମ ଓ ପରମ ଫଳତା···
ଏଇ ଯଦ ହୁଏ ଏଠି···ସ୍ୱର୍ଗ ନରକ
ଭଗବାନ ସନ୍ତାନ···
ବାଛିବାର ଦୁଇଗୋଟି ପଥ
ବହୁଦନ ଏ ଯାବତ୍ ସ୍ୱର୍ଗ ପଥେ ଲକ୍ଷ୍ୟରଖି
ଲକ୍ଷ୍ୟରଖି ଭଗବାନଠାରେ
ମୁଁ ନଜକୁ ମୂର୍ଖମଣି ମୋ ଦନ କାଟୁଚ···
ତେଣୁ ବନ୍ଧୁ ଏତେସବୁ ହେଲାପରେ
ମୁଇଁ ଏଠି ଅତ ଦମ୍ଭେ ଘୋଷଣା କରୁଚ
ଚାଲବନ୍ଧୁ ଚାଲ ଆଜ ନରକକୁ ଯିବା···
ଚଢ଼ିଆମେ ସଇତାନ ରଥ···
ଡଆଁର ଡଆଁର ଆମେ···ଆମ ଏଇ ବଶ୍ୱାସର
ମୁକ୍ତଲାଗି···ଶାନ୍ତଲାଗି ଭଗବାନ ପଥ···

—*—

# ॥ ସମାଂତର ॥

ମନୋରଂଜନ ଶରଣ

ବଂଚିବାର ଆଶାରଖି ହିମଦଗ୍ଧ ମାନବରେ
ଲକ୍ଷ ଲକ୍ଷ ଗଡ଼ିଆସେ ପ୍ରତେହୁଏ ଜୀବନ କି ବ୍ୟର୍ଥ
ଅନ୍ନାଃଶ୍ୱ ସପନ ଟଳେ କର୍ମମୟ ଜୀବନରେ
ସଂସାର ଅସାର ଲାଗେ ମନେହୁଏ ନାହିଁ କିଛି ଅର୍ଥ ।
କ୍ଷଣଭଂଗୁ ଜୀବନରେ ଚକ୍ରବାଳ ଆଲୋକରେ
ଅନ୍ଧକାର ଭବିଷ୍ୟରେ ମିଳେନାହିଁ ସୁଖର ସଂଧାନ
ଦୁଃଖ ତାପଭରା ମନେ କର୍ମକ୍ଳାନ୍ତ ଜଗତରେ
ଚିନ୍ତେ ଭୁଲି ଭବିଷ୍ୟତ ବର୍ତ୍ତମାନ ଏକା ମୂଲ୍ୟବାନ ।
ଶୋଭାମୟ ଦୁର୍ବାଦଳ ଲାଂଛନାରେ ବଂଚେଖାଲି
ପାଇଛି କି ମହାଶକ୍ତି ସହିବାକୁ ନିଠୁର ତାଡ଼ନା
ତାହାର ଆଦର୍ଶବାଣୀ ହୃଦ ତଂତ୍ରେ କରୁଧ୍ୱନି
ମାନବରେ ଶିକ୍ଷାଦିଏ ସହିବାକୁ ସକଳ ଯାତନା ।
ଶୋଭାରାଜି ପଥ ଧାରେ ଶ୍ରେଷ୍ଠହୋଇ ଦୁନିଆରେ
ଆବାହନ କରେ ଦୁଃଖ ନୁହେଁ କି ସେ ଚିର ଅବହେଳା
ତଥାପି ହୃଦୟୁ ଧରି ଆଶାର ପ୍ରଦୀପ ଜାଳି
ଗୁଂଥିରଖେ ଯତନରେ ଜୀବନର ଜୟଫୁଲେ ମାଳା ।
ଅତି ଶ୍ରେଷ୍ଠ ଜୀବନରେ ବୈଶାଖର ଝଂଜା ବହେ
ଆଷାଢ଼ର ଝଡ଼ ପୁଣି ଶୀତକଷ୍ଟ ସହେ ପୋତି ମଥା
ଆଶାଝର ମଂଦାକିନୀ ବହେ ପୁଣି ଟିକି ମନେ
ହସି ହସି ଯାଏ ଭୁଲି ଦୁଃଖଭରା ଅତୀତର ବ୍ୟଥା ।
ମରନି ଅମର ସେହି ହାରିନି ଏ ଧରାପୃଷ୍ଠେ
ପୋଷି ଆଶା ବୈତରଣୀ ଗାଇଯାଏ ସବୁଜର ଗୀତି
ମହତ ସରଗ କରେ ପୂଜାବିଧି ଅଧିକାରେ
ପବିତ୍ର ଆୟୁଧ ହୁଏ ଶୁଦ୍ଧ ପୂତ ବ୍ରାହ୍ମଣର ଖାତି ।
ଦୁର୍ବାଦଳ ଏ ସୃଷ୍ଟିରେ ଶିକ୍ଷାଦିଏ ମହାମଂତ୍ର
ହର୍ଷ ଓ ବିଷାଦ ସ୍ଥଳେ ଅଲକ୍ଷରେ ଗୋପନ ବାରତା
ଆଶା ଆଉ ନିରାଶାରେ ଦୁର୍ବାସମ ବଂଚୁ ନର
ଦୁଇଧାରା ସମାଂତର ବୁଝୁ ଏକ ଆନ ବୁକୁକଥା ।

—*—

# ଭାରତ-ଭାରତୀ (ଗୁଜରାଟୀ)

( ଚୟନ ଓ ଭାଷାନ୍ତର  ସୁଜାତା ପ୍ରିୟମ୍ବଦା )

## କାଳ

### ରାଜେନ୍ଦ୍ର ଶାହ

ଆଜିରେ ସପନ ମଧ୍ୟେ
ଦେଖିଲି

ଗୋଟିଏ  ପଥ
ଏକ ଅପରିଚିତ  ଆଉ
ଏକ ମୁଁ
ଗୋଟିଏ ମାତ୍ର ହାତ
ଗୋଟିଏ ଗୁଲ

ସମ୍ମୁଖରୁ ଆସୁଥିଲା
କାଳ

କହିଲା ଅପରିଚିତ
ଆରେ

କଳାମୁହାଁ
ଵିଦ୍ରୂପ ବିକରାଳ

ମୁଁ କନ୍ଥୁ ଦେଖିଲି ତାକୁ
ଲାଲ
ଦୁଇ ହାତରେ
ବାଞ୍ଛୁଥିଲା ଯିଏ...
ଗୁଲାଲ...ଗୁଲାଲ ।

## ମେଘ ଭିତରେ ସୂର୍ଯ୍ୟାସ୍ତ

### ଜୟନ୍ତ ପାଠକ

ପଶ୍ଚିମ ଚକ୍ରବାଳରେ ପୁଞ୍ଜୀଭୂତ ମେଘ;
ପଛରେ ସୂର୍ଯ୍ୟର ଝଲମଲ ଦ୍ୟୁତି:
ଯେପରି ଉଚ୍ଚ ପର୍ବତ
ଜୀବନ୍ତ ଆଗ୍ନେୟଗିରି !
ଫୁଟନ୍ତି, ପ୍ରବାହିତ ଲାଭାରସ:
ତମସ ।

---

[ ମୂଳ କବିତାର ଉତ୍ସ : ପ୍ରଥମ କବିତାଟି ଗୁଜରାଟର ଖ୍ୟାତନାମା ଜନପ୍ରିୟ କବି ଶ୍ରୀ ରାଜେନ୍ଦ୍ର ଶାହଙ୍କ କାବ୍ୟଗ୍ରନ୍ଥ "ଶାନ୍ତ କୋଲାହଲ" ( କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ )ରୁ ଓ ଦ୍ୱିତୀୟ କବିତାଟି ଗୁଜରାଟର ଅନ୍ୟତମ ପ୍ରତିଭାଧର କବି ଅଧ୍ୟାପକ ଡକ୍ଟର ଜୟନ୍ତ ପାଠକଙ୍କ କାବ୍ୟଗ୍ରନ୍ଥ "ବିସ୍ମୟ"ରୁ ଗୃହୀତ । —ଅନୁବାଦିକା ]

ଧାରାବାହିକ ଉପନ୍ୟାସ:—




( ପୂର୍ବ କଥା )

( ପାଣିପାଟପୁରର ଭୂତପୂର୍ବ ଜମିଦାର, ଅବସରପ୍ରାପ୍ତ ଇଂଜିନିୟର ସଂଗ୍ରାମକେଶରୀ ବୃଦ୍ଧ ବୟସରେ ସହରର ମାୟା ତୁଟାଇ ଗ୍ରାମକୁ ଫେରି ଆସିଥିଲେ—କାରଣ ସେ ଗୋପନୀୟ ସୂତ୍ରରୁ ଖବର ପାଇଥିଲେ ଯେ ଏଇ ଗ୍ରାମ ନିକଟରେ ହିଁ ବସିବ ଏକ ରସାୟନିକ ସାର କାରଖାନା...ପାଣିପାଟପୁର ଗ୍ରାମ ହେବ ଏକ ଉନ୍ନତ ସହର...!

ସରକାରୀ ଚାକିରୀରୁ ଅବସର ଗ୍ରହଣ କଲାପରେ ସେ ଯେଉଁ ପ୍ରୋଭିଡେଣ୍ଟ ଫଣ୍ଡ ଓ ଗ୍ରାଚୁଇଟି ଟଙ୍କା ପାଇଥିଲେ, ତାହା ସେ ପାଣିପାଟପୁର ଗ୍ରାମରେ ଜମି କିଣାରେ ବ୍ୟୟ କରିଥିଲେ । କିନ୍ତୁ ତାଙ୍କର ସେ ଜମି କିଣା ରହସ୍ୟ ପାଣିପାଟପୁର ଗ୍ରାମର ନିଷ୍ପୃହ ଲୋକଙ୍କ ପକ୍ଷରେ ଦୁର୍ବୋଧ ହୋଇ ରହିଥିଲା । ସ୍ଥାନୀୟ ବିଧାନସଭା ସଭ୍ୟ ନୀଳାମ୍ବର ବାବୁ ସନ୍ଦେହ କରିଥିଲେ, ସରକାରୀ ଚାକିରୀରୁ ଅବସର ନେଲାପରେ ସଂଗ୍ରାମକେଶରୀ ହୁଏତ ରାଜନୀତିର ଆବିଳ ଜଳରେ ପାଦ ପ୍ରବେଶ କରାଇବେ... ନିର୍ବାଚନରେ ହେବେ ତାଙ୍କର ପ୍ରତିଦ୍ୱନ୍ଦୀ...!

ଦିନେ ମନ୍ତ୍ରୀ କପିଳେଶ୍ୱର ଏକ ସାଧାରଣ ସଭାରେ ଘୋଷଣା କଲେ କୃଷି ଉତ୍ପାଦନ ବୃଦ୍ଧିରେ ସାହାଯ୍ୟ କରିବା ପାଇଁ ସରକାର ପାଣିପାଟପୁର ଗ୍ରାମ ନିକଟରେ ଏକ ସାର କାରଖାନା ବସାଇବେ । ସେ ସମ୍ବାଦ ଶୁଣିବା ମାତ୍ରେ ସଂଗ୍ରାମକେଶରୀଙ୍କ ଜମି କିଣା ରହସ୍ୟର ରୁଦ୍ଧ ଦରଜା ସଶବ୍ଦରେ ଉନ୍ମୁକ୍ତ ହୋଇଗଲା ।

ସଂଗ୍ରାମକେଶରୀଙ୍କୁ କେନ୍ଦ୍ର କରି ପାଣିପାଟପୁର ଅଞ୍ଚଳରେ ଜମି ଉଠିଲା ନୂତନ ନାଟକ ।

ତା' ପରେ...... ? )

|| ୫୧ ||

## ॥ ତେର ॥

ଇନ୍ଦ୍ରଶ୍ରୀ ଚୁପ୍ ଚୁପ୍ କହିଲା, ମାଆ ! ବଉଳର ବୋଉ ଆଜି ତାଙ୍କ ବାଡ଼ିପାଖ ପଣସ ଗଛ ମୂଳେ କାନ୍ଦୁଥିଲେ । ତୁ ଜାଣୁନା ! ମଉସା କୁଆଡ଼େ ତାଙ୍କୁ ମାଡ଼ ଦେଇଥିଲେ !

କାଦମ୍ବିନୀ ଚମକି ଉଠିଲେ ଝିଅର କଥା ଶୁଣି ।

ଆଖି ଡୋଳା ବଡ଼ ବଡ଼ କରି ଝିଅ ମୁହଁକୁ ଅନେଇ ରହିଥିଲେ । ଇନ୍ଦ୍ରଶ୍ରୀର ବଉଳ ଅନନ୍ତାକୁ ସେ ଦେଖିଛନ୍ତି । କିନ୍ତୁ ତାର ବାପା, ବୋଉଙ୍କୁ ଦେଖି ନାହାନ୍ତି, ନ ଦେଖିଥିଲେ ବି ଅନୁମାନ କରିବାକୁ ତାଙ୍କର କଷ୍ଟ ହେଉ ନ ଥିଲା । ସେମାନେ ନିଶ୍ଚୟ ବୁଢ଼ାବୁଢ଼ୀ ହୋଇ ଯିବେଣି । ବୟସ ନଇଁଗଲେ ସ୍ତ୍ରୀ ସ୍ୱାମୀଠାରୁ ବେଶି ଆଦର ସୋହାଗ ଚାହେଁ । ସଂସାରର ଦ୍ୱାରଆଡ଼ ଯେତେବେଳେ ଧୂସର ଏବଂ ଅନ୍ଧାରୁଆ ଅନ୍ଧାରୁଆ ଦେଖାଯାଏ, ସ୍ତ୍ରୀ ସେତେବେଳେ ବ୍ୟାକୁଳ ଦୃଷ୍ଟିରେ ଚେନାଏ ସବୁଜିମା ଆଉ ବିନ୍ଦୁଏ ଆଲୁଅ ପାଇଁ ଚାହିଁ ରହେ ନିଜର ସ୍ୱାମୀ ଆଡ଼କୁ । ଆଉ ସେତେବେଳେ ସେ ଯଦି ସ୍ୱାମୀଠାରୁ ଶାରୀରିକ ଆଘାତ ପାଏ !

ଇନ୍ଦ୍ରଶ୍ରୀ ହୁଏତ ଭୁଲ୍ କହୁଛି ।

ସେ ଝିଅକୁ ଧମକ ଦେଲେ, ଯେତେସବୁ ବାଜେକଥା ତୋ' ଠାରୁ ଶୁଣିବ । ତୋ' ବଉଳର ବାପା, ବୋଉ ବୁଢ଼ାବୁଢ଼ୀ ହେଲେଣି । ଏ ବୟସରେ କିଏ କାହାକୁ ପିଟେ !

ପାଣିପାଟପୁର ଗ୍ରାମରେ ପାଦ ଦେଲାପରେ ଇନ୍ଦ୍ରଶ୍ରୀ ତାର ବଉଳଠାରୁ ଗୋଟାଏ ନୂଆ କଥା ଶିଖିଛି, ଯେ କୌଣସି କଥାରେ ଆଖି ଛୁଇଁବା !

ସେ ଚଟ୍‌କିନା ମାଆଙ୍କ ମନରେ ନିଜ କଥାର ସତ୍ୟତା ସମ୍ପର୍କରେ ପ୍ରତ୍ୟୟ ସୃଷ୍ଟି କରିବା ପାଇଁ କହିଲା, ଆଖି ଛୁଉଁଚି, ବଉଳ ନିଜେ ସବୁ କହୁଥିଲା··· ।

କାଦମ୍ବିନୀ ଆଖି ଦେଖାଇ ଝିଅକୁ ଚୁପ୍ କରି-ଦେଲେ । ତା' ପିଠି ଆଉଁସାଇ କହିଲେ, ଏ କଥା ଦେଖିଲେ କି ଶୁଣିଲେ ବି କାହାକୁ କୁହାଯାଏ ନାହିଁ । ସଂସାରରେ ଘରକରି ରହିଥିଲେ କେତେକଥା ସହିବାକୁ ହୁଏ । ତୁ ଘର ସଂସାର କଲେ ବୁଝିବୁ ।

ଇନ୍ଦ୍ରଶ୍ରୀ ଘର ସଂସାର କଥା ଶୁଣି ଈଷତ୍ ଲଜ୍ଜାରେ ମୁଖ ବିକୃତ କରି ଜିଭ କାଢ଼ି ଖତେଇ ହୋଇ ପଳାଇଲା ।

କାଦମ୍ବିନୀ ତାକୁ ଆଉକିଛି ନ କହି ରୋଷେଇ ଘର ଆଡ଼କୁ ଗଲେ । ପୂଝାରୀ ପିଲାଟି ଯେତେ ଭଲ ରୋଷେଇ କଲେ ବି ତାଙ୍କ ନିଜ ମନକୁ ପାଏନାହିଁ । ସ୍ୱାମୀଙ୍କ ସକଳ ବାରଣ ସତ୍ତ୍ୱେ ସେ ରୋଷେଇ ଘର ଭିତରେ ପଶି ନିଶ୍ଚୟ ଠାଏ ଦୁଇଠାଆ ନିଜ ହାତରେ ତିଆରି କରନ୍ତି ।

ସ୍ୱାମୀ କାଲିଠାରୁ କଟକ ଯାଇଛନ୍ତି । ସେଥିପାଇଁ ଆଜି ସେ ରୋଷେଇ ଘରକୁ ପଶି ନାହାନ୍ତି । କେବଳ ଇନ୍ଦ୍ରପାଇଁ ବଡ଼ ଚଡ଼ଚଡ଼ ପୂଝାରୀ କରିଛି କି ନାହିଁ, ଆଖି ବୁଲେଇ ନେବାପାଇଁ ସେ ରୋଷେଇ ଘର ଭିତରକୁ ପଶିଗଲେ ।

ସନ୍ଧ୍ୟା ଗଡ଼ିଯାଇ ରାତିହେଲା ।

ତା' ବଉଳ ସାଥିରେ ସେ ଘରେ କଅଣ ବସି ପଢ଼ୁଛି ଇନ୍ଦ୍ରଶ୍ରୀ । ତିନିଥର ଡାକ ଆସିବା ପରେ ବି ସେ ଖାଇବାକୁ ଉଠୁନାହିଁ । ସହରରୁ ଗ୍ରାମକୁ ଆସିଲା ପରେ ଝିଅ କିଛି ପରିମାଣରେ ଅବାଧ୍ୟ ହୋଇଗଲା ଭଳି ମନେ ହେଉଛି । ଥରେ ସେ ତାକୁ ଏଥିପାଇଁ ଗାଳି ଦେଇଥିଲେ । ଆଉ ସାଙ୍ଗେ ସାଙ୍ଗେ ଇନ୍ଦ୍ରଶ୍ରୀ ଧମକ ଦେଇଥିଲା, ସେମିତି ଗାଳିଦେଲେ କଟକ ଚାଲିଯିବ ।

କାଦମ୍ବିନୀଙ୍କୁ ଚୁପ୍ କରିଦେବା ପାଇଁ ଏଇ ପଦିଏ କଥା ହିଁ ଯଥେଷ୍ଟ । କାରଣ ସେ ଜାଣେ, ତାକୁ

ଛାଡ଼ି ମାଆ କେବେହେଲେ ଏ ଗାଁଆରେ ଦିନେହେଲେ ରହିପାରିବ ନାହିଁ ।

କାଦମ୍ବିନୀ କିଛି ସମୟ ଆକାଶକୁ ଚାହିଁ ବସି ରହିଲେ ।

ଗଲାବେଳେ ସ୍ୱାମୀ ତାଙ୍କୁ କହିଥିଲେ, ଚାଲ, ତମକୁ ପୁଅ ବୋହୂଙ୍କ ପାଖରେ ଛାଡ଼ିଦେଇ ଆସିବି । ସେମାନଙ୍କୁ ଛାଡ଼ି ତମେ ଏଠାରେ କେତେଦିନ ରହିବ ?

କାଦମ୍ବିନୀ ଆଖି ତଳ ତଳ କରି ଉତ୍ତର ଦେଇଥିଲେ, ତମେ ଯେତେଦିନ ଚାହିଁବ, ମୁଁ ଏଠାରେ ରହିବି । ତମକୁ ଛାଡ଼ି ମୋର କେଉଁଠି ହେଲେ ସୁଖନାହିଁ ।

ତାଙ୍କ କଥା ଶୁଣି ସଂଗ୍ରାମକେଶରୀ ହସିଥିଲେ । ତା' ପରେ ଖୁବ୍ ଚିନ୍ତିତ ହୋଇ ପଡ଼ିଲା ଭଳି ମୁଖ-ଭଙ୍ଗୀ କରି ମନ୍ତବ୍ୟ କରିଥିଲେ, ମୁଁ ଜାଣେ, ତମେ ଯାହା କହିଲ ଏହା ତମ ମୁହଁ କଥା ନୁହେଁ, ମନର କଥା । ତମେ ଯେଉଁବେଳେ ମତେ ବାହାହୋଇ ଏ ଘରକୁ ବୋହୂହୋଇ ଆସିଥିଲ, ସେତେବେଳେ ଜମିଦାରୀ ଆମକୁ ଛାଡ଼ି ଚାଲି ଯାଇଥିଲା—ତମେ ମତେ ଛାଡ଼ିନାହଁ । କିଛିଦିନ ତଳେ ସରକାରୀ ଚାକିରି ମଧ୍ୟ ମତେ ଛାଡ଼ିଗଲା, ତମେ କିନ୍ତୁ ମତେ ବେଶି ବେଶି ଜାବୁଡ଼ି ଧରିଛ । ମୁଁ ଯେତେ ବୁଢ଼ାହୋଇ ଯାଉଛି, ମୋ ପ୍ରତି ତମର ମାୟା ମମତା ସେତେ ବେଶି ବେଶି ବଢ଼ି ଚାଲିଛି ନା !

କାଦମ୍ବିନୀ ଆଜି ସ୍ୱାମୀଙ୍କ ମୁହଁକୁ ବେଶି ସମୟ ଚାହିଁ ରହିପାରି ନ ଥିଲେ । ଲୁହରେ ତାଙ୍କର ଆଖି ଅନ୍ଧହୋଇ ଯାଉଥିଲା । ସ୍ୱାମୀ ସହରକୁ ଗଲାବେଳେ ସେ କେବଳ କହିଥିଲେ ଗୀତିପାଇଁ ମନଟା ଛଟପଟ ହେଉଛି । ତାର ଚଢ଼ାପଢ଼ି ଯେତିକି ହେଲା ହେଉ; ତମେ ତାର ବାହାଘର କଥା ବୁଝ । ପୁଅ ବୋହୂଙ୍କ ଢଙ୍ଗଢାଙ୍ଗ ତ ଦେଖୁଛ । ମୁଁ ବଞ୍ଚି ଥାଉଁ ଥାଉଁ ସେମାନଙ୍କ ମୁଣ୍ଡରେ ସିନ୍ଦୂର ଟୋପା ଲାଗୁ ।

ସ୍ୱାମୀ ତାଙ୍କୁ ସାନ୍ତ୍ୱନା ଦେଇ ଚାଲିଗଲା ପରେ ତାଙ୍କର ଖିଆଲ ହୋଇଥିଲା, ପୁଅ ବୋହୂଙ୍କ ଢଙ୍ଗ-ଢାଙ୍ଗ କଥା ସ୍ୱାମୀଙ୍କ ମନେ ପକାଇ ଦେଇ ସେ କିଛି ଭଲକରି ନାହାନ୍ତି । ଆଜିକାଲି ସବୁପିଲା ସେମିତି । ଦିଗମ୍ବର, ନୀଳାମ୍ବରଙ୍କ ଭଳି ପୁଅ ଏମିତି ହେବେ, ଏ କଥା ସେ କଅଣ କେବେହେଲେ ଭାବିଥିଲେ ?

ଆକାଶ ସାରା ତାରାସବୁ ଫୁଲ ଫୁଟିଲା ଭଳି ବିଞ୍ଚିହୋଇ ପଡ଼ିଛି । ରାତି ବୋଧହୁଏ ଅନେକ ହେଲାଣି । ଏ ଝିଅ ଦୁଇଟା ଏ ପର୍ଯ୍ୟନ୍ତ ସେ ଘରେ ବସି କଅଣ ପଢ଼ୁଛନ୍ତି ?

ଝିଅର ନାମ ଧରି ଡାକିଲେ କାଦମ୍ବିନୀ ।

ଇତିଶ୍ରୀ ଖାଇବାକୁ ଆସିଲା । ଅନିତା ତାଙ୍କ ଘରକୁ ଚାଲି ଯାଉଥିଲା । ତାକୁ ମଧ୍ୟ ଅଟକାଇ ଇତିଶ୍ରୀ ସହିତ ଖୁଆଇଲେ କାଦମ୍ବିନୀ । ସେମାନେ ଖାଇଲାବେଳେ ସେମାନଙ୍କ ପାଖରେ ବସି କାଦମ୍ବିନୀ ଅନିତାକୁ ଲକ୍ଷ୍ୟ କରୁଥିଲେ । ଝିଅଟି ବେଶ୍ ଶାନ୍ତ-ଶିଷ୍ଟ । ପିଲାଙ୍କୁ ଦେଖି ସେମାନଙ୍କ ପିତାମାତାଙ୍କ ସ୍ୱଭାବଚରିତ୍ର କଥା ମଧ୍ୟ ଅନୁମାନ କରିହୁଏ । ଅନିତାର ବାପା ନିଜ ସ୍ତ୍ରୀଙ୍କୁ ପିଟିଲା ଭଳି ନୃଶଂସ ହୋଇଥିବେ, ସେକଥା କଳ୍ପନା କରିପାରୁ ନ ଥିଲେ କାଦମ୍ବିନୀ ।

ଅନିତା ଚାଲିଗଲା ପରେ ଶୋଇଲାବେଳେ ଝିଅକୁ ପାଖକୁ ଡାକି ସେ ପଚାରିଲେ, ଆଲୋ ଇତୁ ! ତୁ କହୁଥିଲୁ ତୋ ବଉଳ ବୋଉକୁ ତା ବାପା ମାରିଥିଲେ ବୋଲି । ତୋ ବଉଳଠାରୁ କାରଣ କିଛି ବୁଝିଲୁ ?

ତାଙ୍କ ଘରେ କୁଆଡ଼େ ନିରଞ୍ଜନ ଭାଇଙ୍କ ପାଇଁ କଜିଆ ଲାଗିଛି । ମଉସାଙ୍କ ଇଚ୍ଛା ନିରଞ୍ଜନ ଭାଇ ଗାଁଆଛାଡ଼ି ଯାଇ କୁଆଡ଼େ ଚାକିରି ବ୍ୟବସ୍ଥା କରନ୍ତୁ । ଗ୍ରାମ ମାମଲତରେ ମୁଣ୍ଡ ନ ପୂରାନ୍ତୁ । ମାଉସୀ ତାଙ୍କୁ ପାଖରୁ ଛାଡ଼ିବାକୁ ନାରାଜ । ଏଥିପାଇଁ ସେମାନଙ୍କ

ଘରେ ନିତି ଘାଟିଗୋଳ ।—କଥା ଶେଷ କରିବା ଆଗରୁ ହାଇ ମାରିଲା ଲତିଶ୍ରୀ । ତାକୁ ନିଦ ଲାଗିଲାଣି ।

କାଦମ୍ବିନୀଙ୍କ ଆଖିରେ କିନ୍ତୁ ନିଦ ନାହିଁ ।

ଗ୍ରାମ ମାମଲତରେ ନିରଞ୍ଜନ ମୁଣ୍ଡ ପୂରାଉଛି ବୋଲି ତାଙ୍କ ଘରେ ନିତି ଘାଟିଗୋଳ—ଏକଥା ଶୁଣିଲା ପରଠାରୁ ତାଙ୍କ ମନ ଭିତରେ କପରି ଜ୍ୱାଳା ଯନ୍ତ୍ରଣା ଆରମ୍ଭ ହୋଇଯାଇଛି ।

ତାଙ୍କର ମନେଅଛି ଯେଉଁଦିନ ପ୍ରଥମେ ସ୍ୱାମୀ ଆସି ତାଙ୍କୁ କହିଥିଲେ, କାଦମ୍ବିନୀ ! ଜମିଦାରୀ ଉଠିଗଲା ପରେ ଏ ଗ୍ରାମ କେବଳ ମୂର୍ଖ, ଟାଉଟର ଓ ଖଳ ଲୋକଙ୍କ ତରିଭୂଇଁ ହୋଇଛି—ଆମକୁ ଏ ଗ୍ରାମଗୁଡ଼ି ଚାଲିଯିବାକୁ ହେବ—ସେଦିନ ସେ କଥା ସହଜରେ ସେ ବିଶ୍ୱାସ କରିପାରି ନ ଥିଲେ । ଶଶୁର ଉଦୟକେଶରୀ ସେତେବେଳକୁ ଦେହ ରଖି ସାରି-ଥିଲେ ସତ୍ୟ, କିନ୍ତୁ ଶାଶୁ ଚମ୍ପକମାଳା ବଞ୍ଚିଥିଲେ । ଗ୍ରାମ ଗୁଡ଼ି ସହରକୁ ଚାଲିଯିବା କଥା ଶୁଣି ସେ ତାଙ୍କୁ ପାଖକୁ ଡାକି କହିଥିଲେ, ବୋହୂମାଆ ! ସଂଗ୍ରାମ ସାଙ୍ଗରେ ତମେ ସହରକୁ ଚାଲିଯାଅ; ମୁଁ କିନ୍ତୁ ଏଇ ଗାଁଆରେ ରହିବି । ସେ ଯେଉଁ ମଶାଣିରେ ପାଉଁଶ ହୋଇ ମିଶିଛନ୍ତି, ମୁଁ ସେଇ ମଶାଣିକୁ ଯିବି । ତେଣୁ ମୋପାଇଁ ତମେ କେହି ଭାବନାହିଁ ।

ଶାଶୁଙ୍କୁ ଏକାକିନୀ ଛାଡ଼ି ସ୍ୱାମୀଙ୍କ ସହିତ ସହରକୁ ଯିବାପାଇଁ ସେଦିନ କାଦମ୍ବିନୀ ସହଜରେ ରାଜି ହୋଇ ନ ଥିଲେ । ସ୍ୱାମୀଙ୍କୁ ସେ ସ୍ପଷ୍ଟ କହି ଦେଇଥିଲେ, ମାଆଙ୍କୁ ଏ ବୟସରେ ଏକାକିନୀ ଛାଡ଼ି, ପୂର୍ବପୁରୁଷଙ୍କ ଜମା ଛାଡ଼ିଦେଇ ଚାଲିଯିବା ମୋ ପକ୍ଷରେ ସମ୍ଭବ ନୁହେଁ । ଜମିଦାରୀ ଗଲେ ବି ଜନ୍ମମାଟି ଅଛି । ମୁଁ ମାଆଙ୍କ ପାଖରେ ଏଠାରେ ହିଁ ରହିବି ।

ତାଙ୍କୁ ଜୋର କରିବାକୁ ସ୍ୱାମୀଙ୍କର ସାହସ ହୋଇ ନ ଥିଲା । କିନ୍ତୁ ଶାଶୁ ତାଙ୍କୁ ନିଜେ ତଡ଼ିକରି ସହରକୁ ପଠାଇଥିଲେ । ବୁଝାଇ ଥିଲେ, ଆମ ବଂଶରେ ଆଜି ପର୍ଯ୍ୟନ୍ତ କେହି ବୁଲକରି କରି ନ ଥିଲେ କି କୌଣସି ସ୍ତ୍ରୀ ସ୍ୱାମୀଙ୍କୁ ପାଖରୁ ଅନ୍ତର କରି ଦୂରରେ ରହି ନ ଥିଲେ । ସଂଗ୍ରାମ ଯେତେବେଳେ ଚାକିରି କରି ବିଦେଶ ଯାଉଛି, ବୋହୂମାଆ ! ତମେ ତାଙ୍କ ସାଙ୍ଗରେ ଯାଅ । ସ୍ୱାମୀଙ୍କ ପାଖରେ ରହିବେ ବୋଲି ପରା ସୀତା ଠାକୁରାଣୀ ବନକୁ ଯାଇଥିଲେ···!

କାଲିଭଳି କାଦମ୍ବିନୀଙ୍କର ସବୁକଥା ମନେ ପଡ଼ି ଯାଉଛି । ଆଖିରେ ନାଚି ଯାଉଛି ଶାଶୁ ଚମ୍ପକ-ମାଳାଙ୍କର ସେହି ଦଗ୍ଧ-ସୁବର୍ଣ୍ଣ ରଙ୍ଗର ଦେବୀ ପ୍ରତିମା ଭଳି ଚେହେରା···ସେ ବଞ୍ଚିଥିବା ପର୍ଯ୍ୟନ୍ତ ଚାଷଜମିରେ ହାତଦେଇ ନ ଥିଲେ ସ୍ୱାମୀ । କିନ୍ତୁ ଶାଶୁ ଦେହ ରଖିଲା ପରେ ସ୍ୱାମୀ ଦିନେ ତାଙ୍କୁ ଆସି କହିଲେ, ଗାଆଁର ଚାଷଜମି ଭାଗଚାଷୀଙ୍କୁ ଦେଇ ଫସଲ ପାଇବାକୁ ଆଶା କରିବା ବିଡ଼ମ୍ବନା । ତେଣୁ ମୁଁ ଭାବୁଛି, ଚାଷଜମି ସବୁ ବିକ୍ରୀ କରିଦେବି···

ମଧ୍ୟଗଗନର ସୂର୍ଯ୍ୟଭଳି ଜଣେ ଉଚ୍ଚ ପଦସ୍ଥ ଇଂଜିନିୟର ଭାବରେ ସ୍ୱାମୀଙ୍କ ଖ୍ୟାତି ସେତେବେଳେ ଜାଜ୍ୱଲ୍ୟମାନ ହେଉଥିଲା । ତାଙ୍କର ସୁଖ୍ୟାତି ପଛରେ ଥିଲା ନିଜର କର୍ମଦକ୍ଷତା ଆଉ ସଚ୍ଚୋଟ ପଣିଆ ।

ଉତ୍କୋଚ ଗ୍ରହଣ ଆଉ ଦୁର୍ନୀତିର ସେ ଥିଲେ ପରମ ଶତ୍ରୁ । ଜମିଦାରୀ ଚାଲିଯାଇଥିଲେ ବି ଜମିଦାରଙ୍କ ଭଳି ଅତିରିକ୍ତ ଖର୍ଚ୍ଚ କରିବାର ଅଭ୍ୟାସ ତାଙ୍କର ଯାଇ ନ ଥିଲା । ତେଣୁ ଅନେକ ସମୟରେ ଆର୍ଥିକ ଦୁରବସ୍ଥା ଧକ୍କା ସେମାନଙ୍କୁ ସହିବାକୁ ପଡ଼ୁଥିଲା । ସେଥିପାଇଁ ଜମିବିକ୍ରୀ ବ୍ୟବସ୍ଥାର ବିରୋଧ ସେ କରିପାରି ନ ଥିଲେ ।

ଯେଉଁଦିନ ଗ୍ରାମରୁ ଜମି ବିକ୍ରୀକରି ଟଙ୍କାନେଇ ସେ ସହରରେ ପହଞ୍ଚିଲେ, କାଦମ୍ବିନୀ ଲକ୍ଷ୍ୟ କରିଥିଲେ, ସ୍ୱାମୀଙ୍କ ମୁହଁ ସେଦିନ ରକ୍ତହୀନ ଦେଖା ଯାଉଥିଲା । ସେ ଦେବେ ବୁଝି ପାରିଥିଲେ ଗୋଟାଏ ଝିଙ୍କରେ ଗ୍ରାମର ଚାଷଜମି ବିକ୍ରୀକରି ଦେଇ ଆସି-ଥିଲେ ସୁଦ୍ଧା ସେଥିରେ ତାଙ୍କର ମନ ବୁଝିନାହିଁ ।

ସ୍ୱାମୀ ଦିନେ ତାଙ୍କୁ କହିଥିଲେ, କାଦମ୍ବିନୀ ! ଗୃହଜମି ବିକ୍ରୀ କରିଦେଇ ଆସିବା ପରେ ସେ, ଘର ସେ ବଗିଚାକୁ ଯିବାପାଇଁ ମୋର ସାହସ ହେଲା ନାହିଁ । ବାପ, ଅଜା ଅମଳର ଗୃହଜମି, ମୁଁ ବିଶ୍ୱାସ ହେଲେ ଦିନେ କିଣିନାହିଁ । ଅଥଚ ପୂର୍ବପୁରୁଷଙ୍କ ଅର୍ଜିତ ସମ୍ପତ୍ତି ମୁଁ ଟଙ୍କା ଲୋଭରେ ବିକ୍ରି କରିଦେଲି । ଆଉ କୌଣସି ଦିନ ମୁଁ ସେ ଗ୍ରାମକୁ ଫେରି ପାରିବି ନାହିଁ । ଏଇ ଟଙ୍କାରେ କଟକ ସହରରେ ମୁଁ ଗୋଟାଏ ଘର କରିବି । ଏଇ ହେବ ମୋର ପ୍ରବାସ ତୀର୍ଥ !

ଗ୍ରାମର ଜମିବାଡ଼ି ଟଙ୍କାରେ ସହରରେ ଘର ତୋଳା ହୋଇଥିଲା । ପୂର୍ବପୁରୁଷର ଭିଟାମାଟି, ଗ୍ରାମ କଥା ରାତିର ଗୋଟାଏ ଦୁଃସ୍ୱପ୍ନ ଭଳି ଭୁଲି ଯାଇଥିଲେ କାଦମ୍ବିନୀ । ସେ ଗ୍ରାମକୁ ଜୀବନରେ ଆଉ ସେ ଫେରିବେ, ଏକଥା ତାଙ୍କ କଳ୍ପନାକୁ କେବେ ସ୍ପର୍ଶକରି ନ ଥିଲା ।

କଟକରେ ଘର କରିଥିଲେ ମଧ୍ୟ ସେ ଘରେ ସେ କେବେ ବେଶିଦିନ ରହିପାରି ନ ଥିଲେ । ସ୍ୱାମୀଙ୍କ ବଦଳି ଚାକିରି ସହ ତାଙ୍କୁ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନ ଘୂରି ବୁଲିବାକୁ ହୋଇଥିଲା । ବିଶମ୍ବର ଆଉ ନୀଳାମ୍ବର ବିବାହ କଲାପରେ ସେହି ଘରେ ରହୁଥିଲେ । ବିଶମ୍ବର ଡାକ୍ତର, ନୀଳାମ୍ବର ବେକାର । ସ୍ୱାମୀ ଚାକିରିରୁ ଅବସର ନେଲାପରେ ସରକାରୀ କ୍ୱାର୍ଟର ଛାଡ଼ି ସ୍ଥାୟୀ ଭାବରେ ରହିବାକୁ କଟକ ଘରକୁ ଫେରିଲେ, ଦେଖିଲେ ଘରେ ଆଉ ସ୍ଥାନ ନାହିଁ । ଦୁଇଭାଇ, ଦୁଇ ବୋହୂଙ୍କ ଭିତରେ ମନାନ୍ତର ପାରିବାରିକ ଜୀବନକୁ ବିଷାକ୍ତ କରି ଦେଇଛି ।

ବାବା ଚାକିରିରୁ ଅବସର ନେଇ ଫେରିବା ପରେ ତାଙ୍କୁ ସୁଖ ଶାନ୍ତିରେ ରହିବା ପାଇଁ ସୁଯୋଗ ଦେବା ବଦଳରେ ତାଙ୍କର ଗ୍ରାଚୁଇଟି ଟଙ୍କା, ପ୍ରୋଭିଡେଣ୍ଟ୍ ଫଣ୍ଡ୍ ଟଙ୍କାରେ ଭାଗ ବସାଇବା ପାଇଁ ଦୁଇ ଭାଇଙ୍କ ମଧ୍ୟରେ ବିବାଦ ଆରମ୍ଭ ହୋଇଗଲା ।

ବିଶମ୍ବର ସ୍ୱାଧୀନ ଭାବରେ ଗୋଟିଏ ଔଷଧ ଦୋକାନ ଖୋଲିବାକୁ ଚାହେଁ । ତାର ଟଙ୍କା ଦରକାର । ନୀଳାମ୍ବର ଚାହେଁ ସ୍ୱାଧୀନ ଭାବରେ କିଛି ବ୍ୟବସାୟ କରିବ । ତାର ଚାକିରି ନାହିଁ । ତେଣୁ ବ୍ୟବସାୟର ମୂଳଧନ ସେ ବାବାଙ୍କଠାରୁ ଚାହେଁ ! ଗୀତି, ଇତି କଲେଜ ଆଉ ସ୍କୁଲରେ ପଢ଼ୁଛନ୍ତି । ତାଙ୍କର ମଧ୍ୟ ଟଙ୍କା ଦରକାର ।

ଜୀବନର ଚରମ ଜଟିଳତାର ସମ୍ମୁଖୀନ ହେଲେ ସଂଗ୍ରାମକେଶରୀ । ଦିନେ ଆସି କାଦମ୍ବିନୀଙ୍କୁ କହିଲେ, ଆମ ଗାଁ ପାଖରେ ସରକାର ଗୋଟାଏ ରସାୟନିକ ସାର କାରଖାନା ବସାଇବେ ବୋଲି ପରିକଳ୍ପନା କରୁଛନ୍ତି । ମୁଁ ସ୍ଥିର କରିଛି ଗ୍ରାମକୁ ଫେରିଯିବି । ଗୃହଜମି କିଣି ଆରମ୍ଭ କରିବି ନୂତନ ସଂସାର । ମୁଁ କାହାର ଉପରେ ନିର୍ଭର କରିବାକୁ ଚାହେଁନାହିଁ ।

ତାଙ୍କ କଥା ଶୁଣି କାଦମ୍ବିନୀ ହସିଥିଲେ । ଯେଉଁ-ଦିନ ସ୍ୱାମୀ ତାଙ୍କୁ ଗ୍ରାମ ଛାଡ଼ି ସହରକୁ ଆସିବା କଥା କହିଥିଲେ, ସେ ତାହା ସହଜରେ ବିଶ୍ୱାସ କରି ନ ଥିଲେ । ସେହିଭଳି ସହର ଛାଡ଼ି ସ୍ୱାମୀଙ୍କ ଗ୍ରାମ ପ୍ରତ୍ୟାବର୍ତ୍ତନ କଥା ମଧ୍ୟ ତାଙ୍କର ସହଜରେ ବିଶ୍ୱାସ-ଯୋଗ୍ୟ ହୋଇ ନ ଥିଲା ।

ବାବା ପୁଣି ଗ୍ରାମକୁ ଫେରି ଯିବେ, ଏକଥାକୁ ଦୁଇପୁଅ ସନ୍ଦେହ ଦୃଷ୍ଟିରେ ଦେଖିଥିଲେ । ସେମାନଙ୍କର ଧାରଣା ହୋଇଥିଲା, ଅବସର ସମୟରେ ବାବା ସରକାରୀ ତହବିଲରୁ ଗ୍ରାଚୁଇଟି, ପ୍ରୋଭିଡେଣ୍ଟ ଫଣ୍ଡ ବାବଦ ପାଇଥିବା ବିପୁଳ ଅର୍ଥରୁ ସେମାନଙ୍କୁ ଭାଗ ଦେବାପାଇଁ ଗ୍ରାମରେ ଜମି କିଣିବାକୁ ଯାଉଛନ୍ତି । ସେ କେବେହେଲେ ଗ୍ରାମରେ ରହି ପାରିବେ ନାହିଁ ।

ବାହାରେ ଅନେକ ଲୋକଙ୍କର ଧାରଣା ଇଞ୍ଜିନିୟରମାନେ ବହୁତ ଲାଞ୍ଚ ଖାଆନ୍ତି । କାଦମ୍ବିନୀ

ଲକ୍ଷ କଲେ ସେ ଧାରଣା। ବଡ଼ପୁଅ, ବଡ଼ ବୋହୂଙ୍କ ମନରେ ମଧ୍ୟ କସା ବାନ୍ଧିଛି । ସେ ଥରେ ଲଜେ ଶୁଣିଲେ ବଡ଼ବୋହୂ କହୁଛି, ବାବା ଭାରି କୃପଣ ! ଇଂଜନପୁର ଥିବାବେଳେ କଣ୍ଟ୍ରାକ୍ଟରମାନଙ୍କ ଭଲରୁ ଭାଗ ନେଇ ନେଇ ବୁଡ଼ାଉଥିଲେ, ଆମେ ଔଷଧ ଦୋକାନ ଖୋଲିବାକୁ ଟଙ୍କା କେତେ ହଜାର ମାଗିଲେ କହୁଛନ୍ତି ଟଙ୍କା ନାହିଁ !

ପୁଅମାନେ ପାଠ ପଢ଼ି ସାରିଲା ପରେ ବର୍ଷକେ ଥରେ ଅଧେ ସେମାନଙ୍କର କାଦମ୍ବିନୀଙ୍କ ସହ ଦେଖା-ହୁଏ । ଦୁଇ ପୁଅ ବାହାହେବା ପରେ କେବଳ ତାଙ୍କ ପାଖରେ ମାସେ, ପନ୍ଦର ଦିନ ଲେଖାଏଁ ଥିଲେ । ତା' ପରେ ସେମାନେ କଟକରେ, ନୂଆ ଘରେ ! ଦରକାର ପଡ଼ିଲେ ଟଙ୍କା ପାଇଁ ଲେଖିବା ବ୍ୟତୀତ ନିଜ ଦେହ ମୁଣ୍ଡ କଥା ମଧ୍ୟ ଲେଖନ୍ତି ନାହିଁ । ସ୍ୱାମୀଙ୍କ ସହିତ ସବୁବେଳେ ଅନ୍ୟତ୍ର ରହିବା ଫଳରେ ପୁଅ, ବୋହୂଙ୍କ ସହିତ ତାଙ୍କର ସମ୍ପର୍କ ଅତି କ୍ଷୀଣ । ସେ ଆଶା କରିଥିଲେ, ସ୍ୱାମୀ ଚାକିରୀରୁ ଅବସର ନେଲା-ପରେ ଶେଷ ଜୀବନ ସେ ପୁଅ, ବୋହୂ, ନାତି, ନାତୁଣୀଙ୍କ ଗହଣରେ ଆନନ୍ଦରେ କଟାଇ ଦେବେ । କିନ୍ତୁ ଦୂରରୁ ଯେଉଁ ପର୍ବତ ତାଙ୍କୁ ସୁନ୍ଦର ଦେଖା ଯାଉଥିଲା, ପାଖକୁ ଆସି ସେ ଦେଖିଲେ, ତାହା କେବଳ ଏକ ଶୁଖୁଆ ପାହାଡ଼ !

ସ୍ୱାମୀଙ୍କ ମୁହଁକୁ ଚାହିଁ ସେଦିନ ସେ ବିସ୍ମୟ-ବିମୂଢ଼ ଦୃଷ୍ଟିରେ ପ୍ରଶ୍ନ କରିଥିଲେ, ସତରେ ତମେ ଗ୍ରାମକୁ ଫେରିଯିବ ? ପଚିଶ ବର୍ଷ ହେଲା ଥରେହେଲେ ଗ୍ରାମକୁ ଯାଇନାହିଁ । ସେଠାରେ ତ ବର୍ତ୍ତମାନ ଯାଇ ଚଳି ପାରିବା ?

ସ୍ୱାମୀ ତାଙ୍କ ମୁହଁକୁ ଚାହିଁ ହସିଥିଲେ ।

ଉତ୍ତର ଦେଇଥିଲେ, ସତ କହିବାକୁ ଗଲେ ଗ୍ରାମରେ ମୁଁ ମଣିଷ ହୋଇଛି । ବାବା, ଜେଜେବାବା, ସାଆନ୍ତ ବାବାଙ୍କ ଚିତାଗ୍ନି ସେହି ଗ୍ରାମ ମଶାଣିରେ ଜଳିଛି । ମାଆଙ୍କୁ ଦେଖିଲିତ, ସେହି ମଶାଣିକୁ ଯିବା ଲୋଭରେ ସେ ଆମ ସହିତ ସହରକୁ ସୁଦ୍ଧା ଆସିଲେ ନାହିଁ ମତେ ଗ୍ରାମ ମାଟି ବୁଢ଼ୀହେଁ ଗ୍ରାମ ମଶାଣି ଡାକୁଛି । ଦାଦମ୍ବିନୀ ! ମଶାଣି କଥା ଶୁଣି ତମେ ଆଖି ଛଳ ଛଳ କରନାହିଁ । ଜୀବନରେ ସେଇ ଗୋଟିଏ ମାତ୍ର କଥା ସତ୍ୟ; ଆଉ ସବୁ ମିଥ୍ୟା । ମୁଁ ଗ୍ରାମକୁ ଯିବି—

ସ୍ୱାମୀ ପ୍ରଥମେ ଯେଉଁଦିନ ଟଙ୍କା ଧରି ଜମି କିଣିବାକୁ ଏ ପାଣିପାଟପୁର ଗ୍ରାମକୁ ଆସିଥିଲେ ପୁଅ, ଝିଅ, ବୋହୂମାନଙ୍କ ଭଳି ସେ ମଧ୍ୟ ଆଶା କରିଥିଲେ, ପଚିଶ ବର୍ଷ ତଳର ଗ୍ରାମର ପରିବର୍ତ୍ତନ ଦେଖି ସ୍ୱାମୀ ନିରାଶରେ ସହରକୁ ଫେରିଯିବେ । କହିବେ, କାଦମ୍ବିନୀ ! ସେ କାଦୁଅ-ପାଣିର ଗାଁଆରେ ସାପ, ବେଙ୍ଗ ରହନ୍ତି, ମଣିଷ ରହନ୍ତି ନାହିଁ । ଆମେ ଏଇ ସହରରେ ରହିବା ।

କିନ୍ତୁ ଦିନେ ରହିବେ ବୋଲି କହି ଆସି ଗ୍ରାମରେ ପ୍ରାୟ ସେ ପନ୍ଦର ଦିନ ରହିଗଲେ । ତା' ପରେ କଟକ ଫେରି କହିଲେ, ମୋ ଜିନିଷପତ୍ର ସଜାଡ଼ି ଦିଅ । ମୁଁ ଗ୍ରାମକୁ ଯିବି । ସେଠାରେ ପ୍ରାୟ କୋଡ଼ିଏ ଏକର ଜମି ମୁଁ କବଲା କରି ଫେରିଛି ।

ଗ୍ରାମରେ ରହିବାର ସମସ୍ତ ଆୟୋଜନ ଶେଷ କରି ସ୍ୱାମୀ ଯେତେବେଳେ ଫେରିଛନ୍ତି, କାଦମ୍ବିନୀ ତାଙ୍କୁ ଆଉ ବାଧା ଦେଇପାରି ନ ଥିଲେ । ସ୍ୱାମୀଙ୍କ ଜିନିଷପତ୍ର ସହିତ ସେ ନିଜ ଜିନିଷପତ୍ର ମଧ୍ୟ ସଜାଡ଼ି ଦେଇଥିଲେ ।

ତମେ କଅଣ ମୋ ସାଙ୍ଗରେ ଗ୍ରାମକୁ ଯିବ ? —ସ୍ୱାମୀ ତାଙ୍କୁ ବିସ୍ମିତ ଭାବରେ ପ୍ରଶ୍ନ କରିଥିଲେ ।

ତମକୁ ଛାଡ଼ି ଆଉ ମୁଁ ରହିବି କେଉଁଠି ? —ସେ ଉତ୍ତର ଦେଇଥିଲେ ।

ତମେ ସେ ଗାଁ ଭିତରେ ଚଳି ପାରିବ ?

ସ୍ୱାମୀଙ୍କ ସେ ପ୍ରଶ୍ନଟା ତାଙ୍କୁ ଉପହାସ ଭଳି ମନେ ହୋଇଥିଲା । ସେ ମୁଣ୍ଡ ଟେକିକୁ ପୋଛି ଉତ୍ତର ଦେଇଥିଲେ, ଯେଉଁଦିନ ଶାଶୁଙ୍କୁ ଛାଡ଼ି ତମ ସହିତ ସହରକୁ ଆସିବି ନାହିଁ ବୋଲି ମନା କରିଥିଲି,

ସେଦିନ ଶାଶୁ କଅଣ କହିଥିଲେ ମନେ ନାହିଁ ? କହିଥିଲେ ସୀତା ଠାକୁରାଣୀ ସ୍ୱାମୀଙ୍କ ସହିତ ବନକୁ ଯାଇଥିଲେ···

ସ୍ୱାମୀ ତାଙ୍କୁ ମନା କରିପାରି ନ ଥିଲେ । ସାନନ୍ଦିଅ ମଧ୍ୟ ତାଙ୍କ ସହିତ ଗ୍ରାମକୁ ଆସିଲା । ଗ୍ରାମରେ ଚଳିବା ପାଇଁ ତାଙ୍କୁ ବିଶେଷ କିଛି କଷ୍ଟ ହୋଇନାହିଁ । କେବଳ କେତେ ଗୁଡ଼ାଏ ସହରୀ ଅଭ୍ୟାସ ତାଙ୍କୁ ବଦଳାଇବାକୁ ପଡ଼ିଥିଲା ।

କାଦମ୍ବିନୀ ଭାବିଥିଲେ, ଗ୍ରାମରେ ଶେଷ ଜୀବନଟା ତାଙ୍କର ସୁରୁଖୁରୁରେ କଟିଯିବ । କିନ୍ତୁ ଦିନ କେତୋଟିର ରହଣି ଫଳରେ ସେ ବୁଝି ଗଲେଣି ତାଙ୍କ ଗ୍ରାମ ପ୍ରତ୍ୟାବର୍ତ୍ତନକୁ କେନ୍ଦ୍ର କରି ଏ ଅଞ୍ଚଳରେ ନାନା ଉତ୍ତେଜନାମୟ ଘଟଣା ଘଟିବାକୁ ଯାଉଛି । ସେମାନେ ଗ୍ରାମକୁ ଫେରି ଆସନ୍ତୁ, ଏକଥା ଏ ଅଞ୍ଚଳରେ କେହି ହୁଏତ ଚାହୁଁ ନ ଥିଲେ ।

କାଲି ଶ୍ୟାମସୁନ୍ଦର ସ୍ତ୍ରୀ ରହମଣି କହୁଥିଲା, ଜମିଦାର ସାଆନ୍ତକୁ ସେ ସମର୍ଥନ କରୁଛନ୍ତି ବୋଲି ମାଳାମ୍ବରବାବୁ ତାଙ୍କ ଉପରେ ଭୀଷଣ ରାଗିଛନ୍ତି । ପଞ୍ଚାୟତରେ ତାଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସୁଛି······

ଆଜି ରତି କହିଲା, ନିରଞ୍ଜନ ଗ୍ରାମରେ ରାତ୍ରି ସ୍କୁଲ ଖୋଲିବାକୁ ଚେଷ୍ଟା କରୁଛି ବୋଲି ତାଙ୍କ ପରିବାରରେ ଗଣ୍ଡଗୋଳ ଲାଗିଛି !

ସ୍ୱାମୀ କଟକ ଯାଇଛନ୍ତି ନୂଆ ସ୍କୁଲ ମଞ୍ଜୁର କରିବାକୁ । ସ୍କୁଲ ଖୋଲିଲେ ପୁଣି ହୁଏତ ଗଣ୍ଡଗୋଳ ବଢ଼ିବ । ଏ ଗଣ୍ଡଗୋଳରେ ମୁଣ୍ଡ ନପୂରାଇବା ପାଇଁ ସେ ସ୍ୱାମୀଙ୍କୁ ଅନେକ ବୁଝାଇଛନ୍ତି । କିନ୍ତୁ ବୟସ ବେଶି ହେବା ସଙ୍ଗେ ସଙ୍ଗେ ସ୍ୱାମୀଙ୍କ ଜିଦ୍ ମଧ୍ୟ ବଢ଼ୁଛି । ସେ ତାଙ୍କୁ ସ୍ପଷ୍ଟ କହି ଦେଇଛନ୍ତି, ଜମିଦାରୀ ଉଠିଗଲା ପରେ ଗ୍ରାମରେ ସମସ୍ତେ ନିଜକୁ ନିଜେ ଜଣେ ଜଣେ ଜମିଦାର ବୋଲି ଭାବୁଛନ୍ତି । ସମସ୍ତେ ଗୃହାନ୍ତ ଏ ଗ୍ରାମକୁ ଶୋଷଣ କରିବେ, କେହି ଜଣେ-ହେଲେ ଗ୍ରାମର ସେବା କରିବେ ନାହିଁ । ସେମାନଙ୍କ ସ୍ୱାର୍ଥରେ ବାଧା ପଡ଼ୁଛି ବୋଲି ସେମାନେ ମୋ ବିରୁଦ୍ଧରେ ଆଜି ପ୍ରଚାର ଚଳାଇଛନ୍ତି । ଏ ଗାଁ ମୋ ବାବା, ଜେଜେବାବା, ସାଆନ୍ତ ବାବାଙ୍କ ଜନ୍ମଭୂମି । ଏଠାରେ ରହିବାର ଅଧିକାର ମୋର୍ ଜନ୍ମଗତ । ସେମାନେ ମତେ ଏଠାରେ ରହିବା ପାଇଁ ନ ଦେବାକୁ କିଏ ?

ସ୍ୱାମୀ ରାଗିଗଲେ କାଦମ୍ବିନୀ କିଛି ଉତ୍ତର ଦିଅନ୍ତି ନାହିଁ । ସେଦିନ ମଧ୍ୟ ସେ କିଛି କହି ନ ଥିଲେ । ବରଂ ନିଜର ରାଗ ଶାନ୍ତହେବା ପରେ ସ୍ୱାମୀ ତାଙ୍କୁ ବୁଝାଇଲା ଭଳି କୋମଳ କଣ୍ଠରେ କହିଥିଲେ, କାଦମ୍ବିନୀ ! ବଞ୍ଚି ରହିବାକୁ ହେଲେ ସଂଗ୍ରାମ କରିବାକୁ ହୁଏ । ପୃଥିବୀରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ବଞ୍ଚି ରହିବା ପାଇଁ ସଂଗ୍ରାମ କରିବାକୁ ପଡ଼େନାହିଁ । ବାବା ମୋର ନାମ ରଖିଥିଲେ ସଂଗ୍ରାମ-କେଶରୀ । ମୁଁ ଏହି ମାଳାମ୍ବର, ଜଳଧରଙ୍କୁ ଭୟକରି ସଂଗ୍ରାମରୁ ପଛଘୁଞ୍ଚା ଦେଲେ ବାବାଙ୍କ ନାମକରଣର ଅମର୍ଯ୍ୟାଦା ହେବନାହିଁ ?

କାଦମ୍ବିନୀ ଏସବୁ କଥା ଯେତେ ମନେ ପକାଉ-ଥିଲେ, ତାଙ୍କ ମନ ସେତେ ଅସ୍ଥିରତାରେ ଭରି ଉଠୁଥିଲା । ସେ ଇତିଶ୍ରୀକୁ କୋଳାଗ୍ରତ କରି ଶୋଇବାକୁ ଚେଷ୍ଟାକଲେ । ଏ ସବୁ ସ୍ନାୟୁ-ଉତ୍ତେଜକ ଘଟଣା ଭୁଲି ଯିବାକୁ ଚେଷ୍ଟା କରିଥିଲେ ।

( କ୍ରମଶଃ )

—*—






ଭାରି ଭଲ ଲାଗୁଛି ବାପା

ଏଇ ମଣିରାଜ ବିସ୍କୁଟ-ଲଜେଞ୍ଜ
ମୋ ପାଇଁ ଆଉ ଆଣିବ














## ଇଡିଟର ଭାଇର ଚିଠି

**ସ୍ନେହର ସାଥିମାନେ !**

ଗତମାସଠାରୁ 'ବନଫୁଲ'ରେ ତୁମ ଲାଗି 'ଜହ୍ନମାମୁଁ' ବିଭାଗଟି ଆରମ୍ଭ ହେଉ ହେଉ ତୁମମାନଙ୍କର ଏ ବିଭାଗଟି ପ୍ରତି ବିଶେଷ ଆଗ୍ରହ ଓ ଉତ୍ସାହ ଥିବା ଲକ୍ଷ୍ୟ କରୁଛୁ । କେତେକ ପିଲା ସାଥି ହେବାକୁ କୁପନ ପୂରଣ କରି ପଠାଇଛନ୍ତି ଓ କେତେକ ପିଲା ସାଥି ହେବାକୁ ଇଚ୍ଛାକରି ଅଥଚ କୁପନ ପୂରଣ କରି ନ ପାରି କେବଳ ଚିଠି ଲେଖିଛନ୍ତି ଯେ, କୁପନରେ ଥିବା 'ଜୀବନର ଲକ୍ଷ୍ୟ' ସ୍ଥିରକରି ପୂରଣ କରିବା ତାଙ୍କ ପକ୍ଷେ କଷ୍ଟକର ହୋଇ ପଡ଼ୁଥିବାରୁ କୁପନ ପଠାଇ ପାରୁ ନାହାନ୍ତି । ସେମାନେ ଲେଖିଛନ୍ତି ଯେ, ଅନ୍ୟାନ୍ୟ ପତ୍ରିକାର ସାଥି ବିଭାଗର କୁପନରେ ଉପସ୍ଥିତ କର୍ତ୍ତବ୍ୟ ବା ରୁଚି ଉଲ୍ଲେଖ କରିବାକୁ କୁହାଯାଇଥିବା ସ୍ଥଳେ ଜହ୍ନମାମୁଁର ସାଥିମାନଙ୍କ ପାଇଁ 'ଜୀବନର ଲକ୍ଷ୍ୟ' ସ୍ଥିରକରି ଉଲ୍ଲେଖ କରିବାକୁ କୁହାଯାଇଛି କାହିଁକି ? କିନ୍ତୁ ସାଥିମାନେ ! 'ଜୀବନର ଲକ୍ଷ୍ୟ' ଆଜିଠୁଁ ସ୍ଥିର କରିବା ହିଁ ତୁମମାନଙ୍କ ପକ୍ଷେ ମୁଖ୍ୟତଃ ଏକ ଚିନ୍ତାର ବିଷୟ । କେବଳ କୁପନଟି ପୂରଣ କରିବା ଲାଗି 'ଜୀବନର ଲକ୍ଷ୍ୟ' ଯା' ଇଚ୍ଛା ତାହା କିଛି ଗୋଟାଏ ଲେଖିଦେଇ ପଠାଇ ଦେବାକୁ ମୁଁ ପସନ୍ଦ କରେନା । ଠିକ୍‌ଭାବେ ଚିନ୍ତାକରି ଏବଂ ପ୍ରକୃତରେ ତୁମେ ଭବିଷ୍ୟତରେ କ'ଣ ହେବାକୁ ଚାହଁ, ତାହାହିଁ ଲେଖି ପଠାଇବ ଏବଂ ସେହି ଦିଗକୁ ହିଁ ଲକ୍ଷ୍ୟ ରଖି ତୁମେ ତୁମର ଶିକ୍ଷା ଦୀକ୍ଷାରେ ଆଗେଇବ । ଏହି କଥାନେଇ ମୁଁ ତୁମକୁ ଗୋଟିଏ ଛୋଟିଆ ଉଦାହରଣ ଦେଉଛି । ତୁମେ ଯେଉଁଦିନ ତୁମ ମାମୁଁ ଘରକୁ ଯିବାକୁ ଇଚ୍ଛାକର, ଘରୁ ବାହାରିବାବେଳୁ ତୁମର ଲକ୍ଷ୍ୟଥାଏ, 'ମାମୁଁ ଘରକୁ ଯିବା' । ତେଣୁ ମାମୁଁ ଘରକୁ ଯିବା ଯେଉଁ ବାଟ ନିକଟ ଓ ସୁଗମ ତୁମେ ସେଇବାଟ ଧରି ଯାଅ । ଯଦି ମଟର, ରେଲ କିମ୍ବା ନୌକାରେ ଯିବାକୁ ପଡ଼େ ତୁମେ ଠିକ୍ ସେଇ ଯାନ ନିକଟରେ ଯଥାସମୟରେ ପହଞ୍ଚି, ସହଜ ଓ ସୁବିଧାରେ ଯାଇ ମାମୁଁ ଘରେ ପହଞ୍ଚିଯାଅ । ସେହିପରି ଯେକୌଣସି ସ୍ଥାନକୁ ଯିବା କିମ୍ବା ଯେକୌଣସି କାମ କରିବାରେ ସେହି ସ୍ଥାନ ବା ସେହି କାମ ପ୍ରତି ଠିକ୍‌ଭାବେ ଲକ୍ଷ୍ୟ ନ ଥିଲେ ସେ ସ୍ଥାନରେ ସହଜରେ ପହଞ୍ଚି ହୁଏନା କି ସେ କାମ ବି ସହଜରେ ହୋଇ ପାରେନା । ଅତଏବ ତୁମ ଭବିଷ୍ୟତ ଜୀବନର ଲକ୍ଷ୍ୟ ତୁମେ ଆଜିଠୁଁ ସ୍ଥିର ନ କଲେ ଭବିଷ୍ୟତରେ ନିଜ ନିଜର ନିର୍ଦ୍ଦିଷ୍ଟ ସ୍ଥାନ ବାଛିନେଇ ପାରିବ ନାହିଁ । ତୁମେମାନେ ପାଠ ପଢ଼ୁଛ, ଭବିଷ୍ୟତରେ କେବଳ ସରକାରୀ ଚାକିରିଟିଏ କରିବା ପାଇଁ ନୁହେଁ । ତୁମେମାନେ ପାଠ ପଢ଼ି, ମାତୃଭୂମି ଓ

ମାତୃଭାଷାର ସମୃଦ୍ଧି ଲାଗି ମଧ୍ୟ କାମ କରିବ । ତୁମେ ହେବ କବି, ଲେଖକ, ସାହିତ୍ୟିକ, ସାମ୍ବାଦିକ, କଳାକାର, ନେତା ଓ ଆଦର୍ଶ କୃଷକ । ଜଣେ ସାଥି ତାଙ୍କର ଜୀବନର ଲକ୍ଷ୍ୟ 'କୃଷକ' ଓ ଆଉ ଜଣେ ସାଥି 'ଲେଖକ' ହେବାକୁ ଲେଖିଛନ୍ତି । ପ୍ରକୃତରେ ସମସ୍ତେ ଯଦି ପାଠ ପଢ଼ି ଚାକିରି କରିବ ତେବେ କୃଷିର ଉନ୍ନତି ହେବ କିପରି ? ପୁଣି ଲେଖାଲେଖି କରି ସାହିତ୍ୟ ସୃଷ୍ଟି ନ କଲେ ନିଜର ମାତୃଭାଷା ସମୃଦ୍ଧି ହେବ କିପରି ? ତେଣୁ ତୁମେମାନେ ପାଠପଢ଼ି କେବଳ ଚାକିରି କରିବାର ଲକ୍ଷ୍ୟ ରଖିଲେ ଚଳିବ ନାହିଁ । ତୁମେମାନେ ଆଜଠୁଁ ଦେଶ ଓ ଦଶର ବିଭିନ୍ନ ଦିଗ ଏବଂ ବିଭିନ୍ନ ସମସ୍ୟା ବିଷୟ ଚିନ୍ତାକରି ନିଜର ଜୀବନର ଲକ୍ଷ୍ୟ ସ୍ଥିର କରିବା ଉଚିତ । ଅତଏବ ଏଣିକି 'ଜୀବନର ଲକ୍ଷ୍ୟ' ଠିକ୍‌ଭାବେ ଚିନ୍ତାକରି ଲେଖିବ ଓ ସେଇ ଲକ୍ଷ୍ୟରେ ହିଁ ତୁମେ ତୁମର ଶିକ୍ଷା ଦୀକ୍ଷାରେ ଅଗ୍ରସର ହେବ ।

ଏହାଛଡ଼ା ଯେଉଁ ସାଥିମାନେ ଚିଠି ଲେଖି ଏ ବିଭାଗଟି ପାଇଁ ଆମକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ନିଜର ଲେଖା ଓ ସାଥି କୁପନ ପଠାଇ ଆମସହ ସହଯୋଗ କରିଛନ୍ତି ସେମାନଙ୍କୁ ଧନ୍ୟବାଦ ଜଣାଉଛି ଓ ଭବିଷ୍ୟତ ପାଇଁ ତୁମମାନଙ୍କର ଅଧିକ ସହଯୋଗ କାମନା କରୁଛି । ଏଣିକି କୃତୀ ସାଥିମାନଙ୍କର ପରିଚୟ ଲାଗି ଗୋଟିଏ ବିଭାଗ ରହିବ । ଯେଉଁ ସାଥିମାନେ ନିଜର ପାସ୍‌ପୋର୍ଟ ସାଇଜ୍‌ର ଫଟୋସହ ଦଶଟଙ୍କା ଓ ନିଜର କୃତୀତ୍ୱ ସମ୍ବନ୍ଧରେ ସବିଶେଷ ବିବରଣୀ ଲେଖି ଜଣାଇବେ, ସେମାନଙ୍କ ଫଟୋସହ ପରିଚୟ ପ୍ରକାଶ ପାଇବ ଏବଂ ସେମାନେ ଇଚ୍ଛାକଲେ ସେମାନଙ୍କ ଫଟୋର୍ ବ୍ଲକ୍‌ଟି ମଧ୍ୟ ଫେରସ୍ତ ନେଇ ପାରିବେ । ହଉ ଆଜି ଏତିକିରେ ତୁମମାନଙ୍କର ଶୁଭ ମନାସି ରହିଲି । ଏଥର ଜନ୍ମମାସୁଁ ବିଭାଗଟି କିପରି ମନକୁ ପାଇଲା, ଚିଠିଦ୍ୱାରା ଜଣାଇବ ।

। ଇତି ।

ସ୍ନେହ ଓ ଶୁଭେଚ୍ଛା ସହ

ରକେଟ୍ ଭାଇ

C/o. ସମ୍ପାଦକ—"ବନଫୁଲ"
ରାଜାବଗିଚା, କଟକ-୧

---

# ଲିଲି ଆଉ ଡଲି

—ରକେଟ ଭାଇ

ଲିଲି ଆଉ ଡଲି,
ଡଲି ତୁଚ୍ଛା ଦରହସୀ, ଲିଲି ଟିକେ ଚୋଲି ।

ଘରେ ଥୁଆ ହୋଇଥିଲା ରସଗୋଲା ଠେକି
ଲିଲି ଡଲି ଦୁହେଁ ଦେଖି ହେଲେ ଶିଖାଶିଖି
ଠେକିଟିକି ଟେକିନେଇ ଘରୁ ଗଲେ ଚାଲି ।
ଡଲି ତୁଚ୍ଛା ଦରହସୀ, ଲିଲି ଟିକେ ଚୋଲି । ୧ ।

ବାଡ଼ିପଟେ ବସି ଦୁହେଁ ହେଲେ ଫୁସୁଫାସ,
ଦରହସୀ ଡଲିଟାକୁ ମାଡ଼ୁଥାଏ ହସ ।
ଦେଖୁ ଦେଖୁ ଠେକିଟାକୁ କରିଦେଲେ ଖାଲି,
ଡଲି ତୁଚ୍ଛା ଦରହସୀ ଲିଲି ଟିକେ ଚୋଲି । ୨ ।

ମାଆ ଯେବେ ପଚାରିଲେ—'କିଏ ନେଲା ଠେକି',
ଲିଲି ଟିକେ କହିବାକୁ ହେଲା ଛକି ଛକି ।
ଡଲି ସବୁ ସତକଥା କହିଦେଲା ଖୋଲି,
ଡଲି ତୁଚ୍ଛା ଦରହସୀ ଲିଲି ଟିକେ ଚୋଲି । ୩ ।

ଭଲ ପାଆନ୍ତି ସେ ଦୁହେଁ ଯିବାପାଇଁ ବୁଲି,
ଛୁଟିଦିନ ସବୁ ବୁଲିବାରେ ଯାଏ ଚାଲି ।
ଲିଲି ଚଳେ କଲିକତା, ଡଲିଯାଏ ଦିଲ୍ଲୀ,
ଡଲି ତୁଚ୍ଛା ଦରହସୀ ଲିଲି ଟିକେ ଚୋଲି । ୪ ।

ମିଲି ବୋଲି ଝିଅଟିଏ ଡଲିର ସେ ମିତ,
ସିଏ ବୋଲିଜାଣେ ଭାରି ମଜା ମଜା ଗୀତ ।
ମିଲି ଗୀତ ଶୁଣି ଡଲି ହସେ ଖିଲି ଖିଲି,
ଡଲି ତୁଚ୍ଛା ଦରହସୀ ଲିଲି ଟିକେ ଚୋଲି । ୫ ।

# ॥ ବିଲେଇ ନାନୀର ବାହାଘର ॥

—ଶ୍ରୀମତୀ ଲକ୍ଷ୍ମୀ ଦାସ

ମୂଷାମାନେ ଫସଲ ନଷ୍ଟ କରୁଥିବାରୁ ମୂଷାମାନଙ୍କୁ ମାରିବା ପାଇଁ ଏବେ ଯେଉଁ ଔଷଧ ପ୍ରସ୍ତୁତ ପ୍ରୟୋଗ ହେଉଛି, ତା'ର ପ୍ରତିକାର ଲାଗି ମୂଷାମାନଙ୍କ ଭିତରେ ଏକ ସଭା ବସିବା ସ୍ଥିର ହେଲା ଗହିରବିଲର ଏକ ହୁଡ଼ତଳେ ରହୁଥିବା ବୁଢ଼ା ମୂଷାଟି ହେଉଛି ମୂଷାମାନଙ୍କ ନେତା । ସେ ତା'ର ସାଙ୍ଗ ସାଥିଙ୍କୁ ନେଇ ଯାଉଥିଲାବେଳେ, ଆରପଟ ଗାଁ ମୁକୁନ୍ଦପୁରର ବିଲେଇନାନୀ ଆସୁଥିଲା । ବିଲେଇନାନୀଙ୍କ ଉପରେ ମୂଷାମାନଙ୍କର ଦୃଷ୍ଟି ପଡ଼ି ନ ଥିଲା । ସେହି ବାଟଦେଇ ସ୍କୁଲକୁ ଯାଉଥିବା ପିଲାମାନେ ତାଳିମାରି କହିଲେ—

"ଆସିଲାଣି ବିଲେଇ,
ମୂଷା ଯିବେ ପଳାଇ ।"

ପିଲାମାନଙ୍କର ଏ ପାଟି ଶୁଣି ମୂଷାମାନେ ଦେଖନ୍ତି ତ ବିଲେଇନାନୀ ହରିପୁର ଗାଁ ଭିତରକୁ ଧାଇଁଛନ୍ତି, ସେ ଯୁଆଡ଼େ ଖସି ପଳାଇଲେ । ମୂଷାମାନଙ୍କର ଯେ ନେତା, ସେ କିନ୍ତୁ ଖସିଯାଇ ପାରିଲେ ନାହିଁ । ମୂଷାଙ୍କୁ ଦେଖି ବିଲେଇନାନୀ ପଚାରିଲେ—

"ମୂଷା ଭାଇରେ ମୂଷା ଭାଇ
ଖରାରେ କୁଆଡ଼େ ଯାଉଛୁ ଧାଇଁ ?"

ମୂଷାମାନଙ୍କର ନେତା ବିଲେଇନାନୀଙ୍କୁ ନମସ୍କାର କରି କହିଲା—

"ତମେ କରୁଥିଲ ଯିନା ଆମ ବଂଶ ନିପାତ
ଏବେ ସହୁନୁହେଁ ଏଇ ମଣିଷଙ୍କ ଉତ୍ପାତ ।

ମୂଷା ନେତାଙ୍କ କଥା ଶୁଣି ବିଲେଇ ନାନୀ ହସି ହସି କହିଲା—"ଆରେ ଏଥିପାଇଁ ନେତା ସାଜିଛୁ ? ତମେ ପରା ମଣିଷଙ୍କ ବିରୁଦ୍ଧରେ ଲଢ଼ିବ ? ଏବେ ମତେ ଦେଖି ପଳାଉଛ କାହିଁକି ? ଆଜିକାଲି ତ ଆମେ ସବୁ ତମକୁ ମାରିବା ଛାଡି ଦେଇଛୁ । ତମେ ତ ସବୁ ଘରଦ୍ୱାର ଛାଡ଼ି ବିଲ ହୁଡ଼ ତଳେ ପୁଣି କିଆବୁଦା ଭିତରେ ଆସି ରହିଲଣି ।

ମୂଷା ମନେ ମନେ ହସି ବିଲେଇନାନୀ ଏବେ ମାତାଜୀ ହେଲେଣି ବୋଲି ଭାବିଲେ; କିନ୍ତୁ ମନର ଭାବ ବାହାରକୁ ପ୍ରକାଶ କଲେନାହିଁ ।

ବିଲେଇନାନୀ କହିଲେ—"ହଁ, ସେ କଥା ଥାଉ । ମୁଁ ତୁମକୁ ନିମନ୍ତ୍ରଣ କରିବାକୁ ଆସିଥିଲି । ମୋ ପୁଅର ବାହାଘର ।" ଏକଥା ଶୁଣି ମୂଷାର ହୃଦୟ ଶୁଖିଗଲା । ମୂଷା କହିଲା—ମଣିଷଙ୍କ ଡାଉରେ ତ ଆମେ ଆଉ ଏ ଗାଁରେ ରହିବା କଥା ନୁହେଁ । ଏବେ ତୁମ ସହିତ ବରଯାତ୍ରୀ ହୋଇ ଗଲେ ଆମେ ଆଉ ଫେରିବୁ ତ ?

ବିଲେଇନାନୀ କହିଲା—ସମସ୍ତଙ୍କ କଥା ଜାଣିଛିରେ ପୁଅ, ସମସ୍ତଙ୍କର ଆଜି ଏକାଦଶୀ । ଦେଖୁନା, ସେ ଗାଁରେ ଉପୁଥେଇଆ ବୋଲି ଗୋଟାଏ କ'ଣ ରୋଗ ହେଲା ଯେ, ସେଥିରେ ଦୋଷ ହେଲା ଆମର । ଏବେ ଯେ ଗାଁରେ ଖାଲି ବିଲେଇମାନଙ୍କୁ ଦୂର୍ ଦୂର୍ ମାର୍ ମାର୍ କରୁଛନ୍ତି । ତେଣୁ ବର୍ତ୍ତମାନ ଆମକୁ ମଧ୍ୟ ଏକଜୁଟ ହେବାକୁ ପଡ଼ିବ ।

ମୂଷା କହିଲା—

"ତମ ପଣଅଜା ଥିଲେ ଯେ ନାନୀ
ତାଙ୍କ ନାମ ଥିଲା ଘ୍ରାମ
ଆମେ ଗଲୁ ତାଙ୍କ ସଙ୍ଗେ କାଶୀ ବୋଲି
କରମ ହୋଇଲା ବାମ
ବାବାଜୀ ହୋଇ ସେ ବାଟରେ ଆମକୁ
ଚଳୁ କଲେ ଗୋଟି ଗୋଟି
ତମ ବାହାଘର କଥା ଶୁଣି ମୋର
ଶୁଖି ତ ଯାଉଛି ତଣ୍ଟି ।"

ମୂଷାର ଏ କଥା ଶୁଣି ବିଲେଇନାନୀ କହିଲା—

ଶୁଣ ତେବେ ମୂଷାଭାଇ
ମଣିଷ ଜାତକୁ କେଉଁ କଥାରେ ତୁ ବିଶ୍ୱାସ କରବୁ ନାହିଁ ।
ଆମ ନାମେ ଖାଲି ଦିଅନ୍ତି ପଦରେ
ଏହିପରି ଅପବାଦ
ଆମେ କରନାହୁଁ ତୁମରି ପାଖରେ
କେବେହେଲେ ଅପରାଧ ।

ମୂଷା ମନେ ମନେ ଭାବିଲା; ମୂଷା ଜାତିଟା ଉପରେ ବିପଦ ପଡ଼ିଛି । ବର୍ତ୍ତମାନ କାହାରିକୁ କିଛି କହିବା ଭଲ ନୁହେଁ । ପଚାରିଲା—"ଆଉ କିଏସବୁ ବରଯାତ୍ରୀରେ ଯିବେ ?

—"ମାଙ୍କଡ଼ ମାମୁଁ, ଚଢ଼େଇ ଅପା, କୁକୁର ନନା, ଗଧ-ଭାଇ, ବିଲୁଆ ନନା, ବାଘ ଦାଦା, ନେଉଳ ଭାଇ ଏମିତି ସବୁ ବିଲେଇ କହିଲା ।"

କୁକୁର ନନା କଥା ଶୁଣି ମୂଷା ପିଣ୍ଡରେ ପ୍ରାଣ ପଶିଲା । କୁକୁର ନନା ଆଗରେ ବିଲେଇ ନାନୀର ମୁହଁ ଫିଟିବ ନାହିଁ । ମୂଷା ଯିବାକୁ ରାଜିହେଲା ।

ତା'ପରଦିନ ସକାଳୁ ମୂଷା, ମାଙ୍କଡ଼, କୁକୁର, ଗଧ ସମସ୍ତେ ସଜବାଜ ହୋଇ ବିଲେଇ ଦୁଆରେ ପହଞ୍ଚିଲେ । ଶଙ୍ଖ, ବାଣ, ପେଁକାଳୀରେ ଦାଣ୍ଡ ଉଚ୍ଛୁଳି ପଡ଼ୁଥାଏ । ବିଲୁଆ ହେଲା ପୁରୋହିତ, ନେଉଳ ହେଲା ଶଙ୍ଖୁଆ, ମାଙ୍କଡ଼ ବାଜା ବଜେଇଲା । ବର ଶୁଭ ସମୟରେ ବାହାରିଲା ହାତୀ ପିଠିରେ ଚଢ଼ି ।

ଘୋଡ଼ାଅଜା କହିଲା—

ଶୁଣରେ ନାତି
ଚଢ଼ିଲେ ହାତୀ
ରାତି ପାହିବ ଜାଣ
ମୋ ଉପରେ
ସବାର ହେଲେ
ରହିବ ତୁମ ଟାଣ ।

ବାଘମାମୁଁ ଓ ଚଢ଼େଇ ଅପା ସମସ୍ତଙ୍କର ଜିଦ୍ ହାତୀ ହେଉଛି ଶୁଭ—ତା' ଉପରେ ବସି ପୁଅ ଯିବ ବାହା ହେବାକୁ । ତାହାହିଁ ହେଲା । ହାତୀ ଉପରେ ବସି ବର ଝୁଲି ଝୁଲି ବାହାରିଲେ ।

ସଞ୍ଜକୁ ସଞ୍ଜ କନ୍ୟାଘରେ ବର ପହଞ୍ଚିଲା ବେଳକୁ ରାତି ପାହିଗଲା । ଶୋଭାଯାତ୍ରୀ ହୋଇ ପାରିଲା ନାହିଁ । କନ୍ୟା ତରଫ ଭାରି ବିଗିଡ଼ି ଗଲେ । ପାଟିତୁଣ୍ଡ କଳି କଜିଆ ହେଲା । ଭାଲୁର ନାଚ, ନେଉଳର ଶଙ୍ଖ, ଗଧର ବାଜା ବଜାଇବା କନ୍ୟା ପକ୍ଷକୁ ଭଲ ଲାଗିଲା ନାହିଁ ।

ଯେଉଁ କଳି କଜିଆ ପାଟିତୁଣ୍ଡ ଭିତରେ ବୋହୂ ଆସିଲା ବେଦୀକୁ । ହାତଗଣ୍ଠି ପଡ଼ିବାବେଳେ ବୋହୂ ଓଢ଼ଣା ଉହାଡ଼ରୁ ଦେଖିଲା, ବରଯାତ୍ରୀଙ୍କ ପଛଆଡ଼େ ଦଳେ ମୂଷା ବସିଛନ୍ତି । ବୋହୂ ପାଟିରୁ ଲାଳ ଗଡ଼ିଲା । ମନ ହେଉଥାଏ, ଗୋଟିଏ ମାରିଦେବ । କାଳେ କିଏ କହିବ ବୋହୂଟା ଟାଙ୍ଗିଆ । ଅପନିନ୍ଦା ବୋଝ ବୋହିବା ସାରହେବ । ଏଇ ଭୟରେ ତୁନିହୋଇ ବସିଲା ।

ବେଦୀରୁ ଉଠି ବୋହୂ କହିଲା ଏ କଥା ତା'ର ସାଙ୍ଗ-ସାଥିଙ୍କୁ । ବୋହୂର ଗୋଟାଏ ଭଉଣୀ ଥିଲା । ସେ କ'ଣ କଲାକି, ବାହାଘର ପରେ ମୂଷାମାନେ ଯେଉଁଠି ବସିଥିଲେ, ମଜା ଦେଖିବାକୁ ସେଠିକି ଡେଇଁ ପଡ଼ିଲା । ମୂଷାମାନେ ଯେଣୁଆଡ଼େ ପଳେଇ ଗଲେ । ବାଘ ମାମୁଁ ଗର୍ଜି ଉଠିଲେ । ହାତୀ ମଧ୍ୟ ରାଗିଗଲା । ହାତୀ ଓ ବାଘର ଗର୍ଜନରେ ଜଙ୍ଗଲ କମ୍ପି ଉଠିଲା । ବିଲୁଆ ନନା ହୁକେ ହୁଆ କଲା । ଗଧ ଖୁବ୍ ଜୋରରେ ପାଟିକଲା । ସମସ୍ତେ ରୁଣ୍ଡହୋଇ ମିଳାମିଶା କରିବାକୁ ଦେଖନ୍ତି ତ ମୂଷାମାନେ ଘରକୁ ପଳେଇ ଗଲେଣି । ରାଗିଯାଇ କୁକୁର ନନା କହିଲା—

ପଛଦ୍ୱାରା ଦେଇ କିଏ ଗଲେରେ ପଳାଇ,
'ମୂଷା' ବୋଲି କହି ଦାଣ୍ଡେ ନ ଦେବ ଚଳାଇ ।

ସେହି ଦିନଠାରୁ ଯେଉଁମାନେ କୌଣସି କାମ କରିବାକୁ ବାହାରି ଅସଲ ସମୟ ବେଳକୁ ପଛଦ୍ୱାରା ଦେଇ ପଳାଇ ଆସନ୍ତି; ଅଥବା କୌଣସି କଥାରେ ଡରି ଯା'ନ୍ତି, ସେମାନଙ୍କୁ 'ମୂଷା' ବୋଲି କୁହାଯାଏ ।

# ଏଇମାନେ ଆମ ନୂଆ ସାଥି

୧—ପ୍ରାଣେଶ ମିଶ୍ର, ବୟସ ୧୩, ଶିକ୍ଷା-୯ମ ଶ୍ରେଣୀ
C/o ଦୁର୍ଗାମାଧବ ମିଶ୍ର, ରାଷ୍ଟ୍ରଭାଷା ରୋଡ଼; କଟକ-୧ ।
ଜୀବନର ଲକ୍ଷ୍ୟ—ସାହିତ୍ୟ ସେବା ।

୨—ଅରୁଣ କୁମାର ରଥ, ବୟସ ୧୨, ଶିକ୍ଷା-୯ମ ଶ୍ରେଣୀ ।
C/o. ରାମେଶ୍ୱର ରଥ, ଏସ୍. ଡ଼. ଓ. (ପି. ଏଚ୍.ଡ.)
ରାଷ୍ଟ୍ରଭାଷା ରୋଡ଼, କଟକ-୧
ଜୀବନର ଲକ୍ଷ୍ୟ—ଡାକ୍ତର ।

୩—ତପନ କୁମାର ରଥ, ବୟସ ୧୧, ଶିକ୍ଷା-୭ମ ଶ୍ରେଣୀ ।
ଉପରୋକ ଠିକଣା   ଜୀବନର ଲକ୍ଷ୍ୟ—ଜଳପାଳ ।

୪—ସୁଚନ୍ଦ୍ରା ମିଶ୍ର, ବୟସ ୯, ଶିକ୍ଷା-୪ର୍ଥ ଶ୍ରେଣୀ ।
C/o. କେ. ସି. ମିଶ୍ର, ରାଷ୍ଟ୍ରଭାଷା ରୋଡ଼, କଟକ-୧
ଜୀବନର ଲକ୍ଷ୍ୟ—ସାମ୍ବାଦିକତା ।

୫—ଅଭୟ କୁମାର ମିଶ୍ର, ବୟସ-୭, ଶିକ୍ଷା ୩ୟ ଶ୍ରେଣୀ ।
ଉପରୋକ୍ତ ଠିକଣା ।   ଜୀବନର ଲକ୍ଷ୍ୟ—ଇଂଜିନିୟର ।

୬—ଅକ୍ଷୟ କୁମାର ମିଶ୍ର, ବୟସ-୧୨, ଶିକ୍ଷା—୯ମ ଶ୍ରେଣୀ
ଉପରୋକ୍ତ ଠିକଣା ।   ଜୀବନର ଲକ୍ଷ୍ୟ—ସାହିତ୍ୟସେବା ।

୭—ତୁଷାରକାନ୍ତ ମହାପାତ୍ର, ବୟସ ୧୦, ଶିକ୍ଷା-୭ମ ଶ୍ରେଣୀ ।
C/o. ଗୋପିନାଥ ମହାପାତ୍ର, ଅଧକ୍ଷ୍ୟ ଇଂଜିନିୟରିଂ ସ୍କୁଲ,କଟକ-୧
ଜୀବନର ଲକ୍ଷ୍ୟ—ନୂଆ ନୂଆ ଦ୍ରବ୍ୟ ଉଦ୍ଭାବନ କରିବା ।

୮—ଅନୁପ କୁମାର ଗୁରୁ, ବୟସ ୯, ଶିକ୍ଷା-୪ର୍ଥ ଶ୍ରେଣୀ ।
C/o. ଉପେନ୍ଦ୍ର ପ୍ରସାଦ ଗୁରୁ, କ୍ୱାଟର ନଂ ୮,
ରାଷ୍ଟ୍ରଭାଷା ରୋଡ଼, କଟକ-୧ ।
ଜୀବନର ଲକ୍ଷ୍ୟ—ଦେଶର ନିରାପତ୍ତାରକ୍ଷା

୯—ଝିଲି ଗୁରୁ, ବୟସ ୭, ଶିକ୍ଷା-୨ୟ ଶ୍ରେଣୀ ।
ଉପରୋକ୍ତ ଠିକଣା ।   ଜୀବନର ଲକ୍ଷ୍ୟ—ଶିକ୍ଷୟିତ୍ରୀ ।

୧୦—ମଂଜୁଳା ଗୁରୁ, ବୟସ ୧୦, ଶିକ୍ଷା-୬ଷ୍ଠ ଶ୍ରେଣୀ ।
ଉପରୋକ୍ତ ଠିକଣା ।   ଜୀବନର ଲକ୍ଷ୍ୟ—ଡାକ୍ତର ଓ ଲେଖିକା

୧୧—ଉଦ୍ଧବ କୁମାର ଗୁରୁ, ବୟସ ୧୨, ଶିକ୍ଷା-୮ମ ଶ୍ରେଣୀ ।
ଉପରୋକ୍ତ ଠିକଣା ।   ଜୀବନର ଲକ୍ଷ୍ୟ—କଳାକାର ।

୧୨—ତରୁଣ କୁମାର ରଥ, ବୟସ ୧୪, ଶିକ୍ଷା-୯ମ ଶ୍ରେଣୀ ।
C/o. ରାମେଶ୍ୱର ରଥ, ଏସ୍. ଡ. ଓ. (ପି. ଏଚ୍. ଡ.)
ରାଷ୍ଟ୍ରଭାଷା ରୋଡ଼, କଟକ-୧
ଜୀବନର ଲକ୍ଷ୍ୟ—ଆଦର୍ଶ କୃଷକ ।

୧୩—ସଚ୍ଚିଦାନନ୍ଦ ମିଶ୍ର, ବୟସ ୧୪, ଶିକ୍ଷା-୧୦ମ ଶ୍ରେଣୀ ।
C/o. ପ୍ରବୋଧ କୁମାର ମିଶ୍ର, ସରପଡ଼ା, ପୋ: ଖଣ୍ଡସାହି, କଟକ
ଜୀବନର ଲକ୍ଷ୍ୟ—ସାହିତ୍ୟ ସେବା

୧୪—ଅଶୋକ କୁମାର ଜେନା, ବୟସ ୧୫, ଶିକ୍ଷା-୧୧ଶ ଶ୍ରେଣୀ
C/o. ଡଃ. ବ. ଜେନା, ଏ. ଏମ. ଓ. ଏସ୍. ଇ
ରେଲୱେ ହସ୍ପିଟାଲ, ଜଟଣୀ, ପୁରୀ ।
ଜୀବନର ଲକ୍ଷ୍ୟ—ଦେଶର ପ୍ରଧାନ ମନ୍ତ୍ରୀତ୍ୱ ।

୧୫—କୁମାରୀ କିରଣପ୍ରଭା ପୋଥାଲ, ବୟସ ୮, ଶିକ୍ଷା-୪ର୍ଥଶ୍ରେଣୀ
C/o. କେ. ସି. ପୋଥାଲ, କାଠଗଡ଼ା ସାହି, କଟକ-୧ ।
ଜୀବନର ଲକ୍ଷ୍ୟ—ଆଦର୍ଶ ଗୃହିଣୀ ଓ ପରୋପକାର ।

୧୬—ଉମେଶ ଚନ୍ଦ୍ର ସାହୁ, ବୟସ ୧୬, ଶିକ୍ଷା (ଜଣାଇ ନାହାନ୍ତି)
କେନ୍ଦୁଝର ଗଡ଼, କେନ୍ଦୁଝର ।
ଜୀବନର ଲକ୍ଷ୍ୟ—(ଲେଖି ଜଣାଅ:

୧୭—କୁମାରୀ ସୁଧା ମିଶ୍ର, ବୟସ ୧୦, ଶିକ୍ଷା-୬ଷ୍ଠ ଶ୍ରେଣୀ ।
C/o. ଦୁର୍ଗାମାଧବ ମିଶ୍ର, ରାଷ୍ଟ୍ରଭାଷା ରୋଡ, କଟକ-୧
ଜୀବନର ଲକ୍ଷ୍ୟ—ଡାକ୍ତର ।

୧୮—ସନ୍ଦୀପ ମହାପାତ୍ର, ବୟସ ୧୪, ଶିକ୍ଷା-୧୦ମ ଶ୍ରେଣୀ ।
C/o. ପଦ୍ମାରବିନ୍ଦ ମହାପାତ୍ର, କ୍ୱାଟର ନଂ ୩,
କ୍ୟାଣ୍ଟନମେଣ୍ଟ ରୋଡ଼, କଟକ-୧ ।
ଜୀବନର ଲକ୍ଷ୍ୟ—କ୍ରୀଡ଼ାର ଉନ୍ନତିଲାଗି ଉଦ୍ୟମ ।

୧୯—ଲକ୍ଷ୍ମୀକାନ୍ତ ମହାପାତ୍ର, ବୟସ ୧୪, ଶିକ୍ଷା-୧୧ମ ଶ୍ରେଣୀ ।
C/o. ଲୋକନାଥ ମହାପାତ୍ର, କ୍ୱାଟର ନଂ ୩,
କ୍ୟାଣ୍ଟନମେଣ୍ଟ ରୋଡ, କଟକ-୧ ।
ଜୀବନର ଲକ୍ଷ୍ୟ—ବନ୍ଧୁକ ଚାଳନା (ଦେଶରକ୍ଷା)

୨୦—ଜ୍ଞାନଚନ୍ଦ୍ର ମହାପାତ୍ର, ବୟସ ୧୬, ଶିକ୍ଷା-୧୦ମ ଶ୍ରେଣୀ,
ନର୍ମଦା ସଦନ, ସୈନିକ ସ୍କୁଲ ଭୁବନେଶ୍ୱର-୫ ।
ଜୀବନର ଲକ୍ଷ୍ୟ—ଜାତୀୟ ପ୍ରତିରକ୍ଷା ବିଭାଗରେ କାର୍ଯ୍ୟ ।

୨୧-କୁମାରୀ ଶ୍ୱେତପଦ୍ମା ମହାପାତ୍ର, ବୟସ ୧୨, ଶିକ୍ଷା-୧୦ଶ୍ରେଣୀ
C/o. ପଦ୍ମାରବିନ୍ଦ ମହାପାତ୍ର, କ୍ୱାଟର ନଂ ୩,
କ୍ୟାଣ୍ଟନମେଣ୍ଟ ରୋଡ଼, କଟକ-୧
ଜୀବନର ଲକ୍ଷ୍ୟ—ଆଦର୍ଶ ଗୃହିଣୀ ଓ ସାହିତ୍ୟ ସେବା ।

୨୨—ହରପ୍ରିୟା ସାମଲ, ବୟସ ୧୬,
ଶିକ୍ଷା-ସ୍କୁଲଜୀବନ ସମାପ୍ତି ପରେ ଗୃହକାର୍ଯ୍ୟରତା ।
C/o. ପର୍ଶୁରାମ ସାମଲ, ବନ୍ଦରେଶ୍ୱର, ପୋ: ପଲ୍ଲଇ, କଟକ
ଜୀବନର ଲକ୍ଷ୍ୟ—ସୁନିପୁଣ ଗୃହିଣୀ ।

---

[ ବିଶେଷ ଦ୍ରଷ୍ଟବ୍ୟ:—ଏଣିକି ହାତଲେଖା କୁପନ ଗ୍ରହଣ କରାଯିବ ନାହିଁ । କୁପନ ସମ୍ପୂର୍ଣ୍ଣରୂପେ ପୂରଣ ନ ହୋଇଥିଲେ ଓ ଇଂରେଜୀରେ ପୂରଣ ହୋଇଥିଲେ କିମ୍ବା ପୁରା ଠିକଣା ନ ଥିଲେ ଗ୍ରହଣ କରାଯିବ ନାହିଁ । ରୁଚି ଓ ଉପସ୍ଥିତ କର୍ତ୍ତବ୍ୟ ନ ଲେଖି କେବଳ 'ଜୀବନର ଲକ୍ଷ୍ୟ' ଲେଖିବା ଦରକାର ]

# ମାମୁଁଘର

—ଶ୍ରୀ ଭଗବାନ ଶରଣ ମହାନ୍ତି

ମାମୁଁଘର ଖୁବ ଭଲ ଲାଗେ ମତେ
ହେଲେ ବ ବହୁତ ଦୂର,
ମାମୁଁ ଘର ଗୁଡ଼ ଆସିବା ପାଇଁକି
ନ ବଳଇ ମନ ମୋର ।
ମାମୁଁଘର ଗାଆଁ କେଡ଼େ ସୁନ୍ଦର ଲୋ
ସେ ଗାଆଁ ପାଖରେ ନଈ-
କୁଳୁ କୁଳୁ ହୋଇ ବହି ଯାଉଛି ଲୋ
କି ଗୀତ ମଉନେ ଗାଇ ।
ମାମୁଁଘର ଗଲେ ଦୁଃଖ, କୋଷ ସବୁ
ହୋଇ ଯାଇଥାଏ ଦୂର,

କୋଳକର ମାଇଁ ଦିଅନ୍ତି ଖୋଇଲେ
ଭାତରେ ମିଶାଇ କ୍ଷୀର ।
ମାମୁଁଙ୍କ ପୁଅଟି ବଡ଼ ଅଝଟିଆ
ଗୁଡ଼ ଦିଏନାହିଁ ମତେ,
ଚକୋଲେଟ୍‌ଟିଏ ମୋଠାରୁ ନେବାକୁ
ଅଇନ କରଇ କେତେ ।
ଅଜା, ଆଈଙ୍କର ମଜାଳିଆ କଥା
ଭୁଲି ତ ନ ହୁଏ ମନୁ,
ମାମୁଁଘର କଥା ମନେ ପଡ଼ୁଅଛି
ଘରକୁ ଅଇଲାଦିନୁ ।

---

## ସାଥିମାନଙ୍କ କଲମରୁ—

### 'ସୁଲତାନା'

—କୁମାରୀ ମଂଜୁଲା ଗୁରୁ (ସାଥି ନଂ ୧୦)

'ସୁଲତାନା' ମୋର ଆସିଲାନି ଆଉ
ମୋ କଥା କି ଗଲା ଭୁଲି ?
ଛପି ଛପି ସିଏ କେଉଁଠି ରହିଲା
ଆମଘରୁ ଯାଇ ଚାଲି ।
ମନେ ପଡ଼େ ତା'ର ମ୍ୟାଉଁ, ମ୍ୟାଉଁ ଡାକ
ମୂଷା ଦେଖି ଯାଏ ଧାଇଁ,
ଦୁଧ-ଭାତକୁ ସେ ରଙ୍କପରି ହୁଏ
ଚାଲିଆସେ କାନ୍ଥ ଡେଇଁ ।
ସିଏ ଥିଲା ମୋର ଅତି ଆଦରର
ମୋ ଦେହରେ ହୁଏ ଘଷି,
ମୋ ପାଖରେ ହୁଏ ଘୁଡ଼ୁରୁ ଘୁଡ଼ୁରୁ
ପେଲିଦେଲେ ଯାଏ ରୁଷି ।
ଦେଖିବାକୁ ଖୁବ ଉଜ୍ଜଳ ଡାଉଳ
କଇଁଫୁଲ ପରି ଦୋଧ,
ପୂଜା-ଛୁଟି ଠାରୁ ଯାଇଛି; ତା ଲାଗି
ମୋ ଆଖିରେ ଲୁହଭରା ।
ସପନରେ କାଲି ଦେଖିଲି ସେ ଆସି
ପିଉଥିଲା ବସି ଦୁଧ,
'ସୁଲତାନା' ବୋଲି ଡାକ ଦେଲି ଯହୁଁ
ଭାଙ୍ଗିଗଲା ମୋର ନିଦ ।

### ଅଜା

— ଶ୍ରୀ ପ୍ରାଣେଶ ମିଶ୍ର (ସାଥି ନଂ-୧)

( ୧ )

ଆମର ଗାଁ'ର ବୁଢ଼ା ଅଜା,
କଥା କହେ ଖୁବ ମଜା ମଜା ।
ନାଶ ଦି'ଟା ତା'ର ଭାରି ତାଜା,
ମନେ ମନେ ବନିଯାଏ ରାଜା ।

( ୨ )

ଆମକୁ କହେ ସେ ତୁମେ ସବୁ-
ବୋଲଉଛ ଖାଲି ତୁଚ୍ଛା ବାବୁ ।
କେଉଁ 'ଇଂଜିମିଂଜି' ପାଠ ପଢ଼ି,
ସରଗକୁ ପରା ଯିବ ଉଡ଼ି ?

( ୩ )

ଏତେ ପାଠ ଯେବେ ପଢ଼ିଲଣି,
କହିଲ, ଝଙ୍କା କେଇଅଣି ?
ଆମେସବୁ ଅଜା କଥା ଶୁଣି,
ତା ନାଶକୁ ଧରି ଦେଉ ଟାଣି ।
ହସ କଉତୁକ କଥା କହି,
ଅଜା ନଏ ଆମ ମନମୋହି ।

( ୮ ପୃଷ୍ଠାର ଅବଶିଷ୍ଟାଂଶ )

ତାଙ୍କର ଶାନ୍ତିମୟ ବଦରିକାଶ୍ରମକୁ । ଜୀବନରେ ତପସ୍ୟା, ଧ୍ୟାନ ଓ ଅଧ୍ୟୟନ ଛଡ଼ା ସେ ଅନ୍ୟକିଛି ଜାଣି ନ ଥିଲେ । କୌଣସି ପ୍ରକାର ସାମାଜିକ ପଦ-ପଦବୀ ପୁରସ୍କାର ପାଇଁ ସେ ସାମାନ୍ୟତମ ଅଭିଳାଷ ଦେଖାଇ ନ ଥିଲେ । ତାଙ୍କ ଜୀବନ କାଳରେ ହିଁ ସାମ୍ରାଜ୍ୟର ଉତ୍‌ଥାନ ପତନ ଘଟିଲା । ମହା ଭାରତୀୟ ଯୁଦ୍ଧରେ ସମଗ୍ର ଏହି ଉପ-ମହାଦେଶର ସମଗ୍ର କ୍ଷତ୍ରିୟ ସମାଜ ଧ୍ୱଂସ ହେବାର ସେ ଦେଖିଲେ । କିନ୍ତୁ, କିଛିହିଁ ତାଙ୍କୁ ବିଚଳିତ କରି ନ ଥିଲା, ଯେପରି କି କୁହାଯାଏ ଯେ, ବିଶ୍ୱର ଶ୍ରେଷ୍ଠ ବିଜ୍ଞାନୀ ଆଇନ୍‌ଷ୍ଟାଇନ, ନିଜର ଲାବରେଟୋରି ଛଡ଼ା ଆଉକିଛି ଜାଣି ନ ଥିବାରୁ, ପ୍ରଥମ ବିଶ୍ୱଯୁଦ୍ଧର ଗତି ସମ୍ପର୍କରେ ସେ ପ୍ରାୟ ସମ୍ପୂର୍ଣ୍ଣ ଅଜ୍ଞ ରହିଥିଲେ ।

କିନ୍ତୁ ଇତିମଧ୍ୟରେ ଭାରତ ବର୍ଷରେ ଆଉ ଏକ ମହାମାନବ, ବ୍ୟାସଦେବଙ୍କ ସମସାମୟିକ କାଳରେ ଆବିର୍ଭୂତ ହୋଇଥିଲେ । ସେ ହେଲେ ଅଦ୍ଭୁତଚରିତ ଓ ଅଦ୍ଭୁତକର୍ମା ଶ୍ରୀକୃଷ୍ଣ । ଦୁଇକୃଷ୍ଣ ପରସ୍ପରକୁ ଗଭୀର ସମ୍ମାନ କରି ଲାଗିଲେ । ମହାଭାରତ ଯୁଦ୍ଧ, ତାର ପରିଣତି, ଯଦୁବଂଶ ବିନାଶ ଏବଂ ଏ ସବୁ ଭିତରେ ଶ୍ରୀକୃଷ୍ଣଙ୍କର ଭୂମିକା, —ଏ ସବୁ ମିଶି ଯେଉଁ ଗଭୀର ଆଭିମୁଖ୍ୟପୂର୍ଣ୍ଣ ଘଟଣାପ୍ରବାହ ବ୍ୟାସଦେବଙ୍କ ଆଖିଆଗରେ ଘଟି ଚାଲିଲା, ତାହାକୁ ସେ କାବ୍ୟାୟିତ ନ କରି ରହି ପାରିଲେ ନାହିଁ । ତାହାହିଁ ମହାକାବ୍ୟ ମହାଭାରତ,—ସର୍ବସମ୍ମତ ଭାବରେ ପୃଥିବୀର ଶ୍ରେଷ୍ଠ କାବ୍ୟ-ଗ୍ରନ୍ଥ । ବେଦକୁ ସଜାଡ଼ି ଓ ସୁସମ୍ପାଦିତ କରି ବ୍ୟାସଦେବ, ଭାରତୀୟ ସଂସ୍କୃତିର ଯେଉଁ ଉପକାର କରିଥିଲେ, ତାହା ସେ ବହୁଗୁଣିତ କରି ପାରିଲେ ମହାଭାରତ ଲେଖି । ଏକେ ମହାଭାରତ ସ୍ୱୟଂ ବିଶ୍ୱର ଶ୍ରେଷ୍ଠ ମହାକାବ୍ୟ । ଦ୍ୱିତୀୟରେ ଏହାକୁ ଭାରତର ବିଶାଳ ପୌରାଣିକ ସାହିତ୍ୟର ଜନନୀ ବୋଲି ଧରିବାକୁ ହେବ ।

ପ୍ରକୃତରେ 'ପୁରାଣ' ସବୁ, ବ୍ୟାସଦେବଙ୍କ ବହୁ ପରେ ଗୁପ୍ତ ରାଜତ୍ୱକାଳରେ ଲେଖା ହୋଇଛନ୍ତି । କିନ୍ତୁ ଲେଖିଦେଲେ କ'ଣ ଜାତି ସ୍ୱୀକାର କରିନେବ, ଯା' ତାହାର ଗ୍ରନ୍ଥକୁ ? ଜାତି କେବଳ ବ୍ୟାସଦେବଙ୍କ ରଚନାକୁ ବିନା ପ୍ରଶ୍ନରେ ସତ୍ୟ ବୋଲି ଗ୍ରହଣ କରିପାରେ । ଫଳରେ, ଚତୁର ପୁରାଣ-ଲେଖକମାନେ, ନିଜ ନିଜର ଗୋଷ୍ଠୀ-ଗତ-ଦେବ କେନ୍ଦ୍ରିକ ଧର୍ମ ପ୍ରଚାର ପାଇଁ, ସେହି ପରସ୍ପର—ବିବଦମାନ ପୁରାଣଗୁଡ଼ିକୁ ବ୍ୟାସଦେବ-କୃତ ବୋଲି ଶଠ ପ୍ରଚାର-କରି ଯାଇଛନ୍ତି ।

ମହାଭାରତ ଅନୁକରଣରେ 'ପୁରାଣ' ସବୁ ପରେ ରଚିତ ହୋଇଲେହେଁ, ମହାଭାରତ ପ୍ରକୃତରେ 'ଇତିହାସ' ପୁରାଣ ନୁହେଁ ଏବଂ ବ୍ୟାସଦେବଙ୍କ ମହାକାବ୍ୟ ମହାଭାରତ ଯେ ଏବର ଐତିହାସିକମାନଙ୍କର ସନ-ତାରିଖ-ମୟ ଇତିହାସଠାରୁ, ମହାଭାରତୀୟ ଜାତିର ଚିନ୍ତା, ସ୍ୱପ୍ନ ଓ ଆତ୍ମାର ଶ୍ରେଷ୍ଠତର 'ଇତିହାସ' ଏହାମଧ୍ୟ ବିନା ଦ୍ୱିଧାରେ କୁହାଯାଇପାରେ । ମହାଭାରତ ନିଜେ ମହାକାବ୍ୟ, ପୁଣି ସମଗ୍ର ଭାରତୀୟ କାବ୍ୟ-ମାଳାର ଉତ୍ସ । ଉଇଣ୍ଟରନୀଜ୍ ଯେ ମହାଭାରତ, ସ୍ୱୟଂ ଏକ ସ୍ୱତନ୍ତ୍ର, ଗୌରବାବହ ସାହିତ୍ୟ ବୋଲି ବର୍ଣ୍ଣନା କରି ଯାଇଛନ୍ତି, ତାହା ସମ୍ପୂର୍ଣ୍ଣ ସତ୍ୟ । ନଳ-ଦମୟନ୍ତୀ, ସାବିତ୍ରୀ-ସତ୍ୟବାନ୍ ଓ ଶକୁନ୍ତଳା ପ୍ରଭୃତି ଯେଉଁ ଉପାଖ୍ୟାନ ସବୁ ଦ୍ୱାରା ସମଗ୍ର ଭାରତୀୟ ଚେତନାକୁ ଏହି ସହସ୍ର ସହସ୍ର ବର୍ଷ ଧରି ଗଭୀର ଭାବରେ ପ୍ରଭାବିତ କରି ଆସିଛନ୍ତି, ସେ ସବୁର ଉତ୍ସ ଏହି ମହାଭାରତ; କିନ୍ତୁ ଶ୍ରୀକୃଷ୍ଣ ଓ ପାଣ୍ଡବମାନଙ୍କର ଦୁଃଖ-ଦୁର୍ଦ୍ଦଶା ଓ ପରାଭବ ଭିତରେ ମଧ୍ୟ ଧର୍ମ, ନ୍ୟାୟ ସତ୍ୟର ପ୍ରତିଷ୍ଠା ହିଁ ବିଶେଷ ଭାବରେ ପ୍ରଣିଧେୟ ।

ଏବର ପଣ୍ଡିତମାନଙ୍କର ମତରେ ଅଷ୍ଟାଦଶ ପୁରାଣମାନଙ୍କ ପରି ଶ୍ରୀମଦ୍‌ଭଗବଦ୍‌ଗୀତା ମଧ୍ୟ

ବ୍ୟାସଦେବ-ରଚନା ନୁହେଁ । ଏହା ପରେ, ଖୁବ୍ ସମ୍ଭବତଃ ବୌଦ୍ଧଧର୍ମ ବିରୁଦ୍ଧରେ ବାହ୍ମଣ୍ୟ ଧର୍ମର ରକ୍ଷାର୍ଥେ, ମହାଭାରତ ଭିତରେ ଗୁଞ୍ଜି, ଦିଆଯାଇଛି । କିନ୍ତୁ ସେ ସବୁ ପଣ୍ଡିତମାନଙ୍କ ଆଲୋଚନାର ବସ୍ତୁ । ଆମକୁ ଏତିକି ମନେ ରଖିବାକୁ ହେବ ଯେ, ଗୀତା ନ ଥାଇଁ ମଧ୍ୟ ମହାଭାରତ ଏକ ମହାମୂଲ୍ୟବାନ ସୃଷ୍ଟି ଏବଂ ତାର ସ୍ରଷ୍ଟା ଦ୍ୱୈପାୟନଙ୍କୁ ବିନା ଦ୍ୱିଧାରେ ବିଶ୍ୱର ଶ୍ରେଷ୍ଠ ସାହିତ୍ୟିକ--ସ୍ରଷ୍ଟା ବୋଲି ଆମେ ଧରି ନେଇପାରୁ ।

ବଦରିକାଶ୍ରମରେ ସେ ପ୍ରାୟ ସମଗ୍ର ଜୀବନ ବିତେଇ ଦେଇଥିବାରୁ ବ୍ୟାସଦେବଙ୍କର ଅନ୍ୟ ଏକ ନାମ ମଧ୍ୟ ବାଦରାୟଣ । ଶ୍ରୀମଦ୍‌ଭଗବତ୍ ଗୀତା, ଉପନିଷଦ ଓ ବାଦରାୟଣ-ବା-ବ୍ୟାସକୃତ-ବ୍ରହ୍ମସୂତ୍ର, ଏହି ତିନି ଗ୍ରନ୍ଥକୁ ଭାରତୀୟ ଦର୍ଶନ ବା ଚିନ୍ତାର ପ୍ରସ୍ଥାନ ତ୍ରୟୀ ବା ତିନୋଟି ମୁଖ୍ୟ ପ୍ରତିପାଦକ ଗ୍ରନ୍ଥବୋଲି ଧରାଯାଏ । ଏ ତିନୋଟିଯାକର ମୁଖ୍ୟ ଉପପାଦ୍ୟ ହେଲା ଅଦ୍ୱୈତ-ବାଦ' । ଶଙ୍କର ଓ ପରେ ବିବେକାନନ୍ଦ ଏହି ଅଦ୍ୱୈତ ଦର୍ଶନକୁ ହିଁ ଭାରତୀୟ ଚିନ୍ତାର ଶ୍ରେଷ୍ଠରତ୍ନ ରୂପେ ବିଶ୍ୱ ଆଗରେ ପରିବେଷିତ କରି ଯାଇଛନ୍ତି ଏବଂ ଏହି ଅଦ୍ୱୈତଦର୍ଶନର ମୂଳ ଭିତ୍ତି ହେଲା ବାଦରାୟଣ ବା ବ୍ୟାସକୃତ 'ବ୍ରହ୍ମସୂତ୍ର' ।

ତେଣୁ ବେଦର ବରେଣ୍ୟ ସମ୍ପାଦକ ଓ ଉଦ୍ଧାରକ ଭାବରେ, ମହାଭାରତ ମହାକାବ୍ୟର ମହନୀୟ ସ୍ରଷ୍ଟା-ଭାବେ ଏବଂ ଅଦ୍ୱୈତ ଦର୍ଶନର ପ୍ରତିଷ୍ଠାତା ଭାବରେ, କୃଷ୍ଣ ଦ୍ୱୈପାୟନ ବ୍ୟାସ ଯେ ହିନ୍ଦୁ ସଂସ୍କୃତିର ଯୁଗ ଯୁଗ ଧରି ଏକାଧାରରେ ସ୍ରଷ୍ଟା ଓ ରକ୍ଷାକର୍ତ୍ତା ହୋଇ ଆସିଛନ୍ତି, ଏଥିରେ ସନ୍ଦେହ ନାହିଁ । ଏହି ବିଶାଳ-ବୁଦ୍ଧି ମହାପୁରୁଷଙ୍କୁ କୋଟି କୋଟି ହିନ୍ଦୁ ଯେ ପ୍ରତ୍ୟହ ନମସ୍କାର ଜଣାଉଛନ୍ତି, ଏଥିରେ ମଧ୍ୟ ବିସ୍ମୟ କିଛିନାହିଁ । ସମଗ୍ର ବିଶ୍ୱର ସାଂସ୍କୃତିକ ଇତିହାସରେ ବ୍ୟାସଙ୍କ ପରି ମହାନ୍ ପ୍ରତିଭାର ଅଧିକାରୀ ପ୍ରକୃତରେ ବିରଳ ।

—*—

## ସାଥୀ କୁପନ

**ଉକେଟ୍ ଭାଇ,**

ମୁଁ 'ବନଫୁଲ'ର 'ଜହ୍ନମାମୁଁ' ବିଭାଗରେ ସାଥୀ ହେବାପାଇଁ କୁପନ ପୂରଣକରି ସାଥିଗୃନ୍ଦା ୬୦ ପଇସାର ଡାକଟିକେଟ ପଠାଇଲି । ମତେ ସାଥୀ କରିନେବେ ।

ନାମ........................................................ବୟସ......................ଶିକ୍ଷା.............................

ପୂରା ଠିକଣା...............................

ଜୀବନର ଲକ୍ଷ୍ୟ.....................

ସ୍ୱାକ୍ଷର..............................

ତାରିଖ..............................

# ଜୁଲାଇ ମାସ ରାଶିଫଳ

ପଣ୍ଡିତ ଶ୍ରୀ ଯୁଧିଷ୍ଠିର ମହାପାତ୍ର, ଜ୍ୟୋତିର୍ଭୂଷଣ

**ମେଷ:**—ଏ ମାସର ପ୍ରଥମାର୍ଦ୍ଧରେ ସ୍ଥାନ ପରିବର୍ତ୍ତନ, ଗୃହକର୍ମ ଦିଗରେ ହଟଚାପ୍ରାଦ ଦେଖାଦେବ । ମାତ୍ର ଆର୍ଥିକ ଦିଗରୁ ଗୃହଋଣ ମେଣ୍ଟିବ । ଶେଷାର୍ଦ୍ଧ ଆଡ଼କୁ ଏକ ପରୀକ୍ଷାର ସମ୍ମୁଖୀନ ହେବେ । ବ୍ୟବସାୟ ଦିଗ ସୁଗୃହୁ ରୂପେ ଚଳିବ । ସାମାଜିକ ବା ରାଜନୈତିକ ଦିଗରୁ ବୁଝିବିଚାରି ଚଳନ୍ତୁ । ଏକ ଅପ୍ରୀତିକର ଘଟଣା ପଡ଼ିଯାଇପାରେ । ପାରିବାରିକ ଝଂଝଟ ମେଣ୍ଟିନାହିଁ । ସ୍ୱାସ୍ଥ୍ୟ ସାମାନ୍ୟ ପୀଡ଼ା ଦେଖା ଦେଇପାରେ । ମହିଳାମାନେ ପ୍ରଣୟ ଭଙ୍ଗର ସୂଚନା ପାଇବେ । ଛାତ୍ରାଦିଙ୍କ ପରୀକ୍ଷାଫଳ ସାଧାରଣ ଶୁଭ ।

**ବୃଷ:**—ଏ ମାସଟି ଆର୍ଥିକ ଦିଗରୁ ଏକପ୍ରକାର ଶୃଙ୍ଖଳାରେ କଟିବ । ଗୃହକର୍ମରେ ଶୁଭାଶୁଭର ସମ୍ଭାବନା ଅଛି । ସ୍ୱାସ୍ଥ୍ୟ ଓ ପାରିବାରିକ ସ୍ୱାସ୍ଥ୍ୟ ଭଲରେ ଯିବ । ବ୍ୟବସାୟରେ ଗତାନୁଗତିକତା ବଜାୟ ରହିବ । ସ୍ତ୍ରୀଙ୍କର ପୀଡ଼ା ଦେଖାଦେବ । ବ୍ୟୟଯୋଗ ମଧ୍ୟ ରହୁଛି । ରାଜନୀତିକ ବାତାବରଣ ସନ୍ତୋଷଜନକ ନୁହେଁ । ଭ୍ରମଣ ଯୋଗ ମଧ୍ୟ ରହିଛି । ମହିଳାମାନେ ଆଗକୁ ଲକ୍ଷ୍ୟରଖି ଚଳନ୍ତୁ । ଛାତ୍ରାଦିଙ୍କର ମାନସିକ ଅବସ୍ଥା ଭଲ ରହିବ ।

**ମିଥୁନ:**—ଏ ମାସରେ ଗୃହକର୍ମ କ୍ଷେତ୍ରରେ ଶୃଙ୍ଖଳା ନ ଥିଲେ ମଧ୍ୟ ଅର୍ଥ ସଂଯୋଗ ରହିଛି । ନୂତନ ଗୃହକର୍ମ ଯୋଗ ସମସ୍ୟା ବାହୁଲ୍ୟ ହେବ । ପାରିବାରିକ ସମସ୍ୟା ଶାନ୍ତିପୂର୍ଣ୍ଣ ନୁହେଁ । ଆୟ ତୁଳନାରେ ବ୍ୟୟ-ଯୋଗ ଲାଗି ରହିଛି । ବ୍ୟବସାୟରେ ଲାଭରେ ବାଧା ଘଟିବ ଏବଂ ଶତ୍ରୁଯୋଗ ମୁଣ୍ଡ ଟେକିବ । ସାମାଜିକ କୁହେଳିକା ଦେଖିବେ । ମହିଳାମାନେ ସନ୍ତୁଷ୍ଟା ରହିବେ । ଛାତ୍ରାଦିଙ୍କର ଅଧ୍ୟୟନ ଚିନ୍ତା ବଳବତ୍ତର ହେବ ।

**କର୍କଟ:**—ଏ ମାସଟି ଆର୍ଥିକ, ବ୍ୟବସାୟିକ ଓ ପାରିବାରିକ ଦିଗରୁ ଶାନ୍ତି-ଶୃଙ୍ଖଳା ବର୍ଦ୍ଧକ । ସ୍ୱାସ୍ଥ୍ୟ ଏକପ୍ରକାର ଭଲ ରହିବ । ନୂତନ ବାଣିଜ୍ୟରେ ହସ୍ତକ୍ଷେପ କରିପାରନ୍ତି ଓ ଗୃହକର୍ମରେ ନୂତନତାକୁ ଭୁଲନ୍ତୁ । ସାମାଜିକ ଏକ ଝଡ଼ ବହିଯିବା ଅସମ୍ଭବ ନୁହେଁ । ସ୍ତ୍ରୀ ସହିତ ସଦ୍ଭାବ ସୃଷ୍ଟି ହେବାଭଳି ବୋଧ ହେବ । କର୍ମ କ୍ଷେତ୍ରରେ ଜଗି ଜାଗି ଚଳନ୍ତୁ । ମହିଳାମାନେ କର୍ମରତା ହେବେ । ଛାତ୍ରାଦିଙ୍କର ସୁବର୍ଣ୍ଣ ସୁଯୋଗ ।

**ସିଂହ:**-ମାସର ପ୍ରଥମାର୍ଦ୍ଧଟି ଆର୍ଥିକଦିଗରୁ ତୃପ୍ତିକର କିନ୍ତୁ ଶେଷଭାଗରେ ବ୍ୟୟ ବୃଦ୍ଧି, ଅଶାନ୍ତି ଦେଖାଦେବ । ବ୍ୟବସାୟରୁ ଯଥା ପୂର୍ବଂ ତଥାପରଂ । କିନ୍ତୁ ସନ୍ତୁଷ୍ଟ ମନା ରହିବେ । ଈର୍ଷାର ବଶବର୍ତ୍ତୀ ହୋଇ କୌଣସି କୂଟକର୍ମରେ ହାତଦେଇ ପାରନ୍ତି । ଆକସ୍ମିକ ଦୁର୍ଘଟଣାକୁ ସାବଧାନ ରହନ୍ତୁ । ଉତ୍ସବରେ ଯୋଗ-ଦେଇ ପାରନ୍ତି । ସ୍ୱାସ୍ଥ୍ୟ ମଧ୍ୟେ ମଧ୍ୟେ ଅସୁଖ ବୋଧ ହେବ । ମହିଳାମାନେ କଳହ ରତା ହୋଇ ଭଲ କାମରୁ ହଟି ଆସିବେ । ଛାତ୍ରାଦିଙ୍କର ମାସଟି ମନ୍ଦରେ ଭଲ ।

**କନ୍ୟା:**—ଏ ମାସରେ ଆର୍ଥିକ ବ୍ୟୟଯୋଗ କମି ଆସିବ । ଟିକିଏ ଆଶ୍ୱାସନା ବୋଧ କରିବେ । ପାରିବାରିକ ଦୁଶ୍ଚିନ୍ତା ଛାଡ଼ୁନାହିଁ । ଚାକିରିରେ ଗତାନୁଗତିକତା ବଜାୟ ରହିବ । ବ୍ୟବସାୟ ଦିଗ ଲାଭ ଜନକ । ସାମାଜିକତାରୁ ଦୂରେଇ ରହନ୍ତୁ । ମହିଳାମାନେ ଆତ୍ମସନ୍ତୁଷ୍ଟି ଲାଭ କରିବେ । ଜନନୀ ଯୋଗ୍ୟାଙ୍କର ସନ୍ତାନ ଯୋଗ ରହିଛି । ଛାତ୍ରାତ୍ରୀଙ୍କର ପଠନ ଓ ପରୀକ୍ଷା ଉଭୟ ଦିଗ ଉଚ୍ଛୃଙ୍ଖଳ ।

**ତୁଳା:**—ଏ ମାସର ଫଳ ଆଦୌ ଭଲନାହିଁ । ସର୍ବଦା ସାବଧାନରେ ଚଳନ୍ତୁ । ଚାକିରିରେ ଅର୍ଥଯୋଗ ମାମୁଲିଧରଣର, କିନ୍ତୁ ଉପରିସ୍ଥଙ୍କ ସହ ବିଦ୍ୱେଷ ଅବଶ୍ୟମ୍ଭାବୀ । ବ୍ୟବସାୟରୁ ହାନି ପରିଦୃଷ୍ଟ । ବହିର୍ବାଣିଜ୍ୟରେ ହସ୍ତକ୍ଷେପ କରନ୍ତୁ ନାହିଁ । ସ୍ୱାସ୍ଥ୍ୟ ଭଲରେ ଯିବନାହିଁ । ପାରିବାରିକ ବିଦ୍ୱେଷ ତଥା ରାଜନୈତିକ ବିଦ୍ୱେଷ ଭାବ ମୁଣ୍ଡ ଟେକିବ । ଆତ୍ମୀୟ ବିୟୋଗ ଦୁଃଖ ଭୋଗ ହୋଇପାରେ । ମହିଳାମାନେ ଶୋକାତୁରା ହେବେ । ଛାତ୍ରାତ୍ରୀଙ୍କର ପରୀକ୍ଷା ଫଳ ସନ୍ତୋଷ ଜନକ ନୁହେଁ ।

**ବିଛା:**—ଏ ମାସଟି ବିଭିନ୍ନ ଦିଗରୁ ଭଲରେ କଟିବ । କିନ୍ତୁ ସମୟେ ସମୟେ ସ୍ୱାସ୍ଥ୍ୟ ହାନି ଘଟିପାରେ । ଚାକିରିରୁ ଆୟ ସମାନ ରହିଛି, ବ୍ୟବସାୟ ପୂର୍ବାପେକ୍ଷା ଭଲ ରହିବ । ଆର୍ଥିକ ଦୁର୍ଗତି ମେଣ୍ଟି ଆସିବ । ପାରିବାରିକ ବ୍ୟୟ ବୃଦ୍ଧି ଘଟିପାରେ, ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଭଲରେ ଯିବନାହିଁ । ରାଜନୈତିକ ଦିଗ ସମ୍ମାନପ୍ରଦ । ମହିଳାମାନେ ସୌଖୀନ ବସ୍ତୁ ପାଇବେ । କୌଣସି ଉତ୍ସବବ୍ୟସନରେ ଯୋଗଦେବେ । ଛାତ୍ରାତ୍ରୀଙ୍କ ଅଧ୍ୟୟନାବସ୍ଥା ସୁଶୃଙ୍ଖଳ ।

**ଧନୁ:**—ଏ ମାସଟିର ପ୍ରଥମ ଭାଗରେ ସ୍ୱାସ୍ଥ୍ୟହାନି ଦୁର୍ବଳତା ଦେଖାଦେବ । ଶେଷଭାଗ ଆଡ଼କୁ ସ୍ୱଳ୍ପ ଶୁଭ ମିଳିପାରେ । ମାନସିକ ଅବସ୍ଥା ଭଲ ରହିବ ନାହିଁ । ଋଣଜନିତ ଚିନ୍ତାଲାଗି ରହିବ । ଚାକିରିରେ ମାମୁଲି ଧରଣର ଆୟ, ବ୍ୟବସାୟରେ ହାନି ପରିଦୃଷ୍ଟ । ପାରିବାରିକ ଦୁଶ୍ଚିନ୍ତା କମିନାହିଁ । ସାମାଜିକ ଶତ୍ରୁଯୋଗ ମୁଣ୍ଡ ଟେକିପାରେ । ସାବଧାନରେ ଚଳନ୍ତୁ । ମହିଳାମାନେ ଗୃହ ଧନ୍ଦାପ୍ରତି ବିତଶ୍ରଦ୍ଧା ହେବେ । ଛାତ୍ରାତ୍ରୀଙ୍କ ଫଳାଫଳ ତୃପ୍ତି ଜନକ ନୁହେଁ ।

**ମକର:**—ଏ ମାସଟି ଅର୍ଥ ସମ୍ମାନଦିଗରୁ ଅତୃପ୍ତିକର ନୁହେଁ । ମାସ ଶେଷାର୍ଦ୍ଧ ଆଡ଼କୁ ବ୍ୟୟବୃଦ୍ଧି ଦେଖାଦେବ । ଅଭିଳାଷ ସିଦ୍ଧିର ଆଶା ଚାକିରି ଦିଗରୁ ଆୟ ତଥା ବାଣିଜ୍ୟର ଉନ୍ନତି ଅବଶ୍ୟମ୍ଭାବୀ । ପାରିବାରିକ କନ୍ଦଳ ଲାଗି ଯାଇପାରେ । ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଭଲରେ ଯିବନାହିଁ । ନିଜର ମଧ୍ୟେ ମଧ୍ୟେ ଅସୁଖ ଦେଖା ଦେଇପାରେ । ମହିଳାମାନେ ସ୍ୱଚ୍ଛନ୍ଦ୍ୟରେ ସମୟ କାଟିବେ । ସମ୍ଭବସ୍ଥଳେ ନୂତନ ନାଟକ ଯାଇ ପାରନ୍ତି । ଛାତ୍ରାତ୍ରୀଙ୍କର ଅଧ୍ୟୟନ ଓ ପରୀକ୍ଷା ଉଭୟ ଦିଗରୁ ଶୁଭଫଳ ରହିଛି ।

**କୁମ୍ଭ:**—ଏ ମାସରେ ଅର୍ଥ ଶୃଙ୍ଖଳା ସେପରି ଜଣାଯାଉ ନାହିଁ । ମାମୁଲି ଧରଣର ଆୟବ୍ୟୟ ଘଟିବ । ଚାକିରିରେ ଅସହଯୋଗରୁ ଅବ୍ୟାହତି ରହନ୍ତୁ । ବ୍ୟବସାୟରେ ସ୍ୱଳ୍ପ ଲାଭ । ପାରିବାରିକ ବ୍ୟୟ ବୃଦ୍ଧି ଜଣାଯାଏ । ସାମାଜିକ ବା ରାଜନୈତିକ ଦିଗରୁ ଶୃଙ୍ଖଳାବୋଧ ହେବ । ମହିଳାମାନେ ଗୃହ କର୍ମରତା ହୋଇ ପ୍ରଶଂସିତା ହେବେ । ଛାତ୍ରାତ୍ରୀମାନେ ପଠନ ଦିଗରେ ଆଗେଇବେ ।

**ମୀନ:**—ଏ ମାସ ଶାନ୍ତ-ଅଶାନ୍ତ, ସୁଖ ଦୁଃଖର ମଧ୍ୟଦେଇ ଗତି କରିବ । ଆୟ ଯୋଗ ଯଥାପୂର୍ବଂ । ମାସର ପ୍ରଥମ ଭାଗ ଶାନ୍ତିପ୍ରଦ । ପୁତ୍ର ଓ ସ୍ତ୍ରୀ ନିମିତ୍ତ ଅଧିକ ବ୍ୟୟ କରିବେ । ସାମାଜିକ ନିବନ୍ଧନ ଭାବୀ ଅଶୁଭର ସୂଚନା ଦେବ । ଚାକିରିରେ ଗତାନୁଗତିକତା ବଜାୟ ରହିବ । ବ୍ୟବସାୟ ପୂର୍ବାପେକ୍ଷା ଲାଭ ଅଧିକ ନୁହେଁ । ମହିଳାମାନେ ସନ୍ତୁଷ୍ଟା ରହିବେ । ଛାତ୍ରାତ୍ରୀଙ୍କ ସମସ୍ୟା ଜଟିଳତର ।

—*—

# ନିଖିଳ ଉତ୍କଳ
# ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଶିକ୍ଷକ ସଂଘ

ଗତ ଜୁନମାସ ପ୍ରଥମ ସପ୍ତାହରେ ନିଖିଳ ଉତ୍କଳ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଶିକ୍ଷକ ସଂଘର ୨ୟ ବାର୍ଷିକ ସାଧାରଣ ଅଧିବେଶନ, ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ମହାସମାରୋହରେ ସମାହିତ ହୋଇଯାଇଛି । ଏଥିରେ ଓଡ଼ିଶାର ଉପ-ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପବିତ୍ରମୋହନ ପ୍ରଧାନ, ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଉପମନ୍ତ୍ରୀ ଶ୍ରୀଯୁକ୍ତ ମନମୋହନ ଟୁଡୁ ଓ ବିଭାଗୀୟ ଯୁଗ୍ମ-ଶାସନ ସଚିବ ଶ୍ରୀଯୁକ୍ତ ସୁଶାନ୍ତ କୁମାର ପାଲିତ, ଆଇ· ଏ. ଏସ୍·, ଯଥାକ୍ରମେ ସଭାପତି, ପ୍ରଧାନ ଅତିଥି ଓ ମୁଖ୍ୟବକ୍ତା ଆସନ ଅଲଂକୃତ କରିଥିଲେ ।

ଏଥିରେ ଶିକ୍ଷକ ସଂଘ ତାହାର ଅଭାବ ଅସୁବିଧା ପ୍ରତି ବିଭାଗୀୟ ମନ୍ତ୍ରୀ ମହାଶୟଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଏବଂ ମନ୍ତ୍ରୀ ମହୋଦୟ ମଧ୍ୟ ତାହାକୁ ଉଦାରତା ସହ ବିଚାରକୁ ଆଣିବାକୁ ପ୍ରତିଶ୍ରୁତି ଦେଇଥିଲେ ।

ଶତ ଶତ ଦର୍ଶକ ଏବଂ ଶ୍ରୋତାଙ୍କ ଉପସ୍ଥିତି ସମଗ୍ର ଶିକ୍ଷକ ସଂଘକୁ ଉତ୍ସାହିତ କରିବା ପରି ମନେ ହେଉଥିଲା । ସଭାପରେ ଓଡ଼ିଶାର ପ୍ରବୀଣା ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ ଓ ଶ୍ରୀ ରଘୁନାଥ ପାଣିଗ୍ରାହୀଙ୍କ ନୃତ୍ୟକଳା ସମସ୍ତ ଦର୍ଶକଙ୍କୁ କ୍ଷଣକ ପାଇଁ ଅମର ମଣ୍ଡଳୀକୁ ଟାଣିନେଲା ପରି ମନେହେଲା ।

ସଭାପରେ ନିମନ୍ତ୍ରିତ ଭଦ୍ରମଣ୍ଡଳୀଙ୍କୁ ଜଳଯୋଗରେ ଆପ୍ୟାୟିତ କରାଯାଇଥିଲା । ସଂଘଦ୍ୱାରା ଆସନ୍ତା ବାର୍ଷିକ ସାଧାରଣ ଅଧିବେଶନ ଚଣ୍ଡୀଖୋଲ ଉଚ୍ଚ ବିଦ୍ୟାଳୟରେ ଆଡ଼ମ୍ବରେ ଅନୁଷ୍ଠିତ ହେବାକୁ ସ୍ଥିରହେଲା ।

ଚଳିତ ବର୍ଷପାଇଁ ନିମ୍ନଲିଖିତ ଶିକ୍ଷକ ବନ୍ଧୁମାନେ ପ୍ରାଦେଶିକ ସଂଘର କର୍ମକର୍ତ୍ତା ରୂପେ ନିର୍ବାଚିତ ହୋଇଥିଲେ ।

ସଭାପତି—ଶ୍ରୀ ବ୍ରହ୍ମାନନ୍ଦ ଦାଶ, ପ୍ରଧାନ ଶିକ୍ଷକ, ବିଶୋଇ ହାଇସ୍କୁଲ, (ମୟୂରଭଞ୍ଜ)
ଉପ-ସଭାପତି—ଶ୍ରୀ ଅରୁଣ କୁମାର ଦାସ, ପ୍ରଧାନ ଶିକ୍ଷକ, ନଳଗୋଜା ହାଇସ୍କୁଲ (ମୟୂରଭଞ୍ଜ)
ସାଧାରଣ ସମ୍ପାଦକ—ଶ୍ରୀ ଧ୍ରୁବ ଚରଣ ଷଡ଼ଙ୍ଗୀ, ପ୍ରଧାନ, ଶିକ୍ଷକ ଗୋବିନ୍ଦପାଲି ହାଇସ୍କୁଲ, (କୋରାପୁଟ)
ଯୁଗ୍ମ-ସଂପାଦକ—ଶ୍ରୀ ହରେକୃଷ୍ଣ ହୋତା, ପ୍ରଧାନ ଶିକ୍ଷକ, ତପୋବନ ହାଇସ୍କୁଲ, (ପୁରୀ)
କୋଷାଧ୍ୟକ୍ଷ—ଶ୍ରୀ କାହ୍ନୁଚରଣ ମିଶ୍ର, ସହକାରୀ ଶିକ୍ଷକ ଓ ଏନ୍· ସି· ସି· ଅଫିସର, ଚଣ୍ଡୀଖୋଲ ହାଇସ୍କୁଲ,(କଟକ)
ସଂଗଠନ ସମ୍ପାଦକ—ଶ୍ରୀ ବୃଷାସନ ନାୟକ, ଶୁଆକାଟି ହାଇସ୍କୁଲ, (କେନ୍ଦୁଝର)
ମହିଳା ସଂଗଠନ ସମ୍ପାଦିକା—ଶ୍ରୀମତୀ ସଂଘମିତ୍ରା ବୋଷ, ପ୍ରଧାନ ଶିକ୍ଷୟିତ୍ରୀ, ସୁନାବେଡ଼ା ସେବକ ତାଲିମ କେନ୍ଦ୍ର, (କୋରାପୁଟ)
ସେବକ-ସଂଗଠନ-ସଂପାଦକ—ଶ୍ରୀ ଭିକାରୀଚରଣ ନାୟକ
ସମୀକ୍ଷକ—(୧) ଶ୍ରୀ ବୃନ୍ଦାବନ ବଳ, ସହକାରୀ ଶିକ୍ଷକ, ତପୋବନ ହାଇସ୍କୁଲ, (ପୁରୀ)
(୨) ଶ୍ରୀ ନଟବର ମାହାରଣା, କାଷ୍ଠ ଶିଳ୍ପ ଶିକ୍ଷକ, ଠାକର ଆଶ୍ରମ ସ୍କୁଲ, (ପୁରୀ)

# ପ୍ରାଥମିକ ଶିକ୍ଷାବୋର୍ଡ଼ ଓ ମାଧ୍ୟମିକ ଶିକ୍ଷା ପରିଷଦଙ୍କ ନୂତନ ସିଲାବସ୍

## ଅନୁଯାୟୀ ଲିଖିତ ପାଠ୍ୟ ପୁସ୍ତକ

## ୧୯୬୯-୭୦

### ୪ର୍ଥ ଓ ୫ମ ଶ୍ରେଣୀ ପାଇଁ

| | | |
|---|---|---|
| ୧ । ଉଚ୍ଚ ପ୍ରାଥମିକ ସରଳ ବ୍ୟାକରଣ ଓ ରଚନା | ଶ୍ରୀ ବନମାଳି ବ୍ରହ୍ମଗୁପ୍ତ | ଟ ୧.୦୦ |
| ୨ । ସାଥୀମହଲ ବ୍ୟାକରଣ ଓ ରଚନା | ଶ୍ରୀ ପରମାନନ୍ଦ ଖଣ୍ଡାୟତ | ଟ ୧.୭୫ |
| ୩ । Sure success in English | | ଟ ୧.୫୦ |
| ୪ । Sathimahal Translation & Composition | | ଟ ୧.୫୦ |
| ୫ । Sathimahal Pocket Word Book. 1 | ,, | ଟ ୦.୭୫ |
| ୬ । ସାଥୀମହଲ ପ୍ରବନ୍ଧ ଓ ପତ୍ରମାଳା (୧ମ ଭାଗ) | ଶ୍ରୀ ଗଗନ ବିହାରୀ ମହାନ୍ତି ଓ ଶ୍ରୀ ରତ୍ନାକର ଚଇନି | ଟ ୧.୫୦ |

### ୬ଷ୍ଠ ଓ ୭ମ ଶ୍ରେଣୀ ପାଇଁ

| | | |
|---|---|---|
| ୧ । Beginners' English Grammar (Anglo-Oriya) by G. Pattanaik | | ଟ ୧.୭୫ |
| ୨ । ସାଥୀମହଲ ପ୍ରବନ୍ଧ ଓ ପତ୍ରମାଳା (୨ୟ ଭାଗ) | ଶ୍ରୀ ରତ୍ନାକର ଚଇନି | ଟ ୨.୫୦ |
| ୩ । Sathimahal Pocket Word Book. II | | ଟ ୧.୦୦ |

### ସାଥୀମହଲ ସଙ୍କଳିତ ନିର୍ଭରଯୋଗ୍ୟ ସହାୟକ ପୁସ୍ତକ

| | | |
|---|---|---|
| Notes on Picture Book English Primer | ୪ର୍ଥ ଶ୍ରେଣୀ | ଟ ୧.୦୦ |
| ସାହିତ୍ୟ ସାଥୀ | | ଟ ୧.୫୦ |
| ଅଙ୍କ ବନ୍ଧୁ ସାଥୀ | | ଟ ୧.୫୦ |
| ବିଜ୍ଞାନ ପାଠ ସାଥୀ | | ଟ ୧.୦୦ |
| ସାମାଜିକ ପାଠ ସାଥୀ | ,, | ଟ ୧.୦୦ |
| Notes on Picture Book English Reader | ୫ମ ଶ୍ରେଣୀ | ଟ ୧.୫୦ |
| ସାହିତ୍ୟ ସାଥୀ | ,, | ଟ ୧.୫୦ |
| ଅଙ୍କ ବନ୍ଧୁ ସାଥୀ | | ଟ ୨.୦୦ |
| ବିଜ୍ଞାନ ପାଠ ସାଥୀ | | ଟ ୧.୦୦ |
| ସାମାଜିକ ପାଠ ସାଥୀ | ,, | ଟ ୧.୦୦ |
| Notes on Chilika Reader II | ୭ମ ଶ୍ରେଣୀ | ଟ ୨.୫୦ |
| ପାଠମାଳା ସାଥୀ (୨ୟ ଭାଗ) | | ଟ ୨.୫୦ |


ପ୍ରକାଶକ ଓ ପ୍ରାପ୍ତି ସ୍ଥାନ

**ଶ୍ରୀ ରାଧାଶ୍ୟାମ ମହାନ୍ତି**

**ସାଥୀ ମହଲ**

**ବିନୋଦବିହାରୀ, କଟକ-୨**

ପ୍ରକାଶ ପାଇଲା !  ପ୍ରକାଶ ପାଇଲା ! !

ବିଭୂତି ପଟ୍ଟନାୟକଙ୍କ

ତିନୋଟି ସାହିତ୍ୟ କୀର୍ତ୍ତି

# ଶୂନ୍ୟ ପଞ୍ଜୁରୀର ପକ୍ଷୀ

ନାରୀର ଦେହକୁ ଯେଉଁ ଭାଷାରେ ଅନୁବାଦ କଲେ ବି ପୁରୁଷ ପାଇଁ ତାର କୌଣସି ଭିନ୍ନ ଅର୍ଥ ହୁଏ ନାହିଁ । ଜୀବନର ଏହି ନିର୍ମମ ସତ୍ୟ ଉପଲବ୍ଧି କଲାପରେ ଏହି ଉପନ୍ୟାସର ନାୟକ ସ୍ୱପ୍ନର ସୌଦାଗର ହୋଇ ରହିବାକୁ ଆଉ ଚାହିଁ ନଥିଲା । ତାକୁ ଇସାରା ଦେଇଗଲା କେଉଁ ଦୂର ଆକାଶର ଦୁରନ୍ତ ଝଡ଼ର ପକ୍ଷୀ...। ଦୀର୍ଘ ବିଲମ୍ବିତ ଗଦ୍ୟ ଛନ୍ଦରେ ଲିଖିତ ଏହି ସଦ୍ୟତମ ଉପନ୍ୟାସରେ ଆଶ୍ଚର୍ଯ୍ୟ ସଫଳତାର ସହ ପ୍ରଖ୍ୟାତ କଥାଶିଳ୍ପୀ ଶ୍ରୀଯୁକ୍ତ ପଟ୍ଟନାୟକ ଚଳିତ ଦଶକର ଜୀବନ-ଜିଜ୍ଞାସା, ଯୂଷଯନ୍ତ୍ରଣାର ଚିତ୍ର ଅଙ୍କନ କରିଛନ୍ତି । ସୁଦୃଶ୍ୟ ପ୍ରଚ୍ଛଦ, ବନ୍ଧେଇ ସହ ମୂଲ୍ୟ—ଟ୫.୫୦ ପଇସା ।

# ନୀଳଆଖିର ନଦୀ

ଶୂନ୍ୟତାର ସହ ସଂଗ୍ରାମ କଅଣ ନାରୀର ଏକମାତ୍ର ଭାଗ୍ୟଲିପି ? ମହାନଦୀରେ ବନ୍ୟା ଆସେ, ଶୁଖିଯାଏ । କିନ୍ତୁ ନାରୀ ନୀଳ ଆଖିର ନଦୀରେ ଲୁଣି ଲୁହର ଯେଉଁ ବନ୍ୟା ଆସେ ? କେବଳ ସ୍ନିଗ୍ଧ ଭାଷାର ଇନ୍ଦ୍ରଜାଲିକତା ଯୋଗୁ ନୁହେଁ, ଚରିତ୍ର ଚିତ୍ରଣରେ ଗଭୀର ଅନ୍ତର୍ଦୃଷ୍ଟି ଯୋଗୁ ବିଭୂତିବାବୁଙ୍କ ଏହି ନୂତନ ଗ୍ରନ୍ଥର ପ୍ରତ୍ୟେକ ନାରୀଚରିତ୍ର ପାଠକର ସ୍ନାୟୁ ଗ୍ରନ୍ଥି ଉପରେ ଝଡ଼ ସୃଷ୍ଟି କରିବ । ଶିବ ପାଣିଗ୍ରାହୀଙ୍କ ଅଙ୍କିତ ତିନି ରଙ୍ଗର ଅପୂର୍ବ ପ୍ରଚ୍ଛଦ । ସୁଦୃଶ୍ୟ ବନ୍ଧେଇ । ମୂଲ୍ୟ— ପାଞ୍ଚଟଙ୍କା ମାତ୍ର ।

# ତୃତୀୟ ପୁରୁଷ

ବିଭୂତି ବାବୁଙ୍କ ସର୍ବଶ୍ରେଷ୍ଠ ବିୟୋଗାନ୍ତକ ରୋମାଣ୍ଟିକ ଉପନ୍ୟାସ । ନୂତନ ଦ୍ୱିତୀୟ ମୁଦ୍ରଣ । ବନ୍ଧେଇ ସହିତ ମୂଲ୍ୟ—ସାତଟଙ୍କା ।

—ପ୍ରକାଶକ—

**ଜଗନ୍ନାଥ ରଥ**

**ବିନୋଦ ବିହାରୀ, କଟକ-୨**

# କଟକ ଆକାଶବାଣୀ

ଅନେକ ସମୟରେ କଟକ ଆକାଶବାଣୀ ବିଷୟରେ ଆଲୋଚନା ସମାଲୋଚନା ପ୍ରକାଶ ପାଏ । ଦିନେ ଆକାଶବାଣୀ ଆଡେ ଚାଲିଲି ଖଣ୍ଡିଏ ବନଫୁଲ ଧରି, ଦେଖିଲି ବେଳକୁ ଷ୍ଟେସନ ଡାଇରେକ୍ଟର ଶ୍ରୀ ଅବନୀ କୁମାର ଦାସ ଅଫିସରେ ବସିଛନ୍ତି । ମୋର ଗୋଟାଏ ଖରାପ ଅଭ୍ୟାସ ମୁଁ କାହା ପାଖକୁ ଇଣ୍ଟରଭିଉ ସ୍ଲିପ୍ ପଠାଏ ନା । ଯେଉଁଠି ଏପରି ଦରକାର ହୁଏ, ସିଧା ଏବାଉଟ୍‌ଟର୍ଣ୍ଣ କରି ଆସେ । ସେଦିନ ଅବନୀବାବୁଙ୍କ ପାଖକୁ ସିଧା ଯାଇ ଗୋଟାଏ ଦଣ୍ଡବତ୍ କରି ଆରମ୍ଭ କଲି ବନଫୁଲର ବିଜ୍ଞାପନ । ଯଦିଓ ବନଫୁଲ ଓଡ଼ିଆ ପତ୍ରିକା, ତଥାପି ବିଜ୍ଞାପନଟି ଇଂରାଜୀରେ । ଅବନୀବାବୁ ସେ ସମସ୍ତ ଶୁଣୁ ଶୁଣୁ କହି ପକାଇଲେ ମୁଁ ଡକ୍ଟର ରାଧାନାଥ ରଥଙ୍କୁ ଜାଣେ । ତାଙ୍କର ଲେଖା ପିଲାମାନେ ଅପରାଧୀ କାହିଁକି ହୁଅନ୍ତି ତାକୁ ମଧ୍ୟ ପଢ଼ିଛି । ଏହି ଅବସରରେ ବନଫୁଲର ଶିଶୁ ବିଭାଗ ଥୋଇ ଦେବାରୁ ସେ ମହାଶୟ ଗଡ଼ ଗଡ଼ ହୋଇ ଓଡ଼ିଆ ପଢ଼ି ଚାଲିଲେ । ଏଥିରେ ମୁଁ ଅବାକ୍ । ଆସାମବାସୀ ଭଦ୍ରଲୋକ ଓଡ଼ିଆରେ ବେଶ ଦକ୍ଷତା ଅର୍ଜ୍ଜନ କରିଲେଣି, ଏହା ମୋତେ ନୂଆପରି ବୋଧହେଲା । କଥା ପ୍ରସଙ୍ଗରେ ବହୁତ କଥା ପଡ଼ିଲା ।

ଦ୍ୱିତୀୟ ସ୍ତରରେ ଆରମ୍ଭ ହେଲା ଆଦିବାସୀ ସଂସ୍କୃତି ପାଇଁ ଆକାଶବାଣୀ କି ବ୍ୟବସ୍ଥା କରୁଛି । ତାଙ୍କଠାରୁ ଶୁଣିବାକୁ ମିଳିଲା, ଡାଇରେକ୍ଟର ଜେନେରାଲଙ୍କ ପାଖକୁ ସ୍କିମ ଯାଇଛି । ମଞ୍ଜୁରି ମିଳରେ ପ୍ରତ୍ୟେକ ମାସରେ ଆଦିବାସୀ ସାନ୍ତାଳୀ ଓ କୁଇ ଭାଷାରେ କାବ୍ୟ-କବିତା ଆରମ୍ଭ ହେବ ।

ଅବନୀବାବୁଙ୍କ ପାଇଁ କେବଳ କଟକ ଆକାଶବାଣୀ ଋଣୀ ନୁହେଁ, ଓଡ଼ିଆ ଜାତି ମଧ୍ୟ ଋଣୀ ।

## ॥ ଉତ୍କଳ ସାମ୍ବାଦିକ ସଂଘ ॥

ଗତ ୨୯-୬-୬୯ ଦିନ ବାରବାଟୀ ଷ୍ଟାଡ଼ିୟମ ଗେଷ୍ଟ ହାଉସରେ ଶ୍ରମମନ୍ତ୍ରୀ ଶ୍ରୀ ରାଜବଲ୍ଲଭ ମିଶ୍ରଙ୍କ ସଭାପତିତ୍ୱରେ ଉତ୍କଳ ସାମ୍ବାଦିକ ସଂଘର ୨୧ଶ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

ସଂଘର ସଭାପତି ଶ୍ରୀ ଗୋପାଳ ଚନ୍ଦ୍ର ମିଶ୍ରଙ୍କ ଅଧ୍ୟକ୍ଷତାରେ ୧୪ ଜଣ ସଭ୍ୟ ନିର୍ବାଚିତ ହୋଇଛନ୍ତି ସେମାନେ ହେଉଛନ୍ତି—ସର୍ବଶ୍ରୀ ମିହିର କୁମାର ଆଚାର୍ଯ୍ୟ, ରାମପ୍ରସାଦ ମହାନ୍ତି, ଶାରଦା ପ୍ରସନ୍ନ ନନ୍ଦ, ଦୁଲାଳ ମିଶ୍ର, ରାମହରି ମିଶ୍ର, ନଗେନ ବେଉରିଆ, ବାଳକୃଷ୍ଣ କାନୁନଗୋ, ଶ୍ୟାମାକାନ୍ତ ପଟ୍ଟନାୟକ, ବସନ୍ତ କୁମାର ଦାସ, ରାମକୃଷ୍ଣ ବେହେରା, ଦୁର୍ଗାଚରଣ ଦାସ, ରମାକାନ୍ତ ମିଶ୍ର, ଭଗବାନ ନାୟକବର୍ମା ଓ ଗଦାଧର ମହାପାତ୍ର ।

## ଆଦିବାସୀ ଉପଦେଷ୍ଟା କମିଟି

ଗତ ୩୦-୬-୬୯ଦିନ ଭୁବନେଶ୍ୱରସ୍ଥ ସେକ୍ରେଟେରିଏଟ୍ ସମ୍ମିଳନୀ ଗୃହରେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଆଦିବାସୀ ଉପଦେଷ୍ଟା କମିଟିର ବୈଠକ ବସିଥିଲା । କମିଟିର ସଦସ୍ୟମାନଙ୍କ ମଧ୍ୟରେ ଆଦିବାସୀ-ମାନଙ୍କ ଉନ୍ନତି ପାଇଁ ବ୍ୟବସ୍ଥା ମାନ ଗ୍ରହଣ କରାଯାଇଥିଲା । ଏଥିରେ ଆଦିବାସୀ ମନ୍ତ୍ରୀ ଶ୍ରୀ ଶାନ୍ତନୁ କୁମାର ଦାସ, ଜଙ୍ଗଲ ବିଭାଗ ମନ୍ତ୍ରୀ ଶ୍ରୀ ନୃସିଂହପ୍ରସାଦ ମିଶ୍ର, ଉପମନ୍ତ୍ରୀ ଶ୍ରୀ ମନମୋହନ ଟୁଡୁ, କାର୍ତ୍ତିକଚନ୍ଦ୍ର ମାଝି, ଗୋବିନ୍ଦ ମୁଣ୍ଡା ପ୍ରମୁଖ ଯୋଗ ଦେଇଥିଲେ । ଉପରଓଳି ହରିଜନ କଲ୍ୟାଣ ବୋର୍ଡ଼ ମଧ୍ୟ ବସି ହରିଜନମାନଙ୍କର ଉନ୍ନତି ନିମନ୍ତେ ନାନା ଆଲୋଚନା ହୋଇଥିଲା ।

## ସମ୍ପାଦକୀୟ

# ।। ଭାରତରେ ଧର୍ମନିରପେକ୍ଷତା ।।

ଯୁକ୍ତରାଷ୍ଟ୍ର ଆମେରିକାର ଅଧିକାର ସନନ୍ଦରେ ବର୍ଣ୍ଣିତ ହୋଇଛି ଯେ ଭଗବାନ ଓ ଭକ୍ତଙ୍କ ସମ୍ପର୍କକୁ ଧର୍ମ କୁହାଯାଏ । ଧର୍ମ ଗୋଟିଏ ସ୍ଥିତାବସ୍ଥା ନୁହେଁ । ଧର୍ମ ବିଶ୍ୱାସରେ କୌଣସି ତାରତମ୍ୟ ନ ଥାଏ । ପ୍ରତ୍ୟେକ ଭକ୍ତ ନିଜ ଉପାୟରେ ଭଗବାନଙ୍କୁ ଆରାଧନା କରେ ଏବଂ ଏହି ଆରାଧନା ପ୍ରଣାଳୀ, ଆଚାର ଓ ଉପଚାର ଭେଦରେ ଧର୍ମାନୈକ୍ୟ ସୃଷ୍ଟି ହୁଏ । ମହାତ୍ମା ଗାନ୍ଧୀଙ୍କ ପରି ଯେଉଁମାନେ ସର୍ବଧର୍ମ ସମନ୍ୱୟରେ ବିଶ୍ୱାସ କରୁଥିଲେ, ସେମାନଙ୍କ ଦୃଷ୍ଟିରେ ଈଶ୍ୱର ଓ ଆଲ୍ଲା, ରାମ ଓ ରହିମ ସମସ୍ତେ ସମାନ । ବେଦ ଓ ଗୀତା, କୋରାନ ଓ ବାଇବଲ ଏବଂ ଗ୍ରନ୍ଥ ସାହେବ ଓ ଜେନ୍ଦାଭେସ୍ତା ପ୍ରଭୃତି ସର୍ବବିଧ ଧର୍ମଗ୍ରନ୍ଥ ସେମାନଙ୍କ ନିକଟରେ ନମସ୍ୟ । ସତ୍ୟର ନିର୍ଦ୍ଦିଷ୍ଟ ରୂପରେଖ ନାହିଁ; କେହି କୌଣସି ମତକୁ ସ୍ଥିର ସିଦ୍ଧାନ୍ତ ବୋଲି ଦାବୀ କଲେ କିଂବା କୌଣସି ଧର୍ମାଚରଣ ପଦ୍ଧତିକୁ ସର୍ବୋତ୍କୃଷ୍ଟ ବୋଲି ବିବେଚନା କଲେ ସତ୍ୟର ସନ୍ଧାନ ବ୍ୟାହତ ହେବ । ସେହିହେତୁ ପୃଥିବୀରେ ନାନା ଧର୍ମାବଲମ୍ବୀ ଲୋକ ନିର୍ବିବାଦରେ ବାସ କରୁଛନ୍ତି ଏବଂ କେହି ଅପରକୁ ନିଜ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରୁନାହିଁ । ଖାଦ୍ୟପେୟ ଓ ପରିଧେୟ ପରି ଧର୍ମାଚରଣ ମଧ୍ୟ ଗୋଟିଏ ବାହ୍ୟିକ ବ୍ୟବସ୍ଥା; କିନ୍ତୁ ଧର୍ମ ବିଶ୍ୱାସ ଗୋଟିଏ ଆନ୍ତରିକ ବ୍ୟାପାର । ଯଦି ନାନା ଦେଶର ଲୋକେ ପରିସ୍ଥିତି ଓ ଜଳବାୟୁ ଭେଦରେ ନାନା ଜଙ୍ଗଲି ଖାଦ୍ୟ ପରିଧେୟ ଗ୍ରହଣ କରି ପାରୁଛନ୍ତି, ତେବେ ନାନା ଧର୍ମର ଲୋକେ ଭିନ୍ନଭିନ୍ନ ପ୍ରଣାଳୀରେ ଆରାଧନା କରି ପାରିବେ ନାହିଁ କାହିଁକି ?

ରାଷ୍ଟ୍ରୀୟ ଅନୁରକ୍ତି ଏକ ଭିନ୍ନ ପ୍ରକାର ବ୍ୟବସ୍ଥା । ଭୌଗୋଳିକ ସୀମା ଅନୁସାରେ ରାଷ୍ଟ୍ର ଶକ୍ତି ଓ ରାଷ୍ଟ୍ରୀୟ ଅନୁରକ୍ତି ବିଭିନ୍ନ । ଯେ ଯେଉଁ ରାଷ୍ଟ୍ରର ସୀମା ମଧ୍ୟରେ ବାସ କରୁଛି, ତାହାର ସେହି ଭାରତୀୟ ରାଷ୍ଟ୍ରପ୍ରତି ଅନୁରକ୍ତ ରହିବା ବାଧ୍ୟତାମୂଳକ । ଭୌତିକ ବ୍ୟାପାର ଯୋଗୁ ରାଷ୍ଟ୍ରର ସୃଷ୍ଟି; ଶାସିତର ଚିନ୍ତା ଓ ବିଶ୍ୱାସ ଅନ୍ତର୍ନିହିତ ହୋଇଥିବାରୁ ରାଷ୍ଟ୍ରଶକ୍ତିର ପରିସର ଏହା ଭିତରେ କର୍ତ୍ତୃତ୍ୱ ପ୍ରୟୋଗ କରିବା ପର୍ଯ୍ୟନ୍ତ ପରିବ୍ୟାପ୍ତ ନୁହେଁ । ରାଷ୍ଟ୍ରର କାର୍ଯ୍ୟ ପରିସର ଭୌତିକ କିନ୍ତୁ ଧର୍ମର ସୀମା ଆଧିଭୌତିକ । ଐହିକ ଜୀବନର ନିୟନ୍ତ୍ରଣ ରାଷ୍ଟ୍ରଶକ୍ତିର କର୍ତ୍ତବ୍ୟ; ପାରତ୍ରିକ ବ୍ୟବସ୍ଥା ସମ୍ବନ୍ଧରେ ଧାରଣା ସୃଷ୍ଟି କରିବା ଧର୍ମାନୁସରଣର ଲକ୍ଷ୍ୟ ହୋଇ ଆସିଛି । ଧର୍ମାନୁସରଣର ରୀତି ଓ ପୂଜା ପଦ୍ଧତି ଭୌତିକ ଆଚାର ସହିତ ଜଡ଼ିତ ବୋଲି ରାଷ୍ଟ୍ରଶକ୍ତି ଏହା ନିୟନ୍ତ୍ରଣ କରିବା ଲାଗି ହକଦାର; କିନ୍ତୁ କୌଣସି କ୍ଷେତ୍ରରୁ ହେଲେମଧ୍ୟ ଧର୍ମଯାଜକମାନେ ଐହିକ କର୍ତ୍ତବ୍ୟ ସଂପାଦନରେ ନିଯୁକ୍ତ ରାଷ୍ଟ୍ରଶକ୍ତି ଉପରେ କର୍ତ୍ତୃତ୍ୱ ପ୍ରୟୋଗ କରି ପାରନ୍ତି ନାହିଁ । ସେହିହେତୁ ଗୋଟିଏ ରାଷ୍ଟ୍ରରେ ବିଭିନ୍ନ ଧର୍ମାବଲମ୍ବୀ ଲୋକେ ବାସ କରନ୍ତି ସିନା, ଗୋଟିଏ ଧର୍ମ ବିଭିନ୍ନ ରାଷ୍ଟ୍ରକୁ ନିୟନ୍ତ୍ରଣ କରିପାରେ ନାହିଁ । ସେହିହେତୁ ଧର୍ମୀୟ ଭିତ୍ତି ଉପରେ ରାଷ୍ଟ୍ରଗଠନ ନୀତି ଆଦୃତ ନୁହେଁ । ପାକିସ୍ଥାନ ଭଳି ଯେଉଁ ରାଷ୍ଟ୍ର ନିଜକୁ ଧର୍ମୀୟ ଭିତ୍ତି ଉପରେ ମୁସଲମାନ ବା ଅନ୍ୟ କୌଣସି ଧର୍ମାବଲମ୍ବୀ ରାଷ୍ଟ୍ର ବୋଲି ଘୋଷଣା କରେ ବା ସମ୍ବିଧାନରେ ବ୍ୟବସ୍ଥା କରେ, ସେଠାରେ ସବୁ ନାଗରିକ ସମାନ ଅଧିକାର ଭୋଗ କରନ୍ତି ନାହିଁ । ବ୍ୟକ୍ତିତ୍ୱର ପରାକାଷ୍ଠା ଓ ବ୍ୟକ୍ତିଗତ ମୌଳିକ ଅଧିକାର ସାବ୍ୟସ୍ତ ବା ସୁପ୍ରତିଷ୍ଠିତ କରିବାକୁ ହେଲେ ସବୁଧର୍ମର ଲୋକେ ନିଜ ରାଷ୍ଟ୍ରଶକ୍ତିଠାରୁ ଭୌତିକ ବ୍ୟାପାରରେ ସମାନ ସୁବିଧା ପାଇବା କଥା ।

ଧର୍ମ ଓ ରାଷ୍ଟ୍ରର ପରସ୍ପର ସମ୍ପର୍କ ସମ୍ବନ୍ଧରେ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ହଜାର ବର୍ଷ କାଳ ବିଶ୍ୱଚିନ୍ତାଧାରା ବିକ୍ଷୁବ୍ଧ ହୋଇଥିଲା । ଶେଷରେ ରାଷ୍ଟ୍ରଶକ୍ତିର ଆପେକ୍ଷିକ ଗୁରୁତ୍ୱ ସ୍ୱୀକୃତ ହେବାପରେ

ଧର୍ମୀୟ ବିଭିନ୍ନତା ପଶ୍ଚିମ ୟୁରୋପୀୟ ରାଷ୍ଟ୍ରମାନଙ୍କରେ ଅନ୍ତର୍ଯୁଦ୍ଧ ଘଟାଇଥିବାରୁ ବ୍ୟକ୍ତିବାଦୀ ଦାର୍ଶନିକମାନେ କେବଳ ଯେ ରାଷ୍ଟ୍ରର ଧର୍ମନିରପେକ୍ଷତା ପ୍ରତିଷ୍ଠା କଲେ, ସେତିକି ନୁହେଁ; ବ୍ୟକ୍ତି ନିଜର ଲକ୍ଷ୍ୟ ସାଧନ ଓ ସୁଖସ୍ୱାଚ୍ଛନ୍ଦ୍ୟ ପରିବର୍ଦ୍ଧନ ଲାଗି ରାଷ୍ଟ୍ରଶକ୍ତିକୁ ସୃଷ୍ଟି କରିଥିବା ସିଦ୍ଧାନ୍ତ ଗୃହୀତ ହେବାରୁ ରାଷ୍ଟ୍ରକୁ ବ୍ୟକ୍ତିଗତ ସ୍ୱାଧିକାର ପରିସୀମାର ବାହାରେ ରଖା ହୋଇଥିଲା । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଧର୍ମନୈକ୍ୟ ଜନିତ ବିସମ୍ବାଦ ସୃଷ୍ଟି ହେବା ଫଳରେ ଦଳେ ଖ୍ରୀଷ୍ଟିଆନ ସ୍ୱଦେଶ ଛାଡ଼ି ଗୋଟିଏ ନୂତନ ଦେଶରେ ବସତି ସ୍ଥାପନ କଲେ ଏବଂ ସମ ପ୍ରକାର ପୂଜା ପଦ୍ଧତି ଓ ଧର୍ମଗ୍ରନ୍ଥ ଉପରେ ଆଇନଗତ କଟକଣା ପ୍ରୟୋଗ କରୁଥିବା ଅବିମୃଷ୍ୟ ରାଜାଙ୍କ କୁଶାସନରୁ ନିଜକୁ ମୁକ୍ତକଲେ । ସେହିମାନଙ୍କର ଜନୈକ ନେତା ଶ୍ରୀଯୁକ୍ତ ରୋଜର ଉଇଲିୟମସ୍ ୧୬୪୪ରେ ଲେଖିଥିଲେ, "ଶାନ୍ତିଦୂତ ଯୀଶୁଖ୍ରୀଷ୍ଟଙ୍କ ଅନୁଚର ପ୍ରୋଟେଷ୍ଟାଣ୍ଟ ଓ କାଥଲିକ ଧର୍ମାବଲମ୍ବୀମାନେ ତାଙ୍କ ନୀତିର ବିରୁଦ୍ଧାଚରଣ କରି ସେମାନଙ୍କ ଧର୍ମ ବିଶ୍ୱାସ ପାଇଁ ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣନାଶ କରିଛନ୍ତି । ଧର୍ମବିଶ୍ୱାସ ଯୋଗୁ ଅତ୍ୟାଚାର ବିରୁଦ୍ଧରେ ଧର୍ମଶାସ୍ତ୍ରରେ ବହୁ ଯୁକ୍ତି ରହିଛି । ପୃଥିବୀର କୌଣସି ରାଜ୍ୟ ବା ରାଷ୍ଟ୍ରପାଇଁ କୌଣସି ଗୋଟିଏ ଧର୍ମୀୟ ବ୍ୟବସ୍ଥା ସୃଷ୍ଟି ହୋଇନାହିଁ । କୌଣସି ରାଷ୍ଟ୍ରରେ ଏକ ପ୍ରକାର ଧର୍ମ ପ୍ରବର୍ତ୍ତନ ବା ଜାରି କରିବା ଭଗବାନଙ୍କ ଉଦ୍ଦେଶ୍ୟ ନୁହେଁ ବା ନ ଥିଲା; ଏଭଳି ନୀତି ଅନୁସୃତ ହେବା ଫଳରେ ଅନ୍ତର୍ଯୁଦ୍ଧ ହୋଇଛି । ଲୋକମତକୁ ଉପେକ୍ଷା କରାଯାଉଛି ଓ ଭଗବାନଙ୍କ ଅନୁଚରମାନେ ନିଗୃହୀତ ହୋଇଛନ୍ତି । ଯେଉଁମାନେ ଗୋଟିଏ ରାଜ୍ୟ ବା ରାଷ୍ଟ୍ରରେ ଏକପ୍ରକାର ଧର୍ମବ୍ୟବସ୍ଥା ଜୋର ଜବରଦସ୍ତ ସହକାରେ କରାଉଛନ୍ତି, ସେମାନେ ଐହିକ ଓ ପାରତ୍ରିକ ଧାରଣା ସମ୍ବନ୍ଧରେ ଅଜ୍ଞ, ସେମାନେ ଖ୍ରୀଷ୍ଟିଆନ ଧର୍ମର ଶତ୍ରୁ ଓ ରାଷ୍ଟ୍ରୀୟତାର ବିରୋଧୀ ।" ଏହି ନୀତିରେ ଆସ୍ଥା ସ୍ଥାପନ କରି ଯୁକ୍ତରାଷ୍ଟ୍ର ଆମେରିକାର ନିର୍ମାତାମାନେ ୧୭୮୬ର ଭର୍ଜିନିଆ ଧର୍ମନୈତିକ ଆଇନରେ ଲେଖିଥିଲେ "କୌଣସି ବ୍ୟକ୍ତିକୁ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମାନୁଷ୍ଠାନକୁ ଯିବାଲାଗି ବା ତାହାକୁ ସମର୍ଥନ କରିବା ଲାଗି ବାଧ କରାଯାଇ ପାରିବ ନାହିଁ କିମ୍ବା କାହାରିକୁ ନିଜ ଧର୍ମବିଶ୍ୱାସ ଲାଗି କୌଣସି ପ୍ରକାର ବାଧା-ବାଧକତା, ଅତ୍ୟାଚାର ଶାରୀରିକ ବା ସଂପତ୍ତିଗତ ନିର୍ଯ୍ୟାତନା ବା ଅନ୍ୟ କୌଣସି ପ୍ରକାର ଦୁର୍ଦ୍ଦଶାର ସମ୍ମୁଖୀନ କରାଯାଇ ପାରିବ ନାହିଁ । ସମସ୍ତେ ନିଜ ଇଚ୍ଛାମତେ ଧର୍ମାଚରଣ କରି ପାରିବେ ଓ ନିଜେ ଯୁକ୍ତିକରି ନିଜ ଧର୍ମର ମହତ୍ତ୍ୱ ପ୍ରତିପାଦନ କରି ପାରିବେ; କେହି ଏଥିପାଇଁ କୌଣସି ରାଷ୍ଟ୍ରୀୟ ଅଧିକାର ବା ସୁବିଧା ସୁଯୋଗରୁ ବଞ୍ଚିତ ହୋଇ ପାରିବେ ନାହିଁ । ଏହା ମଣିଷର ପ୍ରାକୃତିକ ଅଧିକାର ରୂପେ ବିବେଚିତ ହେବ ।" ଏହି ଅନୁସାରେ ଯୁକ୍ତରାଷ୍ଟ୍ର ଆମେରିକା ସମ୍ବିଧାନର ପ୍ରଥମ ସଂଶୋଧନ ବ୍ୟବସ୍ଥାରେ ଲିପିବଦ୍ଧ ହେଲା, "କୌଣସି ଧର୍ମକୁ ସ୍ୱୀକାର ବା ଅସ୍ୱୀକାର କରି କଂଗ୍ରେସ କୌଣସି ଆଇନ ପ୍ରଣୟନ କରିବ ନାହିଁ ।" ଏହାହିଁ ରାଷ୍ଟ୍ରୀୟ ଧର୍ମନିରପେକ୍ଷତାର ଭିତ୍ତି ।

ଭାରତୀୟ ରାଷ୍ଟ୍ରନିର୍ମାତା ପଣ୍ଡିତ ଜବାହରଲାଲ ନେହେରୁ ପାଶ୍ଚାତ୍ୟ ରାଜନୈତିକ ଦର୍ଶନରେ ଅବଗାହନ କରିଥିଲେ । ଉଦାରନୈତିକ ପରିବାରରେ ଜନ୍ମି ପାଶ୍ଚାତ୍ୟ ଦେଶରେ ଶିକ୍ଷାଲାଭ କରି ସେ ସବୁବିଧ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ଥିଲେ । ଜଣେ କାଶ୍ମିରୀ ବ୍ରାହ୍ମଣ ଭାବରେ ସେ ହିନ୍ଦୁ-ମୁସଲମାନ ସମନ୍ୱୟର ଆଧାର ଥିଲେ । ସଂସ୍କୃତ, ଲାଟିନ ଓ ହିନ୍ଦୀପରି ସେ ଉର୍ଦ୍ଦୁ ଓ ପାରସ୍ୟ ଭାଷା ମଧ୍ୟ ଅଧ୍ୟୟନ କରିଥିଲେ । ତେଣୁ ମୁଷ୍ଟିମେୟ ମୁସଲମାନ ନେତାଙ୍କ ଧର୍ମାନ୍ଧତା ଏବଂ ଇସ୍‌ଲାମଧର୍ମ ଓ ଉର୍ଦ୍ଦୁ ଭାଷା ନାମରେ ସାଂପ୍ରଦାୟିକ ବିଭେଦ ସୃଷ୍ଟି କରିବା ପ୍ରବୃତ୍ତି ତାଙ୍କୁ କ୍ଷୁବ୍ଧ କରୁଥିଲା । ସେ ୧୯୪୫ରେ କହିଥିଲେ "ଆତ୍ମନିୟନ୍ତ୍ରଣ ଅଧିକାର ଭୂଭାଗୀୟ ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ଉଚିତ । ଏହି ଭାରତ ଗୋଟିଏ ଜାତି ବା ବହୁସଂଖ୍ୟକ ଜାତିଙ୍କୁ ନେଇ ଗଠିତ ହୋଇପାରେ । "ଜାତି" ଶବ୍ଦର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନାହିଁ । ଯଦି ଶହେଗୋଟି ଜାତି ଏକ ମନ ଓ ଏକ ପ୍ରାଣରେ କାମ କରନ୍ତି, ସେମାନଙ୍କୁ ଗୋଟିଏ ଜାତି କୁହା

ଯାଇପାରେ । ଯଦି ଗୋଟିଏ ସଂପ୍ରଦାୟ ଦେଶର ଅନ୍ୟମାନଙ୍କ ସହିତ କାନ୍ଧମିଳାଇ ଗତି ନ କରେ, ସେମାନେ ଗୋଟିଏ ଜାତି ବା ଏକାଧିକ ଜାତି, ସେଥିରେ କିଛି ଯାଏଆସେ ନା । ଏହି ସ୍ୱାତନ୍ତ୍ର୍ୟ ଆମ ଦେଶ ଇତିହାସରେ ଗୋଟିଏ ଅଭିନବ ଧାରଣା । ଆମେ ଏହାକୁ ଗ୍ରହଣ କରି ପାରିବୁ ନାହିଁ । ଏହି ଦ୍ୱିଜାତୀୟ ନୀତିକଥା ଦେଖନ୍ତୁ । ଏହି ନୀତି କୁଆଡ଼େ ଧର୍ମମୂଳକ । ବିଶ୍ୱର ଆଧୁନିକ ପୃଷ୍ଠଭୂମିରେ ମୁଁ ଏହା ବୁଝିବାକୁ ଅକ୍ଷମ । ମୁଁ ମଧ୍ୟଯୁଗରେ ଏପରି ଧାରଣା ଥିବା କଥା ଜାଣେ । ହିନ୍ଦୁ ଓ ମୁସଲମାନ କୁଆଡ଼େ ଦୁଇଟି ସ୍ୱତନ୍ତ୍ର ଜାତି; କିନ୍ତୁ ସେମାନେ ପ୍ରତି ଗାଁରେ ସୁଦ୍ଧା ଏକତ୍ର ଛନ୍ଦାଛନ୍ଦି ହୋଇ ବାସ କରୁଛନ୍ତି । ଯେଉଁମାନେ ଦୁଇଜାତି କଥା କହୁଛନ୍ତି, ସେମାନେ ଭୂଖଣ୍ଡୀୟ ଅନୁରକ୍ତି ପରିବର୍ତ୍ତେ ଧର୍ମୀୟ ଅନୁରକ୍ତି ଉପରେ ଜୋର ଦେଉଛନ୍ତି । ଏହି ନୀତି ଗୃହୀତ ହେଲେ ହିନ୍ଦୁ-ଅଧ୍ୟୁଷିତ ଅଞ୍ଚଳରେ ଥିବା ମୁସଲମାନମାନେ ହେବେ ବିଦେଶୀ ଏବଂ ମୁସଲମାନ ବେଶିଥିବା ଅଞ୍ଚଳର ହିନ୍ଦୁମାନେ ହେବେ ବିଦେଶୀ । ଏ କ'ଣ ସୁସ୍ଥ ଚିନ୍ତା ?" ସେ ଆଉଥରେ କହିଥିଲେ, "ଏହି ଦ୍ରୁତ ପରିବର୍ତ୍ତନଶୀଳ ପୃଥିବୀର ଆଣବିକ ଯୁଗରେ, ପାକିସ୍ଥାନ ଧାରଣା ପରି ଚିନ୍ତାଧାରାର କୌଣସି ମୂଲ୍ୟ ବା ପ୍ରାସଙ୍ଗିକତା ନାହିଁ । ଏ ଯୁଗରେ କେହି ପୃଥକୀକରଣ କଥା ଭାବୁ ନାହାନ୍ତି । ସମସ୍ତେ ସମୀକରଣ ଉଦ୍ୟମ କରୁଛନ୍ତି । X X ଭାରତ ଏତେ ଅଧଃପତିତ କାହିଁକି ? ଏହା କେବଳ ଆମ ଦୃଷ୍ଟିର ସଂକୀର୍ଣ୍ଣତା ହେତୁ । ସମସ୍ତେ ଧର୍ମର ଅପବ୍ୟବହାର କରୁଛନ୍ତି । ଯେତେବେଳେ ପୃଥିବୀର ସବୁଆଡ଼େ ବିପ୍ଳବାତ୍ମକ ପ୍ରଗତି ଲାଗିଛି, ଆମେ ପୁରୁଣା କଥାକୁ ଜାବୁଡ଼ି ଧରି ବସିଛୁ । ଅବିଶ୍ୱାସ, ଗୋଷ୍ଠୀବିବାଦ ଓ ସାଂପ୍ରଦାୟିକ ଘୃଣା ଲୋକଙ୍କୁ ଆଚ୍ଛନ୍ନ କରି ରଖିଛି । ହିନ୍ଦୁ ଧର୍ମର ଉଦାର ନୀତି ସଂବନ୍ଧରେ ବ୍ୟାଖ୍ୟା କରି ପଣ୍ଡିତ ନେହେରୁ ୧୯୫୫ରେ କହିଥିଲେ, "ହିନ୍ଦୁ ଧର୍ମର ମହତ୍ତ୍ୱ ଏହି ଯେ ଏହା ସ୍ଥିର ନୁହେଁ । ଏହି ଧର୍ମରେ ସଭ୍ୟତା ଓ ସଂକୀର୍ଣ୍ଣତା ଭଳି ଦୁଇଗୋଟି ବିରୋଧାଭାସ ରହିଛି । ଏଥିରେ ସହନଶୀଳତାର ସ୍ପଷ୍ଟ ସ୍ୱାକ୍ଷର ଅଛି । ଏପରି କି ଜଣେ ଈଶ୍ୱରଙ୍କୁ ବିଶ୍ୱାସ ନ କରି ମଧ୍ୟ ହିନ୍ଦୁ ହୋଇ ରହିପାରେ । କିନ୍ତୁ କେତେକ ସାମାଜିକ କୁସଂସ୍କାର ଏହାର ଗତିଶୀଳତାକୁ ବ୍ୟାହତ କରୁଛି । ଆମକୁ ଏଗୁଡ଼ିକର ନିରାକରଣ କରିବାକୁ ପଡ଼ିବ ।"

ଶାସନବିଧାୟକ ସଭାରେ ସମ୍ବିଧାନ ପ୍ରଣୀତ ହେବାବେଳେ ଦେଶ ବିଭାଗଜନିତ ପ୍ରତିକ୍ରିୟା ହେତୁ ଦେଶରେ ଏତେ ସାଂପ୍ରଦାୟିକ ଗଣ୍ଡଗୋଳ ସୃଷ୍ଟି ହେଲା ଯେ ପଣ୍ଡିତ ନେହେରୁଙ୍କ ସମେତ ରାଷ୍ଟ୍ରନେତାମାନେ ମ୍ରିୟମାଣ ହୋଇ ପଡ଼ିଲେ । ଏପରି କି ମହାତ୍ମା ଗାନ୍ଧୀ ମଧ୍ୟ ସାଂପ୍ରଦାୟିକ ବିଷରେ ଜର୍ଜରିତ ଜନତାଙ୍କୁ ଶାନ୍ତ କରିବା ଲକ୍ଷ୍ୟରେ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରିଥିଲେ । ସେହି ପୃଷ୍ଠଭୂମିରେ ସମ୍ବିଧାନର ପ୍ରଣେତାମାନେ ପାଶ୍ଚାତ୍ତ୍ୟ ଦର୍ଶନରେ ଅନୁପ୍ରାଣିତ ହୋଇ ଧର୍ମନିରପେକ୍ଷ ରାଷ୍ଟ୍ରର ବ୍ୟବସ୍ଥା ଖଞ୍ଜି ଦେଲେ । ଭାରତର ନାଗରିକମାନଙ୍କୁ ସାତ ପ୍ରକାର ମୌଳିକ ଅଧିକାର ପ୍ରଦତ୍ତ ହୋଇଛି; ତନ୍ମଧ୍ୟରୁ ଧର୍ମୀୟ ସ୍ୱାଧୀନତାର ଅଧିକାର ଅନ୍ୟତମ ।

ଏହି ଧର୍ମୀୟ ଅଧିକାର କେତେକ ବିଭାଗରେ ବିଭକ୍ତ ହୋଇଛି ଯଥା:—(କ) ଧର୍ମବିଶ୍ୱାସ ପୋଷଣ କରିବା ଏବଂ ଅବାଧରେ ଧର୍ମାଚରଣ ଓ ଧର୍ମ ପ୍ରଚାର କରିବା ଲାଗି ସ୍ୱାଧୀନତା ଭାରତରେ ବାସ କରୁଥିବା ନାଗରିକ ଓ ବୈଦେଶିକ ସମସ୍ତଙ୍କୁ ପ୍ରଦତ୍ତ ହୋଇଛି । (ଖ) ପ୍ରତ୍ୟେକ ଧର୍ମ ଓ ଧର୍ମୀୟ ଗୋଷ୍ଠୀ ଅବାଧରେ ଧର୍ମାନୁଷ୍ଠାନ ପ୍ରତିଷ୍ଠା କରିପାରିବେ, ଧର୍ମବିଷୟକ ସମସ୍ତ ବ୍ୟବସ୍ଥା ଗ୍ରହଣ କରି ପାରିବେ ଏବଂ ଲକ୍ଷ୍ୟସାଧନ ଲାଗି ସମ୍ପତ୍ତି ସଂଗ୍ରହ ଓ ପରିଚାଳନା କରିପାରିବେ । (ଗ) କୌଣସି ଧର୍ମ ବା ଧର୍ମୀୟ ସଂପ୍ରଦାୟର ବ୍ୟୟ ନିର୍ବାହ ନିମିତ୍ତ କର ଦେବାଲାଗି କାହାକୁ ବାଧ କରାଯାଇ ପାରିବ ନାହିଁ ଏବଂ (ଘ) କୌଣସି ସରକାରୀ ଶିକ୍ଷାନୁଷ୍ଠାନରେ କାହାରିକୁ ବାଧ୍ୟତାମୂଳକ ଭାବରେ କୌଣସି ଧର୍ମଶିକ୍ଷା ଦିଆଯାଇ ପାରିବ ନାହିଁ । ଏହି ଅଧିକାର ଉପଭୋଗ କରିବା ବିଷୟରେ ଶାନ୍ତିଶୃଙ୍ଖଳା, ନୈତିକତା ଓ ଜନସ୍ୱାସ୍ଥ୍ୟର

ଆବଶ୍ୟକତା ପ୍ରତିବନ୍ଧକ ରୂପେ କାର୍ଯ୍ୟ କରିବ । ଏହି ଧର୍ମଗତ ସ୍ୱାଧୀନତା କୌଣସି ଧର୍ମୀୟ ସଂପ୍ରଦାୟ ବା ଅନୁଷ୍ଠାନର ଆର୍ଥିକ, ଅର୍ଥନୈତିକ, ରାଜନୈତିକ ଓ ଅନ୍ୟାନ୍ୟ ପାର୍ଥିବ କାର୍ଯ୍ୟାବଳୀ ପ୍ରତି ପ୍ରଯୁଜ୍ୟ ହେବନାହିଁ ଏବଂ କେବଳ ଏହି ଅଧିକାର ଯୋଗୁ ସମାଜମଙ୍ଗଳ ଓ ସମାଜ ସଂସ୍କାର କାର୍ଯ୍ୟ ବାଧାପ୍ରାପ୍ତ ହେବନାହିଁ ।

ଉଲ୍ଲିଖିତ ବୈଧାନିକ ବ୍ୟବସ୍ଥା ହେତୁ ଯେକୌଣସି ଧର୍ମର ଅନୁସାରୀମାନେ ନିର୍ଦ୍ଦିଷ୍ଟରେ ଭାରତରେ ବାସକରି ପାରିବେ ଏବଂ ନିଜ ଇଚ୍ଛାନୁମତେ ଧର୍ମ ବିଶ୍ୱାସ, ଧର୍ମାଚରଣ ଓ ଧର୍ମପ୍ରଚାର କରିବାରେ କୌଣସି ପ୍ରକାର ପ୍ରତିବନ୍ଧକର ସମ୍ମୁଖୀନ ହେବେନାହିଁ । ଭାରତୀୟ ରାଷ୍ଟ୍ର ଏତେ ଉଦାର ନୀତି ବ୍ୟାଖ୍ୟାନ କରିଛି ଯେ, ଅଧିକାର କେବଳ ନାଗରିକମାନଙ୍କୁ ଦିଆଯାଇ ନାହିଁ; ଏହା ଭାରତବାସୀ ବୈଦେଶିକମାନଙ୍କୁ ମଧ୍ୟ ପ୍ରସାରିତ ହୋଇଛି । ଭାରତ ଯେକୌଣସି ନାଗରିକ ଧର୍ମନିର୍ବିଶେଷରେ ଯେକୌଣସି ସାମାଜିକ ଓ ରାଜନୈତିକ ସୁଖସୁବିଧା ପାଇବାକୁ ହକ୍‌ଦାର; କେହି ଧର୍ମର ଦୋହାଇଦେଇ କାହାରିକୁ ଶୋଷଣ ବା ଅତ୍ୟାଚାରିତ କରିବାକୁ ଚାହିଁଲେ ରାଷ୍ଟ୍ରର ନ୍ୟାୟପାଳିକା ସଂସ୍ଥା ଦୃଷ୍ଟିରେ ଦଣ୍ଡନୀୟ ହେବେ । ଏଭଳି ଉଦାର ନୀତି ଇଂଲଣ୍ଡରେ ମଧ୍ୟ ଅନୁସୃତ ହୁଏନାହିଁ; କାରଣ ସେ ଦେଶର ରାଜା ବା ରାଣୀ ରାଜ୍ୟର ପ୍ରତିଷ୍ଠିତ ଧର୍ମର ଅବଲମ୍ବୀ ହେବା ବାଧ୍ୟତାମୂଳକ । ଯଦି ଜଣେ ରାଜକୀୟ ପୁରୁଷ କ୍ୟାଥଲିକ ବା ଅନ୍ୟ କୌଣସି ଧର୍ମ ଗ୍ରହଣ କରନ୍ତି କିମ୍ବା ସେହି ଧର୍ମାବଲମ୍ବୀଙ୍କୁ ବିବାହ କରନ୍ତି, ତାଙ୍କର ସିଂହାସନ ଆରୋହଣ କରିବା ଯୋଗ୍ୟତା ରହିବ ନାହିଁ । ଭାରତରେ ଯେକୌଣସି ଧର୍ମାବଲମ୍ବୀ ବ୍ୟକ୍ତି ସର୍ବୋଚ୍ଚ ରାଷ୍ଟ୍ରପତି ଆସନ ମଧ୍ୟ ଅଳଂକୃତ କରି ପାରିବେ । ଏହି କାରଣରୁ ଗତ ରାଷ୍ଟ୍ରପତି ନିର୍ବାଚନ ବେଳେ ଦଳେଲୋକ ଜଣେ ପ୍ରାର୍ଥୀଙ୍କ ଧର୍ମ ସଂବନ୍ଧରେ ସମାଲୋଚନା କରିବାରୁ ଦେଶସାରା ନିନ୍ଦା କରା ଯାଇଥିଲା ।

ଧର୍ମ ନିରପେକ୍ଷତା ଧାରଣା ଧର୍ମାନ୍ଧତା ଓ ଧର୍ମବିରୋଧ ଉଭୟର ବିରୋଧୀ । କୌଣସି ପ୍ରକାର ଧର୍ମାନ୍ଧତାକୁ ଭାରତୀୟ ରାଷ୍ଟ୍ର ସହ୍ୟ କରିବ ନାହିଁ; ଠିକ୍ ସେହିପରି ଆମ ସରକାର ଧର୍ମ ଧାରଣାକୁ ବିରୋଧ କରନ୍ତି ନାହିଁ । ଧର୍ମନିରପେକ୍ଷତାର ଅର୍ଥ ଧର୍ମୀୟ ସହନଶୀଳତା । ରାଷ୍ଟ୍ର ଶକ୍ତି କୌଣସି ଗୋଟିଏ ଧର୍ମର ପୋଷକତା କରିବ ନାହିଁ କିମ୍ବା କୌଣସି ଗୋଟିଏ ଧର୍ମଲାଗି କୌଣସି ପ୍ରକାର ଉତ୍ସାହ ପ୍ରଦାନ କରିବ ନାହିଁ । ଧର୍ମଧାରଣା ବ୍ୟକ୍ତିଗତ ପରିସର ଅନ୍ତର୍ଭୁକ୍ତ ହୋଇଥିବାରୁ ସରକାର ସେ ସମ୍ବନ୍ଧରେ କୌଣସି ଉତ୍ସାହ ଦେଖାଇବେ ନାହିଁ କିମ୍ବା କଟକଣା ପ୍ରୟୋଗ କରିବେ ନାହିଁ । ଏହା ବୋଲି କୌଣସି ଧର୍ମର ବିଶିଷ୍ଟ ଅନୁଷ୍ଠାନ ଲାଗି ରାଷ୍ଟ୍ର ହିସାବରେ ଭୌତିକ ଉତ୍ସାହ ଦେବାରେ କୌଣସି ପ୍ରତିବନ୍ଧକ ନାହିଁ । ଏହି କାରଣରୁ ବୁଦ୍ଧଙ୍କ ନିର୍ବାଣପ୍ରାପ୍ତିର ୨୫୦୦ ବାର୍ଷିକ ଉତ୍ସବ ପାଳନ ଏବଂ କ୍ୟାଥଲିକ୍ ମାନଙ୍କ Evcharistic Congress ବେଳେ ମହାମାନ୍ୟ ପୋପ୍‌ଙ୍କ ଆଗମନ ପାଇଁ ସରକାର ସମସ୍ତପ୍ରକାର ସାହାଯ୍ୟ ସମର୍ଥନ ଦେଇଥିଲେ ।

ଭାରତରେ ସମଗ୍ର ବିଶ୍ୱପରି ସବୁ ଧର୍ମର ଲୋକେ ବାସ କରନ୍ତି । ଏଠାରେ ବାସ କରୁଥିବା ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ, ଜୈନ, ଶିଖ ଓ ପାର୍ସୀ ସମସ୍ତେ ଭାରତର ନାଗରିକ । ଭାରତବର୍ଷ ସମସ୍ତଙ୍କ ଜନ୍ମଭୂମି; ତେଣୁ ଭାରତମାତାଙ୍କର ସମସ୍ତେ ସନ୍ତାନ । ସେହି ଭାରତ ବର୍ଷର ପ୍ରତିନିଧିମୂଳକ ରାଷ୍ଟ୍ରଶକ୍ତି ଓ ସରକାର ତାହାର ସନ୍ତାନମାନଙ୍କ ମଧ୍ୟରେ ବାଛ ବିଚାର କରିବା ସ୍ମରଣୀୟ ହେବ କି ? ମହାତ୍ମାଗାନ୍ଧୀ ଓ ପଣ୍ଡିତ ଜବାହରଲାଲ ନେହେରୁ ଆମକୁ ସର୍ବଧର୍ମ ସମନ୍ୱୟ ସମ୍ବନ୍ଧରେ ଶିକ୍ଷାଦେଇ ଯାଇଛନ୍ତି । ତାଙ୍କ ଦାୟାଦମାନେ ଏହି ମହାନ୍ ନୀତିରେ ଅନୁପ୍ରାଣିତ ହେବା ବାଞ୍ଛନୀୟ ନୁହେଁ କି ?

---

# ପିଲାମାନେ ଭୟ କାହିଁକି କରନ୍ତି ?

ଡକ୍ଟର ରାଧାନାଥ ରଥ

ଯେଉଁ ପିଲମାନେ ପିଲାଦିନେ ବେଶି ଭୟ କରନ୍ତି, ସେମାନେ ବଡ଼ ହେଲାପରେ ମଧ୍ୟ ଏଥିରୁ ପୂରାପୂରି ମୁକ୍ତ ହୋଇ ପାରନ୍ତି ନାହିଁ । ପିଲାଦିନ ପରି ଅତି ଛୋଟ ଛୋଟ କଥାରେ ନ ଡରିଲେ ମଧ୍ୟ ସେମାନେ ଅନେକ କ୍ଷେତ୍ରରେ ସାହସର ସହିତ ଆଗେଇ ପାରନ୍ତି ନାହିଁ । ପିଲାଦିନୁ ଯେଉଁମାନଙ୍କର ଡାଆଣୀ, ଭୂତ ପ୍ରେତ, ପ୍ରଭୃତି ବିଷୟରେ ଅସମ୍ଭବ ରକମର ଭୟ ରହି ଯାଇଥାଏ, ବଡ଼ ହେଲାପରେ ସେମାନେ ସେ ସବୁରେ ଆଦୌ ବିଶ୍ୱାସ ନ କଲେ ସୁଦ୍ଧା ଘଟଣା ସ୍ଥଳରେ ନିଜ ଇଚ୍ଛା ବିରୁଦ୍ଧରେ ମଧ୍ୟ ଅତର୍କିତ ଭାବରେ ଚମକି ଉଠନ୍ତି । ଖୁବ୍ ଦମ୍ଭ ଧରି ମଶାଣି ଭିତରେ ଅନ୍ଧାର ରାତିରେ ଏକା ଏକା ଗଲାବେଳେ ସାମାନ୍ୟ ଟିକିଏ ଖଡ଼ ଖଡ଼ ହେଲେ ଛାତି ଥରିଉଠେ—ନିଶ୍ୱାସ ଜୋରରେ ବହେ—ଦେହରେ ଉପରୁ ଗୋଟାଏ ଗମ-ଝାଳ ବୋହିଯାଏ ଏବଂ ଅନେକ ସମୟରେ କଳ୍ପନା କରି ଗୋଟିଏ ଅସ୍ପଷ୍ଟ ଛାଇ ଓ ଚାଲୁଥିବା, ବସିଥିବା କିମ୍ବା ଠିଆ ହୋଇଥିବା ପରି ଗୋଟିଏ ମୂର୍ତ୍ତିର ଆବ୍-ଛାୟା ଆଖିଆଗରେ ଦେଖାଯିବା ମଧ୍ୟ ଅସମ୍ଭବ ନୁହେଁ । ପ୍ରଥମତଃ ଛାତି ଧଡ଼୍ ଧଡ଼୍ ହେବା, ନିଶ୍ୱାସ ବନ୍ଦ ହୋଇ ଆସିବା, ଝାଳ ବୋହିବା ପ୍ରଭୃତି ଶାରୀରିକ ପ୍ରକ୍ରିୟାଗୁଡ଼ିକ ପିଲାଦିନୁ ଅଭ୍ୟାସଗତ ହୋଇ ପଡ଼ିଥିବାରୁ ଆମ୍ଭମାନଙ୍କ ଅଜାଣତରେ ଏସବୁ ସ୍ୱତଃ ଘଟିଯାଏ । ଯେତେ ଚେଷ୍ଟାକଲେ ସୁଦ୍ଧା ଏସବୁ ପ୍ରତିକ୍ରିୟାକୁ ଆମେମାନେ ସହଜରେ ବନ୍ଦ କରିପାରୁନା । ଏସବୁ ଶାରୀରିକ ପରିବର୍ତ୍ତନ ମନୁଷ୍ୟର ସାଧାରଣ ଇଚ୍ଛାଶକ୍ତିର ବାହାରେ । ଏସବୁ ବାହାରର ପରିସ୍ଥିତି ଅନୁସାରେ ଛୁଏଁ ଛୁଏଁ ଶରୀର ଭିତରେ ଦେଖାଦେଇ ଥାଏ । ମନେକର ଆମ୍ଭ ଆଗରେ ଗୋଟିଏ ସାପ ଦେଖିଲୁ । ସାପଟିକୁ ଦେଖିଲାକ୍ଷଣି ଆମ୍ଭର ଦେହ ଭିତରେ ସ୍ୱତଃ କେତେଗୁଡ଼ିଏ ପ୍ରତିକ୍ରିୟା ଦେଖାଦେବ । ଏ ପ୍ରକାର ଶାରୀରିକ ପ୍ରତିକ୍ରିୟା ମନୁଷ୍ୟଠି କାହିଁକି ପ୍ରତ୍ୟେକ ଜୀବଜନ୍ତୁଙ୍କଠାରେ ମଧ୍ୟ ଦେଖିବାକୁ ମିଳେ । ନିଜକୁ ବିପଦରୁ ରକ୍ଷାକରିବା ଲାଗି ଏଗୁଡ଼ିକ ପ୍ରତ୍ୟେକ ଜୀବନ୍ତ ପ୍ରାଣୀର ସ୍ୱାଭାବିକ ପ୍ରତିକ୍ରିୟା । ପ୍ରାଣୀ କୌଣସି ବିପଦର ସମ୍ମୁଖୀନ ହେଲେ ନିଜକୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ ତା' ଦେହ ଭିତରେ କେତେଗୁଡ଼ିଏ ଅତି ଆବଶ୍ୟକ ଶାରୀରିକ କ୍ରିୟା ପ୍ରକ୍ରିୟା ଦେଖା-ଯାଏ । ବେଶି ରକ୍ତ ଗୋଡ଼ ହାତର ମାଂସପେଶୀକୁ ଚାଲିଯାଏ ଏବଂ ମାଂସପେଶୀ ସବୁ ବେଶି ରକ୍ତ ପାଇ ଶକ୍ତିଶାଳୀ ହୋଇ ଉଠନ୍ତି ଏବଂ ଶରୀରକୁ ଅନ୍ୟତ୍ର ଚାଳିତ କରିବାରେ କିମ୍ବା ଶତ୍ରୁ ସହିତ ଯୁଦ୍ଧ କରିବାରେ ସାହାଯ୍ୟ କରନ୍ତି । ତେବେ ଏତେ ରକ୍ତ ମାଂସପେଶୀକୁ ଆସେ କୁଆଡ଼ୁ ? ବିପଦ ବୋଲି ତ ଆମ ଦେହରେ ରକ୍ତର ପରିମାଣ ବଢ଼ିଯାଏ ନାହିଁ । ସାଧାରଣ ସମୟରେ ଶରୀରର ଅନ୍ୟସ୍ଥାନମାନଙ୍କରେ ଯେଉଁ ରକ୍ତ ଥାଏ, ସେ ସବୁକୁ ହିଁ ବେଶି ପରିମାଣରେ ମାଂସପେଶୀ ଓ ଶରୀରର ଅନ୍ୟାନ୍ୟ ସ୍ଥାନକୁ ପଠା-ଯାଏ । ଫଳରେ ବିପଦ ସମୟରେ ପେଟ ଭିତରେ ଜୀର୍ଣ୍ଣ କରିବା ପ୍ରକ୍ରିୟା ବନ୍ଦ ହୋଇଯାଏ ଏବଂ ସେଠାରୁ ଅଧିକ ରକ୍ତ ଗୋଡ଼ ହାତର ମାଂସପେଶୀକୁ ପଠାଯାଏ । ଦେହକୁ ହାଲୁକା କରିବା ଲାଗି ଅନେକ ସମୟରେ ବାନ୍ତି, ଝାଡ଼ା ଓ ପରିସ୍ରା ମଧ୍ୟ ହୋଇଯାଏ । ଦେହକୁ ଥଣ୍ଡା ରଖିବା ଲାଗି ଝାଳ ବାହାରେ । ଏ ସବୁକୁ କଣ ଆମେ ଭାବିଚିନ୍ତି କରିଥାଉଁ ? ନାଁ, ତା

ନୁହେଁ; ଏସବୁ ଆମର ଇଚ୍ଛା ବିରୁଦ୍ଧରେ ହୋଇଯାଏ । ଆମେ ଯେତେ ଚେଷ୍ଟାକଲେ ସୁଦ୍ଧା ଏ ସବୁକୁ ଦବାଇବା କଷ୍ଟ ହେବ । ତେଣୁ ପିଲାଦିନରୁ ଯଦି ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଆମର ଭୟ କରିବାର ଅଭ୍ୟାସ ହୋଇ ଯାଇଥିବ, ତାହାହେଲେ ବଡ଼ ହେଲା ପରେ ଆମର ଶତଚେଷ୍ଟା ସତ୍ତ୍ୱେ ସେହିପରି ଏକ ପରିସ୍ଥିତିର ସମ୍ମୁଖୀନ ହେଲାକ୍ଷଣି ଶରୀରର ସେ ସବୁ ପରିବର୍ତ୍ତନ ସ୍ୱତଃ ସ୍ୱତଃ ହୋଇଯିବ । ଏହି ଶାରୀରିକ ପ୍ରକ୍ରିୟାଗୁଡ଼ିକ ହିଁ ଭୟର ମୂଳ କାରଣ । ଶାରୀରିକ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ମନରେ ଭୟ ଦେଖାଦେବ । ତେଣୁ ପିଲାମାନଙ୍କୁ ବଡ଼ଦିନକୁ ନିର୍ଭୀକ ଓ ସାହସୀ କରିବାକୁ ହେଲେ ଅତି ପିଲାଦିନରୁ ମା-ବାପମାନଙ୍କର ଏସବୁ ବିଷୟରେ ସତର୍କ ହେବା ଉଚିତ ।

ଆମେମାନେ ପିଲାର ମନୋବିଜ୍ଞାନ ବିଷୟରେ ଅନେକ କ୍ଷେତ୍ରରେ ଅନଭିଜ୍ଞ ଥିବାରୁ ସେ ବିଷୟରେ ବିଶେଷ ଦୃଷ୍ଟିଦେଇ ପାରୁନା—ଯେଉଁ ବାପ ମା-ମାନେ ଶିକ୍ଷିତ ଏବଂ ଯେଉଁମାନେ ପିଲାମାନଙ୍କର ଲାଳନ ପାଳନ ବିଷୟରେ ବିଶେଷ ଯତ୍ନ ନିଅନ୍ତି ଓ ମନୋବିଜ୍ଞାନ ଦୃଷ୍ଟିରୁ ସେମାନଙ୍କୁ ପରିଚାଳିତ କରନ୍ତି, ସେମାନଙ୍କର ପିଲାମାନେ ନିଶ୍ଚୟ ଅନ୍ୟମାନଙ୍କଠାରୁ ବେଶି ସାହସୀ ହେବେ । ଇଂଲଣ୍ଡ ଓ ରୁଷିଆ ପ୍ରଭୃତି ଦେଶରେ ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କର ଲାଳନ ପାଳନ ଓ ଶିକ୍ଷାପାଇଁ ଗୋଟିଏ ପ୍ରକାର ସ୍କୁଲ ଅଛି । ତାକୁ ନର୍ସରୀ ସ୍କୁଲ କୁହାଯାଏ । ଏଠାରେ ପିଲାଦିନରୁ ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷା ଦିଆହେବା ଓ ଲାଳନ ପାଳନ କରାହେବା ଯୋଗୁଁ ସେ ସ୍କୁଲର ପିଲାମାନେ ଅନ୍ୟମାନଙ୍କଠାରୁ ବେଶି ସାହସୀ ହୁଅନ୍ତି ଓ ସେମାନେ ଭୟ ଉତ୍ପାଦନ କରୁଥିବା ପରିସ୍ଥିତିରେ ଅଯଥା ବିଚଳିତ ହୋଇ ପଡ଼ନ୍ତି ନାହିଁ । ଅନ୍ୟ ଦେଶ ଅପେକ୍ଷା ରୁଷିଆରେ ଏ ପ୍ରକାର ସ୍କୁଲର ପ୍ରଚଳନ ଖୁବ୍ ବେଶି । ଦେଶର ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ଏପରି ବୈଜ୍ଞାନିକ ପ୍ରଣାଳୀରେ ପିଲାଦିନରୁ ଶିକ୍ଷା ନ ଦେଲେ ଆମେ କେଉଁଠୁହେଲେ ବଳିଷ୍ଠ ଓ ସାହସୀ ନାଗରିକ ଗଢ଼ି ପାରିବା ନାହିଁ । ତେଣୁ ବାପ ମା'ଙ୍କର ଏ ବିଷୟରେ ସଚେଷ୍ଟ ହେବା ସଙ୍ଗେ ସଙ୍ଗେ ସରକାରଙ୍କର ମଧ୍ୟ ପିଲାଙ୍କ ପାଇଁ ଖେଳିବା ବୁଲିବା ଓ ପିଲା ଦିନରୁ ଶିକ୍ଷା ପାଇବା ପାଇଁ ମନୋବିଜ୍ଞାନ ଦୃଷ୍ଟିରୁ ପରିଚାଳିତ ନର୍ସରୀ ସ୍କୁଲସବୁ ବସାଇବା ଦରକାର । ତାହାହେଲେ ବାପ-ମାମାନେ ଅଯଥା ବିରକ୍ତିକର କାମରୁ ରକ୍ଷା ପାଇବେ ଏବଂ ସୁଦକ୍ଷ ଡାକ୍ତର, ନର୍ସ ଓ ମନସ୍ତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ପ୍ରତ୍ୟେକ ପିଲା ଉପଯୁକ୍ତ ଭାବରେ ଶିକ୍ଷାପାଇ ବଢ଼ିପାରିବେ । ଏ ପ୍ରକାର ସୁସଙ୍ଗଠିତ ବୈଜ୍ଞାନିକ ଶିକ୍ଷା ବ୍ୟକ୍ତିବିଶେଷ ବା ପରିବାର ଦ୍ୱାରା ଦିଆଯିବା ସମ୍ଭବ ନୁହେଁ । ତେଣୁ ଏହା ସାମାଜିକ ଅନୁଷ୍ଠାନ ଓ ସମଷ୍ଟିଗତ ଚେଷ୍ଟା-ଦ୍ୱାରା ହିଁ ସାଧିତ ହେବା ଦରକାର । କାରଣ ପ୍ରତ୍ୟେକ ନରନାରୀ ପିତାମାତା ହେବାର ଅଧିକାର ଅଛି, କିନ୍ତୁ ସାମାଜିକ ହିତଦୃଷ୍ଟିରୁ ବୈଜ୍ଞାନିକପ୍ରଣାଳୀରେ ଶିକ୍ଷା-ଦେବା ଶକ୍ତି ଓ ଦକ୍ଷତା ତାର ନ ଥାଇ ପାରେ ।

ଆମ ଦେଶରେ କେତୋଟି ପିଲା ରାତିରେ ଭୟ ନ କରି ମଶାଣି ଭିତର ଦେଇ ଚାଲିଯାଇ ପାରିବେ ? ମା'ର ପଣତ କାନରେ ମୁହଁ ନ ଲୁଚାଇ ଜଟାଧାରୀ କୌପୁନି ପିନ୍ଧା ବାବାଜୀଙ୍କୁ କେତୋଟି ପିଲା ସାହସର ସହିତ ଚାହିଁ ପାରିବେ ? କେତେ ଜଣ ଅନ୍ଧାର ଘର ଭିତରେ ଏକା ଏକା ସାରା ରାତି ଶୋଇପାରିବେ ? ଯେଉଁମାନେ ଏସବୁ କରିବାକୁ ଭୟ କରିବେ, ସେମାନେ ଭବିଷ୍ୟତରେ ମଧ୍ୟ ଖୁବ୍ ସାହସର ସହିତ ଅନ୍ୟାନ୍ୟ ଭୀତି ଉତ୍ପାଦନ କରୁଥିବା ପରିସ୍ଥିତିର ସମ୍ମୁଖୀନ ହୋଇ ପାରିବେ ନାହିଁ । ଯାହେତୁ ପିଲାମାନେ ଅନ୍ଧାର ଘରେ ଏକା ଶୁଅନ୍ତି । ଅନେକ ପିଲା କବରଖାନା ଭିତରଦେଇ ରାତିରେ ନିଃସଂଶୟରେ ଚାଲିଯିବେ । ତେଣୁ ଆମମାନଙ୍କର କଣ ଏସବୁ ବିଷୟରେ ଚେଷ୍ଟା କରିବା ଉଚିତ ନୁହେଁ ?

## ॥ କେଉଁଝର ॥

ଅଧ୍ୟାପକ ରାମଚନ୍ଦ୍ର ରାଉତ
କେଉଁଝର

କେଉଁଝର ଭଲ ଲାଗେ—ବନସ୍ତର ଶୋଭା
ଉଠା, ପଡ଼ା ଘାଟୀ ରାସ୍ତା···ପାହାଡ଼ର ଗନ୍ଧ ।
ସାଥିରେ ଚାଲିବା ଆସ ତୁମେ ଆଉ ମୁଁ
ମାଖି ମାଖି ସକାଳର କିରଣକୁ, ଉଠାଣି ଉଠିବା ।
ନୀଳ ଶାଗ ଆକାଶଟା ତଳେ ଶ୍ୟାମ ବଣ
ପାହାଡ଼ର ଛାଇ ତଳେ ମନେ ଯଦି ଆସିଯାଏ ଘୁମ—
ତୁମେ କି ମୟୂରୀ ହୋଇ ମେଘକୁ ଡାକିବ ?
ଅବା ଏ ବଣୁଆ ବାଟେ ବାଉଳି ହୋଇବ ?
ଏ ପଟେ ଉନ୍ନତ ଶିଖ ସେ ପାଖରେ ନଦୀ ବାଂକବଙ୍କ
ତୁମେ ମୋ ଝରଣାର ନୀଳଜଳ ସାଥି ।
ଆଖିରେ ବହଙ୍ଗୀ ମାୟା ପବନ ଗୁଉଁସି,
ଭ୍ରମରମାଲାର ଗନ୍ଧ ନିଶ୍ୱାସରୁ ପଡ଼େ ମୋର ଝର ।
କୁହୁଡ଼ିଟା ଚକି ମାରେ ଆଖି ତୁମ ଅନ୍ଧ ହୋଇଯିବ
ଆଖିର ସପନ ସବୁ ଉତୁରି ପଡ଼ିବ ।
ତେଣୁ ଚାଲ ଆଗେଇବା ନି ଫଳା ଖୋଜିବା
ପାତାଳ ଚରୁଡ଼ି ଦେଇ ସାପ ସାଙ୍ଗେ ମକର ବସିବା ।
ଅବା ଚାଲ ପରବ ପାଳିବା ବଜାଇବା ଧମସା ଓ ଚାଙ୍ଗୁ
ଜୁଆଙ୍ଗ ବସ୍ତିର ଧାରେ ପକାଇବା ଜୀବନର ତମ୍ବୁ
କେଉଁଝର ଖାଲି ଭଲ ଘାଘରାଟା ଖାଲି ଲଜକୁଳୀ
ଚାଲ ତ ଖୋଲିବା ତା'ର ଭୂଆସୁଣୀ ମୁହଁର ଓଢ଼ଣୀ ।
ମାଡିବା ସାଙ୍ଗରେ ଚାଲ ଉଚ୍ଚ ଖାଲ ବଣବୁଦା ପରବତେ ତେଇଁ
ମେଘର ପଣତ ତଳେ ଶ୍ରମଝାଳ ମୁହଁକୁ ନୁଚାଇ ।
ଉଠିବା ବହୁତ କଷ୍ଟ ଶିଳାସ୍ତୂପ ବଙ୍କା ଉଠାଣିରେ
ଖସିବା ସୁବିଧା ବଡ଼ ଝରଣାର ପାଣି ଖସଡ଼ାରେ ।
ତଥାପି ଖସିବା ଭୟ···ଦୁଇପାଖେ ଜଙ୍ଗଲ ନିର୍ଝର
କେଉଁଝର ଭଲ ଲାଗେ···ଭଲଲାଗେ ସବୁ ଉଚ୍ଚ ଖାଲ ।

—*—

# ॥ ସମାଲୋଚନାର ଧାରା ॥

ମାୟାଧର ମାନସିଂହ

ଶ୍ରୀ ନିତ୍ୟାନନ୍ଦ ଶତପଥୀ

କଲ୍ୟାଣୀୟେଷୁ,

ଏବେ ଓଡ଼ିଆ ମାସିକ ପତ୍ର ସବୁ ଧାରାବାହିକ ଭାବରେ ପଢ଼ିବା ମୋ ପକ୍ଷରେ ସମ୍ଭବ ହେଉନାହିଁ । କେବେ କେବେ ଆଖି ଆଗରେ ପଡ଼ିଗଲେ ପୃଷ୍ଠା ମେଲାଇ କେବଳ ଚୁହିଁ ଚୁହିଁ ଯାଏ ।

ଝଙ୍କାରର ଧନୁ ମାସ (ତ୍ରିଂଶବର୍ଷ, ନବମସଂଖ୍ୟା) ଇସୁଟିରେ ଆଖି ବୁଲାଉ ବୁଲାଉ ଦେଖିଲି ଯେ "ଗୀତି-ନାଟ୍ୟର କେତୋଟି ଚରିତ୍ର" ନାମକ ଏକ ରଚନାରେ ତମେ ମୋର ଦୁଇଟି ଏପର୍ଯ୍ୟନ୍ତ—ପ୍ରାୟ—ଅନାଲୋଚିତ ପୁସ୍ତକର ଆଲୋଚନା କରିଛ । ତମର ନିଜର ମୂଲ୍ୟାୟନରେ ମୋର, ଲେଖକ ଭାବରେ, ହାତ ଦେବାର କୌଣସି ଅଧିକାର ନାହିଁ । ତେବେ କେତୋଟା ଫ୍ୟାକ୍ଟ୍ ଜାଣି ରଖିଲେ, ଏତତ୍-ସମ୍ପୃକ୍ତ ଆଲୋଚନା ପରେ ଅଧିକ ସମ ଭାର ହେବବୋଲି ଆଶାକରି ଜଣାଇ ରଖୁଛି ।

"ରାଜକବି" ମୋର ପ୍ରଥମ ପ୍ରକାଶିତ ପୁସ୍ତକ । ରେଭେନ୍ସାରେ ସେକାଳର ଆଇ. ଏ. ପ୍ରଥମ ବର୍ଷରେ ପଢ଼ିଲାବେଳେ ଏହା ଲିଖିତ ଓ ବୋଧହୁଏ ଦ୍ୱିତୀୟ ବର୍ଷରେ ପ୍ରକାଶିତ ହୋଇଥିଲା । ଅର୍ଥାତ୍ ୧୯୨୭-୨୮ ସାଲ ହେବ । କିନ୍ତୁ ଏ ପୁସ୍ତକର ଯଥାର୍ଥ ଆଲୋଚନା ପ୍ରଥମ କରି ମୁଁ ଦେଖିବାକୁ ପାଇଲି, ସ୍ୱର୍ଗତ ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କର ଓଡ଼ିଶୀ ରଙ୍ଗମଞ୍ଚର ଇତିହାସ ଗ୍ରନ୍ଥରେ, ପ୍ରାୟ ତିରିଶି ବର୍ଷ ପରେ,—ଇଂରାଜରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବା ପାଇଁ ମୁଁ ଯେତେବେଳେ ସମ୍ବଲପୁରରେ ସେ ଉପାଦାନ-ସଂଗ୍ରହ ଆରମ୍ଭ କଲି । ତମର ଆଲୋଚନାଟି ବୋଧହୁଏ ଦ୍ୱିତୀୟ ।

ତମେ 'ରାଜକବି'କୁ ରବୀନ୍ଦ୍ରନାଥଙ୍କର, "ବାଲ୍ମୀକି ପ୍ରତିଭା"ର ପ୍ରଭାବାନ୍ୱିତ ବୋଲି ଧରି ନେଇଛ । 'ରାଜକବି' ପ୍ରକାଶିତ ହେଲାବେଳେ, କୌଣସି ଅସ୍ଥାୟୀ ଓଡ଼ିଆ ସାପ୍ତାହିକ ପତ୍ରିକା ( ମୋର ନାମ ମନେ ପଡ଼ୁନାହିଁ ) ବହିଟିର ନିନ୍ଦା ଭାବରେ ସେତିକି ମାତ୍ର ଦର୍ଶାଇ, ତାଙ୍କର ଉଚ୍ଚକୋଟୀର ସାହିତ୍ୟିକ ସମାଲୋଚନା ଶେଷ କରିଥିବାର ମନେ ପଡ଼ୁଛି । ପ୍ରାୟ ୪୦ ବର୍ଷ ପରେ ତମଠୁ ବି ସେୟା ଶୁଣିଲି ।

କିନ୍ତୁ କହି ରଖେ ଯେ, ରବୀନ୍ଦ୍ରନାଥଙ୍କ "ବାଲ୍ମୀକି ପ୍ରତିଭା" ମୁଁ ଏପର୍ଯ୍ୟନ୍ତ ବି ପଢ଼ିନାହିଁ ।

ଏଥିରେ ତମେ ଓ ଅନେକ ବିସ୍ମିତ ହୋଇପାର ବା ପାରନ୍ତି । ତେଣୁ କିଞ୍ଚିତ୍ "ଫ୍ୟାକ୍ଟ୍‌ର" ବର୍ଣ୍ଣନା ଆବଶ୍ୟକ ପଡ଼ୁଛି ।

ଆମେମାନେ ଛାତ୍ର ଥିଲାବେଳେ, ଇଂରାଜୀ ଭାଷାକୁ ଆୟତ୍ତ କରିବା ଉତ୍ତମ ପୌରୁଷ ସହିତ ସମାନ ଥିଲା କହିଲେ ଚଳେ । କିନ୍ତୁ ଭାରତୀୟ—ପରିବେଶରେ

—ବଢ଼ିଥିବା କିଶୋର-କିଶୋରୀଙ୍କ ଚିତ୍ତ, ଖାଣ୍ଟି ଇଂରେଜଙ୍କ ନିଛକ ଇଂରେଜି ରଚନାକୁ ସହଜରେ ଗ୍ରହଣ ନ କରିବା ହିଁ ସ୍ୱାଭାବିକ । କାରଣ ପରିବେଶ ଓ ପ୍ରକାଶ ଭଙ୍ଗି ଓ ବର୍ଣ୍ଣନୀୟମାନ ସାମାଜିକ ଜୀବନ ବ୍ୟବହାର, ସମସ୍ତ ହିଁ ଭିନ୍ନ । ଭାରତୀୟ ତରୁଣମାନଙ୍କ ପକ୍ଷରେ ଉତ୍ତମ ଇଂରେଜି ସହିତ ପରିଚିତ ହେବାର ଏକ ସହଜ ଉପାୟ ବୋଲି ସେତେବେଳେ ଧରା ଯାଉଥିଲା, ଆଗରୁ ଜଣାଥିବା ଭାରତୀୟ ବିଷୟ ସବୁକୁହିଁ ହିଁ ଇଂରେଜି—ବାକ୍—ବିଭୂଷା ନେଇ ଜାଣିବାକୁ ଯିବା ।

ଠିକ୍ ଏହି କାରଣରୁ ହିଁ, ରେଭେନ୍ସାରେ ରବୀନ୍ଦ୍ରନାଥଙ୍କୁ ମୁଁ ପଢ଼ି ଚାଲିଲି, ମୌଳିକ ବଙ୍ଗଳାରେ ନୁହେଁ, ସେ ସବୁର ଇଂରେଜି ଅନୁବାଦ ନେଇ । ତାଙ୍କର "ଗୋରା" ଓ "ଘରେ—ବାହାରେ" ପ୍ରଭୃତି ପ୍ରସିଦ୍ଧ ଉପନ୍ୟାସ ସବୁ ମୁଁ ଇଂରେଜିରେ ହିଁ ପଢ଼ିଛି । ରବୀନ୍ଦ୍ରନାଥଙ୍କର ମୌଳିକ ଲେଖା ସହିତ ମୋର ପରିଚୟ, କେବଳ ତତ୍କାଳୀନ "ପ୍ରବାସୀ" ମାସିକ ପତ୍ରର ପୃଷ୍ଠା ନେଇ । ସୁସମ୍ପାଦକ ରାମାନନ୍ଦ ଚାଟର୍ଜିଙ୍କ ବିଚକ୍ଷଣ ମାସିକ ଆଲୋଚନା ଓ ଅସାଧାରଣ, ବିଷୟ—ନିର୍ବାଚନ—ପଟୁତା ଯୋଗୁଁ, 'ପ୍ରବାସୀ' ଓ ମଡ଼ର୍ଣ୍ଣ ରିଭିଉ' ସେତେବେଳେ ଆମର ଅତ୍ୟାବଶ୍ୟକ ବୌଦ୍ଧିକ ଟନିକ୍ ପରି ହୋଇ ପଡ଼ିଥିଲେ, ଅତ୍ୟୁକ୍ତି ହେବନାହିଁ ।

ପ୍ରବାସୀ ବା ମଡ଼ର୍ଣ୍ଣ ରିଭ୍ୟୁରେ ରବୀନ୍ଦ୍ରନାଥଙ୍କ ସଂପର୍କରେ ପ୍ରକାଶିତ ପ୍ରବନ୍ଧାଦିରେ ମୁଁ "ବାଲ୍ମୀକି ପ୍ରତିଭା"ର ଉଲ୍ଲେଖ ଦେଖିଛି ସତ, କିନ୍ତୁ ସେ ବହିଟି କବିଙ୍କର ଅତି ବାଲ୍ୟବୟସର ରଚନା ବୋଲି ଜାଣି ଏବଂ ତାର ଇଂରାଜି ଅନୁବାଦ ଆଖିରେ ନ ପଡୁଥିବା ଯୋଗୁଁ, ସେ ବହି ମୁଁ ପଢ଼ିପାରିନି, କି ପଢ଼ିବାର ଆଗ୍ରହ ମଧ୍ୟ ମୋ'ଠି କେବେ ଦେଖା ଯାଇନି । ଓଡ଼ିଶାର ଅଧିକାଂଶ ବୁଦ୍ଧିଜୀବୀ ଓ କବି-ଲେଖକ ଯେପରି ଧାରାବାହିକ ଭାବରେ ବଙ୍ଗଳା କାବ୍ୟ-ଉପନ୍ୟାସ ଅଧ୍ୟୟନ କରିଥିବାର ତାଙ୍କ ଲେଖା ଓ କଥା ଭାଷାରୁ ଜଣାପଡ଼େ, ପ୍ରକୃତରେ ମୋର ସେପରି ଅଭିଜ୍ଞତା ଘଟିନାହିଁ । ଉଦାହରଣ ସ୍ୱରୂପ ପ୍ରସିଦ୍ଧ ବଙ୍ଗୀୟ ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କର ବିଖ୍ୟାତ ଗ୍ରନ୍ଥ "ବିଷବୃକ୍ଷ" ବା 'ଆନନ୍ଦମଠ' ବା ମାଇକେଲ୍‌ଙ୍କ ପ୍ରସିଦ୍ଧ କାବ୍ୟ 'ମେଘନାଦବଧ' ମୁଁ ଏପର୍ଯ୍ୟନ୍ତ ପଢ଼ିନି । କେବଳ ବହିଟିମାନ ଦେଖିଛି ବୋଧହୁଏ, ଅବା ପୃଷ୍ଠା ଲେଉଟାଇଛି । ଅଥଚ ସେସବୁର ଆଲୋଚନା ମୁଁ ପଢ଼ିଛି—ସାମୟିକ ପତ୍ରପତ୍ରିକାମାନଙ୍କରେ । ସେତିକି ହିଁ ମୋର ଜ୍ଞାନ ।

"ବାଲ୍ମୀକି—ପ୍ରତିଭା"ରେ ଲକ୍ଷ୍ମୀ-ସରସ୍ୱତୀଙ୍କ ବିବାଦରୁ 'ରାଜକବି'ର ଲକ୍ଷ୍ମୀ-ସରସ୍ୱତୀଙ୍କ ଆବିର୍ଭାବ କଥା ଯାହା କହୁଛ, ତାରି କିଞ୍ଚିତ୍ ବିଚାର ପୁଣି କରାଯାଉ ।

ତମର ଲେଖାରୁ ହିଁ ଜାଣୁଛି ଯେ, 'ବାଲ୍ମୀକି ପ୍ରତିଭା'ରେ ଏ ବିବାଦ ବର୍ଣ୍ଣିତ । କିନ୍ତୁ ଦସ୍ୟୁ ରତ୍ନାକରକୁ କ'ଣ ଲକ୍ଷ୍ମୀ ଦେବୀଙ୍କର ଗେହ୍ଲାପୁଅ ବୋଲି ଧରାଯିବ ? କୁମୁଠୀ ବା ମାରବାଡ଼ୀ ବ୍ୟବସାୟୀମାନେ ସିନା ଲକ୍ଷ୍ମୀ-ଅନୁଗୃହୀତ ବୋଲି ସ୍ୱାଭାବିକ ଭାବରେ ଧରାଯାନ୍ତି,—କୌଣସି ଦେଶରେ ଡକାଇତେ ସେ ଆଶୀର୍ବାଦର ଅଧିକାରୀ ବୋଲି ଧରାଯିବାର ଜଣାଯାଇ ନାହିଁ । ତେଣୁ "ବାଲ୍ମୀକି—ପ୍ରତିଭା"ରେ ତରୁଣ ରବୀନ୍ଦ୍ରନାଥ ଏ ପ୍ରକାର Conflict ଆଣି ଠିଆ ଯଦିବା କରାଇଥାନ୍ତି, ତେବେ ସ୍ୱୀକାର କରିବାକୁ ହେବ ଯେ ତରୁଣ କବିଙ୍କର ତାହା ଏକ କଷ୍ଟ-କଳ୍ପିତ ଭାବନା ।

ସେହିପରି ମଧ୍ୟ କାଳିଦାସଙ୍କ କଥା । ଇତିହାସ ଓ ଗାଳଗଳ୍ପ ଉଭୟରୁ ଅନୁମାନ ଯେ, କାଳିଦାସ ଭୋଗ-ପ୍ରାଚୁର୍ଯ୍ୟରେ ହିଁ କାଳ କାଟିଥିଲେ । ଲୋକ-ମୁଖରେ ସେ ଏକ ସ୍ତ୍ରୈଣ ପୁରୁଷ ଭାବରେ ବର୍ଣ୍ଣିତ, ଯାହା ଧନାଭାବ ସୂଚନା କରେନାହିଁ । ପୁଣି ବିକ୍ରମା-

ଦିତ୍ୟଙ୍କ ନବରତ୍ନଙ୍କ ଭିତରୁ ଯେ ଶ୍ରେଷ୍ଠ ରତ୍ନ, ତା, ଜୀବନରେ ଲକ୍ଷ୍ମୀ-ସରସ୍ୱତୀଙ୍କର ଅକଳ୍ପନୀୟ ମିଳନ ଦେଖି ଆମେ ଅବାକ୍ ହେବା ସିନା ( ଯେପରି ଘଟିଥିଲା ଗୋଏଟେ ଓ ରବୀନ୍ଦ୍ରଙ୍କ ଭାଗ୍ୟରେ ) । ସେ ଜୀବନରେ ଦାରିଦ୍ର୍ୟ—ଦୁଃଖର ଉପ୍ଲାବିତ ମାରାତ୍ମକତା ଆମେ କଳ୍ପନା କରିବାକୁ ଯିବା କପରି ?

ତେଣୁ ଏ କ୍ଷେତ୍ରରେ ମଧ୍ୟ, ଲକ୍ଷ୍ମୀ—ସରସ୍ୱତୀ ବିବାଦ ବର୍ଣ୍ଣନା ଅସ୍ୱାଭାବିକ ହେବବୋଲି ଆଶଙ୍କା ।

କିନ୍ତୁ ଏ ବିବାଦ, ଆମର ପ୍ରିୟ କବି ଉପେନ୍ଦ୍ରଙ୍କ ଜୀବନରେ ହିଁ ଅତ୍ୟନ୍ତ ସ୍ୱାଭାବିକ ।

ମୋର ଜନ୍ମସ୍ଥାନ ଗଞ୍ଜାମଜିଲ୍ଲାର ପାଖାପାଖି ଥିବାରୁ ଏବଂ ପାରକୁଦଗଡ଼ର ସାଆନ୍ତମାନଙ୍କର ଗଞ୍ଜାମ—ଜମିଦାରମାନଙ୍କ ବଂଶ ସହିତ ବୈବାହିକ ସମ୍ବନ୍ଧ ଥିବାରୁ ସେଠି ପିଲାଦିନରୁ ହିଁ ଘୁମୁସର ରାଜବଂଶର ବ୍ୟଭିଚାର—ଦୌର୍ବଲ୍ୟତାର ଗଳ୍ପସବୁ ଶୁଣି ଆସୁଥିଲି । ପରେ ତାରଣୀଚରଣ ରଥଙ୍କର (?) ଘୁମୁସର ଇତିହାସ ପଢ଼ି ଦେଖିଲି ଯେ, ଅନାଚାର ଅପଚାର — ବ୍ୟଭିଚାର—ହତ୍ୟା — ଷଡ଼ଯନ୍ତ୍ର — କଳୁଷିତ ଘୁମୁସର ରାଜବଂଶର କାହାଣୀ ମୁସଲମାନ—ରାଜପ୍ରାସାଦମାନଙ୍କର ବିଭତ୍ସତାକୁ ମଧ୍ୟ ବଳି ଯାଇଛି ।

କିନ୍ତୁ ଏ ସବୁକୁ ଘୋଡ଼େଇ ପକାଉଛି କେବଳ ଗୋଟାଏ ଲୋକର,—ଉପେନ୍ଦ୍ରଭଞ୍ଜର ପ୍ରତିଭା ।

ପିଲାଦିନୁ ରାଧାନାଥଙ୍କ ସହିତ ଉପେନ୍ଦ୍ରଙ୍କ କାବ୍ୟ କବିତା ପଢ଼ି ଆସିଥିଲି । ଦୁଇ "ଜାତୀୟ କବିଙ୍କ" ରଚନାରେ ମୁଁ ମୋ ଜାତିର ଚିତ୍ତ—ଭୂମିର ବର୍ଣ୍ଣ ସୌରଭମୟ ସ୍ୱପ୍ନ ସବୁହିଁ ଦେଖି ଆସୁଥିଲି ।

କଲେଜରେ ରବୀନ୍ଦ୍ରନାଥଙ୍କୁ ଇଂରେଜି ନେଇ ପଢ଼ିବା ସାଥେ ସାଥେ, ଆଇରିଶ୍ କବି ୟେଟ୍ସଙ୍କ ନେତୃତ୍ୱରେ ଆୟର୍ଲଣ୍ଡର ଖାଣ୍ଟି ଆତ୍ମା "କେଲ୍ଟିକ୍ ମୁଭ୍ମେଣ୍ଟ୍" ନେଇ କପରି ବର୍ଣ୍ଣାଢ୍ୟ ପ୍ରକାଶ ଲାଭ କରିଥିଲା ତା' ମଧ୍ୟ ପଢ଼ିଲି । ୟେଟ୍ସଙ୍କ ଅନେକ କାବ୍ୟ—କବିତା ପଢ଼ିଲି । 'ରାଜକବି', 'ପୁଷ୍ପିତା' ଓ "ପୂଜାରିଣୀ" ପ୍ରଭୃତି ସେକାଳର ରଚନାଗୁଡ଼ିକ ଏଇ କେଲ୍ଟିକ୍ ମୁଭ୍ମେଣ୍ଟର ଏକ ପ୍ରତିକ୍ରିୟା ବୋଲି ଜାଣିବ । ଅର୍ଥାତ୍ ଗ୍ରେଟ ଆୟର୍ଲଣ୍ଡ ତାର ନିଜର ଲୋକ—କାହାଣୀକୁ ଆଶ୍ରୟ କରି, ଯଦି କବିତ୍ୱ, ସାହିତ୍ୟ ସୃଷ୍ଟି କରି ପାରିଛି, ଓଡ଼ିଶା ସେପରି ନ କରିବ କାହିଁକି ? ଓଡ଼ିଶା, ବଙ୍ଗଳାକୁ ଅନୁକରଣ କରିବାକୁ ଯିବ କାହିଁକି ?

ବିଭତ୍ସ ଘୁମୁସର—ଇତିହାସ ଭିତରେ ରାଜପୁତ୍ର ଉପେନ୍ଦ୍ରଙ୍କର ଜୀବନବ୍ୟାପି ସାରସ୍ୱତ—ସାଧନାକୁ କେନ୍ଦ୍ରକରି, ସେହି ପ୍ରତିକ୍ରିୟାରେ ହିଁ ବାହାରିଥିଲା, 'ରାଜକବି' । 'ପ୍ରବାସୀ'ରେ ସେତେବେଳେ ରବୀନ୍ଦ୍ର-ନାଥଙ୍କ ଉପରେ ବିସ୍ତୃତ ଆଲୋଚନା ଚାଲିଥାଏ । ମୁଁ ସେସବୁ ବରାବର ପଢ଼ୁଥାଏ । ତେଣୁ 'ରାଜକବି'ର ରଚନା—ଶୈଳୀରେ ତାର କିଛି କିଛି ଛାପ ପଡ଼ିଥିବା ସ୍ୱାଭାବିକ ମଧ୍ୟ । କିନ୍ତୁ ସମଗ୍ର ଭାବରେ ମୋର ସେ କାଳର ରଚନାବଳି ଉପରେ କେଲ୍ଟିକ୍ ପ୍ରତିକ୍ରିୟାକୁ ଧରି ନେଇପାର ।

ରବୀନ୍ଦ୍ରନାଥଙ୍କ 'ଚିତ୍ରାଙ୍ଗଦା' ମଧ୍ୟ ମୁଁ ପ୍ରଥମେ ଇଂରେଜି—ଅନୁବାଦରେ ହିଁ ପଢ଼ିଥିବାର ମନେ ଅଛି । ବହୁପରେ, ରବୀନ୍ଦ୍ର ଶତବାର୍ଷିକୀ ଉତ୍ସବ-ବେଳେ, ଏହି କାବ୍ୟର ଓଡ଼ିଆ—ଅନୁବାଦର ପରୀକ୍ଷକ ଭାବରେ ମତେ ମୂଳ ବଙ୍ଗଳା କାବ୍ୟଟି ପଢ଼ିବାକୁ ହେଲା । କିନ୍ତୁ ପଢ଼ି, ବଙ୍ଗାଳୀ ସମାଲୋଚକ-ମାନେ ଏ ବହିର ଯେପରି ଉଚ୍ଛ୍ୱସିତ ପ୍ରଶଂସା କରିଥାନ୍ତି, ତାହା ସହିତ ଏକମତ ହୋଇ ପାରିଲି ନାହିଁ । ସେ ଯାହାହେଉ, 'ଚିତ୍ରାଙ୍ଗଦା' ସହିତ 'ପୁଷ୍ପିତା'ର ଯେକୌଣସି ସମ୍ବନ୍ଧ ନାହିଁ ବୋଲି କହିଛ, ତାହା ଏକାନ୍ତ ଠିକ୍ । 'ପୁଷ୍ପିତା' ମୋର ପିଲାବେଳର ନିଃଶ୍ୱାସ । ଭାବନାର ହିଁ ଏକ ପୁଷ୍ପ । ଗାଁରେ ଆମେ ପୁଅ—ଝିଅ ବାଳ—ଗୋଷ୍ଠୀ— ବାଡ଼ିଆଡ଼େ ଏକାଠି ଖେଳୁଥିଲୁ । ସେତେବେଳେ

ଆମର ଅବସ୍ଥା ଥିଲା ପ୍ରକୃତରେ "ଆରଣ୍ୟକ"। ବହୁତ ବୟସ ଯାଏଁ, ପୁଅ ଓ ଝିଅ ସମ୍ପୂର୍ଣ୍ଣ ଉଲଗ୍ନ ରହି ଖେଳୁଥାଉଁ,—ଯାହାକି ଏବେ କଳ୍ପନା କରାଯାଇ ନ ପାରେ। ଏବେ ପିଲା ୬ ମାସ ହେବା ବେଳୁ ଯୋତା—ମୋଜା—ଟୋପି—ପିନ୍ଧା ଆରମ୍ଭ ହୋଇ ଯାଉଛି, ଯେତେଦୂର ମନେ ପଡ଼ୁଛି। ଦଳେଇ ଘର 'ଜେମା', ୯-୧୦ ବର୍ଷ ବୟସ ଯାଏ ସମ୍ପୂର୍ଣ୍ଣ ପ୍ରାକୃତିକ ଅବସ୍ଥାରେ ହିଁ ଆମ ସାଥିରେ ଖେଳୁଥାଏ। ଅଥଚ ଆମେ ବୋଧହୁଏ ସେ ପର୍ଯ୍ୟନ୍ତ, ସେ ଇଡ଼େନ—ଉଦ୍ୟାନର ଜ୍ଞାନ—ଫଳ ଖାଇବା—ପୂର୍ବର ଆଦାମ ଓ ଇଭ୍ ଥିଲୁ। ଆମ ମନରେ ସାମାନ୍ୟତମ ବିକାର ନ ଥିଲା।

ତା' ପରେ ମୁଁ ଗାଁ ଛାଡ଼ିଲି। ପାଠ ପଢ଼ିବା ପାଇଁ। ମଝିରେ ମଝିରେ ଛୁଟିରେ ଆସି ଶୁଣେ ଯେ ପୂର୍ବର ଖେଳ—ସାଥୀ "ଜେମା" ବା 'ନେତ' ଆଉ ଗାଁରେ ନାହାନ୍ତି। ସେମାନେ "ବାହା" ହୋଇ ଅନ୍ୟ ଗାଁକୁ ଚାଲି ଗଲେଣି!

ବ୍ୟାପାର କ'ଣ?

ପୁଣି, ଯେଉଁ ପୂର୍ବ ଖେଳ—ସାଥୀ ଝିଏ ବା ଗାଁରେ ସେପର୍ଯ୍ୟନ୍ତ ରହି ଯାଇଥିଲେ, ଦେଖିଲି ଯେ ସେମାନେ ଆଉ ଆମ ସାଥିକି ପୂର୍ବପରି ସ୍ୱଚ୍ଛନ୍ଦରେ ଆସି-ପାରୁ ନାହାନ୍ତି। ତେବେ କେବେ କେବେ ପୋଖରୀ କୂଳେ ବା କୂଅମୂଳେ ଦେଖା ହେଲେ, ଦେଖେ ଯେ, ଅଳ୍ପକାଳ ଭିତରେ ସେମାନଙ୍କର ଅକଳ୍ପନୀୟ ପରିବର୍ତ୍ତନ ଘଟିଯାଇଛି!

କୁମାରୀର ସରଳତାରୁ ନାରୀର ଏହି ଆଭରଣ-ମୟ ଆବିର୍ଭାବ, ମୋର ଅକଳୁଷ କିଶୋର ଚିତ୍ତରେ ବହୁକାଳ ଧରି କି ଆଲୋଡ଼ନ ସୃଷ୍ଟି କରିଥିଲା, ତାହା ଅନେକ ବିଶ୍ୱାସ କରିପାରିବେ ନାହିଁ। ନାରୀ ଓ ପୁରୁଷର ଭେଦନେଇ ପ୍ରକୃତିର ଜୈବିକ ବ୍ୟଞ୍ଜନା ମତେ ଅନେକ ବର୍ଷ ପର୍ଯ୍ୟନ୍ତ ଅଜ୍ଞାତ ଥିଲା। ବସ୍ତୁତଃ ବି. ଏ. ଶ୍ରେଣୀରେ ଯେତେବେଳେ କାଳିଦାସଙ୍କ "ଶକୁନ୍ତଳା" ପଢ଼ିଲି, ସେ ନାଟକର ଶେଷ ଅଙ୍କରେ ନାୟିକା ଶକୁନ୍ତଳାର ପୁଅଟାଏ କିପରି କୁଆଡ଼ୁ ଆସିଲା, ତାହା ମତେ ବହୁବର୍ଷ ଧରି ଅବୁଝା ରହିଥିଲା, ଅଥଚ ଲାଜରେ କାହାକୁ ପଚାରି ମଧ୍ୟ ପଚାରି ପାରୁ ନ ଥାଏ। 'ପୁଷ୍ପିତା' ଶକୁନ୍ତଳାର ମନୋରମତା ମହାକବି ନାଟକର ପ୍ରଥମ ଅଙ୍କରେ ହିଁ ପରମ ମଞ୍ଜୁଳ ଚିତ୍ରରେ ଆଙ୍କି ଯାଇଛନ୍ତି। କିନ୍ତୁ ଶେଷ ଅଙ୍କରେ ସେ ଯେ "ଫଳବତୀ" ଲତା ହୋଇ ଦେଖା ଦେଉଛି, ତାହା କିପରି ହେଲା, ତାହାର ରହସ୍ୟ ମୁଁ ନିଜେ ପିତା ନ ହେଲା ଯାଏଁ ତତ୍ତ୍ୱତଃ ଜାଣି ନ ଥିଲି।

ସେ ଅଜ୍ଞତା ବରଂ ଭଲ ଥିଲା, ହେ ଶତପଥୀ!! ପର ଜୀବନରେ ମୁଁ ବିଧାତାକୁ ବାରମ୍ବାର ପ୍ରାର୍ଥନା କରିଛି—ମୋତେ ମୋର ସେହି innocence ଫେରାଇ ଦେବାକୁ। ସେ ଯାହାହେଉ, ସେହି 'ଅଜ୍ଞତାର' ସ୍ୱପ୍ନ ଓ କଳ୍ପନାରୁ ହିଁ "ପୁଷ୍ପିତା"ର ଜନ୍ମ।

ଏ ସବୁ ଲେଖିବାର ଏକ କାରଣ ଏହିକି ଏବେ ଓଡ଼ିଆରେ 'ସମାଲୋଚନା' ବୋଇଲେ କେବଳ କିଏ କେଉଁଠୁ କ'ଣ ଆଣିଛି ତାର ଆଲୋଚନା ହିଁ ହେଉଛି। ଏପର୍ଯ୍ୟନ୍ତ ମଧ୍ୟ ରାଧାନାଥ କାହୁଁ କ'ଣ ଆଣିଛନ୍ତି, ସେହି ଅବସ୍ଥାର—ପ୍ରଯତ୍ନ ହିଁ ହୋଇ ରହିଛି। ରାଧାନାଥ ଆଲୋଚନା। ତମେ ବି ସେଇ ବାଟ ଧରିବାର ଦେଖି, ପଦେ କହି ରଖିବାକୁ ଇଚ୍ଛା ହେଲା। ତମେ ଜାଣ ଯେ, ମୁଁ ସାହିତ୍ୟରେ "ପର-ଧର୍ମ"କୁ ବିଶେଷ କରି "ପ୍ରତିବେଶୀ—ଧର୍ମ"କୁ ନାପସନ୍ଦ କରି ଆସିଛି। ମନେ ହେଉଛି ଯେ, ମୁଁ

ସାମାନ୍ୟ ଭାବରେ 'ସ୍ୱ—ଧର୍ମ'କୁ ରକ୍ଷାକରି ଆସିଛି ଏବଂ ତାହାହିଁ ମୋର ନିଜସ୍ୱ "ସାହିତ୍ୟ" । ମୁଁ ଚଷା ପିଲା, ଚଷାର କୂଳରେ ମାଡ଼ିଥିବା ନାଉ—କଖାରୁ ଲଟା ମାତ୍ର ମୁଁ ବା ତା' ମାଟିକାନ୍ଥର ଚିତା ମାତ୍ର । ସେଇ ଲୁହେଁକ ଚଷାର 'ସାହିତ୍ୟ'? ତେଣୁ ଆମ-ପରି ସାମାନ୍ୟ ଚଷାଲୋକଙ୍କୁ ନେଇ କାହିଁକି ବୃଥାରେ ବଡ଼ ବଡ଼ ଲୋକଙ୍କ ସାଥିରେ ଠିଆ କରାଉଛ ? ତାଙ୍କ ସୌଧାବାସର ଶଙ୍ଖ ମଲମଲ ପଥରରୁ ଖଣ୍ଡେ ଖ୍ରେରେଇ ଆଣି, ଆମ କୁଡ଼ିଆର ପାହାଚ କରି ଗର୍ବ ଅନୁଭବ କରିବାର ଅଭିଳାସ କିଁ ଆମର ଚଷା ମନରେ ଉଠିନ । କାହିଁକି ସେ ଭୁଲକାର ବିଡ଼ମ୍ବନା ?

—*—

[ ଡିସେମ୍ବର ୧୯୬୮ ସଂଖ୍ୟା 'ଝଂକାର'ରେ ଅଧ୍ୟାପକ ଶତପଥୀଙ୍କ ଲିଖିତ 'ଗୀତିନାଟ୍ୟର କେତୋଟି ଚରିତ୍ର' ପଢ଼ି ଡକ୍ଟର ମାନସିଂହ ଏ ପତ୍ର ଲେଖିଛନ୍ତି—ସମ୍ପାଦକ ]

---

# ॥ ସ୍ୱଗତୋକ୍ତି : ଆହତ ସ୍ୱପ୍ନ ପାଇଁ ॥

ଶ୍ରୀ ନରୋତ୍ତମ ମହାପାତ୍ର, (ଯାଜପୁର)

ନକଲି ଆକାଶ କୋଳେ
ସାଂସ୍କୃତିକ ଇନ୍ଦ୍ରଧନୁ
ଜହ୍ନର ଇସରା ଭଳି
ଆଜି ଯନ୍ତ୍ର ହସର ତୋରଣ
ଏବଂ ମୋର କୁଞ୍ଜବନେ
'ସ୍ୱଗତୋକ୍ତି' ଲଜିଳାଟଗା
ସେ ହସ ମନର ଏକ ବିବିକ୍ତ ଶ୍ରାବଣ,
ଲାଜ କ'ଣ ? ଆମ୍ରୁଷ୍ଠାନ ଅଷ୍ଟାତର
ଲୁହ ହେଉ ଚନ୍ଦନର ବିନ୍ଦୁ ।
ସମସ୍ତର ଉପବନେ
ଆମ୍ରୁଷ ଗଛର ଡାଳେ,
ଆତ୍ମିକ ମୋ ଫୁଟ ତୁମେ
ଆଗୋ ମୋର ବେଦନାର ଗେଣ୍ଡୁ ।
ମୌସୁମୀର ପଥ ଘର
ଫଇ ଫଣୀ ଖାରୁ ଚାଠୁଁ—
ସିନ୍ଦୂର ଫରୁଆ ହେଉ
ସ୍ୱୀବାର ଦୃଢ଼ତା ଭଳି
ତୁମର ଜୀବନ ଶାର୍ଥ ଖଉବ ଦୃଢ଼ତର
ସେ ଶାର୍ଥ ସ୍ନାହାନ କରୁ
ପରବୃତ୍ତ କାମନାର ମଧ୍ୟସ୍ଥ ନିର୍ଭୁଜ, ଯାହା
ସମୁଦ୍ର ମଧ୍ୟସ୍ଥ ଏକ ସନ୍ତ୍ରାନ୍ତ ପାହାଡ଼ ଭଳି
ମୋ ପୁରୁଷକାର ।
ରକ୍ତର ଗେଟହ୍ଲୁଇ ନଈ
ତଟସ୍ଥ ଉଦ୍ଭିଦ ହେଉ
ଫଗୁଣର ହୋମ କୁଣ୍ଡେ
ଜୀବନ୍ତ ସମିଧ,
ସତ୍ୟର ସ୍ମାରିକା ପାଇଁ
ଯନ୍ତ୍ରଣାର ନଖ ଦନ୍ତ
ସେ କୁଣ୍ଡରେ ହେଉନ୍ତୁ ଦଗଧ ।

—*—

# ।। ମଣିପୁର ରାଜ୍ୟ କଥା ।।

ସରଳା ଦେବୀ

ଗାନ୍ଧୀ ଶତବାର୍ଷିକୀର ଆଞ୍ଚଳିକ କନଫରେନ୍ସରେ ଯୋଗ ଦେବାପାଇଁ ମୁଁ ମଣିପୁର ୨୨ ତାରିଖରେ କଲିକତାରୁ ଯାଇ ୩୦ରେ ଫେରିଲି । ୧୦ ଜଣ ଓଡ଼ିଆଣୀ ସେଠାକୁ ଓଡ଼ିଶାର ପ୍ରତିନିଧି ହୋଇ ଯାଇଥିଲେ । ମଣିପୁର, ତ୍ରିପୁରା, ଆସାମ, ନାଗାଲାଣ୍ଡ, ନେଫା, ବିହାର, ବଙ୍ଗଳାର ନାରୀ ପ୍ରତିନିଧିମାନେ ଗାନ୍ଧୀ ଶିବିରରେ ଯୋଗ ଦେଇଥିଲେ । ସେହି ସ୍ଥାନର ବର୍ଣ୍ଣନା ଲେଖିଲି । ଏହି ମଣିମୟ ରାଜ୍ୟଟି ଭାରତର ଉତ୍ତର ପୂର୍ବ କୋଣରେ ଅବସ୍ଥିତ । ଏହା ଭାରତର ପୂର୍ବ ଦିଗରେ ବ୍ରହ୍ମଦେଶର ସରହଦକୁ ଲାଗିରହିଛି । ଏହି ଦେଶର ପୂର୍ବଭାଗରେ ବ୍ରହ୍ମଦେଶ, ଉତ୍ତରରେ ନାଗାଭୂମି ଏବଂ ପଶ୍ଚିମ ଦିଗରେ ଆସାମ ରାଜ୍ୟ ଅବସ୍ଥିତ । ଏହି ମଣିପୁର ରାଜ୍ୟରେ ଧନ-ରତ୍ନ ରହିଛି । ଭାରତରେ ମଣିପୁର ପାହାଡ଼ିଆ ଅଞ୍ଚଳ ସହିତ ସଂଯୁକ୍ତ ଏକ ପାହାଡ଼ିଆ ଦେଶ । ଏହାର ଚାରିପଟ ପାହାଡ଼ ଘେରା ଏବଂ ଏହି ପାହାଡ଼ର ଉଚ୍ଚତା ୩ ହଜାର ଫୁଟଠାରୁ ଦଶହଜାର ଫୁଟ ପର୍ଯ୍ୟନ୍ତ ଦେଖା ଯାଉଛି ଓ ଅନ୍ୟ ପାହାଡ଼ମାନଙ୍କ ସହିତ ଏହି ଉଚ୍ଚତା ସମାନ ଏବଂ ସମୁଦ୍ର ପତନରୁ ୩ହଜାର ଫୁଟ ଉଚ୍ଚତା ବିଶିଷ୍ଟ ଦେଖା ଏହି ଦେଶ ୮, ୬୨୮ ସ୍କୋୟର ମାଇଲ ଅଟେ । ଏହା ମଧ୍ୟରୁ ୭ ହଜାର ସ୍କୋୟାର ମାଇଲ କେନ୍ଦ୍ରସ୍ଥ ସମତଳ ଉପତ୍ୟକା ସହିତ ମିଶାଇଲେ ୨, ୬୦୦ଫୁଟ ସମୁଦ୍ର ପତନର ଉଚ୍ଚରେ ଅବସ୍ଥିତ । ଏହି ଚିର ବସନ୍ତାୟୁମାନ ଶ୍ୟାମଳ ଶ୍ରୀମଣ୍ଡିତ ଦେଶଟି ଶିଳ୍ପ କଳାନୃତ୍ୟ ଗୀତ ଓ ଅନ୍ୟାନ୍ୟ ଜାତୀୟ କଳା ସଂସ୍କୃତି ପାଇଁ ଭାରତରେ ବିଖ୍ୟାତ ।

ମଣିପୁର ରାଜ୍ୟର ବିବରଣୀ ମହାଭାରତରେ ଲିଖିତ । ସେଠାରେ ପାଣ୍ଡବଗଣଙ୍କର ମଧ୍ୟରେ ଶ୍ରେଷ୍ଠ ବୀର ଅର୍ଜ୍ଜୁନ ପରାସ୍ତ ହୋଇ ବିପଦଗ୍ରସ୍ତ ହୋଇଥିଲେ । ଅର୍ଜ୍ଜୁନ ମଣିପୁର ରାଜକନ୍ୟା ଚିତ୍ରାଙ୍ଗଦାଙ୍କୁ ବିବାହ କରିଥିଲେ । ତାଙ୍କର ପୁତ୍ର ବଭ୍ରୁବାହନଦ୍ୱାରା ସେ ପରାସ୍ତ ହୋଇ ବନ୍ଦୀ ହୋଇଥିଲେ । ୧୮୯୧ ସାଲ ଅଗଷ୍ଟମାସ ପର୍ଯ୍ୟନ୍ତ ମଣିପୁର ଏକ ସ୍ୱାଧୀନ ରାଜ୍ୟ ଭାବରେ ରହିଥିଲା । ତାହାପରେ ଇଂରେଜ ଶାସନରେ ପୋଲିଟିକାଲ ଏଜେଣ୍ଟଙ୍କ ତଳେ ଶାସିତ ହୋଇଥିଲା । ଇଂରେଜଙ୍କ ଶାସନରୁ ଭାରତ ମୁକ୍ତିଲାଭ କଲା ୧୯୪୭ ସାଲ ୧୫ ତାରିଖ ଅଗଷ୍ଟ ଦିନ । ଏହି ସମୟ ମଧ୍ୟରେ ମଣିପୁରର ଶାସନରୀତିର ବହୁତ ପରିବର୍ତ୍ତନ ଘଟିଥିଲା । ଭାରତ ସରକାର ମଣିପୁର ରାଜ୍ୟକୁ ମଧ୍ୟ ଭାରତ ସହିତ ଅନ୍ୟ ରାଜ୍ୟମାନଙ୍କ ପରି ମିଶାଇ ଦେଇଥିଲେ । ସରକାର ଅକ୍ଟୋବର ୧୯୪୯ରେ ମଣିପୁର ଶାସନ ହାତକୁ ନେଲେ । ଚିଫ କମିଶନର ଏହି ରାଜ୍ୟର ଶାସନ ସଂସ୍ଥାର ଶ୍ରେଷ୍ଠ ବ୍ୟକ୍ତି ହୋଇ ରହିଲେ । ୧୯୫୦-୫୧ ସାଲରେ ଗୋଟିଏ ରାଜ୍ୟ ପରାମର୍ଶଦାତା ଗଠିତ ହୋଇ ଶାସନ କାର୍ଯ୍ୟ କରୁଥିଲେ । ତାହାକୁ ପୁଣି ଭାଙ୍ଗି ଦିଆଗଲା । ଗୋଟିଏ ବ୍ୟବସ୍ଥାସଭା ଗଠିତ ହୋଇ ୩୦ ଜଣ

ନିର୍ବାଚିତ ସଭ୍ୟ ଓ ୨ ଜଣ ସରକାର ନିଯୁକ୍ତ ସଭ୍ୟ ଶାସନକାର୍ଯ୍ୟ ହାତକୁ ନେଲେ । ସେହି ସଭ୍ୟମାନଙ୍କ ଭିତରୁ ୩ ଜଣ ମନ୍ତ୍ରୀ ଶାସନ କର୍ମରେ ଚିଫ୍ କମିଶନରଙ୍କୁ ସାହାଯ୍ୟ କରିବାକୁ ରହିଲେ । କିନ୍ତୁ ଦେଶର କର୍ତ୍ତା ଓ ଶାସକ ଚିଫ୍ କମିଶନର ନିଯୁକ୍ତ ରହିଲେ ।

ମଣିପୁର ରାଜ୍ୟ (ଜିଲ୍ଲା) ରେ ୧୦ଟି ସବଡିଭିଜନ ଅଛି । ୪ ଟି ସମତଳ ଉପତ୍ୟକାରେ ଓ ୬ଟି ପାହାଡ଼ ଅଞ୍ଚଳରେ ରହିଛି । ଲୋକସଂଖ୍ୟା ୭,୮୦,୦ ୩୭ । ତହିଁ ମଧ୍ୟରୁ ୫୧୪୬୭୭ ଲୋକ ସମତଳ ବାସୀ । ପ୍ରତି ସ୍କୋୟାର ମାଇଲରେ ୦୪୭ ଲୋକ ରହନ୍ତି । ତହିଁମଧ୍ୟରୁ ପାହାଡ଼ ଅଞ୍ଚଳର ଲୋକସଂଖ୍ୟା ଶତକଡ଼ା ୩୩ ଜଣ । ମଣିପୁରର ରାଜଧାନୀ ଇମ୍ଫାଲ । ସମୁଦ୍ର ପତନ ଉପରେ ୨,୬୦୦ ଫୁଟ ଉପରେ ଏହି ସହର ଅବସ୍ଥିତ । ଏହାର ଲୋକସଂଖ୍ୟା ୬୭୭୧୭ ଅଟେ ।

ମଣିପୁରର ଜଳବାୟୁ ଅତି ଭଲ ଓ ସ୍ୱାସ୍ଥ୍ୟକର । ଏହାର ଜଳବାୟୁ ସ୍ୱର୍ଗକଯାକ ନାତିଶୀତୋଷ୍ଣ "Air Condition" । ପ୍ରାକୃତିକ ଭାବରେ ବର୍ଷସାରା ରହିଥାଏ । ଏଠାରେ ୫୬ ଇଞ୍ଚରୁ ୧୬୦ ଇଞ୍ଚ ପର୍ଯ୍ୟନ୍ତ ବର୍ଷା ହୁଏ । ବୈଶାଖ ମାସରୁ ବର୍ଷା ଆରମ୍ଭ ହୋଇ ଆଶ୍ୱିନ ମାସଯାଏ ବର୍ଷାକାଳ ରହେ । ଏହି ବର୍ଷା ମଧ୍ୟ ପ୍ରାକୃତିକ କାରଣରୁ ହୁଏ । ଆଷାଢ଼, ଶ୍ରାବଣ ଓ ଭାଦ୍ରବ ବର୍ଷାଋତୁ ।

ମଣିପୁର ଲୋକେ ଗୌଡ଼ୀୟ ବୈଷ୍ଣବଧର୍ମୀ । ହିନ୍ଦୁମାନେ ମୈତେୟୀ ଜାତିର ଅଛନ୍ତି । ମୈତେୟୀ କ୍ଷତ୍ରିୟ ଜାତିକୁ କହନ୍ତି । ଏହି କ୍ଷତ୍ରିୟମାନଙ୍କ ମଧ୍ୟରେ ଛତ୍ରର ବ୍ରାହ୍ମଣ ଜାତି ଲୋକେ ୧୫ ଶତାବ୍ଦୀରୁ ରହିଛନ୍ତି । ବ୍ରାହ୍ମଣମାନେ ଭାରତର ବିଭିନ୍ନ ପ୍ରାନ୍ତରୁ ଉଠିଆସି ମଣିପୁରେ ରହିଛନ୍ତି । ଆଦିବାସୀ ବନବାସୀମାନେ ନାଗା ଓ କୁକି ଜାତିରେ ବିଭକ୍ତ । ଏମାନେ ସମସ୍ତେ ଖ୍ରୀଷ୍ଟାନ ହୋଇଛନ୍ତି । ମାଓମାରମ, ଉଖରୁଲ ସଦର ପାହାଡ଼ ସବଡିଭିଜନରେ ଏହି ଧର୍ମାନ୍ତରିତ ଖ୍ରୀଷ୍ଟାନ ଆଦିବାସୀରେ ପୂର୍ଣ୍ଣ । ଏହି ସବଡିଭିଜନରେ ଟାମେଙ୍ଗଲଙ୍ଗ, ଚୂଡ଼ାଚାନ୍ଦପୁର, ଟେଙ୍ଗନୋପଲ ଅଞ୍ଚଳ ମଧ୍ୟ ଖ୍ରୀଷ୍ଟାନ ଆଦିବାସୀରେ ପୂର୍ଣ୍ଣ । ଏହି ଆଦିବାସୀମାନଙ୍କ ମଧ୍ୟରୁ ଟାଙ୍ଗ୍‌ଖୁଲ ନାଗାମାନଙ୍କ ଚେହେରା ସହିତ ଆର୍ଯ୍ୟଜାତି ଚେହେରାର ସାଦୃଶ୍ୟ ଅଛି । ଏହି ଆଦିବାସୀମାନଙ୍କ ସାମାଜିକ ପରମ୍ପରାରେ ପୈତୃକ ଧାରା ପ୍ରଚଳିତ । Patriachal ବା ପୈତୃକ ପରମ୍ପରା ଓ ବଂଶଧାରା ସବୁ ଆଦିବାସୀମାନଙ୍କ ପାରିବାରିକ ଓ ସାମାଜିକ ସଂସ୍କୃତି ।

ମଣିପୁର ରାଜ୍ୟର ଲୋକେ ଖୁବ୍ ଯୋଦ୍ଧା ଥିଲେ । ସେମାନେ ଏପରି ଲଢ଼ୁଆଥିଲେ ଯେ ନିକଟସ୍ଥ ବ୍ରହ୍ମଦେଶର ଓ ବିଭିନ୍ନ ପଡ଼ୋଶୀ ଦେଶମାନଙ୍କୁ ଧସି ପଶିଥିଲେ । ସେମାନେ ବର୍ମା, କାଛାଡ଼, ତ୍ରିପୁରା ଓ ନାଗା ପର୍ବତ ଅଞ୍ଚଳକୁ ମଧ୍ୟ ମାଡ଼ି ଯାଇଥିଲେ । ମଣିପୁର ୧୯୬୧ ପର୍ଯ୍ୟନ୍ତ ଏକ ସ୍ୱାଧୀନ ଦେଶ ଭାବରେ ଭାରତରେ ବଞ୍ଚି ରହିଥିଲା । ମଣିପୁର ଇତିହାସ କହେ ଏ ରାଜ୍ୟର ଇତିହାସ କେବଳ ମନୁଷ୍ୟର ଯୁଦ୍ଧ ଓ ବିପ୍ଳବ ଦ୍ୱାରା ପର୍ଯ୍ୟବସିତ ଥିଲା । ଲୋକେ ନିଡ଼ରୁଆ ବୀର ଥିଲେ, ପୁରୁଷମାନେ କେବଳ ଦେଶରକ୍ଷା ପାଇଁ ଯୁଦ୍ଧରେ ବ୍ୟାପୃତ ଥିଲେ ଏବଂ ନାରୀମାନେ ଗୃହ ସଂସାର ଓ ଚଳି ସମ୍ଭାଳୁ ଥିଲେ । ମଣିପୁରୀ ସମାଜରେ ଅତୀତରେ ଏହି ସଂସ୍କାର ବୀଜ ବପନ ହୋଇ ଚିରଦିନ ଫଳ ଦାୟକ ହୋଇଛି । ଏଠାରେ ପୁରୁଷମାନେ ଭଲ କାରିଗର, ଗୃହ ନିର୍ମାଣକାରୀ, ଯନ୍ତ୍ରକଳ ମରାମତି କରିବାବାଲା, ଯନ୍ତ୍ର ଚଳାଇବା ବାଲା ଏବଂ ମଟର ଚାଳକ । ଏମାନେ ଚାଷ କରନ୍ତି, ପଥୁରିଆ ଜମି ସମତଳ କରନ୍ତି ଓ ଅନ୍ୟ ପୁରୁଷୋଚିତ ଶ୍ରମ କରନ୍ତି ଓ ବ୍ୟବସାୟ ମଧ୍ୟ ଚଳାନ୍ତି । ଏମାନଙ୍କ ବୁଦ୍ଧି ଓ କାର୍ଯ୍ୟଦକ୍ଷତା ଦେଖି ଜଣେ ଇଂରାଜ ଲେଖକ ଲେଖିଛନ୍ତି That few people would manage

better without scleroting than the Manipuris. ସ୍କୁଲ କଲେଜରେ ନ ପଢ଼ି ଏଠାର ଲୋକ କାମର ଭଲ ବ୍ୟବସ୍ଥା କରି ପାରନ୍ତି । ଆଦିବାସୀ ୧୭ ଜାତିର ଅଛନ୍ତି । ସେମାନେ ପାହାଡ଼ରେ ଗାଁ ଘର କରି ଅଛନ୍ତି । ୧୭ ରକମର ଭାଷା ଆଦିଭାଷା ଅଛି । ସମସ୍ତେ ସ୍ୱାବଲମ୍ବୀ, ଲୁଗା ବୁଣନ୍ତି, ମାତ୍ର କେହି କାହା ଜାତିର ନକସା ଲୁଗାରେ ଚେଷ୍ଟା କରନ୍ତି ନାହିଁ । ସମସ୍ତଙ୍କର ଅଲଗା ଡିଜାଇନ ଫୁଲ ଲୁଗାରେ ପଡେ । ମଣିପୁରୀ ଲୋକେ ଖୁବ ଭଦ୍ର ସୌଜନ୍ୟସମ୍ପନ୍ନ ହେଲେ ମଧ୍ୟ କାହାପାଖେ ମୁଣ୍ଡ ନୋଇଁ ରହନ୍ତି ନାହିଁ । କାହା କଥାରେ ଚାଲନ୍ତି ନାହିଁ । କାହାକୁ ଅବନତ ହୁଅନ୍ତି ନାହିଁ । ସେମାନେ ଗଣତନ୍ତ୍ରରେ ବିଶ୍ୱାସ କରନ୍ତି । ଅନ୍ୟଜାତିଙ୍କୁ ସହ୍ୟ କରନ୍ତି । ସେମାନେ ସମସ୍ତେ ମଦ ପିଅନ୍ତି; ମାତ୍ର ମାଂସ ଖାଇବା ସମାଜରେ ମନା । କିନ୍ତୁ ସେମାନେ ମାଛ-ପରିବା ଖାଆନ୍ତି । ସେମାନେ ଗାନ୍ଧିଜୀଙ୍କ ପରି ଚଳନ୍ତି । ମଣିପୁର ସମାଜରେ ଶ୍ରେଣୀ ବିଭାଗ ନାହିଁ । ଏପରି ଶ୍ରେଣୀହୀନ ଢଙ୍ଗ ଭାରତରେ କେଉଁଠି ନାହିଁ । ବ୍ୟକ୍ତିଗତ ସ୍ୱାଧୀନତା ସମ୍ମାନିତ ହୁଏ ଏବଂ ବ୍ୟକ୍ତିଗତ ସ୍ୱାଧୀନତାକୁ ସମସ୍ତେ ଗ୍ରହଣ ମଧ୍ୟ କରନ୍ତି । ଭିକ୍ଷା କରିବା ଓ ଭିଖାରି ଏଠାରେ ଦେଖାଯାନ୍ତି ନାହିଁ । ନିଜର ଆତ୍ମସମ୍ମାନକୁ, ଇଜ୍ଜତକୁ ଏଠା ଲୋକେ ବଡ଼ ମୂଲ୍ୟବାନ ଭାବନ୍ତି ବୋଲି ଭିକ୍ଷା ମାଗିବାଠାରୁ ମୃତ୍ୟୁ ଶ୍ରେୟ ବୋଲି ଭାବନ୍ତି । ସେମାନେ ନିଜକୁ ନିଜେ ଚଳାନ୍ତି ଓ ନିଜକୁ ଅନ୍ୟର ବିନା ସାହାଯ୍ୟରେ ରକ୍ଷା କରନ୍ତି । ବଞ୍ଚିବା ପାଇଁ ଅନ୍ୟର ସହାୟତା ଲୋଡ଼ନ୍ତି ନାହିଁ । ସେମାନେ ସ୍ୱାବଲମ୍ବୀ, ଆତ୍ମବିଶ୍ୱାସୀ ଓ ସେମାନଙ୍କ ଚଳନ ଭଦ୍ର ଓ ସୁନ୍ଦର ।

ମଣିପୁରୀ ନାରୀଜାତି ସ୍ରଷ୍ଟ୍ରୀ । ଶିଳ୍ପ ସୃଷ୍ଟି କରିବା ସୁନ୍ଦର ଶିଳ୍ପ ଉତ୍ପାଦନ କରିବା ସେମାନଙ୍କ ସ୍ୱଭାବ ଓ ପ୍ରକୃତି । ସେମାନେ ବ୍ୟବସାୟ-ବାଣିଜ୍ୟ ଭଲ କରି ଜାଣନ୍ତି ଓ ଉତ୍ପାଦିତ ଜିନିଷ ହାଟକୁ ନେଇ ବିକନ୍ତି । ସେମାନେ ନିଜର ଗୃହକର୍ତ୍ତ୍ରୀ ଓ ଭଲ ଭାବରେ ସଂସାର ଚଳାନ୍ତି । ସେମାନେ ନିଜ ଝିଅମାନଙ୍କୁ ଭଲ ଘରଣୀ ହେବାର ଗୁଣମାନ ଶିକ୍ଷାଦେଇ ତାଲିମ କରନ୍ତି । ଜୀବନର ଦୁଃଖ ଜଞ୍ଜାଳ ପୂର୍ଣ୍ଣ ସମସ୍ୟାମାନଙ୍କୁ ସେମାନେ ସ୍ୱାମୀ ସହିତ ଭୋଗ କରନ୍ତି ଓ ସମାଧାନ କରି ଜୀବନସଙ୍ଗିନୀ ଭାବରେ ସ୍ୱାମୀର ଭାଗ୍ୟ ଆଦରନ୍ତି । ସେମାନେ ସ୍ୱାମୀର ବିଶ୍ୱସ୍ତ ସ୍ତ୍ରୀ ଓ ପରିଶ୍ରମୀ । ସେମାନଙ୍କ ସ୍ୱାମୀମାନେ ଜମିଚାଷରେ କାମ କରନ୍ତି ଓ କାରଖାନା, ରାସ୍ତାରେ ଏବଂ ପାହାଡ଼ ଉପରେ ନାନା ଶ୍ରମ କରିଥାନ୍ତି । ସ୍ତ୍ରୀମାନେ ଘରୁ କାମ, ରନ୍ଧା, ପିଲା ପାଳିବା କାମ କରନ୍ତି ଓ ନିଜେ ଉତ୍ପାଦନ କରିଥିବା ଲୁଗାପଟା, ଚାଦର ଓ ଏମ୍ବ୍ରୋଇଡ଼ାରୀ କାମ ହୋଇଥିବା ନାନାବିଧ ସୁଦୃଶ୍ୟ ବସ୍ତ୍ର ଶିଳ୍ପମାନ ବଜାରକୁ ବିକିବାକୁ ନେଇଯାନ୍ତି । ଏହା ସେମାନଙ୍କ ନିତ୍ୟକର୍ମ । ବଜାର ଓ ଗାଁର ହାଟମାନ ନାରୀମାନଙ୍କଦ୍ୱାରା ଚଳେ । ଏମାନେ ଭଲ ହାଟୁଆଣୀ । ସବୁ ଶ୍ରେଣୀର ନାରୀମାନେ ନିଜର ପରିବା, ମାଛ, ମାଂସ, ଅଣ୍ଡା, ଲୁଗାପଟା, ପାନଗୁଆ ପ୍ରଭୃତି ବଜାରକୁ ନେଇ ହାଟ-ବଜାରରେ ବସନ୍ତି । ନାରୀମାନେ ଦୟାଳୁ ଏବଂ ସୁମାତା, ସୁଗୃହିଣୀ । ମାତାମାନେ ସନ୍ତାନମାନଙ୍କ ଶିକ୍ଷା ପ୍ରଗତି ଦିଗରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ବିଧବା ମାତାମାନଙ୍କର କନ୍ୟାମାନେ ଗ୍ରାଜୁଏଟ ହୋଇଛନ୍ତି । ମାତାମାନେ ନିଜେ ଅରଜି କୁମାରୀମାନଙ୍କ ଶିକ୍ଷା ବ୍ୟୟବହନ କରନ୍ତି । ମଣିପୁର ନାରୀମାନେ ଖୁବ୍ ଭଦ୍ର-ଶୀଳା, ସମାଜ ଚେତନ ଓ ସାମାଜିକ ଦାୟିତ୍ୱ ସଚେତନ । ରାଜନୀତି ଦିଗରେ ମଧ୍ୟ ଏମାନଙ୍କର ଖୁବ୍ ଚେତନା ରହିଥିବାରୁ ଏମାନଙ୍କୁ କେହି ଏଡ଼େଇ ରାଜନୀତି କରିପାରିବା ଉପାୟ ନାହିଁ । ନାରୀ ଏଠାରେ ଗୋଟାଏ ବଡ଼ ଶକ୍ତି । ସେମାନଙ୍କ ରଙ୍ଗ ଗୋରା ଓ ସୁନ୍ଦରୀ । ସେମାନେ ସମସ୍ତେ ଘର ପରିଷ୍କାର ଓ ଘର ଜିନିଷ ସଫା ରଖନ୍ତି । ସର୍ବଦା ପରିଷ୍କାର ପରିଚ୍ଛନ୍ନତା ଆଡ଼କୁ ଏମାନଙ୍କର ଲକ୍ଷ୍ୟ ଓ ରୁଚି ଦେଖାଯାଏ ।

ଏମାନଙ୍କର କେଶ ଲମ୍ବା ଓ କୃଷ୍ଣବର୍ଣ୍ଣ । ନାନାବିଧ ଖୋସା ପାରନ୍ତି । ଭାରତର ଅନ୍ୟ ପ୍ରଦେଶ ଓ ରାଜ୍ୟ-ମାନଙ୍କର ନାରୀଜାତିଠାରୁ ଏମାନେ ବହୁତ ସ୍ୱାଧୀନତାର ସ୍ୱାଦ ପାଆନ୍ତି ଓ ପ୍ରକୃତରେ ଏମାନେ ସ୍ୱାଧୀନତା ଉପଭୋଗ କରନ୍ତି । ସେମାନଙ୍କ ବାଣିଜ୍ୟ ବ୍ୟବସାୟ ପାଇଁ ଯିବା ଆସିବା ଅବ୍ୟାହତ ଓ କେହି ବିଧବା ପୁନର୍ବିବାହ ହେଲେ ସମାଜରେ ତାକୁ କେହି ଘୃଣା କରନ୍ତି ନାହିଁ କି ଅନ୍ତୁଦାଭାବ ପୋଷଣ କରନ୍ତି ନାହିଁ ।

ଏ ଯୁଗର ଯୁବକ ଯୁବତୀ ତରୁଣମାନେ ଖୁବ୍ ପାଠ ପଢ଼ନ୍ତି । ସବୁ ଛାତ୍ରୀମାନେ ସାଇକେଲ ଚଢ଼ି ସ୍କୁଲ କଲେଜ ଯାନ୍ତି । ଏତେ ସାଇକେଲ ଚଢ଼ାଳି ନାରୀ ମଣିପୁରୀ ଝିଅ ବୋହୂଙ୍କ ପରି ଭାରତରେ କେଉଁଠି ନାହିଁ । ଏମାନେ ଲୁଙ୍ଗି, ବ୍ଲାଉଜ ପିନ୍ଧି ସୁନ୍ଦର ଦିଶନ୍ତି । ସବୁଝିଅ ମଣିପୁରୀ ନାଚ ଗୀତରେ ପାରଙ୍ଗମ । ସବୁ-ଝିଅ ଗୋବିନ୍ଦଜୀ ମନ୍ଦିରକୁ ରାସନୃତ୍ୟ କରିବାକୁ ଯାନ୍ତି । ନାଚିବା, ଗାଇବା, ସିଲେଇ କରିବା, ରାନ୍ଧିବା, ପିଲା-ପାଳିବା, ଲୁଗା ସୁନ୍ଦର ବୁଣିବା ଏମାନଙ୍କ କାମ । ୧୦୦-ରେ ୧୦ ଜଣ ଏମାନଙ୍କ ଭିତରେ ପାଠ ପଢ଼ନ୍ତି । ସେମାନେ ପିଲାଙ୍କୁ ତନ୍ତ କାମ କରନ୍ତି ଓ ନାଚଗୀତ ଶିଖନ୍ତି ।

ମଣିପୁରୀ ଆନନ୍ଦମୟ ସବୁଜ ଶ୍ରୀମଣ୍ଡିତ ଉତ୍କୃଷ୍ଟ ଜଳବାୟୁର ଦେଶ । ବୃକ୍ଷଜମିମାନଙ୍କ ଭିତରେ ଛୋଟ ଛୋଟ ପାଣି ଝରଣାମାନ ରହିଛି । ଏସିଆର ବଡ଼ ହ୍ରଦ ରହିଛି । ନେହେରୁ ଏ ଦେଶକୁ Jewel of India ବୋଲି କହିଥିଲେ । ବଡ଼ଲାଟ ଲର୍ଡ଼ ଇରଉଇନ Switzerland of India ବୋଲି କହିଥିଲେ ଓ Little paradise ବୋଲି କହିଥିଲେ । ଦ୍ୱିତୀୟ ମହା-ଯୁଦ୍ଧ କାଳରେ ମଣିପୁରକୁ ସେ ଆସିଥିଲେ, ନେହେରୁ ମଧ୍ୟ ଆସିଥିଲେ । ସେମାନେ ପରସ୍ପରକୁ ମଣିପୁର ସମ୍ବନ୍ଧେ ଏକଥା କହିଥିଲେ । ମଣିପୁର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଉତ୍କୃଷ୍ଟ ଓ ଆକର୍ଷଣୀୟ । ଏହାର ସୌନ୍ଦର୍ଯ୍ୟ ଦେଖାଇବା ପାଇଁ କୌଣସି 'ଗାଇଡ୍'ର ଦରକାର ହୁଏନା । ଏହା ସରଳ ଭାବରେ ପରିବ୍ୟାପ୍ତ । ସୂର୍ଯ୍ୟରଶ୍ମିରେ ଉଜ୍ଜ୍ୱଳିତ ପାହାଡ଼ଚୂଳ, ସବୁଜଶସ୍ୟ-ଭରା ଜମି, ନୀଳ ପାହାଡ଼, ହ୍ରଦ, ନଦୀସବୁ ଆକର୍ଷଣୀୟ । ପାହାଡ଼ର ରୁକ୍ଷ କର୍କଶତା ଓ ସମତଳ ଭୂମିର କମନୀୟ ଉର୍ବର ସରସତା, ବିଭିନ୍ନ ବନ୍ୟଜାତି ବିଭିନ୍ନ ଧର୍ମ, ବିଭିନ୍ନ ଭାଷା ଲୋକଙ୍କ ବର୍ଣ୍ଣାଢ୍ୟ ପୋଷାକ ଓ ପାହାଡ଼ ଲୋକ ତଥା ସମତଳ ଭୂମିର ଲୋକଙ୍କ ମିଳିତ ଜୀବନ ଓ ସହାବସ୍ଥାନ ବଡ଼ ଆକର୍ଷଣୀୟ । ବାହାର ଲୋକଙ୍କୁ ମଣିପୁର ଲୋକଙ୍କ ବିଚିତ୍ର ବେଶ, ପ୍ରକୃତି ଓ ଲୋକଚଳଣି ଅଭିଭୂତ କରେ । ଏଠାର ଲୋକେ ସଦାନନ୍ଦମୟ । ମଣିପୁର ଅର୍ଥ ମଣିମୟ ଦେଶ । ଏହାର ଶିଳ୍ପ କଳାମାଧୁରୀ ଓ ମଣିପୁରୀ ନୃତ୍ୟ ଭିତରେ ବିଶିଷ୍ଟତା ରହିଛି । ମଣିପୁର ଲୋକଙ୍କ ଭିତରେ ନୃତ୍ୟ ବାଦ୍ୟ ସଙ୍ଗୀତ ଗ୍ରଥିତ । ମଣିପୁର ନାଚ ଖୁବ୍ ସୁକୁମାର କୋମଳ, ମୁଦ୍ରା-ଭଙ୍ଗୀମାଯୁକ୍ତ । ବୁଢ଼ା ଓ ପିଲା ସମସ୍ତେ ନୃତ୍ୟକୁଶଳ ଓ ନୃତ୍ୟରେ ଆନନ୍ଦ ପାଆନ୍ତି । ଆଦିବାସୀମାନେ ମଧ୍ୟ ବିଭିନ୍ନ ଦେଶର ବିଭିନ୍ନ ନୃତ୍ୟ କରନ୍ତି । କେନ୍ଦ୍ର ସରକାରଙ୍କ ସଙ୍ଗୀତ ନାଟକ ଏକାଡେମୀ ମଣିପୁରରେ ୮ ଲକ୍ଷ ଟଙ୍କାରେ ଗୋଟିଏ ନୃତ୍ୟ ସଙ୍ଗୀତ ସ୍କୁଲ କରିଛନ୍ତି । ଏହା ସୁନ୍ଦର, ପରିଚ୍ଛନ୍ନ ଓ ରୋଚକ । ଏହା ପରିଷ୍କାର ଭାବରେ ରଖାଯାଇଛି । ଭେଲଭେଟ ପର୍ଦା । ଛଡ଼ା କି ଆଲୁଅ ଭଙ୍ଗୀ, ଚୌକି ମଇଳା ନୁହେଁ, ଏହି ନୃତ୍ୟ କଲେଜରେ ଛାତ୍ରଛାତ୍ରୀ ନୃତ୍ୟଗୀତ ଶିଖନ୍ତି । ଏହି କଲେଜରେ ଲାସ୍ୟନୃତ୍ୟ ଓ ତାଣ୍ଡବନୃତ୍ୟ ଶିକ୍ଷା-ହୁଏ । ଲୋକନୃତ୍ୟ, ଶାସ୍ତ୍ରୀୟ ନୃତ୍ୟ, ଆଧୁନିକ ନୃତ୍ୟ ସବୁ ନୃତ୍ୟ ଭକ୍ତି ଧର୍ମ ପ୍ରକାଶକ । ସମସ୍ତେ ଏଠାରେ ଚିତା ତିଳକ ଲଗାନ୍ତି । ହରି ନାମ କରନ୍ତି । ପାନ ଖା'ନ୍ତି-ନାଚନ୍ତି-କୁଦନ୍ତି-ଗାଆନ୍ତି-ବଜାନ୍ତି-କାମ କରନ୍ତି । ଖମ୍ବାଖୋଇବି ନାଚ, ଲିହାରୋବା ନାଚ, ମାଇବି ନାଚ, ଲାଇମାଯୋଗଇ ନାଚ ଏପରି ବହୁନାଚ ଓ କୀର୍ତ୍ତନ

ଅଛି । ଏମାନଙ୍କ ସାଂସ୍କୃତିକ ପରମ୍ପରା ଅତି ପ୍ରାଚୀନ । ଖମ୍ବାଖୋଇବ ନାଚକୁ ଆଧୁନିକ ମଣିପୁରୀ ନାଚ କହନ୍ତି । ଆଦିବାସୀମାନେ ମଧ୍ୟ କାବୁଇନାଗା, ଟାଂଖୁଲ ନାଗା, ମାଓନାଗା ବିଭିନ୍ନ ପ୍ରକାର ନାଚ କରନ୍ତି । କୁକୀ ଜାତିର ନାଚ ସୁନ୍ଦର ଓ ଆକର୍ଷଣୀୟ ଏବଂ ବଳିଷ୍ଠ । ଏମାନେ ନିଜ ନିଜ ବନ୍ୟ ଜାତୀୟ ପୋଷାକ ପିନ୍ଧି ନାଚନ୍ତି । କୀର୍ତ୍ତନଦଳ ମଧ୍ୟ ପଗଡ଼ି ଭିଡି ଖୋଳ ଧରି କୀର୍ତ୍ତନ କରନ୍ତି ।

ବିଚିତ୍ରାଗୃହର, ବେତ ନିର୍ମିତ ମଣିପୁରୀ ଓଢ଼ଣୀ ଶାଢ଼ୀ ଗାଉନ ଖେସ୍, ହାତିଦାନ୍ତର ବହୁ ଜିନିଷ ଭାରତର ସବୁଆଡ଼କୁ ମଣିପୁରରୁ ଯାଇ ବିକ୍ରି ହୁଏ । ମଣିପୁର ରାଜ୍ୟ କେନ୍ଦ୍ର ସରକାର ଭାରତରେ ମିଶାଇବା ପରେ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା । ଶିକ୍ଷା କ୍ଷେତ୍ରରେ ମଣିପୁର ପ୍ରଗତି ଦେଖି ବିସ୍ମିତ ହେବାକୁ ହୁଏ । ୧୯୫୧ ସାଲରେ ଶତକଡ଼ା ୧୦, ୧୯୭୧ ସାଲରେ ଶତକଡ଼ା ୩୩ ଶିକ୍ଷିତ ହୋଇଥିଲେ । ଭାରତରେ ଏହା ଏକମାତ୍ର ସ୍ଥାନ ଯେଉଁଠି ଶତକଡ଼ା ୧୦୦ ପିଲା ସ୍କୁଲକୁ ଯାଆନ୍ତି । ଶିକ୍ଷା ଅଷ୍ଟମ ଶ୍ରେଣୀଯାଏ ପିଲାମାନଙ୍କୁ ବିନା ବେତନରେ ଦିଆଯାଏ ।

ମାଟ୍ରିକୁଲେଶନ ପାଠ ମାଗଣା ଆଦିବାସୀ ପିଲାଙ୍କୁ ଓ ଆଦିବାସୀ ଜାତୀୟ ଛାତ୍ରଛାତ୍ରୀଙ୍କୁ ପଢ଼ାଯାଏ । ପଶ୍ଚିମ ଭାରତୀୟ ଭାଷାମାନଙ୍କ ଭିତରେ ମଣିପୁରୀ ଭାଷା ତୃତୀୟ ସ୍ଥାନ ଅଧିକାର କରେ । ପ୍ରଥମ ବଙ୍ଗଳା ଦ୍ୱିତୀୟ ଆସାମୀ ଭାଷା ପରେ ମଣିପୁରୀ ଭାଷା ଗୃହୀତ । ହିନ୍ଦୀ-ଇଂରାଜୀ ଭାରତର ବୃହତ୍ ଭାଷାପରି ମଣିପୁରୀ ଅଞ୍ଚଳର ସମସ୍ତଙ୍କ ଭାଷା । ଦ୍ୱିତୀୟ ମହାଯୁଦ୍ଧ ପରେ ମଣିପୁରୀ ଭାଷା ଖୁବ୍ ଉନ୍ନତି ଲାଭ କରିଛି । ରାମାୟଣ ମହାଭାରତ, ଭାଗବତଗୀତା ଋଗ୍‌ବେଦ ଓ ବହୁ ପୁରାଣ ସଂସ୍କୃତ ବହି ମଣିପୁରୀ ଭାଷାରେ ଅନୁବାଦିତ । ମୂଳ ସଂସ୍କୃତ ସହ ମଣିପୁରୀ ଅନୁବାଦ କରା ହୋଇଛି । ମଣିପୁରୀ ପୁରୁଣା ପୋଥିରେ ବହୁ ଶାସ୍ତ୍ର ପୁରାଣ ରହିଛି । ଇତିହାସ, କବିତା, ଦର୍ଶନ ଆଲୋଚନା, ନବିଦ୍ଧ ପ୍ରବନ୍ଧ, ପ୍ରଶସ୍ତି ଗଣିତ ଜ୍ୟୋତିଷ ମୈତେୟୀ ଭାଷା ଲିଖିତ ପାଣ୍ଡୁଲିପି ପୋଥିମାନଙ୍କରେ ଲେଖା ଅଛି । ମୈତେୟୀ ଭାଷାରେ ପାଞ୍ଜି ମଧ୍ୟ ଲେଖାଅଛି ଯାହାକି ଏ ଯାବତ୍ ଚାଲିଛି । ଏହିସବୁ ମୈତେୟୀ ଭାଷା ଲିଖିତ ପୋଥିପତ୍ର ମହାରାଜାଙ୍କ ପ୍ରାସାଦରେ ରକ୍ଷିତ ରହିଛି ।

ଗୋବିନ୍ଦଜୀ ମଣିପୁରବାସୀଙ୍କ ଇଷ୍ଟ ଦେବତା । ପୁରୀଶ୍ରୀ ଜଗନ୍ନାଥଙ୍କ ପରି ମଣିପୁର ଜୀବନଧାରା ମୂଳରେ ଗୋବିନ୍ଦଜୀଙ୍କ କୃପା ବର୍ଷିତ । ଗୋବିନ୍ଦଜୀ ମଣିପୁର ମହାରାଜାଙ୍କୁ ସ୍ୱପ୍ନ ଦେଖାଇ ଆସିଥିଲେ । ରାଜା ଦେଉଳ ତୋଳି ତାଙ୍କ ପୂଜାହେଲା । ଗୋବିନ୍ଦଜୀଙ୍କ ପାଖରେ ଆମ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଅଛନ୍ତି । ଏମାନେ ରଥରେ ବସିଲେ ରଥ-ଯାତ୍ରାରେ ଯାଆନ୍ତି । ଗୋବିନ୍ଦଜୀଙ୍କ ମନ୍ଦିରରେ ଉତ୍ସବ ଲାଗିଥାଏ । ସବୁ ରାଜାଧୀନ । ଆମ ଓଡ଼ିଶାର ସାନ-ଖେମଣ୍ଡି ବା ବଡ଼ଖେମଣ୍ଡିର ଜେମା ମଣିପୁରରେ ବାହା ହୋଇଥିଲେ । ରାଜାଙ୍କୁ ସେ ପସନ୍ଦ ନ କରି କାନ୍ଦି କାନ୍ଦି ବନାରସ ଆସି ସେଠି ରହି ମରିଗଲେ । ତା' ପରେ ନେପାଳ ଜେମା ବନାରସରେ ମରିଗଲେ । ତା'ପରେ ମଣିପୁର ରାଜା ବାହାହୋଇ ତାଙ୍କର ଏକ ଆଯୋଗ୍ୟ ପୁଅ ଅଛି । ରାଜା ମାସିକ ଭତ୍ତା ପାଆନ୍ତି ଓ ରାଜା ସମ୍ପତ୍ତି ଏବଂ ତାଙ୍କ ପୁଅ ଚିଫ କମିଶନରଙ୍କ ତଳେ କୋର୍ଟ ଅଫ ଜ୍ୱାର୍ଡ୍‌ସ ତଳେ ଅଛି ।

ଲୋକ୍‌ଟାକ ହ୍ରଦ ଆସାମର ମାତ୍ର ମଣିପୁର ସର-ହଦରେ ଅଛି । ଇମ୍ଫାଲରୁ ୨୮ମାଇଲରେ ଦୁଇ ହ୍ରଦ । ବିଷ୍ଣୁପୁର ସବଡିଭିଜନରେ ଏହି ହ୍ରଦ । ଏଠାରେ ମାଛଧରା, ଶିକାରକରିବା, ନୌକା ବିହାର କରି ଲୋକେ ଆସନ୍ତି । ମୋରେ ୬୭ ମାଇଲ ଦୂରରେ । ବର୍ମା ସୀମାକୁ ଲାଗିଛି । ବର୍ମା ୭୦ ମାଇଲ ଦୂର ମଣିପୁରରୁ । ବର୍ମାରେ ଦ୍ୱିତୀୟ ମହାଯୁଦ୍ଧବେଳେ ଓଡ଼ିଆକୁଲିମାନେ ଓଡ଼ିଆ ମିଲିଟାରୀମାନେ ଉଦ୍ଧାର କରିଛନ୍ତି । ଏହା ସେଇ ଯୁଦ୍ଧବେଳେ କଟକରେ

ଜଣେ ମିଲିଟାରୀ ସାହେବ ଜନ୍ମଥିଲେ । ଟେଙ୍ଗନୌପଲ-ଠାରୁ ୪୩ ମାଇଲ, ଏଠାରେ ଦର୍ଶକ ପାହାଡ଼ ଉପରୁ ମଣିପୁର ଦେଖି ପାରିବ । ଦର୍ଶକ ମେଘ ଭିତରେ ଥିବା ପରି ବୋଧକରେ, ମାତ୍ର ପ୍ରାକୃତିକ ବଣ ଭିତରେ ନୁହଁଥାଏ । ମୋଇରାଙ୍ଗ ମଧ୍ୟ ମଣିପୁରର ଏକ ସୁନ୍ଦର ଗାଁ । ୨୮ ମାଇଲ ଇମ୍ଫାଲ୍ । ଖମ୍ବାଥୋଇବୀ ପ୍ରେମ କାହାଣୀ ଏହି ଗାଁରେ ଘଟିଥିଲା । ଖଙ୍ଗଜମ ଏକ ପ୍ରସିଦ୍ଧ ସ୍ଥାନ, ଯେଉଁଠି ସେନାପତି ପାଓନା ଇଂରେଜ ସେନା-ମାନଙ୍କ ସହ ଯୁଦ୍ଧ କରି ୧୮୯୧ରେ ପ୍ରାଣ ଦେଲେ । ସେ ଯୁଦ୍ଧରେ ଦେଶକୁ ପିଠି ଫେରାଇ ନ ଥିଲେ । ଏ ସ୍ଥାନକୁ ମଣିପୁରୀ ଲୋକେ ଏକ ତୀର୍ଥଭୂମି ଭାବନ୍ତି । ମଣିପୁରୀ ଯୋଦ୍ଧାମାନେ ଦେଶରକ୍ଷା ପାଇଁ ଏଠାରେ ପ୍ରାଣ ଦେଇଥିଲେ ।

କୋହିମା:—

ମଣିପୁରଠାରୁ ୮୫ ମାଇଲ ଦୂରରେ କୋହିମା । ଏହା ସେଠାର ନାଗା ମିଜୋ କୁକି ପ୍ରଭୃତି ଆଦିବାସୀ-ମାନଙ୍କ ରାଜ୍ୟ ଓ ରାଜଧାନୀ । ସେଠାରେ ଡେପୁଟି କମିଶନର ଶାସନକାରୀ । ନାଗାମାନେ ଦୁର୍ଦ୍ଦାନ୍ତ । ସେମାନେ ଘୋର ବିଦ୍ରୋହ କରି ନାଗା ରାଜ୍ୟ ଅଲଗା କରି ଶାସିତ ହେଉଛନ୍ତି । ସେମାନଙ୍କର ନିର୍ବାଚନ ମଣ୍ଡଳୀରୁ ପ୍ରତିନିଧିମାନେ ନିର୍ବାଚିତ ହୋଇଛନ୍ତି । ମନ୍ତ୍ରୀ ୩ ଜଣ ରହିଛନ୍ତି ଓ ସେମାନଙ୍କର ଆସେମ୍ବ୍ଲି ସଭାରେ ଦେଶର ସବୁ କାମର ବ୍ୟବସ୍ଥା ହୁଏ । ସେଠାରେ ମଧ୍ୟ ଭାରତ ସରକାର ଏକ ଗଭର୍ଣ୍ଣର ରଖିଛନ୍ତି । ମାତ୍ର ନାଗା ପ୍ରତିନିଧିମାନଙ୍କ ମତନେଇ ସବୁକାର୍ଯ୍ୟ ହୁଏ । ଆମର ଡକ୍ଟର ଆରମ ଓ ଅନ୍ୟ କେତେକ କର୍ମୀମାନେ ସେଠାରେ ରହି ଶାନ୍ତିସେନା ଗଠନ ସଂଗ୍ରହ କରୁଛନ୍ତି । ଶ୍ରୀମତୀ ରାଣୀ ଦେଈ ଡାକ୍ତର ଓ ପୁରୀର କଂଗ୍ରେସକର୍ମୀ ଶ୍ରୀମତୀ ପ୍ରମିଳା ରାୟ ଇମ୍ଫାଲ ମନ୍ତ୍ରୀମାନଙ୍କ ଆନୁକୂଲ୍ୟରେ କୋହିମା ଯାଇ ନାଗାଭୂମି ଦେଖି ଆସିଲେ । ସମୁଦ୍ର ପତନରୁ ୧୦ ହଜାର ଫୁଟ ପାହାଡ଼ ଉପରେ ସେମାନଙ୍କ ଘର । ଜମି, ଗାଈ, ଘୁଷୁରି, କୁକୁଡ଼ା, ଘୋଡ଼ା ସବୁ ଅଛନ୍ତି । ନାଗା ଓ ନାଗା ରମଣୀମାନେ ଅତିଥିପ୍ରିୟ । ସେମାନେ ଘୁଷୁରି ତରକାରୀ ଓ କୁକୁଡ଼ା ତରକାରୀ ଦେଲାରୁ ଓଡ଼ିଆଣୀ ଖାଇଲେ ନାହିଁ । ହାଣ୍ଡି ଆମିଷ ରୁ’ ମଧ୍ୟ ଖାଇଲେ ନାହିଁ, ମାତ୍ର ଡେପୁଟି କମିଶନର ଦମ୍ପତି କୁକୁଡ଼ା ସିଝା ଖାଇଲେ । ସେମାନେ ସବୁ ସିଝାଇ ଖାଆନ୍ତି । ତେଲ ଖାଆନ୍ତି ନାହିଁ । ଲୁଗା ଗୁଦର ସେମାନେ ଯାହା ବୁଣିଥାନ୍ତି ଅତିଥିମାନଙ୍କୁ ଉପହାର ଦିଅନ୍ତି । ସେମାନେ ପରସ୍ପର ଗାଁରେ ଯୁଦ୍ଧକରି ନିଜର ଗୌରବ ଦେଖାଇବାକୁ ଶତ୍ରୁମୁଣ୍ଡ କାଟି ଘରେ ଟଙ୍ଗାଇ ରଖନ୍ତି । ସବୁଗାଁର ରଜା ବା ବେହେରା ଅଛନ୍ତି । ହଜାର ହଜାର ଗାଁ । ଆଗେ ଇଂରେଜ ରାଜାଙ୍କୁ ସେମାନେ ଘର ପିଛା ଟ ୩୧ ଦେଉଥିଲେ । ଏହାଛଡ଼ା ସରକାରୀ ନିୟମ ଶାସନ କିଛି ଜାଣୁ ନ ଥିଲେ । ସେମାନେ ୫ ୬ ମାଇଲ ଦୂରକୁ ଯାଇ ଜମି ଚଷନ୍ତି । ସମସ୍ତେ ଯୋଦ୍ଧା । ଏବେ ଖ୍ରୀଷ୍ଟାନ ମିଶନାରୀମାନେ ସେମାନଙ୍କ ଗାଁରେ ପଶି ସେମାନଙ୍କୁ ଖ୍ରୀଷ୍ଟାନ କରି ପଢାଉଛନ୍ତି, ଚିକିତ୍ସା କରୁଛନ୍ତି ଓ ଆଧୁନିକ ଇଂରାଜି ଶିକ୍ଷା ଦେଉଛନ୍ତି ।

କେନ୍ଦ୍ର ସରକାର କର୍ମଚାରୀ ଆମର ଓଡ଼ିଶାର ଶ୍ରୀ ରମାରଞ୍ଜନ ମହାନ୍ତି ନାଗାଙ୍କ ଭିତରେ ଶାନ୍ତି ରଖିବା ଓ ଭାରତ ଦ୍ରୋହ ନ କରି ଭାରତବର୍ଷକୁ ଜନ୍ମଭୂମି ଭାବିବା ଦିଗରେ ନାଗାମାନଙ୍କୁ ଶିକ୍ଷାଦେଇ ଲାଗିଲେଣି । ଏବେ ସେମାନେ ସେମାନଙ୍କ ଜାତିର ଲୋକଙ୍କୁ ଦେଶଦ୍ରୋହୀଙ୍କୁ ଦଣ୍ଡ ଦେଉଛନ୍ତି ଓ ସବୁ ଖବର ଇମ୍ଫାଲ ଗୁପ୍ତ ପୁଲିସମାନଙ୍କୁ ଦେଉଛନ୍ତି । ସେମାନେ ମଝିରେ ୨ କୋହିମାରୁ ଇମ୍ଫାଲକୁ ଆସି ମଣିପୁରରେ ଲୁଟ ତରାଜ କରିଯାନ୍ତି । ପୁଲିସ ଡର କି ଦଣ୍ଡ ଡର ତାଙ୍କ ଜାତିରେ ନାହିଁ । ଏମାନେ ଏବେ ସରକାରୀ ଶିକ୍ଷା ଗ୍ରହଣ କରି ଗ୍ରାଜୁଏଟ ହେଲେଣି । ବହୁ ଅଫିସରେ ଚାକିରୀ କଲେଣି । ଅନ୍ୟ ପ୍ରାନ୍ତର ଦେଶୀ ଲୋକ ପ୍ରବେଶ କରିବାରେ ସେମାନେ ବିରୋଧ କରନ୍ତି ।

ମଣିପୁର ଓ ନାଗାଲାଣ୍ଡର ୮ ଲକ୍ଷ ଲୋକଙ୍କ ପାଇଁ କେନ୍ଦ୍ର ସରକାର ବର୍ଷକୁ ୨୦ କୋଟି ଟଙ୍କା ଖର୍ଚ୍ଚ କରି ସେମାନଙ୍କୁ ମନେଇ ଚଳୁଛନ୍ତି । ମଣିପୁର କୋହିମା ଅଞ୍ଚଳ କେନ୍ଦ୍ର ଶାସିତ ।

———

# ଆମେ ଡମରି ଭାଇ

ସୁବଳ ବଷୋୟୀ, କୋରାପୁଟ

ଆଦିବାସୀ ଆମେ ଆଦିମ କାଳରୁ, ରହିଛୁ ଏ ବନ ଭୂଇଁରେ
ଗ୍ରେଷ୍ଟିଆ ଆମର ରହିବା ଘରଟି
ଗାଁଆଟି କଟିଛୁ ଜଙ୍ଗଲକୁ କାଟି
ସମ୍ପତ୍ତି ଆମର କୋଦାଳ, ଟାଙ୍ଗିଆ, ବଞ୍ଚିବାରେ ଭୟ ନାହିଁରେ । ୧ ।
ଫଳ, ମୂଳ ଖାଇ ବନରେ ଯେ ରହି
ଲେଙ୍ଗୁଟି ପିନ୍ଧଣ ଆମ ଧନ ଯାଇ
ଧୂର୍ତ୍ତ ପିନ୍ଧା ଲୋକ ଦେଖୁଥିଲେ ଆମେ, ଘର ଛାଡ଼ି ଦେଇ ଯାଉରେ । ୨ ।
ମନ୍ତ୍ର, ଯନ୍ତ୍ର, ତନ୍ତ୍ର-ସାଧିଅଛୁ ଆମେ
ଅନେକ ଔଷଧ ଅଛି ଏହି ବନେ,
ରୋଗ କି ବେମାର ଆମଘରେ ହେଲେ, ନ ଯାଉ ବଇଦ ପାଇଁରେ । ୩ ।
ଆସିଲା ଭାଗ୍ୟକୁ ସ୍ୱରାଜ୍ୟ ଆମର
ପାଇଲୁ ସୁବିଧା ଅନେକ ପ୍ରକାର
ଆଦିବାସୀଙ୍କର ଉନ୍ନତି ପାଇଁ କି, ଗ୍ରାମମଙ୍ଗଳ ବିଭାଗରେ । ୪ ।
ଆମ୍ଭେ ତ ଆଦ୍ୟରୁ ଅଶିକ୍ଷିତ ଲୋକ
ସରକାର ଦେଲେ ଆମ୍ଭଙ୍କୁ ଶିକ୍ଷକ
ପଢ଼ୁଛନ୍ତି ପାଠ ଆମ୍ଭ ପୁଅ, ଝିଅ, ଖୋଲିଲା ଆମର ଭାଗ୍ୟରେ । ୫ ।
ଆମର ସୁବିଧା ପାଇଁ ସରକାର
ରଖିଲେ ସ୍ୱତନ୍ତ୍ର ବିଭାଗ ଆମର
ଖାଇବାକୁ ଦାନା ପିନ୍ଧିବାକୁ କନା, ଆମ୍ଭଙ୍କୁ ଯୋଗାଉଛନ୍ତିରେ । ୬ ।
ପ୍ରାଥମିକଠାରୁ, ମାଧ୍ୟମିକ ଶିକ୍ଷା
ହାଇସ୍କୁଲେ ପଢ଼ି, କଲେଜେ ଅପେକ୍ଷା
କଲେଜଟି ଆମ ଭାଗ୍ୟକୁ ଜୁଟିଲେ, ଆମ ଦୁଃଖ ଦୂର ହେବରେ । ୭ ।
ପଢ଼ା ସାରି ଆମେ ଚାକିରି କରିବୁ
ଆଉ କେତେ ଭାଇ ସେବାରେ ଲାଗିବୁ
ଆଦିବାସୀଙ୍କର ଉନ୍ନତି କରିବୁ, ରଖିବୁ ଆମର ଟେକରେ । ୮ ।

— * —

# ॥ ପତରପାଣି ପସରପାଟ୍ ॥

ପତ୍ରୁଆନନ୍ଦ

ମଧୂଆ ଘୋଇ ଘରୁ ହଠାତ୍ କାନ୍ଦକାନ୍ଦିଆ ରଡ଼ି ଛୁଟି ପଡ଼ିଲା । ଯାଣ୍ଟ ତରକାରିରେ ପ୍ରତ୍ୟେକ ପରିବା ଯେପରି ନିଜ ନିଜ ସ୍ୱାଦର ବିଶେଷତ୍ୱ ହରାଇ ଏକ ପ୍ରକାର ନୂତନ ସ୍ୱାଦ ସୃଷ୍ଟି କରନ୍ତି, ମଧୂଆ ଘୋଇ ଘରୁ ଉଠୁଥିବା ବିଭିନ୍ନ ଧ୍ୱନିସବୁ ଗୋଟିକିଆ ହୋଇ ଯାଇ ଏକ ଅଦ୍ଭୁତ ଓ ଅବୋଧ୍ୟ ନୂତନ ଧ୍ୱନି ସୃଷ୍ଟି କରୁ ଥାଆନ୍ତି । ସେହି ଧ୍ୱନି ଭିତରୁ ଅଂଶ-ଧ୍ୱନି-ଗୁଡ଼ିକର ଅଲଗା ଅଲଗା ସତ୍ତା ଅନୁଭବ କରିବା ଅସମ୍ଭବ ଥିଲା । ବାଉରି ସାହିର ସମସ୍ତେ ସିଆଡ଼େ କାନ ଡେରିଲେ । ମଧୂଆ ସାନଭାଇ ସାଧୂଆ ପଦାକୁ ବୋଧହୁଏ କୁଆଡ଼େ ଯାଇଥିଲା । ସେ ତରବର ହୋଇ ଘରକୁ ପଶିଗଲାପରେ ସବୁ ଧ୍ୱନିକୁ ମାଡ଼ି ପକାଇ ଏକ ଏବଂ ଭୟଙ୍କର ସିଂହରଡ଼ି ଶୁଭିଲା—"ମୋ ବୃଆଲେ ମୋତେ ଛାଡ଼ିଦେଇ କୁଆଡ଼େ ଗଲୁ ଲେ, ମୁଁ କଅଣ କରିବି ଲେ ।"

ସାଧୂଆର ମେଘରଡ଼ି ସହିତ ସମସ୍ତେ ପରିଚିତ । ଗାଏ ବାଟରେ ଥିବା ପଧାନ ଘର ବିଲରେ ସେ ହଳ ପକାଉ ପକାଉ ଯେତେବେଳେ ହାଙ୍କିଦିଏ "ହ ହ-ହ- ଡ଼ି-ଡ଼ି ଡ଼ି-ହ' ଗୋସେଇଁଖିଆ ମାଣ୍ଡଉଛି" ସେତେବେଳେ ସେ ରଡ଼ି ବାଉରିସାହିର ଆବାଳ-ବୃଦ୍ଧ-ବନିତା ସମସ୍ତେ ପରିଷ୍କାର ଶୁଣି ପାରନ୍ତି । ଆଜିର ରଡ଼ି ଶୁଣି ସମସ୍ତେ ଜାଣିଗଲେ ଯେ ମଧୂଆ-ସାଧୂଆର ୧୧୫ ବର୍ଷର ବୁଢାବାପ ଚାଲିଗଲା ।

ରଡ଼ି ଆଉ ମନ ଟାଣି ଆଣି ସମସ୍ତେ କଳ୍ପନା ଜଳ୍ପନାରେ ଲାଗିଗଲେ । କିଏ କହିଲା "ଆରେ ବୁଢ଼ାଟାକୁ କାଲି କୋଦାଳରେ ଶାଗ ପଟାଳିଟା ହାଣୁଥିବାର ଦେଖିଥିଲି, ଆଜି ଦେଖିଲୁ ବେଳକୁ ଠୋ !" କିଏ କହିଲା-"ଆହେ ଶହେ ପନ୍ଦର ବର୍ଷରେ ସେ ନଡ଼ିଆ ଋନ୍ଧୁଥିଲା ହେ । ବୁଢ଼ାକୁ କଅଣ ଉଣା ସମୁଝି ଥିଲ କି !" କିଏ କହିଲା "ସେଇଟାକୁ ବୁଢ଼ା କିଏ କହିବ ମ, ମଧୂଆ ସାଧୂଆଙ୍କ ମୁଣ୍ଡ ଝୋଟ କେତେବେଠୁଁ ହେଲାଣି, ହେଲେ ତା' ମୁଣ୍ଡରେ ଏବେ ବି ଦର୍ପଣ କଳାବାଳ ଦିଶୁଥିଲା ।" ଆଉଜଣେ କହିଲା "ବୁଢ଼ାଟା ଖୁସିରେ ଚାଲିଗଲା । ଝାଡ଼ା ନାହିଁ, ବାଧିକ ନାହିଁ, ଠୋ । ପୁଣ୍ୟବନ୍ତଟାଏ ଏକା !"

ଏମିତି ଚର୍ଚ୍ଚା ଚାଲିଥିଲାବେଳେ ବେହେରା (ଜାତିରମୁଖ୍ୟ) ସେହିଠାରେ ଆସି ପହଞ୍ଚିଲା । ଉପସ୍ଥିତ ବାଉରିମାନେ ଏକାବେଳେକେ କହି ଉଠିଲେ "ବେହେରାଏ ମଧୂଆ ବୋପା ଚାଲିଗଲା । ବେହେରା ଟିକିଏ ଗୁମ୍‌ଖାଇ ପଚାରିଲା "କେମିତିଗଲା ?"

ଜଣେ ଖୁବ୍ ଭାବରିତ୍ତ କୁନ୍ଥୁ କୁନ୍ଥୁ ହୋଇ କହିଲା-"ରୋଗ ନାହିଁ ବଇରାଗ ନାହିଁ ସଜ ମଣିଷଟା, ଦେଖିଲୁ ବେଳକୁ ଠୋ । ଜନ୍ତୁ ଦଂଶିବା ଛଡ଼ା ଇଏ ଆଉକିଛି ନୁହେଁ ।" ବେହେରା କଥାଟାକୁ ଓଜନ କରୁଥିବାବେଳେ, ସମସ୍ତେ ଦେଖିଲେ ଆଦ (ସହକାରୀ ବେହେରା) ମଧୂଆ ଘୋଇ ଘରଆଡ଼ୁ ଧପାଇଛି । ସମସ୍ତଙ୍କ ପ୍ରଶ୍ନବାଚୀ ମୁଖ ତାରି ଆଡ଼କୁ ହୋଇଗଲା । ଆଦ ପାଖରେ ଆସି ପହଞ୍ଚିବା ମାତ୍ରେ କାହାରି ପ୍ରଶ୍ନକୁ ଅପେକ୍ଷା ନ କରି ଅନର୍ଗଳ କହି

ଘୂଲିଗଲା—"ହଜାରେ ଯିଏ ଯାହା କହୁ ମୁଁ କହୁଛି ଏଇଟା ହାର୍ଡଫେଲ୍ (ହାର୍ଟଫେଲ୍)। ବୁଢ଼ାଟା କାଲି ଶାଗ ପଖାଳ ଭୋଜନରେ ହାଣିଛି। ଆଜି ସକାଳ-ଠାରୁ ଝାଡ଼ା ଝିପଟ ଯାଇ, ଗାଧୋଇ ପାଧୋଇ ଆସି ବସିଛି। ଭୋଡ଼ଟା ପଖାଳ କଂସା ଆଣି ଦେଖେ ତ ବୁଢ଼ା ଗୁମ୍। ଜନ୍ତୁ ଦଂଶିଥିଲେ ବୁଢ଼ା ଅବଶ୍ୟ ଜାଣି ପାରିଥାନ୍ତା, ଜନ୍ତୁ ଦଂଶିଲା ବୋଲି କହି ଥାଆନ୍ତା। କିନ୍ତୁ କୁଆଡ଼ୁ ନାହିଁ ଦେଖିଲା ବେଳକୁ ଗୁମ୍। ଠିକ୍ ଏମିତି ଗଦେଇ ମହାକୁଡ଼ ଯାଇଥିଲା। ଡାକ୍ତର ଆସି ନାଡ଼ ଚିପା ଚିପି କରି କହିଲା—ହାର୍ଡଫେଲ, ମୁଁ ନିଜେ ଶୁଣିଛି। ଯିଏ ଯାହା କହୁ ମୁଁ ଶୁଣି ଯିବନି। ଇଏବି ହାର୍ଡଫେଲ ଛଡ଼ା ଆଉକିଛି ନୁହେଁ।"

ଥାନର ଅକାଟ୍ୟ ଯୁକ୍ତି ପାଖରେ ସମସ୍ତେ ମୁଣ୍ଡ ନୁଆଁଇଲେ। କିଏ ନୁଆଁଇ ଥାନ୍ତା କି ନାହିଁ, ବେହେରା ଯେତେବେଳେ 'ହଁ' ଉଚ୍ଚାରିଲା ସେତେ-ବେଳେ ଆଉ 'ନା' କରିବ କିଏ! ମଧୁଆ ଭୋଇର ୧୧୫ ବର୍ଷ ବୟସ୍କ ବୁଢ଼ାବାପ ହାର୍ଡଫେଲ୍‌ରେ ମଲା ଯାଇଥିବା କଥା ସର୍ବସମ୍ମତିକ୍ରମେ ସ୍ଥିର ହୋଇ-ଗଲା।

ସାହିର ସବୁ ନେଣ୍ଟର ବେହେରା ମୁଣ୍ଡରେ। ଇଚ୍ଛା ନ ଥିଲେ ବି କର୍ତ୍ତବ୍ୟ ଛାଡ଼ନାରେ ବେହେରା, ଥାନ ଆଉ ଆଖ ପାଖିଆ କେତେଜଣଙ୍କୁ ନେଇ ମଧୁଆ ଭୋଇ ଘରକୁ ଗଲା। ଘର ଭିତରକୁ ପଶିଯାଇ ସମସ୍ତେ ଦେଖିଲେ ବୁଢ଼ା ଶୋଇଯାଇଛି। ପାଟିଟା ମେଲାହୋଇ ଯାଇଛି। ଧଳା ଧଳା ଡାଣ୍ଡୁଆ ଦାନ୍ତ-ଗୁଡ଼ାକ ପଦାକୁ ନେସେଡ଼ ହୋଇଯାଇଛି। ଗୋଟିଏ ହେଲେ ବି ପଡ଼ନି। ଆଖି ଦିଟା ବୁଜି ହୋଇ ଯାଇଛି। ମୁହଁଟା କେମିତିଆ ଗୋଟାଏ ଅବାଗିଆ ହୋଇ ଦେଖାଯାଉଛି। ମଧୁଆ ଭୁନହୋଇ କୋପା ମୁଣ୍ଡ ପାଖରେ ବସିଛି। ମୁହଁ ଶୁଖିଲା, ହେଲେ ଆଖିରେ ଲୁହ ନାହିଁ। ହେଲେ ଏକା ସାଧୁଆ ବାଇଶିପଳ। ଏମାନଙ୍କୁ ଦେଖି ତା ରଡ଼ିର ପ୍ରଖରତା ଏକାବେଳକେ ଦୁଇଗୁଣ ବଢ଼ିଗଲା। "ଇଲେ ମୋ ବୃଆଲେ" ବୋଲି ଯେତେବେଳେ ସେ କୁହାଟି ଦେଉଥାଏ, ସେତେ-ବେଳେ ସମସ୍ତଙ୍କ କ୍ଷୀଣ ଝାଇଁ ଝାଇଁ ହୋଇଯାଉଥାଏ। କାନ ଗିଲ ଏକାବେଳକେ ଫାଟେ କି ନ ଫାଟେ। ଗୋଟାଏ ଗୋଟାଏ ଝିଲକା ତୋଫାନ ଯେପରି ଆଗରେ ଥିବା କାଠି କୁଟା, କାଗଜ, ଧୂଳା ସବୁକିଛି ଉଡ଼େଇ ନେଇ ନିଶ୍ଚିହ୍ନ କରିଦିଏ, ବେହେରା, ଥାନ ଆଉ ଅନ୍ୟାନ୍ୟମାନଙ୍କର ଆଶ୍ୱାସନା ସବୁ ସାଧୁଆର ଗୋଟିଏ ଗୋଟିଏ 'ଇଲେ ମୋ ବୁଆ କୁଆଡ଼େ ଗଲୁରେ' ରଡ଼ିରେ ନିଶ୍ଚିହ୍ନ ହୋଇ ଯାଉଥାଏ। ସାଧୁଆ ଟିକିଏ ଥକି ଯିବାରୁ ଦୁଇ ରଡ଼ି ମଝିରେ ବେହେରା ଝଗ-କାଟିଆ ରଡ଼ିକରି କହିଲା—"ହଇରେ ମାଇଚିଆ! ବୋପା ତ ୧୧୫ ବର୍ଷ ବଞ୍ଚିଲା, ଆଉ କେତେଦିନ ବଞ୍ଚିଥାଆନ୍ତା ସେ କଅଣ ଅମର ନଡ଼ ଖାଇଥିଲା ଯେ ଯୁଗ ଯୁଗକୁ ବଞ୍ଚି ରହିଥାଆନ୍ତା। ତମେ ଦିହେଁ ତ ଅଶୀ-ନବେ ଛୁଇଁଲ, ଆଉ ୧୧୫ ବର୍ଷର ବୁଢ଼ାକୁ ଝୁରି ହେଉଛ କାହିଁକି?" ଥାନ ବି ତା ସାଙ୍ଗରେ ଯୋଖିଦେଲା "ଆରେ ମଣିମଣ୍ଡଳେ ଦେହ କହି, ଦେବତା ହୋଇଲେ ମରଇ। ଏଥିକୁ ଏତେ ଦୁର୍ନସୁ କାନ୍ଦଣା କାହିଁକି? ତଳ ବରଡ଼ା ଖସିଗଲା। ଆଉକୁ ଆମେ ଉପର ବରଡ଼ା ସବୁ ଗୋଟିଏ ଗୋଟିଏ ଖସିବା। ସବୁକିଛି ଜାଣିଶୁଣି ଏପରି କାନ୍ଦୁଛ କାହିଁ? ଆରେ ଇଏ କାନ୍ଦିଲା ସମୟ ନୁହେଁ। ଏବେ ଉଠେଇବା ଯୋଗାଡ଼ରେ ଲାଗିଯା।"

କାନ୍ଦକୁ ଥାପୁଡ଼େଇଲେ କାଳ ବଢ଼େ, ଛୁଗୁଲେଇଲେ କମେ। ବେହେରା ଓ ଥାନର କଡ଼ା-କଡ଼ କଥାଶୁଣି ସାଧୁଆ ଚହଟ୍ ଭୁନ ପଡ଼ିଗଲା। ଆଖି ଦିଟା ପୋଛୁବା ସଙ୍ଗେ ସଙ୍ଗେ ଲୁହଧାର ଶୁଖି-ଗଲା। ମଧୁଆ ଆଉକୁ ଗୁଳିଁବା ପାଇଁ ସେ ଉଠିପଡ଼ି କହିଲା—"ଆଉ ଡେରିକରି ଲାଭ ନାହିଁ, ଏଥରଯା ଜାତଭାଇଙ୍କି ଡାକିଆଣି କାମ ବଢ଼େଇଦେବା।"

ଗୃହ କାମକୁ ବାହାରିଲା ସାଧୁଆ ଝାଡ଼ଝୁଡ଼ ହୋଇ, ମଡ଼ାଉଠା ଓ ଶବ ସତ୍କାର କାମଟା ସହଳ ସହଳ ଯେମିତି ହୋଇଯିବ ସେଇ ବ୍ୟବସ୍ଥାରେ ଲାଗିପଡ଼ିଲା । ବେହେରାଠାରୁ ଛୁଟିଗଲା ପଦ ଶୁଣିଲା ବେଳଠୁଁ ତାର ଆଉ ଟିକେ ହେଲେ ଦୁଃଖ ମନରେ ନ ଥିଲା । ଘର ପୁଣି, ଘର ମନଫୁଲଣିଆ ଓ ଆଗ୍ରହରେ ତାକୁ ଏପାଖ ସେପାଖ ହେଉଥିବାର ଦେଖି କେତେ-ଜଣ ଫୁସୁ ଫୁସୁ ହୋଇ ଥଟ୍ଟାକଲେ—"ଆରେ ସାଧିଆଟା ପୁଅ ବାହାଘରରେ ଲାଗିପଡ଼ିଛି ନା କଅଣ ।" ହେଲେ କୁଆଡ଼କୁ ନଜର ବା କାନ ନ ଦେଇ ସାଧିଆ ନିଜ କାମରେ ଲାଗିଥାଏ । ମଧିଆ ପୋତା ଘଡ଼ିରୁ ଯେଉଁ ଦଶଟଙ୍କା କାଢ଼ି ତା ହାତରେ ଦେଇଥିଲା ତାକୁଇ ବାଞ୍ଛାସାହୁ ଦୋକାନରେ ପକାଇ ଦେଇ କହିଲା— "ସାହୁଏ ମଡ଼ାଉଠା ସଉଦା ଦିଅ ।" ବାଞ୍ଛାସାହୁ ପୁଅ ବିଚରା ସାଧିଆକୁ ଟିକିଏ ସହାନୁଭୂତି ଦେଖାଇବାକୁ ଯାଇ ଦି ଘରର ପଦ ଦୁଃଖ ସୁଖ ହୋଇଛି କି ନା ବାଞ୍ଛାସାହୁର ଖିଙ୍କାରି ଶୁଣିଲା । "ଆବେ ଗପସପ ହେଉଛୁ କଅଣ ଜଲଦି ସଉଦା ଦେ । ତେଣେ ମଡ଼ା ଉଠେଇବା ଡେରି ହୋଇଯିବ । କଅଣ ଖେଳଘର କଥା ହୋଇଛି କି ? ଦେ ଦେ ସଉଦା କାଢ଼ ମୁଁ ବଢ଼ଉଛି । ହୁଁ—ଦେ ଯୋଡ଼ାଏ ଡେଲଙ୍ଗି, ଗୋଟାଏ ପରୁଡ଼ ମସିଣା, ଗୋଟାଏ ମାଠିଆ, ମଡ଼ା ପିନ୍ଧା ଧୋତି ଓ କଣିଆରୁ ଗୋଟାଏ ଲେଖାଏଁ । ହାଣ୍ଡିଗୋଟାଏ, କାଠବଡ଼ାଏ, ଝଇ ଶହେ, କଉଡ଼ି ଦୁଇଶହ, ଅରୁଆଚାଉଳ ଦୁଇଶହ, ସାରୁ-କଦଳୀ ଗୋଟାଏ ଲେଖାଏଁ, ଏକ ନୂଆ ପଇସା ଶହେଟା, ଘିଅ, ଚନ୍ଦନକାଠ, ଦିଆସିଲି·····

ପୂର୍ବେଇତପରି ବାଞ୍ଛାସାହୁ ସିନା ମୁଖସ୍ଥ ତାଲିକାଟା ଗାଇଗଲା, ହେଲେ ପୁଅର ଏତେ କରାମତି କାହିଁ ! ଅଠର ଥର ପଚାରି ଗୋଟି ଗୋଟି କରି କାଢ଼ିବାରେ ଡେରିହେଲା । ସାଧୁଆ ସଉଦା ମିଳିବାରେ ଡେରି ହେବ ଜାଣି ପାଖରେ ଥିବା ଗୋଟାଏ ଗଛ ମୂଳରେ ବସି ଟିକିଏ ଅଣ୍ଟା ସଳଖେଇଲା ।

ଠିକ୍ ଏତିକିବେଳେ ସାହିରେ ଏକ ଘଣ୍ଟିକିଆ ହୋଇ ରହିଥିବା ମକରା ଭୋଇ ଅସ୍ଥନକ କୁଆଡ଼ୁଁ ଆସି ତାର ପାଖରେ ବସିଲା । ସାହିରେ ତାକୁ ନିଆଁ ପାଣି ବାସନ୍ଦ ଓ ପତିତପାଣି ମନା ଥିଲେ ସୁଦ୍ଧା କଥାବାର୍ତ୍ତା ବନ୍ଦହୋଇ ନ ଥିଲା । ଏତିକି କରାଇବାକୁ ବେହେରାର ସାହସ ହୋଇ ନ ଥିଲା । କାରଣ ଏ କଟକଣାକୁ କେହି ମାନି ନ ଥାନ୍ତେ । ଗଣ୍ଡଗୋଳ ଘଟି ସାହିଟା ଦିଫାଙ୍କିଆ ହୋଇଯାଇଥାଆନ୍ତା । ସାଧୁଆ ପାଖକୁ ଟିକିଏ ଘୁଞ୍ଚିଯାଇ ମକରା ଚୁପୁ ଚୁପୁ କରି କହିଲା —"ଜାଣିଲୁ ସାଧୁଆ ଭାଇ ! ଏ ଶଗୁର ପୁଅ ବେହେରା, ଥାନ, ସଇତା, ଗୋବରା, ପାଣୁଆ ହେରିକା ଠାକୁରଘର ପିଣ୍ଡାରେ ମସୁଧା ଚଳେଇଛନ୍ତି ଯେ ଏଇଥର ତମ ଦୁହିଁଙ୍କୁ ଆଟଣୁଳ ଦେବେ । ଫି କାମରେ ତମେ ଦିହେଁତ ଠାକୁର ଘରକୁ କୋଡ଼ିଏ ଟଙ୍କା ଲେଖାଏଁ ଦେଇ ପତିତପାଣି ପକେଇଲ ନାହିଁ । ଶଗୁରପୁଏ ପାଟି ସୁଆଦ କରି ନ ପାରି ରହାଳି ମହାଳି ହେଉଥିଲେ । ଏବେ ଠିକ୍ କରିଛନ୍ତି ଯେକୌଣସି ମତେ ତମ ଦୁହିଁଙ୍କୁ ପତିତପାଣି ପକେଇବା ପାଇଁ ବାଧ୍ୟ କରିବେ । ଠାକୁର ଘରକୁ କୋଡ଼ିଏ ଟଙ୍କା ଦେଲେ ନେବେନାହିଁ । ବେଶି ଅଡ଼ି ବସିଲେ ଏକଘରିକିଆ କରିଦେବେ । ଏଗୁଡ଼ାକ ଏତେ ଉପୁଡ଼ିଆ ହେଲେଣି ଯେ କହିଲେ ନ ସରେ । ବସିଛନ୍ତି ଦୁନିଆଟାଯାକ ଖାଲି ଖାଇଯିବେ । ଖାଇବେ ତ ଖାଇବେ ପୁଣି ଖାଇବା ଜିନିଷରେ ଟିକିଏ ଓଲମ ବଲମ ହେଲେ ଚଣ୍ଡି ବସିବେ । କହିଲୁ ସାଧୁଆ ଭାଇ ମୋର ବା କି ଦୋଷଥିଲା ? ମା ଶୁଧି ଘରକୁ ଡାଳିପାଇଁ ପଇସା ଅଣ୍ଟିଲା ନାହିଁ, ଯେତିକି ଯୋଗାଡ଼ କରିପାରିଲି ତାକୁ ସମସ୍ତଙ୍କୁ ଭେଟାଇବା-ପାଇଁ ଟିକିଏ ପାଣିଆ କରିଦେଲି । ଏଇଟା ହେଲା ମୋର ବଡ଼ ଦୋଷ । ଶଗୁର ପୁଅଙ୍କ ତାଓ ଦେଖ ।

କାହିଁକି ଡାଲି ପାଣିଆ କଲୁ, ଆଉଥରେ ପଚରପାଣି ପକା, ନାହିଁତ ଏକ ଘରକିଆ ହୋଇ ରହ । ଯେତେ କାକୁତି ମିନତି ହେଲି କିଛି ଶୁଣିଗଲେ ନାହିଁ । ସେଇ ଏକା ଜଗର । ଶେଷକୁ ଆଉଡ଼ିଲି ହୋଇ ରହିଲି । ମୋର ଆଜିଯାଏ କଅଣଟା ଅଣେଇ ପକେଇଲେଣି ! ଏବେ ତମ ଦୁହିଁଙ୍କୁ ଦଣ୍ଡେଇବାକୁ ବସିଛନ୍ତି । ଦେଖ ହୁସିଆର ଥିବ ।

ମକର୍ଠୁଁ ଏ ମହାଭାରତ ଶୁଣି ସାଧୁଆ ଟିକିଏ ଶଙ୍କିଗଲା ! ହେଲେ ବଡ଼ଭାଇ ମଧୁଆ ଯାର କିଛି ଗୋଟାଏ କାଟପାଣି କରି ପାରିବ ବୋଲି ତାର ଦୃଢ଼ ଧାରଣା ହେବାରୁ ସେ ହାଉଳି ଖାଇଲା ନାହିଁ । ଟୋକେଇରେ ସଜାଡ଼ି ଦେବା ବାଣ୍ଟିଆସାହୁ ସଉଦାତକ ଓ ତେଲିଙ୍ଗି ବଟା ଧରି ସେ ଘରମୁହାଁ ହେଲା ।

ମଣ୍ଡା ଉଠିବାଠୁଁ ଆରମ୍ଭକରି ପୋଡ଼ାହେବା ଓ ଗାଧୁଆ ପାଧୁଆ ସାରି ଘରକୁ ଫେରିବା ଯାଏ ବାଟଯାକ ବେହେରା ଆଉ ଥାନ ମଧୁଆକୁ ବୁଝେଇ ଲାଗି ଥାଆନ୍ତି—"ଦେଖ ମଧୁଆ ! ତୋ ବୁଆ ଥିଲା ଆମ ଜାତିରେ ସବୁଠୁଁ ବଡ଼ ବୁଢ଼ା-ଆମ ଜାତିର ଗୋସେଇଁ ବାପ ପରି । ତା କାମବେଳେ ହାତ ଚିପିଲେ ଚଳିବ ନାହିଁ ! ଜାତିକି ନିନ୍ଦାହେବ ଜାତିର ଗୋସ ବାପ ! କିଛି କମ କଥା ନୁହେଁ । ଏଠି ଠାକୁର ଘରକୁ କୋଡିଏ ଟଙ୍କା ଦେଇ ବସିଗଲେ ଚଳିବ ନାହିଁ । ଏଠି ଯେକୌଣସି ମତେ ପଚରପାଣି ପକେଇବାକୁ ହେବ । ବୁଢ଼ାର ଆତ୍ମା ସନ୍ତୋଷ ହବ । ଜାତିକୁ, ତମ ଦୁହିଁଙ୍କୁ କଲ୍ୟାଣ କରିବ । ବୁଢ଼ା ପିତ୍ରୁ ତେମେ ତ କିଛି ଝଗଡ଼ କରିନ । ବୁଢ଼ା ତ ଦିନେହେଲେ ବାଧିକି ପଡ଼ି ନ ଥିଲା । ତମ ଦୁହିଁଙ୍କୁ କିଅନ୍ତାରେ କିଛିହେଲେ ହରକତ କରିନ । ମନରେ ବି କରିନ । ତା ପାଇଁ ନ-ଛ ନୁହେଁ ଏଇ ଅରଟା ଯାହା କରିବ । ଟିକିଏ ହେଲେ କୁନ୍ଥ୍ କୁନ୍ଥ୍ ନ ହୋଇ ଘଡ଼ ଝାଡ଼ିଦେ । ପଚର ପାଣି ଭଲକରି ପକା । ବୁଢ଼ାର କଇଲାଟରୁ ଘଡ଼ା ଫେର୍ ପୂରିଯିବ । ଏଣୁ ତମେ ଦୁହେଁ ବୁଢ଼ାଲାଗି ଠିକ୍ ଠିକ୍ ପଚରପାଣିର ବ୍ୟବସ୍ଥା କର । ମନରେ ଗୁଁ-ପୁଁ କିଛି ରଖନା"

ସାଧିଆଟା ମଝିରେ ମଝିରେ ହୋଇ ହୋଇ ମାରି ଦେଉଥାଏ । ବେହେରା ଓ ଥାନ କିଛି ନାକରା କଥା କହୁ ନ ଥାନ୍ତି, ଆଉ ତାଙ୍କ କଥା ଏଡ଼ି ଦେବାର କଥା ନୁହେଁ ବୋଲି ଶୁଣେଇ ଦେଉଥାଏ । ମଧୁଆ କିନ୍ତୁ ସାତତାଳ ପାଣିରେ ଗୋଡ଼ାମାରି ରହିଯିବା ଲୋକ, ତାଠୁଁ କଥା ଆଦାୟ କରିବ କିଏ ? ଦୁଇଟା ଯାକ କାନ ମେଲା କରିଦେଇ ମୁହଁକୁ ତଳକୁ ପୋତି ଦେଇଥାଏ । ବେହେରା ଓ ଥାନର ସବୁ କଥାଗୁଡ଼ାକ ତାର ଏ କାନରେ ପଶି ସେ କାନବାଟେ ବାହାରି ଯାଉଥାଏ, ମୁଣ୍ଡ ଭିତରେ ରହିଲେ ସିନା କିଛି ପ୍ରତିକ୍ରିୟା ଦେଖାନ୍ତା ।

ଶୁଦ୍ଧିକ୍ରିୟାର ୧୧ ଦିନ ଯେତିକି ପାଖେଇ ଆସୁଥାଏ ଜାତିଭାଇଙ୍କ ଆଣ୍ଟ ସେତିକି ବଢ଼ୁଥାଏ । ଘରେ ମଧୁଆ-ସାଧୁଆଙ୍କ ମନ୍ତ୍ରଣା ବସିଲା । ସାଧୁଆ କହିଲା, "ଭାଇ ! ଏଥରକ ଆଉ ପୂର୍ବକଥା ଚଳିବ ନାହିଁ ଦେଖୁଛି । ଜାତିଭାଇ ତ ଏକାବେଳେକେ ଅଙ୍କଡ଼େଇ ବସିଛନ୍ତି । ତୋ କଥାରେ ଠାକୁର ଗୃନ୍ଧା ଦବାକୁ ଗଲି ସେ ବେହେରା ଯାହା ତାହା ବକି ଦେଇଗଲା । ଧମକେଇଛି ଏଥର ପଚର ପାଣି ନ ପକେଇଲେ ଜାତିରେ ଅଟକ କରିଦେବ । ହେଲେ ମକର ମୋ କାନେ କାନେ କହି ଲାଗିଛି ବିଲ୍‌କୁଲ୍ ପଚର ପାଣି ନ ପକେଇବାକୁ । ବେହେରା ଅଟକ କରିବ ତ କରୁ ତା'ର ଆଜିଯାଏ ଅଣେଇ ପାରିନ, ଆଉ ଆମକୁ ଅଟକ କଲେ ଆମର କଅଣ ଭାସିଯିବ । କଥାଟା ଖାଣ୍ଟି କଥା କହୁଛି ହେଲେ ଓଧ ସଙ୍ଗେ ବଣଭୂଆ ବାଇ ହେଲାପରି ତା ସଙ୍ଗେ ବାଇ ହେବାକୁ ଭାରି ଡର ଲାଗୁଛି । ପୋତା ଘଡ଼ ଦେଖ ଯଦି କାମଟା ଉଠିଯାଏ ତେବେ କୋଟି ଗୁଣେ ଭଲ । ଏତେ ନେଣ୍ଟଗକୁ ପଚେଶ କିଏ !"

ବହୁତ ଭାବଚିନ୍ତା ମଧୁଆ ଶେଷରେ କହିଲା—"ଆରେ ସବୁ ଆଡ଼କୁ ମୁଁ ମୁଣ୍ଡ ଖେଳାଇ ଦେଖୁଛି। ଘଟର ପାଣି ନାଁ ଧରିଲେ ତିନିଶ ଟଙ୍କାରୁ ବେଶିକ। ପଚିଶାଟିଏ ବି ଉଣା ହେବନି। ସବୁଆଡ଼ୁ ବୁଲେଇ ଘୁରେଇ ଦେଖିଲିଣି ମଗୃଶ ଟପୂନ। ଘଟର ପାଣି ଘଟେଇବା ତ ତିନିଶଟି ଟଙ୍କା ଘର ବାଡ଼ି ବନ୍ଧାଦେଇ ଆଣିବାକୁ ହେବ। ଦେଖିବା କହାଣ୍ଡି ଯଦି ନ ହୁଏ, ଦିଜଣ ଯାକ ଟିପଦେଇ ବାଞ୍ଛା ସାହୁଠୁଁ ସଉଦା ନେଇ ଆସିବା। ପରେ ପଛେ ଲାଗିପଡ଼ି ଦୁହେଁ ସୁଝିବା ଆଉ କରିବା କଅଣ?"

ନଅଦିନ ଗାଁ ଶିଆର ତାଲିକା ମୁତାବକ ସଉଦା ଆଣିବାକୁ ଦୁହେଁ ବାଞ୍ଛାସାହୁ ପାଖରେ ପହଞ୍ଚିଲେ। ହେଲେ ଟିପ ରଖି ସଉଦା ଦେବାକୁ ବାଞ୍ଛାସାହୁ ଚୋ-ପଟାସ୍ ନାସ୍ତି ବାଣୀ ଶୁଣାଇ ଦେଲା। ଦୁହେଁ ନିରାଶ ହୋଇ ଫେରିଲେ। ସାଧୁଆ ହାଉଳି ଖାଇଗଲା। ମଧୁଆ କିନ୍ତୁ ଦବିଗଲା ନାହିଁ, ଆହୁରି ଟାଣ ହୋଇ ଉଠିଲା। ମନକଥା ମନରେ ରଖି ସାଧୁଆକୁ ରାତି ନଅଟାରେ ମକରାକୁ ଅତି ଗୁପ୍ତରେ ତାଙ୍କ ଘରକୁ ଡାକି ଆଣିବାକୁ କହିଲା। ଡାକରା ଶୁଣିବା ମାତ୍ରେ ମକରା ଧଡ଼ପଡ଼ ହୋଇ ଉଠି ଆସିଲା। ସାଧୁଆକୁ ଦୁଆର ଜଗେଇ ମଧୁଆ ଓ ମକରା ଦୁହେଁ ଖୁବ୍ ବେଳ ଯାଏ କଅଣ ଗୋଟାଏ ଗୁପ୍ତ ମନ୍ତ୍ରଣା କଲେ। ତା'ପରେ ମକରା ଚାଲିଗଲା।

ଦଶଦିନ ମଧୁଆ ସାଧୁଆକୁ କହିଲା "ଯା ଜାତି-ଭାଇଙ୍କୁ, ବେହେରା ଓ ଥାନକୁ ଦଣ୍ଡବତ ସେବାକରି ନିମିତା କରି ଆସିବୁ। ସନ୍ଧ୍ୟା ଛଅଟାକୁ ବେଳ ଦବୁ।" ସାଧୁଆ ବୋକାଙ୍କ ଭଳି ତା ମୁହଁକୁ ଚାହିଁବାରୁ ସେ ଅଭୟ ଦେଇ ପୁଣି କହିଲା-"ତୁ ଏଥିରୁ କିଛି ବୁଝି ପାରିବୁ ନାହିଁ, ଯା ମୁଁ ଯାହା କହୁଛି କରିଯା। ପରେ ସବୁକଥା ବୁଝିବୁ।"

ଆଜ୍ଞାଧୀନ ଭୃତ୍ୟଟି ପରି ସାଧୁଆ ସବୁକାମ କରିଗଲା। ବେହେରା, ଥାନ ଓ ଜାତିଭାଇ ସମସ୍ତେ ମନେ ମନେ ଖୁବ୍ ଖୁସି ହୋଇଗଲେ। ବେହେରା ଓ ଥାନକୁ ଅନେକ ପ୍ରଶଂସା କରି କହିଲେ—"ଯାହା କୁହ ତମ ଦୁହିଁଙ୍କ ଟାଣପଣ ଯୋଗୁଁ ଏତକ ହୋଇପାରିଲା।" ଅନେକ ବି ମଧୁଆ-ସାଧୁଆଙ୍କ ବୁଦ୍ଧିକୁ ତାରିଫ୍ କରି କହିଲେ "ସେ ଦୁହେଁ କାହାପୁଅ ସେଇଟା ମନରେ ହେଜିବା ଦରକାର। ବେହେରା କଥାକୁ ଏଡ଼ାଇବେନା?"

ଏଗାର ଦିନ ବଡ଼ ସକାଳୁ ମଧୁଆ ଘର ଆଗର ରାସ୍ତା କଡ଼ରେ ପ୍ରାୟ ଦୁଇ ବେତା ମାଛକାତି ପୁଟି, ଫୁରିବା ଗୈପା ଦେଖି ସମସ୍ତେ ଭାରି ଖୁସି ହୋଇଗଲେ। ମଧୁଆ ଯେ ମାଛ ତରକାରିରେ ସମସ୍ତଙ୍କୁ ଭସେଇ ଦେବ ସେ ବିଷୟରେ ଆଉ କାହାରି ସନ୍ଦେହ ରହିଲା ନାହିଁ। ଚାରିଆଡ଼େ ଚର୍ଚ୍ଚା ଚାଲିଲା—ବୁଢ଼ାପାଇଁ ମଧୁଆ ଏକାବେଳେକେ ଖୋଲାହାତ ହୋଇଯାଇଛି। କାହିଁକି ବା ନ ହେବ। ବୁଢ଼ାତ ପୋତିଦେଇ ଯାଇଥିଲା। ତାରି ଧନ ତାରିପାଇଁ ଖର୍ଚ୍ଚ ହେଉଛି। ଯାହାହେଉ ମଧୁଆଟା କୁଣ୍ଠିତ ହୋଇନି। ବାପ ନାଁ ରଖିବ ଇତ୍ୟାଦି ଇତ୍ୟାଦି। ସନ୍ଧ୍ୟାବେଳେ ଅଜଗଣ୍ଡା ଠେଁସି ଦେବାକୁ ଅଧିକାଂଶ ସକାଳ ଓଳିଟା ମାଟୁଳି ଜଳ-ଖିଆରେ କାଳ କଟାଇ ଦେଲେ, ଭୋକଟା ଯେପରି ଭଲ ହେଖେଇବ ସେଥିପାଇଁ କେହି କେହି ପାଚକ ପାଣିରୁ ଟିକିଏ ଟିକିଏ ପକେଇ ଦେଲେ।

ସନ୍ଧ୍ୟା ହେଲା। ଗ୍ରୁମୁଣ୍ଡିଆ ତଳେ ବେହେରା, ଥାନ ଓ ଜାତିଭାଇ ସମସ୍ତେ ରୁଣ୍ଡ ହେଲେ। ସାଧୁଆ ପିଣ୍ଡରେ ପ୍ରାଣ ନ ଥାଏ, ମଧୁଆର ପ୍ରବୋଧରେ କେବଳ ଯନ୍ତ୍ରପରି ଏପାଖ ସେପାଖ ହେଉଥାଏ। ହେଲେ ତା ପାଟିରୁ କଥା ବାହାରୁ ନ ଥାଏ। ମଧୁଆ ବେକରେ ଗାମୁଛା ପକାଇ ବେହେରା, ଜାତିଭାଇ ଓଗେରଙ୍କୁ ଦଣ୍ଡବତ ସେବାକରି ପଙ୍ଗତରେ ବସିଯିବାକୁ ବିନୟରେ କହିଲା। ଧାଡ଼ିରେ ସମସ୍ତେ ବସିଗଲେ। ସମସ୍ତେ ବସିଯିବାପରେ ମଧୁଆ ସାଧୁଆକୁ

ପଡ଼ର ଲଗେଇବାକୁ ଡାକଦେଲା । ସାଧୁଆ ବଡ଼ସ୍ର ଥର ଥର ପଡ଼ର ଗୋଟାଏ ଗୋଟାଏ ପରଖୁଛି, ହଠାତ୍ ଏହି ସମୟରେ ବେହେରା ଓ ଥାନର ଚିତ୍କାର ଶୁଣାଗଲା । ସମସ୍ତେ ଦେଖିଲେ ମକରା କେତେବେଳେ ଆସି ଏକାବେଳେକେ ସମସ୍ତଙ୍କ ମଝିରେ ଚେକା ଆସନ ପକାଇ ବସି ଯାଇଛି । ବେହେରାର ନଜର ତା ଉପରେ ପଡ଼ିଯିବା ମାତ୍ରେ ଚଣ୍ଡଗୋଳ ଆରମ୍ଭ ହୋଇଗଲା । ସେ ତମ୍ବାସାପ ପରି ଫଁ ଫଁ ହୋଇ ରଡ଼ି ଛାଡ଼ିଲା—"ହଇରେ ମଧୁଆ ତୁ କଅଣ ଜାଣିନୁ ମକରା ଜାତିରେ ଅଟକ ହୋଇଛି । ସେ ଏଠି ବସିଲେ ଆମେ କେହି ବସିବୁନ ।"

କଥା କହୁ କହୁ ବେହେରା ଉଠି ପଡ଼ିଲା । ସଙ୍ଗେ ସଙ୍ଗେ ଇଚ୍ଛା ନ ଥିଲେ ବି ଅନ୍ୟମାନେ ଉଠି ପଡ଼ିଲେ । ମକରା କିନ୍ତୁ ବେଖାତିର ଭାବ ଦେଖାଇ ସେଇଠି ବସି ଥାଏ । ଏଥିରେ ବେହେରା ଆହୁରି ରାଗିଗଲା । ଆଉ ମକରାକୁ ସେଠାରୁ ନିକାଲି ଦେବାକୁ କହିଲା । ଅତି ବିନୀତ ଭାବରେ ହାତଯୋଡ଼ି ମଧୁଆ କହିଲା—"ଆଜ୍ଞା ଆପଣମାନେ ବୁଝିବା ହୁଅନ୍ତୁ । ମୁଁ ପନ୍ତରରୁ କାହାକୁ ଉଠେଇ ପାରିବି ନାହିଁ, ବୁଢ଼ା ବି ତାହାର ଧରମ ମଉସା ଥିଲା । ବୁଢ଼ାର ଆତ୍ମା ଛଟପଟ ହେବ । ମୋତେ ମାଫ୍ କରନ୍ତୁ । ମୁଁ ଏ ଅଧର୍ମ କାମ କରି ପାରିବି ନାହିଁ ।"

ବେହେରା ପୁଣି ଗର୍ଜି ଉଠିଲା—"ତାକୁ ନ ଉଠେଇଲେ ଆମେ କେହି ବସିବୁ ନାହିଁ । ଭାବିଚିନ୍ତି କହ, ଶେଷଥର ପାଇଁ ତୋତେ ପଚାରୁଛି ।"

ମଧୁଆ ପୂର୍ବପରି ନଉଚ୍ଛଳ ହୋଇ କହିଲା—"କାହାକୁ ପନ୍ତରରୁ ଉଠେଇବା ମହାପାପ । ଏତେ ବଡ଼ ପାପ ମୁଁ କେବେହେଲେ କରି ପାରିବି ନାହିଁ । ଆପଣମାନେ ମୋତେ ମାଫି ଦିଅନ୍ତୁ ।"

"ବେଶ୍ ସେ ଥାଉ ଆମେ ସମସ୍ତେ ଯାଉଛୁ ।" କହି ବେହେରା ସମସ୍ତଙ୍କୁ ଅଡ଼େଇ ନେଇ ଚାଲିଗଲା । ବାରପଣ ଲୋକେ କିନ୍ତୁ ପେଟ ଭିତରେ ବେହେରାକୁ ଗାଳି ଦେବାରେ ଲାଗିଥାନ୍ତି କେମିତିଆ ଲୋକଟାଏ, ଯାହା ବୁଝିଥିବ ସେଇଆ, ସେ ଜଡ଼ଖଟିଆ ହୋଇ ଖାଇଦେଇ ଯାଇଥିଲେ କି ମୁସ୍କିଲ ହୋଇଯାଇଥାନ୍ତା । ଅଲପେଇସାଟା ସମସ୍ତଙ୍କୁ ଉପାସ ରଖିଲା ଇତ୍ୟାଦି ଇତ୍ୟାଦି । ବେହେରା, ମେଣ୍ଢା ଅଡ଼େଇ ନେଲାପରି ଜାତିଭାଇମାନଙ୍କୁ ଅଡ଼େଇ ନେଇ ଚାଲି ଯାଉଥିଲା-ବେଳେ ପଛରୁ ମଧୁଆ ଡାକ ପକାଉଥାଏ—"ଭାଇ-ମାନଙ୍କର କଅଣ ଏଇଆ ବିଚାର ହେଲା ? ମୋର ଶହ ଶହ ଟଙ୍କାର ଖାଇବା ଜିନିଷ ଖତ ଗଦାକୁ ଫୋପାଡ଼ି କି ଲାଭ ପାଇବ ଭାଇମାନେ । ମୁଁ ତ ଠାକୁର ଘରର ଚାନ୍ଦା ଦେଇ ଦେଉଥିଲି ମତେ ମିଛରେ କାହିଁକି ଉତ୍ତିକଲ । କାହିଁକି ମୋତେ ଏ ଲୋକସାନରେ ପକେଇଲ ।"

ଜଣେ ଦିଜଣ ଭଲଲୋକ କଥାଟାକୁ ମିଟା-ମିଟି କରିଦେବାକୁ ଓ ପୁଣି ପଡ଼ରପାଣି ପକେଇବାର ସୁବନ୍ଦ୍ୟବସ୍ଥା କରିବାକୁ ଆସିଥିଲେ । ହେଲେ ସେମାନଙ୍କ ମତଲବ ଶୁଣିବାମାତ୍ରେ ଗୁନ୍ଦିଆ ହୋଇଯାଇ ରଡ଼ି ଛାଡ଼ିଲା—"ଆଉ ସେ କଥା ମୋ ଆଗରେ କୁହନାହିଁ । ମୋର ଗୋଟିଏ କାପ ଗୋଟିଏ କଥା । ମୁଁ କାଉଁରିଆ କାଠି ଭାଙ୍ଗିକି ପଡ଼ନ୍ତ ନଇଁବି ନାହିଁ । ମୋର ଶହ ଶହ ଟଙ୍କାର ଖାଇବା ଜିନିଷ ଖତ ଗଦାରେ ପକେଇଲି, ଆଉ ପୁଣି ତାଙ୍କ ସାଙ୍ଗରେ କଥାବାର୍ତ୍ତା ନା, ନା ସେ ସବୁ କଥାର ନାଁ ଧରନା । ଖୁବ୍ ହୋଇଛି ।"

ଏହାପରେ ଜାତିଭାଇମାନେ ଖାଇବା ଆଶା ପୂରା ପୂରି ଛାଡ଼ିଦେଲେ । ରାତି ଏଗାରଟା ବାଜିଲା । ମଧୁଆ, ସାଧୁଆ, ମକରା ଘର ଭିତରେ ଚୁପ୍ ଚାପ୍ ଖାଇ ବସିଲେ । ଖାଉ ଖାଉ ସାଧୁଆ କହିଲା—

"ସତ କହୁଛି ଭାଇ ମୋ ହୃଦରେ ଜୀବନ ନ ଥିଲା । ସେମାନେ ଯଦି ଆଣ୍ଣକରି ବସି ଥାଆନ୍ତେ, ତେବେ କି ଦଶାଟାଏ ଯେ ହୋଇଥାଆନ୍ତା ! ତେମେ ଏତେ ଫନ୍ଦି ଫିକର କରିଛ ବୋଲି ମୁଁ କଅଣ ଜାଣିଥିଲି ।"

• ମକର କହିଲା—"ଯାହା ଜାଣିଲୁ ଜାଣିଲୁ ସବୁ ପେଟରେ ରଖିବୁ । ଆଉ ଦେଖ ମଧୁଆ ଭାଇ ! ନିଶାପ ବସିଲେ ତାଙ୍କରି ଦୋଷ ହବଇ ହବ । ସେମାନେ ହୁଏତ ଠାକୁର ଘର ଗୁନ୍ଦାଟା ମାଗିବେ । କଥାଟାକୁ ଗୋଳେଇ ପୋଳେଇ ଦେବାକୁ ବସିବେ । ତୁମେ କିନ୍ତୁ ଏକ ଜଗର ଧରି କହିବ ଯେ ତମର ଯେଉଁ ପାଞ୍ଚଶହ ଟଙ୍କା ଲୋକଧାନ କଲେ ସେଇଟା ଆଗ ଦିଅନ୍ତୁ, ତେବେ ଯାଇ ତୁମେ ଠାକୁରଘର ଗୁନ୍ଦାଟା ଦେବ । ଆଉ ଦେଖ ଗନ୍ଧିଆ ହାଡ଼ି ହାତରେ ହବୋଡ଼ ମାଛକାଡ଼ ଓ ପୁଟି ଅଣେଇ ଘର ଆଗରେ ପକେଇଥିଲି ସେ କାଲି ଆସିବ, ତାକୁ ଆଠଅଣା ପଇସା ଦେବ । ହବେ ମାଛହାଟ, ସ୍ୱଗଜ ହୋଟେଲ, କାଳିକା ହୋଟେଲ ଆଦି ଗୁଡ଼ାଏ ଜାଗାରୁ ଆଣି ପକେଇଛୁ ।

—*—

## ॥ ମୋ ମାଆ ॥

ଶ୍ୟାମକୁମାର ଅଗ୍ରୱାଲ୍, (ବଲାଙ୍ଗିର)

ମୋ ବୋଉ ପଡ଼ୁଛି ମନେ; ସମୟର ସରଣୀରେ;
ଜୀବନର ଶୀଠିବା ମାଗରେ;
ତା' ଆଖିର ଦୁଇକୂଳେ; ଲୋତକର ନଈଧାରେ;
ମୋ ସମ୍ମାନ ଇଚ୍ଛା ଆଜି ପଥହରା;-
ଦୁର୍ନୀତି-ବାତ୍ୟା-ପ୍ରବାହ ସୋତରେ ।
ମୋ ପାଇଁ କାନ୍ଦନା ମାଆ ଅଯୋଗ୍ୟ ସନ୍ତାନ ମୁଁ-
ତୋ କୋଳରେ ଜନମିଲି; ସୁଖ-ଶାନ୍ତି ସବୁ ଲୁଟି ନେଲି;
ମୋପାଇଁ କାନ୍ଦନା ମାଆ କଳଙ୍କର କୋଣାର୍କଟି-
ଧରମା ତୋ-
ଯଶର ଉଧ୍ୱନଡ଼ନ୍ତ ଆଜି;
ଆତ୍ମାର ହନନ କରି ଆତ୍ମହତ୍ୟା ପରେ;
ମାଆର ସେନେହ ପାଇଁ, ତୋ ଅନ୍ତରେ ବଞ୍ଚିବ ତଥାପି ।
ପୁଅ କଥା ମନେକରି ଲଭ ନାହିଁ-
ଆପଣାକୁ ଆପଣା ହୃଦରେ ସିଏ ହଜାଇ ଦେଇଚି ।
ଅଯୋଗ୍ୟ ସନ୍ତାନ ପାଇଁ କାନ୍ଦନାହିଁ ମାଆ ମୋର-
ତୋ ଆଖିର ଜିଅନ୍ତା ଲୁହରେ;
ପୁଅ ତୋର ନବଚ ବଢ଼ିଛି ।
ମାଆର ମମତା ନେଇ; ଦେବକୀ ଯଶୋଦା ପାଇଁ;-
ପୁଅ ତୋର ଅପବାଦ ଗୀତା ପଢ଼ୁଅଛି ।
ଅଯୋଗ୍ୟ ସନ୍ତାନ ପାଇଁ କାନ୍ଦନାହିଁ ମାଆ ମୋର-
ତୋ ଆଖିର ଗରମ ଲୁହରେ;
ଚନ୍ଦ୍ରବୃକ୍ଷି ହାରେ ସିଏ-
ତୋପାଇଁ ଇନ୍ଧନ ଜାଳି; ଆପଣାକୁ ପାଶ୍ଚୋଟି ନେଇଛି ।

# ॥ ଅସମ୍ଭବର ପରିଧି ॥

ରାଜକିଶୋର ପଟ୍ଟନାୟକ

ସେଦିନ ସେହି ବିବାହ ଉତ୍ସବରେ ମନ ଭିତରେ ତାଙ୍କର ଗୋଟିଏ ପ୍ରଶ୍ନ—ମୁଁ କ'ଣ ସମସ୍ତଙ୍କୁ ଭୁଲ୍ ବୁଝୁଛି ? ନା ସମସ୍ତେ ମତେ ଭୁଲ୍ ବୁଝୁଛନ୍ତି ?

ସେହି ଚିନ୍ତା ଜର୍ଜରିତ ମନ ପୁଣି ଓଲଟି ପଚାରୁଥିଲା—ସମସ୍ତେ, ସଂସାରର ଦଶ ପନ୍ଦର ଜଣ ଲୋକ ଜଣେ ଲୋକକୁ ଭୁଲ୍ ବୁଝିବେ କାହିଁକି ? ଭୁଲ୍ ବୁଝିବା ମଣିଷର ସ୍ୱାଭାବିକ ଶକ୍ତି ନୁହେଁ । ସମସ୍ତେ ଅନ୍ୟ ଲୋକଙ୍କୁ ଓ ଅପରର ଘଟଣାକୁ ଠିକ୍ ଭାବରେ ସିନା ବୁଝିବାକୁ ଚାହାନ୍ତି । ପାରନ୍ତୁ ଅବା ନ ପାରନ୍ତୁ ଚେଷ୍ଟାଟା କେବଳ ସେହି ଦିଗରେ । ଠିକ୍ ଭାବରେ ବୁଝିବାକୁ ଚେଷ୍ଟା ।

ନଶବାବୁଙ୍କର ମନ ଭିତରର ଏହି ଉତ୍ତର ଓ ପ୍ରତ୍ୟୁତ୍ତର ଅଚିହ୍ନା ପ୍ରଶ୍ନ ଆକାରରେ ମାଳା ହୋଇ ଗୁନ୍ଥା ହୋଇଯାଉଥିଲା । ତାହାର ଚିହ୍ନ ଉଠୁଥିଲା ମୁହଁ ଉପରେ—ବିଶେଷ କରି ଦୁଇଟି ଆଖି ଓ ତାହାର ତଳର ନାକ ଓ ପାଟି ଉପରେ । ଆଉ ଆଖି ଉପରର ଚାରି ଆଙ୍ଗୁଳ କପାଳ ଉପରେ ।

ଚିନ୍ତାର ରେଖା ଚମକୁ କୁଞ୍ଚେଇ ଦେଇ ପ୍ରକାଶ ପାଇବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଆସିବା ଲୋକଙ୍କର ସେଥିକି ଆଖି ନାହିଁ ।

ବାହାଘର ଆନନ୍ଦ କୋଳାହଳ ଭିତରକୁ ସୁନ୍ଦର ହୋଇ ସଜେଇ ହୋଇ ଆସୁଛନ୍ତି । ତଳିପାରୁ ତାଳୁଯାଏ—ସବୁଆଡ଼େ ସେହି ଚେଷ୍ଟା । ଦେହର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ସୁନ୍ଦର ଓ ସଯତ୍ନ । ଯୋତା ସଫା ଓ ଚକ୍ ଚକ୍ । ଦେହର ପୋଷାକ ସେମିତି, ପରିଷ୍କାର ଓ ରୁଚିପୂର୍ଣ୍ଣ । ମୁହଁଟି ବି ସେମିତି ସଫା । ସେଥିରୁ ଯେପରି ଚିନ୍ତାର ସବୁ ମଇଳା ମସିଆ ଧୋଇ ପୋଛି ଲିଭେଇ ଦେଇଛନ୍ତି ।

ବାହାଘର ପାଇଁ ଯେମିତି ଘରର ଭିତର ବାହାର, କବାଟ ଚୌକାଠକୁ ରଙ୍ଗଦେଇ ସଫାକରି ଘରଟି ସୁନ୍ଦର ଦିଶିବାକୁ, ନୂଆ ଦିଶିବାକୁ ଚେଷ୍ଟା କରୁଥିଲା, ସେମିତି ବାହାଘରକୁ ଆସୁଥିବା ଲୋକଗୁଡ଼ିକ ନିଜକୁ ସତେଜ ଓ ଯୁବକ ରୂପରେ ଦେଖାଇବାକୁ ଚେଷ୍ଟା କରୁଥିଲେ ।

ପାଖ ଚଉକିରେ ଚିହ୍ନା ଭଦ୍ରବ୍ୟକ୍ତି ଆସି ବସିଗଲେ । ତୁଣ୍ଡରେ କଥା—ଜାଣିଛନ୍ତି ନା । ଡାକ୍ତର ଜଣେ ଟଙ୍କା ମାଗୁଥିଲେ ବୋଲି ପୁଲିସ ଧରି ମକଦ୍ଦମା କରିଛି । ଆଜି ଖବର କାଗଜରେ ବାହାରିଛି ପରା ।

—ସତେ ! କିଏ ସେ ?

—ଆରେ ଆପଣ ଜାଣନ୍ତି ନାହିଁ । ଆମର ଠୁଲା ବାବୁପରା ! ପେନସନ୍ ପାଖ ହୋଇ ଯାଇଥିଲା । ହଠାତ୍ ଅଡ଼ୁଆ—

ହେଲେ ବି କ'ଣ ବିଗିଡ଼ି ଯିବ ? ଡାକ୍ତର ରୋଗୀର ଚିକିତ୍ସା କରେ । ଟଙ୍କା ନିଏ । ଡାକ୍ତର ଟଙ୍କା ନେବ ନାହିଁ ?

ପାଖ ଲୋକଗୁଡ଼ିକ ଉତ୍ସାହ ଦେଖାଇଲେ । ଜଣେ ଅଧେ ପୁଲିସ ପକ୍ଷିଆ ହେଲା କହିଲେ—ହେଲା ତେବେ । ଡାକ୍ତରଙ୍କୁ କ'ଣ ଆଉ ପୁଲିସ ଧରିବ ? ସାତଖୁଣ ମାଫ୍ । ଯିଏ ଡାକ୍ତର ରୋଗୀକୁ ଲୁସ କରି କରି ପୋଷିତ ହେଲା । ସେଇଠୁ ସେ ଦି'ହାତିଆ ଚଳେଇବ ନାହିଁ ତ କ'ଣ କରିବ ?

କଥା ବଦଳାଇ ଦେବାକୁ ସୁରସୁନ୍ଦର ବାବୁ କହିଲେ—ଆଜି ଭୋଜି ଉଚ୍ଛୁର ହେବ । ବର୍ଷା ଭଲ କରି ଅସରାଏ ଅକାଡ଼ି ଦେଲା । ବର ଓ ବରଯାତ୍ରୀ ଦି'ଘଣ୍ଟା ଡେରିରେ ଖାଲି ଯେ ଆସିଲେ ସେତିକି ନୁହେଁ, ଏଣେ ଚୁଲି ଲିଭିଗଲା ଦି'ଘଣ୍ଟା ।

ଆଉ ଜଣେ କହିଲେ—ହେଲା ତେବେ । ଗାଡ଼ି ଦ'ଘଣ୍ଟା ଲେଟ୍ । ପଡର ପଡ଼ିବ ସାଢ଼େ ଦଶଟା ପରେ ।

ଏତିକିବେଳେ ଦ'ଜଣ ଲୋକ ନିଶା ଖୋରରେ ଭିତରକୁ ଠେଲି ହେଲେଣି । ଅଣ୍ଟାରେ ମଇଳା ନାଲିଆ ଲୁଙ୍ଗି । ଓଠରେ ପିଙ୍କା, କାନ୍ଧରେ ନେଳିଆ ଲୁଙ୍ଗିରୁ ଖଣ୍ଡେ ।

• ସମସ୍ତେ ବିବ୍ରତ ହୋଇ ପଡ଼ିଲେ । ହେଲା ଯେ ଗଣତନ୍ତ୍ର ଯୁଗ । ହୋଟେଲ ସିନେମା ଓ ବସ୍‌ରେ ସବୁ ଲୋକ, ସବୁ ପ୍ରକାରର ପୋଷାକକୁ ଗ୍ରହ । ସେଇଟା କ'ଣ ଏହି ବାହା-ଘରରେ ବି ଚାଲିବ ପୁରା ଦମ୍ ?

ମାଲିକ ଆସିଗଲେ । ସେମାନଙ୍କୁ ଅଟକା ଗଲା । ଜଣା ପଡ଼ିଲା ଯେ ପଡର ଉଠେଇବା ଟାଇମ୍ ହେଲଣି ବୋଲି ସେମାନେ ଚାଲିଥିଲେ ।

ଆରେ ଯା—ଯା । ଏବେ ହୋଇ ନାହିଁ । ଡେରି ଅଛି । ପଡର ଆସି ପହଞ୍ଚି ନାହିଁ । ଏଣେ ଏମାନେ ପଡର ଉଠାଇବାକୁ ବାହାରିଲେଣି ।

ତାଙ୍କୁ ଫେରେଇ ଦେଲେ ବି ମିନିଟ୍‌କ ପରେ ସେମାନେ ପୁଣି ଧସେଇ ପଶିଲେ । ନିଶା ଜୋର୍‌ରେ କଥା ମନେ ରହୁ-ନାହିଁ । ଖିଆଲ୍ ଥିଲା ଯେ ପରେ ଉଠାଇବା ସମୟ ହୋଇଗଲା । ସେହି ଖିଆଲକୁ ଦବେଇ ଦଉଚ କେମିତି ? ଖିଆଲ ପଛରେ ରହି ଯାଇଚୁ କଡ଼ା ମଦ । ଶସ୍ତା ମଦ ଅଧିକ ନିଶା ଦିଏ ।

ଡାକ୍ତରଙ୍କର ଲକ୍ଷ୍ୟଖିଆରୁ କଥାଟା ବୁଲିଗଲା ମଦ ଆଡ଼କୁ । ଏଇ ମଦ ସଂସାରଟାକୁ ନଷ୍ଟ କରିଦେଲା । ମଦୁଆ ଲୋକ ଏବେ ବଡ଼ ହୋଇଗଲେ । ...ନ ହେବ କାହିଁକି ? ମଦର ନିଶା ଆଗରେ ମନର ବଳ ଅବା କେତେ ?

କଥାଟାକୁ ଆପତ୍ତି କଲେ ଜଣେ ଡାକ୍ତର । ...ନୁହେଁ... ନୁହେଁ । ଡାକ୍ତର ହୋଇ ଆପଣଙ୍କୁ କହୁଛି—ମୋର ବୟସ ହେଲା ସତୁରୀ । ନିଶା ଖାଏ ନାହିଁ । ରାତିରେ ଭାତ ଖାଏନାହିଁ । ଖାଲି ମାଣ୍ଡିଆ ଯାଉ ଓ ଦୁଧକୁ ନିର୍ଭର କରି ଏବେଯାଏ ମୁଁ ବୁଢ଼ା ହୋଇ ନାହିଁ ।

—ସତେ ! ଆଉ କିଛି ଖା'ନ୍ତି ନାହିଁ ?

—କାହିଁକି ? ସବୁ ଖାଏ । ପ୍ରତିଦିନ ମାଛ ବା ମାଂସ ନିଶ୍ଚୟ ଖାଏ । ପରିବାପତ୍ର ଖାଏ । ଦିନକୁ କିନ୍ତୁ ଦୁଇ ସେର ଦୁଧ ଖାଏ । ମୋର ସ୍ୱାସ୍ଥ୍ୟ ସେଥିରେ ଗଢ଼ା ହୋଇଛି ।

ସବୁ ବୟସର ତରୁଣ ଓ ପ୍ରୌଢ଼ାଙ୍କୁ ବିଦ୍ରୂପ କରି ଡାକ୍ତରଙ୍କର କଥାଗୁଡ଼ାକ ହସି ଉଠିଲା । ସେ କହିଲେ, ବୟସର ମାପ ପଚାଶ ପର୍ଯ୍ୟନ୍ତ ନୁହେଁ ।

—ଆଉ କେତେ ?

—ପୂର୍ବ ଶହେ । ମଣିଷ ବୁଢ଼ା ହେବ ନବେ ବର୍ଷରେ ଆଉ ମରିବ ହୁଏତ ଶହେ ପାଖାପାଖି । ମୋର ଅଛି ଆଉ କୋଡ଼ିଏ ବର୍ଷ...ତେବେ ଯଦି ଅପମୃତ୍ୟୁ ନ ହୁଏ ।

ସମସ୍ତଙ୍କର ଦୃଷ୍ଟି ଏହି ଡାକ୍ତରଙ୍କ ପାଖକୁ ଠେଲିହୋଇ ଆସୁଥିଲା । ବୟସ ସତୁରୀ । ଆଖିରେ ଚଷମା ନାହିଁ । ବସିବାରେ ଅଳସ ନାହିଁ । କଥାରେ କ୍ଷିପ୍ରତା ଅଛି । କଥା କହିବା ବୋଲି ଭୁଣ୍ଡ କହୁଛି । ମୂଳସୂତ୍ର ହେଲା—ମାଣ୍ଡିଆ ଜାଉ ଓ ଦୁଧ ।...

ପଛକୁ ପଛ ହୋଇ ଚାଲି ପାଞ୍ଚ ଦଳ ମହିଳା ଅତିଥି ଆସିଲେ । ବୟସ୍କାମାନେ ବୟସକୁ ପାଞ୍ଚ ସାତ ବର୍ଷ କମାଇବାର ଯେମିତି ଚେଷ୍ଟା କରିଛନ୍ତି ସେମିତି ଅଳ୍ପ ବୟସ୍କାମାନେ ନିଜକୁ ବର୍ଷେଦି'ବର୍ଷ ବଢ଼ାଇ ଦେଇ ମନୋରମ, ଲୋଭନୀୟ ଓ ଓ ଆକର୍ଷଣୀୟ ବୟସରେ ରଖିବାକୁ ଚେଷ୍ଟା କରିଛନ୍ତି ।

ନରିବାବୁ କହିଦେଲେ—ଆଶ୍ଚର୍ଯ୍ୟ । ସ୍ତ୍ରୀଲୋକମାନେ କେତେବେଳେ ବୟସ ବଢ଼ାଇବାକୁ ଓ ପୁଣି କେତେବେଳେ ବୟସ କମାଇବାକୁ ସୁବିଧା କରି ନିଅନ୍ତି ନିଜର ସାଜ ପୋଷାକର ଗୁରୁତ୍ୱରେ ।

ଡାକ୍ତରବାବୁ ହସି କହିଲେ—ଏଇ ସବୁକୁ ଆଖି ରଖିବା ଓ ଆଖିରେ ଦେଖି ମନ ଲଗାଇବା ବା ମନରେ ଏପାଖ ସେପାଖ ଉଜ୍ଜଳ କରିବାକୁ ଲୋକେ କହନ୍ତି ଯୌବନ । କିନ୍ତୁ ମୁଁ ବୁଝେ ଆଉ ପ୍ରକାରେ—ଯେଉଁମାନେ ଏହିସବୁ ଯୌବନର ଗ୍ରାହକୁ ଯୌବନର ଅଭିନୟ ବୋଲି ମନରେ ଧାରଣା କରନ୍ତି, ସେହି-ମାନେ ଯୁବକ ।

ନିଜ କଥାକୁ ନିଜେ ବନ୍ଦ କରିବାକୁ ସେ କହିଲେ—ଏଠି ଚଉକିରେ ଛାରପୋକ ଅଛନ୍ତି । ଗୋଡ଼ ପାଖରେ ମଶା ଅଛନ୍ତି ।

ଆମ ଘରକୁ ଆସନ୍ତୁ ଦେଖିବେ । ପାଖରେ ଗଙ୍ଗାମନ୍ଦିରର ଏଡ଼େ ବଡ଼ ପୋଖରୀ । କଟକ ସାରାର ନାଳ ନର୍ଦ୍ଦମା ସେହି ଖାଲ ଭିତରେ ପଡ଼ୁଛି । ସେଠି ମଶା ପାଇବେ ନାହିଁ । ଆମେ ଶୋଉଛୁ ବିନା ମଶାରିରେ ।

ପାଖ ଲୋକଙ୍କର ଓଠରେ ହସ ଦେଖା ଦେଲା । କଟକର ମଶା ଗଙ୍ଗା ମନ୍ଦିର ପୋଖରୀ ହୁଡ଼ାକୁ ଛାଡ଼ିଦେଇ ସହରକୁ ବସେଇ ଉଠେଇ ଦେଉ ନାହାନ୍ତି । ଇଏ କ'ଣ ସମ୍ଭବ ?

ବୋଧହୁଏ ଡାକ୍ତରଙ୍କର କିଛି ଅମଳ ଅଛି । ନହେଲେ ସେ ମିଛ କହିବାରେ ଅଭ୍ୟସ୍ତ । କେହି ଖୋଲି କହୁ ନାହାନ୍ତି । ସମସ୍ତଙ୍କର ଆଖି ଏହି କଥା କହୁଥିଲା ।

ଡାକ୍ତରବାବୁ ସେମିତି ହସିବାର ଭଙ୍ଗୀ କରି ଠିଆ ହେଲେ । ସେଇ ସତୁରି ବର୍ଷ ବୟସର ଓଠରେ ସତର ବରଷ ବୟସର ହସ ଫୁଟିଉଠେ ନାହିଁ । ବୁଢ଼ା ଦେହର ହସ କରିଦିଏ ଯେ ସଂସାରଟାର ସବୁ କଥା ଓ ସବୁ ମଣିଷ ଅଡ଼ୁଆ ପ୍ରକାରର ।

ସାଇକଲରେ ଟ୍ୟୁବ ପକାଇବାକୁ ଭୁଲି ଯାଇଛନ୍ତି କହି ସେ ବାହାରକୁ ଉଠିଗଲେ । ଆଉ ଫେରିବା ଦରକାର ମନେକଲେ ନାହିଁ ।

ସାମନା ଧାଡ଼ିରୁ ଆଗେଇ ଆସିଲେ ରାମପ୍ରସାଦ ବାବୁ । ଆସିଲାବେଳୁ ସେ ଚୁପ୍‌ହୋଇ ବସିଥିଲା । କାରଣ ତାଙ୍କଠାରୁ ଅଧିକ ବୟସର ଲୋକଙ୍କୁ ପ୍ରଣାମ ଜଣେଇବାକୁ ହେବ । ସେ ଦିନ ରାମପ୍ରସାଦ ବାବୁ ସେହି ଚିର ଅଭ୍ୟସ୍ତ—"ଭାଇ ଦଣ୍ଡବତ, ଭାଇନା ପ୍ରଣାମ" କଥାଗୁଡ଼ିକ କହିବାକୁ ଚାହାନ୍ତି ନାହିଁ ।

ବୋଧହୁଏ ସେଇଥିପାଇଁ ସେ ସମସ୍ତଙ୍କୁ ଦେଖି ନ ଦେଖିଲା ପରି ଗୋଟିଏ ଚଉକିରେ ବସି ତାଙ୍କର ଗ୍ଲେଟ ପୁଅକୁ ବେଳେବେଳେ ଦେଖୁଥାନ୍ତି । ପୁଣି ସେମିତି ଅନ୍ୟ ବେଳରେ ନିଜର ପେଟକୁ ଚାହୁଁଥାନ୍ତି ।

ଗଙ୍ଗାମନ୍ଦିର ହୁଡ଼ା ଯେ ମଶା ଶୂନ୍ୟ ହୋଇ ଯାଇଛି—ଏମିତି ତାହାମିଛଟିଏ ଶୁଣିଲା ପରେ ତାଙ୍କର ପାଟି ଚଞ୍ଚଳ ହୋଇ ଉଠିଲା ।

—ଅସମ୍ଭବ—ଅସମ୍ଭବ କ'ଣ ? ସହର ବଜାରରେ ସବୁ ସମ୍ଭବ । ଅଚ୍ଛା, ଆପଣ କହି ପାରିବେ ଗୋଟିଏ ଘରେ କେଇଟି ପାଣି ପାଇପ୍ ଯାଇ ପାରିବ ?

ମାନେ ? ଘର ପିଚ୍ଛା ଗୋଟିଏ ମିଟର ଓ ଗୋଟିଏ ପାଣି ପାଇପ୍ ।

—ସେଇଆ ତ ସମସ୍ତଙ୍କର କଥା । ମୋ ଘରକୁ ମୁଁ ପାଞ୍ଚୋଟି ପାଣି ପାଇପ୍ ନେଇଛି ।

—କେମିତି ?

—ନେଲି ତ । ଦି' ବଖରା ତିଆରି କରେ । ଦରଖାସ୍ତ ଦେଇ ପାଣି ପାଇପ୍ ନିଏ । ସେମିତି ଆଉ ଦି' ତିନି ବଖରା ହେଲେ ଆଉ ଠା'କରେ ଆଉ ଗୋଟିଏ ପାଇପ୍ ଲାଇନ୍ । ମୋ ଘରକୁ ଆସନ୍ତୁ ଦେଖିବେ ଯେ ପାଞ୍ଚୋଟି ପାଇପ୍ ଲାଇନ୍ ଆସିଛି । ଆଉ ମୋର ଦିନମାନ ଚବିଶ ଘଣ୍ଟା ପାଣି ।

ଏସବୁ ଗୂଢ଼ ତଥ୍ୟ ଭାବି ଲାଭ ନାହିଁ । ଏବେ ଯେଉଁ ବେଆଇନ କାରଖାନାର ଧୂମ୍ ଉଠିଛି ସେଥିରେ ଅସମ୍ଭବକୁ ସମ୍ଭବ ଖାଲି ସରକାର କଲ କରୁଛି । ହେଲେ ଅବା ହେଇଥିବ ରାମପ୍ରସାଦ ବାବୁ ପାଞ୍ଚୋଟି ପାଣି ପାଇପ୍ ପାଇଛନ୍ତି ।

ରାମପ୍ରସାଦ ବାବୁ ବୁଝାଇଲେ ତାଙ୍କର ଘର ତିଆରିର କୌଶଳ । କେମିତି ସେ ବୁଦ୍ଧି ଖଟାଇ ଘର କରିଛନ୍ତି । ରାତି ଦିନଟାରେ ସେ ପାଣି ପାଆନ୍ତି । ତାଙ୍କର ଘରର ସବୁ ପ୍ରକାରର ଅଳିଆ ଓ ମଇଳା ସେ ସରକାରୀ ନଳାକୁ ପାଣି ସୁଅରେ ପ୍ରତିଦିନ ଭସେଇ ଦିଅନ୍ତି ।

ବାହାଘରକୁ ନିମନ୍ତ୍ରଣ ପାଇ ଆସିଥିବା ଅତିଥିମାନଙ୍କର କଥାର ସ୍ତର ଏଇଠି ଅଟକୁଥାଏ । ଡାକିଥିବା ଲୋକକଥା ଭାବିବାକୁ ବେଳ କାହିଁ ? ନିଜ କଥା ନିଜକୁ ଅସମ୍ଭାଳ ।

ରାମପ୍ରସାଦ ବାବୁ କଥାର ଖିଅକୁ ଟାଣି ପୁଣି ଆରମ୍ଭ କଲେ—ଆଗେ ଲୋକେ ଜୀବନର ଥରେ ଅଧେ ଅସମ୍ଭବ କଥା ଶୁଣୁଥିଲେ ଅବା ଦେଖୁଥିଲେ । ସେଥିପାଇଁ ତା'କୁ ମନେ ରଖି ସବୁଆଡ଼େ କହି ଦେଉଥିଲେ । ଏବେ ସେ ଯୁଗ ନାହିଁ । ପ୍ରତିଦିନ ନୂଆ ନୂଆ ଲୋକ ସମ୍ଭବ ଓ ଅସମ୍ଭବ ଭିତରେ ଥିବା ପାଚେରୀକୁ ଭାଙ୍ଗି ଫୋପାଡ଼ି ଦେଉଛନ୍ତି ।

ନିଜର ଅଜାଣତରେ ନରବାବୁ ନିଜର ମୁହଁରେ ହାତ ମାରିଦେଲେ । ନିଶଗୁଡ଼ାକ ଅଧା ପାଚି ଗଲାଣି । ଯାହା ଯେତେ ଲୁଗୁଛପା କରାଇଲେ ବି ପାଚିଲା ନିଶ କେଇ ପୁଞ୍ଜାକୁ ଲୁଗୁଇବା କଷ୍ଟ । ସେତିକି ସିନା କହୁଛି ଯେ ନରବାବୁ ପୁରୁଣା ସମୟର ଲୋକ—ସେତେବେଳେ ଅସମ୍ଭବ ଜିନିଷ ଚାରିଆଡ଼େ ପୂରି ରହିଥିଲା ।

ସେଇ କଥା ରାମପ୍ରସାଦ କହୁଛନ୍ତି ଯେ ଏବେ ତାଙ୍କର ବେଳରେ ଅସମ୍ଭବର ଆକାର ଓ ସଂଖ୍ୟା କମି ଯାଉଛି ।

ସେ ଏମିତି କଥା ହିତରେ ଦେଲେଣି କେତୋଟିର ନମୁନା । ଡାକ୍ତରଙ୍କର ସତୁରୀ ବର୍ଷରେ ଆଉରି କୋଡ଼ିଏ ବର୍ଷ ଜୁଆନ ପରି ନଡ଼ବଡ଼ ହେବାର ଇଚ୍ଛା ସେତେ କିଛି ଅସମ୍ଭବ ନୁହେଁ ।

ହସି ରାମପ୍ରସାଦ ବାବୁ କହିଲେ—ମୁଁ ଭଲ କରି ବୁଝୁଛି । ଗାଁରୁ ବାହାରି ଛୋଟିଆ ପଞ୍ଚାୟତ ଶିଲ୍ଟର ହେଡ଼କ୍ୱାର୍ଟର ଦେଇ ସବ୍‌ଡିଭିଜନ ଓ ଜିଲ୍ଲା ରାଜଧାନୀକୁ ଆସନ୍ତି । ସେଇଠୁ ପ୍ରାଦେଶିକ ରାଜଧାନୀ ବାଟଦେଇ ଆପଣ ଦିଲ୍ଲୀ ଆସନ୍ତି ।...

—କ'ଣ ହେବ ?

—ଦେଖିବେ ଆଜ୍ଞା, ଦିଲ୍ଲୀରେ ଅସମ୍ଭବ ଏକାବେଳକେ ଶୂନ୍ । ମୋ କଥାରୁ ମୁଁ ଜାଣିଛି ।

—କ'ଣ ?

—ଚାକିରୀ ଆରମ୍ଭ କଲାବେଳେ ଦିଲ୍ଲୀରେ କରିଥିଲି । ଦରମା ଦିନକୁ ଆଠଟଙ୍କା ସୁଦ୍ଧାଏ । ଆମେ ଦୁଇଜଣ । ହୋଟେଲ ନଏ ପାଖାପାଖି ଦିନକୁ ଆଠଟଙ୍କା—ଖାଇବା ଥାଳି ଓ ଶୋଇବା ଖଟିଆ ପାଇଁ । ସେଥିରେ ଲାଗିଛି କେବେ କେମିତି ଦି'ବାଲଟି ଗରମ ପାଣି ଆଉ ପାଇଖାନାର ସୁବିଧା ......

......ବଞ୍ଚିବ କେମିତି ? ଖାଇ ସାରିଲା ପରେ ଅଫିସକୁ ଯିବାକୁ ଭଡ଼ା ନାହିଁ । ଚାଲିଲେ ଆଉ କ'ଣ ଅଫିସରେ ପହଞ୍ଚି ହେବ । ପାଞ୍ଚ ମାଇଲ ବାଟ । ଯୋତାର ପରମାୟୁ ଅବା କେତେ ? ହେଇ ଚାରି ପାଞ୍ଚଶହ ନଇଲେ ହଜାର ମାଇଲ ସିନା ।

......ଦେଖିଲି ଯେ ଚାକିରୀ ଛାଡ଼ି ଚାଲି ଯିବାକୁ ହେବ । ନଇଲେ ଯେମିତି ସେମିତି ହେଉ ଅଧିକା କିଛି ଆୟ କରିବାକୁ ପଡ଼ିବ ।

......ଓଡ଼ିଆଙ୍କୁ ପଚାରିଲେ ସେମାନେ ଉପଯୁକ୍ତ ପରାମର୍ଶ ଦେବେ ଯେ ସରକାରୀ ଚାକିରି ସାଙ୍ଗରେ ଅନ୍ୟ ଚାକିରୀ ମିଶାଇଲେ ଏମିତି ଗୋଟାଏ ଘନଘଟା ହେବ ଯେ ଦୁଇଟିଯାକ ଚାକିରୀ କୁଆ ପଥର ପରି ମିଳେଇ ଯିବେ ।

ପଞ୍ଜାବୀ ବନ୍ଧୁଙ୍କୁ ଦୁଃଖ ଶୁଣାଇଲି । ସେମାନେ ଦିଲ୍ଲୀର ନାଡ଼ି ନକ୍ଷତ୍ର ଭଲ ଜାଣନ୍ତି । ...ଠିକ୍ ବାଟ ମିଳିଲା ।

—ସତେ ?

—ଆଜ୍ଞା ହଁ । ସେମାନେ କହିଲେ ଦେଖ ଦିଲ୍ଲୀ ହେଲା ରାଜଧାନୀ । ଏଠିକି ଭାରତର ସବୁଆଡ଼ୁ ମଣିଷ ଅସନ୍ତି ଆଉ ଜିନିଷ ଆସେ । ପୁଣି ସେମିତି ଏଠୁ ଭାରତର ସବୁ ଆଡ଼କୁ ମଣିଷ ଯାଆନ୍ତି—ଜିନିଷ ବି ଯାଏ । ଟ୍ରକ୍ ଚଲାଅ । ନ ହେଲେ ମାଲନିଆ ଅଣା କରିବା ତଦାରଖ କର ଓ ଟ୍ରକର ହେଲପର ଦେଇଯାଅ । ଓଳିଏ କାମ କରି ଆଉ ସରକାରୀ ବର୍ତ୍ତନର ଦି'ଗୁଣ ତିନିଗୁଣ କମେଇ ନିଅ

—କଲେ କ'ଣ ସେମିତି ?

ଆଉ କ'ଣ ସେଠି ଆତ୍ମହତ୍ୟା କରିଆନ୍ତି । ହେଲି । ଟ୍ରକ୍, ମାଲ, ହେଲ୍‌ପର ସବୁ କରିଛି । ଚାକିରୀ ତାହାର ଆପଣା ଠାଏଁ ରହିଲା । ଭୟ କମିଗଲେ ଚାକିରୀ ଖାଲି ଆଦର କରେ—ପାଖେ ପାଖେ ରହିବା ପାଇଁ । ଚାକିରୀ ଖାଲି ଯେ ରହିଗଲା ସେତିକି ନୁହେଁ...ଦିନକୁ ଦିନ ବଢ଼ିଲା । ଟଙ୍କା ଅଧିକ ଦେଲା । ମାନ ଦେଲା । ଉନ୍ନତି ବାଟରେ ନେଲା ।

—ତେବେ ଟ୍ରକ୍‌କାମ କ'ଣ ଚାଲିଛି ?

—ନା, ଆଉ ଦରକାର ପଡ଼ୁନାହିଁ । ହେଲେ ବି ରାସ୍ତାରେ ଟ୍ରକ୍‌ଟିଏ ଦେଖିଲେ ମୁଁ ଅଜାଣତରେ ତାକୁ ଗୋଟିଏ ନମସ୍କାର ଦିଏ । ...ସେଇ ହେଉଛି ମୋର ପ୍ରାଣଦାତା ଓ ଆତ୍ମଦାତା ...

—ଏଇ ଅସମ୍ଭବ କଥା କ'ଣ ଏଠି ସମ୍ଭବ ହେବ ?

କେବେ ନୁହେଁ । ଏଠି ସେଇଟା ଅସମ୍ଭବ । ଯେଉଁ ସ୍ଥାନର ପରିଧି ଯେତେ ଛୋଟ, ସେଠି ଅସମ୍ଭବର ପରିଧି ସେତିକି ବଡ଼ । ଦିଲ୍ଲୀରେ ଯାହା ହୋଇ ପାରିବ, ସେତିକି ଏଠି କିଏ ଅବା ଭାବିବାକୁ ସାହସ କରିବ ?

# ॥ ବ୍ୟବଚ୍ଛେଦ ॥

ଅଧ୍ୟାପକ ଉପେନ୍ଦ୍ର ମହାନ୍ତି, (ଟିଟିଲାଗଡ଼)

'ଆକାଶ-ଲଫାଫା ପରେ ସୁନ୍ଦର ମୋହର'
ବନ୍ଦନା ମହାନ୍ତି ପଢ଼େ ନକ୍ଷତ୍ର ଅକ୍ଷର,
'ଠିକଣା ତ ଠିକ୍ ଅଛି ଲାଗେ ଅସମ୍ଭବ,
ଏ ଜୀବନେ ଏହି ଚିଠି କେବେ କି ସମ୍ଭବ ?'
ଜୀବନର ଯେତେ ଅଭିଜ୍ଞତା,
ସବୁ ଆଜି ଲାଗେ ତାକୁ ସ୍ୱପ୍ନ ଛନ୍ଦକଥା ।
ମନେ ପଡ଼େ ଅତୀତର କଲେଜ ଜୀବନ,
ଆଜି ମଧ୍ୟ ମନେ ପଡ଼େ
            ମନଗଢ଼ା ଜୀବନ-ଦର୍ଶନ—
'ସୃଷ୍ଟି ତ ଅସ୍ଥାୟୀ,
ତେବେ କିମ୍ପା ପ୍ରଣୟଟା ହେଉଥିବ ସ୍ଥାୟୀ'
ସେ ଦିନର ସୂର୍ଯ୍ୟକାନ୍ତ, ଶଚୀ ଓ ଅନନ୍ତ,
ସେହିପରି ଆଜି କେତେ ନାମ ଯା' ବିସ୍ମୃତ,
ପ୍ରଣୟର ପୂର୍ଣ୍ଣାହୁତି ଧରି,
ଉପହାସେ ତା ନିକଟୁ ଯାଇଛନ୍ତି ଫେରି ।
ସେତେବେଳେ ଉପଦେଶ ଦିଏ—
'ବନ୍ଦନା' ବନ୍ଦନା ପାଇଁ, ଭୋଗପାଇଁ ନୁହେଁ ।
(ଆଜି) କାଳ ପ୍ରତିକୂଳ,
ସଭିଙ୍କର ପରାଜୟ ତା ଜୀବନେ ଠୁଳ.........
ବସନ୍ତର କୃଷ୍ଣଚୂଡ଼ା ନାହିଁ ତା ଅଧରେ,
ନିଦାଘ ଉଷ୍ଣତା ଆଜି ଶୀତଳ ଅନ୍ତରେ,
ଲୋତକ-ଶ୍ରାବଣ-ଧାର ଶୁଖିଛି ନୟନୁ,
ଶାରଦୀୟ କଳପନା ଲିଭିଛି ତା ମନୁ ।
ହୃଦୟର ଶୀତ-ମୃତ୍ୟୁ ଭିଁରେ ।
ପ୍ରଣୟର ଶୁକ୍ରତାରା ପୁଣି ଉଙ୍କିମାରେ ?
ଏ ଚନ୍ଦ୍ର ହସୁନି ଆଜି
            ଏ ଧରଣୀ କହୁନାହିଁ କଥା,
ଏ ପକ୍ଷୀ ଗାଉନି ଗୀତ,
            ଏ ଆକାଶ ରଚୁନି କବିତା,
ସମସ୍ତଙ୍କ ଶେଷ ପ୍ରତିଶୋଧ,
ବନ୍ଦନା ମହାନ୍ତି ଆଜି
            କରୁଛି ତା ନିଜ ବ୍ୟବଚ୍ଛେଦ,

—*—

# ॥ କର୍ଫ୍ୟୁ ॥

ରଘୁନାଥ ମହାପାତ୍ର

ସୁକାନ୍ତ ଔଷଧ ଶିଶିଟା ଧରି ଦୌଡ଼ିବାକୁ ଲାଗିଲା । କେଉଁ ଦିଗକୁ ଗଲେ ସେ ବିପଦରୁ ରକ୍ଷା ପାଇବ, କିଛି ଚିନ୍ତାକରି ପାରିଲା ନାହିଁ । ରାସ୍ତାର ଦୁଇକଡ଼କୁ ବିକ୍ଷୋଭକାରୀ ଜନତା ହଜାର ହଜାର ସଂଖ୍ୟାରେ ଛତ୍ରଭଙ୍ଗ ଦେଇ ଦୌଡ଼ୁଛନ୍ତି । ପୋଲିସ୍ ଲାଠିରେ ପ୍ରହାର କରୁଛନ୍ତି ଅମାନୁଷିକ ଭାବେ । ଲୁହବୁହା ଗ୍ୟାସ୍ ଫିଙ୍ଗିଲାଣି, ଲୋକେ ଜୀବନ ରକ୍ଷା-ପାଇଁ ଛତ୍ରଭଙ୍ଗ ଦେଉଛନ୍ତି ।

ସେଇ ସାମନା ଦୋକାନଟାରେ ନିଆଁ ଲଗାଇ ଦେଲା କେଜାଣି ? ହୁ-ହୁ-ହୋଇ ଜଳିବା ଆରମ୍ଭ କରିଛି । ଦଳେ ଲୋକ ପୁଣି ପୋଲିସ୍‌ର ଘେରାଭାଙ୍ଗି ଗୋଟାଏ ଲୁଗାଦୋକାନ ଲୁଟ୍‌କରି ନେଉଛନ୍ତି । ପୋଲିସ୍ ଭ୍ୟାନ ଦୋକାନ ପାଖକୁ ଦୌଡ଼ିଲା । ଦୋକାନରେ କିଛିନାହିଁ । ସବୁ ଶେଷ । ସହରର ବଡ଼ ରାସ୍ତାରେ ଏ ସବୁ ଘଟଣା ଘଟିଯାଉଥିବାବେଳେ, ଗୋଟାଏ ଛୋଟ ଗଳି ଭିତରୁ ଶୁଭିଲା କରୁଣ ଓ ଭୟାର୍ତ୍ତ କଣ୍ଠର ଆର୍ତ୍ତନାଦ, ଘର ପୋଡ଼ିଗଲା····· ଘର ପୋଡ଼ିଗଲା । ପୋଲିସ୍ ଦୌଡ଼ିଲେ । ଘର ଜଳୁ ହୁ···ହୁ ହୋଇ ଜଳୁଛି । କାହାକୁ ରକ୍ଷାକରି ହେଉନାହିଁ । ଶତ୍ରୁପକ୍ଷର ସୈନ୍ୟ ଆକ୍ରମଣ ପରି ଅସାମାଜିକ ଲୋକେ ସହରର ଗଳି କନ୍ଦିରେ ଆରମ୍ଭ କରିଦେଇଛନ୍ତି ଅଗ୍ନି ସଂଯୋଗ ଓ ଲୁଟ୍ ତରାଜ ।

ସୁକାନ୍ତ ପ୍ରଧାନ ରାସ୍ତାରୁ ଭାଙ୍ଗିଯାଇ ଗୋଟାଏ ଗଳି ରାସ୍ତା ଭିତର ଦେଇ ଦୌଡ଼ିଲା । ସେ ଯେଉଁ ଆଡ଼କୁ ଦୌଡ଼ୁଥିଲା, ସେଇ ପାଖରୁ ଶୁଭିଲା ପୁଣି ବିପଦଗ୍ରସ୍ତ ମଣିଷର ଆର୍ତ୍ତନାଦ । ନାଁ ଆଉ ଆଗକୁ ଯାଇ ହେବ-ନାହିଁ । ସେଠି ବି ବିପଦ । ଗୋଟାଏ ଦୋତାଲା କୋଠାର ବାରଣ୍ଡା ଉପରକୁ ଉଠିଯାଇ ସୁକାନ୍ତ କବାଟ ଜଞ୍ଜିରକୁ ଝନ୍ ଝନ୍ କଲା । ନିଶବ୍ଦରେ କବାଟଟି ଖୋଲିଗଲା । ସୁକାନ୍ତ ଘର ଭିତରକୁ ଗଳିଁଦେଇ ବିସ୍ମୟରେ ଅବାକ୍ । ଆରେ ଏ ଯେ ବନଲତା ?? ତେବେ ଏଇଟା କ'ଣ ବନଲତାର ଶଶୁରଘର ? ସୁକାନ୍ତ ମନରେ ଅନେକ ପ୍ରଶ୍ନବାଚୀ । ପ୍ରଶ୍ନର ଉତ୍ତର ଖୋଜିବା ଅପେକ୍ଷା ଜୀବନକୁ ବଞ୍ଚାଇବା ବର୍ତ୍ତମାନ ମୁହୂର୍ତ୍ତରେ ସବୁଠାରୁ ବଡ଼ ସମସ୍ୟା ।

ସୁକାନ୍ତ ଘର ଭିତରକୁ ପଶିଯାଇ କହିଲା କବାଟ ଲଗେଇ ଦିଅ । ସେମାନେ ଆମ ପଛେ ପଛେ ଦୌଡ଼ୁଛନ୍ତି । ପାଖଘରେ ନିଆଁ ଲାଗି ଗଲାଣି । ଓଃ କି ବିପଦ !! ସୁକାନ୍ତର ଗୁଣ୍ଡଟା ଭୟରେ ଥରୁଛି । କଣ୍ଠଶବ୍ଦ କେମିତି ଅସ୍ଥିର । ସୁକାନ୍ତକୁ ଚେୟାରଟି ଦେଖେଇ ଦେଇ ବନଲତା କହିଲା ବସ, ଆଉ ଭୟ କରିବାର କୌଣସି କାରଣ ନାହିଁ । ଏଠି ତୁମେ ସମ୍ପୂର୍ଣ୍ଣ ନିରାପଦ, ଏ ଘରେ ଅଗ୍ନି ସଂଯୋଗର ଭୟ ନାହିଁ କାରଣ କୋଠାଘର । ଆକ୍ରମଣର ଭୟ ନାହିଁ । ପାଖରେ ଅଛି ଡବଲବାରେଲ୍ ବନ୍ଧୁକ ଆଉ ଶହେ

ରାଉଣ୍ଡ ଗୁଳି । ଆମେ ମରିବା ପୂର୍ବରୁ ଅନ୍ତତଃ ଶହେ ଲୋକଙ୍କୁ ମାରି ସାରିଥିବା ।

ସୁକାନ୍ତ କ୍ଲାନ୍ତହୋଇ ବସି ପଡ଼ିଲା ଚେୟାର ଉପରେ । ସାର୍ଟଟା ଝାଳରେ ଭିଜିବା ଆରମ୍ଭ କରିଛି । ବନଲତା ପଙ୍ଖାର ସୁଇଚ୍‌ଟା ଟିପିଦେଲେ ।

ବାହାରର ଗଣ୍ଡଗୋଳ, ପୋଲିସର ମାଡ଼ ଏ ସବୁର ପ୍ରତିକ୍ରିୟା ସୁକାନ୍ତ ମନ ଭିତରେ ଝଡ଼ପରି ବହି ଚାଲିଛି । ବନଲତାର କିଛି ପ୍ରତିକ୍ରିୟା ନାହିଁ । ସେ' ତ ଏ ଘଟଣା ଆଖିରେ ଦେଖିନାହିଁ କିମ୍ବା କାନରେ ଶୁଣିନାହିଁ । କେମିତି ବା ପ୍ରତିକ୍ରିୟା ହୁଅନ୍ତା ତାହାର ! ବହୁଦିନ ପରେ ବନଲତା ପାଇଛି ତାର ମନର ମଣିଷକୁ-ସ୍ୱପ୍ନର ରାଜକୁମାରକୁ । କଲେଜରେ ପଢ଼ିଲାବେଳେ ଯାହା ସାଙ୍ଗରେ ସଂସାର ଗଢ଼ିବାର ଏକ ଅଦମ୍ୟ ପିପସା । ଏହି ମୋହ ସୁକାନ୍ତ-ବନଲତା କେବେ ଅନୁରୋଧ ନ କରିଛି, କେବେ ପ୍ରଲୋଭନ ନ ଦେଖେଇଛି । ସୁକାନ୍ତ ଭିନ୍ନ ପ୍ରକୃତିର ପିଲା, ବାସ୍ତବବାଦୀ । କଳ୍ପନାରେ ଭାସିଯିବାକୁ ସେ ଚାହେଁନା । ବିଜ୍ଞାନାଗାରରେ ସେ ଯେପରି ପ୍ରତ୍ୟେକ ଜିନିଷକୁ ବିଶ୍ଲେଷଣ କରେ, ପ୍ରେମିକା ବନଲତାର କଥାକୁ ମଧ୍ୟ ସେହିପରି ସେ ବିଶ୍ଲେଷଣ କରିଥିଲା । ସୁକାନ୍ତର ଜନ୍ମ ଦରିଦ୍ର ପରିବାରରେ ! ଏକାନ୍ତଭାବେ ନିଃସ୍ୱ, ସମ୍ବଳହୀନ । ମେଧାବୀ ଛାତ୍ର ବୋଲି ସବୁବେଳେ ସେ ବୃତ୍ତିପାଇ ପଢ଼ି ଆସିଛି ।

ବନଲତା ରିଟାଏର୍ଡ଼ ଅବକାଶ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ପାଠଙ୍କର ସେନ୍‌ଙ୍କର ଏକମାତ୍ର ଅଲିଅଳ କନ୍ୟା । ସହରରେ କୋଠା ବାଡ଼ି, କାର୍, ବ୍ୟାଙ୍କରେ ଲକ୍ଷାଧିକ ଟଙ୍କାର ବାଲାନ୍‌ସ । ସେହି ବନଲତାକୁ ସେ କେଉଁ ହିସାବରେ ନିଜର ସ୍ତ୍ରୀ ବୋଲି ଗ୍ରହଣ କରିବ !! ଯେଉଁଠି ଆକାଶ ପାତାଳ ପ୍ରଭେଦ-ଚାହିଁଲେ ଆଖି ପାଏନା । ବନଲତା ପ୍ରଲୋଭନ ଦେଖେଇ କହିଥିଲା ମୁଁ ଅଭାବ ଭିତରେ ବଂଚି ପାରିବି ସୁକାନ୍ତ । ମୋର କାର୍ ଲୋଡ଼ା ନାହିଁ କୋଠାଘର ଲୋଡ଼ାନାହିଁ । ତୁମର ସାନିଧ୍ୟ ହିଁ ମୋର ଲୋଡ଼ା । ତୁମକୁ ପାଇଲେ ମୁଁ ସୁଖୀ ହେବି, କେତେଟଙ୍କା ତୁମର ଦରକାର ? ମୁଁ ଦେବି ମୋର ବ୍ୟାଙ୍କ ବାଲାନ୍‌ସ ତିରିଶି ହଜାର । ତୁମ ଛପର ଘରକୁ ମୁଁ କୋଠା କରିଦେବି । ଆଉ କ'ଣ ଚାହଁ ସୁକାନ୍ତ ? ସୁକାନ୍ତ ଏକ ମଳିନ ହସ ହସି କହିଲା, ତୁମେ ସବୁକିଛି କରିଦେଇପାର ବନଲତା; କିନ୍ତୁ ତୁମ ବଂଶର ଯେଉଁ ଅଭିଜାତ୍ୟ, ତୁମ ବାପାଙ୍କର ଯେଉଁ ପ୍ରତିଷ୍ଠା, ସେଥିରେ ଯେଉଁ କଳଙ୍କ ଲାଗିବ ତାକୁ କ'ଣ ତୁମେ ଛଡ଼ାଇ ପାରିବ ?

କଳଙ୍କ !! ଚମକି ପଡ଼ିଥିଲା ବନଲତା ।

ଦୃଢ଼କଣ୍ଠରେ ସୁକାନ୍ତ କହିଥିଲା ହଁ ହଁ କଳଙ୍କ, ସହରରେ ଅପବାଦ ରଟିନା ହେବ ଅବକାଶ ସାହେବଙ୍କ ଝିଅ ଗୋଟେ ଲୋଫର୍ ଟୋକା ସାଙ୍ଗରେ ପଳେଇଛି ।

ବନଲତାର କଣ୍ଠ ଆହୁରି ଦୃଢ଼ ହୋଇ ଉଠିଲା, ସୁକାନ୍ତ ! ତୁମେ ଏଡ଼େ ଭିରୁ । ତୁମେ କ'ଣ ଜାଣନା ନ ସ୍ତ୍ରୀ କ'ଣ ଚାହେଁ । କିଏ ଧନୀ କିଏ ଗରିବ ସେକଥା ନାରୀ ବିଚାର କରେନା ସେ ଚାହେଁ ପୌରୁଷର ଆଶ୍ରୟ । ମୁଁ ଅନେକ ଦିନ ଧରି ଜାଣିଥିଲି ତୁମ ଭିତରେ ବିରାଟ ବ୍ୟକ୍ତିତ୍ୱ ଅଛି । ବଳିଷ୍ଠ ପୌରୁଷ ଅଛି । କିନ୍ତୁ ଆଜି ଜାଣିଲି ତୁମେ ଭିରୁ କାପୁରୁଷ ।

—"ଯେଉଁ ପୁରୁଷ ନାରୀର ପ୍ରଲୋଭନରେ ପଡ଼ି ଆଗେଇ ଯାଏ ତା' ଠାରେ କି ପୌରୁଷ କି ବ୍ୟକ୍ତିତ୍ୱ ପ୍ରକାଶପାଏ ବନଲତା ??"

ବନଲତା ନୀରବ ହୋଇଗଲା ଉତ୍ତର ଦେଇ ପାରିଲା ନାହିଁ । ତା' ପରେ ଆଉ ବୋଧହୁଏ ସୁକାନ୍ତକୁ ସେ କିଛି କଥା କହିନି । ଚୁପ୍‌ହୋଇ ଚାଲି ଯାଇଛି ।

ଦୁଇଦିନ ପରେ ସୁକାନ୍ତଠାରୁ ଖଣ୍ଡେ ଚିଠି ପାଇଥିଲା ବନଲତା । ସେଥିରେ ଲେଖାଥିଲା ପ୍ରେମ ଓ ବିବାହ ଏ ଦୁଇଟି ଭିନ୍ନ ଭିନ୍ନ କଥା । ମୁଁ ଯାହାକୁ ଭଲପାଏ ତାକୁ ଯେ ବିବାହ କରିବି ଏହାର କିଛି

ମାନେ ନାହିଁ । ତୁମ ବଂଶର ଆଭିଜାତ୍ୟ ଅଛି ପ୍ରତିଷ୍ଠା ଅଛି । ତୁମେ ହୁଏତ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କୁ ବିବାହ କରିବ, ସେପରି ସ୍ଥଳେ ମୋ ପରି ଜଣେ ସମ୍ବଳହୀନ ମଣିଷକୁ ବିବାହ କରି ବଂଶ ମର୍ଯ୍ୟାଦାରେ କଳଙ୍କ ଲଗାଇବା ଉଚିତ ନୁହେଁ । ତମକୁ ମୁଁ ଭଲ ପାଏ ସତ୍ୟ; ହେଲେ ଭଲ ପାଇବି । ବନଲତା ବାରମ୍ବାର ପଢ଼ିଥିଲା ସେହି ଚିଠି ଖଣ୍ଡିକୁ········ ଆଜକୁ ଦୁଇ-ବର୍ଷ ତଳର କଥା । ସତକୁ ସତ ବନଲତା ଆଜି ଆଇ.ଏ.ଏସ୍. ଅଫିସରଙ୍କ ସ୍ତ୍ରୀ । ସୁକାନ୍ତ ସେହିପରି ଏକ ସମ୍ବଳହୀନ ମଣିଷ । ବି. ଏସ୍ ସି. ପାଶ୍ କରିବା ପରେ ସୁକାନ୍ତ ପାଇଛି ଖଣ୍ଡେ ଚାକରି ଗୋଟାଏ ପ୍ରାଇଭେଟ କମ୍ପାନୀର କେମେଷ୍ଟ୍ରି ଆସିଷ୍ଟାଣ୍ଟ । ମାସକୁ ଟଙ୍କା ଦୁଇଶହ ଦରମା । ସେତକରେ ପେଟ ପୋଷାରନ୍ତି ଚଳେ । ଘରେ ଏକମାତ୍ର ରୁଗ୍‌ଣା ମାଆ, ସିଏ ବର୍ତ୍ତମାନ ରୋଗ-ଶଯ୍ୟାରେ । ଯାହାପାଇଁ ସୁକାନ୍ତ ଔଷଧ ନେବାକୁ ଆସିଥିଲା ଡାକ୍ତର ପାଖକୁ ।

ହାତରେ ଔଷଧ ଶିଶିଟା ଧରି ସୁକାନ୍ତ ଦରଜା ଖୋଲି ଟିକିଏ ରାସ୍ତା ଆଡକୁ ଚାହିଁଲା । ସେମିତି ହୋ···ହୋ··· ଘୋ···ଘୋ··· ଶବ୍ଦ । ଖୁବ୍ ନିକଟରୁ କେଉଁଠି ଲୁଗା ପୋଡ଼ାର ଉତ୍କଟ ଗନ୍ଧ ପବନରେ ଭାସି ଆସୁଛି । ଉଃ··· ଏ ପୁଣି କି ଗନ୍ଧ !! ଏଗୁଡ଼ା ରବର ପୋଡ଼ାର ଧୂଆଁ । ସେହି ସମୟରେ ପ୍ରଧାନ ରାସ୍ତାରେ ଘଣ୍ଟି ବଜେଇ ଦ୍ରୁତଗତିରେ ଦୌଡ଼ିଗଲା ନିଆଁ ଲିଭା ଗାଡ଼ିଟା । ସାମନା ରାସ୍ତାରେ ଗୋଟାଏ ପୋଲିସ୍ ଭ୍ୟାନ-ସଶସ୍ତ୍ର ପୋଲିସ୍ ବାହିନୀ ନେଇ ଆଗେଇ ଗଲା । ସୁକାନ୍ତ ଭିତରର କବାଟଟା ଲଗେଇ ଦେଲା । କବାଟ ପାଖରେ କାନ ଡେରିଲା । ବୁଟ୍ ଯୋତାର ଶବ୍ଦ ସେମିତି ରାସ୍ତାରୁ ଚାଲି ଆସୁଛି ଘର ଆଡ଼କୁ । ମନଭିତରେ ଏକ ଆତଙ୍କର ସୃଷ୍ଟି । ପଛ ପାଖରୁ ବନଲତା ଡାକିଲା ସୁକାନ୍ତ ! ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? ସନ୍ଧ୍ୟା ବେଳକୁ ଅବସ୍ଥା ଶାନ୍ତ ପଡ଼ିଗଲେ ମୁଁ ତୁମକୁ ଗାଡ଼ିରେ ନେଇ ଘରେ ଛାଡ଼ି-ଦେଇ ଆସିବି ।

"ମୁଁ ଏକୁଟିଆ ହୋଇଥିଲେ ବ୍ୟସ୍ତ ହୁଅନ୍ତି ନାହିଁ ବନଲତା ! ଘରେ ସେଣେ ମାଆ ମୋର ଶଯ୍ୟାଶାୟିନୀ । ହାତରେ ଏଇ ଔଷଧ ଶିଶିଟା ଦେଖୁଛ ତ । ଔଷଧ ନେଇ ଘରକୁ ଫେରିଲାବେଳେ ଏ ଘଟଣା ଘଟିଲା । ମାଆର ରୋଗ ଶଯ୍ୟା ପାଖରେ ବସି ମୁହଁରେ ଟୋପାଏ ପାଣି ଦେବାକୁ ସେଠାରେ କେହିନାହିଁ । କେମିତି ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରିବି ବନଲତା ! ଯାହେଉ ପଛେ ମୁଁ ଚାଲି ଯାଉଛି, ମାଆର ସେବା କରିବାକୁ ପଡ଼ିବ । ତା' ମୁହଁରେ ପାଣି ଦେବାକୁ ହେବ ।"

ବନଲତା ସୁକାନ୍ତର ହାତକୁ ଧରିଲା । ଆଖି ଛଳ ଛଳ କରି କହିଲା "ନାଁ ନାଁ ସୁକାନ୍ତ ଏମିତି ଦୁର୍ଯୋଗରେ ମୁଁ ତୁମକୁ ବାହାରକୁ ଛାଡ଼ିଦେବି ନାହିଁ । ତୁମେ ରାସ୍ତାକଡ଼ରେ କେଉଁଠି ଆଶ୍ରୟ ନେଇଥିଲେ ମୋତେ ଏକଥା କହିବାକୁ ପଡ଼ନ୍ତା ନାହିଁ । ତୁମେ ଯେତେବେଳେ ମୋ ଘରେ ଆଶ୍ରୟ ନେଇଛ, ତୁମ ଜୀବନକୁ ବିପଦାପନ୍ନ କରିବାକୁ ଦେବି-ନାହିଁ ସୁକାନ୍ତ !" ଔଷଧ ଶିଶିଟାକୁ ଟେବୁଲ୍ ଉପରେ ଥୋଇଦେଇ ସୁକାନ୍ତ ଅପଲକ ଆଖିରେ ଚାହିଁ ରହିଲା ବନଲତା ମୁହଁକୁ । ବନଲତାର ଚେହେରାଟା କେତେ ଆତ୍ମୀୟ ହୋଇଉଠିଛି, କେତେ ମଧୁର ହୋଇ-ଉଠିଛି । ତାର ସେହି ବନ୍ଧୁଦିନର ପ୍ରେମିକା ବନଲତା ଆଜି ତାର ଜୀବନ ବଞ୍ଚେଇବାକୁ ଉଶୃଙ୍ଖଳ ହୋଇ ଉଠିଛି । ସେ ଯେ ଜଣେ ଆଇ. ଏ. ଏସ୍. ଅଫିସରଙ୍କ ସ୍ତ୍ରୀ ଗୋଟିଏ ଆଭିଜାତ ପରିବାରର କୁଳବଧୂ-ସେ କଥା ବୋଧହୁଏ ଭୁଲି ଯାଇଛି । ଅନେକ ଦିନ ତଳର ସେହି ମୃତ ପ୍ରେମିକାଟି ଜୀବନ୍ତ ହୋଇ ଛିଡ଼ା ହୋଇଛି ସୁକାନ୍ତ ଆଗରେ ।

ବନଲତାର ଅନୁରୋଧକୁ ଏଡ଼େଇ ପାରିଲାନାହିଁ ସୁକାନ୍ତ, ନୀରବ ହୋଇ ବସିପଡ଼ିଲା ଗୋଟାଏ ଚେୟାର

ଉପରେ । ମୃତ ପକ୍ଷୀର ଉନ୍ମୁକ୍ତ ଡେଣାପରି ପଙ୍ଖାଟା ଘୂରୁଛି ମଥା ଉପରେ ଖୁବ୍ ଧୀରେ ଧୀରେ । ବନଲତା କହିଲ, ସୁକାନ୍ତ ଦୌଡ଼ି ଦୌଡ଼ି ବଡ଼ କ୍ଲାନ୍ତହୋଇ ପଡ଼ିଛ, କିଛିଏ କଫି ଆଣେ ? ଉତ୍ତର କିଛି ମିଳିଲ ନାହିଁ ।

—"କ'ଣ ଗୁଡ଼ା ଖାଅନା କଫି ଖାଅ"

—"କିଛି ଖାଏନା । କେବଳ ପାଣି ଗ୍ଲାସେ ହେଲେ ସବୁ ଶୋଷ ମରିଯାଏ । ଗୁଡ଼ା ଖାଇବାକୁ, କଫି ଖାଇବାକୁ କେଉଁଠୁ ଆସିବ ପଇସା ? ବନଲତା ଆଉ କିଛି ପ୍ରତିବାଦ କରିନ ଦୌଡ଼ିଯାଇ ଗ୍ଲାସରେ ସ୍କ୍ୱାସ୍ ଢାଳି ସରବତ କରି ଆଣିଲ । ସୁକାନ୍ତ ସେତିକ ପିଇ ତୃପ୍ତିରେ ଗୋଟିଏ ନିଶ୍ୱାସ ମାରିଲ ।

ସାମନା ଚେୟାରରେ ବସିଛି ବନଲତା, ମନ-ତଳେ ଆଶାର ଅସଂଖ୍ୟ କଳିକା ପାଖୁଡ଼ା ମେଲଛି । ଦେହରେ ଭରିଛି ମଳୟର ସୁରଭି । ରକ୍ତରେ ଲଗିଛି ଅଜଣାର ତାତି । ପାଗଲ୍‌ପ୍ରାୟ ହୋଇ ଉଠିଛି ସେ । କେତେ ପ୍ରଶ୍ନ କେତେ ଅସରନ୍ତି କଥା ଯାହାକୁ ସେ ମାସ ମାସ, ବର୍ଷ ବର୍ଷ ଧରି ମନତଳେ ଲୁଚେଇ ରଖିଛି ସୁକାନ୍ତ ପାଖରେ କହିବ ବୋଲି । ସବୁକଥାକୁ ଏକ ସାଙ୍ଗରେ କହିବାର ଉତ୍କଣ୍ଠା । କିନ୍ତୁ ଏ କ'ଣ ସେ ଦିନର ଚପଳ ପ୍ରଗଳ୍ଭ ସୁକାନ୍ତ ଆଜି ଏମିତି ମୂକ ସ୍ଥବିର ହୋଇ ବସି ରହିଛି କାହିଁକି ? ସୁକାନ୍ତ ଯଦି ସେହି ଅତୀତର ସ୍ମୃତିରୁ କିଛି ଆରମ୍ଭ କରନ୍ତା, ତେବେ ସବୁକଥା ଖୋଲି ସେ କହିପକାନ୍ତା ।

ସୁକାନ୍ତ ବସି ବସି ଭାବୁଥିଲି ହଠାତ୍ ଯଦି ବନଲତାର ସ୍ୱାମୀ ଚାଲିଆସନ୍ତି, ମୋପରି ଏକ ଅପରିଚିତ ଲୋକକୁ ଦେଖି ବନଲତାକୁ ପଚାରିବେ ଏ କିଏ ? ବନଲତା କ'ଣଦେବ ଉତ୍ତର ? ଆଉ ଯଦି ମୁହଁ ବୁଲେଇ ପଚାରନ୍ତି ଆପଣଙ୍କର କ'ଣ କାମଥିଲି ଏଠି ?? ସେ କ'ଣ ଉତ୍ତର ଦେବ-ପୋଲିସ୍ ଭୟରେ ଆତ୍ମଗୋପନ କରିଛି ବୋଲି !! ନାଁ-ନାଁ ବନଲତାକୁ ଏ ଅପ୍ରୀତିକର ପରିସ୍ଥିତିରେ ପକେଇବା ଅପେକ୍ଷା ମୁଁ ଏଠାରୁ ଚାଲିଯିବା ଶ୍ରେୟସ୍କର ।

କାନ୍ଥ ଘଣ୍ଟାରେ ଠନ୍ ଠନ୍ ହୋଇ ବାଜିଲି ଛ'ଟା ।

ରାସ୍ତାରେ କିଏ କ'ଣ ମାଇକ୍ ଧରି କହୁଥିବାର ଶୁଭାଗଲି । ସୁକାନ୍ତ ଝରକା କବାଟ ଖୋଲି ଶୁଣିଲି ପୋଲିସ୍ ଭ୍ୟାନରେ ଲୋକସମ୍ପର୍କ ବିଭାଗଦ୍ୱାରା ପ୍ରଚାର କରାଯାଉଛି, ସହରରେ ସାମ୍ପ୍ରଦାୟିକ ଉତ୍ତେଜନା ଲାଗି ରହିଥିବାରୁ ଆଜି ସନ୍ଧ୍ୟା ଛ'ଟାଠାରୁ କାଲି ସକାଳ ସାତଟା । ପର୍ଯ୍ୟନ୍ତ କର୍ଫ୍ୟୁ ଜାରି କରାଗଲା । ଘରୁ ବାହାର କେହି କୁଆଡ଼େ ଯାଇପାରିବେ ନାହିଁ । ଯଦି ଆଇନ ଅମାନ୍ୟ କରି କେହି ପଦାକୁ ବାହାରେ, ତେବେ ଗୁଳି କରିବାକୁ ପୋଲିସ କର୍ତ୍ତୃପକ୍ଷ ପଛେଇବେ ନାହିଁ ।

ସୁକାନ୍ତ ଚମକି ପଡ଼ିଲା ଏଁ ସେ ଘରକୁ ଯିବ କେମିତି ??

ବନଲତା ଚେୟାରରୁ ଉଠି ଆସି ପଚାରିଲା ମାଇକ୍‌ରେ କ'ଣ କହୁଥିଲା ସୁକାନ୍ତ !

—"କର୍ଫ୍ୟୁ ଆଜି ସନ୍ଧ୍ୟା ଛ'ଟାରୁ କାଲି ସକାଳ ଛ'ଟା । ମୋର ଉପାୟ କ'ଣ ବନଲତା କେମିତି ଯିବି ଘରକୁ" ?

—"ଯିବାର ଉପାୟ ନାହିଁ ସୁକାନ୍ତ-ଆଜି ରହିବାକୁ ପଡ଼ିବ କାଲି ସକାଳୁ ଚାଲିଯିବ ।"

କର୍ଫ୍ୟୁ ଆଦେଶଟା ଶୁଣି ମନେ ମନେ ହସୁଥିଲା ବନଲତା । ଅବାଧ ସୁକାନ୍ତକୁ ସେ ଅନେକ ଦିନ ପରେ ପାଇଛି ନିରୋଳାରେ, ଯେଉଁ ସୁଯୋଗକୁ କଲେଜ ଜୀବନରେ ବହୁବାର ଖୋଜି ବି ପାଇ ନ ଥିଲା । ବହୁଦିନର ପ୍ରାପ୍ୟ ସେ ଆଜି ତା' ଠାରୁ ଆଦାୟ କରିବ ।

ସୁକାନ୍ତ ପଚାରିଲା ବନଲତା ତମ ସାହେବ କେତେବେଳେ ଅଫିସରୁ ଫେରିବେ ?—"ସାହେବ ଫେରିବେ ନାହିଁ ସେ ଆଜି ସକାଳଠାରୁ ଯାଇଛନ୍ତି

ସୁନ୍ଦରଗଡ଼ ଟାଉନ୍‌ରେ । ସୁକାନ୍ତ ! ତୁମେ ଆଜି ହେବ ଏ ଘରର ସାହେବ ଓ ଘରର କର୍ତ୍ତା ।"

॥ ଦୁଇ ॥

ରାତି କ୍ରମେ ଘନୀଭୂତ ହେଲା । କଳମୁଖରିତ ସହରର ରାସ୍ତା ମଲସାପ ପରି ହୋଇଛି ନୀରବ ଅଚଳ । କେଉଁଠି ହେଲେ ଗୋଟେ ମଣିଷର ଦେଖା-ନାହିଁ । କେତୋଟା ବୁଲା କୁକୁର ଏ ପାଖରୁ ସେପାଖ ଦୌଡ଼ୁଛନ୍ତି । ଭୋ-ଭୋ ହେଉଛନ୍ତି । ରାତି ଯେତିକି ଘନୀଭୂତ ହୋଇ ଆସୁଛି ସହରଟା ସେତିକି ଶାନ୍ତ ନୀରବ ଜଣା ପଡ଼ୁଛି ।

ବନଲତା ପଚାରିଲା ସୁକାନ୍ତ ତୁମେ କ'ଣ ଖାଇବ କୁହ ? ଆଜି ମୁଁ ନିଜ ହାତରେ ରାନ୍ଧି ତୁମକୁ ଖୋଇବି । ଅନେକ ଦିନ ପରେ ସୁଯୋଗ ପାଇଛି ।

—"ତୁମେ ରାନ୍ଧିବ ? ପୂଝାରୀ ଚାକର କ'ଣ କେହି ନାହାନ୍ତି ? "

—"ସବୁ ଅଛନ୍ତି କେହି ଆସିବେ ନାହିଁ ।"

—"କାହିଁକି ?"

—"କର୍‌ଫ୍ୟୁ········କର୍‌ଫ୍ୟୁ" ଦାନ୍ତ ଚିପି ଚିପି ହସିଲା ବନଲତା । ଏ ଘରେ ତମେ ଆଉ ମୁଁ ତା' ଛଡ଼ା ଆଉ କେହି ନାହିଁ । ସୁକାନ୍ତ ଟିକିଏ ସ୍ୱସ୍ତି ଅନୁଭବ କଲା ।

ବନଲତା ଗୋଟାଏ ଇସ୍ତ୍ରୀ ଦିଆ ଲୁଗା ଆଣି ସୁକାନ୍ତ ହାତକୁ ବଢ଼େଇ ଦେଇ କହିଲା "ଲୁଗାଟା ପାଲଟିପକା । ଚାଲ ଟିକିଏ ବିଶ୍ରାମ ନେବ ମୁଁ ରୋଷେଇ କରିବି । ସୁକାନ୍ତ ପଚାରିଲା କେଉଁଠି ବିଶ୍ରାମ ନେବି ?"

—"ଆସ ମୋ ସାଙ୍ଗରେ ।"

—"ଏଇ ପଲଙ୍କ ଉପରେ ଶୁଅ ।"

ବନଲତାର ନିର୍ଦ୍ଦେଶ ଶୁଣି ବିସ୍ମିତ ହେଲା ସୁକାନ୍ତ । ସ୍ୱାମୀ-ସ୍ତ୍ରୀ ଯେଉଁ ପଲଙ୍କ ଉପରେ ଶୁଅନ୍ତି ସେଇଠି ବିଶ୍ରାମ ନେବାକୁ କହୁଛି ସେ ।

—"ବନଲତା ମୋତେ ଅନ୍ୟ ଜାଗାରେ ବିଛଣା କରିଦିଅ । ମୁଁ ସେଠି ଶୋଇ ପାରିବି ନାହିଁ ।"

"ନା-ନାଁ ସୁକାନ୍ତ ତୁମକୁ ସେଇଠି ଶୋଇବାକୁ ପଡ଼ିବ । ଯେଉଁ ଶଯ୍ୟାରେ ତୁମେ ଦିନେ ଶୋଇଥା'ନ୍ତ ସେଠି ଅନ୍ୟ ଜଣେ ପୁରୁଷ ଶୋଉଛି । କିନ୍ତୁ ଆଜି ଯେତେବେଳେ ତୁମେ ଆସିଛ ତୁମେ ତୁମର ନ୍ୟାଯ୍ୟ ସ୍ଥାନରେ ଶୋଇବ ।"

ସୁକାନ୍ତ ଭାବୁଛି ବନଲତା କ'ଣ ପାଗଳୀ ହୋଇ ଯାଇଛି ନା କ'ଣ ? ଏମିତି କ'ଣ କହି ଯାଉଛି । ସୁକାନ୍ତ ଯାଇ ପଲଙ୍କ ପାଖ ଗୋଟିଏ ଚେୟାର ଉପରେ ବସିପଡ଼ିଲା । କାନ୍ଥ ସେଲ୍‌ଫ୍‌ରୁ ଖଣ୍ଡେ ଇଂରାଜୀ ନଭେଲ ଆଣି ଆଖି ବୁଲେଇବାକୁ ଲାଗିଲା ।

ବନଲତା ରୋଷେଇ ଘରକୁ ଚାଲିଗଲାଣି ।

ସୁକାନ୍ତ ଆଖି ବୁଲେଇଲା ଘରର ଚତୁର୍ଦ୍ଦିଗକୁ । ସାଜସଜ୍ଜା ବେଶ୍ ଅଭିଜାତ ପୂର୍ଣ୍ଣ । ପଲଙ୍କର ମୁଣ୍ଡ-ପାଖ କାନ୍ଥ ଦେହରେ ଝୁଲୁଛି ସେହି ଡବଲ ବାରେଲ ବନ୍ଧୁକଟା । ଯେଉଁଟାକୁ ବନଲତାର ସ୍ୱାମୀ ବଣକୁ ଶିକାର କରିବାପାଇଁ ସାଙ୍ଗରେ ନିଅନ୍ତି । ସେ ଭାରି ଶିକାର ପ୍ରିୟ । ମାସରେ ଥରେ ଦିଥର ଶିକାର ନ କଲେ ତାଙ୍କୁ ଭଲ ଲାଗେନି । ଆଜି ଯଦି ସେହି ଶିକାରୀ ମଣିଷଟି ଅକସ୍ମାତ୍ ରାତିରେ ଫେରିଆସି ଦେଖନ୍ତି ତାଙ୍କ ବିଛଣାରେ ଶୋଇଛି ଅନ୍ୟ ଜଣେ ପୁରୁଷ, ତାକୁ ଶିକାର କରିବାକୁ ପଛେଇବେ କାହିଁକି ? ଅନେକ ଦିନ ଧରି ପଶୁରକ୍ତର ସ୍ୱାଦ ସେ ଚାଖିଛନ୍ତି । ଆଜି ମଣିଷ ରକ୍ତର ସ୍ୱାଦ ଚାଖିନେବେ । ସୁକାନ୍ତର ଅନ୍ତର ଭିତରଟା କେମିତି ଅଜଣା ଭୟରେ ଥରି ଉଠିଲା ।

॥ ତିନି ॥

ସୁକାନ୍ତ ବନଲତାର ଅନୁରୋଧକୁ ଏଡ଼େଇ ଦେଇ ଅନ୍ୟ ଗୋଟେ ଘରେ ଶୋଇଛି । ଆଖିକୁ ନିଦ ଆସୁ-ନାହିଁ । ଘଣ୍ଟାକ ପୂର୍ବର ବନଲତା କଥା ତାର

ବାରମ୍ବାର ମନେ ପଡ଼ୁଛି । ଖାଇଲାବେଳେ ବନଲତା ପରଶି ଦେଇ କହୁଥିଲା ମନଭରି ଖାଅ ସୁକାନ୍ତ-ଯାହା ଖାଇବ ତାହା ଦେବି । ଅନେକ ଦିନ ତଳେ ଇଚ୍ଛାଥିଲା ତୁମକୁ ଏଇ ହାତରେ ରାନ୍ଧି ନିଜହାତେ ଖୋଇବି; କିନ୍ତୁ ସେ ସୁଯୋଗକୁ ତୁମେ ଏଡ଼େଇଦେଇ ଚାଲିଗଲ । ଆଜି ପୁଣି ଅନେକ ଦିନ ପରେ ସେ ସୁଯୋଗ ଆସିଛି । ଖାଅ ଯେତେ ଖାଇବ ଦେବି । ପିଲାଙ୍କ ପରି ସୁକାନ୍ତକୁ ନିଜ ହାତରେ ଖୋଇଦେଲା ବନଲତା ।

ବାହାରେ କ'ଣ ଠକ୍ ଠକ୍ ଶବ୍ଦ ହେଲା । ସୁକାନ୍ତ ଉଠିଯାଇ ଝରକା ଖୋଲି ତଳରାସ୍ତାକୁ ଚାହିଁଲା । କେହି କୁଆଡ଼େ ନାହିଁ । ଦୁଇଜଣ ବନ୍ଧୁକ-ଧାରୀ ପୋଲିସ୍ ବୁଟ୍ ଯୋଡାକୁ ମଚ୍ ମଚ୍ କରି ଗଳିର ଏ ମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ପଇଁତରା ମାରୁଛନ୍ତି । ଗୋଟାଏ ଭଙ୍ଗା ଟିଣକୁ ବୋଧହୁଏ ପୋଲିସ୍‌ଟା ଗୋଇଠା ମାରି ରାସ୍ତାକଡ ଡ୍ରେନ୍‌କୁ ଗଡ଼େଇଦେଲା ।

ଝରକା କବାଟଟା ବନ୍ଦ୍ କରି ସୁକାନ୍ତ ମାରବରେ ଆସି ବିଛଣା ଉପରେ ଶୋଇପଡ଼ିଲା । କବାଟରେ ପୁଣି ଠକ୍ ଠକ୍ ଶବ୍ଦ । ସୁକାନ୍ତ କବାଟଟି ଧୀରଭାବେ ଖୋଲିଦେଲା । ଅନ୍ଧାରରେ ଗୋଟିଏ ନାରୀମୂର୍ତ୍ତି ପଶି ଆସିଲା ଘର ଭିତରକୁ । ସୁକାନ୍ତ ଆଶ୍ଚର୍ଯ୍ୟଭରା କଣ୍ଠରେ ପଚାରିଲା କିଏ ବନଲତା ?

—"ହଁ"

ଅତରର ମୃଦୁ ମଧୁର ବାସ୍ନାରେ ମହକି ଉଠୁଥିଲା ଘରଟା । ଠିକ୍ ହେନାଫୁଲର ବାସ୍ନା । ସୁକାନ୍ତ ସୁଇଚ୍‌ଟା ଟିପିଦେଲା । ଆଲୁଅରେ ଦେଖିଲା ଅପୂର୍ବ ବେଶରେ ସଜେଇ ହୋଇଛି ବନଲତା । ଗଭାରେ ହେନାଫୁଲରୁ ପେନ୍ଥାଏ ଖୋସି ଦେଇଛି । ବନଲତା ନିଜେ ଯାଇ ସୁଇଚଟା ଅଫ୍ କରି ଘର ଭିତରଟା ଅନ୍ଧାର କରିଦେଲା ।

—"ମୋତେ ଆଲୁଅରେ ଆଉ ଦେଖନା ସୁକାନ୍ତ-ଅନେକ ଦିନ ଧରି ଦେଖିଛ । ଆଜି ଅନ୍ଧାରରେ ମୋ ମନଟାକୁ ଥରେ ଦେଖ । ମୁଁ ଆଇ. ଏ. ଏସ. ଅଫିସରର ସ୍ତ୍ରୀ ହୋଇ କେତେ ସୁଖୀ ହୋଇଛି !! ତନ୍ନାକରି ଦେଖ ନାରୀ ମନ ଚାହେଁ; ନା ଧନ ଚାହେଁ । କେଉଁଟା ତା ପକ୍ଷରେ ମହାନ । କେଉଁଟା ତା ଜୀବନକୁ ସାର୍ଥକ କରେ । ବିବାହ ଦିନଠାରୁ ଆଜି ପର୍ଯ୍ୟନ୍ତ ମୋ ମନ ଉପରେ ଜାରି ହୋଇଥିଲା କର୍‌ଫ୍ୟୁ । ସ୍ୱାମୀଙ୍କର ସତର୍କ ଦୃଷ୍ଟି, ସ୍ୱାମୀଙ୍କର ଆଦେଶକୁ ଲଙ୍ଘନ କରିବାର କୌଣସି ଉପାୟ ନ ଥିଲା । ଆଜି ସାରା ସହରରେ କର୍‌ଫ୍ୟୁ, କିନ୍ତୁ ମୋ ମନ ସହରର ଚଉସୀମାରୁ କର୍‌ଫ୍ୟୁ ଉଠିଛି । ମୁଁ ଆଜି ତୁମକୁ ପାଇ ହୋଇଛି ମୁକ୍ତ ଆକାଶର ବିହଙ୍ଗୀ । ଡେଣା ହଲେଇ ତୁମ ସାଙ୍ଗରେ ଉଡ଼ିଯିବାର ପ୍ରବଳ କାମନା ।"

—"ସୁକାନ୍ତ ମୋର ଗୋଟାଏ ଅନୁରୋଧ ରଖିବ ?"

—"କ'ଣ"

—"ମୁଁ ତୁମ ସାଙ୍ଗରେ ଚାଲିଯିବାକୁ ଚାହେଁ ଏଇ ପିଶାଚକୁ ଛାଡ଼ିଦେଇ ।"

—"ପାଗଳୀଙ୍କ ପରି ଏ କ'ଣ କହୁଛ ବନଲତା ସେ ପରା ତୁମର ସ୍ୱାମୀ !!"

—"ନାଁ ନାଁ ସୁକାନ୍ତ ମୁଁ ପାଗଳୀ ନୁହେଁ-ମୁଁ ପ୍ରଗଳ୍‌ଭା ନୁହେଁ-ମୁଁ ଯାହା କହୁଛି ଠିକ୍ କହୁଛି । ମଣିଷ ଯେଉଁଠି ମଣିଷର ମନ ବୁଝେନା ପଶୁ ରକ୍ତରେ ହୋରି ଖେଳେ, ଅନ୍ୟ ସ୍ତ୍ରୀକୁ ନେଇ ଯିଏ ସହର ବାହାର ଡାକବଙ୍ଗଳାରେ ପିକ୍‌ନିକ୍ କରେ, ସେ ପିଶାଚ ନୁହେଁ ଆଉ କ'ଣ ? ମୋର ଆଖି ଆଗରେ ନ ହେଲେ ବି ମୋ ଜଣାରେ ଚାଲେ ଏ ନାରକୀୟ ଲୀଳା । ମୁଁ ନାରୀ । ମୁଁ ତ କାଠ-ପଥର ନୁହେଁ । କେତେଦିନ ସହିବି ଏଗୁଡ଼ା ।

ସୁକାନ୍ତ ବନଲତା ଜୀବନର ଯେଉଁ ସୁଖମୟ ସଂସାରର କଳ୍ପନା କରିଥିଲା, ତାହା କ୍ଷଣକ ଭିତରେ ଉଭେଇଗଲା । ବନଲତା ସୁକାନ୍ତର ଛାତି ଉପରେ ମଥାରଖି କହିଲା ସୁକାନ୍ତ ତୁମେ ଥରେ ମତେ

ସ୍ବର୍ଗକର ମୋ ନାରୀତ୍ୱକୁ ଥରେ ସମ୍ମାନ ଦିଅ । ତା ନ ହେଲେ ଜୀବନର କାମନା ଅପୂର୍ଣ୍ଣ ରହିଯିବ ଚିରଦିନ ଲାଗି । ତୁମେ ମୋର ପ୍ରେମିକ । ତୁମେ ମୋର ମନର ମଣିଷ । ଅନେକ ଦିନ ପରେ ତୁମକୁ ପାଇଛି ।

ସୁକାନ୍ତ ଅନୁଭବ କଲା ତାର ପ୍ରେମିକା ବନଲତାର ମୁହଁପାଖରେ ଆଜି ଗୋଟିଏ ରୋଗଣୀର୍ଣ୍ଣ ବୁଢ଼ୀର ମୁହଁ, ଆଖି ଛଳ ଛଳ କରି କହୁଛି ସୁକାନ୍ତ ତୁ କ'ଣ ମୋ ରୋଗ ଯନ୍ତ୍ରଣା କଥା ଭୁଲିଗଲୁ ? ପାଣି ଟୋପାଏ ଦେବାକୁ ମୋ ପାଖରେ କେହିନାହିଁ । ତୁ ସେଠି କ'ଣ କରୁଚୁ ? ସେ ରୋଗଣୀର୍ଣ୍ଣା ମୁହଁଟି ଆଉ କାହାର ନୁହେଁ, ତା' ସ୍ନେହମୟୀ ମାଆର । ଚମକି ପଡ଼ିଲା ପରି ବିଛଣାରୁ ଉଠି କହିଲା ବନଲତା ମୁଁ ଟିକିଏ ଆସୁଛି ।

ବନଲତା ବିଛଣା ଉପରେ ବସି ଅପେକ୍ଷା କରୁଛି ତାର ପ୍ରେମିକକୁ ।

ସୁକାନ୍ତ ଔଷଧ ଶିଶିଟା ଧରି ସନ୍ତର୍ପଣରେ ବାହାରି ଆସିଲା ସେ ଘରୁ । ରାସ୍ତାରେ ବନ୍ଧୁକଧାରୀ ପୋଲିସ ସହର ସାରା କରଫ୍ୟୁ । ତଥାପି ତାକୁ ଯିବାକୁ ପଡ଼ିବ—ତାଆ ମାଆ ପାଖକୁ । ପୋଲିସର ସତର୍କ ଦୃଷ୍ଟିକୁ ଏଡ଼େଇ ଯିବାକୁ ପଡ଼ିବ ତା' ଛଡ଼ା ତା'ର ଅନ୍ୟ କିଛିଉପାୟ ନାହିଁ ।

ଦାଣ୍ଡପାଖ କବାଟ ଖୋଲିବାର ଶବ୍ଦ ଶୁଭିଲା, ବନଲତା ଶୋଇବା ଘରୁ ଉଠିଯାଇ ଦେଖେ ତ ସୁକାନ୍ତ ଔଷଧ ଶିଶିଟା ଧରି ଚାଲିଯାଇଛି । ସେ ଚିତ୍କାର କରିଉଠିଲା ସୁକାନ୍ତ······ସୁକାନ୍ତ·········

କିନ୍ତୁ କାହିଁ ସେହି କ୍ଷୁଆଁଡ଼ି ନାହାନ୍ତି । ଘର ଭିତରଟା ଭୂତକୋଠି ପରି ଭୟଙ୍କର । ସାରାଟା ଅମାବାସ୍ୟାର ଅନ୍ଧକାର ଯେପରି ଏକସାଙ୍ଗେ ଘନୀଭୂତ ହୋଇ ସେ ଘରେ ଜମାଟ ବାନ୍ଧିଛି । ଘରେ ଆଲୁଅ ଥିଲେ ତଥାପି ସେ ଆଲୁଅ ଜାଳିପାରୁ ନାହିଁ । ସମଗ୍ର ଶରୀର ତାର ନିସ୍ତେଜ, ଶକ୍ତିହୀନ । ଏକ ଆହତ ଅପମାନର ଗ୍ଲାନିରେ ସେ ଶୋଇ କାନ୍ଦିବାକୁ ଲାଗିଲା ।

ସୁକାନ୍ତ ରାସ୍ତାକଡ଼ର ଗାଢ଼ ଅନ୍ଧାର ଭିତରେ ଲୁଚି ଲୁଚି ଚାଲିଛି ପୋଲିସର ସତର୍କ ଦୃଷ୍ଟିକୁ ଏଡ଼େଇ । କେତୋଟି ଘଣ୍ଟାର ଗଣ୍ଡଗୋଳରେ ସହରଟା ଦିଶୁଛି ଶ୍ମଶାନ-ଶ୍ରୀହୀନ । କେତେ ଘର ପୋଡ଼ିଯାଇଛି, କେତେ ଦୋକାନ ଲୁଟ୍ ହୋଇ ଯାଇଛି । ରାସ୍ତା ଉପରେ ଗାଣ୍ଡି ଗାଣ୍ଡି ପୋଡ଼ା ଅଧାପୋଡ଼ା ଲୁଗାର ପାଉଁଶ ।

ଏଇଟା ଯୋତା ଦୋକାନ ଥିଲା । କବାଟ ଭଙ୍ଗା-ହୋଇ ଯୋତାସବୁ ଲୁଟ୍ ହୋଇଛି । ତା' ପାଖକୁ ରେଡ଼ିଓ ଦୋକାନଟା ସେ ବି ଶେଷ । କେତେଟା ଭଙ୍ଗା ଭଙ୍ଗା ରେଡ଼ିଓ ଇତସ୍ତତଃ ହୋଇ ପଡ଼ିଛି ରାସ୍ତାଉପରେ । ଗଳି ମୋଡ଼ରେ ସେହି କାଠ କେବିନ୍‌ଟା ଯେଉଁଥିରେ ପଢ଼ୋଶୀ ହମିଦ୍‌ର ଥିଲା ପାଉଁରୁଟି ଦୋକାନ । ସେ କେବିନ୍‌ଟା ଅଧାଜଳା ହୋଇ ତଳ ପଡ଼ିଛି ରାସ୍ତାଉପରକୁ । ପାଉଁରୁଟିର କେତେଖଣ୍ଡ ଟୁକୁରା ରାସ୍ତାସାରା ବିଚ୍ଛେଇ ହୋଇ ପଡ଼ିଛି । କେବିନ୍ ସେପାଖକୁ ଗୋଟାଏ ବଳଦଗାଡ଼ି ସେଟା ମଧ୍ୟ ଅଧାଜଳା ହୋଇ ଅଖଦେହରୁ ଖସି ପଡ଼ିଛି । ଏହି ବଳଦ ଗାଡ଼ିଟା ଥିଲା ଜଡ଼ା ଅମିର ମିଆଁର ଅନ୍ନଦାତା ।

ସୁକାନ୍ତ ଲୁଚି ଲୁଚି ବହୁ କଷ୍ଟରେ ଆଗେଇ ଆସିଲାଣି ଅନେକ ବାଟ । ଏଇ ଗଳିର ମୋଡ଼ ଡେଇଁ ପଡ଼ିଲେ ତା' ଘର । ଘରଟା ଯେତିକି ପାଖେଇ ଆସୁଥାଏ ମନଟା ସେତିକି ଆନନ୍ଦ ହେଉଥାଏ ।

ହଠାତ୍ ଗୋଟାଏ କୁକୁର ଭୋ ଭୋ ହୋଇ ଗର୍ଜି ଉଠିଲା ।

କୁକୁରଟା ଜଂଜିରରେ ବନ୍ଧା ହୋଇଛି ନ ହେଲେ ଛୁଟି ଆସି ସୁକାନ୍ତର ମାଂସ ଝିଙ୍କି ଦିଅନ୍ତା । ଟିକିଏ ସତର୍କ ହେବାପାଇଁ ସୁକାନ୍ତ ଘରର ବାରଣ୍ଡା ଉପରକୁ ଉଠିଗଲା । ବାରଣ୍ଡାଟା ଅନ୍ଧାର-ସେଠାରେ ନିଜକୁ

ଲୁଚେଇ ଦେଇଦେବ । କୁକୁର ଭୁକିବାର ବିରାମ ନାହିଁ। ସେ ଆହୁରି ଜୋରରେ ଭୁକୁଛି । ଗଳି ମୋଡ଼ ଉପରେ ପଇଁତରା ମାରୁଥିବା ପୋଲିସଟା ବୁଟ୍ ଯୋଡାକୁ ମଚ୍ ମଚ୍ କରି ଛୁଟି ଆସିଲା ସେଇ ଆଡ଼କୁ । ସୁକାନ୍ତ ଦେଖିଲା ବାରଣ୍ଡାରେ ଛିଡ଼ାହେବା ବିପଜ୍ଜନକ । ଏଠାରୁ ଦୌଡ଼ିଗଲେ ଗୋଟିଏ ମିନିଟ୍‌ରେ ଘରେ ପହଞ୍ଚି ହେବ । କୁକୁର ଭୁକୁଥାଉ କେତେ ଭୁକିବ । ସୁକାନ୍ତ ବାରଣ୍ଡାରୁ ଓହ୍ଲେଇ ଆସି ଦୌଡ଼ିବାକୁ ଲାଗିଲା । ଗଳି ମୋଡ଼ରେ ପଇଁତରା ମାରୁଥିବା ପୋଲିସଟା ପାଖେଇ ଆସି ସାଗରେ ଚିତ୍କାର କରି କହିଲା ଦୁସ୍ମନ କୌନ୍ ହାଏ...ଖାଡ଼ା ରହୋ.........

ସୁକାନ୍ତ ପୋଲିସର ଡାକ ଶୁଣିବି ନ ଶୁଣିଲା ପରି ଦୌଡ଼ୁଥିଲା । ଜଗୁଆଳୀ ପୋଲିସଟି ଭାବି ନେଇଥିଲା ଲୋକଟା ଘରେ ନିଆଁ ଲଗେଇବାପାଇଁ ନିଶ୍ଚୟ ଆସିଥିଲା ତା' ନ ହେଲେ ଦୌଡ଼ୁଛି କାହିଁକି ? ପୋଲିସର ଚିତ୍କାର ଦୁସ୍ମନ...ଦୁସ୍ମନ୍ । ପୋଲିସ ହାତର ରାଇଫଲ୍‌ଟା ସହରର ନିଦୁଆ ଗୁଡ଼ିକୁ ଥରେଇ ଦେଇ ଗର୍ଜି ଉଠିଲା ।

—*—

# ॥ ଅଭିଯୋଗ ॥

ପ୍ରଭାତୀ କୁମାରୀ ସାମଲ
( ଯାଜପୁର )

ଘୁମାନ୍ତ ଏ ଦିଗ୍‌ବଳୟ କୋଳେ
ହେ ସବିତଃ ଅସ୍ତମୁଖୀ ଦିବାକର ଅନ୍ତିମ ବେଳାର
ଆବର୍ତ୍ତନେ ଅଭିସାର ରଚି ନିତି ଛଳେ
ପୁରାତନୁ ଆତ୍ମାହୁତି ଦେଇ ନୂତନ ସଂଗୂର ।
ଚିରସତ୍ୟ ଯଦି ଏହା ତେବେ କମ୍ପା ପୁଞ୍ଜିଭୂତ ଦୁଃଖ ଅବସାଦ
କ୍ଲାନ୍ତିଭରା ଏ ଜୀବନ ତନ୍ତ୍ରେ ତୋଳୁଅଛି ମୃତ୍ୟୁର ଝଙ୍କାର
ଅତୃପ୍ତ ଏ ଆତ୍ମା ଆଉ ଶାନ୍ତିହୀନ ଭାଗ୍ୟ ସୂଚୀପତ୍ରେ
ଲେଖା ନାହିଁ ତେବେ କଣ 'ଦୁଃଖପରେ ସୁଖର ସଞ୍ଚାର' ?
ସ୍ରଷ୍ଟା ତବ ସୃଷ୍ଟିଧର୍ମେ ନୁହେଁ ଏକ ମହା ବ୍ୟତିକ୍ରମ
ଅନନ୍ତ ବୈଚିତ୍ର୍ୟ ରାଜି ନିର୍ଦ୍ଦେଶେ ଯା ଗଢ଼ା ଅହର୍ନିଶ
କୁଣ୍ଠିତ, କୃପଣ କମ୍ପା ରେଣୁସମ ସେହି ଶାନ୍ତି ଦାନେ
ମୁଁ ଯେବେ ତୁମରି ସୃଷ୍ଟି ମମାର୍ଥେ କି ଭିନ୍ନ ତବ ରୁଚି ।
ଅସ୍ତମିତ ଜୀବନ ପ୍ରଦୀପ ଲଭିଗଲେ ଆୟୁଷର ଘୂର୍ଣ୍ଣିବାତ୍ୟା ଫଳେ ।
ଲୋଡ଼ିବନି ଭିକ୍ଷା ତବ-ଜଳଦାନ ମୃତ୍ୟୁ ଉପକଣ୍ଠେ
ଗାଇବନି ଅତୃପ୍ତ ମୋ ଆତ୍ମା ପରପାରେ ସମଦୃଷ୍ଟି ସ୍ରଷ୍ଟାର ସୃଜନେ
କହିବନି ଆଜ ବିଶ୍ୱଜନେ ଶ୍ରେଷ୍ଠବେଳି ଏହି ସୃଷ୍ଟି ଗାଇ ମୁକ୍ତ କଣ୍ଠେ ।

—*—

# ।। ଅଭିପ୍‌ସା ।।

କୁମାରୀ ପ୍ରୀତିନନ୍ଦା ଦାଶ

ଅନେକ ଦୂରରେ ଥାଇ କେବେ ଦେଖେ ମୋ ଗାଆଁର ଅନେକ ରହସ୍ୟ
ଯେପରି କି ସୂର୍ଯ୍ୟଙ୍କୁ ତ ଜାଣୁ ବେଶ୍ ସେ ଆମଠୁ ଅନେକ ଦୂରରେ,
ସମୁଦ୍ର ଭିତର କଥା ଅନୁଭବ ଦୂରୁ କରହୁଏ
ଯେପରି ଦେଖିହୁଏ ଭଗବାନ୍   ତାଙ୍କର ସେ ଆତ୍ମପ୍ରଶସ୍ତିରେ ।
ମୋ ଦେହ ଗାଆଁର କଥା ଅନ୍ୟ କେହି ଜାଣି ପାରିବେନି
ଏପରି କି ଭଗବାନ୍ ନିଜେ ମଧ୍ୟ ହାରିଯିବେ ମୋ ଦେହର କପଟପାଶାରେ
ଯେହେତୁ ମୁଁ ଏଠି ସତ୍ୟ ମୋ ବୃକ୍ଷର ଅନାବନା ଅନେକ ସମ୍ପତ୍ତି
କେହି କଣ ବୁଝିପାରେ ମୋ ଭିତରେ ଲୁଚିଥିବା ଅନେକ ପ୍ରବୃତ୍ତି ?
ମୋ ଗାଁ ନିଜସ୍ୱ ଗାଁ ତୃଷା ଶୂନ୍ୟ ଶୂନ୍ୟର ବଉଦ
କେଇ ବିନ୍ଦୁ ଆଶାର ପ୍ରବାଳ କମ୍ବା ନିରାଶାର ମେଘ
ଅସ୍ତି ନାସ୍ତି ଯୋଡ଼ିଏ ବାଚକ ଅବା କେଇ ଅନାବାଦି ଭୂଇଁ
ମୁଁ ତାକୁ କଲି ଗୋଚର ସମସ୍ତଙ୍କ ଗୋଚରାର୍ଥେ ଉତ୍ସର୍ଗିଲି ମୁହିଁ ।
.........ପ୍ରଭୁଁ ମ ! ତୁମେ ମୋ ଦଲିଲ ଲେଖ,
ମୋ ଖୁଦ କିଆରି ଗାଁ ତମ ଦ୍ୱାରେ କଲି ସମର୍ପଣ
ମୁଠିଏ ମୁଠିଏ ଖାଅ, ମୁହିଁ ସରି ବନ୍ଧୁ ତବ ସୁଦାମା ବ୍ରାହ୍ମଣ ।
ସ୍ତ୍ରୀ ମୋର ମାଗୁନାହିଁ ଧନ ଜନ ମୁଇଁ ମଧ୍ୟ କିଛି ତ ମାଗୁନି
ହେଲେ ବନ୍ଧୁ ମୋ ଗାଆଁକୁ କରନ୍ତୁ କି ଅଜ୍ଞାତ ଅରଣ୍ୟ
ସେଥିରେ ପୋଷନ୍ତୁ ପ୍ରଭୁ   ମଣିଷଙ୍କୁ ତେଜ୍ୟାକରି ଶ୍ୱାପଦ ସନ୍ତାନ ।
ମୁଁ ହୁଅନ୍ତୁ ମୋର ମୃତ୍ୟୁ,
ମୁଁ ହୁଅନ୍ତୁ ମୋର ପୁନର୍ଜନ୍ମ
କେଇ ଇଂଚ ସ୍ଥାନ ନିଶ୍ଚେ ମୋ ଗ୍ରନ୍ଥରେ ନିଶ୍ଚେ ମୁଁ ରଖନ୍ତି
ଲେଖିବାକୁ ପରସ୍ୱାର୍ଥ.........ପରର ନିର୍ବାଣ ।

—*—

# ॥ ଆଜିର ରାଉରକେଲା ॥

ରାତି ସାତଟା କହିଲେ ସହର ବଜାରର ସନ୍ଧ୍ୟା ସମୟ ଓ ମଫସଲର ରାତି ଦୁଇଘଣ୍ଟା । ଯେଉଁ ବିଷୟରେ ଆଜି ଲେଖା ଆରମ୍ଭ ହେଉଛି ତାର ଅତୀତ ଓ ବର୍ତ୍ତମାନ ଚିନ୍ତାକଲେ ଆକାଶ ପାତାଳ ପ୍ରଭେଦ । ଦିନଥିଲା ରାତି ସାତଟା ବେଳକୁ କୁଆ କୋଇଲି ଦେଖିବା ସପନପରି । ଅଳ୍ପ ଦୂରର କଥା । କେବଳ ନିଆଁ ଖାଉ ସମସ୍ତ ସମୟରେ ଦେଖିବାକୁ ମିଳେ । କେବେ ଯଦି ଅତିଥି ଅଭ୍ୟାଗତ ପଥଭୁଲି ଆଦିବାସୀ ପଲ୍ଲୀ ଆଡ଼କୁ ଚାଲି ଯାଆନ୍ତି, ଆମ ହିନ୍ଦୁ ଧର୍ମର ପୂର୍ବ ଗୌରବ ଅନୁସାରେ ଅତିଥି ନାରାୟଣ ସ୍ୱରୂପ, ତେଣୁ ଆଦିବାସୀ ତାର ଯଥା-ଶକ୍ତି ଦାନ କରି ପଥ କଢ଼େଇ ଦେଇ ଆସେ । ବର୍ତ୍ତମାନ ଯେତେ ପାଶ୍ଚାତ୍ ଶକ୍ତି ଆଗେଇଲେ ମଧ୍ୟ, ଆମ ପରମ୍ପରାକୁ ଲୋପ କରିବାର ଶକ୍ତି ଖୁବ୍ କମ୍ ।

ଆଜି ସେ କୁଢ଼ିଆ ଦେଖିବାକୁ ମିଳୁନାହିଁ । ମିଳୁଛି କେବଳ ସାତତାଲା କୋଠା । କେତେ ରଙ୍ଗର ଆଧୁନିକ ସାଜସଜ୍ଜା, ନୂତନ ଧରଣର ରଙ୍ଗ-ବେରଙ୍ଗ ଅଟ୍ଟାଳିକା । ଶୀତାତପ ନିୟନ୍ତ୍ରଣ ପ୍ରାସାଦ । ବିଜ୍ଞାନ ଦେଶକୁ ବହୁତ ଆଗେଇ ନେଇଛି ଓ ନେବ ଦେବ କ'ଣ ? ହିଂସା, ଅହମିକା, ଦ୍ୱେଷ, ଆତ୍ମବଡ଼ିମା, ସ୍ୱାର୍ଥପରତା ଇତ୍ୟାଦି । ତାରି ଭିତରେ ରହି ଆମକୁ ଆଗେଇବାକୁ ହେବ । ଆମେ ଦେଖିବା ଠିକ୍ ଆମେ ଆଗେଇଛୁଁ ନା ପଛେଇଛୁଁ ? ପଛେଇବାର ପ୍ରଶ୍ନ ନାହିଁ । ଯୁଗକାଳ ପାତ୍ର ବିବେଚନାରେ ପାଦକୁ ପାଦ ମିଳାଇ ଚାଲିବାକୁ ହେବ ।

ହୁଁ ! କୁଆଡ଼ୁ ଏଣୁ ତେଣୁ ଲେଖି ଯାଉଛି । ସବୁବେଳେ ସମାଲୋଚନା ନ କରିବାକୁ ଚେଷ୍ଟା କଲେ ବି କଲମ କାହିଁକି ଦିନେ ଦିନେ ସିଆଡ଼େ ଗଲେ । ସମାଲୋଚନା ଯେତିକି ଖରାପ ତା' ଠାରୁ ବେଶୀ ଭଲ ଯଦି ସମାଲୋଚନାଦ୍ୱାରା ପରିସ୍ଥିତି ସୁଧୁରିଯାଏ ।

ଆମକୁ ଆଧୁନିକ ଯୁଗରେ ତାଳଦେଇ ଚାଲିବାକୁ ହେବ, ନଚେତ୍ ଚଣ୍ଡିଖୋଲ ବାବାଜୀ ସଙ୍ଗେ ରହିବାକୁ ପଡ଼ିବ । ବହୁଦିନ ତଳେ ଆମର ପୂଜ୍ୟ ଚିନ୍ତାମଣି ମିଶ୍ରଙ୍କ ସହିତ କଥା ପଡ଼ିଥିଲା । ସେ ଯାହା କହିଲେ ତା ଠିକ୍ । ଯେତେ ପାରିଯାଏ ତାକୁ ଜଣିବାକୁ ଚେଷ୍ଟା କରିବା ତା' ସଙ୍ଗେ ଆଧୁନିକ ଢାଞ୍ଚାରେ ଚାଲିବା ।

ଅତୀତ ଓ ନୂତନ ଏ ଦୁଇଟି ବିଶ୍ଳେଷଣ କଲେ ଜଣାଯାଏ ନୂତନଟି ବେଶ୍ ମଧୁରିଆ । ଆମକୁ ଏହି ସୁଆଦିଆଟି ନିଶ୍ଚେ ଭଲ ଲାଗିବ । ଅତୀତ ତିକ୍ତକୁ ଫିଙ୍ଗିଦେଇ ନୂତନକୁ ଧରିବା ପୂର୍ବରୁ ତିକ୍ତର ଉପକାରୀ ଗୁଣକୁ ବୁଝିବା ଦରକାର ।

ପଥରକୁ ପଥର ଘଷି ନିଆଁ ବାହାର କରିବା ଏହି ଲୌହମାନବକୁ ଆଗରୁ ଜଣାଥିଲା । ଆଜି ତାର

ସଦବ୍ୟବହାର କରିପାରୁଛୁ । ଅଖ୍ୟାତ ଓଡ଼ିଶା ଭୂମିରେ ଧନ-ଜନ-ଗୋପଲକ୍ଷ୍ମୀ ଭରି ରହିଥିଲେ । ଆଜି ବି ରହିଛି । ଯେଉଁମାନେ ଏହାକୁ ଉଦ୍ଧାର କରୁଛନ୍ତି ସେହିମାନେ ହିଁ ଆମର ପ୍ରକୃତ ବନ୍ଧୁ ।

ଓଡ଼ିଆ ଇଂଜିନିଅରଙ୍କ ଖ୍ୟାତି ସିଅର ବ୍ଲେଡ଼ର ଉଦ୍ଭାବନରେ ପ୍ରମାଣିତ ହୋଇଛି । ଦିନେ ଯେ ଏହି ଓଡ଼ିଆ ଇଞ୍ଜିନିଅରମାନେ ପୃଥିବୀର ଶ୍ରେଷ୍ଠ ଆସନ ଗ୍ରହଣ କରିବେ ଏଥିରେ ସନ୍ଦେହ ନାହିଁ । ଯେଉଁ ଲୌହମନ୍ଦିର ସେମାନଙ୍କୁ ବଡ଼ କରିଛି, ତାର ପୂଜା ହେଉଛି ଏମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

ଏହି ଆଧୁନିକ ରାଉରକେଲାରେ ପଥର ମିଶା ଲୁହାକୁ ବରସୁଆଁ ଖଣିରୁ ଆଣି ଆଧୁନିକ ଯନ୍ତ୍ରପାତି ସାହାଯ୍ୟରେ ତାକୁ ତରଳାଇ ଲୌହପିଣ୍ଡ ବାହାର କରାଯାଉଛି । ଏହି ଲୌହପିଣ୍ଡର ଚାହିଦା ଆମ ଦେଶରେ ଯେତିକି ଦରକାର ଓ ଆଦୃତ ହେଉଛି ତା' ଠାରୁ ଅଧିକ ଆଦୃତ ହେଉଛି ସୁଦୂର ଜାପାନ, ଘାନା ଇତ୍ୟାଦିରେ । ଏଠାରେ ଦେଶର କୀର୍ତ୍ତି ବଜାୟ ରହିବା ସଙ୍ଗେ ସଙ୍ଗେ ବୈଦେଶିକ ମୁଦ୍ରା ବିନିମୟର ସୁବିଧା ମିଳୁଛି ।

ଆମର ଅଗଣିତ କୁଲି, ମଜଦୁର, ବିଶେଷଜ୍ଞ, ଯନ୍ତ୍ରୀ ସେମାନଙ୍କର କର୍ମକୁଶଳତା ଦେଖାଇ ଏହି ଲୌହ ମନ୍ଦିରର ଯଥା ପୂଜା ଅର୍ଚ୍ଚନା କରି ମାନ ରକ୍ଷା କରନ୍ତୁ । ଆମକୁ ଆଉ ବିଦେଶୀ ପାଖରେ କେତେବେଳେ ଭିକ୍ଷାଂ ଦେହି, ଭିକ୍ଷାଂ ଦେହି ମନ ବୃତ୍ତି ନେଇ ଚଳିବାକୁ ହେବ । ଏହି ରାଉରକେଲାରୁ ମିଳିବ ଲୁହା ଯନ୍ତ୍ରପାତି, କୃଷିପାଇଁ ସାର, ଗୃହପୋକରଣ ଜିନିଷ ଇତ୍ୟାଦି ଇତ୍ୟାଦି । ଆମେ ଆମର ଆଦିବାସୀ ଓ ଅଧିବାସୀଙ୍କୁ ନେଇ ଗଢ଼ି ପାରିବା ଏକ ନୂତନ ବିଶାଳ ଉତ୍କଳ ।

ରାଉରକେଲା ଇସ୍ପାତ କାରଖାନାର ପ୍ରତିଷ୍ଠା ଓ ସମୃଦ୍ଧି ଲାଗି ପଶ୍ଚିମ ଜର୍ମାନୀ ସରକାର ଯେଉଁ ସାହାଯ୍ୟ କରି ଆସିଛନ୍ତି ସେଥିପାଇଁ ଆମେ କୃତଜ୍ଞ ଓ ଅନୁଭବ କରୁଛୁ ଭବିଷ୍ୟତରେ ଏହିପରି ମୈତ୍ରୀ ଓ ସଦ୍ଭାବ ଶରଦିନ ପାଇଁ ସ୍ଥାନ ପାଇଥିବ ।

ଆମ କର୍ମଗୃହୀ ଓ ଶ୍ରମିକମାନଙ୍କର ସୁଖ ସୁବିଧା ଦେଖିବା କାରଖାନା କର୍ତ୍ତୃପକ୍ଷଙ୍କ ପ୍ରଧାନ କର୍ତ୍ତବ୍ୟ । ସେହିପରି ଶ୍ରମିକ ମଣ୍ଡଳୀ କାରଖାନାର କିପରି ଅଧିକରୁ ଅଧିକ ଉନ୍ନତି ହେବ ତାହା ଦେଖିବା ଦରକାର; ଫଳରେ ସେମାନଙ୍କର ଭବିଷ୍ୟତ ଉଜ୍ଜ୍ୱଳମୟ ହେବ ।

ଆମେ ଇସ୍ପାତ କାରଖାନାର ମଙ୍ଗଳ କାମନା କରିବା ସଙ୍ଗେ ସଙ୍ଗେ ଆମର ଅଗଣିତ ଶ୍ରମିକମାନଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛୁଁ । ମାଟିର ମଣିଷ ଲୁହାର ମଣିଷ ହୋଇ ନିଜର ଉନ୍ନତି ସଙ୍ଗେ ସଙ୍ଗେ ଦେଶର ଉନ୍ନତିରେ ସାହାଯ୍ୟ କରୁ । ତାହେଲେ ଆମେ ପ୍ରକୃତ ସ୍ୱାଧୀନତା ହୃଦୟଙ୍ଗମ କରି ପାରିବା ।

—*—



# ।। ଆମ କୁଟିଆ ଭାଇ ।।

ଶ୍ରୀ ଲୋକନାଥ ପରିଡ଼ା, ବେଲଘର ଆଶ୍ରମ ସ୍କୁଲ

କୁଟିଆ କନ୍ଧର ଗ୍ରାମଗୁଡ଼ିକ ମୁଖ୍ୟତଃ ଶ୍ୱାପଦ-ସଂକୁଳ ଦୁର୍ଗମ ଅରଣ୍ୟ ତଥା ଦୁରାରୋହ ପର୍ବତର ପାଦଦେଶ କିମ୍ବା ମଧ୍ୟଦେଶରେ ଦୃଷ୍ଟିଗୋଚର ହୋଇଥାଏ । ନିମ୍ନଲିଖିତ କେତୋଟି କାରଣ ଉପରେ କୁଟିଆ କନ୍ଧର ଗ୍ରାମ ନିର୍ମାଣ ନିର୍ଭର କରିଥାଏ ।

୧—କୁଟିଆ କନ୍ଧ ଗୃହେଁ ଆଧୁନିକ ସଭ୍ୟ ସମାଜର ଦୂରତ୍ୱ । ଯେଉଁଠାରେ ଅଣଆଦିବାସୀ-ମାନଙ୍କ ପ୍ରଭାବ ବିଶେଷ ଅନୁଭୂତ ହୁଏନାହିଁ, ସେପରି ସ୍ଥାନରେ କୁଟିଆ କନ୍ଧ ତାର ସାଙ୍ଗସାଥିମାନଙ୍କୁ ନେଇ ଗ୍ରାମ ଗଠନ କରିଥାଏ ।

୨—ଗ୍ରାମ ନିକଟରେ ଚାଷୋପଯୋଗୀ ଜମିର ପ୍ରାଚୁର୍ଯ୍ୟ ଆବଶ୍ୟକ । ଏହି ଜମି ସମତଳ ଜମି ହେଉ କିମ୍ବା ଜଙ୍ଗଲ ଓ ପାହାଡ଼ ହେଉ ସେଥିରେ କିଛି ଯାଏଆସେ ନାହିଁ । ବିଶେଷକରି ଯେଉଁ ଜଙ୍ଗଲ ବା ପର୍ବତ ପୂର୍ବରୁ ପୋଡ଼ୁଚାଷ ନ ହୋଇଥାଏ, ସେପରି ସ୍ଥାନ ଚାଷଜମି ପାଇଁ ଉତ୍କୃଷ୍ଟ ବୋଲି ବିବେଚିତ ହୁଏ ।

୩—ପାନୀୟ ଜଳର ସୁବିଧା ଗ୍ରାମ ନିକଟରେ ରହିଥିବା ଆବଶ୍ୟକ । ଚାଷପାଇଁ ଜଳର ସୁବିଧା ବିଶେଷ ଆବଶ୍ୟକ ପଡ଼େନା । କାରଣ ବର୍ଷା ଉପରେ ଚାଷ ବହୁଳ ଭାବରେ ନିର୍ଭର କରାଯାଏ । କେବଳ ପାନୀୟ ଜଳପାଇଁ ଛୋଟ ବଡ଼ ଝରଣା କିମ୍ବା ନଦୀ ଓ ଚୂଆର ଜଳ ବ୍ୟବହାର କରାଯାଇପାରେ । ଏହି ଝରଣା, ଚୂଆ ବା ନଦୀ ଗ୍ରାମଠାରୁ ଗୋଟିଏ ଫର୍ଲଙ୍ଗ ଦୂରରେ ରହିଲେ ମଧ୍ୟ ଏହା ଅସୁବିଧା ଜଣା ଯାଏନା ।

୪—ବଣର ଫଳମୂଳ (କନ୍ଦା) ଓ ବାଉଁଶ ଗଜା ଗ୍ରାମ ନିକଟସ୍ଥ ଜଙ୍ଗଲରେ ମିଳୁଥିବା ଉଚିତ୍ । ଏହା-ଛଡ଼ା ବଣ୍ୟ ପଶୁପକ୍ଷୀର ମାଂସ ମିଳୁଥିବା ସ୍ଥାନ ଗ୍ରାମ ନିର୍ମାଣ ପାଇଁ ଉପଯୁକ୍ତ ବୋଲି ବିବେଚିତ ହୁଏ ।

୫—ଗ୍ରାମପାଇଁ ବିବେଚିତ ଭୂମିରେ ଦେବତାର ପ୍ରଭାବ କୁଟିଆକନ୍ଧ ପକ୍ଷେ ଅନୁକୂଳ ହେବା ଆବଶ୍ୟକ । ସେଥିପାଇଁ କେତେକ ପୂଜା ପଦ୍ଧତି ଅନୁସୃତ ହୋଇଥାଏ ।

ଯାଯାବର ସଦୃଶ କୁଟିଆକନ୍ଧ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଇ ନିଜର ବସତି ସ୍ଥାପନ କରିଥାଏ । ଏପରି ଜୀବନ ଯାପନର ନାନା କାରଣ ରହିଛି । ବସତି ସ୍ଥାପନ କରିଥିବା ଆଖପାଖ ପାହାଡ଼, ପର୍ବତ ଅଥବା ଜଙ୍ଗଲରୁ ବଣ୍ୟ ଫଳମୂଳ ଶେଷ ହୋଇଗଲେ କିମ୍ବା ବାଉଁଶ ଗଜାର ଅଭାବ ପଡ଼ିଲେ ଖାଦ୍ୟ ଅନ୍ୱେଷଣ ପାଇଁ ଗୋଟିଏ ସ୍ଥାନରୁ ଯାଇ ଅନ୍ୟତ୍ର ବସବାସ କରିବାକୁ ପଡ଼େ । କୁଟିଆ କନ୍ଧର ଚାଷ କହିଲେ ପୋଡ଼ୁଚାଷକୁ ବୁଝାଇ ଥାଏ । ପର୍ବତ ଉପର ଜଙ୍ଗଲମାନ ପୋଡ଼ି ଚାଷକରି ପ୍ରଥମେ ପ୍ରଥମେ ବହୁ ଫସଲ ସେ ଅମଳ କରିଥାଏ । କାରଣ ଏ ପ୍ରକାର ଚାଷଦ୍ୱାରା ପ୍ରଥମ କେଇ ବର୍ଷପାଇଁ ଜମିର

ଜନ୍ମାଦିକା ଶକ୍ତି ବଢ଼ିଥାଏ । ମାତ୍ର ଏହି ଉତ୍ପାଦିକା ଶକ୍ତି କ୍ରମଶଃ କ୍ଷୟପ୍ରାପ୍ତ ହେବାକୁ ଲାଗେ । ଏହିପରି ଗୋଟିଏ ପର୍ବତରୁ ଆଉ ଗୋଟିଏ ପର୍ବତକୁ ପୋଡ଼ୁ-ଚାଷକରି ଯେତେବେଳେ ଗ୍ରାମ ନିକଟସ୍ଥ ପର୍ବତ ସବୁ ପୋଡ଼ୁଚାଷ ପାଇଁ ଅଯୋଗ୍ୟ ବିବେଚିତ ହୋଇ ନିଜର ଉତ୍ପାଦିକା ଶକ୍ତି ହରାଇ ବସେ, ସେତେବେଳେ କୁଟିଆକନ୍ଧ ସେହି ପର୍ବତମାନ ପରିତ୍ୟାଗ କରି ଅନ୍ୟତ୍ର ଯିବାକୁ ବାଧ୍ୟହୁଏ । ସେଥିରୁ ପ୍ରମାଣିତ ହେଉଛି ଖାଦ୍ୟ ସମସ୍ୟା କୁଟିଆକନ୍ଧର ଏକ ମୁଖ୍ୟ ସମସ୍ୟା । ଏଥିପାଇଁ ସେ ପ୍ରାୟ ଯାଯାବର ଜୀବନ ଯାପନ କରିବାକୁ ବାଧ୍ୟ ହୋଇଥାଏ । ଖାଦ୍ୟାଭାବ ବ୍ୟତୀତ ଅନ୍ୟ ଏକ କାରଣ ଅଛି, ଯାହାଫଳରେ ସେ କୌଣସି ସ୍ଥାନରେ ଖାଦ୍ୟର ପ୍ରାଚୁର୍ଯ୍ୟ ଲାଭକରି ମଧ୍ୟ ସେ ସ୍ଥାନରେ ବସତି ସ୍ଥାପନ କରେନା । କାରଣ ହେଲା ବନ୍ୟଜନ୍ତୁ ମଧ୍ୟରେ ବ୍ୟାଘ୍ର ଭୟ । ଏଠାରେ ପ୍ରଶ୍ନ ଉଠିପାରେ, କୁଟିଆକନ୍ଧ ଯେତେବେଳେ କୌଣସି ଅରଣ୍ୟ ବା ପର୍ବତକୁ ନିଜର ବାସସ୍ଥାନ ବୋଲି ବିବେଚିତ କରେ, ସେତେବେଳେ ସେ କ'ଣ ବ୍ୟାଘ୍ର ଭୟ ବିଷୟରେ ଅବହିତ ନ ଥାଏ କି ? ଏ ପ୍ରଶ୍ନ ସ୍ୱାଭାବିକ । ଏଠାରେ ପାଠକମାନେ ମନେରଖିବା ଉଚିତ୍, କୁଟିଆକନ୍ଧ ବ୍ୟାଘ୍ରସହ ଲଢ଼େଇ କରି ବଣରେ ବାସକରିବା ପାଇଁ ଅସୀମ ସାହସ ଓ ଧୈର୍ଯ୍ୟ ଧରି ସର୍ବଦା ପ୍ରସ୍ତୁତ ହୋଇଥାଏ । କିନ୍ତୁ ସମୟେ ସମୟେ ଏପରି ଘଟେ, କୌଣସି ବ୍ୟାଘ୍ର କ୍ରମାଗତ ଭାବେ ଗୋଟିଏ ଗ୍ରାମରୁ ଯଦି ଗୃହପାଳିତ ପଶୁ ମାରି ଖାଇଲା, ଅଥବା ସେ ଗ୍ରାମରୁ ବହୁ ମନୁଷ୍ୟର ପ୍ରାଣନାଶ କଲା, ସେ ବାଘକୁ ଯଦି ଗ୍ରାମବାସୀମାନେ ପ୍ରାଣରେ ମାରିବାକୁ ଅସମର୍ଥ ହୁଅନ୍ତି, ତେବେ ସେହି ବାଘଟି ଯେ ଗୋଟିଏ 'ଦେବତା ବାଘ' ଅର୍ଥାତ୍ ଦେବତା ବ୍ୟାଘ୍ର ରୂପରେ ଆସି ସେମାନଙ୍କର ଅନିଷ୍ଟ ସାଧନ କରୁଛି, ଏ ବିଶ୍ୱାସ ସମସ୍ତଙ୍କ ମନରେ ସ୍ଥାନପାଏ । ଫଳରେ ବାଧ୍ୟହୋଇ ଗ୍ରାମ ଛାଡ଼ିବାକୁ ସମସ୍ତଙ୍କୁ ପଡ଼େ । ଅନେକ ସମୟରେ ପାଲଟା ବାଘର ପ୍ରାଦୁର୍ଭାବ ଯୋଗୁ ମଧ୍ୟ ଗ୍ରାମ ଛାଡ଼ି ଅନ୍ୟତ୍ର ଯିବାକୁ ପଡ଼ିଥାଏ । ଏହି 'ପାଲଟା ବାଘ' ସାଧାରଣତଃ ଗୁଣି ଗାରେଡ଼ି ଜାଣିଥିବା ଲୋକ ମନ୍ତ୍ରବଳରେ ବାଘରୂପ ଧରେ ବୋଲି କୁଟିଆକନ୍ଧର ବିଶ୍ୱାସ । ଶତ୍ରୁତା ଆଚରଣ କରିବା କିମ୍ବା ପ୍ରତିଶୋଧ ନେବା ମାନସରେ ପାଲଟା ବାଘ, ମନୁଷ୍ୟ ତଥା ଗୃହପାଳିତ ପଶୁ ଅନିଷ୍ଟ କରେ ବୋଲି ବିଶ୍ୱାସ କରାଯାଏ । ଏତଦ୍‌ବ୍ୟତୀତ ଗୋଟିଏ ଗ୍ରାମରେ ବହୁଦିନ ଧରି ରହିଲେ, ସେ ଗ୍ରାମର ଧରଣୀ ଦେବତା ଦୁର୍ବଳ ହୋଇପଡ଼େ । ତେଣୁ ପାଲଟା ବାଘ, ଦେବତା ବାଘ କିମ୍ବା ଅନ୍ୟ କୌଣସି ଅପଦେବତା ସହ ସଂଗ୍ରାମ କରି ଗ୍ରାମବାସୀଙ୍କୁ ନିରାପଦରେ ରଖିବାକୁ ଗ୍ରାମର ଧରଣୀ ଦେବତା ଅକ୍ଷମ ହୋଇପଡ଼େ । ସେପରି ସ୍ଥଳେ ଗ୍ରାମର ବହୁ ଲୋକ ମୃତ୍ୟୁମୁଖରେ ପଡ଼ିବାର ଆଶଙ୍କା ଗୁଣିଆମାନେ ଲୋକଙ୍କ ମଧ୍ୟରେ ପ୍ରଚାର କରନ୍ତି ଓ ଗ୍ରାମ ପରିତ୍ୟାଗ କରି ଯିବାପାଇଁ ଉପଦେଶ ମଧ୍ୟ ଦିଅନ୍ତି ।

କୌଣସି ଗ୍ରାମ ଛାଡ଼ିବା ପୂର୍ବରୁ ପ୍ରଥମେ ଗ୍ରାମର ବୃଦ୍ଧ ବ୍ୟକ୍ତିମାନେ ଗ୍ରାମର ମାଝି ସହ, ଖାଦ୍ୟାଭାବ କିମ୍ବା ବନ୍ୟଜନ୍ତୁର ପ୍ରାଦୁର୍ଭାବ ବିଷୟରେ ଆଲୋଚନା କରନ୍ତି । ତା' ପରେ ସମସ୍ତେ ଗ୍ରାମର 'କୁଟାକା' ( ଗୁଣିଆ ବା ପୂଜାରୀ ) ନିକଟକୁ ଯାଇ ସମସ୍ତଙ୍କର ଅସୁବିଧା ଜଣାନ୍ତି । ଗ୍ରାମବାସୀମାନଙ୍କଠାରୁ ସମସ୍ତ ଅଭିଯୋଗ ଶୁଣିସାରି, ବାସସ୍ଥାନ ଅନ୍ୱେଷଣ କରିବା ପାଇଁ କୁଟାକା ଗ୍ରାମର ଯୁବକ ଓ ବୟସ୍କମାନଙ୍କୁ ଆଦେଶ ଦିଏ । କୁଟାକା ନିର୍ଦ୍ଦେଶରେ ଯୁବକ ଓ ବୟସ୍କମାନେ ଅନ୍ୟ ଏକ ସ୍ଥାନ ନିରୂପଣ କରି ଫେରନ୍ତି । ବାସସ୍ଥାନ ପାଇଁ ଉପଯୁକ୍ତ ହେଉଥିବା ଭୂମିର କି ଲକ୍ଷଣ ଥିବା ଦରକାର ତାହା ପୂର୍ବେ ବର୍ଣ୍ଣନା କରାଯାଇଛି । ସେହି ଲକ୍ଷଣ ଉପରେ ଭିତ୍ତି କରି ବାସସ୍ଥାନଟି ନିରୂପିତ ହୋଇ ସାରିଲା ପରେ

'କୁଠାକା' ଗ୍ରାମର କେତେକ ଲୋକଙ୍କୁ ନେଇ ସ୍ଥାନଟିର ଶୁଭାଶୁଭ ପରୀକ୍ଷା କରିବାକୁ ଯାଇଥାଏ।

କୌଣସି ଏକ ନିର୍ଦ୍ଦିଷ୍ଟ ମଙ୍ଗଳବାର କିମ୍ବା ଶନିବାର ଦିନରେ ନିରୂପିତ ସ୍ଥାନରେ ପୂଜାପାଇଁ ଭୂମିର କିଛି ଅଂଶ ଗୁଞ୍ଚି ସଫା କରାଯାଏ। ଗ୍ରାମବାସୀମାନେ ସଙ୍ଗରେ କିଛି ଅରୁଆ ଚାଉଳ ଓ ହଳଦୀ ଗୁଣ୍ଡ ନେଇ ଯାଆନ୍ତି। 'କୁଠାକା' ହଳଦୀ ଗୁଣ୍ଡରେ ମଣ୍ଡଳ କାଟି ଧରଣୀ ଦେବତାଙ୍କୁ ଆରାଧନା କରେ। କେତେଗୁଡ଼ିଏ ଶିଆଳୀ ପତ୍ର ଆଣି ଗୋଟିଏ ଗୋଟିଏ ପତ୍ରରେ କିଛି ଅରୁଆ ଚାଉଳ ରଖାଯାଇ ପତ୍ରର ମୁହଁ ବନ୍ଦକରି ଦିଆଯାଏ। ଗୋଟିଏ ପରିବାରର ପ୍ରତ୍ୟେକ ଜୀବନ୍ତ ପ୍ରାଣୀ ଯଥା:—ଶିଶୁ, ବାଳକ ବାଳିକା, ଯୁବକଯୁବତୀ, ବୁଢ଼ା ବୁଢ଼ୀ, ଗାଈ, ଛେଳି, ମେଣ୍ଢା, ଘୁଷୁରି, କୁକୁଡ଼ା ଓ କୁକୁର ପାଇଁ ଗୋଟିଏ ଗୋଟିଏ ପତ୍ରରେ ଅଲଗା ଅଲଗା ଅରୁଆ ଚାଉଳ ରଖାଯାଇଥାଏ। ଏହି ପତ୍ର ପୁଡ଼ାକୁ ଗୋଟିଏ ପଥର ଉପରେ ସେହି ମଣ୍ଡଳ ନିକଟରେ ରଖାଯାଇ ପତ୍ର ପୁଡ଼ା ଉପରେ ଆଉ ଗୋଟିଏ ବଡ଼ ପଥର ରଖି ଦିଆଯାଏ। ଏହି ପତ୍ରପୁଡ଼ାମାନଙ୍କରେ ସାତଯୋଡ଼ା ଲେଖାଏଁ ଚାଉଳ ଥାଏ। କୁଠାକା ମନ୍ତ୍ର ପଢ଼ି ଧରଣୀ ଦେବତାଙ୍କ ଉଦ୍ଦେଶ୍ୟରେ କହେ—"ହେ ଧରଣୀ ଦେବତା! ଆମ୍ଭମାନଙ୍କୁ ବିପତ୍ତି ପଡ଼ିବାରୁ ଏଠାରେ ଆସି ତୋ' କୋଳରେ ଆଶ୍ରୟ ନେବାକୁ ମନସ୍ଥ କରିଛୁଁ। ତୋର କୃପାହେଲେ ଆମେ ଏଠାରେ ନିରାପଦରେ ବାସକରି ପାରିବୁ। ଯଦି ତୁ ଆମ ଉପରେ ରାଗିଥାଉ ବା ଆମର କିଛି ଅନିଷ୍ଟ ହେବାର ଆଶଙ୍କା ଥାଏ, ତେବେ ପତ୍ରରେ ରଖିଥିବା ଚାଉଳ ଆସନ୍ତା କାଲି ସକାଳେ କମି ଯାଇଥିବ।" ଏପରି କହିସାରି ପ୍ରଣାମ କରି ସମସ୍ତେ ନିଜ ନିଜର ଗୃହକୁ ବାହୁଡ଼ି ଆସନ୍ତି। ପରଦିନ ସକାଳେ ସମସ୍ତେ ଯାଇ ଧରଣୀ ଦେବତାଙ୍କୁ ପ୍ରଣାମ କରି ପତ୍ରମାନ ଖୋଲି ଦେଖନ୍ତି। ଯେଉଁ ପତ୍ରରୁ ଚାଉଳ କମିଯାଇଥାଏ, ସେହି ପତ୍ରଟି ଯାହାପାଇଁ ଉଦ୍ଦିଷ୍ଟ ହୋଇଥିଲା, ତାହା ସ୍ଥିର କରି କି ପ୍ରକାର ବିପତ୍ତି ପଡ଼ିବ ତାହା ସହଜରେ ଅନୁମାନ କରିପାରନ୍ତି। କୁକୁଡ଼ା, ପାରା ଓ କୁକୁରଆଦି ଇତର ପ୍ରାଣୀମାନଙ୍କ ପ୍ରତି ବିପଦର ସୂଚନା ମିଳୁଥିଲେ ସ୍ଥାନଟି ବାସସ୍ଥାନ ପାଇଁ ବିଶେଷ ଅନୁପଯୁକ୍ତ ବୋଲି ବିବେଚିତ ହୁଏନା। କିନ୍ତୁ ମନୁଷ୍ୟ କିମ୍ବା ଗୋରୁ ପ୍ରଭୃତି ପଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ପତ୍ରରୁ ଚାଉଳ କମ୍ ହେଲେ ତାହା ଅଶୁଭଲକ୍ଷଣର ସୂଚନା ଦିଏ। ଫଳରେ ସେ ସ୍ଥାନଟି ବାସସ୍ଥାନ ପାଇଁ ଅନୁପଯୁକ୍ତ ହୋଇଥାଏ।

ବସବାସ କରି ରହିବା ପାଇଁ ପୂର୍ବୋକ୍ତ ବିଭିନ୍ନ କାରଣ ଦୃଷ୍ଟିରୁ କୌଣସି ସ୍ଥାନ ନିରାପଦ ବିବେଚିତ ହେଲେ, କୁଟିଆକନ୍ଧମାନେ ସେ ସ୍ଥାନର ଜଙ୍ଗଲ କାଟି ସଫା କରିଦିଅନ୍ତି। ତା' ପରେ ଗୃହ ନିର୍ମାଣ ପାଇଁ ଆୟୋଜନ ଚାଲେ। ଏଥିପାଇଁ ମୁଖ୍ୟତଃ ଜଙ୍ଗଲ ଉପରେ ନିର୍ଭର କରିବାକୁ ପଡ଼େ। କାରଣ ଗୃହ ନିର୍ମାଣ ପାଇଁ ଆବଶ୍ୟକ ହେଉଥିବା କାଠ, ବାଉଁଶ, ଲଇ, ଛଣ ଇତ୍ୟାଦି ଆବଶ୍ୟକୀୟ ପଦାର୍ଥମାନ ଜଙ୍ଗଲରୁ ସଂଗୃହୀତ ହୁଏ। ପ୍ରଥମେ ପରିଷ୍କୃତ ଜମି ଉପରେ ଆୟତାକାରରେ ଦୁଇ ବା ତିନିଫୁଟ ମାଟି ଖୋଳି ଦିଆଯାଏ। ଏହାଦ୍ୱାରା ଯେଉଁ ଖାଲ ବା ଗାତ ସୃଷ୍ଟି ହୁଏ, ତା'ର ଚାରିପଟେ ଜଙ୍ଗଲରୁ କଟାହୋଇ ଆସିଥିବା ସରୁ ଗଛମାନ ପୋତି ଦିଆଯାଏ। ତା'ପରେ ତହିଁରେ ମାଟି ଲଗାଇ ଗୃହ ନିର୍ମାଣ କରାଯାଏ। ଘରର କବାଟ ଓ ଦ୍ୱାରବନ୍ଧମାନ ସେମାନେ ନିଜେ ନିଜେ ତିଆରି କରନ୍ତି। ସେଥିପାଇଁ କୌଣସି ବଢ଼େଇର ସାହାଯ୍ୟ ନିଆଯାଏନା। ବଣରୁ ସଂଗୃହୀତ ଘାସ ବା ଛଣରେ ଗୃହ ଛପର ହୋଇଥାଏ।

ଘରଗୁଡ଼ିକ ବିଶେଷ ଉଚ୍ଚନୁହେଁ। ବାହାରୁ ଘର ଭିତରକୁ ପ୍ରବେଶ କଲାବେଳେ ମୁଣ୍ଡ ନୁଆଇଁ ଯିବାକୁ ପଡ଼େ। ଘର ଲମ୍ବ-ପ୍ରସ୍ଥ ସାତହାତ, ନଅହାତ, ଏଗାର ହାତ କିମ୍ବା ତେରହାତ ରଖାଯାଏ। ଘରର ଉଚ୍ଚତା,

ଲମ୍ବ ଓ ପ୍ରସ୍ଥ ସବୁବେଳେ ଅଯୁଗ୍ମ ସଂଖ୍ୟା ଅନୁଯାୟୀ ମପାଯାଇ ଠିକ୍ କରାଯାଏ । କୌଣସି ଘରେ ଝରକା ରହେନାହିଁ । ଗୋଟିଏ କୁଟୁମ୍ବ ପାଇଁ ଦୁଇଟିରୁ ତିନିଗୋଟି ଘରଥାଏ । ଏହି ଘରଗୁଡ଼ିକ ଗୋଟିଏ ଧାଡ଼ିରେ ରହେ । ତିନିଗୋଟି ଘର ମଧ୍ୟରୁ ଗୋଟିଏ ଘର ରୋଷେଇ ଘର, ଗୋଟିଏ ଶୋଇବାଘର ଓ ଅନ୍ୟଟି ଦେବତା ଘର ଅଟେ । ସାଧାରଣତଃ ଶୋଇବା ଘରଟି ମଝିରେ ଥାଏ । ଶୋଇବା ଘରଦେଇ ଘର ମଧ୍ୟକୁ ପ୍ରବେଶ ପଥ ଥାଏ । ପ୍ରତ୍ୟେକ ପରିବାର ଶୋଇବା ଘରର ଠିକ୍ ପଛକୁ ଲଗାଇ ଆଉ ଗୋଟିଏ ଛୋଟଘର କରିଥାନ୍ତି । ତାହା କେବଳ ରତୁସ୍ନାତା ନାରୀମାନଙ୍କ ପାଇଁ ଉଦ୍ଦିଷ୍ଟ । ସ୍ତ୍ରୀଲୋକମାନେ ରତୁସ୍ନାନ ସମୟରେ ପରିବାରଠାରୁ ଅଲଗାହୋଇ ଏହି ଘରେ ରହନ୍ତି । କେତେକ ଲୋକ ଦୁଇବଖରା କମ୍ବା ଏକ ବଖରା ଘରକରି ରହିଥାନ୍ତି ।

ବାଡ଼ ପଛକୁ ଗୋରୁ, ପୋଡ଼ ଓ ଘୁଷୁରୀମାନଙ୍କ ପାଇଁ ସ୍ଵତନ୍ତ୍ର ଘରମାନ ଥାଏ । ଏ ଘରଗୁଡ଼ିକର କାନ୍ଥ କାଠ ପଟା କମ୍ବା ବଡ଼ ବଡ଼ କାଠ ଗଣ୍ଡିରେ ତିଆରି । ତଳେ ସେହି କାଠପଟା ବା କାଠ ଗଣ୍ଡି ଉପରେ ଗୃହପାଳିତ ପଶୁମାନେ ଶୁଆ ଉଠା କରନ୍ତି । କୁକୁଡ଼ା ଓ ଛେଳି ସାଧାରଣତଃ କୁଟିଆମାନଙ୍କ ଶୋଇବା ଘରେ ରହନ୍ତି ।

ଘର ସାମନାକୁ ବାରଣ୍ଡା ଥାଏ । ଏହା ପ୍ରାୟ ଦୁଇ ତିନିହାତ ଚଉଡ଼ା ଅଟେ । ଶୋଇବା ଘରେ କମ୍ବା ବାରଣ୍ଡାରେ ଗାତ ଥାଏ । ସାଧାରଣତଃ ହାତରେ ଗୋଟିଏ ପାହାରୁଣୀ ଦ୍ଵାରା ଧାନ, ମାଣ୍ଡିଆ ଆଦି ଅନ୍ୟାନ୍ୟ ଫସଲ କୁଟାଯାଏ । ଏଥିପାଇଁ ଯେଉଁ ଗାତ ହୋଇଥାଏ ତାହା ଖୁବ୍ ଛୋଟ ଅଟେ । ଏହି ଗାତ ଗୋଲେଇର ପରିଧି ପ୍ରାୟ ଦଶଇଞ୍ଚ ହେବ । ଗୃହ ନିର୍ମାଣ ଶେଷ ହୋଇଗଲେ, କୁଟିଆମାନେ ପୁରୁଣା ଘରୁ ସମସ୍ତ ଜିନିଷ ପତ୍ର ଆଣି ନୂତନ ଗୃହରେ ଆସି ରହନ୍ତି । ଉତ୍ପାଦିତ ଶସ୍ୟମାନ ଶୋଇବା ଘରେ ସାଇତା ଯାଇ ରଖାଯାଏ । ଶସ୍ୟମାନ ରଖିବା ପାଇଁ କାଠରେ ଖଣ୍ଡ ବନ୍ଧା ଯାଇଥାଏ ଓ ବାଉଁଶରେ ବଡ଼ ବଡ଼ ପାତ୍ର ମଧ୍ୟରେ ଶସ୍ୟଗୁଡ଼ିକ ଭର୍ତ୍ତିହୋଇ ଖଣ୍ଡ ଉପରେ ରଖାଯାଏ । ଏହି ବାଉଁଶ ନିର୍ମିତ ପାତ୍ରକୁ 'କୁରୁଡ଼ା' କୁହାଯାଏ । ଲୁଗାପଟା, ଟଙ୍କା ସୁନା ଏବଂ ଗହଣାଗାଣ୍ଠି ଆଦି ମୂଲ୍ୟବାନ ପଦାର୍ଥ ବାଉଁଶ ତିଆରି ବାକ୍ସରେ ଥାଏ । ଆଜିକାଲି କେତେକ ଟିଣ ବାକ୍ସ ବ୍ୟବହାର କରୁଥିବାର ଦେଖାଯାଏ । ଟଙ୍କା ସୁନା ପରିମାଣ ଅଧିକ ହେଲେ ତାହା ଘର ମଧ୍ୟରେ ପୋତା-ଯାଇ ରଖାଯାଏ ।

ଖୁବ୍ କମ୍ ସଂଖ୍ୟକ ପରିବାରକୁ ନେଇ ଗୋଟିଏ ଗୋଟିଏ ଗ୍ରାମ ଗଠନ କରାଯାଇପାରେ । ଏପରିକି ଦୁଇ ବା ତିନିଗୋଟି ପରିବାର ଏକତ୍ରହୋଇ ଗୋଟିଏ ଗୋଟିଏ ଗ୍ରାମ ଗଠନ କରିଥାନ୍ତି । ଆଉ କେତେକ ସ୍ଥାନରେ ଏହା ବଢ଼ି ବଢ଼ି ପ୍ରାୟ ତିରିଶରୁ ଚାଳିଶ ପରିବାରକୁ ନେଇ ଗ୍ରାମ ଗଠନ କରାଯାଏ । ନୂଆ ଗ୍ରାମର ନାମ ଜଙ୍ଗଲ ବା ପର୍ବତର ନାମାନୁସାରେ ନାମିତ ହୁଏ । କିନ୍ତୁ ଯଦି ନୂତନ ଗ୍ରାମଟି ପୂର୍ବର ପୁରାତନ ଗ୍ରାମର ଖୁବ୍ ନିକଟ ହୋଇଥାଏ, ତେବେ ସେପରି ସ୍ଥଳେ ଗ୍ରାମର ନାମ ପୁରାତନ ଗ୍ରାମର ନାମ ଅନୁଯାୟୀ ନାମିତ ହୁଏ । ଦୁଇଧାଡ଼ିରେ ଗ୍ରାମର ଘରଗୁଡ଼ିକ ଅବସ୍ଥିତ । ମଝିରେ ଗ୍ରାମର ଦାଣ୍ଡ ଥାଏ । ଏହାର ଚଉଡ଼ା ପ୍ରାୟ ପନ୍ଦର ହାତରୁ କୋଡ଼ିଏ ହାତ ପର୍ଯ୍ୟନ୍ତ ଅଟେ । ଘରଗୁଡ଼ିକ ଉଭୟ ଧାଡ଼ିରେ ଲଗା-ଲଗି ହୋଇ ପୂର୍ବକୁ ପଶ୍ଚିମକୁ ଲମ୍ବି ଯାଇଥାଏ । ଉତ୍ତରରୁ ଦକ୍ଷିଣକୁ ଗ୍ରାମର ଘର ଲମ୍ବି ଥିବାର ଦୃଷ୍ଟି-ଗୋଚର ହୁଏନାହିଁ । ପୂର୍ବରୁ ପଶ୍ଚିମକୁ ଲମ୍ବ ଭାବରେ ଘରକରି ରହିବାର ତାତ୍ପର୍ଯ୍ୟ ହେଲା, ସୂର୍ଯ୍ୟ ଦେବଙ୍କ ଗତି ପଥରେ ବାଧା ନ ହେବା । ଗ୍ରାମର ମଝିଦେଇ ସୂର୍ଯ୍ୟଦେବ ଅକ୍ଳେଶରେ ପୂର୍ବାକାଶରୁ ପଶ୍ଚିମାକାଶକୁ ଗତିକରି ପାରିବେ । ଏହାଛଡ଼ା ଉଦୟ ଓ ଅସ୍ତଗାମୀ

ସୂର୍ଯ୍ୟ ରଶ୍ମି ସମସ୍ତ ଗ୍ରାମବାସୀ ଏକ ସାଥେ ଉପଭୋଗ କରିପାରନ୍ତି ।

ଗ୍ରାମର ଶେଷ ଭାଗର ମଧ୍ୟସ୍ଥଳ କମ୍ବା ଗ୍ରାମ ଦାଣ୍ଡର ମଧ୍ୟ ଭାଗରେ ଗ୍ରାମର ଧରଣୀ ଦେବତାଙ୍କ ଆସ୍ଥାନ ଥାଏ । ଏହି ଧରଣୀ ଦେବତାଙ୍କ ନିକଟରେ ପୋଡ଼ ପୂଜାକାଳୀନ ଖୁଣ୍ଟମାନ ପୋତା ଯାଇଥାଏ । ଗୋଟିଏ ଗୋଟିଏ ଧରଣୀ ପୀଠରେ ସାତ ଆଠଟି କମ୍ବା ତହିଁରୁ କମ୍ ବେଶୀ ଖୁଣ୍ଟମାନ ପୋତାହୋଇ ଥାଏ । ଖୁଣ୍ଟଗୁଡ଼ିକର ଉଚ୍ଚତା ପ୍ରାୟ ଦୁଇ ତିନ ହାତ ଅଟେ । ଏହି ଖୁଣ୍ଟର ଅଗ୍ରଭାଗ କଟାଯାଇ କେନା କରାଯାଇଥାଏ । କେନାର ତଳକୁ କାଠରେ ଅଳ୍ପ ଅଳ୍ପ କଟାଯାଇ ଚିତ୍ରିତ ହୋଇଥାଏ । ଧରଣୀ ଦେବତା, ପ୍ରସ୍ତର ରୂପରେ ପୂଜା ପାଆନ୍ତି । ପୂର୍ବେ ଏହି ଧରଣୀ ଦେବତା ପାଖରେ ନରବଳି ମଧ୍ୟ ଦିଆଯାଉଥିଲା । ପୋଡ଼ପୂଜା ନରବଳି ପରିବର୍ତ୍ତେ ହେଉଅଛି । ତେଣୁ ପୋଡ଼ ଖୁଣ୍ଟକୁ ମେରିଆ ଖୁଣ୍ଟ ମଧ୍ୟ କୁହାଯାଏ । ଏହି ଖୁଣ୍ଟକୁ କନ୍ଧଭାଷାରେ କୁର୍ଚ୍ଚମୁଣ୍ଡା କୁହାଯାଏ । ଗ୍ରାମ ଶେଷରେ କମ୍ବା ଗ୍ରାମ ମଝିରେ କନ୍ଧମାନଙ୍କର ଘରକୁ ଲାଗି ଗୋଟିଏ ପାଣର ଘର ଥାଏ । ଏହି ଘରେ ରହୁଥିବା ପାଣ ଗ୍ରାମର ଗୋରୁଗାଈ ଜଗାରଖା କରେ । ଏହାଛଡ଼ା ଅଧିକାଂଶ ଗ୍ରାମରେ ଧାଙ୍ଗଡ଼ା ଘର ଓ ଧାଙ୍ଗିଡ଼ି ଘରମାନ ରହିଥାଏ । ଏହି ଘର ଦୁଇଟିକୁ ଗ୍ରାମର ଧାଙ୍ଗଡ଼ା (ଢେଣ୍ଡିଆ) ମାନେ ନିର୍ମାଣ କରିଥାନ୍ତି ।

ଗୋଟିଏ ଗ୍ରାମର ଦୂରତ୍ୱ ଖୁବ୍‌କମ୍ ଦୁଇଫର୍ଲଙ୍ଗ ଅଟେ । ଅଧିକାଂଶ ସ୍ଥଳେ ଏହି ଦୂରତ୍ୱ ମାଇଲଏ ଦୁଇମାଇଲ ପର୍ଯ୍ୟନ୍ତ ଥାଏ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ବିଚାର କଲେ କୁଟିଆକନ୍ଧ ଯେ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟରକ୍ଷାର ନିୟମ ବିରୋଧୀ, ଏହା ସହଜରେ ଉପଲବ୍ଧି କରିହେବ । 'ଗାଁ ପରିମଳ ଧୋବାଭୁଠରୁ' ଜଣାଗଲା ପରି ଯେକୌଣସି ଲୋକ କୌଣସି କୁଟିଆ କନ୍ଧର ଗ୍ରାମକୁ ପ୍ରବେଶ କଲାମାତ୍ରେ ଗ୍ରାମଟି କେତେ ଅପରିଷ୍କାର ଓ ଅପରିଚ୍ଛନ୍ନ, ତାହା ଦେଖିବାକୁ ପାଇପାରିବ । ଗ୍ରାମର ଦାଣ୍ଡ ବାଡ଼ ଉଚ୍ଛିଷ୍ଟପୂର୍ଣ୍ଣ ଚୋପା ଲଣ୍ଡି, କୁକୁଡ଼ା ଘୁଷୁରି ଓ ଗୋରୁମାନଙ୍କର ମଳମୂତ୍ର ଭରପୂର । ମନୁଷ୍ୟ ଓ ପଶୁପକ୍ଷୀ ମଧ୍ୟରେ ଚଳ ଚଳଣିରେ ସମାନ ସ୍ୱାଧୀନତା ଥିବାରୁ କାହାର ପ୍ରତି କାହାରି ଘୃଣା ନ ଥାଏ । ଗ୍ରାମର ଲୋକେ ନିଜ ବାଡ଼ ବା ଗ୍ରାମର ନିକଟସ୍ଥ ସ୍ଥାନମାନଙ୍କରେ ମଳମୂତ୍ର ତ୍ୟାଗ କରନ୍ତି । ଘର ଭିତରକୁ ସୂର୍ଯ୍ୟରଶ୍ମି ବା ପବନ ପ୍ରବେଶ କରିବାର ବାଟ ନ ଥାଏ । କେତେକ କୁଟିଆ ନାଲି ଓ କଳା ମାଟିରେ ଘର ଲିପି ସୁନ୍ଦର କରିଥାନ୍ତି ।

ଘରଗୁଡ଼ିକ ଶସ୍ୟ, ଗୃହୋପକରଣ, ଧନୁଶର, ଲୁଗାପଟା ଆଦି ନାନା ଜିନିଷରେ ଭରପୂର । କୁଟିଆମାନଙ୍କ ମଧ୍ୟରେ ଖୁବ୍ କମ୍ ଲୋକ ଧନୀ ଅଟନ୍ତି । ସେହିପରି ସୁନା ରୁପା ମଧ୍ୟ ଖୁବ୍ କମ୍ ଲୋକଙ୍କ ପାଖରେ ଥାଏ । କଂସା ପିତ୍ତଳବାସନର ବ୍ୟବହାର ପ୍ରାୟ କେହି କରନ୍ତି ନାହିଁ । କୌଣସି ଚୋର କୁଟିଆ କନ୍ଧଘରେ ଚୋରି ଉଦ୍ଦେଶ୍ୟରେ ଗଲେ ତାର ପରିଶ୍ରମ ବିଫଳ ହେବ । କୁଟିଆକନ୍ଧର ଗୃହ ନିର୍ମାଣ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ, ତାର ଗୃହନିର୍ମାଣ କୌଶଳ ଆର୍ଥିକ ଦିଗରୁ ସୁବିଧା ଜନକ ଅଟେ । ଏଥିପାଇଁ ତାର ଶାରୀରିକ ପରିଶ୍ରମ ଛଡ଼ା ଅର୍ଥର ବ୍ୟୟ ହୁଏନାହିଁ କହିଲେ ଚଳେ । ଘରର କାଠ, ବାଉଁଶ, ମାଟି ଓ ନଡ଼ା ପ୍ରଭୃତି ସବୁ ଜଙ୍ଗଲରୁ ସଂଗୃହୀତ ହୋଇଥାଏ । ଛୋଟ ଛୋଟ ଘର କରିବାଦ୍ୱାରା ଝଡ଼, ବତାସର ଭୟ ରହେନାହିଁ । ତା' ଛଡ଼ା ମାଟି ଖୋଳି ଘର ଭିତର ଖାଲ କରିବା ଦ୍ୱାରା ଘର ଭିତର ଶୀତଦିନେ ଥଣ୍ଡା ବିଶେଷ ଅନୁଭୂତ ହୁଏନା । ଆଧୁନିକ ପ୍ରଣାଳୀରେ ଭଲଘର କରିବାକୁ ଅର୍ଥର ଆବଶ୍ୟକ ପଡ଼େ । ଅନେକ ସମୟରେ ଏହି ଅର୍ଥର ଅଭାବ ନ ଥିଲେ ମଧ୍ୟ ଭଲ ଘର କରିବାକୁ କୁଟିଆ-କନ୍ଧ ଭୟକରେ । ତାର ଭୟର କାରଣ ହେଲା-ସେ ଯଦି ଭଲ ଘରକରି ରହିବ, ତେବେ ତାର

ଶତ୍ରୁ କିମ୍ବା ଗ୍ରାମର ଲୋକେ ହିଂସାରେ ତା ଘରକୁ ଦେବତା ପେଶିଦେବେ । ଫଳରେ ସେ ଆଜୀବନ ଦୁଃଖ ଭୋଗ କରିବ ।

କୁଟିଆକନ୍ଧର ଗ୍ରାମରେ ପ୍ରବେଶ କଲେ, ଚତୁର୍ଦ୍ଦିଗ ନୀଳ ପର୍ବତ ଓ ସବୁଜ ବନାନୀ ଦୃଷ୍ଟିଗୋଚର ହୋଇଥାଏ । ମନେହୁଏ, ସତେ ଯେପରି କୁଟିଆ-କନ୍ଧ ହିଁ ଏକମାତ୍ର ପ୍ରକୃତି କୋଳରେ ପରମାନନ୍ଦରେ ବାସ କରୁଛି । ତାକୁ ଆଧୁନିକ ସଭ୍ୟତା ତଥା ଜଟିଳ ପରିବେଶରୁ ଦୂରେଇ ରଖିବା ପାଇଁ ପ୍ରକୃତି ଯେପରି ଦୁର୍ଭେଦ୍ୟ ପର୍ବତ ତଥା ନିଘଞ୍ଚ ଜଙ୍ଗଲ ମଧ୍ୟରେ ଲୁକ୍କାୟିତ ଭାବରେ ରଖିଛି । ସେ ସୁଖରେ ଅଛି କି ଦୁଃଖରେ ଅଛି, ତାହା ନିର୍ଣ୍ଣୟ କରିବା ସହଜ ନୁହେଁ । କିନ୍ତୁ ଏକଥା ସ୍ୱୀକାର୍ଯ୍ୟ ଯେ, ସେ ହେଉଛି ପ୍ରକୃତି କୋଳର ମାନବ, ସେ ଉପଭୋଗ କରୁଛି ପ୍ରକୃତିର ଅମୃତମୟ ସୃଷ୍ଟିକୁ, ଆଉ ସେ ହିଁ କେବଳ ଅମୃତ ସନ୍ତାନ ।

—*—




ବସ୍‌ରେ ଯିବା ଆସିବା କରିବାବେଳେ ହାତ ବାହାରକୁ ଦିଅନ୍ତୁ ନାହିଁ ।



ସବୁବେଳେ ବାମ ଦିଗକୁ ମାଡ଼ି ଚାଲନ୍ତୁ ।

# ॥ ମୃତ୍ୟୁ ॥

ଶ୍ରୀ ବୈକୁଣ୍ଠନାଥ ଶତପଥୀ
ଫକୀରମୋହନ କଲେଜ, ବାଲେଶ୍ୱର

ମୃତ୍ୟୁ ! ତୁମେ ବାସ୍ତବରେ ବଡ଼ ଦୁଷ୍ଟ, ବଡ଼ ସଇତାନ,
ସବୁର ଆଖିରେ ଜାଳ ଧ୍ୱଂସ ନିଆଁ ଝୁଲି·········
ଝଞ୍ଜା, ବତାସୀର ସ୍ୱର ବହିଆଣ ମଳୟର ସାଥେ—
ପ୍ରଳୟ-ବଧୂର-ଗାନ ତୁମ ପାଇଁ ଝରେ ସିନା ଖାଲି ?
ତୁମେ ତ ବୁଝିନ କେବେ ମଣିଷର ସୁଖ ଓ ସପନ,
ମାୟା, ମମତାର ଜାଲ କାଟିଦିଅ ନିର୍ଭିକ ଚିତ୍ତରେ·········
ଘନ ଅନ୍ଧକାରେ ଅବା ଆଲୁଅରେ କେବେ—
ସନ୍ତର୍ପଣେ ଗଳିଯାଅ, ସାରି ନିଜ କାମ ଅନ୍ଦନରେ ।
ତୁମର ପଣତ କାନି ସବୁବେଳେ ଫର ଫର ଉଡ଼େ,
ଚିରୋନ୍ମୁକ୍ତ ତୁମ ଦ୍ୱାର, ତୁମେ ଚିର ଜାଗ୍ରତ ପ୍ରହରୀ······
କାହିଁକି ଏ ଅଭିପ୍ରାୟ ଆକର୍ଷଣ ହୃଦୟେ ତୁମର ?
ତୁମଠିଁ ସବୁ ସମାନ ସୁଖ, ଦୁଃଖ—ଦିବସ, ଶର୍ବରୀ ।
ରଜା, ପ୍ରଜା, ଧନୀ ଆଉ ଗରିବର ପରିଚିତ ବନ୍ଧୁ
ଅସମୟେ ଦେଖାଦିଅ, ଗାଇ ଗାଇ ଧ୍ୱଂସ ବୀଣା ସ୍ୱର···
ଏ ମଣିଷ ମିଶେ ତବ ଚିରନ୍ମୁକ୍ତ ହୃଦୟର ତଳେ ।
ତୁମପାଇଁ ଲାଗେ ପରା ଧନକର ବଡ଼ ଆଡ଼ମ୍ବର ?

ହେଲେ କିନ୍ତୁ ସବୁ ସତ୍ତ୍ୱେ ମୃତ୍ୟୁ ! ତୁମେ ଅଟ ମୋର ସାଥୀ
ତୁମ ସାଥେ ଖେଳ ଖେଳି ସଭ୍ୟତାର ନର୍ଦ୍ଧମା ଭିତରେ···
ହତାଶାର-ବାମ୍ପ ତଳେ ଲଭି ଭଲ ତରଳ ତରଳ--
ବେଦମ୍ ହେଲଣି ଏଠି ଶିକ୍ଷା, ଦୀକ୍ଷା, ବାଳତର ଖାତର ।
ଜୀବନର-କଷ୍ଟ-ପଥେ ଦୁର୍ଘଟଣା ଝଡ଼ର ସଂଘର୍ଷ,···
ଆତ୍ମାର ପ୍ରତ୍ୟୟ ହଜେ, ଭାଙ୍ଗିଯାଏ ଆଶା ଅସୁମାରୀ·········
ବହୁର ଏ ଯାତ୍ରାପଥେ ଦେଖି ଦେଖି ସଂଘର୍ଷର ଛବି;
ମନ ମୋ ବଳପି ଉଠେ ବଞ୍ଚିବାଠୁଁ ଯିବାକୁ ହିଁ ମରି ।
ତେଣୁ ମୋର ସାଥି ଆଗୋ ! ମୃତ୍ୟୁ ତୁମେ ଚିର ବରାଭୟ,
ତୁମ ରୂପ, ତୁମ ସ୍ଥିତି, ତୁମ କାନ୍ତି ଭଲଲାଗେ ମୋତେ···
ସଭ୍ୟତାର—ଯୂପ ଖୁଣ୍ଟେ ଆଜ ଏଠି ଫାଶୀ ଦେବାପାଇଁ—
ତୁମରି ସ୍ନିଗ୍ଧ କୋଳରେ ଝୁଲିବାକୁ ଦେବନାହିଁ ସତେ ? ?

—×—

# ॥ କେତେକ ଉନ୍ନତ କିସମର ଧାନ ॥

ଆମଦେଶର ଚାଷୀମାନଙ୍କର ଅଜ୍ଞତାର ଅଭାବ ହିଁ କୃଷି ପ୍ରଗତିର ଏକ ପ୍ରଧାନ ପ୍ରତିବନ୍ଧକ । କୃଷି ବୈଜ୍ଞାନିକମାନେ ଯେଉଁ ନୂଆ ନୂଆ ତଥ୍ୟ ଆବିଷ୍କାର କରୁଛନ୍ତି, ଅଶିକ୍ଷା ଓ କୁସଂସ୍କାର ଆଦି ନାନାକାରଣରୁ ତାହା ଚାଷୀମାନଙ୍କ ପାଖରେ ପହଞ୍ଚି ପାରୁନାହିଁ । ଧାନ ଆମ ଦେଶର ଏକ ପ୍ରଧାନ ଫସଲ । ଅଥଚ ଏଇ ଧାନରେ ଯେଉଁ ନୂଆ ନୂଆ କିସମ ଆବିଷ୍କାର ହେଲାଣି, ତାହା ମଧ୍ୟ ଓଡ଼ିଶାର ଅନେକ ଚାଷୀଙ୍କ ଦୃଷ୍ଟିରେ ପଡ଼ନାହିଁ । 'ତାଇଚୁଙ୍ଗ' ଓ ଆଇ ଆର୍-୮ ଧାନ ଅମଳ ଦୃଷ୍ଟିରୁ ବିପ୍ଳବ ଘଟାଇଛି କହିଲେ ଚଳେ । କିନ୍ତୁ ଏଇ ଦୁଇଟି କିସମ ଧାନ ଛଡ଼ା ଅନ୍ୟାନ୍ୟ ଅନେକ ଉନ୍ନତ ଧାନ ଇତିମଧ୍ୟରେ ଆବିଷ୍କୃତ ହୋଇଛି । ଏଥିରୁ ମଧ୍ୟ ଭଲ ଅମଳ ହୁଏ । ଓଡ଼ିଶାର ଚାଷୀମାନେ ଏଥିପ୍ରତି ଦୃଷ୍ଟିଦେବା ଉଚିତ ।

ଉନ୍ନତ ଧାନ ବିହନ ଆଜିକାଲି କୃଷି ବିଭାଗ ତରଫରୁ ପ୍ରତ୍ୟେକ ବ୍ଲକ ଜରିଆରେ ଯୋଗାଇ ଦିଆ-ଯାଉଅଛି । ଚାଷୀମାନେ ସେମାନଙ୍କ ଜମିରେ ଉନ୍ନତ ବିହନ ବ୍ୟବହାର କରି ଆବଶ୍ୟକ ପରିମାଣରେ ଖତ ସାର ଦେଇ ଚାଷକଲେ ନିଶ୍ଚୟ ଅଧିକ ଅମଳ ପାଇବେ ।

## ବିଆଲିଧାନ

ଡି-୭୬ ଏହାର ମୂଳ ଧଳା, ଚାଉଳ ନାଲି ଓ ମୋଟା ହୁଏ । ଏହା ୧୦୫ରୁ ୧୧୦ ଦିନ ଭିତରେ ଅମଳ ହୁଏ । ଏକର ପିଛା ଅମଳ ପ୍ରାୟ ୩୫ମହଣ ପର୍ଯ୍ୟନ୍ତ ହେବ ।

ପି. ଟି. ବି. ୧୦ —ଏ ଧାନର ମୂଳଧଳା, ଚାଉଳ ମୋଟା ଓ ନାଲି ହୁଏ । ଏହା ୧୦୦ରୁ ୧୦୫ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଛା ପ୍ରାୟ ୪୦ ମହଣ ଧାନ ମିଳେ ।

## ଲଘୁଧାନ

ଟି ୪୪୨ ଏହାର ମୂଳ କଳା ହୁଏ, ଚାଉଳ ମୋଟା ଏବଂ ଧଳା ହୁଏ । ଏହା ୧୨୫ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଛା ୪୫ ମହଣ ପର୍ଯ୍ୟନ୍ତ ଧାନ ମିଳେ ।

ଟି ୧୧୪୫—ଏହାର ମୂଳ କଳା ହୁଏ, ଚାଉଳ ଧଳା ଏବଂ ମଧ୍ୟମ ଧରଣର ହୁଏ । ଏହି ଧାନ ୧୪୦ରୁ ୧୪୫ ଦିନ ମଧ୍ୟରେ ଅମଳ ହୁଏ ଏବଂ ଏକର ପିଛା ୪୮ ମହଣ ଅମଳ ମିଳେ ।

ଟି ୧୪୧—ଏହି ଧାନ ଗଛର ମୂଳ ଧଳା ହୁଏ, ଚାଉଳ ସରୁ ଏବଂ ସଫା ହୁଏ । ୧୫୫ରୁ ୧୬୦ ଦିନ ଭିତରେ ଧାନ ଅମଳ ହୁଏ ଏବଂ ଏକର ପିଛା ପ୍ରାୟ ୬୦ ମହଣ ଅମଳ ମିଳେ ।

## ବଡ଼ଧାନ

ଟି ୯୦—ଏହି ଧାନ ଗଛର ମୂଳ ଧଳା ହୁଏ, ଚାଉଳ ଅତି ସରୁ ଏବଂ ସଫା ହୁଏ । ଏହା ୧୬୦ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଛା ପ୍ରାୟ ୫୦ ମହଣ କରି ମିଳେ ।

ଟି ୧୨୪୨ —ଏହି ଗଛର ମୂଳ କଳାହୁଏ, ଚାଉଳ ମଧ୍ୟମ ଧରଣର ଏବଂ ସଫା ରଙ୍ଗର ହୁଏ ।

ଧାନ ୧୭୫ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଚ୍ଛା ପ୍ରାପ୍ୟ ୫୦ରୁ ୫୫ ମହଣ କରି ଅମଳ ହୁଏ ।

ସି: ଆର:୧୦/୧୪—ଏହାର ମୂଳ ଧଳା ହୁଏ । ଏହି ଧାନ ୧୬୦ଦିନ ଭିତରେ ଅମଳ ହୁଏ । ଏକର ପିଚ୍ଛା ଅମଳ ପ୍ରାପ୍ୟ ୭୦ ମହଣ ପର୍ଯ୍ୟନ୍ତ ହୁଏ ।

ସି. ଆର. ୨୮/୨୫—ଏହି ଧାନ ଗଛର ମୂଳ ଧଳା, ଗୁଣ୍ଡଳ ମଧ୍ୟମ ଧରଣର ଏବଂ ଧଳାରଙ୍ଗ ହୁଏ । ଧାନ ୧୧୫ ଦିନ ମଧ୍ୟରେ ଅମଳ ହୁଏ ଏବଂ ଏକର ପିଚ୍ଛା ପ୍ରାପ୍ୟ ୯୦ ମହଣ କରି ଫଳେ ।

ଏଫ୍. ଏଚ୍.୬୦-୧୨୪—ଏହାର ମୂଳ ଧଳା, ଗୁଣ୍ଡଳ ମଧ୍ୟମ ଧରଣର ଏବଂ ସଫାହୁଏ । ଏହି ଧାନ ୧୭୦ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଚ୍ଛା ପ୍ରାପ୍ୟ ୭୦ ମହଣ ପର୍ଯ୍ୟନ୍ତ ଫଳେ ।

ଏଫ୍. ଆର. ୪୩-ବି— ଏହି ଧାନ ଗଛର ମୂଳ ଧଳା, ଗୁଣ୍ଡଳ ମୋଟା ଓ ନାଲିରଙ୍ଗର ହୁଏ । ଏହି ଧାନ ୧୭୦ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଚ୍ଛା ଅମଳ ପ୍ରାପ୍ୟ ୩୦ରୁ ୪୦ ମହଣ ପର୍ଯ୍ୟନ୍ତ ହୁଏ ।

ଏଫ୍. ଆର. ୧୩-ଏ—ଏହି ଧାନ ଗଛର ମୂଳ ଧଳା ହୁଏ ଏବଂ ଗୁଣ୍ଡଳର ରଙ୍ଗ ନାଲି ହୁଏ । ଏହି ଧାନ ୧୬୦ ଦିନ ଭିତରେ ଅମଳ ହୁଏ ଏବଂ ଏକର ପିଚ୍ଛା ପ୍ରାପ୍ୟ ୨୦ରୁ୩୦ ମହଣ କରି ମିଳେ ।

(ଭାରତୀୟ କୃଷି ଗବେଷଣା ପରିଷଦ)

—*—



ଘର-ଅଗଣା ସଫା ସୁତୁରା ରଖନ୍ତୁ । ରାସ୍ତାକୁ ଭଙ୍ଗାକାଚ, ଲୁହା, ଅଳିଆ ଇତ୍ୟାଦି ପକାନ୍ତୁ ନାହିଁ ।

# ॥ ଦୁଇଟି ତରୁଣୀ ॥

ଚିତ୍ତ ମହାନ୍ତ, (କଳାହାଣ୍ଡି)

ଜୀବନର ଏକ ପାଂଶୁଳ ଗୋଧୂଳିରେ
ଭେଟିଥିଲି ଏକ ରୂପସୀ, ତନ୍ୱୀ, ଷୋଡ଼ଶୀ ।
ତା ତନୁର ସ୍ପର୍ଶ ଥିଲା ଉଗ୍ର କାମନା
ନୟନ ଯୁଗଳରେ ଥିଲା ନିୟନ୍ତ୍ରଣ ଓ ସମ୍ମୋହନ ଶକ୍ତି
ବକ୍ଷରେ ଥିଲା ସବୁଜ ସ୍ପନ୍ଦନ
କେଶ, ବିନ୍ୟାସ ପରିପାଟିରେ ଥିଲା
ଯୌବନଶ୍ରୀର ପ୍ରକଟିତ
ସେ ଭାବୁଥିଲା ଜୀବନଟା—
ସୁନ୍ଦର, କମନୀୟ, ତେଜୋଦୀପ୍ତ ଆଉ ଉପଭୋଗ୍ୟ
ଆତ୍ମହରା ହୋଇଥିଲା—
ଆହ୍ୱାନ କରିଥିଲା, କ୍ଷଣିକ ଉନ୍ମାଦରେ
ଝାସ ଦେବାକୁ ପତଙ୍ଗମାନଙ୍କୁ

ଯୌବନର ତରଳ ଉତ୍ତପ୍ତ ଲାଭାପରେ
ଅନ୍ୟ ଏକ ଉତପ୍ତ ମଧ୍ୟାହ୍ନରେ
ଭେଟିଥିଲି ଅନ୍ୟ ଏକ ତରୁଣୀ
ମନେ ହେଉଥିଲା ତା ତନୁଶ୍ରୀରେ ନଥିଲା
ରତିର କାମନା, ମୋହ ଓ ଆଦି ଯୁଗର ଲାଳସା
ତାର ଗ୍ରୀବାରେ ନଥିଲା ମଦାଳସାର ଭଙ୍ଗୀ

ଚକ୍ଷୁର କମ୍ପନ ସୃଷ୍ଟି କରୁ ନ ଥିଲା
ଅନ୍ୟମନରେ ଭଲ ପାଇବାର ସନ୍ଦେହ ଆଉ ଆକର୍ଷଣ
ସେ ଥିଲା ନୀରବ, ନିଶ୍ଚଳ, ନିଥର, ରତିକ୍ଳାନ୍ତ ଆଉ ଗମ୍ଭୀର
ସୁଯୋଗର ଅପେକ୍ଷାରେ
ସେ ଚାହୁଁଥିଲା ଜୀବନର
ନିଃଶେଷ ଯୌବନ ବର୍ତ୍ତିକା ମାଧ୍ୟମରେ

ଅନ୍ୟକୁ କରିବ ଆକର୍ଷଣ
ବାଛିନେବ ଜୀବନର ବିଶ୍ରମିତ ଦୀର୍ଘପଥ
ଦୁନିଆର ଗତାନୁଗତିକ ପଥରେ
କାରଣ ସେ ଜଳି ଜଳି ହୋଇଥିଲା କ୍ଳାନ୍ତ
ଶେଷହୋଇ ଆସିଥିଲା ଜଳିବାର ଇନ୍ଧନ
ତା ଯୌବନ ଅନଳରେ ଝାସଦେଇ
ପକ୍ଷାହତ ହୋଇଥିଲେ ଅନେକ ପତଙ୍ଗ
ତେଣୁ ଆଜି ସେ ମର୍ମାହତ ଆଉ ଅନୁତପ୍ତା ।

ଆଜି ମୁଁ ଚିନ୍ତାକରେ
ଦୁନିଆରେ ନାହିଁ ଆଜି ପ୍ରେମ ଓ ରତିର କାମନା
ବ୍ୟତିରେକ ତନ୍ୱୀ, ରୂପସୀ ତରୁଣୀ,

—*—

# ॥ ପ୍ରଶ୍ନବାଚୀ ॥

**ଶ୍ରୀ ଶେଷଦେବ ମଲ୍ଲିକ**

କୁମାର ପୂର୍ଣ୍ଣିମୀ ରାତ୍ରୀ। ବେଶ୍ କୋଳାହଳମୟ ହୋଇଉଠିଛି। ଏକ ଅଦୃଶ୍ୟ ବଂଶୀ ଖଣ୍ଡର ପାରଦ ଆଲୁଅ ଭଳି ଜହ୍ନ ହସି ହସି ଆନନ୍ଦରେ ଲୁଚକାଳି ଖେଳିବାରେ ବ୍ୟସ୍ତଅଛି। ଚନ୍ଦ୍ରମାର ଜ୍ୟୋତ୍ସ୍ନାରେ ପୃଥିବୀ ସ୍ନାନକରି ଏକ ସଦ୍ୟସ୍ନାତା ନବବଧୂ ଭଳି ଦୃଷ୍ଟି ଆକର୍ଷଣ କରୁଛି। ଆକର୍ଷିତ କରିବା ଯେପରି ତାର ଧର୍ମ ତାର ରୂପ ମାଧୁର୍ଯ୍ୟରେ ଆକର୍ଷିତ ହେବା ବି ମାନବର ଏକ କର୍ମ। ଜ୍ୟୋତ୍ସ୍ନା ଏକ ଅଲିଅଳି ରାଜ-କୁମାରୀ ସାଜି ମଣିଷ ମନରେ ଯେଉଁ ପରଶ୍ରୀକାତରତା, ଓ ଅହଂଭାବର ପ୍ରତିଦ୍ୱନ୍ଦିତା ଚାଲିଛି ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିଛି। ଜ୍ୟୋତ୍ସ୍ନା ସମସ୍ତଙ୍କୁ ଯଦିଓ ନିଜର ବାହୁ ବଳରେ ପରାସ୍ତ କରିବାକୁ ସକ୍ଷମ ହୋଇଛି ତଥାପି ଜଣକୁ ପରାସ୍ତ କରି ପାରିନି। ସେ ହେଉଛି ପ୍ରତିମୂର୍ତ୍ତି ବା ସ୍ରଷ୍ଟା। କାରଣ ସ୍ରଷ୍ଟା ହେଉଛି ଅନୁକରଣ ପ୍ରିୟ। ସେ ମୂର୍ତ୍ତିଙ୍କୁ ଅନୁକରଣ କରିଛି। ଆଉ ଜ୍ୟୋତ୍ସ୍ନାକୁ ସେ ନିଜର କରି ମାଧ୍ୟମରୂପେ ରଖିଛି। ଏ ଯେଉଁ ସ୍ରଷ୍ଟାକଥା ମୁଁ କହୁଛି, ସେହିସ୍ରଷ୍ଟା ମଣିଷ ମନରେ ଅଯଥା ଭୟ ସୃଷ୍ଟି କରାଏ। ଆଉ ଦିନରେ ମଣିଷକୁ ବିଶ୍ରାମ ଦେବା ନିମନ୍ତେ କର୍ମକ୍ଲାନ୍ତ ମଣିଷକୁ ଟାଣିନେଇ କୋଳରେ ବସାଏ। ସେ ହେଉଛି ରୁଦ୍ର, ଭୟଙ୍କର ଓ ଶାନ୍ତ ତିନିରସର ସଙ୍ଗମ ସ୍ଥଳ।

କୁମାର କୁମାରୀଙ୍କ ମନରେ ଆନନ୍ଦର ଅସୁମାରୀ ଢେଉ। ତାଙ୍କର ବୃନ୍ଦ ବନ୍ଦାଣ କାର୍ଯ୍ୟ ଶେଷହୋଇ ଯାଇଛି। ସେମାନେ ନାନାପ୍ରକାର ମଉଜ ମଜଲିସ୍‌ରେ ମାତିଯାଇଛନ୍ତି। ଠିକ୍ ଯେମିତି ଏ ଅବୁଝା ମେଘଗୁଡ଼ାକ ପବନ ସାଥିରେ କ୍ଷଣକ ଉନ୍ମାଦରେ ଭାସି ବୁଲୁଛନ୍ତି। ସେମାନଙ୍କର କିଛି ବାଛ ବିଚାର ନାହିଁ। ସେହି କୁମାରୀ-ମାନଙ୍କର ଆନନ୍ଦ ହିଁ ସେମାନଙ୍କୁ ବାସ୍ତବ ଦୁନିଆର ଜଞ୍ଜାଳଠାରୁ ତାଙ୍କୁ ଦୂରକୁ ଟାଣି ନେଇଛି। ସେମାନେ ଏ ଛେଳିଲୁଣ ଦୁନିଆର ବ୍ୟଭିଚାରର କାହାଣୀ ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ। ଜଣେ କିନ୍ତୁ ତାର ଏଇ ଛେଳିଲୁଣ ଦୁନିଆର କଥା ଭାବି ଚାଲିଛି। ନାଁ ତାର ସୁମିତ୍ରା। ବର୍ତ୍ତମାନ ତାର ଘର ସଂସାର କହିଲେ ୪ଟି ପୁଅ, ୨ଟି ଝିଅ, ସେ ଆଉ ତାର ସ୍ୱାମୀ।

ଆଜକୁ ଦଶବର୍ଷ ତଳର କଥା। ମୁଁ ସୁମିତ୍ରାକୁ ଦେଖିଥିଲି ଗାଁ ଝିଅ ହିସାବରେ। ଆଜି କିନ୍ତୁ ଦେଖୁଛି ଢେରକିଛି ବଦଳି ଯାଇଛି। ଆଉ ବିଶେଷ ବର୍ଣ୍ଣନା ଦେଲେ ଘଟଣାଟା ଚର୍ବିତ ଚର୍ବଣରେ ପରିଣତ ହେବ ଓ ପାଠକ ଗୋଷ୍ଠୀଙ୍କର ନାନାପ୍ରକାର କଟୁ ମନ୍ତବ୍ୟ ନାମରେ ମୁଁ କେତେଖଣ୍ଡ ସାର୍ଟିଫିକେଟ ପାଇବା ବ୍ୟତୀତ ଅନ୍ୟକିଛି ହେବନାହିଁ। ତଥାପି କହିରଖେ, ତାର ମନକୁ ଏକ ସନ୍ଦେହର ଜାଲୁଆର କଲବଲ କରୁଛି। ତା ସ୍ୱାମୀ ଆଉ ପୂର୍ବଭଳି ତା ସହିତ ହପଦ ସୋହାଗ ମିଶା କଥା କହୁ ନାହାନ୍ତି। ଟିକେ ଅଳପ ଅଳପ ହସୁନାହାନ୍ତି ଇତ୍ୟାଦି। କାରଣ ବୟସର ଦାବୀ ବିଷୟ ବୁଝିବାକୁ ସେ ଅସମର୍ଥ। ଯାହାର ପରିଣାମ ସ୍ୱରୂପ, ସ୍ୱାମୀ ପ୍ରଶାନ୍ତ ପ୍ରତି ତାର ସନ୍ଦେହ

ଘନୀଭୂତ ହୋଇଛି ଓ ସେ ସେହି କଥାକୁ ଚିନ୍ତାକରି ତାର ମୀନ ଚକ୍ଷୁରୁ ଅବାରିତ ଅଶ୍ରୁଧାର ବର୍ଷଣ କରୁଛି ।

ଅନ୍ୟାନ୍ୟ ଝିଅ ବୋହୂଙ୍କ ଭଳି ଏପରି ମଧୁମୟ ପରିବେଶ ମଧ୍ୟରେ ସେ ତାର ମନକୁ ହଜାଇ ପାରୁନାହିଁ । କାରଣ ସେ ଖୁବ୍ ଭାବପ୍ରବଣା । ମୁଁ ଏକେତ ମନସ୍ତତ୍ତ୍ୱ ଅଧ୍ୟୟନ କରୁଥାଏ । ସେ ଦୃଷ୍ଟିରୁ ଓ ସୁମିତ୍ରା ମୋର ନିକଟ ସମ୍ପର୍କୀୟା ଏଇଥି ପାଇଁ ତା' ମନରୁ ଏ ପ୍ରକାର ଅପ୍ରାସଙ୍ଗିକ ଚିନ୍ତାଧାରା ଦୂରକରି ଅସନ୍ତୋଷର ବନ୍ଦୀଶାଳାରୁ ମୁକ୍ତ କରିବା ନିମନ୍ତେ ଦୃଢ଼ ସଂକଳ୍ପ ନେଇ ଚାଲିଲି । ହେଲେ କିନ୍ତୁ ସୁମିତ୍ରା ମୋ ପ୍ରସଙ୍ଗକୁ ମାନିନେବ ଏ ପ୍ରକାର ଧାରଣା ମୋର ନ ଥିଲା । ମୋର ଗନ୍ତବ୍ୟ ପଥରେ ଏକ ଭଗ୍ନକାୟ ଗୁମ୍ଫାମୂର୍ତ୍ତି ଆଡ଼କୁ ଦୃଷ୍ଟି ଆଗେଇ ଆସିଲା ।

ଗୋଟିଏ ବରଗଛ, ବାଉଁଶ ସାହିକୁ ଲମ୍ବିଥିବା ରାସ୍ତାର ଠିକ୍ କଡ଼ରେ । ତା ଦେହକୁ ଆଶ୍ରାକରି କେଉଁ ଅସିଆକାଳରୁ ମାଧବୀ ଲତାଟିଏ ବଢ଼ିଚାଲିଛି । ବରଗଛର ଗୁମ୍ଫା ଗ୍ରୀଷ୍ମକାଳରେ ଖୁବ୍ ଥଣ୍ଡା, ଶୀତକାଳରେ ତା' ତଳେ ଟିକେ ଉଷ୍ଣତା ଅନୁଭବ କରିହେବ । ଯାଯାବର ଶ୍ରେଣୀର ଲୋକମାନଙ୍କପାଇଁ ଯେ ଏହା ଶୀତାତପ ନିୟନ୍ତ୍ରିତ ଆଶ୍ରୟସ୍ଥଳ ଏଥିରେ ଦ୍ୱିମତ ହେବାର କୌଣସି କାରଣ ନାହିଁ । ସାପୁଆକେଳା ଓ ଘୁଷୁରିଆମାନେ କେବେ ଆସିଲେ ଏହି ଗଛମୂଳେ ଆଶ୍ରୟ ନେବାର ମୁଁ ବହୁଥର ଦେଖିଛି । ଗଛଟି ମୂଳରେ କେତୋଟି ଅସ୍ଥାୟୀ ଚୁଲିର ସନ୍ତକ ଦୃଷ୍ଟିପଥାରୂଢ଼ ହେଲା । ତା' ପାଖରେ ଖଣ୍ଡେ ଅଧେ ଦରପୋଡ଼ା କାଠ ବା ବାଉଁଶ ପାଖକୁ ମେଞ୍ଚାଏ ପାଉଁଶ ଗଦା ହୋଇଥିବାର ଦେଖି ମୋର ପିଲାଦିନର ହଜିଯାଇଥିବା କେତୋଟି ମୁହୂର୍ତ୍ତ ସମ୍ପର୍କରେ ଚିନ୍ତା କଲି । ଆଖିରୁ ମୋର କେଇବୁନ୍ଦା ଲୁହ ଆଶ୍ୱିନ ସକାଳର କାକର ପରି ଟପ୍ ଟପ୍ ଶବ୍ଦକରି ଗଛମୂଳରେ ଜମି ରହିଥିବା ଶୁଖିଲା ପତ୍ରମାନଙ୍କ ଉପରେ ପଡ଼ିଲା, ମୁଁ ଟିକେ ଚମକି ପଡ଼ିଲି । ନିଜକୁ ନିଜେ ପ୍ରଶ୍ନକଲି ଆରେ ମୁଁ ସେ କାନ୍ଦୁଛି । ଲୁହ ପୋଛିଲି···

ସେହି ଗୁମ୍ଫା ଆଡ଼କୁ ପୁନର୍ବାର ମୋର ଦୃଷ୍ଟି ଆକର୍ଷିତ ହେଲା । ମନଟା ଅଜାଣତରେ ନାଚି ଉଠିଲା ଲକ୍ଷ୍ୟକଲି ପରିବେଶଟାକୁ । ଖୁବ୍ ଶାନ୍ତ, ଖୁବ୍ ମଧୁର । ମାଧବୀଲତାଟି ବରଗଛକୁ ଭିଡ଼ିଧରିଛି । ମନେହେଲା ମାଧବୀଟା ଭାରି ଅଳିଅଳି । ଏମିତି ଏ ରାସ୍ତା କଡ଼ରେ ସବୁ ସାମ୍ନାରେ ପ୍ରେମ କରିଯାଇପାରେ ଆଉମଧ୍ୟ ବରଗଛ ଉପରେ ମୋର ଘୃଣାଭାବ ଉଦ୍ରେକ ହେଲା । ସେ ବି ନିଜଠା ନ ହେଲେ ସେ କଣ ମାଧବୀ ଲତାଟାକୁ ନେଡାଇଦେଇ ପାରନ୍ତା ନାହିଁ । ଯାହାହେଉ ଶେଷ ସିଦ୍ଧାନ୍ତରେ ଉପନୀତ ହେଲି ଯେ, ଏହା ଏକ ଆବିଳତା ହୀନ ପ୍ରେମର ସମ୍ବଳ । ମନରେ ମୋର ଚେଇଁ ଉଠିଲା ପଣ୍ଡିତଙ୍କ କଥା । "ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା" ।

ଏକ ଅବାସ୍ତବ ଖିଆଲ ସହିତ ବି ପ୍ରକୃତିର ସମର୍ଥନ ଅଛି । ଆଉ ଅଛି ସମବେଦନା, ସମ୍ଭ୍ରମ ଇତ୍ୟାଦି କେତେ କ'ଣ ? ଆହା କେଡ଼େ ମଧୁମୟ ଏ ମୁହୂର୍ତ୍ତ । ଏଇ ମାଧବୀ ଲତାଟି ଅଭିମାନ କରି ବସିଛି । ଝିଲିକାଏ ଥଣ୍ଡାପବନ ବହିଗଲା । ମାଧବୀ କହିଲା ପ୍ରୀୟେ !

ବରଗଛ ବିସ୍ମିତ ହେଲା, ପ୍ରଶ୍ନକଲା କଣ ହେଲା ? କିଛି ନୁହେଁ । ଏପରି ଚମକି ପଡ଼ିଲ ଯେ—

ହୁଁ ଚମକିବନି ତ ଆଉ କଣ ?

ମାଧବୀ ଛଳନା କଲା । କାନ୍ଦ ଆରମ୍ଭକରି ଦେଲା । ଗଛମୂଳେ ଜମିଥିବା ଶୁଖିଲା ପତ୍ରଉପରେ ହିମକାକର-ଗୁଡ଼ିକ ଟପ୍ ଟପ୍ ଶବ୍ଦକରି ତେଇଁ ପଡ଼ିଲେ ।

ତଥାପି କେହି କାହାରିକୁ କିଛି କହୁନାହାନ୍ତି । ସମସ୍ତେ ନୀରବ, ନିସ୍ତବ୍ଧ ! ପ୍ରକୃତି ମଧ୍ୟ········

ମାଧବୀ ମନକୁ ମନ କହିବାକୁ ଆରମ୍ଭକଲା, ବାସ୍ତବରେ ଏ ପୁରୁଷ ଜାତିକୁ ବିଶ୍ୱାସ କରିବା ଉଚିତ

ବୁଡ଼େଁ । ହଠାତ୍ ବୁଢ଼ା ବରଗଛଟା ପ୍ରତିବାଦ କରି କହିଲା କାହିଁକି ?

ସେମାନେ ଗୃହାନ୍ତି କେବଳ ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ । କେବଳ ସେଇଥିପାଇଁ ସେମାନେ ନାରୀକୁ କ୍ରୀଡ଼ନକ ସଜାନ୍ତି । ଗୋଟିକର ସୌନ୍ଦର୍ଯ୍ୟ ନଷ୍ଟହେଲେ ଅନ୍ୟକୁ ନିଜର କରିବା ନିମନ୍ତେ ଉଦ୍ୟମ କରନ୍ତି । ଏ ହେଉଛି ପୁରୁଷ ଜାତିର ଧର୍ମ ।

ଉହୁଁ·········ତୁମେ ଖାଲି କହୁଛନା ଏହାର କିଛି ହିସାବ ନିକାଶ ରଖିଛ । ମୁଁ ଜାଣେ ସମସ୍ତ ନାରୀଙ୍କର ଏଇ ଗୋଟିଏ କଥା । କେବଳ ଏତିକି କହି ସେମାନେ ପୁରୁଷମାନଙ୍କ ମନରେ ଆଘାତ ସୃଷ୍ଟି କରନ୍ତି ।

ବାଃ···ଏକାଥରକେ ନିଜକୁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଖୁବ୍ ସହଜରେ ତ ସାବ୍ୟସ୍ତ କରିଦେଲ । ଏ କଥା କହିଲାବେଳକୁ ଗୁପ୍ତାଆଡ଼କୁ ତାର ଦୃଷ୍ଟି ଟେକି ନେଇଥିଲା ମାଧବୀ । ମୁଁ ତ ନିଜେ ଦେଖିଛି, ଆପଣ ସାମାନ୍ୟ କେତୋଟି ମୁହୂର୍ତ୍ତ ପୂର୍ବରୁ ନିଆଳୀର ବାହୁବନ୍ଧନ ଭିତରେ ନିଜକୁ ହଜାଇ ଦେଇଥିଲେ, ଏହା କହି ନିର୍ନିମେଷ ନୟନରେ ବରଗଛକୁ ଚାହିଁ ରହିଲା ।

ବରଗଛ ବିସ୍ମିତ ହେଲା ଯେତିକି, ତା' ଠାରୁ ଆହୁରି ଅଧିକ ଚିନ୍ତାରେ ବୁଡ଼ିଗଲା । ପରେ ଉତ୍ତର ଦେଲା ନାଁ କାହିଁ ମୁଁ ତ ସାର୍ଦ୍ଦଦିନ ହେଲା ନିଆଳୀ ସହିତ ସାକ୍ଷାତ କରିନାହିଁ ।

ଉହୁଁ···ପୁରୁଷମାନେ ଯେତେବେଳେ ନିଜ ନିଜର ସ୍ତ୍ରୀଙ୍କ ନିକଟରେ ନିଜର କୃତ ଅପକର୍ମ ବିଷୟରେ ଧରାପଡ଼ିଯାନ୍ତି, ସେତେବେଳେ ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରିବାକୁ ଯାଇ ନାନାପ୍ରକାର ଛଳନାର ଆଶ୍ରୟ ନିଅନ୍ତି ।

ଆପଣଙ୍କୁ ଯଦି ବର୍ତ୍ତମାନ ମୁଁ ଏହାର ପ୍ରମାଣ ଦିଏ, ତେବେ ଆଉ ଏତେ ସହଜରେ ମୋତେ ଫାଙ୍କିଦେଇ ପାରିବେ ନାହିଁ । ବୁଢ଼ା ବରଗଛଟା ଏ ସମସ୍ତ କଥା ଯାହାକି ଭିତ୍ତିହୀନ ଶୁଣି ଶୁଣି ବଡ଼ ବିଚଳିତହୋଇ ଯାଇଥିଲା । ପ୍ରେତ ହାଇଟିଏ ମାରି କହିଲା ଏହାର ପ୍ରମାଣ ଦିଅ ମାଧବୀ ।

ମାଧବୀ ବରଗଛ ଓ ଚନ୍ଦ୍ରଫଳର ନିଜର ଗୁପ୍ତାକୁ ନିର୍ଦ୍ଦେଶିତ କରି ଆମ୍ଭର କଲା, ପୂର୍ବ ବର୍ଣ୍ଣିତ ସମସ୍ତ ଘଟଣା । ବୁଢ଼ା ବରଗଛ ଏ ସମସ୍ତ ମାଧବୀର ବୋକାମୀ ଓ ସନ୍ଦେହ ସମ୍ପର୍କରେ ବୁଝିବା ପାଇଁ ସକ୍ଷମ ହେଲା; ସେ ଏକ ନିର୍ବୋଧ ପ୍ରାୟ ଭଳି ସମସ୍ତ ବର୍ଣ୍ଣନା ଶୁଣିବା ପରେ ଫେଁ କରି ହସି ଉଠିଲା ।

ଏହି ସମୟରେ ଦମକାଏ ଥଣ୍ଡା ପବନ ବହିଗଲା ଏ ଅବସ୍ଥା ଦେଖି ମାଧବୀ ନିଜର ଛଳନା ପରିତ୍ୟାଗ କରି କହିବାକୁ ଲାଗିଲା ପଡ଼ିଗଲି ପଡ଼ିଗଲି, ରକ୍ଷାକର ପ୍ରିୟେ ।

ବରଗଛ ଜାଣିଲା, ମାଧବୀର ସନ୍ଦେହ ଓ ବୋକାମୀ ସମ୍ପର୍କରେ ଚେତାଇ ଦେବାପାଇଁ ଏ ହେଉଛି ପ୍ରକୃଷ୍ଟ ସମୟ । ମାଧବୀକୁ ଜାବୁଡ଼ି ଧରିଲା ବରଗଛ । ମାଧବୀ ବି ବରଗଛକୁ । ବରଗଛ କହିଲା ଦେଖୁଛ ପ୍ରିୟା, ଏ ପ୍ରାଇ କାହାର, ତୁମର ଓ ମୋର । ମୁଁ ନିଆଳୀ ନିକଟକୁ ଯାଇ ନ ଥିଲି କିମ୍ବା ନିଆଳି ସହିତ ମୋର ଆଦୌ ସମ୍ପର୍କ ନାହିଁ । ତୁମର ନିହାତି ବୁଝିବା ଦରକାର ଯେ, ସମାଜ ଯେତେବେଳକୁ ସଂସ୍କାର ଗ୍ରସ୍ତ, ଏବଂ ମଣିଷ ମନରେ ସନ୍ଦେହର ଜାଲୁଆର ପଇଁତରା ମାରୁଛି, ସେତେବେଳେ ଏ ସମ୍ପର୍କରେ ଗମ୍ଭୀର ଚିନ୍ତା ଓ ଅନୁସନ୍ଧାନର ଆବଶ୍ୟକତା ଅଛି ।

ଏଇ ସମସ୍ତ ଘଟଣାରୁ ପତିବ୍ରତା ସୁମିତ୍ରା ଚେଷ୍ଟାକରି ବୁଝି ପାରିଥିଲା ତାର ସ୍ୱାମୀଙ୍କର ନିଷ୍କଳଙ୍କତା ସଂପର୍କରେ—ବୁଝିବାକୁ ତାକୁ ଆଉ ଡେରି ଲାଗିଲା ନାହିଁ । ସୁମିତ୍ରା ସ୍ଥିର କରିନେଲା ରାତି ଟି ଆନନ୍ଦରେ ଅତିବାହିତ କରିବ । ସେତେବେଳକୁ ଆସି ରାତି ଶେଷ ପ୍ରାୟ । ଚନ୍ଦ୍ର ଅସ୍ତାଚଳ ଶିଖରରେ ଆଶ୍ରୟ ନେବାକୁ ତରବର ହେଉଥାଏ । ସୁମିତ୍ରା ଗାଇଲା ଏକ ପୁରୁଣା ଦିନର ସିନେମା ଗୀତ—ରୁକ୍‌ଯା ରାତ୍ ଠହରଯାରେ ଚନ୍ଦା ବିତନା ମିଲନ୍‌କା ବେଲା···

—*—

ଭରି ଭଲ ଲାଗୁଛି ବାପା

ଏହି ମଣିରାଜ ବିସ୍କୁଟ-ଲଜେଞ୍ଜ
ମୋ ପାଇଁ ଆଉ ଆଣିବ



# ବେଦରେ ଗଣିତ

**ଶ୍ରୀ ସୋମନାଥ ମହାପାତ୍ର**

ଅଧ୍ୟାପକ ଆଦିବାସୀ ଆଭିମୁଖ୍ୟ ତାଲିମ କେନ୍ଦ୍ର, (ମାଛକୁଣ୍ଡ)

ଆମ ଦେଶ ମୁନି ଋଷିଙ୍କର ଦେଶ । ଏହାର ସଂସ୍କୃତିରୁ ବଳି ଅଧିକ ବଳିଷ୍ଠ ଓ ମହତ୍ତର ସଂସ୍କୃତି ଅନ୍ୟ କୌଣସି ଦେଶର ନାହିଁ ନିଃସଂଦେହରେ କୁହା ଯାଇପାରେ । ଆମ ବଳିଷ୍ଠ ପରଂପରା ଓ ସଂସ୍କୃତିର ମୂଳ ଉତ୍ସ ହେଲା ବେଦ ଓ ଉପନିଷଦ୍ । ବେଦର ଅର୍ଥ ହେଲା ଅସୀମ ଜ୍ଞାନର ଭଣ୍ଡାର । ଆଧ୍ୟାତ୍ମିକ ଓ ଭୌତିକ ଉଭୟ ଦୃଷ୍ଟିରୁ ସୁଖ ସ୍ୱାଚ୍ଛନ୍ଦ୍ୟ ଜୀବନ ଯାପନ ନିମନ୍ତେ ଆମର ସମସ୍ତ ଉପାଦାନ ବେଦ ଓ ଉପନିଷଦରେ ରହିଛି । ଗଣିତ, ବିଜ୍ଞାନ, ଅର୍ଥନୀତି, ନିର୍ମାଣ ଶାସ୍ତ୍ର (ଇଞ୍ଜିନିୟରିଂ) ଇତ୍ୟାଦି ଯାହାକିଛି, ସେଗୁଡ଼ିକର ସୂତ୍ର ବା ଫାରମୁଲା ବେଦରେ ଅଛି । ସେଗୁଡ଼ିକର ବିକାଶ ଓ ବିନିଯୋଗ ହୋଇ ପାରିଲେ ପାଶ୍ଚାତ୍ୟ ବିଜ୍ଞାନ ମନୁଷ୍ୟ ଜୀବନରେ ଯାହା କରି ପାରିଛି ତାକୁ ବଳିଯାଆନ୍ତା, ସନ୍ଦେହ ନାହିଁ । ସେ ଦିଗ ପ୍ରତି ଆମର ଦୃଷ୍ଟି ଫେରୁନାହିଁ । ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିକୁ ଅନୁକରଣ କରି ଆମ ଧର୍ମ ଓ ସଂସ୍କୃତିର ପାରଂପରିକ ନୀତିଗୁଡ଼ିକୁ 'ପୁରୁଣା କାଳିଆ' ଆଖ୍ୟା ଦେଇ ଆମେ ଅନୁସରଣ କରୁ ନ ଥାଉଁ । ଆମ ସଂସ୍କୃତି ଓ ପରଂପରାକୁ ନେଇ ଆମର ସମ୍ବିଧାନ ଗଢ଼ାଯାଇ ନାହିଁ । ତାହାହିଁ ବର୍ତ୍ତମାନ ଆମ ଅଧୋଗତିର କାରଣ, ସନ୍ଦେହ ନାହିଁ । ଆମ ସଂସ୍କୃତିରେ ଗଚ୍ଛିତ ଗୁପ୍ତ ରହସ୍ୟଗୁଡ଼ିକ ଉଦ୍ଧାର କରି ପ୍ରୟୋଗରେ ଆମର ବ୍ୟକ୍ତି ଓ ସମାଜ ଜୀବନ ସମୃଦ୍ଧ ହେଉ, ଏହି ଆଶାରେ ବେଦ କଥିତ ଗଣିତ ଶାସ୍ତ୍ରର ସାମାନ୍ୟ ସୂଚନା ଦେଉଛି ମାତ୍ର ।

ଗଣିତରେ ଯେତେ ବିଭାଗ ଅଛି ସେଗୁଡ଼ିକର ସରଳ ଓ ସହଜ ସମାଧାନ ବେଦୋକ୍ତ ୧୬ଟି ସୂତ୍ର ସାହାଯ୍ୟରେ କରାଯାଇ ପାରେ । ପୁରୀ ଗୋବର୍ଦ୍ଧନ ପୀଠର ଭୂତପୂର୍ବ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀ ଶ୍ରୀ ଭାରତୀକୃଷ୍ଣ ତୀର୍ଥସ୍ୱାମୀ ମହାରାଜ ବଞ୍ଚିଥିବା ବେଳେ, ୧୯୪୭ରେ ବେଦୋକ୍ତ ଗାଣିତିକ ସୂତ୍ରଗୁଡ଼ିକର ବ୍ୟାଖ୍ୟା କରୁଥିଲେ । ତାହାଁରୁ କେତୋଟି ଶୁଣି ଟିପି ନେବାର ସୁଯୋଗ ମିଳିଥିଲା । ତହିଁରୁ କେତୋଟି ସୂତ୍ରର ସାଧାରଣ ପ୍ରୟୋଗ ଧାରାବାହିକ ଭାବରେ ପ୍ରକାଶ କରି ଆମ ଶାସ୍ତ୍ରର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ଲେଖାଟିର ଉଦ୍ଦେଶ୍ୟ ସୁଧୀପାଠକବୃନ୍ଦ ବିଚାର କରିବେ ଆଶା କରୁଛି ।

## ଗୁଣନ ପ୍ରକ୍ରିୟା

ଏଠାରେ ପ୍ରଧାନ ସୂତ୍ର ହେଲା "ନିଖିଳଂ ନବତଃ ଚରମଂ ଦଶତଃ" ଏବଂ ଉପସୂତ୍ର ହେଲା—"ଏକ ନ୍ୟୂନେନ ପୂର୍ବେଣ" ।

ସୂତ୍ରର ଅର୍ଥ ହେଲା—ଗୁଣ୍ୟର ସବୁ ଅଙ୍କ '୯'ରୁ ଓ ଶେଷ ତଥା ଏକକ ଅଙ୍କ '୧୦'ରୁ । ଉପସୂତ୍ରର ଅର୍ଥ ହେଲା "ଗୋଟିଏ ଊଣା କରି ପୂର୍ବରେ" । ସୂତ୍ରଗୁଡ଼ିକର ଅର୍ଥ ଓ ପ୍ରୟୋଗ ବିଧି ନିମ୍ନ ଉଦାହରଣ ଗୁଡ଼ିକରେ ସ୍ପଷ୍ଟ କରି ଦିଆ ଯାଇଛି । ପ୍ରଥମେ ଗୁଣନ ସଂଖ୍ୟାର ଅଙ୍କ କେବଳ '୯' ହେଲେ ଏବଂ ଗୁଣ୍ୟ ଓ ଗୁଣନର ସଂଖ୍ୟାମାନ ସମାନ ଅଙ୍କ ବିଶିଷ୍ଟ (digits) ହେଲେ ।

| | |
|---|---|
| ୯ × ୨ = ୧ । ୮ | ଏଠାରେ ଗୁଣକ ସଂଖ୍ୟା କେବଳ '୯' ଅଟେ । |
| ୯ × ୩ = ୨ । ୭ | ଗୁଣ୍ୟ ସଂଖ୍ୟା ୧, ୨, ୯ ପର୍ଯ୍ୟନ୍ତ ପ୍ରତ୍ୟେକ ଏକ ଅଙ୍କ ବିଶିଷ୍ଟ । |
| ୯ × ୪ = ୩ । ୬ | |

୯ X ୫ = ୪ । ୫ ଗୁଣିତକ ସଂଖ୍ୟାର ଦଶକ ଓ ଏକକ ଅଙ୍କମାନଙ୍କୁ ଲକ୍ଷ୍ୟ କର ।
୯ X ୭ = ୬ । ୩ ଗୁଣିତକର ପ୍ରତ୍ୟେକ ଦଶକ ଅଙ୍କ ଗୁଣଜର ଅଙ୍କଠାରୁ ୧କମ୍ ଅର୍ଥାତ୍ "ଏକ ନ୍ୟୁନେନ ପୂର୍ବେଣ"
୯ X ୮ = ୭ । ୨ ଗୁଣିତକର ପ୍ରତ୍ୟେକ ଏକକ ଅଙ୍କ ଯଥାକ୍ରମେ (୧୦-୨), (୧୦-୩), ... (୧୦-୯) । ଅର୍ଥାତ୍
୯ X ୯ = ୮ । ୧ "ଚରମଂ ଦଶତଃ" ଅର୍ଥାତ୍ ଗୁଣ୍ୟର ଚରମ ତଥା ଏକକ ଅଙ୍କ ୧୦ରୁ ଫେଡ଼ି ଗୁଣିତକର ଏକକ ଅଙ୍କ ଲେଖ । ଏଠାରେ ଗୁଣିତକ ଏକ ଅଙ୍କ ବିଶିଷ୍ଟ ହୋଇଥିବାରୁ "ନିଖିଳଂ ନବତଃ"ର ପ୍ରୟୋଗ ଅନାବଶ୍ୟକ ।

ଗୁଣି ଦେଖ ।

ଗୁଣିତକ

୧୧ X ୯୯ = (୧୧-୧) । (୯-୧) ୧୦-୧) = ୧୦ । ୮୯
୧୨ X ୯୯ = (୧୨-୧) । (୯-୧) ୧୦-୨) = ୧୧ । ୮୮
୧୩ X ୯୯ = (୧୩-୧) । (୯-୧) (୧୦-୩) = ୧୨ । ୮୭
୧୪ X ୯୯ = (୧୪-୧) । (୯-୧) (୧୦-୪) = ୧୩ । ୮୬
— X — = — — । — — — — = — । —
୧୯ X ୯୯ = (୧୯-୧) । (୯-୧) (୧୦-୯) = ୧୮ । ୮୧
୨୦ X ୯୯ = (୨୦-୧) । (୧୦-୨) (୦) = ୧୯ । ୮୦

ପୂର୍ବରେ ଯାହା କୁହା ଯାଇଛି, ଏଠାରେ ତାହାହିଁ ଅନୁସରଣକର ଗୁଣଫଳ ମୌଖିକ ହିସାବକରି ଲେଖାଯାଇଛି । ଅଧିକନ୍ତୁ ଗୁଣ୍ୟ ସଂଖ୍ୟା ଦୁଇଟି ଅଙ୍କ ବିଶିଷ୍ଟ ହେତୁ ଏହାର ଶେଷ ସଂଖ୍ୟା ୧୦ରୁ ଫେଡ଼ି ଗୁଣିତକର ଏକକ ଅଙ୍କ ଅଣା ଯାଇଛି ଏବଂ ଦଶକ ଅଙ୍କଟି ପାଇଁ ଗୁଣ୍ୟର ଅପର ଅଙ୍କଟି ୯ରୁ ଫେଡ଼ା ଯାଇଛି । ନିଖିଳଂ ନବତଃ ଚରମଂ ଦଶତଃ । ଅର୍ଥାତ୍ "ଏକ ନ୍ୟୁନେନ ପୂର୍ବେଣ"ର ପ୍ରୟୋଗରେ (୧୧-୧), (୧୨-୧) ଇତ୍ୟାଦି ଅଙ୍କମାନ ଅଣାଯିବା ପରେ "ନିଖିଳଂ ନବତଃ ଚରମଂ ଦଶତଃ"ର ପ୍ରୟୋଗରେ ଗୁଣିତକର ଦଶକ ଓ ଏକକ ଅଙ୍କମାନ ଅଣାଯାଇଛି ।

ସେହିପରି ନିମ୍ନ ଲିଖିତ ଗୁଣନମାନ ଉପରୋକ୍ତ ସୂତ୍ର ପ୍ରୟୋଗରେ ମୌଖିକରେ ଉତ୍ତରମାନ ଲେଖା ଯାଇଛି । ମନେ ମନେ ସୂତ୍ର ପ୍ରୟୋଗ କରି ଗୁଣଫଳ ଲକ୍ଷ୍ୟକଲେ ଅକ୍ଳେଶରେ ବୁଝି ପାରିବେ ।

୭୭୭ X ୯୯୯ / ୭୭୬ । ୨୨୩ ; ୯୮୭୮ X ୯୯୯୯ / ୯୮୭୭ । ୦୧୨୨ ; ୧୨୦୩୫୭୮ X ୯୯୯୯୯୯୯ / ୧୨୦୩୫୭୭ । ୮୭୯୬୪୨୨

ଏହିପରି ଯେତେବଡ଼ ସଂଖ୍ୟା ଦିଆ ଯାଉନା କାହିଁକି ଯଦି ଗୁଣ୍ୟ ସଂଖ୍ୟାର ଅଙ୍କ ସଂଖ୍ୟା ଗୁଣକର ୯ ସଂଖ୍ୟା ସହ ସମାନ, ତେବେ ପ୍ରକୃତ ଗୁଣନ କିମ୍ବା ନକରି ଉପରୋକ୍ତ ସୂତ୍ର ପ୍ରୟୋଗରେ ମୌଖିକ ମତେ ଉତ୍ତର ଅଣାଯାଇ ପାରିବ ।

୨ସ୍ଥଳେ ଯଦି ଗୁଣକର ଅଙ୍କ ସଂଖ୍ୟା ୯...ମାନ ଗୁଣ୍ୟର ଅଙ୍କ ସଂଖ୍ୟାଠାରୁ ବେଶୀ ହୁଏ, ତେବେ ଗୁଣ୍ୟର ବାମକୁ ଶୂନ୍ୟ (୦) ମାନ ବସାଇ ଉଭୟର ଅଙ୍କ ସଂଖ୍ୟା ସମାନ କରି ଉପରୋକ୍ତ ପ୍ରକାରେ ସୂତ୍ରର ପ୍ରୟୋଗ କରିବାକୁ ହେବ ।

ନିମ୍ନ ଉଦାହରଣମାନ ଲକ୍ଷ୍ୟକର—

୭ X ୯୯ = ୦୭ X ୯୯ = (୦୭-୧) / (୯-୦) (୧୦-୭) = ୬୯୩ । ୭୯ X ୯୯୯ = ୦୭୯ X ୯୯୯ = (୦୭୯-୧)/(୯-୦) (୯-୭) (୧୦-୯) = ୭୮୯୨୧ ।

ଉପରୋକ୍ତ ଧାରାକୁ ନିମ୍ନ ପ୍ରକାରେ ଲେଖାଯାଇ ପାରେ । ଯଥା—

୭୮୯ X
୯ ୯ ୯ ୯ ୯
୦ ୦ ୭ ୮ ୮ / ୯ ୯ ୨ ୧ ୧ = ୭୮୮୯୯୨୧୧ ।

ସେହିପରି—

$$\frac{୨୯}{୯୯୯୯୯୯୯} \qquad ୦୦୦୦୦୨୮/୯୯୯୯୯୭୧ = ୨୮୯୯୯୯୯୭୧ ।$$

ଦେଖନ୍ତୁ କେଡ଼େ ସହଜରେ "ଏକ ନ୍ୟୁନେନ ପୂର୍ବେଣ ସହ ନିଖିଳଂ ନବତଃ ଚରମଂ ଦଶତଃ" ସୂତ୍ରର ପ୍ରୟୋଗରେ ଏପରି ଗୁଣନ କ୍ରିୟାମାନ ମୌଖିକରେ କରାଯାଇ ପାରୁଛି । ତୟରେ ଯଦି ଗୁଣ୍ୟର ଅଙ୍କ ସଂଖ୍ୟା ଗୁଣକର ୯ ବା ୯୯···ରୁ ହୁଏ ମୌଖିକରେ ଗୁଣନ ଫଳ କିପରି ଆଣିବାକୁ ନିମ୍ନରେ ବୁଝାଇ ଦିଆଗଲା । ନିମ୍ନ ଲିଖିତ ଗୁଣନ କ୍ରିୟାକୁ ଲକ୍ଷ୍ୟକର ।

| ସ୍ତମ୍ଭ ୧ | ସ୍ତମ୍ଭ ୨ | ସ୍ତମ୍ଭ ୩ |
|---|---|---|
| ୧୧ × ୯ = ୯\|୯ | ୨୧ × ୯ = ୧୮\|୯ | ୩୭ × ୯ = ୩୩\|୩ |
| ୧୨ × ୯ = ୧୦\|୮ | ୨୨ × ୯ = ୧୯\|୮ | ୪୬ × ୯ = ୪୧\|୪ |
| ୧୩ × ୯ = ୧୧\|୭ | ୨୩ × ୯ = ୨୦\|୭ | ୫୫ × ୯ = ୪୯\|୫ |
| ୧୪ × ୯ = ୧୨\|୬ | ୨୪ × ୯ = ୨୧\|୬ | ୬୪ × ୯ = ୫୭\|୬ |
| ୧୫ × ୯ = ୧୩\|୫ | ୨୫ × ୯ = ୨୨\|୫ | ୭୩ × ୯ = ୬୫\|୭ |
| ୧୬ × ୯ = ୧୪\|୪ | ୨୬ × ୯ = ୨୩\|୪ | ୮୨ × ୯ = ୭୩\|୮ |
| ୧୭ × ୯ = ୧୫\|୩ | ୨୭ × ୯ = ୨୪\|୩ | ୯୧ × ୯ = ୮୧\|୯ |
| ୧୮ × ୯ = ୧୬\|୨ | ୨୮ × ୯ = ୨୫\|୨ | ଇତ୍ୟାଦି ଇତ୍ୟାଦି । |
| ୧୯ × ୯ = ୧୭\|୧ | ୨୯ × ୯ = ୨୬\|୧ | |
| ୨୦ × ୯ = ୧୮\|୦ | ୩୦ × ୯ = ୨୭\|୦ | |

ମନଯୋଗ ପୂର୍ବକ ଲକ୍ଷ୍ୟକଲେ ଜାଣି ପାରିବେ ଯେ ପ୍ରଥମ ସ୍ତମ୍ଭରେ ଗୁଣ୍ୟର ପ୍ରଥମ ଅଙ୍କ ୧ରେ ଆରମ୍ଭ ହେଲେ ଗୁଣଫଳର ବାମ ସଂଖ୍ୟା ଗୁଣ୍ୟଠାରୁ ୨ କମ୍ ।

୨ୟ ସ୍ତମ୍ଭରେ ଗୁଣ୍ୟର ପ୍ରଥମ ଅଙ୍କ ୨ରେ ଆରମ୍ଭ ହେତୁ ଗୁଣ ଫଳର ବାମ ସଂଖ୍ୟା ଗୁଣ୍ୟଠାରୁ ୩ କମ୍ ।

୩ୟ ସ୍ତମ୍ଭରେ ଗୁଣ୍ୟର ପ୍ରଥମ ଅଙ୍କ ବିଭିନ୍ନ ଅଙ୍କରେ ଆରମ୍ଭ ହେତୁ ଗୁଣ ଫଳର ବାମ ସଂଖ୍ୟା ଗୁଣ୍ୟଠାରୁ [ଗୁଣ୍ୟ ସଂଖ୍ୟା ବିୟୁକ୍ତ (ଗୁଣ୍ୟର ପ୍ରଥମ ଅଙ୍କ + ୧) ] କମ୍ । ଅର୍ଥାତ୍ ଗୁଣ୍ୟର ପ୍ରଥମ ଅଙ୍କ ୩, ୪, ୫ ଆଦିରେ ଆରମ୍ଭ ହେଲେ ଗୁଣଫଳର ବାମ ଅଙ୍କ ଗୁଣ୍ୟଠାରୁ ଯଥାକ୍ରମେ ୪, ୫, ୬ ଆଦି କମ୍ ।

୫୫ × ୯ ଉଦାହରଣ ଧରନ୍ତୁ । ଗୁଣ୍ୟର ପ୍ରଥମ ବାମ ଅଙ୍କ ୫; ଏଣୁ ଗୁଣ୍ୟର ପ୍ରଥମ ଅଙ୍କ ୫ + ୧ = ୬ ହେଲା ବିୟୁକ୍ତ ସଂଖ୍ୟା । ଗୁଣଫଳର ବାମ ସଂଖ୍ୟା ୫୫ — ୬ = ୪୯ ଏବଂ ଗୁଣ ଫଳର ପରବର୍ତ୍ତୀ ଅଙ୍କ ନିମନ୍ତେ ଚରମଂ ଦଶତଃ ସୂତ୍ରର ପ୍ରୟୋଗରେ ପ୍ରତ୍ୟେକ ସ୍ତମ୍ଭରେ ଲେଖା ଯାଇଛି । ଅର୍ଥାତ୍ ଗୁଣ୍ୟର ଏକକ ଅଙ୍କକୁ ୧୦ରୁ ବିୟୋଗ କରି ଗୁଣ ଫଳର ଏକକ ଅଙ୍କ ଅଣାଯାଇଛି । ଏହି ପ୍ରକ୍ରିୟାକୁ ଆହୁରି ସୁଗମ କରି ବୁଝାଇ ଦିଆଯାଇପାରେ । ଗୁଣ୍ୟର ଅଙ୍କ ସଂଖ୍ୟା ଗୁଣକର ଅଙ୍କ ସଂଖ୍ୟା ଠାରୁ ଅଧିକ ହେଲେ ଗୁଣକରେ ଯେତୋଟି ୯ ଥିବ ଗୁଣ୍ୟର ଡାହାଣରୁ ବାମକୁ ସେତୋଟି ଅଙ୍କ ରେଖାଦ୍ୱାରା ପୃଥକ କରିଦିଅ । ଯଥା—

୧୧୭୩୫ × ୯୯୯ କୁ ୨୧ । ୭୩୫ × ୯୯୯ ଏପରି ଲେଖ । ପରେ ପ୍ରଥମ ସଂଖ୍ୟା ୧୧ରେ ୧ ମିଶାଅ । ଫଳ ହେଲା ୧୧ + ୧ = ୧୨ । ମୂଳ ସଂଖ୍ୟା ୧୧୭୩୪ରୁ ୧୨ ବିୟୋଗ କର । ବିୟୋଗ ଫଳ = ୧୧୭୨୩ ଗୁଣଫଳର ବାମ ସଂଖ୍ୟାର ଅଙ୍କମାନ ୧୧୭୨୩ ହେଲା । ଡାହାଣ ସଂଖ୍ୟା ନିମନ୍ତେ ପୃଥକ ହୋଇଥିବା ଡାହାଣ ସଂଖ୍ୟାଗୁଡ଼ିକୁ ନିଖିଳଂ ନବତଃ ଚରମଂ ଦଶତଃ ପ୍ରୟୋଗ କର । ଅର୍ଥାତ୍ ୧୧୭୩୫ × ୯୯୯ = (୧୧୭୩୫ — ୧୨) (୯ — ୭) (୯ — ୩) (୧୦ — ୫) = ୧୧୭୨୩୨୬୫ । (ଉତ୍ତର)

ଉପର ସ୍ତମ୍ଭ ଲିଖିତ ଗୁଣନ କ୍ରିୟାରେ ଗୁଣକ ଗୋଟିଏ ୯ ବିଶିଷ୍ଟ ଅଙ୍କ ହେତୁ ଗୁଣଫଳର ଏକକ ଅଙ୍କ ନିମନ୍ତେ କେବଳ ଚରମଂ ଦଶତଃ ପ୍ରୟୋଗ କରାଯାଇଛି ।

ଏହି ପ୍ରଣାଳୀର ଆଉ ଗୋଟିଏ ଉଦାହରଣ ଦେଇ ଏଥର ପାଇଁ ଲେଖାଟି ଶେଷ କରାଗଲା ।

୧୨୩୪୫୬ × ୯୯୯୯ = ୧୨ / ୩୪୫୬ × ୯୯୯୯ = [୧୨୩୪୫୬ — (୧୨ + ୧)] (୯ — ୩) ୯ — ୪) (୯ — ୫) (୧୦ — ୬) = ୧୨୩୪୪୩୬୫୪୪ (ଉତ୍ତର) [କ୍ରମଶଃ]

# ॥ ଟଲଷ୍ଟୟ୍ ଓ ଗାନ୍ଧୀ ॥

ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

ଟଲଷ୍ଟୟ୍ ଓ ଗାନ୍ଧୀଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ହୋଇଥିଲା ଏବଂ ସେମାନଙ୍କର ସମ୍ପର୍କ କେବଳ ଆଧ୍ୟାତ୍ମିକ ସଂପର୍କ ବୋଲି କୁହାଯାଇପାରେ । ସେମାନଙ୍କର ପରସ୍ପର ମଧ୍ୟରେ ଦିଆ ନିଆ ହୋଇଥିବା ଚିଠି ପତ୍ରରୁ ବିଭିନ୍ନ ଆଦର୍ଶ ଓ ଚିନ୍ତାର ଆଭାସ ମିଳେ । ଉଭୟେ ଚିନ୍ତାଶୀଳ ବ୍ୟକ୍ତି । ରାଷ୍ଟ୍ର ଓ ସମାଜର କଲ୍ୟାଣ ପାଇଁ ଉଭୟଙ୍କର ଆନ୍ତରିକତା ଥିଲା । ୧୯୧୯ ମସିହା ଅକ୍ଟୋବର ମାସରେ ଗାନ୍ଧୀ ଟଲଷ୍ଟୟଙ୍କୁ ତାଙ୍କର ପ୍ରଥମ ଚିଠି ଲେଖିଥିଲେ । ଟଲଷ୍ଟୟ୍ ସେତେବେଳେ ମସ୍କୋଠାରୁ ୧୬୦ ମାଇଲଠାରେ ଥିବା ତାଙ୍କ ଗ୍ରାମ "ୟାସନାୟାପୋଲିଆନା" ( Yasnaya Polyana )ରେ ବାସ କରୁଥିଲେ । ସେତେବେଳେ ଟଲଷ୍ଟୟଙ୍କର ପରିଣତ ବୟସ । ୮୧ ବର୍ଷ ଦାର୍ଶନିକ ଏବଂ ଲେଖକ ହିସାବରେ ସାରା ପୃଥିବୀରେ ଟଲଷ୍ଟୟ୍ ପରିଚିତ ହୋଇ ସାରିଥିଲେ । ଗାନ୍ଧୀ ମଧ୍ୟ ଦକ୍ଷିଣ ଆଫ୍ରିକାର ରାଜନୈତିକ ବ୍ୟାପାରରେ ସେତେବେଳେ ବ୍ୟସ୍ତଥିଲେ । ସେ ସେଠାରେ ଭାରତୀୟ ଏବଂ ଗରିବ ଆଫ୍ରିକାବାସୀଙ୍କ ତରଫରୁ ଲଢ଼ୁଥିଲେ । ଗାନ୍ଧୀଙ୍କର ଚିଠି ପାଇ ଟଲଷ୍ଟୟ୍ ସଙ୍ଗେ ସଙ୍ଗେ ସେହି ମାସରେ ଉତ୍ତର ଦେଇଥିଲେ । ଦୂରତା ସେମାନଙ୍କଠାରୁ ଦୂରେଇ ରଖିଥିଲା ସତ; କିନ୍ତୁ ଦୁହିଁଙ୍କ ମଧ୍ୟରେ ଆଦର୍ଶଗତ ବୁଝାମଣାର ଅଭାବ ନଥିଲା । ଗାନ୍ଧୀ ଟଲଷ୍ଟୟଙ୍କର ଆଦର୍ଶରେ ଅନେକ ଦିନରୁ ପ୍ରଭାବିତ ହୋଇ ସାରିଥିଲେ । ଏହା ଜଣାଶୁଣା କଥା ଯେ ଗାନ୍ଧୀ ସେତେବେଳକୁ ଭାରତର ଦର୍ଶନ ଶାସ୍ତ୍ର ଅଧ୍ୟୟନ କରି ସାରିଥିଲେ । କେବଳ ସେତିକି ନୁହେଁ, ପାଶ୍ଚାତ୍ୟ ଦର୍ଶନ ପ୍ରତି ସେ ମଧ୍ୟ ଆକୃଷ୍ଟ ହୋଇଥିଲେ । ଗାନ୍ଧୀ ଟଲଷ୍ଟୟଙ୍କ ଲିଖିତ "Thee Kingdom of God is within you" ରଚନା ପାଠକରି ଆହୁରି ଅଭିଭୂତ ହୋଇ ଯାଇଥିଲେ । ନାହିଁ ପର୍ବତ ନଦନଦୀ ସେପାରେ ଭାରତଠାରୁ ବହୁ ଦୂରରେ ଜଣେ ସାଧକ ଏପରି ଚିନ୍ତା କରୁଥିଲା । ଗାନ୍ଧୀ ଏହା ଜାଣିପାରି ଖୁବ୍ ଅହ୍ଲାଦିତ ହୋଇ ପାରିଥିଲେ । ଚିନ୍ତା ରାଜ୍ୟରେ ସତେ ସେ ଯେପରି କୋଟାଏ ନୂତନ ରାହା ପାଇଥିଲେ । ଟଲଷ୍ଟୟ୍ ରୁଷିଆର ଲୋକ; କିନ୍ତୁ ଗାନ୍ଧୀ ଅନୁଭବ କଲେ ସେ ଯେପରି ତାଙ୍କ ହୃଦୟର ଅତି ନିକଟତମ ବ୍ୟକ୍ତି । ଟଲଷ୍ଟୟଙ୍କର ଜୀବନ ବିଶ୍ଳେଷଣ ସୁଖ ଦୁଃଖର ଧାରଣା, ତାଙ୍କର ନିଷ୍ଠା ଓ ବିଶ୍ୱାସ ତଥା ସରଳତା ଓ ଜୀବନ ଯାପନ ପ୍ରଣାଳୀ ଗାନ୍ଧୀଙ୍କୁ ଖୁବ୍ ଭଲ ଲାଗିଥିଲା । ଧର୍ମ ଓ ଜୀବନର ବିଭିନ୍ନ ସମସ୍ୟା ଉଭୟ ଟଲଷ୍ଟୟ୍ ଓ ଗାନ୍ଧୀଙ୍କୁ ଏକ ଆଦର୍ଶ ଆତ୍ମମୁଖୀ ହେବାପାଇଁ ପ୍ରବର୍ତ୍ତାଇ ଥିଲା । ଧର୍ମ ସମ୍ପର୍କରେ ସେମାନଙ୍କର ଧାରଣା ଯଥାର୍ଥିତ ସେମିତି କିଛି ଜଟିଳ ନ ଥିଲା । ମଣିଷ ତାର ସରଳତା, ତାର ଶୁଦ୍ଧତା, ତାର ଆଧ୍ୟାତ୍ମିକ ଶାନ୍ତି, ତାର ପ୍ରେମ ଏବଂ ତ୍ୟାଗ କରିବା ପାଇଁ ସର୍ବଦା ପ୍ରସ୍ତୁତ, ଏହାହିଁ ଟଲଷ୍ଟୟ୍ ଓ ଗାନ୍ଧୀ ଧର୍ମ ବୋଲି ବିଚାର କରୁଥିଲେ । ଟଲଷ୍ଟୟ୍ ଖ୍ରୀଷ୍ଟିୟାନ ଥିଲେ । ଗାନ୍ଧୀ ହିନ୍ଦୁ ଥିଲେ । ସେମାନେ କିନ୍ତୁ କେତେକ ସାର୍ବଜନୀନ ନୀତିରେ ବିଶ୍ୱାସ କରୁଥିଲେ । ଉଭୟଙ୍କର ଅନେକ ଅନୁଚର ଥିଲେ । ଯେଉଁମାନେ ଧର୍ମର ଏହି ମୂଳନୀତି ଆଦୌ ବିଶ୍ୱାସ କରୁ ନ ଥିଲେ; କିନ୍ତୁ ଅନେକ ଗାନ୍ଧୀ ଓ ଟଲଷ୍ଟୟଙ୍କ ପ୍ରତି ସମାନ ଭାବରେ ଆସକ୍ତ ଥିଲେ । ଗାନ୍ଧୀ ଭାରତୀୟ ଦର୍ଶନ-ଶାସ୍ତ୍ରରେ ଯାହା ପଢ଼ିଥିଲେ ଟଲଷ୍ଟୟଙ୍କ ଆଦର୍ଶରେ ତାହା ପ୍ରମାଣ ପାଇଥିଲେ । ଟଲଷ୍ଟୟଙ୍କର ଚିନ୍ତା ଓ ଆଦର୍ଶରେ ପ୍ରାଚ୍ୟ ଦର୍ଶନ ଯେପରି ନୂତନ ରୂପରେ ପ୍ରତିଭାତ ହେଲା । ଶତାବ୍ଦୀର ବ୍ୟବଧାନ ସ୍ଥାନର ଦୂରତାକୁ ଭେଦକରି ଚିନ୍ତା କିପରି ପ୍ରସାର ଲାଭ କରିପାରେ ଟଲଷ୍ଟୟ୍ ଓ ଗାନ୍ଧୀଙ୍କର ଜୀବନ ତାହାର ଉଦାହରଣ । ଏଇ ଦୁଇ ମହାପୁରୁଷଙ୍କର ପୃଥିବୀର ସଭ୍ୟତାକୁ ଦାନ କିଛି ସାମାନ୍ୟ ନୁହେଁ । ସେମାନେ ନିଜ ନିଜ ସ୍ତରରୁ ବ୍ୟକ୍ତି, ସମାଜ ଓ ରାଷ୍ଟ୍ରକୁ ଆଦର୍ଶ ଓ କାର୍ଯ୍ୟ ମାଧ୍ୟମରେ ପ୍ରଭାବିତ କରି ଯାଇଛନ୍ତି । ସେମାନଙ୍କର ଆଦର୍ଶ ଓ ଚିନ୍ତାରେ ବିଶେଷ ସାମ୍ୟ ଦେଖାଯାଏ । ସେହି ସାମ୍ୟର ମୂଳଭିତ୍ତି ହେଉଛି ମଣିଷକୁ ଭଲ ପାଇବା ଓ ମଣିଷକୁ ସ୍ନେହ କରିବା; ସତ୍ୟର ଜୟଗାନ କରିବା । ଟଲଷ୍ଟୟ୍ ଜମିଦାର, ସାମନ୍ତ, ଧନୀମାନଙ୍କ ଦ୍ୱାରା ଦରିଦ୍ର, ଅସହାୟ ତଥା କୃଷକ ଶ୍ରେଣୀର ଲୋକମାନଙ୍କର

ଶୋଷଣକୁ ବିରୋଧ କରିଥିଲେ । ଗାନ୍ଧୀ ମଧ୍ୟ ତାଙ୍କ ଜୀବନରେ ଅତ୍ୟାଚାରୀ ଗୋଷ୍ଠୀଙ୍କ ବିରୋଧରେ ସଂଗ୍ରାମ କରିଥିଲେ । ଉଭୟେ ଅତ୍ୟାଚାରୀ ବିଦେଶୀ ଶାସନର ବିରୋଧୀ ଥିଲେ । ଜାତି ଓ ଧର୍ମଗତ ବିଦ୍ୱେଷ ଉଭୟେ ପସନ୍ଦ କରୁ ନ ଥିଲେ । ସାମ୍ରାଜ୍ୟବାଦ ଓ ଉପନିବେଶବାଦ ବିରୁଦ୍ଧରେ ଉଭୟେ ବିଦ୍ରୋହ କରୁଥିଲେ । ସେମାନଙ୍କର ଆଦର୍ଶ ଓ ଚିନ୍ତା ବହୁ-ପରିମାଣରେ ସମାନ ବୋଲି କୁହାଯାଇପାରେ । ଟଲଷ୍ଟୟଙ୍କର ଜୀବନର ଗତିପଥ ଭିନ୍ନ । ତାଙ୍କର ରଚନାବଳୀ ମଣିଷଗୋଷ୍ଠୀର ଐତିହାସିକ ସ୍ଥିତିର ପରିଚୟ ଦେଇଥାଏ । ନିଜ ଜୀବନର ଚତୁଃପାର୍ଶ୍ୱରେ ଯେଉଁ ପ୍ରତାରଣା, ଛଳନାର ଅଭିନୟ ଲାଗି-ରହିଥିଲା, ଟଲଷ୍ଟୟ ସେଥିରେ ଜୀବନର ଯଥାର୍ଥତା ଖୋଜି ପାଇ ନ ଥିଲେ । ତାଙ୍କ ମତରେ ଜୀବନର ଯଥାର୍ଥତା ବିଳାସ ବ୍ୟସନ ନ ଥିଲା କି ଆମୋଦ ପ୍ରମୋଦ ନ ଥିଲା ଓ ବହୁ ପୁସ୍ତକ ଅଧ୍ୟୟନ ନ ଥିଲା । ସେ ଜନ ସମୁଦ୍ରର ପ୍ରତ୍ୟେକ କ୍ଷୁଦ୍ର ବିନ୍ଦୁ ସହିତ ନିଜକୁ ମିଳାଇ ଦେବାରେ ଅପୂର୍ବ ତୃପ୍ତି ଅନୁଭବ କରୁଥିଲେ । ଏହି ସମୁଦ୍ର ଯଥାର୍ଥରେ ଶ୍ରମିକ ଓ କୃଷୀର ସମୁଦ୍ର । ଟଲଷ୍ଟୟଙ୍କର ଏହି ଦୃଷ୍ଟିକୋଣ କୃଷି ଅଭିମୁଖୀ ଜୀବନଯାପନଦ୍ୱାରା ଅନୁପ୍ରାଣିତ ହୋଇଥିଲା । ଉଭୟ ଗାନ୍ଧୀ ଓ ଟଲଷ୍ଟୟଙ୍କର ସମାନ ମତଥିଲା ଯେ ଯାହାକିଛି ଅସମର୍ଥ, ଉଚ୍ଛିଷ୍ଟ ଓ ଅନ୍ୟାୟ ତା'ଠାରୁ ଦୂରରେ ରହିବା । ଏହି ପାପ ଓ ପୁଣ୍ୟର ଯେଉଁ ଚିରନ୍ତନ ସଙ୍ଘର୍ଷ ସେଥିରେ ଉଭୟେ ଜୀବନ ସହିତ ଗଭୀର ଭାବରେ ଜଡ଼ିତ ରହି ମଣିଷ ସମାଜ ପାଇଁ ସେବା କରୁଥିଲେ ।

Was it not Tolstoi's idea of good to turnaway from unclean, vice-stained civilisation and plunge in to the thick of the people, plunge into Nature, screne and undisturbed, to cling close to her eternal breast, where in utter, child like purity, the ways of life and climate of human history were to be moulded ? Always, in Tolstoi's works, the author's sympathies are with the mass of the people.

ଜୀବଜନ୍ତୁଙ୍କ ଜଗତରେ ବଞ୍ଚିବାର ଅଭିଳାଷ କେବଳ ଦୈହିକ ପରିପୂର୍ଣ୍ଣତା ପାଇଁ । ପଶୁ ପ୍ରକୃତିର ପ୍ରଭାବରେ ପ୍ରକୃତିକୁ ଅନୁଧ୍ୟାନ କରି ବଞ୍ଚିରହେ । ସେ ବଞ୍ଚିରହି ପ୍ରକୃତିର ନିୟମକୁ ପାଳନ କରିଥାଏ । ଟଲଷ୍ଟୟଙ୍କ ମତରେ ମଣିଷ ଓ ପଶୁ ମଧ୍ୟରେ ବଞ୍ଚିବାର ଉଦ୍ଦେଶ୍ୟରେ ଏହି ତାରତମ୍ୟକୁ ନେଇ ମଣିଷ ସଭ୍ୟତା ଗଢ଼ି ଉଠିଛି । ପଶୁ ପ୍ରକୃତିକୁ ବିସର୍ଜନ କରି ଏକ ମହତ ଆଦର୍ଶର ଅନୁପ୍ରାଣିତ ହୋଇ ବଞ୍ଚିବା ପ୍ରକୃତ ଜୀବନର ଲକ୍ଷଣ । ଏହାହିଁ ଜୀବନର ପ୍ରକୃତ ବିଧାନ । ପଶୁ ଜୀବନର ମହତ୍ତର ଉଦ୍ଦେଶ୍ୟ ପାଇଁ ବଞ୍ଚି ନ ଥାଏ । ମଣିଷ କିନ୍ତୁ ନିଜର ଜୀବନକୁ ମହତ୍ତର ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଦେଇଥାଏ । ଏହା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ, କୋଟିକରେ ଗୋଟିଏ ଲୋକ ଦେଖା ଯାଆନ୍ତି । ମହାତ୍ମାଗାନ୍ଧୀ ମଧ୍ୟ ଜୀବନର ଏହି ବିଧାନ ଉପରେ ବିଶ୍ୱାସ ରଖିଥିଲେ । ଟଲଷ୍ଟୟ ବାରମ୍ବାର କହୁଥିଲେ ଯେ ମହତ୍ତର ଉଦ୍ଦେଶ୍ୟ ଅନୁଧାବନ କରିବା ଯେକୌଣସି ବୁଦ୍ଧିମାନ ଶକ୍ତିଶାଳୀ ବ୍ୟକ୍ତିର ପ୍ରଥମ କାର୍ଯ୍ୟ ।

Renunciation of the chase after animal happiness is the true law of human life, and to try to live contrary to this is to violate the law of our being and to bring about disharmony and suffering. Man after he was once had a glinse of his own higher nature, when once he has passed beyond there congnition of "I am" and has felt "I love"; may no longer be absorbed in the animal life with happiness or profit to himself.

ଏହାର ମର୍ମ ହେଉଛି ମଣିଷ ପଶୁତୁଲ୍ୟ କେବଳ ଶାରୀରିକ ପ୍ରଲୋଭନ ନେଇ ବ୍ୟସ୍ତ ରହେନାହିଁ । ଏହାହିଁ ହେଉଛି ମଣିଷ ଜୀବନର ପ୍ରକୃତ ବିଧାନ । ଏହି ବିଧାନରେ ଯେ ବିରୁଦ୍ଧାଚରଣ କରେ ସେ ଜୀବନରେ ଅଶାନ୍ତି, ବୈଷମ୍ୟ ଓ ନିର୍ଯ୍ୟାତନାକୁ ଡାକି ଆଣେ । ମଣିଷ ଥରେ ନିଜର ଉଚ୍ଚତର ଓ ମହତ୍ତର ଶକ୍ତିର ଆଭାସ ପାଇଲେ ସେ ଆଉ ପଶୁଙ୍କ ତୁଲ୍ୟ ଭୌତିକ ପ୍ରୟୋଜନ ମେଣ୍ଟାଇବାରେ ବ୍ୟସ୍ତ ହେବନାହିଁ । ସେ ସେତେବେଳେ ମୁଁ ଅଛି, ମୁଁ ଅନୁଭବ କରୁଛି ଓ ମୁଁ ପ୍ରେମ କରୁଛି ଏହି ସ୍ତରକୁ ଅତିକ୍ରମ କରିଯାଏ । ଏହା ଯୁକ୍ତି କିମ୍ବା ପ୍ରଜ୍ଞାର କିମ୍ବା ବିବେକ କୁହାଯାଇପାରେ ।

# ଆତ୍ମହତ୍ୟା କର...!!!

ଜେନାକବି ମୁରାରିମୋହନ

॥ ଏକ ॥

ମୋ ଦେଶର ସାହିତ୍ୟିକ
କଳାକାର...
କବି ଓ ଲେଖକ
ତମେ ସବୁ ଆତ୍ମହତ୍ୟା କର
କାହିଁକନା ତମର ଲେଖନୀ
କରିବାକୁ ଅସମର୍ଥ ଆଜି
ଏ ସାହିତ୍ୟ···ଏ ସଂସ୍କୃତି
ଏ ଜାତୀୟ ଚେତନାକୁ ସୁସ୍ଥ ଶୁଭଙ୍କର···

॥ ଦୁଇ ॥

ଏ ଜାତୀୟ ଜାତକରେ
ଲିହିବାକୁ ଭବିଷ୍ୟତ ବାଣୀ
ତମର ଲେଖନୀ ଲିଖନ ଆଜି
ମୁଣ୍ଡା ଓ ଦହୁଡ଼ା...
ସେଥିପାଇଁ ଚେଉଁ ନାହିଁ
ଏ ଜାତର ସ୍ରୁତରେ ସ୍ରୁତରେ...
ଯେତେ ସବୁ ମୁମୂର୍ଷୁ ମଡ଼ା···

॥ ତିନି ॥

ତେଣୁ ବନ୍ଧୁ କହେ ବାର ବାର
ଯେ ଲେଖକ, ଯେଉଁ କବି
ଯେଉଁ ସାହିତ୍ୟିକ ଫେଲ୍ ମାରେ
ଏହି ସବୁ କାର୍ଯ୍ୟ କରଣୀରେ
ମୁଁ ପଚାରେ...
ମୋତେଇ ମିଶାଇ
ତା'ର କିବା ଅଧିକାର...??
ଏ ସମାଜେ, ଏ ମଣିଷ ମେଳନରେ
ବଞ୍ଚି ରହିବାର···???

॥ ବନଫୁଲ୍ ॥

ଗୃ ଶ ।

ବଞ୍ଚିବାଠୁଁ ଆତ୍ମହତ୍ୟା
ବରଂ ଶ୍ରେୟସ୍କର...
ଆତ୍ମଶ୍ଳାଘା କେତେଦିନ କର ବନ୍ଧୁ...?
ଦେବ ପୁରସ୍କାର...
ନୁହେଁ କମ୍ବା ଇଏ ଏକ
ଚିରନ୍ତନ ଜାତୀୟତାବୋଧ ପ୍ରତି
ତୀବ୍ର ତିରସ୍କାର...??

॥ ପାଞ୍ଚ ॥

ତେଣୁ ବନ୍ଧୁ କହୁଛି ମୁଁ ବଜ୍ରସୁରେ
ଶୁଣ ଶୁଣ ମୋ ଦେଶର କଳାକାର କୁଳ
ଅସ୍ମାଭିଡ଼ି ଅନ୍ଧଦମ୍ଭେ
ହୁଅ ଆଜି ଠୁଳ
ଏ ଦେଶକୁ, ଏ ଜାତିକୁ
ଦିଅ ଆଜି ନୂତନ ଚେତନା...
ଏ ସୁପ୍ତ ମୁମୂର୍ଷୁ ଜାତି ପାଇ ଉନ୍ମାଦନା...
ଗଙ୍ଗାଠାରୁ ଗୋଦାବରୀ...
ତା' ଜାତିର ମହିମାଗାଥା କରୁ ସେ ସ୍ମରଣ
ଚେଷ୍ଟା ସେ ନ କରୁ ଆଜି ବଡ଼ ହେବାପାଇଁ
ବିକି ତାର ମାନ ଓ ମହତ
ଶସ୍ତା ଆଉ ସୁବିଧାରେ
ବାରବୁଲା କୁକୁର ପରି ଚାଟି କା' ଉଚ୍ଛିଷ୍ଟ
କରି କା'ର ବାର ବାର ପଦର ଲେହନ...
ଏ ଜାତୀୟ ସମସ୍ୟାକୁ ନ ପାରିଲେ
ସମାଧାନ କରି...
ବରଂ ତୁମେ ଆତ୍ମହତ୍ୟା କର
ବର୍ତ୍ତମାନ ବେଳଅଛୁ ଶପଥଟା ନିଅ
ଏ ଜାତିର ଜାତୀୟତା ପାଇଁ
କର ଅବା ମର...

---

ରମ୍ୟରଚନା

# || ଲମ୍ବା ବକ୍ତୃତା ||

**ଶ୍ରୀ ସୋମନାଥ ଖୁଣ୍ଟିଆ, ପୁରୀ**

ସଭାଟିଏ ହେବାର ଥିଲା । ବେଳ ଗଡ଼ିଗଲା ପଛକେ କେହି ଆସିଲେ ନାହିଁ । କେବଳ ଉଦ୍ୟୋକ୍ତା ଲଙ୍ଗର ପଙ୍ଗର ହେଉ ଥାଆନ୍ତି ।

ସିନେମା ଗୀତ ବାଜିଲା । ଲୋକମାନେ ଆସନ୍ତେ ବୋଲି ବହୁଥର ଚେଷ୍ଟା ହେଲା କିନ୍ତୁ କାହାର ଦେଖା ନାହିଁ । ଘର ଖାଁ ଖାଁ ହୋଉଥାଏ ।

କିଛି ଲୋକ ଜମିଗଲେ ସେ'ଜଣ ସଭାପତି, ମୁଖ୍ୟ ବକ୍ତାଙ୍କୁ ଡାକିଯିବେ—ଏହି ଅପେକ୍ଷାରେ ବେଳ ଗଡ଼ିଗଲା ।

ଉଦ୍ୟୋକ୍ତାମାନେ ଲାଗ ଚମ ଚମ ହୋଇ ବାପା-ଅଜା ଉଦ୍ଧାର କରୁ ଥାଆନ୍ତି କିନ୍ତୁ କ'ଣ କରାଯିବ ।

ଏହି ସମୟକୁ ପାଗଟା ହଠାତ ବଦଳିଗଲା । ପବନ, ଧୂଳିଝଡ଼ ହେବାରେ ଉଦ୍ୟୋକ୍ତାମାନେ ଆନନ୍ଦରେ ହାଲ୍ଲା କରିବାରେ ଲାଗିଲେ । ପ୍ରଚାର ହେଲା ଯେ ହଠାତ୍ ପାଗ ବଦଳି ଯିବାରେ ସଭା ବନ୍ଦ ହେଲା । ଯାହାହେଉ ଭଗବାନ ଅଛନ୍ତି ବୋଲି ସିନା ଏ ବିପଦରୁ ରକ୍ଷା ମିଳିଲା !

କିନ୍ତୁ ସଭାପତି ଓ ମୁଖ୍ୟବକ୍ତା ଠିକ୍ ସେହି ସମୟକୁ ଆସି ଭୂତଙ୍କପରି ଆଶଙ୍କା ଓ ଆତଙ୍କ ସୃଷ୍ଟି କଲେ ।

ଉଦ୍ୟୋକ୍ତାମାନେ ଫାଙ୍ଗଳ ହେଲେ । ତାଙ୍କ ଗୋଡ଼ତଳରୁ ବାଲିଗଲା ଉଠିଗଲା । ଏ ମୁଖ୍ୟବକ୍ତା, ସଭାପତିଙ୍କ ପରି ଦେଉତି କୁ'ଠି ଥିଲେ କେଜାଣି !

ସଭାପତି କହିଲେ 'ଏ ଚଇତିମାସ ଝଡ଼, ଅଧ-ଘଣ୍ଟାଏ ପରେ ଶୁଖିଲା ଠୋ ଠୋ ହୋଇଯିବ—

ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ ଜଣେ ଉଠିପଡ଼ି କହିଲେ ଭାଗ୍ୟ ଖରାପ ଆଜ୍ଞା, ଅଧଘଣ୍ଟାକ ଆଗରୁ ଲୋକ ଦୁଇଶ ଏଠି ଜମିଥିଲେ, ଗୋଟେହେଲେ ଖିଆ ପାଗଟା ଖରାପ ହେବାରେ ସିଏ ଯୁ'ଆଡ଼େ ଚମ୍ପା-ମାରିଲେ । ମୁଁ କହୁଛି ଆରେ ସଭାଶେଷକୁ କିଛି ଗୋଟେ ବନ୍ଦନା, ନାଚ, ଗୀତ ରଖ—ହ୍ୟାପ ଅରକ୍ଷିତ ମୋ କଥା କ'ଣ ଶୁଣିଲେ ।

ଆଉ ଜଣେ ଉଦ୍ୟୋକ୍ତା ରାଗରେ ଟକମକ ଫୁଟି କହିଲେ 'ହଇରେ ମାଙ୍କଡ଼ା,, ନାଚଗୀତ ସବୁ ଠିକ୍ ହେବା କଥା ତୁ ଜାଣିନୁ, ଖାଲି ମିଛରେ ଭଡ଼ର ଭଡ଼ର ହେଉଛୁ । ଯେଉଁ ଦୁଇଜଣ ଝିଅ ସେଥିରେ ଯୋଗ ଦେବାପାଇଁ ବାର ଖୋସାମତିରେ ରାଜି ହୋଇଥିଲେ, ସେମାନଙ୍କୁ ତୁ କ'ଣ କହିବାରେ ସେ ପରି ଆମ ନାକରେ ଲଙ୍କାମରିଚ ପାଣି ଚେଣ୍ଡେଇଲେ ।

ମୁଖ୍ୟବକ୍ତା ଯେତେ 'ଥାଉ ଥାଉ' କହିଲେ ଏବଂ ସଭାପତି ଯେତେ 'ପରେ ବୁଝିବା' ରଡ଼ି ଛାଡ଼ିଲେ କେହି କାହାକୁ ଛାଡ଼ୁ ନ ଥାନ୍ତି ।

ଗେଣ୍ଡାଗୁଡ଼ି ଯେପରି ଆବହମାନକାଳର ପରସ୍ପର ସହିତ ସମ୍ପର୍କ ରଖି ଆସିଛନ୍ତି, ସେପରି କଳିକଜିଆ କରୁଥିବା ଦୁଇବନ୍ଧୁ ପରସ୍ପର ମିଶିଥିଲେ, କିନ୍ତୁ ଅବସ୍ଥା କ୍ରମଶଃ ଘଡ଼ିବାଣ ଫୁଟିଲା ଭଳି ହେବାରେ ସଭାପତି ଓ ମୁଖ୍ୟବକ୍ତା ଅସ୍ୱାଭାବିକ ଏବଂ ଅଜାଣତରେ ଦୁଇ ତିନିଥର ହେଁ, ହେଃ, ଓହ, ଆରେ ଏପରି ବହୁଶବ୍ଦ ଉଚ୍ଚାରଣ କଲେ ।

ଷଣ୍ଢ ଲଢ଼େଇ, ମେଣ୍ଢା ଲଢ଼େଇ, କୁସ୍ତି ହେଲେ ଏ ଦେଶରେ ବହୁ ଦର୍ଶକ ଜମନ୍ତି, କିନ୍ତୁ ଆଶ୍ଚର୍ଯ୍ୟ ସଭାର ଉଦ୍ୟୋକ୍ତାମାନେ ଶ୍ରୋତାମାନଙ୍କର ଗୋଡ଼-ତଳେ-ହାତତଳେ ପଡ଼ିବାକୁ ବାଧହୋଇ ସେମାନଙ୍କୁ ଡାକି ସଭାରେ ବସାନ୍ତି । ମୁଖ୍ୟବକ୍ତାଙ୍କଠାରୁ ଏ କଥା ବୁଝିବାରୁ ଚଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି କରୁଥିବା ଦୁଇଜଣ ବସିଲେ ।

ଅଧଘଣ୍ଟାଏ ଚାଲିଗଲା । କେହି ଦେଖା ନାହାନ୍ତି । ମୁଖ୍ୟବକ୍ତା ଓ ସଭାପତିଙ୍କୁ ମିଶାଇ ପାଞ୍ଚଜଣ ଲୋକ କଡ଼ି ଗଣୁଥାନ୍ତି । କିନ୍ତୁ ସଭାପତି ଚଟେଇ ପଟେଇ ହୋଇ କହିଲେ 'କ'ଣ ସଭା ହେବନାହିଁ କେତେ ସମୟ ବସିବାକୁ ହେବ ହେ ।'

ଉଦ୍ୟୋକ୍ତା କାନମୁଣ୍ଡାକୁ ଆଉଁସି କହିଲେ 'ହବ ହବ ନିଶ୍ଚୟ ହବ ଆଜ୍ଞା' ଟିକିଏ ର' ପାଣି ହେଉ ।

ଉଦ୍ୟୋକ୍ତା ବାହାରକୁ ଆସି ଗିଲାସେ ସରବତ ନେଇ ତାକୁ ଦୁଭାଗ କରି ସଭାପତି ଓ ମୁଖ୍ୟବକ୍ତାଙ୍କୁ ଦେଲେ । ମୁହଁ ଟାକୁ ବିକୃତ କରି 'କେତେ ଗରମହେ' କହି ଗାଈ ଚୋରଣୀ ପିଇବା ପରି ସେମାନେ ସରବତ ଢୋକିବାକୁ ଲାଗିଲେ ।

ବାକୁଲିଆ ପାନଖିଲି ଦି'ଖଣ୍ଡ ମଡ଼େଇ ସଭାପତି ଓ ମୁଖ୍ୟବକ୍ତା ଦୁହେଁ ଖାଲି ବାଉଳି ଗୁଡ଼ଳି ହେଲେ । ପାଞ୍ଚ ମିନିଟ ମଧ୍ୟରେ ଗହମ ନିଦ ଆସିଗଲା ।

ସମସ୍ତ ଫୁରୁସତ ପାଇ ଲୋକବାକ ଉକାହକା ହୋଇ ଆସିଲେ । ସାହିର ସମ୍ମାନ ନାମରେ ଲୋକନାଥ-ଜଗନ୍ନାଥ ଗୁଣ ପକାଇ ସାଙ୍ଗ ସୁଖ, ପ୍ରିୟାପ୍ରୀତି ସବୁ ଆସି ଜମିଗଲେ ।

ଲୋକ ପଚିଶ ଜମିଗଲେ । ମାଇକ୍ ସଜଡ଼ା ହେଲା । ସବୁ କାମ ଫତେ କରିସାରି ଉଦ୍ୟୋକ୍ତାମାନେ ବାବୁ ଦୁଇଜଣଙ୍କୁ ଘଣ୍ଟ-ମାଦଳ କରି ନିଦରୁ ଉଠାଇଲେ । ମୁଖ୍ୟବକ୍ତା ଆଖି ମଳି ମଳି କହିଲେ 'ଆଚ୍ଛା ନିଦଟାଏ ଭାଙ୍ଗିଦେଲ ।' ସଭାପତି ହାଇ ଉପରେ ହାଇ ମାରି କହିଲେ 'କଣ କର୍ତ୍ତ' । ଆଜ୍ଞା ! ସଭାକାର୍ଯ୍ୟ ଆରମ୍ଭ ଶୁଣିବାରେ ମାଇକ ପାଖକୁ ମୁଖ୍ୟବକ୍ତା ଦଉଡ଼ି ଯାଉ ଯାଉ ପାଞ୍ଚଥର ଝୁଣ୍ଟି ପଡ଼ିଲେ ।

ହଠାତ୍ ସଭାକାର୍ଯ୍ୟ ଆରମ୍ଭରୁ ସେ କହିଲେ 'ବଡ଼ ଦେଉଳ ସମିୟା କ'ଣ । ମୁଁ କାଲି କଟକ ଯିବି । ବର୍ଷାହେଲେ ଫସଲ ଭଲ । ଆପଣମାନେ ସମୁଦ୍ର ଦେଖିଛନ୍ତି । ବହି ପଢ଼ିଲେ କ'ଣ ହେବ । ଆମ ଘରେ କୁନା ବଡ଼ ବଦମାସୀ । ମୁଁ କ'ଣ କରିବି କବି ରାଧାନାଥ ନିଶ ରଖିଥିଲେ । ରବୀନ୍ଦ୍ରନାଥଙ୍କ ଦାଢ଼ୀକୁ ଭିଡ଼ିଦେଇ ଆଇନଷ୍ଟାଇନ ହାତକଡ଼ି ପଡ଼ିଥିଲେ । ନେହେରୁ ବର୍ତ୍ତମାନ ଝାଡ଼ା ବସିଥିବେ ।'

ଏହି ସମୟରେ ଜଣେ ଶ୍ରୋତା ଉଠି କହିଲେ 'ଆଜ୍ଞା' ! ବିଷୟବସ୍ତୁ କ'ଣ କି—କ'ଣ ଚିଲମ ଜୋର ବେଶୀ ହୋଇଛି କି !

ମୁଖ୍ୟବକ୍ତା ଆଖି ମଳି ମଳି ଖୁବ୍ ଜୋରରେ ଶ୍ରୋତାକୁ କହିଲେ ବସ ! ବିଷୟବସ୍ତୁ ହେଉଛି ରାଧାନାଥଙ୍କ ସ୍ୱାସ୍ଥ୍ୟ ଦୁର୍ବଳ କାହିଁକି ?

'ଆପଣ ବାଇଗଣ ମୋଟେ ଖାଆନ୍ତୁ ନାହିଁ । ସେ ଝିଅଟି ମତେ ଖାଲି ଅନାଉଛି । କାଲି ରାତିରେ ପିଲାଟି କଇଁ କଇଁ ହୋଇ ଯେତେ କାନ୍ଦିଲା ମା ତା'ର ଉଠିଲାକି ?

ସଭାରେ ପୁଣି ହାଟ ହେଲା । କୌଣସି ବିଷୟବସ୍ତୁ ନ ଥାଇ ଏ କ'ଣ କହୁଛନ୍ତି ସେ କି କଥା କେହି ବୁଝିପାରୁ ନ ଥାନ୍ତି ।

ସଭାପତିଙ୍କ ଆଡ଼କୁ ନଜର କଲାବେଳକୁ ସେ ପୁଣି ଗହମ ନିଦର ଶିକାର ହୋଇଛନ୍ତି ।

ଯେଉଁମାନେ ବକ୍ତୃତା ଶୁଣିବାକୁ ଆସିଥିଲେ ନାନାପ୍ରକାର ଗାଳିଗୁଲଜ କରି ସେମାନେ ସଭାକକ୍ଷ ଛାଡ଼ିଲେ । ସଭାପତି ଓ ମୁଖ୍ୟବକ୍ତାଙ୍କ ମୁଣ୍ଡରେ ପାଣିମାରି ତାଙ୍କୁ ଚେତା କରାଗଲା ।

କଥା ବୁଝି ବୁଝି ଜଣା ପଡ଼ିଲା, ସେମାନଙ୍କୁ ସରବତରେ ଭାଙ୍ଗ ଦିଆଯାଇଥିଲା । ଯେଉଁ ଉଦ୍ୟୋକ୍ତା ତାହା ଦେଇଥିଲା ସେ କହିଲା 'ସେତକ ନ ଦେଇ-ଥିଲେ କଡ଼ା ବକ୍ତୃତା ଶୁଣିଥାନ୍ତି !' ଯାହେଉ ନ ମରି ବଞ୍ଚିଗଲେ ।

ବକ୍ତା ଦୁଇଜଣଙ୍କର ଖୁବ୍ ନାଁ ଥିଲା । ଏହି ଘଟଣା ପରେ ସେମାନଙ୍କର ଖ୍ୟାତି ବେଲୁନ୍ ଭଳି ଚୋ ହୋଇଗଲା ।

—*—

# ॥ ଜନସଂଖ୍ୟା ସମସ୍ୟାର ଆକାର ପ୍ରକାର ॥

ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

ଜନତା ହିଁ ସାମାଜିକ ସଂଗଠନର ମୂଳଧାର । ଶିକ୍ଷା, ସଭ୍ୟତା ଓ ସଂସ୍କୃତି ଜନସାଧାରଣଙ୍କ ପାଇଁ ଅଭିପ୍ରେତ । ସେମାନେ ମଧ୍ୟ ଏହାର ବାହକ ଓ ପ୍ରବର୍ତ୍ତକ । ଅର୍ଥନୈତିକ କ୍ଷେତ୍ରରେ ଜନସଂଖ୍ୟା ଯେକୌଣସି ରାଷ୍ଟ୍ରର ସମୃଦ୍ଧିର ହେତୁ । ଏହି ଜନସଂଖ୍ୟା ମଧ୍ୟ ସମୃଦ୍ଧିକୁ ରୋକିଦେଇ ପାରେ । ତେଣୁ ଯେଉଁ ଦେଶ ବିଗୃତଶୀଳ ଭାବରେ କୌଣସି ସମସ୍ୟାର ବିଶ୍ଳେଷଣ ଓ ସମାଧାନ ଚାହେଁ, ସେଠାରେ ଚଳିତ ଜନସଂଖ୍ୟା ଓ ଭବିଷ୍ୟତରେ ସମ୍ଭାବ୍ୟ କ୍ଷୟବୃଦ୍ଧି ହାର ପ୍ରତି ସର୍ବାଦୌ ଦୃଷ୍ଟିଦେବା ବ୍ୟର୍ଥତା ମୂଳକ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଇଂଲଣ୍ଡରେ ଔଦ୍ୟୋଗିକ ବିପ୍ଳବ ଆରମ୍ଭ ହେଲା । ଇଂରେଜମାନେ ନିଜ ସାହସିକତା ବଳରେ ପୃଥିବୀର ନାନାଦେଶ ଅଧିକାର କରି ସେଠାରେ ବାସ କରୁଥିବା ଲୋକ-ମାନଙ୍କ ଗୃଜ୍‌ରଣ ମେଣ୍ଟାଇବା ଲାଗି ନାନା ପଦାର୍ଥ ଯୋଗାଇବା ଦରକାର ପଡ଼ିଲା । ଶିଳ୍ପ, ଖଣିଜଖୋଦନ ପରିବହନ ଇତ୍ୟାଦି ବିଷୟରେ ଅଭୂତପୂର୍ବ ଉନ୍ନତି ବିଧାନ କରିବା ଦରକାର ପଡ଼ିଲା । କିନ୍ତୁ ଏତେ ଦାୟିତ୍ୱ ତୁଲାଇବା ଲାଗି ସେତେବେଳେ ଇଂଲଣ୍ଡର ଜନସଂଖ୍ୟା ଯଥେଷ୍ଟ ନ ଥିଲା; ତେଣୁ ଇଂରେଜମାନେ ବାଧ୍ୟହୋଇ ବେଶୀ ମଣିଷଙ୍କ କାମ କମ ଲୋକଙ୍କ-ଦ୍ୱାରା ଚଳାଇ ନେଇ ଉତ୍ପାଦନ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ଯନ୍ତ୍ରପାତି ପ୍ରବର୍ତ୍ତନ କଲେ । ଉତ୍ପାଦନ ବଢ଼ିଲା, ତତ୍‌ସଙ୍ଗେ ଲୋକଙ୍କ ସମୃଦ୍ଧି ମଧ୍ୟ ବଢ଼ିଲା ।

ଫଳରେ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇବାକୁ ଲାଗିଲା । ଇଂଲଣ୍ଡ ଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ ନୁହେଁ । ବିଦେଶରୁ ଆମଦାନି କରି ଇଂରେଜମାନେ ବର୍ଷସାରା ଖାଦ୍ୟ ପାଆନ୍ତି । ଜନସଂଖ୍ୟା ବୃଦ୍ଧିହେତୁ ଇଂଲଣ୍ଡରେ ଖାଦ୍ୟ ଅଭାବ ପଡ଼ିଲା । ତେଣୁ ରେଭରେଣ୍ଡ ଟମାସ ମାଲଥସ ଗୋଟିଏ ମତ ବୟାନ କଲେ । ତାହା ଅର୍ଥନୀତିଜ୍ଞମାନଙ୍କ ମଧ୍ୟରେ ମାଲଥସଙ୍କ ଜନସଂଖ୍ୟା ସମ୍ବନ୍ଧୀୟ ତତ୍ତ୍ୱ ନାମରେ ସୁପରିଚିତ । ତାଙ୍କ ତତ୍ତ୍ୱ ଅନୁସାରେ ଜନସଂଖ୍ୟା ଜ୍ୟାମିତିକ ନିୟମାନୁସାରେ ବଢ଼ିଯାଏ, କିନ୍ତୁ ଜମିର ଉତ୍ପାଦିକା ଶକ୍ତି ସୀମିତ ଥିବାରୁ ଓ ଜମିର ଉତ୍ପାଦନ ବୃଦ୍ଧି ନାନା ଉପାଦାନ ଉପରେ ନିର୍ଭର କରୁଥିବାରୁ ଖାଦ୍ୟ ଉତ୍ପାଦନ ଗାଣିତିକ ନିୟମାନୁସାରେ ବୃଦ୍ଧି ପାଏ । ସେ ଉଦାହରଣ ଦେଇ ପ୍ରମାଣ କରିଛନ୍ତି ଯେ, ପଚିଶ ବର୍ଷରେ ଜନସଂଖ୍ୟା ଦୁଇଗୁଣ ହୋଇଯାଏ ଏବଂ ଖାଦ୍ୟ ଉତ୍ପାଦନ ମଧ୍ୟ ଦୁଇଗୁଣ ହୋଇପାରେ । ପରବର୍ତ୍ତୀ ପଚିଶ ବର୍ଷ ମଧ୍ୟରେ ଜନସଂଖ୍ୟା ଚାରିଗୁଣ ହୋଇଯିବ କିନ୍ତୁ ଖାଦ୍ୟ ଉତ୍ପାଦନ ମାତ୍ର ତିନିଗୁଣ ହେବ । ଏହିଠାରେ ଖାଦ୍ୟାଭାବ ଆରମ୍ଭ ହେଲା । ଶହେବର୍ଷ ମଧ୍ୟରେ ଜନସଂଖ୍ୟା ବଢ଼ି ହୁଏତ ଷୋହଳଗୁଣ ହୋଇପାରେ, କିନ୍ତୁ ଖାଦ୍ୟ ଉତ୍ପାଦନ ମାତ୍ର ପାଞ୍ଚଗୁଣ ହେବ । ଦୁର୍ଭିକ୍ଷ, ମହାମାରୀ ଭଳି ପ୍ରାକୃତିକ ବିପଦ ଓ ଯୁଦ୍ଧ ପରି କୃତ୍ରିମ ବିପଦ ଯୋଗୁ ଅସଂଖ୍ୟ ଲୋକ ମୃତ୍ୟୁ-ମୁଖରେ ପଡ଼ୁଥିବେ । ପୃଥିବୀରେ କେହି ଖାଇବାକୁ

ପାଆନ୍ତେ ନାହିଁ ବୋଲି ମାଲ୍‌ଥସ ପ୍ରମାଣ କରିଥିଲେ । ସମସ୍ୟାର ସମାଧାନ ଲାଗି ଲୋକେ ନୈତିକତା ବୃଦ୍ଧି କରି ଯୌନସମ୍ପର୍କରେ ସଂଯମ ଆଚରଣ ନ କଲେ କାଳକ୍ରମେ ଖାଦ୍ୟାଭାବ ସମସ୍ୟା ଉତ୍କଟ ହୋଇଯିବ ବୋଲି ତାଙ୍କର ମତଥିଲା । ଜଣେ ଧର୍ମ ପ୍ରଚାରକ ହିସାବରେ ସେ ମଣିଷର ନୈତିକତା ଓ ଆତ୍ମସଂଯମ ଉପରେ ଆସ୍ଥା ରଖିଥିଲେ । ଆଧୁନିକ ଯୁଗରେ ବୈଜ୍ଞାନିକ ପ୍ରଗତି ହେତୁ ମାଲଥସଙ୍କ ନବ୍ୟବାଦୀ ଅନୁଗାମୀମାନେ ଆତ୍ମସଂଯମ ପରିବର୍ତ୍ତେ ବୈଜ୍ଞାନିକ ପ୍ରଣାଳୀରେ ଜନସଂଖ୍ୟା ବୃଦ୍ଧି ନିରୋଧ କରିବାକୁ ସୁପାରିସ କରୁଛନ୍ତି । ଏ ଯୁଗର ଅର୍ଥନୀତିଜ୍ଞମାନଙ୍କ ମତରେ ଜନସଂଖ୍ୟା ବୃଦ୍ଧିର ପ୍ରତିକ୍ରିୟା କେବଳ ଖାଦ୍ୟସମସ୍ୟା ଉପରେ ପଡ଼େନାହିଁ । ଅର୍ଥନୈତିକ କ୍ଷେତ୍ରରେ ପ୍ରତ୍ୟେକ କ୍ରିୟାକଳାପ ଜନସଂଖ୍ୟାଦ୍ୱାରା ପ୍ରଭାବିତ ହୁଏ । ଜନସଂଖ୍ୟା ଅତିମାତ୍ରାରେ ବଢ଼ିଗଲେ ଏକ ପକ୍ଷରେ ଖାଦ୍ୟ ପଦାର୍ଥ ଅକୁଳାଣ ହୁଏ ସତ୍ୟ, ଏହାଛଡ଼ା ଧନ୍ଦା ଅଭାବରୁ ବହୁସଂଖ୍ୟକ ଲୋକ ବେକାର ହୁଅନ୍ତି ଏବଂ ଜୀବନ ଧାରଣମାନ ଉନ୍ନତ କରିବା ଲାଗି ଉଦ୍ୟମ କରି ବେଶୀ ଉତ୍ପାଦନ ହେଲେ ସୁଦ୍ଧା ଏହା ବେଶୀ ଲୋକଙ୍କ ଭିତରେ ବଣ୍ଟା ହୋଇଯିବାରୁ ପ୍ରତ୍ୟେକ ଲୋକ ଭାଗରେ କମ୍ ପଡ଼େ । ତେଣୁ ସାଧାରଣ ଭାବରେ ଦେଶର ଅର୍ଥନୈତିକ ଉନ୍ନତି ହେଲେ ମଧ୍ୟ ପ୍ରତ୍ୟେକ ଲୋକର ଜୀବନଧାରଣ ସ୍ତର ବଢ଼େ ନାହିଁ । ଏଥିଲାଗି ଆଧୁନିକ ଯୁଗରେ ପ୍ରତ୍ୟେକ ରାଷ୍ଟ୍ର ନିଜ ଅର୍ଥନୈତିକ ପରିସ୍ଥିତି ବିଚାର କରି ଜନସଂଖ୍ୟାକୁ ନିୟନ୍ତ୍ରଣ କରୁଛି ଏବଂ ଏଥିପାଇଁ ବୈଜ୍ଞାନିକ ପ୍ରଣାଳୀ ଅନୁସୃତ ହେଉଛି । ସମାଜବିଜ୍ଞମାନଙ୍କ ମତରେ ସ୍ୱାମୀ, ସ୍ତ୍ରୀ ଓ ସନ୍ତାନସନ୍ତତିଙ୍କୁ ନେଇ ପରିବାର ଗଠିତ । ପ୍ରତି ପରିବାରରେ କମ ସନ୍ତାନସନ୍ତତି ଥିଲେ କେବଳ ଯେ ଦେଶର ଜନସଂଖ୍ୟା କମହାରରେ ବଢ଼େ ସେତିକି ନୁହେଁ, ଗୃହସ୍ୱାମୀଙ୍କ ଆୟରେ ପରିବାରର ଅଳ୍ପସଂଖ୍ୟକ ଲୋକ ବେଶୀ ସୁଖରେ ଚଳିପାରନ୍ତି । ତେଣୁ ଜନସଂଖ୍ୟା ହ୍ରାସ କରିବା ଯୋଜନାକୁ ପରିବାର ନିୟନ୍ତ୍ରଣ ବା ପରିବାର କଲ୍ୟାଣ ଯୋଜନା ବୋଲି କୁହାଯାଏ ।

ଜନସଂଖ୍ୟାର ସୁମାରି ବା ଗଣନା ପ୍ରତି ଦଶବର୍ଷରେ ଥରେ ହୁଏ । ଏହାକୁ ସେନସସ୍ ବା ଜନଗଣନା କୁହାଯାଏ । ଗୋଟିଏ ଦେଶର ଲୋକସଂଖ୍ୟା ବଢ଼ୁଛି କି କମୁଛି, ତାହା ଏହି ଜନଗଣନା ହିସାବରୁ ଜଣାପଡ଼େ । ଭାରତବର୍ଷରେ ୧୮୭୨ଠାରୁ ଜନଗଣନା ଆରମ୍ଭ ହୋଇ ପ୍ରତି ଦଶବର୍ଷରେ ଥରେ ସେନସସ୍ ହେଉଛି । ଗତ ଜନଗଣନା ୧୯୭୧ ମସିହାରେ ହୋଇଯାଇଛି । ପୁଣି ପ୍ରତିଦିନ ଗ୍ରାମପଞ୍ଚାୟତଗୁଡ଼ିକ ଜନ୍ମମୃତ୍ୟୁ ହିସାବ ରଖନ୍ତି । ସେ ହିସାବରେ ପ୍ରତିବର୍ଷ ଜନସଂଖ୍ୟା କେଉଁ ପରିମାଣରେ ବଢ଼ୁଛି, ତାହା ଜଣାପଡ଼େ । ସେନସସ୍ ଓ ଜନ୍ମମୃତ୍ୟୁ ହିସାବ ପରସ୍ପର ଅନୁପୂରକ । ଗୋଟିଏ ଗଣନାର ଫଳାଫଳ ଅନ୍ୟ ଗଣନାଦ୍ୱାରା ସଂଶୋଧିତ ହୋଇଯାଏ । ୧୯୭୧ର ଜନଗଣନା ହିସାବ ଅନୁଯାୟୀ ସେ ବର୍ଷ ଭାରତର ଲୋକସଂଖ୍ୟା ଥିଲା ୪୩.୯ କୋଟି । ଜନ୍ମମୃତ୍ୟୁ ହିସାବ ଅନୁସାରେ ୧୯୭୭ରେ ଲୋକସଂଖ୍ୟା ହେଲା ୪୯.୮ କୋଟି । ପରିବାର ନିୟନ୍ତ୍ରଣ ମନ୍ତ୍ରଣାଳୟ ହିସାବରୁ ଜଣାପଡ଼େ ଯେ ଆଜି ଭାରତର ଲୋକସଂଖ୍ୟା ୫୧.୪ କୋଟି । ଅର୍ଥାତ୍ ମାତ୍ର ଛ'ବର୍ଷ ମଧ୍ୟରେ ଭାରତର ଜନସଂଖ୍ୟା ବୃଦ୍ଧିର ପରିମାଣ ହେଲା ୭.୫ କୋଟି ବା ବର୍ଷକୁ ୧.୨୫ କୋଟି । ବିଶେଷଜ୍ଞ ଗଣକମାନେ କହନ୍ତି ଯେ ୧୯୪୧ଠାରୁ ୧୯୫୧ ମଧ୍ୟରେ ଜନସଂଖ୍ୟା ବର୍ଷକୁ ଶତକଡ଼ା ୧.୨୬ ହାରରେ ବଢ଼ୁଥିଲା । ୧୯୫୧ରୁ ୧୯୬୧ ମଧ୍ୟରେ ଏହା ବର୍ଷକୁ ଶତକଡ଼ା ୧.୯୭ ହାରରେ ବଢ଼ିଲା । ୧୯୬୧ରୁ ୧୯୬୫ ମଧ୍ୟରେ ବାର୍ଷିକ ବୃଦ୍ଧି ହାର ଶତକଡ଼ା ୨.୨ ହୋଇଛି ଏବଂ ୧୯୬୬ରୁ ୧୯୭୦ ମଧ୍ୟରେ ଏହି ବୃଦ୍ଧିହାର ଶତକଡ଼ା ୨.୫ ହେବବୋଲି ଅଟକଳ ହୋଇଛି । ଏହିପରି କ୍ରମବର୍ଦ୍ଧମାନ ହାରରେ ଜନସଂଖ୍ୟା ବଢ଼ୁଥିଲେ ଏକବିଂଶ

ଶତାବ୍ଦୀ ଆରମ୍ଭ ବେଳକୁ ଭାରତର ଜନସଂଖ୍ୟା ପ୍ରାୟ ଶହେକୋଟି ହୋଇ ଯାଇଥିବ ବୋଲି ଆଶଙ୍କା ହେଉଛି । ଜନସଂଖ୍ୟା ବିଚାରରେ ଚୀନ ପୃଥିବୀରେ ପ୍ରଥମ ସ୍ଥାନ ଅଧିକାର କରିଛି । ତାହାର ଜନସଂଖ୍ୟା ହେଲା ୮୦ କୋଟି । ଭାରତର ଜନସଂଖ୍ୟା ୫୧ କୋଟି ହୋଇଥିବାରୁ ଆମେ ଦ୍ୱିତୀୟ ସ୍ଥାନରେ ରହିଛୁ ।

୧୯୨୧ ସମୀକ୍ଷା ପର୍ଯ୍ୟନ୍ତ ଭାରତର ଜନସଂଖ୍ୟା ବୃଦ୍ଧି ହାର ଦେଶକୁ ଶଙ୍କାଗ୍ରସ୍ତ କରି ନ ଥିଲା । ୧୯୦୧ରେ ଭାରତର ଲୋକସଂଖ୍ୟା ଥିଲା ୨୩·୮ କୋଟି । ୧୯୧୧ରେ ହେଲା ୨୫·୨ କୋଟି । ଅର୍ଥାତ୍ ବର୍ଷକୁ ଶତକଡ଼ା ୦·୫୭ ହାରରେ ବଢ଼ିଥିଲା । ୧୯୨୧ରେ ଏହା ୨୫·୧ କୋଟିକୁ କମି ଆସିଲା । ସେହିଦିନୁ ଭାରତର ଜନସଂଖ୍ୟା ଏତେ ଦ୍ରୁତଗତିରେ ବଢ଼ିବାରେ ଲାଗିଛି ଯେ ଜନସଂଖ୍ୟାବିତ୍‌ମାନେ ୧୯୨୧ର ଜନଗଣନାକୁ ମହାବିଭାଜକ ରେଖାବୋଲି ଚିହ୍ନଣ କରୁଛନ୍ତି । ୧୯୨୧ର ୨୫·୧ କୋଟି ୧୯୩୧ରେ ୨୭·୮ କୋଟି ହେଲା ଏବଂ ୧୯୪୧ରେ ୩୧·୮ କୋଟି ଓ ୧୯୫୧ରେ ବିଭକ୍ତ ଭାରତରେ ୩୬·୧ କୋଟି ହୋଇ ୧୯୬୧ରେ ୪୩·୯ କୋଟି ହୋଇଗଲା । ତେଣୁ ଜନସଂଖ୍ୟାର କେବଳ ଆକାର ବିଚାର କଲେ ଆମ ଦେଶରେ ଯେ ଖୁବ୍ ବେଶୀଲୋକ ରହୁଛନ୍ତି ଏଥିରେ ସନ୍ଦେହ ନାହିଁ । କେବଳ ଭାରତରେ ଯେତେ ଲୋକ ବାସକରନ୍ତି, ଏସିଆକୁ ଛାଡ଼ିଦେଲେ ଅନ୍ୟ କୌଣସି ମହାଦେଶରେ ମଧ୍ୟ ଏତେଲୋକ ନାହାନ୍ତି । ୧୯୬୭ରେ ଭାରତର ଲୋକସଂଖ୍ୟା ଉତ୍ତର ଓ ଦକ୍ଷିଣ ଆମେରିକା ମଧ୍ୟରୁ ପ୍ରତ୍ୟେକର ଲୋକସଂଖ୍ୟାର ଦୁଇଗୁଣରୁ ବେଶୀ ଏବଂ ଆଫ୍ରିକା ଲୋକସଂଖ୍ୟାର ଦେଢ଼ଗୁଣରୁ ଅଧିକ । ସମଗ୍ର ଇଉରୋପରେ ଯେତେ ଲୋକ ବାସକରନ୍ତି, ତତ୍‌ପେକ୍ଷା ପ୍ରାୟ ୮ କୋଟି ବେଶୀ ଲୋକ ଭାରତରେ ଅଛନ୍ତି । ପୃଥିବୀର ଲୋକସଂଖ୍ୟାର ଏକଷଷ୍ଠାଂଶ ହେଉଛନ୍ତି ଭାରତବାସୀ ।

କେବଳ ଜନ୍ମହାର ଜନସଂଖ୍ୟା ବୃଦ୍ଧିର କାରଣ ନୁହେଁ । ଭାରତରେ ଯେତିକି ଲୋକ ଜନ୍ମ ହେଉଛନ୍ତି, ସେମାନେ ସମସ୍ତେ ବଞ୍ଚି ରହୁଥିଲେ ଜନସଂଖ୍ୟା ଆହୁରି ଦ୍ରୁତତର ଗତିରେ ବଢ଼ୁଥାଆନ୍ତା । ପ୍ରତ୍ୟେକ ବର୍ଷ ବହୁ ସଂଖ୍ୟକ ଲୋକ ମରି ଯାଉଛନ୍ତି ବୋଲି ଜନସଂଖ୍ୟା ବୃଦ୍ଧିର ହାର ପ୍ରାୟ କମ ହୋଇଛି । ଜନ୍ମହାର ଗତ କେତେବର୍ଷ ହେଲା ପ୍ରାୟ ସ୍ଥିର ରହିଛି । ଏଣେ ପଞ୍ଚବାର୍ଷିକ ଯୋଜନା ଫଳରେ ସ୍ୱାସ୍ଥ୍ୟ, ଜଳଯୋଗାଣ, ଚିକିତ୍ସା ଓ ଜୀବନ ଧାରଣ କ୍ଷେତ୍ରରେ ବିଶେଷ ଉନ୍ନତି ହୋଇଥିବାରୁ ମୃତ୍ୟୁ ହାର କମିବାରେ ଲାଗିଛି । ଏପରି କି ୧୯୨୦ରେ ଭାରତୀୟ ଲୋକଙ୍କ ହାରାହାରି ପରମାୟୁ ଥିଲା ମାତ୍ର ୨୭ବର୍ଷ, ୧୯୪୫ରେ ଏହା ୩୨ ବର୍ଷ ଥିଲା ଏବଂ ତିନୋଟି ଯୋଜନା ଫଳରେ ବର୍ତ୍ତମାନ ଆମ ହାରାହାରି ପରମାୟୁ ୫୦ ବର୍ଷ ହୋଇଛି । ଜନ୍ମ ତୁଳନାରେ ବେଶୀ ହାରରେ ଲୋକେ ମରୁଥିଲେ ଜନସଂଖ୍ୟା ବୃଦ୍ଧିହାର ହୁଅନ୍ତା ନାହିଁ । ଏପରି କି ପ୍ରତି ଦଶବର୍ଷରେ ଥରେ ଯୁଦ୍ଧ ଲାଗୁଥିଲେ ବହୁଲୋକେ ମରିଯାଆନ୍ତେ ଏବଂ ଜନସଂଖ୍ୟା ବୃଦ୍ଧି ହାର କମି ଯାଆନ୍ତା, କିନ୍ତୁ ସଭ୍ୟମଣିଷ ନିଜେ ବିଚାରବନ୍ତ ଭାବରେ ଜନ୍ମହାର ନ କମାଇ ଜନସଂଖ୍ୟା ବୃଦ୍ଧିକୁ ରୋକିବା ଲାଗି ମୃତ୍ୟୁ ଉପରେ ନିର୍ଭର କରିବା ବିଜ୍ଞ ବିଚାର ହୁଅନ୍ତା ନାହିଁ । ଜନ୍ମ ହେବାକୁ ନ ଦେବା ନିଷ୍ଠୁର ବ୍ୟାପାର, କିନ୍ତୁ ଥରେ ଜନ୍ମହେଲେ ଏତେ ସ୍ନେହମମତା ଲାଗିଯାଏ ଯେ ତାକୁ ଅକାଳରେ ମାରିବାକୁ ଛାଡ଼ିଦେବା ଅଧିକତର ନିଷ୍ଠୁର କାର୍ଯ୍ୟ । ଭାରତରେ ବର୍ଷକୁ ପ୍ରତି ହଜାର ଲୋକରେ ୪୦ ଜଣ ହିସାବରେ ଜନ୍ମ ହେଉଛନ୍ତି ଏବଂ ୧୮ଜଣ ହିସାବରେ ମରୁଛନ୍ତି, ତେଣୁ ବଞ୍ଚିବା ହାର ହେଲା ପ୍ରତି ହଜାରରେ ୨୨ଜଣ ।

| | ଜନ୍ମ ହେଉଥିଲେ | ମରୁଥିଲେ | ବଞ୍ଚୁଥିଲେ |
|---|---|---|---|
| | ( ପ୍ରତି ହଜାର ଲୋକରେ ) | | |
| ୧୯୦୧ରୁ ୧୧ ବାର୍ଷିକ | ୫୧ ଜଣ | ୪୩ ଜଣ | ୮ ଜଣ |
| ୧୯୧୧ରୁ ୨୧ ,, | ୪୯ ,, | ୪୮ ,, | ୧ ,, |
| ୧୯୨୧ରୁ ୩୧ ,, | ୪୬ ,, | ୩୬ ,, | ୧୦ ,, |
| ୧୯୩୧ରୁ ୪୧ ,, | ୪୫ ,, | ୩୧ ,, | ୧୪ ,, |
| ୧୯୪୧ରୁ ୫୧ ,, | ୩୯ ,, | ୨୭ ,, | ୧୨ ,, |
| ୧୯୫୧ରୁ ୬୧ ,, | ୪୦ ,, | ୧୮ ,, | ୨୨ ,, |

ଜନ୍ମହାର ପ୍ରାୟ ସ୍ଥିର ରହି ମୃତ୍ୟୁହାର ଦ୍ରୁତ ଗତିରେ କମୁଥିବାରୁ ବଞ୍ଚିବା ହାର ସେହିପରି ଦ୍ରୁତ ଗତିରେ ବଢ଼ୁଛି, ତେଣୁ ଜନସଂଖ୍ୟା ହୁ ହୁ ହୋଇ ବଢ଼ି ଯାଉଛି । ଆମେ ଯଦି କୌଣସି ପ୍ରକାର ଜନ୍ମ ହାରକୁ ୪୦ରୁ ପ୍ରତି ହଜାରକେ ୨୫କୁ କମାଇ ପାରନ୍ତେ, ତେବେ ଜନସଂଖ୍ୟା ବୃଦ୍ଧି ହାର ଏତେ ଭୟ ଓ ଆଶଙ୍କାର କାରଣ ହୁଅନ୍ତା ନାହିଁ ।

ଏଥିପାଇଁ ପରିବାର ନିୟନ୍ତ୍ରଣ ଯୋଜନା କାର୍ଯ୍ୟକାରୀ ହେଉଛି । ଜନ୍ମସଂଖ୍ୟାକୁ ପ୍ରତି ହଜାରକେ ୪୦ରୁ ୨୫କୁ କମାଇ ଦେବାଲାଗି ସରକାର ବିବିଧ ପ୍ରସ୍ତାବ କାର୍ଯ୍ୟକାରୀ କରୁଛନ୍ତି । ପ୍ରଥମରେ ପ୍ରଚାର ମାଧ୍ୟମରେ କ୍ଷୁଦ୍ର ପରିବାରକୁ ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ କରାଇବାକୁ ପଡ଼ିବ । ଦ୍ୱିତୀୟରେ ପ୍ରତ୍ୟେକ ପ୍ରଜନନଶୀଳ ବ୍ୟକ୍ତିକୁ ଜନ୍ମନିୟନ୍ତ୍ରଣ ସମ୍ବନ୍ଧରେ ଧାରଣା ଦେବାକୁ ହେବ ଏବଂ ଶେଷରେ ଜନ୍ମନିୟନ୍ତ୍ରଣ ବ୍ୟବସ୍ଥା ସମସ୍ତଙ୍କ ପାଇଁ ସ୍ୱାବଲମ୍ବୀ କରିବାକୁ ପଡ଼ିବ । ଜନସାଧାରଣଙ୍କ ଭିତରେ ପରିବାର ନିୟନ୍ତ୍ରଣ ଧାରଣା ପ୍ରିୟ ହୋଇଗଲେ ତେଣିକି ଆପେ ଆପେ ଜନ୍ମହାର କମିଯିବ, ଫଳରେ ଜନସଂଖ୍ୟା ଏତେ ଦ୍ରୁତଗତିରେ ବୃଦ୍ଧି ପାଇବ ନାହିଁ । ପରିବାର ନିୟନ୍ତ୍ରଣ ଯୋଜନା ଲୋକଙ୍କର । ଏହା ଲୋକଙ୍କ ପାଇଁ କେବଳ ସେହିମାନଙ୍କଦ୍ୱାରା କାର୍ଯ୍ୟକାରୀ ହୋଇପାରେ ।

—※—



# ଗାଂଧିଗୁରୁ

( ଦାସାଇଁଗାନ )

( ଆଦିବାସୀ ସାନ୍ତାଳୀ ଭାଷା )

**ଶ୍ରୀମନ୍ତ ମାଣ୍ଡି**

ଜହାର୍ ଜହାର୍ ଗାଂଧିଗୁରୁ ସାଗବୁରୁ
ତାମ୍ମାକାନ୍ ମାନ୍‌ମୀ ସାଁଥିଦ ।
ଭିଗି ଗାଂଧିମ୍ ଜାନାମ୍ ଲେନା
କାଣା କାଲା ଲେଢ଼ା ଛଟାମ୍ ଡ଼ୟାଃ ଲେଦ୍ କ ।
ହିଁସା ଜଶାମ୍ ହର୍କା ଆଦ୍‌ଆ
ସିବିଲ୍ ସୁଲୁକ ସତ ରଲ୍‌ତେ ଦଶମ୍ ବାଇନ୍ଥାମ୍ କାଶଲେଦ୍ କ ।
ସାହେବ୍ ସର୍କାର୍ ଲଗାକାତେ
ଭାରତ ଦିଶମେମ୍ ଫୁର୍ଗାଲ୍ ଲେଃଆ
ଜନାମ୍ ଦିଶମ୍ ଶାସନ୍‌କାଥି ଭାରତ୍ ହପନ୍ ତରେମ୍ ଗୃଲ୍‌ଲେଦ୍ ।
ସେଙ୍ଗେଲ୍ କିଷାଣ୍ ସମାନ୍ ଲଗିଦ୍
ହିନ୍ଦୁ ମୁସଲ୍‌ମ ସୁଲୁକ୍ ଲଗିଦ୍
ହେମାଲ୍‌ବୁରୁ ଲଦମ୍ ଖନାଃ ଦାର୍ହା ଦୟା ଧାବଜେମ୍ କାର୍ପାଲେଦ୍ ।
ତବେ ରେହଁ ପାପୀ ନାଥୁରାମ ଦ ବାଗସ୍ ବୁଝାଉ ଲେଦ୍
ଦିଲ୍ଲୀ ବାଜାର୍ ଭାଲରେ ଡାଲ କାଲାମ୍ ରେୟ୍ ଗୁଲି କେଦ୍ ମେ
"ହାୟ୍ ରାମ୍, ହାୟ୍ ରାମ୍" କାତେ ଜିଓ୍ବୀଦ ଗୃଲଓ୍ବେନ୍ ।
ଜିଓ୍ବୀ ଗୃଲଓ୍ବେନ୍ ସେମାଁ ପୁର୍ବତେ
ଓତୁମ୍ ତାହେଁୟେନ୍ ମାନ୍‌ମୀ କଲାମ୍‌ରେ ।
ଦେ ଗାଂଧି ଦେଲ ଗାଂଧି ନାଲେ ତାଲତେ
ସେମାଁ ପୁର୍ଖାନ୍ ତଲେ ସୂତାମ୍‌ତେ ନାଣ୍ଗ ହକୁଃମେ ।
ମେଦ୍ ପେରେକ୍ ମେଦ୍ ଦାଃ ଜଦ୍ ଭାଲେ ମେ
ଲେଢ଼ା ଆକାନ୍ ମାନ୍‌ମୀ ହପନ୍ ଗୃଚ କେଟେଚ୍ ଲେମ୍ ।

---

**ସୂଚନା** :—ଉପର ଲିଖିତ କବିତାଟି ଆଦିବାସୀମାନଙ୍କ ଶରତ ଋତୁରେ ପାଳିତ ହେଉଥିବା 'ଦଶହରା' ବା "ଦାସାଇଁ" ନୃତ୍ୟଗୀତର ଅନୁସରଣରେ "ଦାସାଇଁଗାନ" ବା "ପାର୍ବଣ ବୃନ୍ଦେ" ରଚିତ । ଏଥିରେ ମହାମାନବ ମହାତ୍ମାଗାଂଧିଙ୍କ ଗୁଣଗାନ କରାଯାଇ ତାଙ୍କର ଆଶୀର୍ବାଦ ଭିକ୍ଷା କରାଯାଇଛି ।

# ।। ପରମାଣୁବୋମା ଓ ମାନବ ସମାଜ ।।

ଶ୍ରୀ ଜଳଧର ସ୍ୱାଇଁ, ଏମ୍. ଏସ୍. ସି.
ଆଦିବାସୀ ଗବେଷଣାଗାର

ଆଧୁନିକ ଯୁଗର ବୈଜ୍ଞାନିକମାନଙ୍କ ନୂତନ ଉଦ୍ଭାବନ ଫଳରେ ମନୁଷ୍ୟ ସମାଜର ଅନେକ ହିତ-ସାଧନ ହେବା ସଙ୍ଗେ ସଙ୍ଗେ କେତେକ ଅସମ୍ଭବ ଘଟଣା ସମ୍ଭବ ମଧ୍ୟ ହୋଇ ଯାଉଛି । ଉଦାହରଣ ସ୍ୱରୂପ ମନୁଷ୍ୟ ଆଜି ଗ୍ରହାନ୍ତର ଆବିଷ୍କାର କରିବାରେ ଦୃଢ଼ ପଦକ୍ଷେପ କରିବା ସଙ୍ଗେ ସଙ୍ଗେ ଜୀବନରହସ୍ୟ ଜାଣିବା ପାଇଁ ପ୍ରଚେଷ୍ଟା ଚଳାଇଛି । ପ୍ରକୃତରେ ମନୁଷ୍ୟର ଏହି ଅଦମ୍ୟ ଚେଷ୍ଟା କଅଣ କରି ନ ପାରେ ? ଅତୀତର ପୌରାଣିକ ଗଳ୍ପଗୁଡ଼ିକ ମଧ୍ୟ ଏହି ରକେଟ ଯୁଗରେ ଅସମ୍ଭବ ହୋଇ ନ ପାରେ । ପ୍ରବୀଣ ବୈଜ୍ଞାନିକମାନଙ୍କର ପ୍ରଗାଢ଼ ଉଦ୍ୟମରେ କ୍ଷଣସ୍ଥାୟୀ ଯୌବନ ଚିରସ୍ଥାୟୀ ହୋଇପାରେ ବା ସ୍ୱର୍ଗକୁ ମଧ୍ୟ ନିଶୁଣି ପଡ଼ିପାରେ । କେତେ ନୂତନ ନୂତନ ଆବିଷ୍କାର ମନୁଷ୍ୟ ପ୍ରକୃତିର ରହସ୍ୟକୁ ଭେଦକରି ସେହି ଶକ୍ତିକୁ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ବିଧାନରେ ପ୍ରୟୋଗ କରିଛି, ଏକଥା ସମସ୍ତଙ୍କୁ ଜଣା । କିନ୍ତୁ ମନୁଷ୍ୟର ଏହିସବୁ ସମ୍ଭାବନାମୟ ଆବିଷ୍କାର ଭିତରେ ଅନ୍ୟ ଏକ ବିରାଟ ଆବିଷ୍କାରର ଅପପ୍ରୟୋଗ ମାନବ ସମାଜରେ କରାଳର ଛାୟା ଘେରାଇ ଦେଇଛି । ଏହି ବିରାଟ ଆବିଷ୍କାରଟି ହେଉଛି ପରମାଣୁ ବୋମା । ପରମାଣୁ ଶକ୍ତିର ଆବିଷ୍କାର ପୃଥିବୀର ଇତିହାସରେ ଏକ କଳଙ୍କତମ ପର୍ଯ୍ୟାୟ ସୃଷ୍ଟି କରିଛି, କହିଲେ ଅତ୍ୟୁକ୍ତି ହେବନାହିଁ ।

ପରମାଣୁବସ୍ତୁର ତେଜସ୍କ୍ରିୟତା ମାନବ ସମାଜ ଉପରେ କପରି ପ୍ରଭାବ ପକାଏ ତାହା ଏଠାରେ ଆଲୋଚ୍ୟର ପ୍ରଧାନ ବିଷୟବସ୍ତୁ । ସ୍ୱଭାବତଃ ଶକ୍ତି ବିକୀରଣକାରୀ ପଦାର୍ଥକୁ ତେଜସ୍କ୍ରିୟ ପଦାର୍ଥ ( Radioactive elements ) କୁହାଯାଏ । ତେଜସ୍କ୍ରିୟ ପଦାର୍ଥଗୁଡ଼ିକ ଉଚ୍ଚଶକ୍ତି ସମ୍ପନ୍ନ ବୈଦ୍ୟୁତିକ-ଚୁମ୍ବକ-ତରଙ୍ଗ (Electro-magnetic -waves ) ବିକୀରଣ କରେ । ଉକ୍ତ ବୈଦ୍ୟୁତିକ-ଚୁମ୍ବକ-ତରଙ୍ଗ ଦ୍ୱାରା ଅଣୁ ବା ପରମାଣୁ ଭିତରସ୍ଥ ଇଲେକ୍‌ଟ୍ରୋନ୍ ( Electrone ) କକ୍ଷଚ୍ୟୁତ ହୁଏ । ଏହି ବହିଃସ୍କୃତ ପଦାର୍ଥକୁ ଆୟନ (Ion) କୁହାଯାଏ । ଅର୍ଥାତ୍ କକ୍ଷଚ୍ୟୁତକାରୀ ଇଲେକ୍‌ଟ୍ରୋନ୍ ପୂର୍ବନାମ ହରାଇ ଦେଇ ଆୟନ ନାମ ବହେ । ଏହି ପରମାଣୁରୁ ଇଲେକ୍‌ଟ୍ରୋନ୍ ବହିଃଷ୍କାର ତେଜସ୍କ୍ରିୟ ଶକ୍ତିର ନାମ ଆୟନ ସୃଷ୍ଟିକାରୀ ବିକୀରଣ ଶକ୍ତି ( Ionising Radiation ) ।

ଏହି ଆୟନ ସୃଷ୍ଟିକାରୀ ବିକୀରଣ ଶକ୍ତି ଜୀବଜଗତ ପକ୍ଷରେ କ୍ଷତିକାରକ ବୋଲି ପ୍ରମାଣିତ ହୋଇଛି । ଅନ୍ୟ ଜୀବମାନଙ୍କ ଭଳି ମନୁଷ୍ୟର ଶରୀର କୋଷ ( Cells ) ଦ୍ୱାରା ଗଠିତ । ପ୍ରତ୍ୟେକ କୋଷରେ ଥିବା କେନ୍ଦ୍ର ବା ନିଉକ୍ଲିୟସ ମଧ୍ୟରେ ସୂକ୍ଷ୍ମ ସୂତାଭଳି କ୍ରୋମ-ଜମ୍ ଅଛି । ଏହି କ୍ରୋମଜମ୍‌ଗୁଡ଼ିକ ଜୀବଜଗତରେ ବଂଶ-ଗତ ନିର୍ଣ୍ଣୟର ମୂଳମନ୍ତ୍ର । ଏଗୁଡ଼ିକଙ୍କର ପ୍ରତ୍ୟେକଙ୍କର

ଗଠନ ଶ୍ରେଷ୍ଠ ଶ୍ରେଷ୍ଠ ବିନ୍ଦୁର ସମଷ୍ଟି, ଯାହାକୁ ଜୀନ୍ ( gene ) କୁହାଯାଏ । ବସ୍ତୁତଃ ଏହି ଜୀନଗୁଡ଼ିକ ବଂଶଗତ ଗୁଣାବଳୀର ପ୍ରକୃତ ନିର୍ଣ୍ଣୟକ । ଏହି ଜୀନ୍ ସହ କ୍ରୋମଜମ୍‌ଗୁଡ଼ିକର ଗଠନ ପ୍ରଣାଳୀର ମୂଳତତ୍ତ୍ୱ ଏକପ୍ରକାର ପ୍ରୋଟିନ୍ ଯାହାର ନାମ 'ଡ଼ି-ଅକ୍‌ସିରିବୋ ନିୟୁକ୍ଲିକ ଆସିଡ୍ ବା ସଂକ୍ଷେପରେ ଡି-ଏନ୍ ଏ । ଏହି ଡ଼ି-ଏନ୍-ଏ ର ଗଠନରେ ଫସ୍‌ଫରସ୍ ହେଉଛି ପ୍ରଧାନ ଉପାଦନ । ସୁତରାଂ ଏହି ଆୟନ ସୃଷ୍ଟିକାରୀ ବିକୀରଣ ଶକ୍ତି ଯଦି ଡ଼ି-ଏନ୍ -ଏ ର ଅନ୍ତର୍ଭୁକ୍ତ ଫସ୍‌ଫରସ୍‌କୁ ଆକ୍ରମଣ କରେ ଏବଂ ତା ମଧ୍ୟରେ ଆୟନ ସୃଷ୍ଟି କରେ, ତାହାହେଲେ ଘଣ୍ଟଗୋଳର ସୂତ୍ରପାତ ହୁଏ, କାରଣ ସେହି ଫସ୍‌ଫରସ୍‌ର ଅଣୁଗୁଡ଼ିକ ସ୍ୱରୂପ ହରାଇ ଆଇସୋଟୋପ୍ ( Isotope ) ହୋଇ ଯାଏ । ଏହି ଫସ୍‌ଫରସ୍ ଆଇସୋଟୋପ୍ ତାର ଡ଼ି-ଏନ୍-ଏର ନିର୍ଦ୍ଦିଷ୍ଟ କାମରେ ସହାୟତା ନ କରି ଆଭ୍ୟନ୍ତରୀଣ ଶାସନ ଯନ୍ତ୍ରରେ ବିଶୃଙ୍ଖଳା ଜନ୍ମାଏ । ଏହିଭଳି ବିଦ୍ରୋହ ଫଳରେ 'କ୍ୟାନସ୍‌ର' କୋଷର ସୃଷ୍ଟିର ସମ୍ଭାବନା ଥାଏ ଓ ସେହି କୋଷ ଶୀଘ୍ର ତାର ପଡ଼ୋଶୀ ଉପରେ ଆକ୍ରମଣ ଚଳାଏ ।

ପ୍ରକୃତରେ କେତେକ ଉତ୍ସରୁ ଏହି ବିକୀରଣ ଶକ୍ତି ଲାଭ କରାଯାଏ । (୧) କୃତ୍ରିମ ଯନ୍ତ୍ରପାତିରୁ-ପରମାଣୁ ବିଭାଜନ ( Nuclear fission ), ରଞ୍ଜନରଶ୍ମି ( X-ray ), ରେଡ଼ିୟମ୍ ରଶ୍ମି ( Radium ray ) ଇତ୍ୟାଦି ।

(୨) ପୃଥିବୀର ସ୍ୱାଭାବିକ ସୃଷ୍ଟିରୁ ଅର୍ଥାତ୍ ବିଭିନ୍ନ ରକମର ପଥର ଓ ଧାତବ ପଦାର୍ଥ ।

(୩) ମହାଜାଗତିକ ରଶ୍ମି ( Cosmicray )

(୪) ମନୁଷ୍ୟ ଦେହ ଭିତରୁ ।

ଆଧୁନିକ ଯୁଗରେ ବିକୀରଣ ରଶ୍ମିର ବ୍ୟବହାର ଚିକିତ୍ସା କ୍ଷେତ୍ର ପ୍ରଭୃତିରେ ଯଥେଷ୍ଟ ପରିମାଣରେ ବୃଦ୍ଧି ପାଇଛି । ଉଦାହରଣ ସ୍ୱରୂପ ରଞ୍ଜନ ରଶ୍ମି, ଗାମା ରଶ୍ମି, ରେଡ଼ିୟମ୍ ରଶ୍ମି ପ୍ରଭୃତି ଚିକିତ୍ସା ଶାସ୍ତ୍ର ଓ ରୋଗ ନିର୍ଣ୍ଣୟରେ ଯେ ବିଶେଷ ସାହାଯ୍ୟ କରୁଛି ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ମନୁଷ୍ୟ ଭଳି ଅନ୍ୟ ଇତର ପ୍ରାଣୀ ଏହି ରଶ୍ମିଗୁଡ଼ିକର ପ୍ରଭାବ ନ ସହି ପାରନ୍ତି । କାରଣ ନୋବେଲ ପୁରସ୍କାର ପ୍ରାପ୍ତ ବୈଜ୍ଞାନିକ ଅଧ୍ୟାପକ ମୂଲର ୧୯୨୭) ପରୀକ୍ଷା କରି ଦେଖାଇଥିଲେ ଯେ ରଞ୍ଜନ ରଶ୍ମି ସାହାଯ୍ୟରେ ଏକ ପ୍ରକାର ମାଛି ଡ୍ରୋସଫିଲା Drosophila )ର ବଂଶ ଗଛର ମଧ୍ୟରେ ଆକସ୍ମିକ ପରିବର୍ତ୍ତନ ( Mutation ଘଟିବା ସମ୍ଭବ । ତେଣୁ ମନୁଷ୍ୟମାନଙ୍କ ମଧ୍ୟରେ ଏଗୁଡ଼ିକର କ୍ରମାଗତ ବ୍ୟବହାର ଫଳରେ ଯେଉଁ ବିକୀରଣ ଶକ୍ତି ସଞ୍ଚିତ ହୁଏ, ସେଗୁଡ଼ିକ ଏକକାଳୀନ ମଙ୍ଗଳକାରୀ ନ ହୋଇପାରେ । ଏହା ବ୍ୟତୀତ ତେଜସ୍କ୍ରିୟ ପରମାଣୁବିକ ଭସ୍ମରାଶିରୁ ନିର୍ଗତ ହେଉ-ଥିବା ବିକୀର୍ଣ୍ଣ ଶକ୍ତି ଏହି ସମସ୍ତ ଜୀବଜଗତ ଉପରେ ପ୍ରଭାବ ବିସ୍ତାର କରୁଛି ।

ଏହି କୃତ୍ରିମ ଉପାୟ ବ୍ୟତୀତ ଆମେ ବାସ କରୁଥିବା ପୃଥିବୀରେ ନାନାପ୍ରକାର ଧାତବ ପଦାର୍ଥ ବାଲି, ପଥର ଓ ମାଟିସହ ମିଶି ରହିଛି ଯାହାର ଭିତରେ ମଧ୍ୟ ବିକୀରଣ ଶକ୍ତି ଅଛି । ଯେଉଁଭଳି ପୋଟାସିୟମ୍-୩୯, ବେରିୟମ, ଥୋରିୟମ, ୟୁରେନିୟମ୍ ପ୍ରଭୃତି । ତାହାହେଲେ ସଦାସର୍ବଦା ଏହି ସମସ୍ତ ବସ୍ତୁରୁ ନିର୍ଗତ ବିକୀରଣ ରଶ୍ମି ଆମ ଦେହରେ ପ୍ରଭାବ ପକାଉଛି । ବର୍ତ୍ତମାନ ପ୍ରଶ୍ନ କରାଯାଇ-ପାରେ ଯେ ପୃଥିବୀ ପୃଷ୍ଠସ୍ଥ ବିଭିନ୍ନ ବସ୍ତୁରୁ ବିକୀର୍ଣ୍ଣ ରଶ୍ମି ଅନବରତ ଆମ ଦେହ ଭିତରେ ପ୍ରବେଶ କଲେ ଦେହରେ କୋଷଗୁଡ଼ିକ ଭିତରେ ଯେଉଁ ବିପୁଳ ଆକସ୍ମିକ ପରିବର୍ତ୍ତନ ସଦାସର୍ବଦା ଘଟନ୍ତା ତଦ୍ୱାରା ଦିନେ ମନୁଷ୍ୟଙ୍କ ଭିତରେ ଅର୍ଥାତ ଯେଉଁମାନେ ବିଶେଷ ଭୁକ୍ତଭୋଗୀ ଏତେ ବେଶୀ ପରିବର୍ତ୍ତନ ଆସିବ ଯେ ସେମାନେ ସାଧାରଣ ମନୁଷ୍ୟଠାରୁ ଅଲଗା ହୋଇଯିବେ । ଚିନ୍ତାଶୀଳ ମନୁଷ୍ୟମାନେ କହି ପାରନ୍ତି ଯେ ଏପରି ପରିବର୍ତ୍ତନ ଯଦି କ୍ଷତିକାରୀ ହୁଏ, ତା'ହେଲେ

ସେହି ମାନବ ଗୋଷ୍ଠୀ ନିଶ୍ଚିହ୍ନ ହୋଇ ଯାଆନ୍ତା । ମାତ୍ର ଏଭଳି ପରିସ୍ଥିତି କେବେହେଲେ ଦେଖାଯାଏ ନାହିଁ । ବର୍ତ୍ତମାନ ପ୍ରକୃତ ଘଟଣା ଆଲୋଚନା କରାଯାଉ ।

ପୃଥିବୀ ପୃଷ୍ଠରୁ ବିଚ୍ଛୁରିତ ଏହି ବିକୀର୍ଣ୍ଣ ରଶ୍ମିରାଶି ଆଦିକାଳରୁ ଭୂପୃଷ୍ଠରେ ସ୍ୱାଭାବିକ ପରିବେଶ ସୃଷ୍ଟି କରିଛି ଏବଂ ମନୁଷ୍ୟ ଏହି ପରିବେଶ ମଧ୍ୟରେ ବଢ଼ି ଆସିଛି । ପ୍ରକୃତି କୋଳରେ ବଢ଼ି ଆମେ ଖରା, ବର୍ଷା ଓ ଶୀତ ଆଦି ସହ୍ୟ କଲଭଳି ଏହି ରଶ୍ମିରାଶିକୁ ଗ୍ରହଣ କରିବାରେ ମନୁଷ୍ୟ ଅଭ୍ୟସ୍ତ । ଉଦାହରଣ ସ୍ୱରୂପ ଭାରତର କେରଳ ଅଞ୍ଚଳର ମୃତ୍ତିକାରେ ଥୋରିୟମ୍ ନାମକ ତେଜଷ୍କ୍ରିୟ ପଦାର୍ଥର ପରିମାଣ ବେଶୀ ଅର୍ଥାତ୍ ଏହି ଅଞ୍ଚଳର ଅଧିବାସୀମାନଙ୍କ ଦେହରେ ତେଜଷ୍କ୍ରିୟତା ସଞ୍ଚାରିତ ହେଉଛି, କିନ୍ତୁ ସେଭଳି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିନାହିଁ । ତଥାପି ଏଭଳି ଅନୁସନ୍ଧାନ କାର୍ଯ୍ୟ ମାନବଜୀବନ ପକ୍ଷେ ବିଶେଷତଃ ଆମଭଳି ଖାଦ୍ୟାଭାବ ଦେଶପକ୍ଷେ ନିତ୍ୟାନ୍ତ ପ୍ରୟୋଜନ । ବୈଜ୍ଞାନିକମାନେ ପରୀକ୍ଷା କରି ଦେଖାଇଛନ୍ତି ଯେ ଜୀବସାର ଅଭାବଗ୍ରସ୍ତ ମନୁଷ୍ୟମାନଙ୍କ ଉପରେ ତେଜଷ୍କ୍ରିୟ ବସ୍ତୁର ପ୍ରଭାବ ବେଶୀ । ଯୁକ୍ତରାଷ୍ଟ୍ର ନିଉୟର୍କ ଅଞ୍ଚଳରେ ଏକ ବ୍ୟାପକ ଅନୁସନ୍ଧାନ କରି ଜଣାଯାଇଛି ଯେଉଁ ଅଞ୍ଚଳର ମୃତ୍ତିକାରେ ତେଜଷ୍କ୍ରିୟ ପଦାର୍ଥର ଏଞ୍ଜିୟ ପରିମାଣ ବେଶି, ସେ ଅଞ୍ଚଳର ନବଜାତ ଶିଶୁଙ୍କ ମଧ୍ୟରେ ବିକଳାଙ୍ଗ ସଂଖ୍ୟା ସେତେ ପରିମାଣରେ ବେଶୀ । ଏହାବ୍ୟତୀତ ମହାକାଶୀୟ ରଶ୍ମି ( Cosmic-ray ) ସଦାସର୍ବଦା ଆମ ଉପରେ ପ୍ରଭାବ ପକାଇ ଥାଏ ।

ଏ ସମସ୍ତ ଛଡ଼ା ଆମ ଦେହ ଭିତରେ ତେଜଷ୍କ୍ରିୟ ପଦାର୍ଥର ଭଣ୍ଡାର କ୍ରମଶଃ ସଞ୍ଚିତ ରହିଛି । ଉଦାହରଣ ସ୍ୱରୂପ ପୋଟାସିୟମ-୪୦, କାର୍ବନ-୧୪, ରାଡ଼ନ୍ ଓ ଥୋରନ୍ ଆଦି ଦେହ ଭିତରେ ଅଛି । ଏହିଭଳି ସ୍ୱାଭାବିକ୍ ଉପାୟରେ ମନୁଷ୍ୟ ଅହରହ ଯେଉଁ ସମସ୍ତ ପ୍ରାକୃତିକ ତେଜଷ୍କ୍ରିୟ ବିକୀରଣ ଶକ୍ତିର ସ୍ପର୍ଶ ଅନୁଭବ କରେ, ବୈଜ୍ଞାନିକମାନେ ତାକୁ ମାପିବା ସକାଶେ ଏକ ପ୍ରକାର ଏକକ Unit ବ୍ୟବହାର କରିଛନ୍ତି । ପ୍ରଥମେ ଆମେ କ୍ରୋମଜମ୍ ଭିତର ଜୀନ୍‌ର କଥା ଆଲୋଚନା କରିବାକୁ ଯାଇ 'ଜୀନଗୁଡ଼ିକ' କେତେ ପରିମାଣରେ ତେଜଷ୍କ୍ରିୟତାକୁ ସହ୍ୟ କରିପାରିବେ ତାର ସ୍ୱାଭାବିକ୍ କର୍ମପଦ୍ଧତିକୁ ଅକ୍ଷୁର୍ଣ୍ଣ ରଖି ସେ ବିଷୟରେ ଜାଣିବାକୁ ହେଲେ ପରିମାପ ପଦ୍ଧତିର ସାହାଯ୍ୟ ଅତ୍ୟନ୍ତ ପ୍ରୟୋଜନ । ଏହିସବୁ ପ୍ରଣାଳୀକୁ ନେଇ ପୃଥିବୀର ବିଭିନ୍ନ ଦେଶ ମଧ୍ୟରେ ବୈଜ୍ଞାନିକ ରୀତିରେ ଆଲୋଚନା ଚାଲିଛି । ଯେତେଦୂର ଜଣାଯାଉଛି ପ୍ରାକୃତିକ ଉପାୟଦ୍ୱାରା ସ୍ୱାଭାବିକ୍ ଭାବରେ ମନୁଷ୍ୟ ଯେଉଁ ତେଜଷ୍କ୍ରିୟ ବିକୀରଣ ରଶ୍ମି ପାଉଛି, ସେଗୁଡ଼ିକ ତା ଦେହରେ ଆକସ୍ମିକ ପରିବର୍ତ୍ତନ (Mutation) ଆଣିବା ପାଇଁ ଯଥେଷ୍ଟ ନୁହେଁ । ଏହିଭଳି ଆକସ୍ମିକ ପରିବର୍ତ୍ତନ ଫଳରେ କୋଷଗୁଡ଼ିକ ମଧ୍ୟରେ ଏକ ବିରାଟ ପରିବର୍ତ୍ତନ ଘଟିଥାଏ ଓ ତାର ସ୍ୱାଭାବିକ୍ କାର୍ଯ୍ୟ ପ୍ରଣାଳୀରେ ପରିବର୍ତ୍ତନ ହୋଇଥାଏ । ଗବେଷଣାଗାରରେ ନିମ୍ନସ୍ତରର ଜୀବମାନଙ୍କ ଦେହରେ ଏସବୁ କ୍ଷତିକାରକ ବୋଲି ପରୀକ୍ଷା ଦ୍ୱାରା ଜଣାଯାଇଛି । ସୁତରାଂ ଦେହ କୋଷ ମଧ୍ୟରେ 'ଜୀନ'ଗୁଡ଼ିକ ସହ୍ୟ କରିବା ଶକ୍ତିର ଅତିରିକ୍ତ ତେଜଷ୍କ୍ରିୟତା ପାଇଲେ ଏହି ଧରଣର ବିରାଟ ଆକସ୍ମିକ ପରିବର୍ତ୍ତନ ଘଟିବ ଯଦ୍ୱାରା ଶରୀରର ସେହି ଅଙ୍ଗ ପ୍ରତ୍ୟଙ୍ଗ ବିକୃତ ହୋଇଯିବ । ପୁନରାୟ ମାତୃଗର୍ଭର ଭ୍ରୁଣ ଏଭଳି ତେଜଷ୍କ୍ରିୟତାର ସଂସର୍ଗରେ ଆସିଲେ ଏହା ନଷ୍ଟ ହୋଇପାରେ କିମ୍ବା ଗର୍ଭଜାତ ସନ୍ତାନକୁ ବିକଳାଙ୍ଗ କରିପକାଏ । ଆମ ଶରୀର ମଧ୍ୟସ୍ଥ କୋଷଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା:— ଦେହକୋଷ (Somatic Ce ) ଏବଂ ପ୍ରଜନନ କୋଷ (Reproductive Cells) । ଦେହ କୋଷଗୁଡ଼ିକ କ୍ଷତିଗ୍ରସ୍ତ ହୋଇଗଲେ ସେହି ପ୍ରତ୍ୟଙ୍ଗଟି ବିକୃତ ହୋଇଯାଏ । କିନ୍ତୁ ସବୁଠାରୁ ମାରାତ୍ମକ କ୍ଷତିଗ୍ରସ୍ତ

ହେଲା ଯେ ପ୍ରଜନନ କୋଷଗୁଡ଼ିକ ଏଭଳି ରଶ୍ମି ଦ୍ୱାରା ଆକ୍ରାନ୍ତ ହୁଏ, କାରଣ ପୁରୁଷ ଦେହରେ ଏହି କୋଷ-ଗୁଡିକ 'ଶୁକ୍ରାଣୁ (Sperms) ଓ ସ୍ତ୍ରୀ ଦେହରେ ଏହି କୋଷଗୁଡ଼ିକ 'ଡିମ୍ବାଣୁ' (Ovum) ତିଆରି କରେ । ଯଦି ଆରମ୍ଭରୁ ଏଭଳି ତେଜସ୍କ୍ରିୟ ରଶ୍ମି ଦ୍ୱାରା କ୍ଷତଗ୍ରସ୍ତ ହୁଏ ତା'ହେଲେ ଶରୀର ମଧ୍ୟସ୍ଥିତ କ୍ରୋମଜମ୍ ଓ 'ଜ୍ଞାନ୍'-ଗୁଡ଼ିକ ସାଂଘାତିକ ଭାବେ ବିକୃତ ଘଟେ । ଫଳରେ ନବଜାତ ଶିଶୁର ଦେହ କେତେ ପରିବର୍ତ୍ତିତ ହେବ ତାହା ସହଜରେ ଅନୁମେୟ । ହିରୋସିମା ବୋମା ବିସ୍ଫୋରଣ ପରେ ଉକ୍ତ ଅଞ୍ଚଳରେ ଜନ୍ମଗ୍ରହଣ କରିଥିବା ଶିଶୁମାନଙ୍କର ଭିତରେ ଏହିଭଳି ଘଟଣା ପରିଲକ୍ଷିତ କରା ଯାଇଥିଲା । ତେଣୁ ପିଲାମାନଙ୍କର ବାହ୍ୟ ଆବରଣରୁ କିଛି ଜଣା ନ ପଡ଼ିବାରୁ ଏହିଭଳି ଭୟାବହ କାଳାନ୍ତକମାନଙ୍କର ଜନ୍ମ ନିୟନ୍ତ୍ରଣ ଦୁଃସାଧ୍ୟ ହୋଇ ପଡ଼ୁଛି ।

ପ୍ରକୃତି ଛଡ଼ା ଅତିରିକ୍ତ ମାତ୍ରାରେ ଯେଉଁ ତେଜସ୍କ୍ରିୟତା ଆସିଥାଏ, ତାହାର ମୂଳାଧାର ହେଲା ଏହି ପରମାଣୁ ବୋମାର ଉତ୍ପତ୍ତି । ସାରା ପୃଥିବୀ ବ୍ୟାପି ପରମାଣୁ ବୋମାର ଯେଉଁ ପ୍ରତିଯୋଗିତା ଚାଲିଛି ତାର ପରୀକ୍ଷାମୂଳକ ନିର୍ଜନ ବା ଭୂଗର୍ଭରେ ହେଉଥିବା ସତ୍ତ୍ୱେ ବିକୀର୍ଣ୍ଣ ତେଜସ୍କ୍ରିୟତାର ପ୍ରଭାବରେ ପାରିପାର୍ଶ୍ୱିକ ମନୁଷ୍ୟ ସମାଜ ମୁକ୍ତ ପାଇପାରେ ନାହିଁ । ଏହି ବୋମାଗୁଡ଼ିକ ଯେଉଁ ଉଦ୍ଦେଶ୍ୟରେ ତିଆରି ହେଉଛି, ସେହି କାର୍ଯ୍ୟରେ ବ୍ୟବହାର କରା-ଗଲାବେଳେ ଆମ୍ଭେମାନେ ଯେ କେଉଁଭଳି ସଙ୍କଟାପନ୍ନ ଅବସ୍ଥାର ସମ୍ମୁଖୀନ ହେବା ତାହା କଳ୍ପନାତୀତ । ହିରୋସିମାର କ୍ଷତି ନିର୍ଣ୍ଣୟ ବିଷୟରେ ପ୍ରକାଶ ପାଇଥିବା କମିଶନ ରିପୋର୍ଟ ତାର ମୂକସାକ୍ଷୀ ।

ଏହି ପରମାଣୁ ବୋମାର ପ୍ରଥମ ପରିଚୟ ଘଟଣା ମନୁଷ୍ୟ ସମାଜର ଇତିହାସରେ ଏକ ଜଘନ୍ୟତମ ଦିନ । ଲକ୍ଷ ଲକ୍ଷ ନିରୀହ ଶିଶୁ ଓ ନରନାରୀ ବିଜ୍ଞାନର ନୂତନ ଆବିଷ୍କାରରେ ପ୍ରାଣ ହରାଇଲେ । କିନ୍ତୁ ଯେଉଁ-ମାନେ ବଞ୍ଚିରହିଲେ ସେମାନେ ହେଲେ ପୃଥିବୀ ପୃଷ୍ଠରେ କ୍ଷତଚିହ୍ନ ବା କଳଙ୍କ ସଦୃଶ । ଏହି ପରମାଣୁ ବୋମାର ତେଜସ୍କ୍ରିୟତା ଆଜି ମନୁଷ୍ୟର କଲ୍ୟାଣକର କାର୍ଯ୍ୟରେ ବ୍ୟବହାର ହେଲେ ମଧ୍ୟ ଏହାର ମୁଖ୍ୟ ଲକ୍ଷ୍ୟ ହେଲା ଧ୍ୱଂସ ସାଧକ ବୋମା ତିଆରିରେ ଓ ପାରସ୍ପରିକ ପ୍ରତିଯୋଗିତାରେ । ଅନ୍ୟାନ୍ୟ ଜୀବ-ଜଗତର କଥା ବାଦ୍‌ଦେଲେ ଏହି ପରମାଣୁ ବୋମାର ତେଜସ୍କ୍ରିୟତା ମନୁଷ୍ୟର ଜୀବନ ଓ ସେହି ସଙ୍ଗେ ବୃହତ୍ତର ପରିସରରେ ଦେଖିଲେ ମନୁଷ୍ୟ ସମାଜ ଉପରେ କିପରି କାର୍ଯ୍ୟ କରୁଛି ତାହା ସମସ୍ତଙ୍କର ଚିନ୍ତାର ବିଷୟ ।

—*—

## ପୁସ୍ତକ ପରିଚୟ

"ଶିଳା ଓ ଶିଉଳି"ର ଲେଖକ ଶ୍ରୀ ପ୍ରଫୁଲକୁମାର ସାମନ୍ତରାୟ ସାହିତ୍ୟ ଜଗତରେ ନୂଆ ପାଦ ବଢ଼େଇଛନ୍ତି । ବହିଟିର ଲେଖା ସମସ୍ତଙ୍କ ମନରେ ସରସ ଓ ସଚେତନ ଭାବନା ଆଣିଦେବ । ତାହା ତରୁଣ କବିଙ୍କର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ । ଆମେ ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛୁ ।

ସ· ବନଫୁଲ



## ॥ ପିଲାମାନଙ୍କ ପାଇଁ ॥

ଶ୍ରୀ ପ୍ରସନ୍ନ କୁମାର ଦାଶ

ଏକ ସୂରୁଜ ଆଲୁଅ ଦେଇ ଅନ୍ଧାର କରେ ନାଶ
ଏକଇ ଶଶୀ ହସାଏ ବଣ୍ଡ ଫୁଟାଏ ଚୋପା ହସ । ୧ ।
ଦୁଇ ଚକରେ ପବନ ବେଗେ ଛୁଟଇ ଶୂନଗାଡ଼ି
ଦୁଇ ଡେଣାକୁ ହଲାଇ ପକ୍ଷୀ ଆକାଶେ ଯାଏ ଉଡ଼ି । ୨ ।
ତିନି ନଦୀର ମିଳନ ସ୍ଥାନ ତ୍ରିବେଣୀ ନାମେ ଖ୍ୟାତ
ତିନି ଫଳରେ ତ୍ରିଫଳା ବୋଲି ଔଷଧ ହେଲା ଜାତ । ୩ ।
ଚାରି ମୁଣ୍ଡିଆ ବ୍ରହ୍ମାଙ୍କୁ ଜାଣ ଗଲେ ସେ ବେଦ ଗାଇ
ଚାରି ଚକରେ ମଟର ଗାଡ଼ି ଛୁଟଇ ପିଠି ଦେଇ । ୪ ।
ପାଞ୍ଚ ସୁଆଦ ମିଶାଇ ଦେଲେ ହୁଅଇ ପଞ୍ଚାମୃତ
ପାଞ୍ଚ ଜଣେ ହୁଅଇ ଟୋ ଗ୍ରାମର ପଞ୍ଚାୟତ । ୫ ।
ଛଅ ଗୋଡ଼ିଆ ଭ୍ରମର ଗୀତ ଗାଉଛି ଫୁଲ ପରେ
ଛଅଟି ଋତୁ ବରଷକରେ ଆସଇ ପରେ ପରେ । ୬ ।
ସାତଟି ତାରା ସପ୍ତର୍ଷି ସେ ଗୋଟିଏ ଧ୍ରୁବ ତାରା
ସାତଟି ଦିନ ମିଶିଣ ହୁଏ ଏକ ସପ୍ତାହ ପରା । ୭ ।
ଆଠ ପ୍ରହର ହୁଅଇ ଜାଣ ମିଶି ରାତି ଓ ଦିନ
ଆଠଟି ଅଙ୍ଗ ଭୂମ ଶଯ୍ୟାରୁ ଅଟଇ ସାଷ୍ଟ ମାନ । ୮ ।
ନ'ଅଙ୍କର ଦୁର୍ଭିକ୍ଷରେ ଓଡ଼ିଶା ହେଲା ନାଶ
ନ'ଅଟି ରତ୍ନ ମଧ୍ୟରେ ଥିଲେ ପଣ୍ଡିତ କାଳିଦାସ । ୯ ।
ଦଶଟି ଦିଗ ଗଣିକ କୁହ କାହାର କେଉଁ ନାମ
ଦଶ ମୁଣ୍ଡିଆ ରାବଣ ଥିଲା ଲଙ୍କା ଦେଶର ରାଜା । ୧୦ ।
ଏକରୁ ଦଶ ନମ୍ବରୁ ତୁମେ ମନରେ ରଖ ଧାପୁ
କାଲିକି ଯେବେ ପଚାରିବ ଦେବ ଠିକ ଠିକ୍ ଯିବ କହି ।

*—

# ॥ ମଇଦିବସର ତାତ୍ପର୍ଯ୍ୟ ॥

ଆନ୍ତର୍ଜାତିକ ଶ୍ରମଶକ୍ତି ଏକତ୍ରୀକରଣର ନିଦର୍ଶନ ସ୍ୱରୂପ ଏହି ମଇ ଦିବସ ହିଁ ପ୍ରଥମେ ଆମେରିକାରେ ଦିନକୁ ୮ ଘଣ୍ଟା କାମ କରିବାର ଦାବୀ ନେଇ, ବିରାଟ ଆନ୍ଦୋଳନ ମଧ୍ୟରେ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଜନ୍ମଲାଭ କରିଥିଲା । ଏହାର ପ୍ରଭାବ ଫଳରେ ଅନ୍ୟାନ୍ୟ ଦେଶମାନଙ୍କରେ ଦିନକୁ ୮ ଘଣ୍ଟା କାମ କରିବାର ଦାବୀ ସ୍ୱୀକାର କରାଯାଇଥିଲା । କିନ୍ତୁ ୧୮୯୦ ଖ୍ରୀଷ୍ଟାବ୍ଦ ପରଠାରୁ ମେ' ମାସର ପ୍ରଥମ ଦିନ ଶ୍ରମିକମାନଙ୍କର ଏକତ୍ରୀକରଣର ଦିନରୂପେ ସାରା ପୃଥିବୀରେ ପାଳିତ ହୋଇ ଆସୁଅଛି । ଏ ସବୁ ସତ୍ତ୍ୱେ ମୂଳ ମେ' ଦିବସ ହିଁ କେତେଗୁଡ଼ିଏ ଶ୍ରମ ସଙ୍ଗଠନ ଦ୍ୱାରା ସ୍ୱୀକୃତ ହୋଇଥିଲା, ଯେଉଁ ଶ୍ରମ ସଂଗଠନକ ପରବର୍ତ୍ତୀକାଳରେ ଅମେରିକା ଶ୍ରମ-ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହୋଇଥିଲା । ଏହି ଆମେରିକା ଶ୍ରମଗୋଷ୍ଠୀ ପ୍ରକାଶ କରିଥିଲେ କି ୧୮୮୬ ମେ' ଏକ ତାରିଖ ଠାରୁ ୮ ଘଣ୍ଟା କାର୍ଯ୍ୟ ଗୋଟିଏ ଦିନର ବୈଧାନିକ କାର୍ଯ୍ୟରୂପେ ଗୃହୀତ ହେବ । ସେହି ପ୍ରଥମ ମେ' ଦିବସରେ ହଜାର ହଜାର ଶ୍ରମିକମାନେ ହରତାଳ ପାଳନ କରିଥିଲେ ଓ ଚିକାଗୋ, ନିଉୟର୍କ, ଡେଟ୍ରଇଟ, ମିଲ୍‌ୱାକି, ଓ୍ୱାସିଂଟନ, ସେଣ୍ଟଲୁଇସ ଓ ଫିଲାଡେଲଫିଆର ବିଭିନ୍ନ ସହରମାନଙ୍କର ଶ୍ରମିକମାନେ ମଧ୍ୟ ଏହିପରି ଆନ୍ଦୋଳନ ଚଳାଇଥିଲେ ।

ଚିକାଗୋ ସହର ଦିନକୁ ବୈଧାନିକ ଉପାୟରେ ୮ ଘଣ୍ଟା ପରିଶ୍ରମ କରିବାର ଶ୍ରମିକ ଆନ୍ଦୋଳନ ସଭା ହେ-ମାର୍କେଟ ସ୍କ୍ୱାର (Hay market squar) ରେ ବସିଥିଲା । ସେହିଦିନ ମଧ୍ୟ ଚିକାଗୋର ଏମ୍‌କର୍ମିକ୍ ହାରଭେଷ୍ଟର ପ୍ଲାଣ୍ଟ ପିକେଟ୍ ଲାଇନର ପୋଲିସ୍, ଶ୍ରମିକମାନଙ୍କ ଏ ଆନ୍ଦୋଳନ ଉପରେ ଆକ୍ରମଣ ଚଳାଇଥିଲେ ଓ ଏହା ଫଳରେ ବହୁ ଶ୍ରମିକ ମଧ୍ୟ ଗୁଳି ଚେଟରେ ଆହତ ହୋଇ ମୃତ୍ୟୁ ବରଣ କଲେ । ଏ ଗୁଳିକାଣ୍ଡର ପ୍ରତିବାଦ ସଭା ମଧ୍ୟ ମେ' ୪ ତାରିଖରେ ହେ-ମାର୍କେଟ ସ୍କ୍ୱାରରେ ବସିଥିଲା । ଦିନକୁ ୧୬ ଘଣ୍ଟା ପରିଶ୍ରମ କରି ଝାଳନାଳ ହେଉଥିବା ଏହି ଚିରପ୍ରପୀଡ଼ିତ ଶ୍ରମିକ ସମାଜ ସେହି ହେ-ମାର୍କେଟ ସ୍କ୍ୱାରଠାରେ ତାଙ୍କ ଭାଇ ବନ୍ଧୁଙ୍କର ମୃତ୍ୟୁର ପ୍ରତିବାଦ କରିବା ନିମିତ୍ତ ମୁହଁରେ ଗୀତଗାଇ, ହାତରେ ପତାକା ଧରି ଏକତ୍ରିତ ହୋଇଥିଲେ ଓ ଅନ୍ୟ ପକ୍ଷରେ ମଧ୍ୟ ପୋଲିସ୍ ବାହିନୀ ତାଙ୍କ ବନ୍ଧୁକ ସଜାଡ଼ି ଆକ୍ରମଣକୁ ଅପେକ୍ଷା କରି ଜଗି ରହିଥିଲେ ।

ଏହି ସମୟରେ ହଠାତ୍ ଜଣେ କର୍ମୀ ଆସି ଏକେଣ୍ଟ ଜଗି ରହିଥିବା ପୋଲିସ୍ ଦଳ ମଧ୍ୟକୁ ଗୋଟିଏ ବୋମା ଫିଙ୍ଗିଦେଲେ । ଫଳରେ ବିକୂଳ ବେଗରେ ପୋଲିସ୍ଙ୍କ ଆକ୍ରମଣ ଶ୍ରମିକଙ୍କ ଉପରେ ଆରମ୍ଭ ହୋଇଗଲା । ସାରା ଜନସମାଗମ ଏକ ଦଙ୍ଗା ହେଙ୍ଗାରେ ପରିଣତ ହେଲା । ଏହା ଦେଶର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ରହିଥିବା ମାଲିକମାନଙ୍କୁ ଶ୍ରମିକମାନଙ୍କ ବିରୋଧରେ ଏକ ତୀବ୍ର ଆନ୍ଦୋଳନ ଚଳାଇବାର ବିଶେଷ ସୁବିଧା ସୁଯୋଗ ଦେଲା । ସାରା ଦେଶରେ ଏକ ଭୟଙ୍କର ପରିସ୍ଥିତି ଉପୁଜିଲା । ତତ୍କାଳୀନ ଦେଶର ବଡ଼ ବଡ଼ ଖବର କାଗଜ ଶ୍ରମିକ ସମାଜ ଯେ ବୋମା ପକାଇବାରେ ସମ୍ପୃକ୍ତ ଓ ମଇ ଦିବସ ପାଳନ କରିବାରେ ଯେଉଁ ନେତାମାନେ ନିର୍ଦ୍ଦେଶ ଦେଇଥିଲେ, ସେମାନେ ଯେ ଦେଶରେ ରକ୍ତ ସ୍ରୋତ ବୁହାଇଛନ୍ତି, ତା'ର ତୀବ୍ର ନିନ୍ଦାବାଦ କରି ଲେଖାମାନ ପ୍ରତିଦିନ ଛାପି ଲାଗିଲେ । ଦେଶର ବିଚାରାଳୟ ମଧ୍ୟ ଏ ଦିଗରେ ଖବର କାଗଜ ସମ୍ବାଦ ଉପରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କଲେ ଓ ଶେଷରେ ଏ ସଂକ୍ରାନ୍ତରେ ନେତାମାନଙ୍କୁ ଅଭିଯୁକ୍ତ କରାଇ, ସେମାନଙ୍କୁ କାରାରୁଦ୍ଧ କରାଇଲେ ।

ଏପରିକି କେତେକ ନେତାମାନଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ଓ ଅନେକଙ୍କୁ ଯାବଜ୍ଜୀବନ କାରାରୁଦ୍ଧ କରାହେଲା । ଏଇ ଶ୍ରମ ସଂଘର୍ଷ ଯୋଗୁଁ କେତେକ ନେତାଙ୍କୁ ଶହୀଦ ହେବାକୁ ପଡ଼ିଥିଲା । ତଥାପି ତାଙ୍କର ଏ ମୃତ୍ୟୁ, ବ୍ୟର୍ଥ ବା ହତାଶର ବାଣୀ ଶୁଣାଇବା ପରିବର୍ତ୍ତେ ଶ୍ରମିକମାନଙ୍କୁ ଏକ ଉନ୍ମାଦନାର ବାଣୀ ଶୁଣାଇଥିଲା । ନେତାମାନଙ୍କର ଜୀବନଦାନ ଶ୍ରମିକମାନଙ୍କୁ ଦିନକୁ ୮ ଘଣ୍ଟା ପରିଶ୍ରମ କରିବାର ଯେ ଦାବୀ ତାହା ମଧ୍ୟ ପରବର୍ତ୍ତୀ କାଳରେ ହାସଲ କରିବାରେ ବିଶେଷ ସାହାଯ୍ୟ କରିଥିଲା ।

ମୂଳତଃ ଏହି ସଂକ୍ଷିପ୍ତ ଇତିହାସ ହିଁ ମେ' ଦିବସର ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ । ଏହି ମେ' ଦିବସରେ ଆଜି ସମଗ୍ର ପୃଥିବୀର ଶ୍ରମିକ ଗୋଷ୍ଠୀ ନିଜର ଦାବୀ ଓ ଦାୟିତ୍ୱ ବୁଝିବାକୁ ବିଶେଷ ଭାବେ ସକ୍ଷମ ହେବାକୁ ଯେ ଚେଷ୍ଟା କରୁଛି, ଏଥିରେ ତିଳେ-ମାତ୍ର ସନ୍ଦେହ ନାହିଁ ।

—୦—.

## ନ ପଢ଼ିଲେ ଭଲ

# ॥ ହେବିନି ॥

(୧)    ଉପେନ୍ଦ୍ର ମିଶ୍ର

ବସନ୍ତ ଯାଇ ଗ୍ରୀଷ୍ମ ଆସିଲା, ଅପ୍ରେଲ ସଂଖ୍ୟା ପରେ ମେ' ସଂଖ୍ୟା ଆରମ୍ଭ ହେବ । ସମୟର ସ୍ରୋତ ବନ୍ଦ ହେଲାବା ସାଙ୍ଗରେ ଜୀବନର ଝଡ଼ଝଞ୍ଜା ଚାଲିଛି । କିଏ କା' କଥା ମନେ ରଖୁଛି । ମନେ ରଖିବା ଦରକାର କ'ଣ ? ସିଏ ମନେ ରଖୁ ନ ରଖୁ ମୁଁ କିନ୍ତୁ ମନେ ରଖିଛି । ମୋ ଲେଖିବା ନିଶା ଛାଡ଼ିନି । ଯେତେବେଳେ ଛାଡ଼ିବ ସେତେବେଳକୁ କିଛି ନ ଥିବ, ଥିବ କେବଳ ଅଛୁଆ ଘର । ଯେଉଁ ଘର କି ଆଉ ଛୁଆହୋଇ ପାରିବ ନାହିଁ । ବର୍ତ୍ତମାନ ଛୁଆ ଅଛୁଆର ପ୍ରଶ୍ନ ନାହିଁ । ଉତ୍ତର ହେଉଛି—ଘରଅଛି ।

ଏ ଘରେ ଆରମ୍ଭ ହେବ ନୂଆ କଥା । ଯେଉଁ କଥା କି କାହାରିକୁ ଭଲ ଲାଗେନା । ନ ଲେଖିଲେ ଭଲ । ଲେଖିଲେ ଯଦି ଖରାପ ହୁଏ ତା'ହେଲେ ଟିକେ ଲେଖି ଦେଖିବା ।

ଆରମ୍ଭ ହେବାକୁ ଯାଉଛି ହେବନି । କ'ଣ ହେବନି ବା କାହିଁକି ହେବନି, ପାଠକେ ଭାବିବେ ବୋଧହୁଏ ଲାଲ୍ ଟ୍ରାଫିକ୍ ବାଜିଛି । ତେଣୁ ହେବାର ନିଶା ଚାଲି ଯାଇଛି । ହଁ ଲାଲ୍ ଟ୍ରାଫିକ୍ ନୁହେଁ ରକ୍ତ ଟ୍ରାଫିକ୍ । ସେ କଥାଟା ମନେ ପଡ଼ିଲେ ଆଜି ଦେହରେ ଶିହରଣ ଆସେ । ଅଧା ଲେମ୍ବୁ ଚିପୁଡ଼ିଲେ ପିତା । ଗୁଡ଼ ବୋଲି ଗେଙ୍ଗୁଟି ଗିଳିଲେ ତଣ୍ଟିରେ ଅଟକେ । ଏବେ ବୁଝିଟା ହୋଇଛି । ଚାକିରୀ ଲାଳସା ଥିଲା । ସନ୍ତୋଷ ତା ସାଙ୍ଗକୁ କନ୍‌ଫର ମେସନ । ଏହାରି ଭିତରେ ଘର ଭଆଡ଼ ଓ ଉପରିସ୍ଥ ଅଫିସରଙ୍କୁ ଖୁସି କରିବା, ସବୁ ଆଡ଼କୁ ମନ ବଳାଇଲି; କିନ୍ତୁ ଅସଲଆଡ଼େ ମନ ବଳାଇଥିଲେ ଭଲ ହୋଇଥାନ୍ତା । ଏ ଗେଙ୍ଗୁଟି ଯଦି ତଣ୍ଟିରେ ଲାଗିଥାନ୍ତା ତା'ହେଲେ ଗୋଟିଏ ସାନ୍ତ୍ୱନା ମିଳିଥାନ୍ତା । ଅସଲଟି ଆରମ୍ଭ ନ କରି ଆଜି ତଣ୍ଟିରେ ଗେଙ୍ଗୁଟି ଥିବାବେଳେ ଅସଲ କଥା ମନେ ପଡ଼ୁଛି । ସେ ଅସଲ କ'ଣ ? କିଏ କ'ଣ ଭାବୁଥିବେ, କେତେକ ଭାବୁଥିବେ କୌଣସି ଯୁବତୀ ସହିତ ପ୍ରେମ ଓ ଅନ୍ୟ କେତେକ ଭାବୁଥିବେ ପ୍ରେମ ପତ୍ରେ ଦେଖା ନ ଦେବା, ସେ କିଛି ନୁହେଁ । ସେ ବୟସ ଯାଇଛି । ପ୍ରେମ ନାଁ ଶୁଣିଲେ ଥର ଆସେ । ସେ ହେଉଛି ଝିଅ ବିଭା । ଆଜି ବୋର୍ଡ ଉପରେ ନଳିତା ବିଡ଼ା, ଯେତେବେଳେ ଚାରିଆଡ଼ୁ ଆସୁଥିଲା, ସେତେବେଳ କଥା ଆଜି ମନେ ନାହିଁ । ଏହିକ୍ଷଣି ନ ଆସିବା ବେଳ, ହେଲେ ଯେତେକ ଗିଳିଛି ଏହିକ୍ଷଣି କିଛି କିଛି ଦେବାକୁ ହେଉଛି । ଆସିଲା ବେଳଟା ଜଣା ନାହିଁ । ଦେବାବେଳଟା କିପରି ଆସୁଛି ଓ କେବେ ଯିବ ସେଇଟା ଚିନ୍ତାର ବିଷୟ ।

ଆଜି ସରକାଟ୍ ହାଉସ୍ କଥା ମନେପଡ଼େ । କେତେ ଅଫିସର ଆସନ୍ତି । ବିଲାତି ଖାନା ସହିତ ବିଲାତି ପିନା, ସବୁକିଛି ଯୋଗାଇବାକୁ ପଡ଼େ । ଆଉ ଯଦି କିଛି ଦରକାର ହୁଏ, ତାକୁ ପଛେଇଲେ ବାରବରଷର ତପ ଶୁଖୁଆ ଖୋଳରେ ଯାଏ । ଏଥିରେ ମଟର କାର ଖଣ୍ଡିଏ ଆସେ । ପାଞ୍ଚ-ସାତ ଜଣ ଆସନ୍ତି । ଗସ୍ତ ଖର୍ଚ୍ଚା ମିଳେ । କାମ ହେଉଛି ତନଖି । ଅର୍ଥାତ୍ ଯାହାସବୁଭୁଲ ହୋଇଛି ତାକୁ ସୁଧାରିବା ଏବଂ ଭବିଷ୍ୟତ ଭୁଲକୁ ନିରୋଧ କରିବା । ସରକାଟ୍ ହାଉସ୍‌ରେ ଖାନସାମାକୁ ପଚାରିଲେ ସେ କହିବ ମିଲ୍ ଟ୍ରିପ୍ କେତେ ଅର୍ଥାତ୍ ଗୋଟିଏ ଲଞ୍ଚ ବା ଡିନର । ବାସବତୀ ଅରୁଆ ଚାଉଳ ଭାତ, କାଗଜି ଲେମ୍ବୁ, ଗୁଆ ଘିଅ, କୁକୁଡ଼ା ମାଂସ, ଦହି, କାକୁଡ଼ି, ବିଲାତି ସାଲଡ଼, ବୁଟ ଡାଲି, ପୋଟଳ ଭଜା, ନାଁ ନାଁ ଭୁଲ କହିଲି । ମଫସଲ ଜାଗାରେ ପୋଟଳ ମିଳେ ନାହିଁ । ତା ବଦଳରେ

କାଙ୍କଡ଼-ଭଜା ଯାହାକୁ କଟକ, ଭୁବନେଶ୍ୱରରେ କହେ ଦୁଇଟଙ୍କା । ଇତ୍ୟାଦି ଇତ୍ୟାଦି ଟିଇବା କଥାର ହିସାବ ନାହିଁ । ସେ ସବୁ ଏଠାରେ ତିଆରି ହୁଏନାହିଁ କିମ୍ବା ତା ଉପରେ ଦାମ୍ ଲେଖା ନ ଥାଏ । ଦୋକାନୀ ଲୋକଦେଖି ଦାମ୍ କହେ । ଯଦି ଜଣେ ପାଇଁ ଅନ୍ୟଜଣେ କିଣିବାକୁ ଯାଏ ତା'ହେଲେ ତା'ର ଦାମ ଦୁଇଗୁଣ ବଢ଼ି ଯାଏ । ସମସ୍ତେ ଜାଣି ନୀରବ । କିଏ କାହାକୁ ପଚାରନ୍ତି ନାହିଁ । ପଚାରିବା ଦରକାର ନାହିଁ । ଦେଉଛନ୍ତି ଜଣେ, ଆଣୁଛନ୍ତି ଜଣେ ଓ ଚାଖୁଛନ୍ତି ଜଣେ । ଏଥିରେ କା' ସାଙ୍ଗେ କାର ଦେଖା ସାକ୍ଷାତ ନ ଥାଏ । ଯଥା ବନ୍ଧୁ । ଅବସ୍ଥିତ ଅଛି ବିସ୍ତୃତ ନାହିଁ । ବେସରକାରୀରେ ଏତକ ହୁଏ କି ସରକାରୀରେ ହୁଏ ସେଥିର ଭୁକ୍ତଭୋଗୀ କହିବେ । ଏ ଲେଖକଗୋଷ୍ଠୀ କିଛି ଧାର ଧାରନ୍ତି ନାହିଁ । କାରଣ ସକାଳୁ ସନ୍ଧ୍ୟାଏ ବାଲୁବଜାରଠାରୁ ବିନୋଦ ବିହାରୀ ଭିତରେ ଧପଡ଼ ଧପଡ଼ । ସନ୍ଧ୍ୟାରେ ଯାହା ମିଳେ ଦୋକାନୀ ହାତରେ ଦେଇ ଘରେ କଲମ ଘଷ ।

ମୁଁ ହେବନି ଯାହା କହନ୍ତି ତା ଠିକ୍ । ହେବନି ଅର୍ଥାତ୍ ଶ୍ରେଷ୍ଠ ଅଫିସର ହେବନି । ହେଲେ ହେଉ କିରାଣୀ ତେଲ ଓ ଉପରରୁ ଗାଳି । ଯେତକ ସମସ୍ତ ହେଉଛି, ତାର ଫଳ ମୋତେ ଆଜି ଭୋଗିବାକୁ ଦେଉଛି । କାହିଁ ସୁନ୍ଦର ସ୍ୱର୍ଗରୁ ବଣ ସ୍ୱର୍ଗ । ଗଙ୍ଗାରୁ ଗୋଦାବରୀ । ତା' ସାଙ୍ଗକୁ ଛେଳି ନ ବେଉଣୁ ବୋଦା କାଢ଼ିଆ । ଏବେ ଘନ ଘନ ଚିଠି, ତାଗଦା, କୈଫିୟତ ଇତ୍ୟାଦି ଇତ୍ୟାଦି । ଯେଉଁ ବାଲୁଙ୍ଗାଠାରୁ ଯାହା ଅଣାଇଥିଲି ସେ ସେ ହାଟ ବାଟରେ ବେଙ୍ଗୁରା ଦେଉଛି । ମୋର ଏଥିରେ କ'ଣ ସ୍ୱାର୍ଥ ଥିଲା ? କେବଳ ଘର ଖଣ୍ଡିକ । ସେ କାମ ପୂର୍ବ ସରିନାହିଁ । ଏଥିରେ ଅପରାଧ କ'ଣ ହୋଇଛି । କିଏ କେତେ କେତେ କାମ କରିଗଲେ । ମୋ ବେଳକୁ ଲାଗାଲଗି । ସେଇଥିପାଇଁ ମୁଁ ଏବେ ଠିକ୍ କରିଛି ହେବନି । ମୋର କିଏ କ'ଣ କରୁଛି କରୁ ? ମୁଁ ଏବେ ମନ୍ତ୍ରୀ ପାଖରେ କହିବି—ଯାହା କହୁଛନ୍ତି ମତ କହୁଛନ୍ତି । ମିଛ କହିବି ନାହିଁ, ଓଥିନେଇ କହୁଛି; ମୁଁ ସବୁବେଳେ ସନ୍ତୋଷ । ମୋତେ ଲୋକମାନେ ଝଗଡ଼ା କରେଇଦେଲେ । ମନ୍ତ୍ରୀଙ୍କ ପି· ଏ· ପାଖରେ କହିବି—ମୁଁ ଯେତକ ଆଣିଛି ସେତକ ଫେରାଇ ଦେବି । ସବୁ ଆଣିନାହିଁ । ମୋତେ ଖରାପ ବୁଝନା । ସେକ୍ରେଟେରୀ ପାଖରେ କହିବି—ଆପଣ ମୋର ମା' ବାପ, ମୋର ଗୃହକର୍ତ୍ତୀ ଗଲେ, ସଂସାର ଭାସିଯିବ । ମୋତେ ଯେଉଁ ଦଣ୍ଡ ଦେଉଛନ୍ତି ଦିଅନ୍ତୁ କିନ୍ତୁ ଗୃହକର୍ତ୍ତୀରେ ଯେପରି ଆଞ୍ଚ ନ ଆସେ । ଘରେ ଥିବାବେଳେ ସଦାସର୍ବଦା ତୁଳସୀ ମାଳ ଧରି ବସିଥିବି । କାହାରି ଘରକୁ ଯିବିନାହିଁ । ଜଣେ ଜଣେ ଲୋକ ଦେଖି ଘରକୁ ଖାଇବାକୁ ଡାକିବି । ସେମାନଙ୍କ ପାଖରେ କହିବି, ମୋତେ ଲୋକମାନେ ଭସାଇ ଦେଲେ । ମୁଁ ସଦାସର୍ବଦା ସନ୍ତୋଷ । ଏମାନଙ୍କ ଭିତରୁ ଫେରିବାବେଳେ ଜଣେ ଜଣେ କହନ୍ତି ଠାକୁର ଘରେ କିଏ ନା ମୁଁ କଦଳୀ ଖାଇନାହିଁ । ଅର୍ଥାତ୍ ଏହା ଭିତରେ କିଛି ଅଛି ?

---

**ଧାରାବାହିକ ଉପନ୍ୟାସ:—**



( ପୂର୍ବକଥା )

( ଜମିଦାରୀ ଉଠିଯିବା ପରେ ସଂଗ୍ରାମ କେଶରୀ ଇଂଜିନିୟର ହୋଇ ଗ୍ରାମ ଛାଡ଼ି ସହରକୁ ଚାଲି ଯାଇଥିଲେ । ଗ୍ରାମକୁ ଫେରିବେ ନାହିଁ ବୋଲି ସଂକଳ୍ପ କରି ଘର ଓ ବଗିଚା ବ୍ୟତୀତ ଆଉସବୁ ଚାଷଜମି ମଧ୍ୟ ବିକ୍ରୀ କରି ଦେଇଥିଲେ । କିନ୍ତୁ ଜୀବନର ଧୂସର ଅପରାହ୍ଣରେ ଚାକିରୀରୁ ଅବସର ନେବାପରେ ପୁଣି ତାଙ୍କ ପ୍ରିୟ ପାଣିପାଟପୁର ଗ୍ରାମର ତାଳ ତମାଳ ଘେରା ସେଇ ରୂପ ଆଖି ଆଗରେ ଆସି ଉଭା ହେଲା । ଗୋପନରେ ସେ ସମ୍ବାଦ ପାଇଲେ ସେଇ ଗ୍ରାମ ନିକଟରେ ସରକାର ରାସାୟନିକ ସାରକାରଖାନା ବସାଇବାକୁ ସ୍ଥିର କରିଛନ୍ତି । ପାଣିପାଟପୁରର କାଦୁଅ ମାଟି ସୁନା ରଙ୍ଗରେ ଝଲ୍‌ମଲ୍ ହେବାକୁ ଯାଉଛି ।

ସଂଗ୍ରାମ କେଶରୀ ଗ୍ରାମକୁ ଫେରିଲେ । ଚଢ଼ା ଦରରେ ଚାଷଜମି କିଣିଲେ ସାରକାରଖାନାକୁ ଆଖି ଆଗରେ ରଖି । ଲକ୍ଷ୍ୟ କଲେ, ଏଇ କେତେବର୍ଷ ମଧ୍ୟରେ ପାଣିପାଟପୁର ଗ୍ରାମର ଚେହେରା ବଦଳି ଯାଇଛି । ବାପା ଜମିଦାର ଥିଲାବେଳେ ତାଙ୍କ ପାଖରେ ଯେଉଁ ଶ୍ୟାମସୁନ୍ଦର ଗୁମାସ୍ତା ଥିଲେ, ସେ ହୋଇଛନ୍ତି ସରପଞ୍ଚ । ଏମ୍. ଏଲ୍. ଏ. ନୀଳାମ୍ବର ବାବୁଙ୍କ ପ୍ରତିପତ୍ତି ପୂର୍ବେ ଥିବା ଜମିଦାରଙ୍କ ପ୍ରତିପତ୍ତିକୁ ମଧ୍ୟ ବଳି ପଡ଼ିଛି । ଇଂଜିନିୟରିଂ ପାଶ୍ କରି ଗ୍ରାମର ଜଣେ ତରୁଣ ନିରଞ୍ଜନ ବେକାର ହୋଇ ବସିଛି । ଚାଷଜମି ବିକ୍ରୀ କରି ଚାଉଳ କଳ, ଅଟାକଳ ବସାଇବାକୁ ଅଗଣି ମଉସା ଆଗ୍ରହୀ ହୋଇ ଉଠିଛନ୍ତି । ଦୋଳ ମେଳଣକୁ କେନ୍ଦ୍ର କରି ପାଣିପାଟପୁର ଓ ବ୍ରାହ୍ମଣ ଶାସନ ମଧ୍ୟରେ ଲାଗିଛି ତୁମୁଳ ସଂଘର୍ଷ ।

ସଂଗ୍ରାମ କେଶରୀ ହେଲେ ଏହି ସମସ୍ୟା-ଜଟିଳ ଗ୍ରାମ୍ୟ ରାଜନୀତିର ନୂତନ ନାୟକ.....ତାଙ୍କୁ କେନ୍ଦ୍ର କରି ଆଖପାଖ ଅଞ୍ଚଳର ଜୀବନ ପ୍ରବାହରେ ହଠାତ୍ ଏକ ଜୁଆର ଆସିଲା । ତାପରେ ...? )

## ॥ ନଅ ॥

ଘରିଆଡ଼େ ପ୍ରାଚୀରପତ୍ର ମରା ହୋଇଛି । ଉଙ୍ଗ୍ରୁ ଦିଆ ଯାଇଛି ମନ୍ତ୍ରୀ ଆସିବେ । ସଭା ହେବ । ସଭା ହେବ ମେଳଣ ପଡ଼ିଆରେ । ଦୋଳ ମେଳଣଟି । ଏଥର ସୁରୁଖୁରୁରେ ହୋଇଗଲା । ବ୍ରାହ୍ମଣ ଶାସନର ଠାକୁର ବିମାନ ଆସିଲାବେଳେ ଠେଙ୍ଗାଧରି ଫୌଜଦାରୀ କରିବେ ବୋଲି ପାଣିପାଟପୁର ଗାଁର ଯେଉଁ ଲୋକେ ଯାଇକରି ଜଗିଥିଲେ, ସେମାନେ ସଂଗ୍ରାମ କେଶରୀଙ୍କ ଯୋଡ଼-ହସ୍ତ ଦେଖି କାନ୍ଧରୁ ଠେଙ୍ଗା କାଢ଼ି ତଳେ ଥୋଇଦେଲେ । ସଂଗ୍ରାମ କେଶରୀ ବୁଝାଇ ଦେଲେ, ଆମ ଗାଁ ଲୋକ ତାଙ୍କ ଗାଁଆ ଲୋକଙ୍କ ଭିତରେ ଫରକ ଥାଇପାରେ, କିନ୍ତୁ ତାଙ୍କ ଗାଁଆ ଠାକୁର ଆମ ଗାଁ ଠାକୁର ଭିତରେ ତଫାତ୍ ନାହିଁ । ଯେଉଁ-ମାନେ ଠାକୁର ବିମାନ ନେଇ ସେମାନଙ୍କ ଦେହରେ ଠେଙ୍ଗା ବାଜିଲେ, ଠାକୁରଙ୍କୁ ମାଡ ଦେଲାଭଳି ହେବ । ଯେ ଠାକୁରଙ୍କୁ ବାଡ଼େଇବ ସେ ଆଗ ମରିବ ମାଡ଼ ଦେଇ...!

ଜ୍ଞାନ ଚକ୍ଷୁ ଉନ୍ମୀଳନ କରି ଠେଙ୍ଗାଧାରୀ ବିଦ୍ରୋହୀ ଲୋକେ ବ୍ରାହ୍ମଣ ଶାସନର ଦୋଳ ବିମାନ ଆସିଲା-ବେଳେ ଲମ୍ବ ଲମ୍ବ ଗୋଡ଼ ତଳେ ପଡ଼ିଥିଲେ । ଘଣ୍ଟ, ଘଣ୍ଟା, ଭେରୀ, ତୁରୀ ନାଦ ସାଙ୍ଗକୁ ପାଣିପାଟପୁର ଗାଁଆ ଆଉ ବ୍ରାହ୍ମଣ ଶାସନ ଲୋକଙ୍କ ସମ୍ମିଳିତ ହରି-ବୋଲ ଧ୍ୱନିରେ ମେଳଣ ପଡ଼ିଆ କମ୍ପମାନ ହୋଇ-ଥିଲା ।

ନିରଞ୍ଜନ କାନ୍ଧରେ ହାତ ପକାଇ ସଂଗ୍ରାମ କେଶରୀ କହିଥିଲେ, ନିରଞ୍ଜନ ଦୋଳ ବିମାନ ଭିତରେ ଯେଉଁ ଦେବ ବିଗ୍ରହ ଅଛି, ସେ ପ୍ରକୃତରେ ଈଶ୍ୱରଙ୍କ ପ୍ରତିମୂର୍ତ୍ତି କି ନୁହେଁ, ସେ କଥା ମୁଁ ଜାଣେ ନାହିଁ । ଈଶ୍ୱରଙ୍କ ଉପରେ ମୋର ଖୁବ୍ ବିଶ୍ୱାସ ନାହିଁ । ମୁଁ ଜାଣେ, ଈଶ୍ୱର ପ୍ରକୃତରେ ଥାଆନ୍ତୁ କି ନ ଥାନ୍ତୁ, ଈଶ୍ୱର ଅଛନ୍ତି ବୋଲି ଲୋକଙ୍କ ଭିତରେ ଯେଉଁ ବିଶ୍ୱାସ ଅଛି, ତାହା ହେଉଛି ବଡ଼ କଥା । ଈଶ୍ୱର ହେଉଛନ୍ତି ବିଶ୍ୱାସର ପ୍ରତୀକ । ମାନିଲେ ଠାକୁର, ନ ମାନିଲେ ପଥର ! ବିଶ୍ୱାସ ହିଁ ଠାକୁର । ଲୋକଙ୍କ ଭିତରେ ଯେ ଆଜି ପରସ୍ପର ପ୍ରତି ବିଶ୍ୱାସ କମି ଯାଉଛି, ତାହାହିଁ ହେଉଛି ସବୁ ବିଭ୍ରାଟର ମୂଳ କାରଣ । ବ୍ରାହ୍ମଣ ଶାସନର ଦୋଳ ବିମାନକୁ ପାଣି-ପାଟପୁର ଗାଁଆର ମେଳଣ ପଡ଼ିଆ ଭିତରେ ବସିବାକୁ ଦେଇ ମୁଁ ଦୁଇ ଗାଁଆ ଭିତରେ ସେ ହଜି ଯାଇଥିବା ବିଶ୍ୱାସକୁ ପୁଣି ଫେରାଇ ଆଣିଛି । ଏଥିରେ କାହାର ହାର ଜିତ୍ ନାହିଁ ।

ନିରଞ୍ଜନ ସଂଗ୍ରାମ କେଶରୀଙ୍କ କଥା ଶୁଣି ସମ୍ମତିରେ ମୁଣ୍ଡ ଟିଙ୍ଗାରିଲେ । ସୁରୁଖୁରୁରେ ଯେପରି ମେଳଣ ଯାତ୍ରା ଶେଷହେବ ସେଥିପାଇଁ ସେ ଦୁଇ ଗାଁଆର ସ୍କୁଲ ପିଲାଙ୍କୁ ନେଇ ଏକ ସ୍ୱେଚ୍ଛାସେବକ ବାହିନୀ ଗଢ଼ିଥିଲା । ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ପୋଲିସ ଆସିବା ଦରକାର ହେଲାନାହିଁ । ଯେଉଁ ଦୁଇଜଣ କନେଷ୍ଟବଳ କାଳେ କଅଣ ଅଘଟଣ ଘଟିବ ବୋଲି ଆଶଙ୍କା କରି ପଇଁତରା ମାରିବାକୁ ଆସିଥିଲେ, ସେମାନେ ମେଳଣ ମଣ୍ଡପ ପାଖ ବରଗଛ ମୂଳେ ବିଡ଼ି ଟାଣି ଟାଣି ଚା' ଆରେଦନ ଥାନାକୁ ଫେରିଗଲେ । ଖରା ଫେରିଗଲା ତୃଣୀର ଭିତରକୁ । ଖରାର ଆଘାତରେ କାହାର ଦେହରୁ ଧାରେ ହେଲେ ଲହୁ ବହିଲା ନାହିଁ ।

ଏ ବର୍ଷ ମେଳଣଟା ଖୁବ୍ ଜମିଥିଲା । ଫୌଜଦାରୀ ହେବା ଉପରେ ଗତ ଦୁଇବର୍ଷ ହେଲା ଯେଉଁ ସ୍ତ୍ରୀ ଲୋକମାନେ ମେଳଣ ଯାତ୍ରା ଦେଖିବାକୁ ଘରୁ ଗୋଡ଼ କାଢ଼ୁ ନ ଥିଲେ, ସେମାନେ ଏଥର ପେଡ଼ି ଲୁଗା ପିନ୍ଧି ଧାଡ଼ବାନ୍ଧି ଯାତ୍ରା ଦେଖି ଆସିଲେ । ମାଟି କଣ୍ଢେଇ କାରିଗର, ଗୁଡ଼ିଆ, ବେଲୁନ୍ ବିକାଳୀ ଆଉ ଯେ ବାଦାମବାଲାର ବ୍ୟବସାୟ ମଧ୍ୟ ଗତ ଦୁଇବର୍ଷ ହେଲା

ମାନ୍ଦା ପଡ଼ ଯାଇଥିଲା, ଏ ବର୍ଷ ସେମାନଙ୍କ କାରବାର ବ ବେଶ ଗରମ ହେଲା ।

ସଂଗ୍ରାମ କେଶରୀ ସ୍ୱସ୍ତିର ନିଶ୍ୱାସ ମାରିଲେ । ସରପଞ୍ଚ ଶ୍ୟାମସୁନ୍ଦର କହିଲେ, ଆଜ୍ଞା ! ଆପଣ ଏଥର ଇଜ୍ଜତ ରଖିଦେଲେ । ଅସାଧ ସାଧନ କଲେ । ନ ହେଲେ ନିଶ୍ଚୟ ଏ ବର୍ଷ କୋଡ଼ିଏ ତିରିଶି ଜଣଙ୍କ ମୁଣ୍ଡ ଫାଟି ଥାଆନ୍ତା ।

ସଂଗ୍ରାମ କେଶରୀ ହସିଲେ ।

ଉତ୍ତର ଦେଇଥିଲେ, ଏ ସେହି ନଟବର ନାଗର ବଂଶୀଧରଙ୍କ ମାୟା । ବୁଝିଲ ଶ୍ୟାମସୁନ୍ଦର, ଆମେ ସବୁ ନିମିତ୍ତ ମାତ୍ର····· ।

ପାଣିପାଟପୁର ଗାଁଆରେ ମେଳଣ ଯାତ୍ରା ସୁରୁଖୁରୁରେ ହୋଇଗଲା । ଏ ଖବର ସାମାନ୍ୟ ବିଳମ୍ବରେ ଶ୍ୟାମସୁନ୍ଦର ମାନାମ୍ବର ବାବୁଙ୍କୁ ଦେଇଥିଲେ । ଖବର ଶୁଣି ତାଙ୍କ ମୁହଁରେ ହଠାତ୍ ହରଷର ଆଭାସ କିଛି ସେ ପାଇଲେ ନାହିଁ । ମାନାମ୍ବର ବାବୁ କିଛି ସମୟ ଗୁମ୍ମାରି ରହିଲା ପରେ କହିଲେ, ମୁଁ ତ ଆଶ୍ଚର୍ଯ୍ୟ ହେଉଛି । ପୋଲିସ ମତେ ଖବର ଦେଇଥିଲା, ବ୍ରାହ୍ମଣ ଶାସନ ଲୋକେ ଗଣ୍ଡଗୋଳ କରିବା ପାଇଁ କଟକରୁ ଗୁଣ୍ଡା ଅଣାଉଛନ୍ତି । ଫୌଜଦାରୀ କେସ୍ ହେଲେ ମକଦ୍ଦମା ଲଢ଼ିବା ପାଇଁ ଚାନ୍ଦା ଅସୁଲ କରୁଛନ୍ତି । ଅଥଚ··· !

କଥା ଅଧାରୁ ବନ୍ଦ ରଖି ମାନାମ୍ବର ବାବୁ ହାତ ଉପରେ ଗାଲ ଭରିଦେଇ କଅଣ ଭାବିଥିଲେ । ତା' ପରେ ଚଟ୍‌କିନା ଉତ୍ତର ଦେଇଥିଲେ, ଏଥିରେ ନିଶ୍ଚୟ ପଲିଟିକ୍‌ସ ଅଛି ବୁଝିଲ ଶ୍ୟାମସୁନ୍ଦର ! ଏ ସମସ୍ତ ଘଟଣାରୁ ମୋ ନାକରେ ଷଡ଼ଯନ୍ତ୍ରର ଆଇଁସ ଗନ୍ଧ ବାଜୁଛି ···ତମେ ଟିକିଏ ସାବଧାନ ରୁହ । ତମ ସରପଞ୍ଚ ଗାଦି ତଳୁ ମାଟି ଖସି ଖସି ଯାଉଛି···କିଏ ଜାଣେ, ମୋ ଆସେମ୍ବ୍ଲି ସଭ୍ୟପଦ ଉପରେ ମଧ୍ୟ ବିପଦ ଆସି ଯାଇପାରେ···ଶ୍ୟାମସୁନ୍ଦର ! ଝଡ଼ ଆସୁଛି । ସ୍ଲେଟ ଘାସଭଳି ମୁଣ୍ଡ ନୁଆଁଇ ଦେଲେ ଏ ଝଡ଼ ଛୁଇଁପାରିବ ନାହିଁ···ଏ ମୋ ଭଳି ଶାଳ-ପିଆଶାଳ ଗଛ ଉପାଡ଼ିବା ସଙ୍ଗେ ସଙ୍ଗେ ଚମଭଳି ଘାସ, ଲେଉଟିଆ ଗୁଳ୍ମ-ଲତାକୁ ଉପାଡ଼ ନେବ···

ଘଟଣାଟା କଅଣ ଜାଣିବା ପାଇଁ ଶ୍ୟାମସୁନ୍ଦର ନଜର କାନଦୁଇଟି ମାନାମ୍ବର ବାବୁଙ୍କ ମୁହଁ ପାଖକୁ ନେଇଥିଲେ । କିନ୍ତୁ ମାନାମ୍ବର ବାବୁ ଗଭୀର ଜଳର ମାଛ । ଦଣ୍ଡିକର ଭଳି ପାଣି ଉପରେ ଫର ଫର ହେବା ତାଙ୍କର ସ୍ୱଭାବ-ବିରୁଦ୍ଧ । ସେ ଚଟକିନା ପ୍ରସଙ୍ଗ ବଦଳାଇ ଦେଇ କହିଲେ, ସେ ଯାହାହେଉ, ପଲିଟିକ୍‌ସରେ ମୋତେ କେହି ବନେଇ ପିବେନାହିଁ । ମୁଁ ମନ୍ତ୍ରୀ କପିଳେଶ୍ୱର ବାବୁଙ୍କର ଗୋଟାଏ ପ୍ରୋଗ୍ରାମ ଏଠାରେ କରିବି·· ଶ୍ୟାମସୁନ୍ଦର ! ସଭା ହେବ । ସେଇ ମେଳଣ ପଡ଼ିଆରେ ସଭା ହେବ । ତମେ ପୋଷ୍ଟର ଛାପ···ପ୍ରଚାରପତ୍ର ବାଣ୍ଟ···ଓଡ଼ିଶାର ବିଶିଷ୍ଟ ଜନନେତା, ମନ୍ତ୍ରୀକପିଳେଶ୍ୱର ସେ ସଭାରେ ଭାଷଣ ଦେବେ··· ।

ଶ୍ୟାମସୁନ୍ଦର ମାନାମ୍ବର ବାବୁଙ୍କ ମୁହଁକୁ କେବଳ ଏକ ନିର୍ବୋଧ ଶିଶୁଭଳି ଚାହିଁ ରହିଲେ, କିଛି ବୁଝି ପାରିଲେ ନାହିଁ । କିଛି ପ୍ରଶ୍ନ କରିପାରିଲେ ନାହିଁ । କିଛି ଉତ୍ତର ମଧ୍ୟ ଦେଇପାରିଲେ ନାହିଁ ।

ଚାକର ଆସି ଖବର ଦେଲା ଆଜ୍ଞା ! ଲୋକେ ଦେଖା କରିବେ ବୋଲି ଆସି ଅନେକବେଳୁ ଅପେକ୍ଷା କରି ବସିଛନ୍ତି । ଡେରି ହେବାରୁ ଗଣ୍ଡଗୋଳ କଲେଣି······

ମାନାମ୍ବର ବାବୁଙ୍କ ଦୁଇ ଆଖିରୁ ସତେ ଯେପରି ଅଗ୍ନିବର୍ଷଣ ହେଲା ! ଚାକରକୁ କ୍ରୁଦ୍ଧ ଦୃଷ୍ଟିରେ ଚାହିଁ ସେ ଚିତ୍କାର କଲେ, ଯା କହିଦେ- ମୋ ସାଙ୍ଗରେ ଦେଖାହୋଇ ପାରିବ ନାହିଁ—ମନ୍ତ୍ରୀ ଆସିବେ—ମେଳଣ ପଡ଼ିଆରେ ସଭାହେବ—ଯାହାର ଯାହା କହିବାର କଥା ସେମାନେ ମନ୍ତ୍ରୀଙ୍କୁ କହିବେ—

ଶ୍ୟାମସୁନ୍ଦର ମାଳାମ୍ବର ବାବୁଙ୍କ କ୍ରୋଧର ଉତ୍ତାପକୁ ପ୍ରଶମିତ କରିବା ପାଇଁ କହିଲେ, 'ଆଜ୍ଞା' ସେମାନେ ଆମର ସମର୍ଥକ ଲୋକ ଆମକୁ ଭୋଟ ଦେଇଥିଲେ । ସେମାନଙ୍କ ସହିତ ଠିକଏ ଦେଖା କଲେ—

ଗୃହକର ସେତେବେଳକୁ ଚାଲି ଯାଇଥିଲେ ।

ମାଳାମ୍ବର ବାବୁ ଆଖି ମିଟିମିଟି କରି କହିଲେ, ଦୁଇବର୍ଷ ତଳେ ସେମାନେ ମତେ ଭୋଟ ଦେଇଥିଲେ ପୁଣି ତିନବର୍ଷ ପରେ ମତେ ସେମାନେ ଭୋଟଦେବେ ଅଲବତ୍ ଦେବେ । ଜେଲ ଯାଇ, ବ୍ରିଟିଶ ସରକାର ସାଙ୍ଗରେ ଲଢ଼େଇ କରି ଆମେ ତାଙ୍କୁ ଭୋଟ ଦେବା ଅଧିକାର ଆଣି ଦେଇଛୁ । ସେମାନେ ଆମକୁ ଭୋଟ ଦେବେ ନାହିଁ ତ ଆଉ କାହାକୁ ଭୋଟ ଦେବେ ? ଶ୍ୟାମସୁନ୍ଦର ! ସେମାନେ ନିଶ୍ଚୟ ମତେ ଭୋଟ ଦେବେ, କିନ୍ତୁ ପାର୍ଟି ମତେ ନିର୍ବାଚନ ଲଢ଼ିବା ପାଇଁ ଏଥର ଟିକେଟ ଦେବ ତ ?

ମାଳାମ୍ବର ବାବୁଙ୍କ କଥାରେ ଯେତିକି ପ୍ରଶ୍ନବାଚକ ଚିହ୍ନ ଅଧିକ ହେଉଥିଲା, ଶ୍ୟାମସୁନ୍ଦରଙ୍କ ମନ ସେତିକି ଦୁର୍ବୋଧିତ ର ରହସ୍ୟ-ଜାଲରେ ଛନ୍ଦିହୋଇ ପଡ଼ୁଥିଲା । କିନ୍ତୁ ନିଜ କୌତୁହଳ ନିବୃତ୍ତି ପାଇଁ ସେ ମାଳାମ୍ବର ବାବୁଙ୍କୁ କିଛି ପ୍ରଶ୍ନ କରିପାରୁ ନ ଥିଲେ । କାରଣ ମାଳାମ୍ବର ବାବୁଙ୍କ ଦୁଇ ଆଖିରେ କ୍ରୋଧର ଅନଳ ସେ ପର୍ଯ୍ୟନ୍ତ ଧୁଁଧୁଁ ହୋଇ ଜଳୁଥିଲା ।

ମାଳାମ୍ବର ବାବୁ ଚେୟାର ଛାଡ଼ି ଉଠି ଠିଆ-ହେଲେ । ଖଦଡ଼ ଚଦରଟାକୁ କାନ୍ଧ ଉପରେ ଦୁଇ ତିନ ଥର ଟାଣି ଓଟରା କଲେ । ତା'ପରେ ପକେଟରୁ ପାଞ୍ଚଟା ଦଶ ଟଙ୍କିଆ ନୋଟ୍ କାଢ଼ି କହିଲେ ନିଅ — ପ୍ରତି ଗ୍ରାମର ସାହି ଟୋକାଙ୍କ ଭିତରୁ ଜଣ ଜଣକୁ ପାଞ୍ଚ ଟଙ୍କା କରି ଦିଅ—ସେମାନେ ମନ୍ତ୍ରୀଙ୍କ ସଭା ସମ୍ପର୍କରେ ପୋଷ୍ଟର ଲେଖି କାନ୍ଥରେ ମାରନ୍ତୁ—ସଭା ସ୍ଥଳକୁ ଦୁଇ ତିନଟା ଶୋଭାଯାତ୍ରା ଯେପରି ଆସିବ— ବ୍ୟାଣ୍ଡବାଜା ବଜାଇ ସେମାନେ ଶୋଭାଯାତ୍ରା କରି ଆସିବେ—କିଛି ସ୍ତ୍ରୀ ଲୋକ ଶୋଭାଯାତ୍ରା ଆଗରେ ଥିବା ଦରକାର । ଏଁ—ସ୍ତ୍ରୀଲୋକ କେହି ଶୋଭାଯାତ୍ରାରେ ଆସିବାକୁ ରାଜି ହେବେନାହିଁ ! ତାହାହେଲେ ବାଳିକା ସ୍କୁଲ ଛାତ୍ରୀଙ୍କୁ ନେଇ ଆସ···ହେଡ଼ମିଷ୍ଟ୍ରେସ୍‌କୁ ମୋ ନାମ କହିବ—ମନ୍ତ୍ରୀ ଆସିବେ—କପିଳେଶ୍ୱର ବାବୁଙ୍କର ଦୃଢ଼ ଧାରଣା ହେବା ଉଚିତ ଯେ ମୋ ପଛରେ ପ୍ରବଳ ଜନମତ ଅଛି···ଶ୍ୟାମସୁର ! ଲୋକମତ ସୃଷ୍ଟି କରିବାକୁ ହୁଏ···ଦରକାର ହେଲେ ଟଙ୍କା ଖର୍ଚ୍ଚ କରି ଲୋକମତ ସୃଷ୍ଟି କରିବାକୁ ହେବ— ନିଅ ଆଉ ପଚାଶ ଟଙ୍କା ।

ଶ୍ୟାମସୁନ୍ଦର ବାବୁ ସଭାର ଆୟୋଜନ କରିବାକୁ ଟଙ୍କା ଶହେ ଧରି ଉଠି ଚାଲି ଆସୁଥିଲେ । ପଛରୁ ପୁଣି ଡାକିଲେ ମାଳାମ୍ବର ବାବୁ କହିଲେ, ସଭାଦିନ ଗଜରା ଫୁଲମାଳ ବ୍ୟବସ୍ଥା କରିବ—କେତେଟା ହାର କହିଲ ଦେଖି ।

ଶ୍ୟାମସୁନ୍ଦର ହଠାତ୍ କିଛି କହିପାରିଲେ ନାହିଁ । ମାଳାମ୍ବର ବାବୁ ନିଜେ କହିଲେ, ଦୁଇଟା ହାର—ମୁଁ ସଭାପତି ହେବି ତ···!

ଫୁଲହାର ପିନ୍ଧିଥିବା ଭଳି ଗ୍ରୀବାଭଙ୍ଗୀ କରି ଏତେବେଳକେ ମାଳାମ୍ବର ବାବୁ ମୁହଁରେ ହସ ଫୁଟାଇଲେ । ତାଙ୍କ ମୁହଁର ସେ ଅର୍ଦ୍ଧ ମୁକୁଳିତ ହସ ମଧ୍ୟ ଶ୍ୟାମସୁନ୍ଦରଙ୍କ ମୁହଁକୁ ସଂକ୍ରମିତ ହୋଇ ଆସିଲା ।

ସଭା ଆୟୋଜନ ପାଇଁ ସାଇକେଲ ଖଣ୍ଡିକ ଧରି ଏ ଗ୍ରାମରୁ ସେ ଗ୍ରାମକୁ ଧାଇଁଲାବେଳେ ମାଳାମ୍ବର ବାବୁଙ୍କ ହସ କଥା ସେ ଭୁଲିପାରୁ ନ ଥିଲେ । ମାଳାମ୍ବର ବାବୁ ଦଶଖଣ୍ଡ ଗ୍ରାମର ମୁଖିଆ ମୁଖିଆ ବେକାର ତରୁଣଙ୍କୁ ପାଞ୍ଚଟଙ୍କା ଲେଖାଏଁ ଦେଇ ମନ୍ତ୍ରୀଙ୍କ ସଭାପାଇଁ ପ୍ରଚାର କରିବାକୁ କହିଥିଲେ । ସେ ଟଙ୍କା ରତ୍ନମଣିଙ୍କୁ ଦେଇ ଦେଇଛନ୍ତି ଶ୍ୟାମସୁନ୍ଦର । ୟୁପି ସ୍କୁଲର ପ୍ରଧାନ ଶିକ୍ଷକ ତାଙ୍କର ପରିଚିତ ଲୋକ । ତାଙ୍କର ଗତବର୍ଷ ଦୂର ମାଳଅଞ୍ଚଳକୁ ବଦଳି ହୋଇଥିଲା । ସେ ମାଳାମ୍ବର ବାବୁଙ୍କୁ କହି ମାଷ୍ଟ୍ରଙ୍କ

ବଦଳ ବନ୍ଦକରି ଦେଇଥିଲେ । ମନ୍ତ୍ରୀ ଆସୁଛନ୍ତି ବୋଲି ଶ୍ୟାମସୁନ୍ଦର କହିବା ମାତ୍ରେ ପଚିଶ ଜଣ ଯୁବକଙ୍କୁ ପ୍ରଚାର ପାଇଁ ପଠାଇ ଦେଇଛନ୍ତି । ଶ୍ୟାମ-ସୁନ୍ଦର ଶୋଭାଯାତ୍ରା ଆଗରେ କିଛି ସ୍ତ୍ରୀ ଲୋକଙ୍କୁ ଆଣିବା ଦାୟିତ୍ୱ ଦେଇଛନ୍ତି ରତ୍ନମଣିଙ୍କ ଉପରେ । ଗ୍ରାମ ଭିତର ଦେଇ ଶୋଭାଯାତ୍ରା ଗଲାବେଳେ ସେମାନେ ଶଶୁର, ଦେଢ଼ଶୁରମାନଙ୍କ ଆଗରେ ଯିବା ଦରକାର ନାହିଁ । ସେମାନେ ଆଗରୁ ମେଳଣ ପଡ଼ିଆ ପାଖରେ ବସିଥିବେ । ଶୋଭାଯାତ୍ରା ବ୍ୟାଣ୍ଡ ବଜାଇ ସେଠାରେ ପହଞ୍ଚିବା ପାଞ୍ଚ ମିନିଟ ଆଗରୁ ସେମାନେ ଆଗରୁ ଧାଡ଼ିବାନ୍ଧି ଠିଆ ହୋଇଯିବେ । ମନ୍ତ୍ରୀ ଜାଣିବେ ଯେ ଶୋଭାଯାତ୍ରାରେ ମହିଳାମାନେ ଆସିଥିଲେ । ମନ୍ତ୍ରୀଙ୍କ ସାଙ୍ଗରେ ଆସିଥିବା ଫଟୋଗ୍ରାଫ଼ର ସେ ଫଟୋ ଉଠାଇ ଖବର କାଗଜରେ ଛାପି ଦେବ ।

ପ୍ରାଚୀରପତ୍ର ସରି ହୋଇଛି । ମାଟି ଘର କାନ୍ଥରେ ଚକ୍ ଖଡ଼ିରେ ଲେଖା ହୋଇଛି, ମନ୍ତ୍ରୀ ଆସିବେ । ସଭା ହେବ । ମେଳଣ ପଡ଼ିଆରେ ଦୋଳ ମେଳଣ ପରେ ମଣିଷ ମେଳା ବସିବ !

॥ ଦଶ ॥

ମନ୍ତ୍ରୀ ଆସିବେ !

ତା' ଆଗରୁ ସଭାର ଆୟୋଜନ କିପରି ହୋଇଛି ଦେଖିବା ପାଇଁ ମାଳାମ୍ବର ବାବୁ ନିଜେ ଆସିଛନ୍ତି ଗ୍ରାମକୁ । ମନ୍ତ୍ରୀ ଆସି ଡାକବଙ୍ଗଳାରେ ବିଶ୍ରାମ କରୁଛନ୍ତି । ଶୋଭାଯାତ୍ରାର ଧ୍ୱନି ଶୁଣିଲେ, ଲୋକ ଜମିଲେ, ସେ ସଭାକୁ ଆସିବେ ।

ସଭା ସ୍ଥଳରେ ମାଇକରେ 'ଦୁଇ ସଉତୁଣୀ କଳି' ରେକର୍ଡ ବାଜୁଛି । ବୟସ୍କ ଲୋକଙ୍କ ଅପେକ୍ଷା ପିଲାଙ୍କ ଭିଡ଼, ସେଥିପାଇଁ ବେଶି ଜମି ଯାଇଛି । ମାଳାମ୍ବର ବାବୁ ଲକ୍ଷ୍ୟ କଲେ, ମେଳଣ ମଣ୍ଡପ ପାଖ ବରଗଛକୁ ଆଉଜି ଅଗଣି ବୁଢ଼ା ବସି ରହିଛନ୍ତି । ସେ ତାଙ୍କ ପାଖକୁ ଗଲେ । ପଚାରିଲେ, ମଉସା ! ଶୁଣିଲି ଆପଣ ଏ ଥୋଟା ଚାଷଜମି ସବୁ ବିକିଦେଲେ !

ଅଗଣି ବୁଢ଼ା ସିଧାହୋଇ ବସିଲେ ।

କହିଲେ, ଆଉ କିଛି ଉପାୟ ନ ଥିଲା । ଚାଷ ଜମିକୁ କେବଳ ଚାହିଁ ବସିଲେ ଆଉ ଘର ଚଳୁନି । ମୂଳିଆ ମଜୁରି ଯାହା ହେଲାଣି ତମେ ତ ବାପା ନିଜେ ଦେଖୁଛ । ସେଥିରେ ପୁଣି ଗତ ଦୁଇବର୍ଷ ଧରି ମରୁଡ଼ି ! ଆମେ ଉଚ୍ଛନ୍ନ ହୋଇଗଲୁ । ଜମି ବିକି ଧାନ କଳ, ଚୂଡ଼ା କଳ ଦୁଇଖଣ୍ଡ ପକାଇଛୁ । ସେଥିରେ ଧୋଇ ନାହିଁ କି ମରୁଡ଼ି ନାହିଁ । କଞ୍ଚା ପଇସା ହାତକୁ ଗଣ୍ଡାଏ ଆସୁଛି···ଧାନ ଗଣ୍ଡାକ ବି ବରଷକ ଅଣ୍ଟି ଯାଉଛି···

ମାଳାମ୍ବର ବାବୁ ଆକାଶକୁ ଚାହିଁଲେ । ଭସା ମେଘ କେତେଖଣ୍ଡ ଇତଃସ୍ତତ ଭାବରେ ଆକାଶରେ ଭାସି ବୁଲୁଛି । ଖରାଦିନ ହୋଇଥିଲେ ବି ପବନ ଲାଗୁଛି ଶୀତଳ, ଓଦା, ଓଦା । ଯଦି ବର୍ଷା ହୁଏ !

ନା— ଅଗଣି ବୁଢ଼ାଙ୍କ କଥା ଶୁଣିବାକୁ ତାଙ୍କର ସମୟ ନାହିଁ । ଶ୍ୟାମସୁନ୍ଦର ଚେୟାର ସଜାଡ଼ୁଛନ୍ତି । ଲୋକ ଜମିଲେଣି । ବେଶି ଲୋକଙ୍କୁ ଅପେକ୍ଷା କରି ବିଳମ୍ବ କଲେ, ହୁଏତ ମୂଳରୁ ବର୍ଷା ଯୋଗୁ ସଭା ପଣ୍ଡ ହୋଇଯିବ ।

ଶୋଭାଯାତ୍ରା ବୋଧହୁଏ ମଠସାହି ଡେଇଁ ଆସିବଣି । ସେ ଆସିବାବେଳେ ବାଟରେ ଦେଖି ଆସିଥିଲେ । କେବଳ ୟୁ. ପି. ସ୍କୁଲ ପିଲାଙ୍କୁ ନେଇ ଶୋଭାଯାତ୍ରା । ଶ୍ୟାମସୁନ୍ଦର ଉପରେ ଦାୟିତ୍ୱ ଦେଲେ ସବୁ କାମ ଏମିତି !

ମନ୍ତ୍ରୀ କପିଳେଶ୍ୱର ବାବୁଙ୍କୁ ସଭାରେ ଯୋଗ କରିବାକୁ ସେ ଖବର ପଠାଇଲେ । ମନ୍ତ୍ରୀ ଆସୁଛନ୍ତି, ଯେ ଯେଉଁଠି ଠିଆ ହୋଇଛନ୍ତି ସେମାନେ ବସିଆସନ୍ତୁ —ମନ୍ତ୍ରୀ ପହଞ୍ଚିବା କ୍ଷଣି କପିଳେଶ୍ୱର ବାବୁ—ଜିନ୍ଦା-ବାଦ ବୋଲି ଧ୍ୱନି ଦିଅନ୍ତୁ—ଇତ୍ୟାଦି ମାଇକ୍‌ରେ କହିବାକୁ ସେ ଶ୍ୟାମସୁନ୍ଦରଙ୍କୁ ପରାମର୍ଶ ଦେଲେ ।

ସବୁ ସଭା ସମିତିରେ ତାଙ୍କୁ ଏହି ପରାମର୍ଶଦାତା ଭୂମିକା ଗ୍ରହଣ କରିବାକୁ ହୁଏ । ପାଣିପାଣ୍ଟପ୍ରିୟ ପଞ୍ଚାୟତ ହେଉଛି ତାଙ୍କର ଭିତିଭୂମି—ଏହି ଅଞ୍ଚଳରୁ ସେ ଶତକଡ଼ା ନବେ ଭୋଟ ପାଆନ୍ତି । ଏଥର କିନ୍ତୁ ତାଙ୍କ ମନରେ ଭୟ ଜାତ ହୋଇଛି । ଅବସରପ୍ରାପ୍ତ ଇଂଜିନିୟର ସଂଗ୍ରାମ କେଶରୀଙ୍କୁ ତାଙ୍କର ଭୟ । ଲୋକଟା ଏ ଅଞ୍ଚଳରେ ବେଶ୍ ସୁନାମ ଅର୍ଜନ କରି ସାରିଲାଣି । ପ୍ରାୟ ପଚିଶ ଏକର ଜମି କିଣିଛି । ଉଦ୍ଦେଶ୍ୟ କ'ଣ ସେ ଠିକ୍ ଅନୁମାନ କରିପାରୁ ନ ଥିଲେ ବି ଭୟ ହେଉଛି, ହୁଏତ ସେ ତାଙ୍କର ପ୍ରତିଦ୍ୱନ୍ଦୀ ହୋଇ ଯାଇପାରେ । ଆଜିକାଲି ଅବସର-ପ୍ରାପ୍ତ ସରକାରୀ କର୍ମଚାରୀମାନେ ରାଜନୀତିର ଗୋଳିଆ ପାଣିରେ ବେଶି ଗୋଡ଼ ପୂରାଉଛନ୍ତି !

ସଭାର ସଫଳତା ଉପରେ ତାଙ୍କର ରାଜନୈତିକ ଭବିଷ୍ୟତ କିଛି ପରିମାଣରେ ନିର୍ଭର କରୁଛି । କପିଳେଶ୍ୱର ବାବୁ ପାର୍ଟିର ବଡ଼ ନେତା । ତାଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିବାକୁ ହେବ ଯେ, ଏ ଅଞ୍ଚଳରେ ତାଙ୍କ ଲୋକପ୍ରିୟତାର ଦୁର୍ଗ ଏବେସୁଦ୍ଧା ଅଜେୟ ରହିଛି । ସେଥିପାଇଁ ସଭାର କାର୍ଯ୍ୟ ଯେପରି ତ୍ରୁଟିହୀନ ହୁଏ, ସେଥିପାଇଁ ସେ ନିଜେ ସବୁକଥା ତଦାରଖ କରୁଛନ୍ତି ।

ମନ୍ତ୍ରୀଙ୍କ ନାମରେ ଜୟଧ୍ୱନି ଶୁଣା ଯାଉଛି । ଶୋଭା-ଯାତ୍ରା ବୋଧହୁଏ ପାଖେଇ ଆସିଲା । ରାସ୍ତାରେ ଧୂଳି ଉଡ଼ୁଛି । ବୋଧହୁଏ ମନ୍ତ୍ରୀଙ୍କ କାର ଆସୁଛି !

ମାଳାମ୍ବର ବାବୁ କାନ୍ଧ ଉପରେ ଖଦଡ଼ ଚଦରକୁ ଭଲକରି ସଜାଡ଼ି ନେଇ ମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇବା ପାଇଁ ଦେବଦାରୁ ଡାଳରେ ନିର୍ମିତ ଫାଟକ ପାଖରେ ଠିଆହୋଇ ରହିଲେ । ପାଖରେ ଶ୍ୟାମସୁନ୍ଦର ଏବଂ ଅଳ୍ପ ଦୂରରେ ରତ୍ନମଣି ପ୍ରମୁଖ କେତେଜଣ ମହିଳା ସମିତିର ବିଶିଷ୍ଟ ସଭ୍ୟା !

କାରରୁ ଅବତରଣ କଲେ କପିଳେଶ୍ୱର ବାବୁ । କିନ୍ତୁ ତାଙ୍କ ସାଙ୍ଗରେ ଏ କିଏ ?

ମାଳାମ୍ବର ବାବୁଙ୍କ ମୁଣ୍ଡ ଗରମ ହୋଇଗଲା । ସାଙ୍ଗରେ ସଂଗ୍ରାମ କେଶରୀ !

ଡାକବଙ୍ଗଳାକୁ ହଠାତ୍ କେତେବେଳେ ଯାଇ···!

ନା—ଭାବିବାକୁ ଆଉ ସମୟ ନାହିଁ । ଲୋକେ ସବୁ ମନ୍ତ୍ରୀଙ୍କୁ ଦେଖିବା ପାଇଁ ଠିଆହୋଇ ଗଣ୍ଡଗୋଳ ଆରମ୍ଭ କରି ଦେଲେଣି । ମାଇକ୍ ପାଖକୁ ଯାଇ ସେମାନଙ୍କୁ ଶାନ୍ତ ହେବାକୁ ଅନୁରୋଧ କଲେ ମାଳାମ୍ବର ବାବୁ ।

ସଂଗ୍ରାମ କେଶରୀ ତଳେ ବିଛା ହୋଇଥିବା ସତରଞ୍ଜି ଉପରେ ବସିବାକୁ ଯାଉଥିଲେ । କପିଳେଶ୍ୱର ବାବୁ ତାଙ୍କୁ ଡାକି ନିଜ ପାଖରେ ପଡ଼ିଥିବା ଖଣ୍ଡେ ଚେୟାରରେ ବସାଇ ଦେଲେ । ସଂଗ୍ରାମ କେଶରୀଙ୍କ ସହିତ ସେ କଥାବାର୍ତ୍ତା ହେଉଥିବା-ବେଳେ ଫଟୋଗ୍ରାଫର ଦୁଇଟା ଫଟୋ ମଧ୍ୟ ଉଠାଇ ନେଲା ।

ମାଳାମ୍ବର ବାବୁ ଓଠକୁ ଦାନ୍ତରେ ଚିପିଧରି ଶ୍ୟାମସୁନ୍ଦରଙ୍କୁ କହିଲେ, ସଭା କାମ ଆରମ୍ଭ ହେବ—ସଭାପତିଙ୍କ ନାମ ପ୍ରସ୍ତାବ କର—

ସଭାପତିଙ୍କ ନାମ ଘୋଷଣା କରିବାକୁ ଶ୍ୟାମ-ସୁନ୍ଦର ମାଇକ୍ ପାଖକୁ ମାଡ଼ି ଗଲାବେଳେ କପିଳେଶ୍ୱର ବାବୁ ତାଙ୍କୁ ପଛରୁ ଡାକିଲେ। ପଚାରିଲେ, ସଭାପତି କିଏ ହେବେ ।

ମାଳାମ୍ବର ବାବୁଙ୍କ ମୁହଁକୁ ଥରେ ଚାହିଁ ଶ୍ୟାମ-ସୁନ୍ଦର ତାଙ୍କ କଥାରେ କିଛି ଉତ୍ତର ଦେବା ଆଗରୁ ମନ୍ତ୍ରୀ ନିଜେ କହିଲେ, ଆଜି ସଭାରେ ସଂଗ୍ରାମ କେଶରୀ ବାବୁ ସଭାପତି ହୁଅନ୍ତୁ···ସେ ଏ ଅଞ୍ଚଳର ଜଣେ ବିଶିଷ୍ଟ ଲୋକ··· ।

ସଂଗ୍ରାମ କେଶରୀ ସଭାପତି ନ ହେବାପାଇଁ ଜୋର ଆପତ୍ତି ଉଠାଉଥିଲେ ସୁଦ୍ଧା, କପିଳେଶ୍ୱର ବାବୁ ତାଙ୍କର ଆପତ୍ତି ଶୁଣିଲେ ନାହିଁ । ଅଗତ୍ୟା ସଭାପତି ଭାବରେ ତାଙ୍କର ନାମ ଘୋଷଣା କଲେ ଶ୍ୟାମ-ସୁନ୍ଦର ।

ମଲ୍ଲୀଫୁଲର ସେ ଗଜରା ଫୁଲହାର ବାଳକା ବିଦ୍ୟାଳୟର ଜଣେ ଛାତ୍ରୀ ସଂଗ୍ରାମକେଶରୀଙ୍କ ବେକରେ ପିନ୍ଧାଇ ଦେଲାବେଳେ ମାଳାମ୍ବର ବାବୁଙ୍କ ମୁହଁ ପାଣ୍ଡି-ମାଙ୍କଡ଼ ମୁହଁ ଭଳି ନାଲି ପଡ଼ିଗଲା । ତାଙ୍କର ମନେ ହେଲା, କିଛି ସମୟ ଆଗରୁ ଆକାଶରେ ଉଡ଼ୁଥିବା କେତେଖଣ୍ଡ ଭସାମେଘ ଜଳହୋଇ ତାଙ୍କର ଦୁଇ ଆଖିରୁ ଯେମିତି ଧାର ଧାର ହୋଇ ବର୍ଷା ହୋଇ ଯାଉଛନ୍ତି !

ସଭାର ଉଦ୍ଦେଶ୍ୟ ବର୍ଣ୍ଣନା କରି ପ୍ରାରମ୍ଭିକ ଭାଷଣ ଦେଲାବେଳେ ମାଳାମ୍ବର ବାବୁଙ୍କ କଣ୍ଠସ୍ୱର ଯେ ଥର ଥର ହୋଇ ଥରୁଛି, ସେ କଥା ବେଶ୍ ବୁଝି ପାରୁଥିଲେ ଶ୍ୟାମସୁନ୍ଦର । ତାର କାରଣ ମଧ୍ୟ ତାଙ୍କୁ ଅଜଣା ନ ଥିଲା । ସେ ସବୁ ବୁଝି ପାରୁଥିଲେ, କିନ୍ତୁ କିଛି କହି ପାରୁ ନ ଥିଲେ । ସଂଗ୍ରାମ କେଶରୀଙ୍କର ମନ୍ତ୍ରୀଙ୍କ ସହିତ ଯେ ଆଗରୁ ଏତେ ଘନିଷ୍ଠତା ଥିଲା, ଏ କଥା ତାଙ୍କୁ ଜଣା ନ ଥିଲା ।

ମନ୍ତ୍ରୀ ଭାଷଣ ଦେଲେ, ମୁଁ ଆପଣମାନଙ୍କୁ ଆଜି ଭାଷଣ ଦେବାକୁ ଆସିନାହିଁ । ଆସିଛି ଏକ ଶୁଭ ସମ୍ବାଦ ଦେବାକୁ । ଆପଣମାନେ ଶୁଣି ଖୁସି ହେବେ ଯେ ଏଇ ଅଞ୍ଚଳରେ ଖୁବ୍ ନିକଟରେ ସରକାର ଏକ ରସାୟନିକ ସାର କାରଖାନା ବସାଇବାକୁ ଯାଉଛନ୍ତି । ସାର କାରଖାନା ବସିଲେ କେବଳ ଯେ ଏ ଅଞ୍ଚଳ ଏକ ଶିଳ୍ପସମୃଦ୍ଧ ଅଞ୍ଚଳ ହେବ, ତା ନୁହେଁ, ସାର ଉତ୍ପାଦନ ବଢ଼ିଲେ ଫସଲ ଉତ୍ପାଦନ ବଢ଼ିବ···ଖାଦ୍ୟ ସମସ୍ୟା ତୁଟିବ···ଦେଶରେ କେହି ଜଣେହେଲେ ଉପାସ ରହିବେ ନାହିଁ···

ମନ୍ତ୍ରୀଙ୍କ ଭାଷଣ ଶେଷ ହେବା ଆଗରୁ ଉପସ୍ଥିତ ସଜ୍ଜନମଣ୍ଡଳୀରୁ କେତେଜଣେ ତାଳି ମାରିବା ଆରମ୍ଭ କରିଦେଲେ । ତା'ପରେ ସମ୍ମିଳିତ ତାଳିମାଡ଼ । ତା' ଭିତରେ ମନ୍ତ୍ରୀଙ୍କ ଭାଷଣ ଆଉ କିଛି ଶୁଣାଗଲା ନାହିଁ । ରସାୟନିକ ସାର କହିଲେ କଅଣ ବୁଝାଯାଏ, ସେ କଥା ଯୋଉଁ ପ୍ରୁ. ପି. ସ୍କୁଲ ଛାତ୍ରମାନେ ନ ଜାଣନ୍ତି, ତାଙ୍କର ତାଳିମାଡ଼ ବି ଦୀର୍ଘସ୍ଥାୟୀ ହୋଇଥିଲା ।

ସଂଗ୍ରାମ କେଶରୀଙ୍କ ସଂକ୍ଷିପ୍ତ ଭାଷଣ ପରେ ସଭା ଭଙ୍ଗ ହେଲା ।

ସଭାସ୍ଥଳ ଛାଡ଼ି ମନ୍ତ୍ରୀଙ୍କ ସହିତ କାର୍‌ରେ ଯିବା ଆଗରୁ ଶ୍ୟାମସୁନ୍ଦରଙ୍କୁ ପାଖକୁ ଡାକିଲେ ମାଳାମ୍ବର ବାବୁ । ତାଙ୍କ କାନରେ ଚୁପ୍ ଚୁପ୍ କରି କହିଲେ, ଶୁଣିଲ, ଏଠାରେ ସାରକାରଖାନା ହେବ । ବୁଝିଲି ଏଥର, କଅଣ ପାଇଁ କଳପାଣି, ବିଜୁଳି ଆଲୁଅ ଛାଡ଼ି ସଂଗ୍ରାମ କେଶରୀ ଶାଗ ମାଛ ଦରରେ ଜମି କିଣି ଏଠାରେ ମୁହଁମାଡ଼ି ପଡ଼ିଛି ! ସାରକାରଖାନା ହେବ ସଂଗ୍ରାମକେଶରୀ କିଣା ଜମି ପାଖରେ···ଏକର ଦରରେ ସେ ଯେଉଁ ଜମି କିଣିବ, ମିଟର ଦରରେ ତାକୁ ବିକିବ···ସଂଗ୍ରାମ କେଶରୀ ମସ୍ତ ପଲିଟିସିଆନ୍ । ବୁଝିଲ ? ସାବଧାନ !

ମନ୍ତ୍ରୀଙ୍କ ଗାଡ଼ି ଚାଲିଗଲା ।

ମାଳାମ୍ବର ବାବୁ ମଧ୍ୟ ଚାଲିଗଲେ ।

ଏକ ଅଚଳ, ନିର୍ବାକ୍, ବଣ୍ଡାଖୁଣ୍ଟ ଭଳି କେବଳ ଶ୍ୟାମସୁନ୍ଦର ଠିଆହୋଇ ରହିଲେ । ସଂଗ୍ରାମକେଶରୀ ଭୂତପୂର୍ବ ଜମିଦାର ଆଉ ଅବସରପ୍ରାପ୍ତ ଇଂଜିନିୟର ବୋଲି ସେ ଜାଣିଥିଲେ । କିନ୍ତୁ ସେ ଯେ ମସ୍ତ ଏକ ରାଜନୀତିଜ୍ଞ, ସେ କଥା ଆଜି ତାଙ୍କୁ ଜଣାଇ ଦେଇଗଲେ ମାଳାମ୍ବର ବାବୁ ।

( କ୍ରମଶଃ )

—*—

# ମେ ମାସର ରାଶିଫଳ

ପଣ୍ଡିତ ଶ୍ରୀ ଯୁଧିଷ୍ଠିର ମହାପାତ୍ର, ଜ୍ୟୋତିର୍ଭୂଷଣ

**ମେଷ:**—ଏ ମାସଟି ସାଧାରଣ ଶୁଭଫଳଦ୍ୟୋତକ । ସାମାଜିକ କାର୍ଯ୍ୟଧାରା ନିଷ୍କଳଙ୍କ ରହିବ, କିନ୍ତୁ ଆର୍ଥିକ ଦିଗ ସେପରି ଶାନ୍ତିପ୍ରଦ ନୁହେଁ । ଗୃହବାସରେ ମନସ୍ତାପ, ବାଣିଜ୍ୟ ପ୍ରସାରତା କମି ଆସିବ । ସମ୍ଭବ କ୍ଷେତ୍ରରେ ପ୍ରଣୟ ସୂତ୍ର ଘଟିପାରେ । ଜ୍ୱର ପିତ୍ତପୀଡ଼ା ବା ପରିଶ୍ରମ ଜନିତ କ୍ଳାନ୍ତି ଅନୁଭବ କରିବେ । ଜନନୀ ମନାନ୍ତର ମଧ୍ୟରେ ବି ସାନ୍ତ୍ୱନା ପାଇବେ । ଶୁଭକର୍ମରେ ଯୋଗଦେବାଦ୍ୱାରା ମାନସିକ ପୀଡ଼ା ଭୋଗିବା ଅସମ୍ଭବ ନୁହେଁ । ମହିଳାମାନେ ପ୍ରଣୟ ବିନୋଦିନୀ ହେବେ । ଜନମା ଯୋଗ୍ୟାଙ୍କୁ ସନ୍ତାନ ଯୁଟିପାରେ । ଛାତ୍ରାଦିଙ୍କର ଫଳ ଆଶାଜନକ ।

**ବୃଷ:**—ଏ ମାସଟି ଗୃହବାସ ବା ରାଜକାର୍ଯ୍ୟ ଦିଗରୁ ଶାନ୍ତିଜନକ ନ ହେଲେହେଁ ଆର୍ଥିକ ଶୃଙ୍ଖଳା କାରକ ହେବ । ବାଣିଜ୍ୟରେ ତତ୍ପରତା ବୃଦ୍ଧି ସଙ୍ଗେ ଆୟ ସୁଯୋଗ ଏବଂ ସାମାଜିକ ଖ୍ୟାତି, ଲୋକପ୍ରିୟତା ଓ କଳ୍ପିତ ବାସନାକୁ ରୂପଦେବେ । ସ୍ୱାସ୍ଥ୍ୟ ଏକ ପ୍ରକାର ଭଲ ରହିବ । ମାତ୍ର ଭ୍ରାତୃ ବା ସ୍ଥାବର ସମ୍ପତ୍ତି ଜନିତ ଝଂଝଟ ଭୋଗିପାରନ୍ତି । ଉଦ୍ୟମ ସାଫଲ୍ୟତା ଓ ପାରିବାରିକ ପ୍ରତିପତ୍ତି ବିସ୍ତାର ଘଟିବ । ମହିଳାମାନଙ୍କୁ ସର୍ବ୍ବିକରଣର ସୁଯୋଗ ଲାଗି ଏବଂ ପ୍ରଣୟ-ବିଳାସ ଲାଗି ଏହା ପ୍ରଶସ୍ତ । ଛାତ୍ରାଦିମାନେ ଯଶ ପାଇବେ ।

**ମିଥୁନ:**—ମାସର ପ୍ରଥମାର୍ଦ୍ଧରେ ଆର୍ଥିକ ସୁଯୋଗ ଏବଂ ବନ୍ଧୁ ମିତ୍ରାଦି ମିଳନ ଜନିତ ସୁଖ ମିଳିବ । ଶୁଭ କର୍ମରେ ଯୋଗଦେଇ ପ୍ରଶଂସା ନେବେ । ବାଣିଜ୍ୟ ଦିଗରୁ ସେପରି ଶୃଙ୍ଖଳା ନାହିଁ । କିମ୍ବା ଗୃହବାସ ଦିଗରୁ ମାସର ଶେଷାର୍ଦ୍ଧ ଶାନ୍ତିକର ବୋଧହେବ ନାହିଁ । ଗୃହ ପରିଧିରେ ଉତ୍ସବ ଓ ଉନ୍ନତି ଗତ ଉଦ୍ୟମର ଫଳ ହେବାର ଆଶ୍ୱାସ ମିଳେ । କିନ୍ତୁ ସ୍ତ୍ରୀଜନିତ ଉତ୍କଣ୍ଠା ଜାଗିବ । କର୍ମକ୍ଷେତ୍ରରେ କର୍ତ୍ତୃପକ୍ଷଙ୍କ ବିରୋଧତାକୁ ସତର୍କ ରହନ୍ତୁ । ସ୍ୱାସ୍ଥ୍ୟ ଭଲରେ କଟିବ । ମହିଳାମାନେ ପ୍ରଣୟ ପଥହରା ହେବାଭଳି ବୋଧ କରିବେ । ଛାତ୍ରାଦିଙ୍କର ଶିକ୍ଷାଗତ ସାଫଲ୍ୟତା ରହିଛି ।

**କର୍କଟ:**—ଏ ମାସରେ କର୍ମ ଜୀବନ ଅବଶ୍ୟ ସୁଖମୟ ଅର୍ଥାତ୍ ଅର୍ଥ କୁଶଳତା ଉପଲବ୍ଧି କଲେ ହେଁ ସ୍ୱାସ୍ଥ୍ୟ ଅସୁଖ ଭୋଗିପାରନ୍ତି । ଆକସ୍ମିକ ପୀଡ଼ା ରହୁଛି । ପ୍ରଣୟ ବନ୍ଧନରେ ସୁଯୋଗ ମଧ୍ୟ ଆସିପାରେ । ସାମାଜିକ ଝିଙ୍ଗ ସମ୍ମାନ ନେବେ । ପାରିବାରିକ ସଦିଚ୍ଛା ଲାଭ କରିବେ ଓ ବ୍ୟବସାୟରୁ ଗତାନୁଗତିକତା ବଜାୟ ରହିବ । ଖର୍ଚ୍ଚ ଅଧିକ ଦେଖାଯାଏ । ମହିଳାମାନେ ଚିତ୍ତ ଚାଞ୍ଚଲ୍ୟ ମଧ୍ୟରେ ମଧ୍ୟ ପ୍ରଣୟ ଲାଗି ଅବକାଶ ପାଇବେ । ଛାତ୍ରାଦିମାନେ ରସାୟନ, ଶିଳ୍ପବିଦ୍ୟା ଭିନ୍ନ ଅନ୍ୟ ଦିଗରୁ ଆଗେଇ-ପିବେ ।

**ସିଂହ:**—ଏ ମାସର ପ୍ରଥମାର୍ଦ୍ଧ ଅପେକ୍ଷା ଶେଷାର୍ଦ୍ଧ ଶୁଭତର । କୌଣସି ଶୁଭ କର୍ମରେ ଅନ୍ତନିବେଶ କାରଣରୁ ଅର୍ଥ ବ୍ୟୟ ତଥା ଆତ୍ମଗ୍ଳାନି ଘଟିବ । ଗୃହବାସ ଦିଗରୁ ଶେଷାର୍ଦ୍ଧ କୁଶଳଜନକ । ଅର୍ଥ ସୁଯୋଗ ତଥା ନୂତନ ଯୋଜନା ରୂପାୟନ ଲାଗି ଏ ମାସଟି ପ୍ରଶସ୍ତ । ଶତ୍ରୁ ଭୟ ରହିବ । ସମ୍ପତ୍ତି-ଜନିତ ଅବଶୋଷ ଆସିବ । ସାମାଜିକ ବିରକ୍ତିକର ପରିସ୍ଥିତି ଉପୁଜିପାରେ । ଅବଶ୍ୟ ପଦ ମର୍ଯ୍ୟାଦା ହାନି ସୂଚନା ନାହିଁ । ସ୍ୱାସ୍ଥ୍ୟ ଯଥାପୂର୍ବଂ । ପାକସ୍ଥଳୀ ପୀଡ଼ା ମଝେ ମଝେ ବୋଧ କରିବେ । ମହିଳାମାନେ ନୂଆ ପରିବେଶ ମଧ୍ୟରେ ସହାନୁଭୂତି ଓ ପ୍ରଣୟ ଲାଭ କରିବେ । ଜନମା ଯୋଗ୍ୟାଙ୍କୁ ନବଜାତ ସୁଖ ମିଳିବ । ଛାତ୍ରାଦିମାନେ ଚିନ୍ତା ଛାଡ଼ନ୍ତୁ ।

**କନ୍ୟା:**—ଗୃହବାସ ଜୀବନ ଏ ମାସଟିରେ ତୃପ୍ତିକର ନୁହେଁ । ଆର୍ଥିକ ଅଶାନ୍ତି ଅଛି । ଭୂମ୍ୟାଦିରୁ ତଥା ବାଣିଜ୍ୟାଦିରୁ ସାଧାରଣ ଅର୍ଥ ସୁଯୋଗ ଦେଖାଦେବ । ସାମାଜିକ ରାଜନୈତିକ ପ୍ରୀତିଭଙ୍ଗ ଓ ଅନାବଶ୍ୟକ ପରିବର୍ତ୍ତନ ଅନୁଭବ କରିବେ । ସ୍ୱାସ୍ଥ୍ୟ ମଝେ ମଝେ ଶ୍ଳେଷ୍ମାଜନିତ ପୀଡ଼ା ଭୋଗିବେ । ପତ୍ନୀ-ପୁତ୍ର ନିମିତ୍ତ ଅଶାନ୍ତି ପାଇ ପାରନ୍ତି । ମହିଳାମାନେ

କର୍ମପ୍ରବଣତା ମଧ୍ୟରେ ଦୁଃଖମନା ରହିବେ । ପ୍ରଣୟ ଭଙ୍ଗର ଆଶଙ୍କା ରହୁଛି । ଛାତ୍ରମାନେ ଆଶାନୁରୂପ ଫଳ ପାଇପାରୁ ନାହାନ୍ତି ।

**ତୁଳା:**—ଏ ମାସଟି ଅର୍ଥକ୍ଷୟ ଓ ପ୍ରାଣ ପୀଡ଼ାରେ କଟିବ ଉତ୍ସବକ ଆନନ୍ଦରେ ଶାନ୍ତି ପାଇବେ ନାହିଁ । କର୍ମକ୍ଷେତ୍ରରୁ ଅର୍ଥାଗମ ଯୋଗ ପୂର୍ବବତ୍ । ସାମାଜିକ ସୁନାମରେ ଆଞ୍ଚ ଆସିପାରେ । ବାଣିଜ୍ୟରେ ଶତ୍ରୁବୃଦ୍ଧି ତଥା ଉଦ୍ୟମ ହାନି ଘଟିବ । ନୈସର୍ଗିକ ଅସଂଯମତା ଏଥିର କାରଣ । ପିତ୍ତଜନିତ ଓ ଶୀତଗତ ଯନ୍ତ୍ରଣା ଅନୁଭବ କରିବେ । ପାରିବାରିକ ଅଶାନ୍ତି ଅଛି । କର୍ମକ୍ଷେତ୍ରରେ କର୍ତ୍ତୃପକ୍ଷଙ୍କୁ ମନାଇ ଚଳନ୍ତୁ । ମହିଳାମାନେ ପ୍ରୀତିଭଙ୍ଗ ଜନିତ ଯନ୍ତ୍ରଣା ଭୋଗିପାରନ୍ତି । ପୂର୍ବରାଗ ଓ ଅଭିସାର ଭଙ୍ଗ ଘଟିପାରେ । ଛାତ୍ରମାନେ ଗବେଷଣାଗତ ମନନ-ଶକ୍ତିର ଅଭାବ ଅନୁଭବ କରିବେ । ଫଳ ଆଶା କମ୍ ।

**ବିଛା:**—ଏ ମାସରେ ଶତ୍ରୁଭୟ, ବୃଥା ଚିନ୍ତା ଓ ସ୍ୱାସ୍ଥ୍ୟହାନି ଲାଗି ରହିବ । ମାସର ପ୍ରଥମାର୍ଦ୍ଧ ଗୃହକର୍ତ୍ରୀ ଦିଗରୁ ଭଲ । ଆର୍ଥିକ ସୁଯୋଗ ଅଛି । ଶେଷାର୍ଦ୍ଧ ଆଡ଼କୁ ବ୍ୟୟବୃଦ୍ଧି ଘଟିବ । ବାଣିଜ୍ୟ କ୍ଷେତ୍ରରୁ ସୁବିଧା ଓ ସୁଯୋଗ ଲାଭ କରିବେ । ପ୍ରୀତିବିଳାସ ନିମିତ୍ତ ମହିଳାମାନଙ୍କର ଉତ୍କଣ୍ଠା ଓ ହତୋଦ୍ୟମ ଘଟିପାରେ । କିନ୍ତୁ ସମ୍ଭବ ସ୍ଥଳେ ନବଜାତକ ଦେଖିପାରନ୍ତି । ଅବିବାହିତାଙ୍କୁ ପ୍ରଣୟ ଯୋଗ ଯୁଟିବ । ଛାତ୍ରମାନେ ଶିକ୍ଷା ସଂକ୍ରାନ୍ତ ସଫଳତା ଅର୍ଜ୍ଜନ କରିବେ ।

**ଧନୁ**—ଏ ମାସରେ ପ୍ରତି ଦିଗରୁ ବୁଝି ବିଚାରି ଚାଲିଲେ ଭଲ । ଅଧିକ ଅର୍ଥବ୍ୟୟ, ଅଶାନ୍ତି ଦେଖାଦେବ । ଗୃହ ପରିଧିରେ ପ୍ରମୋଦ ଉତ୍ସବ ହୋଇପାରେ । କିନ୍ତୁ କାରଣ ହୀନ ବିବ୍ରତ ଓ ଅବାଂଛିତ ପରିସ୍ଥିତି ପହଞ୍ଚିବ । କର୍ମ ଜୀବନରେ ମାସର ଶେଷାର୍ଦ୍ଧଟି ଶୁଭପ୍ରଦ । ବାଣିଜ୍ୟ ବା ବ୍ୟବସାୟରୁ ସୁଯୋଗ ଅଛି । ସାମାଜିକ ସମ୍ମାନ ମିଳିବ । ସ୍ୱାସ୍ଥ୍ୟ ପୂର୍ବପରି ରହିବ । ପ୍ରିୟ ଦର୍ଶନ ଓ ବନ୍ଧୁ ସୁଖ ପାଇପାରନ୍ତି । କିନ୍ତୁ ଆକାଂକ୍ଷିତ ପ୍ରାପ୍ତିଭଙ୍ଗର ଆଶଙ୍କା ଯାଉନାହିଁ । ମହିଳାମାନେ ଗୃହ ପରିବେଶରେ ନବ ଅଭିଜ୍ଞାନ ଲାଭ କରିବେ । ପ୍ରଣୟ ଯୋଗସୂତ୍ର ବଢ଼ିବ । ଛାତ୍ରଙ୍କର ଫଳ ଆଶା ସନ୍ତୋଷ ଜନକ ।

**ମକର**—ଏ ମାସଟି କର୍ମକ୍ଷେତ୍ର ଓ ସାମାଜିକ ବା ରାଜନୀତି କ୍ଷେତ୍ରରେ ସମ୍ମାନହାନି ସୂଚକ ଏବଂ ଖ୍ୟାତି ବର୍ଦ୍ଧକ ହେବ । ଅବଶ୍ୟ ଆର୍ଥିକ ଦିଗରୁ ଗୁଜୁରାଣ ମେଣ୍ଟିବ । ବ୍ୟବସାୟରୁ ଅର୍ଥ ବୃଦ୍ଧି ସଙ୍ଗେ ନୂତନ ଉଦ୍ୟମ ସଫଳ ହୋଇପାରେ । କୌଣସି ଝୁଙ୍କି ମୂଳକ କାର୍ଯ୍ୟରେ ଜଡ଼ିତ ନ ହେବା ଭଲ । ଭୂମ୍ୟାଦିରୁ ଅଧିକ ସୁଯୋଗ ଅଛି । ସ୍ୱାସ୍ଥ୍ୟ ଯଥାପୂର୍ବ । ପାକସ୍ଥଳୀ ବା ମୂତ୍ରଗତ ପୀଡ଼ା ସାମାନ୍ୟ ଭୋଗି ପାରନ୍ତି । ମହିଳାମାନେ ସୁଖିନୀ ହେବେ । କ୍ଷେତ୍ରବିଶେଷରେ ସନ୍ତାନ ଲାଭ ଓ ପ୍ରଣୟ ଘଟସୂତ୍ର ଘଟିବ । ଛାତ୍ରଙ୍କର ପରୀକ୍ଷା ଫଳ ଶୃଙ୍ଖଳାଜନକ ନୁହେଁ ।

**କୁମ୍ଭ**—ଏ ମାସଟି ଶାନ୍ତି-ଅଶାନ୍ତିର ମଧ୍ୟଦେଇ କଟିବ । ପ୍ରଥମାର୍ଦ୍ଧରେ ଗୃହକର୍ତ୍ରୀ ଦିଗରୁ ଶୁଭ ଯୋଗ ତଥା ଆର୍ଥିକ ଶୃଙ୍ଖଳା ଦେଖାଦେଲେ ହେଁ ଶେଷାର୍ଦ୍ଧରେ ମାନହାନି ବଡ଼ ବୋଧ ହେବ । ବାଣିଜ୍ୟକ ଉନ୍ନତି ଭୂମ୍ୟାଦିରୁ ଲାଭଯୋଗ ରହୁଛି । ସାମାଜିକ କ୍ଷେତ୍ରରେ ବନ୍ଧୁ ସହାନୁଭୂତି ତଥା ସମ୍ମାନ ପାଇବେ । କିନ୍ତୁ ଗୁପ୍ତ ଶତ୍ରୁ ଲାଗି ରହିଛି । ସ୍ୱାସ୍ଥ୍ୟ ଭଲରେ ଯିବ । ଅର୍ଥୋନ୍ନତି ଯୋଜନାମାନ ରୂପାୟିତ ହେବାର ସୂଚନା ମିଳେ । ମହିଳାମାନଙ୍କର ବୈବାହିକ ଜୀବନ ସୁଖ, ସାଙ୍ଗସୁଖ, ଆକାଂକ୍ଷା ପୂରଣ ଘଟିପାରେ । ଛାତ୍ରମାନେ ଆଶାତୀତ ଫଳ ପାଇବେ ।

**ମୀନ**—ମାସର ଶେଷାର୍ଦ୍ଧ ଅର୍ଥ ବୃଦ୍ଧି ଓ ଖ୍ୟାତି ନାଶକ ହେବ । ଭୂମ୍ୟାଦିରୁ ହାନି ସମ୍ଭବ । ସାମାଜିକ ବନ୍ଧନ ବିଷବତ୍ ବୋଧ କରିବେ । କିନ୍ତୁ ସମ୍ମାନ ଅକ୍ଷୁର୍ଣ୍ଣ ରହିବ । ପାରିବାରିକ ବିରୋଧତା ହଟି ଚାଲିବ । କର୍ମକ୍ଷେତ୍ରରୁ ତଥା ବାଣିଜ୍ୟରୁ ଅର୍ଥ ସଂଯୋଗ ଓ ଶତ୍ରୁ ନାଶ ଘଟିବ । ସ୍ୱାସ୍ଥ୍ୟ ଯଥାପୂର୍ବଂ । ମାନସିକ ଅଶାନ୍ତି ମଧ୍ୟେ ମଧ୍ୟେ ପାଇବେ । ଶିକ୍ଷାଗତ ଗବେଷଣାରେ ଆଗେଇବେ । ମହିଳାମାନଙ୍କର କଳହ ନାଶ ଘଟିବ । ନୂତନା କାମିନୀଙ୍କ ରୂପ-ରାଗ ଓ ଅଭିସାର ବୃଦ୍ଧି ପାଇବ । ଛାତ୍ରମାନେ ଆଶାନୁରୂପ ଫଳ ହରାଇ ପାରନ୍ତି ।

# ଏ ସଂଖ୍ୟାରେ..............



—*—

# ସମ୍ପାଦକୀୟ—

## "ଏକ ମାନବିକ ଜୟଗାନ"

ଓଡ଼ିଆର ଗୋଟିଏ ବର୍ଷ ଶେଷ ହୋଇଗଲା । ମହାବିଷୁବ ସଂକ୍ରାନ୍ତି, ବିଷୁବରେଖାର ଠିକ୍ କେନ୍ଦ୍ର ସ୍ଥଳରେ ମଧ୍ୟାହ୍ନ ମାନ ସୂର୍ଯ୍ୟଦେବଙ୍କର ଅବସ୍ଥାନ, ଋତୁରାଜ ମଳୟର ବିଦାୟପଟରେ ଅସହ୍ୟ ଉତ୍ତାପର ପରୱାନା ଧରି ଗ୍ରୀଷ୍ମର ଆଗମନ, ପ୍ରକୃତିର ଆଇନ୍ କାନୁନ୍‌ରେ ବିଭିନ୍ନ ଋତୁର ଆଗମନ ଓ ପ୍ରସ୍ଥାନ ଆବର୍ତ୍ତିତ ଗତିରେ ସମାହିତ ହୋଇ ଆସୁଛି, ଆସିବ ।

କିଛି କୋମଳତା, କିଛି ଭାବପ୍ରବଣତା, କିଛି ଶୀତଳତା, କିଛି ଉତ୍‌ଫୁଲ୍ଲତାର ସ୍ମାରକ ବହନ କରି ଏକବର୍ଷ ପରେ ପୁନର୍ବାର ମହାବିଷୁବ ସଂକ୍ରାନ୍ତିର ଉପସ୍ଥିତି ଆମକୁ ସଚେତନ କରାଇ ଦିଏ ଆମର ଐତିହ୍ୟ ଆମ ଜାତିର ଗରିମା; କାରଣ ବିଶାଳ ଭାରତ ଭୂଖଣ୍ଡର ଜନନୀ ହେଉଛି ବିଷୁବ ରେଖା । ତପନର ପବିତ୍ର ବୀର୍ଯ୍ୟର ନିଶାଣ ବାହି ଏଇ ଭାରତ ବର୍ଷ ପକ୍ଷରେ ବିଷୁବ ସଂକ୍ରାନ୍ତି କମ୍ ସ୍ମରଣୀୟ ନୁହେଁ ।

ଏ ଦିନଟିକୁ ମୈତ୍ରୀ ଆଉ ବନ୍ଧୁତ୍ୱର ବେଦୀ ରୂପରେ କେତେକ ଗ୍ରହଣ କରି ନେଇଛନ୍ତି । ଏହା ହେବାଟା ବାଞ୍ଛନୀୟ ମଧ୍ୟ । ନୂତନ ବର୍ଷର ଆରମ୍ଭ, ପୁରାତନ ବର୍ଷର ବିଦାୟ ସନ୍ଧିକ୍ଷଣରେ ଦଣ୍ଡାୟମାନ ହୋଇ ଆମେ ଓଡ଼ିଶାର ଗଣମାନସ, ତାର ସାହିତ୍ୟ ସଂସ୍କୃତିର ମାନବିକ ଜୟଗାନ କରିବା ସଙ୍ଗେ ସଙ୍ଗେ ଏ ଜାତିର ଅମରତ୍ୱ କାମନା କରୁଛୁ ।

ଏପ୍ରିଲ ପହିଲା—ଏ ଦିବସଟିର ଆଉ ଏକ ତାତ୍ପର୍ଯ୍ୟ ରହିଛି । ଭାରତର ବୃହତ୍ ମାନଚିତ୍ର ଭିତରେ ଓଡ଼ିଶା ପ୍ରଦେଶର ସ୍ୱତନ୍ତ୍ର ଛବି, ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟତା ଏହିଦିନ ହିଁ ଦେଖା ଦେଇଥିଲା—ଏ ଦିବସରେ ଉତ୍କଳ ଦୀପିକାର ସମ୍ପାଦକ ୰ ଗୌରୀଶଙ୍କର, କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ପ୍ରମୁଖଙ୍କ ସ୍ମୃତି ଆମେ ସର୍ବାଗ୍ରେ ସ୍ମରଣ କରୁଛୁ ।

ଉପେନ୍ଦ୍ର ମିଶ୍ର



# ମହାତ୍ମା ଗାନ୍ଧି

ଅଧ୍ୟାପକ—**ଶ୍ରୀ ଗୋଲୋକ ବିହାରୀ ଧଳ** ଏମ୍. ଏ. (ଲଣ୍ଡନ)

ଦେଶସାରା ଯୁଆଡ଼େ ଚାହିଁବ ତାଙ୍କର ଚିହ୍ନ ଦେଖିବାକୁ ମିଳିବ, ଗାନ୍ଧିଭବନ, ଗାନ୍ଧିମନ୍ଦିର, ଗାନ୍ଧିଆଶ୍ରମ, ଗାନ୍ଧିରାସ୍ତା, ଗାନ୍ଧିପାର୍କ । ପୃଥିବୀର ବହୁଲୋକ ତାଙ୍କୁ ଶ୍ରେଷ୍ଠ ମନୁଷ୍ୟ ହିସାବରେ ସମ୍ମାନ କରନ୍ତି । ମାତ୍ର ଭାରତବାସୀମାନେ ତାଙ୍କୁ କହନ୍ତି ନରଶ୍ରେଷ୍ଠ ନାରାୟଣ । ପୃଥିବୀର ଦୁଃଖ ଘୁଞ୍ଚାଇବା ପାଇଁ ସେ ଜନ୍ମ ହୋଇଥିଲେ । କିନ୍ତୁ ଓଡ଼ିଶା ଲୋକଙ୍କର ଦୁଃଖ ଦେଖି ସେମାନଙ୍କୁ ସେ ଦରିଦ୍ରନାରାୟଣ ବୋଲି କହିଥିଲେ । ସେତିକିବେଳେ ବୋଧହୁଏ ପ୍ରଥମ କରି ଗାନ୍ଧୀଙ୍କ ମୁହଁରୁ ଦରିଦ୍ରନାରାୟଣ କଥାଟି ବାହାରିଥିଲା ।

ଓଡ଼ିଆଙ୍କର ଯେଉଁ କଥାକୁ ଲୋକେ ବେଶୀ ହୀନଚକ୍ଷୁରେ ଦେଖନ୍ତି, ମହାତ୍ମାଜୀ ବୋଧହୁଏ ସେହି କଥାକୁ ବେଶି ପସନ୍ଦ କରନ୍ତି । ୧୯୨୧ ମସିହାରେ ଗାନ୍ଧିଜୀ ଓଡ଼ିଶା ଭ୍ରମଣରେ ଆସିଥାଆନ୍ତି । ପାଦରେ ବୁଲି ବୁଲି ଓଡ଼ିଆ ଜାତିର ଦୁଃଖ ଦୁର୍ଦ୍ଦଶା ଆଖିରେ ଦେଖୁଥାଆନ୍ତି । ବାଟରେ ଥରେ ଗୋଟାଏ କ୍ୟାମ୍ପରେ ରୋଷାଇ ହେଉଥିଲା । କେତେଜଣ ଓଡ଼ିଆ କର୍ମୀ ରୋଷାଇ କରୁ କରୁ ବହୁତଗୁଡ଼ାଏ ଭାତ ରାନ୍ଧିଦେଲେ, ଗାନ୍ଧିଙ୍କ ସଙ୍ଗରେ ବାହାରୁ ଯେଉଁ କର୍ମୀମାନେ ଆସିଥିଲେ ସେମାନେ ଭାବିଲେ ଗୁଡ଼ାଏ ଭାତ ବଳି ନଷ୍ଟ ହେବ । ଗାନ୍ଧିଜୀ ହୁଏତ ବିରକ୍ତ ହେବେ । କାରଣ ସେ ଏତେ ହିସାବୀ ଯେ କୌଣସି ଜିନିଷ ନଷ୍ଟ କରିବାକୁ ଚାହାନ୍ତି ନାହିଁ । କିନ୍ତୁ ଓଡ଼ିଆ କର୍ମୀମାନେ କହିଲେ, "ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ । ବଳକା ଭାତ ରଖିବାପାଇଁ ଓଡ଼ିଆମାନଙ୍କର ଗୋଟାଏ ଜଳଯନ୍ତ୍ର ଅଛି । ସେଇଥିରେ ରଖିଦେଲେ ଭାତ ଦୁଇଦିନ ଯାଏ ଖାଇ ହେବ ।" ସମସ୍ତେ ଦେଖିବା ପାଇଁ ଅପେକ୍ଷା କରି ରହିଲେ । ଝିଅପିଆ ଶେଷରେ ଓଡ଼ିଆ କର୍ମୀମାନେ ଗୋଟାଏ ହାଣ୍ଡିରେ ପାଣି ରଖି ଭାତ ପଖାଳି ଦେଲେ ଓ ତହିଁଆର ଦିନ ସେହି ପଖାଳକୁ ଖାଇଲେ । ଗାନ୍ଧିଜୀ ଓଡ଼ିଆମାନଙ୍କର ଏହି ଖାଦ୍ୟ ସଂରକ୍ଷଣ ଉପାୟ ଦେଖି ଭାରି ଖୁସି ହୋଇଥିଲେ । ସେ କହିଥିଲେ ଯେ ଓଡ଼ିଆମାନଙ୍କର ଏହି ପଖାଳକୁ ଭାରତର ଅନ୍ୟତ୍ର ପ୍ରଚାର କରିବା ଉଚିତ । ଯେଉଁ କଥାକୁ ସାଧାରଣ ଲୋକ ନାକ ଟେକନ୍ତି, ମହାତ୍ମାମାନେ ବୋଧହୁଏ ତା'ର ମହତ୍ତ୍ୱ ବୁଝି ପାରନ୍ତି ।

ଓଡ଼ିଶାକୁ ଆସିବା ସମୟରେ ମହାତ୍ମା ଇଂରେଜୀ ଭାଷା ବିରୋଧରେ ଆନ୍ଦୋଳନ କରୁଥାଆନ୍ତି । ଗୋଟିଏ ସଭାରେ ଲୋକେ ତାଙ୍କୁ ପଚାରିଲେ ଯେ ରାମମୋହନ ରାୟ ଓ ବାଳ-ଗଙ୍ଗାଧର ତିଳକ ପ୍ରଭୃତି ଭାରତର ବଡ଼ଲୋକ ଇଂରେଜୀ ପଢ଼ି ବଡ଼ ହୋଇଛନ୍ତି । ନିଜେ ଗାନ୍ଧିଜୀ ମଧ୍ୟ ଇଂରେଜୀ ଭାଷାଦ୍ୱାରା ଜ୍ଞାନ ଅର୍ଜନ କରିଛନ୍ତି । କାହିଁକି ତା' ହେଲେ ସେ ଇଂରେଜୀ ନ ପଢ଼ିବା ପାଇଁ ଲୋକଙ୍କୁ କହୁଛନ୍ତି । ମହାତ୍ମା ଉତ୍ତର ଦେଇ କହିଲେ ଯେ ରାମମୋହନ ଓ ତିଳକ ପ୍ରଭୃତି ବଡ଼ ଲୋକମାନେ ଯଦି ଇଂରେଜୀ ପଢ଼ି ନ ଥାନ୍ତେ, ତାହାହେଲେ ବୋଧହୁଏ ସେମାନେ ଆହୁରି ବଡ଼ଲୋକ ହୋଇଥାନ୍ତେ । ଚୈତନ୍ୟ, ଶଙ୍କର, ନାନକ, କବୀର କ'ଣ ଇଂରେଜୀ ପଢ଼ି ଏତେ ବଡ଼ ବଡ଼ ମହାପୁରୁଷ ହୋଇଥିଲେ ? ପ୍ରକୃତରେ ଏହି ଦେଶର ସଂସ୍କୃତ ଶାସ୍ତ୍ର ଅଧ୍ୟୟନ କରି ସେମାନେ ଯେଉଁ କୀର୍ତ୍ତି ରଖି

ଯାଇଛନ୍ତି, ଇଂରେଜି ପଢ଼ି କେଇଜଣ ଭାରତୀୟ ତାହା କରିଛନ୍ତି ? ଗାନ୍ଧୀ ଗୀତା ପଢ଼ି ଓ ତୁଳସୀ ରାମାୟଣ ପଢ଼ି ମହାମାନବ ହୋଇଥିଲେ, ଇଂରେଜି ପଢ଼ି ନୁହେଁ ।

ଓଡ଼ିଶାର ପୁରୀ ଅଞ୍ଚଳରେ ଯେତେବେଳେ ଭୟଙ୍କର ବନ୍ୟା ହୋଇଥିଲା । ମହାତ୍ମାଜୀ ବନ୍ୟା ଅଞ୍ଚଳରେ ବୁଲି ନିଜ ଆଖିରେ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି କାନ୍ଦି ପକାଇଲେ । ତାଙ୍କ ସଙ୍ଗରେ ଯେତେ ଲୋକ ଥିଲେ ସମସ୍ତେ କାନ୍ଦିଲେ । ସେହି ଦିନ ଗାନ୍ଧିଜୀ କହିଥିଲେ ଯେ ଏହି ଦେଶର ଦରିଦ୍ରମାନେହିଁ ପ୍ରକୃତ ଦେବତା, ଏହିମାନେହିଁ ନାରାୟଣ । ଏହି ଦରିଦ୍ର-ମାନଙ୍କର ସେବାହିଁ ଦେବତାଙ୍କର ସେବା । କେବଳ ଦେବତାଙ୍କ ପୂଜାରେ ପଇସା ଖର୍ଚ୍ଚ ନ କରି ଦୁଃଖିଲୋକଙ୍କର ଦୁଃଖ ଘୁଞ୍ଚାଇବା ପାଇଁ ପଇସା ଖର୍ଚ୍ଚ କରିବା ମଧ୍ୟ ଉଚିତ । ମଲାମୁଣ୍ଡିଆ ବୋଲି ଲୋକେ ଯାହାକୁ ଗୋଡ଼ରେ ଆଡ଼େଇ ଦେଇଯା'ନ୍ତି, ମହାପୁରୁଷମାନଙ୍କର ସେମାନଙ୍କ ପ୍ରତି କେତେ ଶ୍ରଦ୍ଧା ସତେ !

ଓଡ଼ିଶାର ଜଗନ୍ନାଥ ମନ୍ଦିର ବିଷୟରେ ଗାନ୍ଧିଜୀ ଦୁଇଟି କଥା କହିଥିଲେ । ସେ ଜାଣିଥିଲେ ଯେ ଜଗନ୍ନାଥଙ୍କ ବେଶ ପୋଷାକ ବିଦେଶୀ କଳାରେ ତିଆରି ହୋଇଛି । ସେଥିରେ ସେ ଭାରି ଅସନ୍ତୁଷ୍ଟ ହୋଇଥିଲେ । ସେ କହିଥିଲେ ଯେ ଦେଶର ଦେବତାଙ୍କୁ ଦେଶୀ କଳାରେ ସଜାଇବା ଉଚିତ । ବିଦେଶୀମାନଙ୍କୁ ଯଦି ମନ୍ଦିରରେ ପ୍ରବେଶ କରିବାକୁ ମନା, ତେବେ ତାଙ୍କ ଦେଶ ତିଆରି ଲୁଗାପଟା ମନ୍ଦିରରେ ପୂରାଇବା କି ଦରକାର ? ତା ଛଡ଼ା ସେ ଦେଖିଲେ ଜଗନ୍ନାଥ ମନ୍ଦିରରେ ହରିଜନମାନଙ୍କୁ ପଶିବାକୁ ମନା । ସେ କହିଲେ ଯେ ଦେବତାଙ୍କ ଆଖିରେ ସବୁ ମଣିଷ ସମାନ, କି ପାଣ, କି ବ୍ରାହ୍ମଣ । ମଣିଷକୁ ଯେଉଁ ମନ୍ଦିର ଭିତରେ ପ୍ରବେଶ କରିବାକୁ ମନା ସେ ମନ୍ଦିରରେ ଭଗବାନ ରହିନ୍ତି ନାହିଁ । ସେପରି ମନ୍ଦିରରେ ଯେଉଁ ଦେବତା ଥାନ୍ତି ସେ ଖାଲି କାଠ ପଥର ଗଢ଼ା ମୂର୍ତ୍ତି, ଦେବତା ନୁହଁନ୍ତି । ମହାତ୍ମାଜୀ ଜଗନ୍ନାଥ ମନ୍ଦିର ଦ୍ୱାରରୁ ଫେରି ଯାଇଥିଲେ, ସେ ଦେବତାଙ୍କୁ ଦର୍ଶନ କରି ନ ଥିଲେ । ଯେତେଦିନଯାଏ ହରିଜନମାନଙ୍କୁ ମନ୍ଦିର ମୁକ୍ତ ହୋଇନାହିଁ, ସେତେଦିନଯାଏ ସେ ମନ୍ଦିର ଭିତରକୁ ଯିବେ ନାହିଁ ବୋଲି ସ୍ଥିର କରିଥିଲେ । ବଡ଼ ଲୋକମାନଙ୍କର ଜିଦ୍ ସବୁଦିନେ ବଡ଼ ।

ଗାନ୍ଧୀଙ୍କର ପଦଯାତ୍ରାବେଳେ ବହୁତ ହରିଜନ ତାଙ୍କୁ ସାକ୍ଷାତ କରିଥିଲେ । ଆଦରରେ ସେମାନେ ମହାତ୍ମାଙ୍କୁ ବାଉଁଶ କୁଲା ବିଛଣା ଉପହାର ଦେଇଥିଲେ । ଯାଜପୁରଠାରେ ଜଣେ ବଢ଼େଇ ମଧ୍ୟ ତାଙ୍କୁ ଚନ୍ଦନର ଗୋଟିଏ ଛୋଟ ବାକ୍ସ ଦେଇଥିଲେ । ଗାନ୍ଧିଜୀ ସେ ସମସ୍ତ ନିଲାମ କରିଦେଇ ସେହି ଟଙ୍କାକୁ ହରିଜନ ପାଣ୍ଠିକୁ ଦେଇ ଦେଇଥିଲେ । ସତ୍ୟବାଦୀଠାରେ ଗୋପବନ୍ଧୁଙ୍କର ବକୁଳବନ ସ୍କୁଲ ଦେଖି ସେ ଭାରି ଖୁସି ହୋଇଥିଲେ ଓ ଓଡ଼ିଆମାନଙ୍କର ସରଳ ଜୀବନକୁ ଭାରି ପ୍ରଶଂସା କରିଥିଲେ ।

ଓଡ଼ିଶାରେ ଗାନ୍ଧିଜୀ ଯେତେବେଳେ କଂଗ୍ରେସ ପାଇଁ ଚାନ୍ଦା ସଂଗ୍ରହ କରିଥିଲେ, ସ୍ତ୍ରୀଲୋକମାନେ ଆସି ଆଗ୍ରହରେ ସେମାନଙ୍କର ଅଳଙ୍କାର ମଧ୍ୟ ଦାନ କରିଥିଲେ । ଗୋଟିଏ ବାଳିକା ତା ହାତରୁ ସୁନା ଚୂଡ଼ି କାଢ଼ି ଦାନ କଲାବେଳେ ଲୋକେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଗାନ୍ଧୀଙ୍କର ଓଡ଼ିଶା'ଲୋକଙ୍କ ପାଇଁ ଯେମିତି ଶ୍ରଦ୍ଧା ଥିଲା, ଓଡ଼ିଆ ଲୋକେ ତାଙ୍କୁ ସେମିତି ଭକ୍ତି କରୁଥିଲେ । ଥରେ ମହାତ୍ମାଗାନ୍ଧୀଙ୍କୁ ଇଂରେଜ ସରକାର'ଜେଲ ଦେଇଥାନ୍ତି । ଭାରତସାରା ଭାରି ଅତ୍ୟାଚାର ଚାଲିଥାଏ । ସେତେବେଳେ ଓଡ଼ିଶାର କେତେକ ଅଞ୍ଚଳରେ ସାରୁ ଗଛରେ ବୋଧହୁଏ ରୋଗ ହୋଇ ସାରୁ ପତ୍ରରେ ଲମ୍ବା ଲମ୍ବା ଦାଗ ପଡ଼ି ଯାଉଥାଏ । ଗାନ୍ଧିଙ୍କ ଉପରେ ଇଂରେଜ ସରକାର ଅତ୍ୟାଚାର କରୁଥିବାରୁ ସାରୁ ପତ୍ରରେ ସେହି ଅତ୍ୟାଚାର ଚିହ୍ନ ଦେଖା-ଯାଉଥିଲା ବୋଲି ଉକ୍ତ ଅଞ୍ଚଳର ଲୋକେ ବିଶ୍ୱାସ କରୁଥିଲେ । କଥାଟା ମିଥ୍ୟା ହୋଇପାରେ କିନ୍ତୁ ଗାନ୍ଧୀଙ୍କପ୍ରତି ଲୋକଙ୍କର ଯେଉଁ ଶ୍ରଦ୍ଧା, ତାହା ଏଥିରୁ ସ୍ପଷ୍ଟ ଜଣା ପଡୁଥାଏ ।

---

## ।। ତୁମପାଇଁ ।।

ଅଧ୍ୟାପକ—**ନୃସିଂହ କୁମାର ରଥ**

ପ୍ରୀତି ଏବଂ ପ୍ରତ୍ୟୟର କୂଳ ଓ କିନାର ଭୁଲି
ତୁମେ ଯିଏ ଘୂରବୁଲ
ଅସହାୟ ଏ ଦେଶର ଶିଶୁ
ନାଳ ଆଉ ନର୍ଦ୍ଦମାର ଦାଢ଼େ ଦାଢ଼େ
ଖୋଜି ବସ ବ୍ୟାକୁଳରେ ଖାଦ୍ୟର କଣିକା,
ହେ ନିରହ ପ୍ରିୟ ଶିଶୁ
ତୁମେ ତ କାହାର ନୁହଁ;
ଜୀବନର ଉନ୍ମାଦନା,
ଉଚ୍ଛ୍ୱାସର ତୁମେଇ ପ୍ରତୀକ
ଅମୃତର ଶିଶୁ ଯେତେ ସରଳ ଓ ଶାନ୍ତ, ଅକପଟ
କାତର, ଅଧୀର ଅତି
ମୁଁ ଯାଉଛି ମଉଳି ତରଳି
ଜଳିଲି ମହମ ପରି ।।
ମୁଁ ବୁଝି ପାରେନା ଯମା
କେତେ ଦିନ ଆମେ ଆଉ
ରହିଥିବୁ କେବଳ ସନ୍ତୁଷ୍ଟ ଗୃକଚକ୍ୟ ବିଳାସରେ
ସ୍ୱପ୍ନର ବଳୟେ ବନ୍ଦୀ
ଆମେ ଯେତେ ଉର୍ଣ୍ଣନାଭ ।।
ତୁମର ଆକାଶେ ଘୋଟେ କଳାମେଘ,
ଗୃହପାଖେ ଆଚ୍ଛନ୍ନ କୁହେଳି;
ଛେଉଣ୍ଡ ଛୁଆଙ୍କ ପରି

## ।। ବନଫୁଲ ।।

ତୁମେ ଯେତେ ଶୀର୍ଣ୍ଣ ଦେହ
ପରିତ୍ୟକ୍ତ ପୃଥିବୀ ଦ୍ୱାରରେ
କରୁଣ ପ୍ରାର୍ଥନା ତୁମ ଅରଣ୍ୟ ରୋଦନ ହୁଏ
ଆଖିର ଆଲୋକ ହୁଏ
କେଉଁ ବ୍ୟର୍ଥ ପ୍ରାଣର ଚେତନା
ତୁମର ଜୀବନ ସୂତ୍ରେ ଗୁଂଥା ଯଦି
ଏ ଦେଶର ଭବିଷ୍ୟତ
କଳା, କୃଷି, ଚରମ ଅଭିପ୍ସା,
ତୁମ ସୁଖ ସମୃଦ୍ଧିରେ
ଆଧାରିତ ହେଉ ଯେବେ
ଥମ ଥମ ଲୁହ ଲହୁ
ଏ ଦେଶର ଶ୍ରମ ଓ ସାଧନା:
ତୁମର ଓଠର ହସେ
ଝରୁ ନୂଆ ଆଲୋକର ବନ୍ୟା
ଅନ୍ଧାରର ଅରଣ୍ୟ କାନ୍ତାରେ ।

---

ରାସ୍ତାଧାରରେ ଗୋଟିଏ ଶାନ୍ତ, ସରଳ ଶିଶୁ ନର୍ଦ୍ଦମାରୁ ଖାଦ୍ୟ କଣିକା ସଂଗ୍ରହ କରୁଥିବାର ଦେଖି ।

---

# ପିଲାମାନେ ଅପରାଧୀ କାହିଁକି ହୁଅନ୍ତି ?

ଡକ୍ଟର ରାଧାନାଥ ରଥ

ଅଳ୍ପ ବୟସ୍କ ଅପରାଧୀମାନଙ୍କ ପାଇଁ ଆଇନଗତ ଶୃଙ୍ଖଳା ଓ ଶାସ୍ତି ଅପେକ୍ଷା ମାନସିକ ଚିକିତ୍ସା ବେଶି ଦରକାର । ଏହି ତଥ୍ୟଟିକୁ ଉପଲବ୍ଧି ନ କଲା ଯାଏଁ ଏ ଦିଗରେ ବିଶେଷ କିଛି କରି ହେବନାହିଁ । ପୃଥିବୀର ଉନ୍ନତ ଦେଶମାନଙ୍କରେ ଏହି ମତ ଅନୁସାରେ ଅନେକ ବର୍ଷ ଧରି କାମ ଚାଲିଛି । ଆମ ଦେଶରେ ମଧ୍ୟ ଏହାର ସତ୍ୟତା ଲୋକେ କ୍ରମେ କ୍ରମେ ଉପଲବ୍ଧି କଲେଣି । ତଥାପି ବହୁ ପଣ୍ଡିତ-ମ୍ମନ୍ୟ ଶିକ୍ଷାବିତ୍ ଏହାକୁ ହସି ଉଡ଼ାଇ ଦିଅନ୍ତି । ଯେଉଁ-ମାନଙ୍କର ଏଥିରେ ବିଶ୍ୱାସ ନାହିଁ ସେମାନଙ୍କର ଅପରାଧୀ ଓ ନିମ୍ନଶ୍ରେଣୀ ଲୋକଙ୍କ ବିରୁଦ୍ଧରେ ଏତେ ବେଶି ଘୃଣା ଓ ବିଦ୍ୱେଷ ରହିଥାଏ ଯେ କୌଣସି ଉପାୟରେ ମଧ୍ୟ ସେମାନଙ୍କୁ ଭଲ ବାଟରେ ଆଣି ହେବ ସେ ବିଶ୍ୱାସ ତାଙ୍କର ଆଦୌ ନ ଥାଏ—ଏମାନଙ୍କ ସହିତ ଯୁକ୍ତିକରି ମଧ୍ୟ ବିଶେଷ ଲାଭ ହୁଏ ନହିଁ । ଏମାନେ ଉଚ୍ଚଶିକ୍ଷିତ ହୋଇଥିଲେ ମଧ୍ୟ କୌଣସି ପ୍ରକାର ମନସ୍ତାତ୍ତ୍ୱିକ ପରୀକ୍ଷା କିମ୍ବା ଚିକିତ୍ସାରେ ବିଶ୍ୱାସ କରିବାକୁ ରାଜି ନୁହନ୍ତି । ଦୁଃଖର ବିଷୟ ଯେ ଏପରି ଲୋକଙ୍କର ସମାଜରେ ଖୁବ୍ ପ୍ରଭାବ ଥିବାରୁ ଆମ ଦେଶରେ ଅପରାଧ ଚିକିତ୍ସା ବିଜ୍ଞାନ ଭଲ ଭାବରେ କାର୍ଯ୍ୟକାରୀ ହୋଇପାରୁ ନାହିଁ । କିନ୍ତୁ ଏହା ମଧ୍ୟ ଆନନ୍ଦର କଥା ଯେ ଆମ ଦେଶର ବହୁ ଜେଲ କର୍ମଚାରୀ ଓ ଆଇନଜ୍ଞ ସେମାନଙ୍କର ଅତୀତ ଅଭିଜ୍ଞତାରୁ ଏ ପ୍ରକାର ଚିକିତ୍ସାମୂଳକ ପଦ୍ଧତିକୁ ପସନ୍ଦ କରୁଛନ୍ତି—ତେଣୁ ଭବିଷ୍ୟତରେ ଏହା ଯେ ପ୍ରସାର ଲାଭ କରିବ ଏଥିରେ ସନ୍ଦେହ ନାହିଁ ।

ପ୍ରଥମତଃ ଦୟାଳୁ ଓ ସହାନୁଭୂତିଶୀଳ କର୍ମଚାରୀଙ୍କ ହାତରେ ଅଳ୍ପ ବୟସ୍କ ଅପରାଧୀଙ୍କୁ ଛାଡ଼ିବା ଉଚିତ । ସାଧାରଣ ପୋଲିସ କର୍ମକର୍ତ୍ତା ଓ ନିର୍ଦ୍ଦୟ ଜେଲ ରକ୍ଷକଙ୍କ ହାତରୁ ପ୍ରଥମେ ଏମାନଙ୍କୁ ଉଦ୍ଧାର କରିବାକୁ ହେବ । ଅଳ୍ପ ବୟସ୍କ ଅପରାଧୀ ପାଇଁ ସ୍ୱତନ୍ତ୍ର ଆଇନ-କାନୁନ ଓ ସ୍ୱତନ୍ତ୍ର ବିଚାରାଳୟ ପ୍ରତିଷ୍ଠିତ କରିବାକୁ ହେବ । ଆମ ଦେଶର କେତେକ ଷ୍ଟେଟରେ ମଧ୍ୟ ଏ ପ୍ରକାର ପଦ୍ଧତି ଆରମ୍ଭ ହୋଇଛି । ସ୍ୱତନ୍ତ୍ର ବିଚାରାଳୟର ମାଜିଷ୍ଟ୍ରେଟମାନଙ୍କର ଶିଶୁମନୋବିଜ୍ଞାନ ଓ ସମାଜ ବିଜ୍ଞାନରେ ବିଶେଷଭାବେ ପାରଦର୍ଶିତା ଲାଭ କରିଥିବା ଉଚିତ । ଏଥିପାଇଁ ମହିଳା ମାଜିଷ୍ଟ୍ରେଟ ରହିଲେ ଆହୁରି ଭଲ । ସେମାନଙ୍କର ନାରୀସୁଲଭ ସ୍ନେହ ଓ ସହାନୁଭୂତି ଯୋଗୁ ଅଳ୍ପ ବୟସ୍କ ଅପରାଧୀଙ୍କୁ ଭଲ ଭାବେ ବୁଝି ପାରିବେ । ପୋଲିସ ପ୍ରମାଣ ସହିତ ମନୋବିତ୍ ଓ ସମାଜସେବୀ କର୍ମଚାରୀଙ୍କ ବିବରଣୀ ବିଚାରାଳୟରେ ପେଶ ହେବା ବାଞ୍ଛନୀୟ । ମନୋବିତ୍-ମାନେ ପିଲାକୁ ନାନା ବିଷୟରେ ମନସ୍ତାତ୍ତ୍ୱିକ ପରୀକ୍ଷା କରି ତା'ର ମାନସିକ ଉଦ୍‌ବେଗ ଓ ଉତ୍ତେଜନା ବିଷୟରେ ବିବରଣୀ ଦେଇ ପାରିବେ । ସମାଜସେବୀ କର୍ମଚାରୀମାନେ ଅପରାଧୀର ଘର, ସେମାନଙ୍କର ବାପା ମା ଓ ପାରିବାରିକ ପରିସ୍ଥିତି, ପଡ଼ୋଶୀ, ପଢ଼ା ପ୍ରଭୃତି ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ

ସଠିକ ବିବରଣୀ ଯୋଗାଇ ପାରିବେ । ଏସବୁ କଥା ବିଚାର କରି ମାଜିଷ୍ଟ୍ରେଟ ଅପରାଧୀର ଚିକିତ୍ସାଲାଗି ବନ୍ଦୋବସ୍ତ କରିବେ । ଅପରାଧୀକୁ ଘରକୁ ଛାଡ଼ିଦିଆ ଯାଇପାରେ ଏବଂ ସେ ଘରେ ଥିଲାବେଳେ ମଝିରେ ମଝିରେ ସ୍ୱତନ୍ତ୍ର କର୍ମଚାରୀମାନେ ଯାଇ ତା ସହିତ ଓ ତା'ର ବାପା ମାଙ୍କ ସହିତ ପରାମର୍ଶ ଓ ଆଲୋଚନା କରି ଆସୁଥିବେ । ଯେଉଁଦିନ ଯାଏଁ ସେ ବାଟକୁ ନ ଆସିଛି ସେଦିନ ଯାଏଁ କର୍ମଚାରୀମାନେ ତା ପ୍ରତି ଦୃଷ୍ଟି ରଖିଥିବେ । ଏହାକୁ ପାରୋଲ ପଦ୍ଧତି କୁହାଯାଏ । କିନ୍ତୁ ଯାହାର ଘର ନାହିଁ କିମ୍ବା ଘରର ଅବସ୍ଥା, ବାପା ମାଙ୍କର ବ୍ୟବହାର ଏତେ ଖରାପ ଯେ ସେପରି ଘରେ ରହିଲେ ଯେକୌଣସି ସାଧାରଣ ପିଲାର ଅପରାଧୀ ହୋଇ ଯିବାର ସମ୍ଭାବନା ରହିଛି— ସେପରି ଅବସ୍ଥାରେ ପିଲାକୁ ଘରୁ ଆଣି ଏମାନଙ୍କ ପାଇଁ ତିଆରି ହୋଇଥିବା ସ୍ୱତନ୍ତ୍ର ହଷ୍ଟେଲରେ ରଖିବାର ବନ୍ଦୋବସ୍ତ ହେବା ବାଞ୍ଛନୀୟ—ଏମାନଙ୍କର ବୁଦ୍ଧିର ପରିମାଣ ଓ ଦକ୍ଷତା ଅନୁଯାୟୀ ପାଠ ପଢ଼େଇବା ପାଇଁ ସମସ୍ତ ସୁବିଧା ରହିବା ଦରକାର । ଏମାନଙ୍କର ହଷ୍ଟେଲ ସାଧାରଣ ପିଲା ରହିବା ହଷ୍ଟେଲଠାରୁ ବହୁତ ବେଶି ଭଲହେବା ଦରକାର-ଯେହେତୁ ଡାକ୍ତରଖାନା ଧର୍ମଶାଳାଠାରୁ ତେର ଭଲ ହେବା ଆବଶ୍ୟକ । ଅଭିଭାବକର ମନୋବିଜ୍ଞାନରେ ବିଶେଷ ଶିକ୍ଷାଥିବା ଦରକାର ଏବଂ ଏମାନଙ୍କର ସ୍କୁଲ-କଲେଜ ଶିକ୍ଷା ଅପେକ୍ଷା ଏ ପ୍ରକାର କାମରେ ଆଗ୍ରହର ପରିମାଣ ବେଶି ଥିବା ବାଞ୍ଛନୀୟ । ଯେକୌଣସି ଲୋକ ଏ ପ୍ରକାର କାମରେ କୃତକାର୍ଯ୍ୟ ହୋଇ ପାରିବ ନାହିଁ ।

ଏ ପ୍ରକାର ହଷ୍ଟେଲ ଅପରାଧୀମାନଙ୍କର ଚିକିତ୍ସା ଦୃଷ୍ଟିରୁ ହୋଇ ଥିବାରୁ ଏଠାରେ ଚରିତ୍ର ଗଠନ ଲାଗି ଯେଉଁପ୍ରକାର ବ୍ୟବସ୍ଥା ଦରକାର ସେ ସବୁ ରହିବା ଦରକାର । କର୍ତ୍ତବ୍ୟନିଷ୍ଠା ଶିକ୍ଷାଲାଗି ଯେପରି କାମ ହେବା ଦରକାର ସେପରି କାମ ସହିତ ଖେଳ, ଥିଏଟର କରିବା ଓ ସିନେମା, ଥିଏଟର ଦେଖିବା, ବଣ ଭୋଜିରେ ଯିବା ପ୍ରଭୃତି ଆମୋଦକର କାମର ବନ୍ଦୋବସ୍ତ ଥିବା ବିଶେଷଭାବେ ଦରକାର । ଅପରାଧୀମାନଙ୍କର ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସ ବହୁତ କମ୍ ଥାଏ । ହଷ୍ଟେଲରେ ରହିବା ସମୟରେ ସେମାନଙ୍କର ଏ ଦୁଇଟି ଗୁଣ ଯେପରି ବୃଦ୍ଧି ପାଏ ତା'ର ବନ୍ଦୋବସ୍ତ କରିବା ଦରକାର । କେତେଥର ଚୋରି କିମ୍ବା ଅନ୍ୟ କୌଣସି ଅପରାଧ କରି ସାରିଲା ପରେ ପିଲାର ଆତ୍ମବିଶ୍ୱାସ ବହୁତ କମିଯାଏ । ତେଣୁ ପ୍ରଥମେ ପ୍ରଥମେ ସାମାନ୍ୟ ସାମାନ୍ୟ କଥାରେ ତା'ର ଆତ୍ମ-ବିଶ୍ୱାସ ଫେରାଇ ଆଣିବାକୁ ଚେଷ୍ଟା କରିବା ଉଚିତ । ଯା'ର ଚୋରି ଅଭ୍ୟାସ ଥାଏ ତାକୁ ପ୍ରଥମେ କେତୋଟି ପଇସା ଦେଇ ବଜାରକୁ ପଠାଇବେ । ସେ ଠିକ୍ ଭାବରେ ହିସାବ ଦେଖାଇ ପାରିଲେ କିମ୍ବା କୌଣସି କାର୍ଯ୍ୟ କୃତକାର୍ଯ୍ୟତାର ସହିତ ସମ୍ପାଦନ କଲେ ତାକୁ ଯଥୋଚିତ ପ୍ରଶଂସା କରିବା ନିହାତି ଉଚିତ । ପ୍ରଥମରୁ ତାକୁ କୌଣସି ବଡ଼ କାମରେ ପଠାଇବା ଠିକ୍ ନୁହେଁ । ଯାହାର ଜୀର୍ଣ୍ଣ ଶକ୍ତି କମ୍ ତାକୁ ସିନା ଅଳ୍ପ ଅଳ୍ପ କରି ଖାଇବାକୁ ଦେଲେ ସେ ଜୀର୍ଣ୍ଣ କରି ପାରିବ । ସେ ଯଦି ପ୍ରଥମରୁ ଅକୃତକାର୍ଯ୍ୟ ହୁଏ, ତା' ହେଲେ ମଧ୍ୟ ହତାଶ ହେବା ଉଚିତ ନୁହେଁ—ତାର ଆତ୍ମବିଶ୍ୱାସ ଆସିବାରେ ଟିକିଏ ଡେରି ହୋଇପାରେ, କିନ୍ତୁ ପରିଶ୍ରମ କଲେ ସେ ନିଶ୍ଚୟ ଦିନେ ନା ଦିନେ ତା'ର ବିସ୍ମୃତ ଆତ୍ମବିଶ୍ୱାସକୁ ସେ ଫେରି ପାଇବ । ତାର ଅତୀତର କଳଙ୍କ କାହାଣୀ ନେଇ ତାକୁ ଆଦୌ ବ୍ୟସ୍ତ କରିବ ନାହିଁ—କିମ୍ବା ବାରମ୍ବାର ସେହିକଥା ମନେ କରାଇ ଦେଇ ଲଜ୍ଜିତ କିମ୍ବା ଅପମାନିତ କରାଇବ ନାହିଁ । ମନୋବିଜ୍ଞାନ, ସମାଜବିଜ୍ଞାନ ଓ ମାନବୀୟ ବିକାଶ ଦୃଷ୍ଟିରୁ ଅପରାଧ କିପରି କ୍ଷତିକାରକ ସେ କଥା ପ୍ରକାରାନ୍ତରେ ବୁଝାଯାଇପାରେ । ମୋଟା-ମୋଟି ମନୋବିଜ୍ଞାନର ସୂକ୍ଷ୍ମ ବୈଜ୍ଞାନିକ ପ୍ରଣାଳୀରେ ସେମାନଙ୍କର ବିଧିବଦ୍ଧ ଚିକିତ୍ସା ହେଲେ ସେମାନଙ୍କୁ

ପୁଣି ବାଟକୁ ଆଣିହେବ । ତା' ଫଳରେ ସେମାନଙ୍କର ଯେ କେବଳ ଜୀବନ ସୁଖମୟ ହେବ ତା ନୁହେଁ ସମାଜର ମଧ୍ୟ ପ୍ରଭୂତ ମଙ୍ଗଳ ସାଧିତ ହେବ ।

ଜେଲ ଯିବା ପୂର୍ବରୁ ଅପରାଧୀମାନଙ୍କର ଚିକିତ୍ସା ଆରମ୍ଭ କଲେ ଶୀଘ୍ର ସେମାନଙ୍କୁ ଆରୋଗ୍ୟ କରିହୁଏ । କିନ୍ତୁ ଥରେ ଜେଲକୁ ଗଲେ ସେମାନଙ୍କର ମନ ଆହୁରି କଠିନ ହୋଇଯାଏ ଏବଂ ସମାଜ ମଧ୍ୟ ଏମାନଙ୍କୁ ନିରପରାଧ ବୋଲି ସହଜରେ ଗ୍ରହଣ କରିପାରେ ନାହିଁ । ତଥାପି ପ୍ରଥମ ଅପରାଧ ପାଇଁ ଜେଲ ଯାଇଥିବା ଅପରାଧୀଙ୍କୁ ସହଜରେ ଭଲ ବାଟକୁ ଆଣିହେବ । ପ୍ରଥମ ଅପରାଧରେ ଦଣ୍ଡିତ ଅପରାଧୀକୁ ଜେଲ ଭିତରେହିଁ ଉପଯୁକ୍ତ ଶିକ୍ଷାଦେବା ଦରକାର । ଜେଲକୁ ବନ୍ଦୀଖାନା ହିସାବରେ ନ ଧରି ଚିକିତ୍ସାଳୟ ହିସାବରେ ଗ୍ରହଣ କରିବା ଉଚିତ । ଆଗରୁ ମଧ୍ୟ ସେ ଧାରଣା ଆମର ଅଛି । ସେଥିଲାଗି ଜେଲ ସୁପରିଣ୍ଟେଣ୍ଡେଣ୍ଟ ହିସାବରେ ଜଣେ ପୋଲିସ କର୍ମଚାରୀ ନ ରଖି ଜଣେ ଡାକ୍ତର ରଖନ୍ତି—ଜେଲ୍ ବିଭାଗର ମୁଖ୍ୟ କର୍ମଚାରୀ ଡାକ୍ତର; କିନ୍ତୁ ଏହା ମଧ୍ୟ ପୁରୁଣା ହୋଇଗଲାଣି—ଡାକ୍ତର ଅପେକ୍ଷା ମନୋବିତ୍‌ର ବେଶି ଦରକାର । ଅପରାଧୀର ଶାରୀରିକ ରୋଗ ଅପେକ୍ଷା ମାନସିକ ରୋଗର ଗୁରୁତ୍ୱ ବେଶି । ଜେଲ ଭିତରେ ତାକୁ ଉପଯୁକ୍ତ ସାଧାରଣ ଶିକ୍ଷା ଓ ବୃତ୍ତି ଶିକ୍ଷା ସହିତ ଅନ୍ୟାନ୍ୟ ଚରିତ୍ର ଗଠନ କରିପାରିବା ଭଳି ଶିକ୍ଷାଦେବା ଉଚିତ । ଜେଲରୁ ଖଲାସ ହେବା ପୂର୍ବରୁ ସେ ସମାଜରେ କିପରି ସୁବିଧାରେ ନିଜର ଅଭାବ ମେଣ୍ଟାଇ ପାରିବ ତା'ର ବନ୍ଦୋବସ୍ତ ହେବା ଦରକାର । ବର୍ତ୍ତମାନ ଜଣେ ଅପରାଧୀ ଜେଲରୁ ବାହାରିଲା ପରେ ହିଁ ଚୋରି ଆରମ୍ଭ କରିବାକୁ ବାଧ୍ୟ ହୁଏ । କାରଣ ତାକୁ ସମାଜରେ କେହି ଗ୍ରହଣ କରନ୍ତି ନାହିଁ । ଜେଲରୁ ମୁକୁଳି ଥିବା କେତେକ ପିଲାଙ୍କ ଲାଗି ଚାକିରୀ ବନ୍ଦୋବସ୍ତ କରିବା ପାଇଁ ଲେଖକ ଅନେକ ଥର ଚେଷ୍ଟା କରିଥିଲି, କିନ୍ତୁ କେହିହେଲେ ତାଙ୍କୁ ଚାକିରୀ ଦେବାପାଇଁ ରାଜି ହେଲେନାହିଁ । ଏ ଦିଗରେ ସରକାରଙ୍କ ତରଫରୁ ସୁବନ୍ଦୋବସ୍ତ ହେବା ବିଧେୟ । ଯେ ଜେଲକୁ ଥରେ ଯିବ ତା'ର ପୂରା ଦାୟିତ୍ୱ ସରକାରଙ୍କର ହେବା ଉଚିତ । ସମାଜର ସୁଖ ସମ୍ପଦ ରକ୍ଷା କରିବାଲାଗି କେବଳ ବନ୍ଦୀଶାଳା ତିଆରି କରିଦେଲେ ହେବନାହିଁ । ବନ୍ଦୀଶାଳାକୁ ଚିକିତ୍ସାଳୟରେ ପରିଣତ କରିବା ଦରକାର ଏବଂ ଏ ପ୍ରକାର ରୋଗୀର ରୋଗ ଯେପରି ପୁଣିଥରେ ଦେଖା ନ ଦିଏ ତା'ର ମଧ୍ୟ ସୁବନ୍ଦୋବସ୍ତ ହେବା ଦରକାର । ତା' ନହେଲେ ବର୍ତ୍ତମାନର ପ୍ରଚଳିତ ବନ୍ଦୀଶାଳାହିଁ ସାଧାରଣ ଅପରାଧୀକୁ ଆହୁରି ବେଶି ନିର୍ଦ୍ଦୟ ଓ ନିର୍ମମ କରି ଗଢ଼ୁଛି—ସାମାଜିକ ଦୁଃଖ ଦୁର୍ଦ୍ଦଶା କମାଇବା ପରିବର୍ତ୍ତେ ତାକୁ ଅନେକ ଗୁଣରେ ବୃଦ୍ଧି କରୁଛି ।

ସୁଖର କଥା ଏ ଦିଗରେ ଆମମାନଙ୍କର ଚେଷ୍ଟା ଆରମ୍ଭ ହେଲାଣି—ଆମର ଏ ଦିଗରେ ଯୋଜନା ଖୁବ୍ ମନ୍ଥର ଗତିରେ କାର୍ଯ୍ୟକାରୀ ହେଉଥିଲେ ସୁଦ୍ଧା ନିକଟ ଭବିଷ୍ୟତରେ ଯେ ଆମେ ବହୁତ ଆଗେଇ ଯାଇ ପାରିବା, ଏଥିରେ ସନ୍ଦେହ ନାହିଁ ।

—※—

# ।। ନାରୀ ଶିକ୍ଷାର ପରିଣତି ।।

**ସରଳା ଦେବୀ**

ପୂର୍ବକାଳରେ ନାରୀମାନେ ଯେଉଁ ରୀତି ନୀତିରେ ଶିକ୍ଷା ପାଉଥିଲେ, ଆଧୁନିକ ଯୁଗରେ ତାହା ବିପରୀତ ମୁଖୀ ହୋଇ ଯାଇଛି; କାରଣ ହେଉଛି ଭାରତବର୍ଷ ଏକ ସନାତନ ଦେଶ ଓ ଏହାକୁ ହିନ୍ଦୁ ରାଷ୍ଟ୍ର କୁହାଯାଏ । ହିନ୍ଦୁ ଗୋଟିଏ ଜାତି ନୁହେଁ, ଯେପରି ମୁସଲମାନ ଓ ଖ୍ରୀଷ୍ଟିୟାନ, ବୌଦ୍ଧ,-ଶିଖ, ପାର୍ଶି, ଇହୁଦି ଧର୍ମରେ ପ୍ରଭାବିତ ଓ ପୁଷ୍ଟ ବିଭିନ୍ନ ଜାତି ଗୋଷ୍ଠୀ । ହିନ୍ଦୁ କହିଲେ ଗୋଟିଏ Nation ବା ବିଶାଳ ଜାତି ବୁଝାଏ— ଗୋଟିଏ ଖଣ୍ଡିତ race ବା ସାମାଜିକ ଜାତିକୁ ବୁଝାଏ ନାହିଁ । ତେଣୁ ଭାରତବର୍ଷ ପୃଥିବୀରେ ଯେପରି ଏକ ଅପରିବର୍ତ୍ତନଶୀଳ ହିନ୍ଦୁରାଷ୍ଟ୍ର ସନାତନ ଦେଶ; ତାର ଧର୍ମ କର୍ମ ସଂସ୍କୃତି ଓ ପରମ୍ପରା ମଧ୍ୟ ସେହିପରି ଅପରିବର୍ତ୍ତନୀୟ ଓ ସନାତନ । ହିନ୍ଦୁ ଜାତିକୁ ହିଁ ଭାରତରେ ଆର୍ଯ୍ୟ ଜାତି ବୋଲି କୁହାଯାଇଛି । ଭାରତର ବାହାରୁ କାସ୍ପିୟାନ ହ୍ରଦ କୂଳରୁ ଏସିଆ ମାଇନର ମଧ୍ୟପ୍ରାଚ୍ୟ ଭେଦକରି ଯେଉଁମାନେ ଗୋରୁ, ଛେଳି, ମେଣ୍ଢା ପ୍ରଭୃତି ପଶୁମାନଙ୍କୁ ନିଜ ପରିବାର ବର୍ଗ ସହିତ ନେଇ ଚାଲି ଚାଲି ଭାରତବର୍ଷକୁ ଆସି ହିମାଳୟ ପ୍ରଦେଶରେ ଭାରତର ଉତ୍ତରାଞ୍ଚଳ ଆର୍ଯ୍ୟାବର୍ତ୍ତରେ ବସତି ସ୍ଥାପନ କରି ଭାରତର ମୂଳ ବାସିନ୍ଦା ଅନାର୍ଯ୍ୟ ବା ଜଙ୍ଗଲୀ ବନଚାରୀ ଜାତିମାନଙ୍କୁ ଧ୍ୱଂସ କରି ଆର୍ଯ୍ୟସଭ୍ୟତା ବିସ୍ତାର କରିଥିଲେ ବୋଲି ଆମର ଇଂରାଜ ଐତିହାସିକମାନେ ଆମକୁ ସଚେତନ କରିବାକୁ ବହି ଲେଖିଥିଲେ, ତାହା ଯେ ଭାରତରେ ବୈଶିଷ୍ଟମୂଳକ ଆତ୍ମ-ଚୈତନ୍ୟକୁ ପାଶୋରାଇ ପରମୁଖାପେକ୍ଷୀ ଭାରତୀୟମାନଙ୍କୁ ବିକୃତ ଆତ୍ମଚେତନା ଶୂନ୍ୟ ବୈଦେଶିକ ଭାବନାଯୁକ୍ତ ଏକ କ୍ଲୀବ ପରାନୁସରଣକାରୀ ଜାତି ଭାବରେ ତିଆରି କରିବା ପାଇଁ ଉପରୋକ୍ତ ଇତିହାସ ଲେଖା ହୋଇଥିଲା, ତହିଁରେ ସନ୍ଦେହ ନାହିଁ । ସେହି ସିଦ୍ଧାନ୍ତକୁ ଆମର ପୁଣ୍ୟଶ୍ଳୋକ ଭାରତ ସ୍ୱାଧୀନତାର ମୂଳ ପ୍ରବର୍ତ୍ତକ ସ୍ୱରାଜ୍ୟ ମନ୍ତ୍ରର ଆବିଷ୍କାରକ ଶ୍ରୀ ବାଳଗଙ୍ଗାଧର ତିଳକ ମହାରାଜ ମିଥ୍ୟାବୋଲି ପ୍ରମାଣ କରି ଦେଇଛନ୍ତି—ତାଙ୍କର ଓରାୟଂ ବହିରେ । ତାହା ପୂର୍ବରୁ ଆମ ଭାରତର ଗୌରବ ଜାତୀୟତାର ଓ ଜାତୀୟ ସଂସ୍କୃତିର ଶ୍ରେଷ୍ଠତମ ପୂଜାରୀ ଶ୍ରୀ ବିବେକାନନ୍ଦ ସ୍ୱାମୀ ମଧ୍ୟ ତାଙ୍କର ବେଦ ବେଦାନ୍ତ ଗବେଷଣା ଗ୍ରନ୍ଥମାନଙ୍କରେ ନାନାଭାବରେ ଇଂରାଜ ଐତିହାସିକମାନଙ୍କର ସିଦ୍ଧାନ୍ତମାନଙ୍କୁ ତୀବ୍ରଭାବରେ ଖଣ୍ଡନ କରି ଲେଖିଥିଲେ, "ଆର୍ଯ୍ୟମାନେ ଭାରତର ମୌଳିକ ସନ୍ତାନ ।" ଏହି ଦେବଭୂମି କର୍ମଭୂମିରେ ହିଁ ଆର୍ଯ୍ୟବସତି ବୈଦିକ ଯୁଗର ପ୍ରାକ୍‌କାଳରୁ ଏହା ପ୍ରତିଷ୍ଠିତ ହୋଇଛି । ଭାରତରେ ଆର୍ଯ୍ୟେତର ଜାତିମାନଙ୍କୁ ଭାରତରେ ଜନ୍ମିଥିବା, ବୈଦିକ ସଂସ୍କୃତି ଓ ପରମ୍ପରା ସଭ୍ୟତା ସୃଷ୍ଟି କରିଥିବା ଆର୍ଯ୍ୟମାନେ ଦେଶରୁ ମାରି ଘଉଡ଼ାଇ ନ ଥିଲେ କିମ୍ବା ନିର୍ମୂଳ କରି ନ ଥିଲେ । ଏ ଦେଶରେ ଭଗବାନ କୃଷ୍ଣ ଜନ୍ମିଥିଲେ । ଜାରାଶବର ମଧ୍ୟ ଜନ୍ମିଥିଲା, ଭଗବାନ ରାମଚନ୍ଦ୍ର ଜନ୍ମିଥିଲେ । ଗୁହକ ଚଣ୍ଡାଳର ଅବସ୍ଥାନ ଶବରୀର ଅବସ୍ଥାନ ମଧ୍ୟ ଭାରତରେ ଥିଲା । ତେଣୁ ବିଦେଶୀମାନଙ୍କର ମତ ପୂର୍ଣ୍ଣଭ୍ରାନ୍ତ ବୋଲି ତାଙ୍କର ସିଦ୍ଧାନ୍ତକୁ ସେ ବଜ୍ର ଗମ୍ଭୀର କଣ୍ଠରେ ପୃଥିବୀରେ ପ୍ରଚାର କରିଥିଲେ । ଋକ୍‌ବେଦରେ ଆମ ଭାରତ ରାଷ୍ଟ୍ରର ଗୈରିକ ପତାକା ଓ ରାଷ୍ଟ୍ରବନ୍ଦନା ଲିଖିତ ଅଛି । × ×

ତେଣୁ ଏହି ସନାତନ ଧର୍ମ, ସନାତନ ଜାତି, ସନାତନ ଦେଶର ସାମାଜିକ ରୀତି ପ୍ରକୃତି ଓ ସଂସ୍କାରମାନଙ୍କ ସହିତ ସାମଞ୍ଜସ୍ୟ ରଖି ସେ ଯୁଗର ଋଷି କନ୍ୟାମାନେ ଋଷି ପତ୍ନୀମାନେ ଶିକ୍ଷିତା ହୋଇଥିଲେ । କ୍ଷତ୍ରିୟ କନ୍ୟାମାନଙ୍କୁ ମଧ୍ୟ ସମାଜ ଓ ଏକାନ୍ନବର୍ତ୍ତି ପରିବାରର ଅନୁବର୍ତ୍ତି ଶିକ୍ଷା ଦିଆଯାଉଥିଲା ।

ତେଣୁ ସେହି ଶିକ୍ଷାର ମାଧ୍ୟମ ଭାରତ ନାରୀର ଜୀବନ ଯାପନର ରୀତି ଥିଲା । ଭାରତବର୍ଷ ପ୍ରାଚୀନ କାଳରୁ ଏକ ହିନ୍ଦୁରାଷ୍ଟ୍ର ଥିବାରୁ ରାଷ୍ଟ୍ର ସଭ୍ୟତା ଓ ସାମାଜିକ ପାରିବାରିକ ତଥା ବ୍ୟକ୍ତିର ଉନ୍ମେଷଣ ଓ ଉଦ୍‌ବର୍ତ୍ତନର ବିକାଶର ଉପଯୋଗୀ ଶିକ୍ଷା ପ୍ରଣାଳୀ ଅରଣ୍ୟରେ ଅବସ୍ଥାପିତ ଗୁରୁଗୃହରେ ପ୍ରଚଳିତ ଥିଲା । ସେ ଯୁଗରେ ଭାରତର ଅଖଣ୍ଡତା ସହିତ ପରମ୍ପରା ଧର୍ମ କର୍ମ ଉପରେ ଭିତ୍ତିକରି ବିବର୍ଦ୍ଧିତ ହୋଇଥିଲା । ଆଜି-କାଲି ପରି ଖ୍ରୀଷ୍ଟାନ, ମୁସଲମାନ, ପାର୍ଶି, ବୌଦ୍ଧ, ଜୈନ ପ୍ରଭୃତି ବହୁ ଧର୍ମ ବହୁଜାତିଙ୍କର ସମାବେଶ ଭାରତରେ ନ ଥିଲା ବୋଲି ମହର୍ଷି ମନୁ ତାଙ୍କର ସଂହିତାରେ ଲେଖିଥିଲେ— ଯେଉଁମାନେ ଏ ଦେଶରେ ଜନ୍ମିଛନ୍ତି, ସେମାନେ ସମଗ୍ର ଭୂମଣ୍ଡଳକୁ ମାନବ ସଭ୍ୟତା ଓ ଉତ୍ତମ ସଂସ୍କାର ଦେଇ ସମୃଦ୍ଧ କରିଛନ୍ତି । ପୃଥିବୀରେ ମାନବ ସଭ୍ୟତାର ଜନନୀ ଓ ଜନ୍ମଭୂମି ଭାରତବର୍ଷ । ତେଣୁ ଆମ୍ଭମାନଙ୍କ ଜୀବନ ଦର୍ଶନ ଏବଂ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟର ବିଧିବିଧାନ ପୁରାଣ ଇତିହାସମାନଙ୍କରୁ ମିଳେ ।

ତେଣୁ ବିଭିନ୍ନ ଜାତି-ଉପଜାତି ବିଭିନ୍ନ ଗୋଷ୍ଠୀର ଆବର୍ତ୍ତନ ବିବର୍ତ୍ତନରେ ଯୁଦ୍ଧାଭିଯାନରେ ପରବର୍ତ୍ତୀ ଯୁଗମାନଙ୍କରେ ଭାରତବର୍ଷର ଅନ୍ତଃସ୍ଥଳକୁ ନିଦାରୁଣ ବିଡମ୍ବନା ବଞ୍ଚନା କରିବା ପାଇଁ ବିଭିନ୍ନ ପ୍ରକାର ଶିକ୍ଷାକ୍ରମ ଏ ଦେଶକୁ ଆସିଥିବାରୁ ଆଜିର ନାରୀ ଶିକ୍ଷାର ରୂପରେଖ ଯାହା ହୋଇଅଛି, ତାହା ଭାବିବାର ସମୟ ଆସିଛି । ପୂର୍ବେ ନାରୀମାନଙ୍କର ଐକାନ୍ତିକ ଭାବରେ ପତି ଓ ତାଙ୍କ ଗୃହର ପୂଜ୍ୟମାନଙ୍କର ଯଥାଯୋଗ୍ୟ ସେବା ଓ ଗୃହକର୍ମ ସନ୍ତାନମାନଙ୍କୁ ଉତ୍ତମ ମନୁଷ୍ୟର ସଂସ୍କାର ଦେବାପାଇଁ ନାରୀ ପରିବାରରେ ପିତାମାତା କର୍ତ୍ତୃକ ଶିକ୍ଷିତା ହେଉଥିଲା । ତାର ଜୀବନର ବିଶିଷ୍ଟତା ବା ପ୍ରତିଭାକୁ ସେ ନିୟୋଗ କରୁଥିଲା ପରିବାର ଓ ସ୍ୱାମୀ ସନ୍ତାନମାନଙ୍କର ସେବା ଓ ଅଭିବୃଦ୍ଧି ପାଇଁ । ସେହି ସୀମିତ ପରିବେଶ ଭିତରେ ତା'ର ନାରୀତ୍ୱ ଓ ମାତୃତ୍ୱର ପରାକାଷ୍ଠା ପ୍ରକାଶ କରି ତ୍ୟାଗ ଓ ସହନଶୀଳତାରେ ସେ ଗୃହଲକ୍ଷ୍ମୀ ଭାବରେ ସମ୍ମାନିତା ଓ ସମ୍ବର୍ଦ୍ଧିତା ହେଉଥିଲା । ମାତ୍ର ଏ ଯୁଗରେ ନାରୀଶିକ୍ଷା ବୋଲି ଗୋଟିଏ ସ୍ୱତନ୍ତ୍ର ଶିକ୍ଷା ପ୍ରବର୍ତ୍ତିତ ପ୍ରଣାଳୀ ଭାରତରେ ଆବିଷ୍କୃତ ହୋଇନାହିଁ । ନରଶିକ୍ଷା ଓ ନାରୀଶିକ୍ଷା ଭିତରେ ଯେ ଯଥେଷ୍ଟ ମୌଳିକ ବ୍ୟବଧାନ ବାଞ୍ଛନୀୟ ଏକଥା ୟୁରୋପ ଓ ଆମେରିକାର ବଡ଼ ବଡ଼ ସମାଜତତ୍ତ୍ୱବିତ୍ ପଣ୍ଡିତମାନେ ଉପଲବ୍ଧି କଲେ ମଧ୍ୟ ନବ ପ୍ରତିଷ୍ଠିତ ସ୍ୱାଧୀନ ଭାରତ ରାଷ୍ଟ୍ରରେ ତାହାର ସୂଚ୍ୟଗ୍ର ପରିମାଣ ଚେଷ୍ଟା କିମ୍ବା ଏ ଦିଗରେ ଅଭିପ୍ସା ରାଷ୍ଟ୍ରୀୟ ଏବଂ ସାମାଜିକ ଜୀବନରେ ଲକ୍ଷିତ ହୁଏନାହିଁ । ସହଶିକ୍ଷା ବଶତଃ ଯୁବତୀମାନଙ୍କର ଅପାତ୍ରରେ ଅଯୋଗ୍ୟରେ ଅଜାତିରେ ଅବାଧ ପ୍ରଣୟ ନିବେଦନ ବିବାହ ଓ କୁମାରୀ ମାତୃତ୍ୱ ଭ୍ରୂଣହତ୍ୟା, ସ୍ୱାମୀ ଓ ସନ୍ତାନ ପରିବାର ଗୋଷ୍ଠୀର ଜୀବନକୁ ବିଷାକ୍ତ ଓ ନଷ୍ଟଭ୍ରଷ୍ଟ କରିଦେବାର ଅସ୍ତ୍ର ସ୍ୱରୂପେ ଆଧୁନିକ ନାରୀଶିକ୍ଷାର ଗୌରବ । ନାରୀଶିକ୍ଷାରେ ନାରୀର ଅନ୍ତର୍ନିହିତ କୋମଳ ସୂକ୍ଷ୍ମ ପ୍ରବୃତ୍ତି ପ୍ରକୃତ ସ୍ନେହଶୀଳତା ଲଜ୍ଜା ଅନୁତାପ ତ୍ୟାଗ ପରାର୍ଥେ ଆତ୍ମସ୍ୱାର୍ଥ ତ୍ୟାଗ ସହିଷ୍ଣୁତା ପ୍ରଭୃତି ନାରୀର ସହଜାତ ପ୍ରକୃତି (instinct) ଲକ୍ଷିତ ହୁଏନାହିଁ । ତେଣୁ ଯେଉଁ ଶିକ୍ଷାକ୍ରମ ପାଠ୍ୟକ୍ରମ ଆଜି ନାରୀର ଯଥାର୍ଥ ନାରୀତ୍ୱର ବିକାଶର ପଥରୋଧକାରୀ, ଯେଉଁ ଶିକ୍ଷା ଆଜି ପୁରୁଷକୁ ବୃହନ୍ନଳା ରୂପ ଦେଇଛି, କ୍ଳୀବ ପୌରୁଷଶୂନ୍ୟ ଶୌର୍ଯ୍ୟବୀର୍ଯ୍ୟହୀନ ଏକ ଉଦର ଉପସ୍ଥ ସର୍ବସ୍ୱ କରି ଆଳସ୍ୟ ବିଳାସ ପରାୟଣ ଆତ୍ମବିଶ୍ୱାସହୀନ ଆତ୍ମଶକ୍ତିହୀନ, କର୍ମକୁଣ୍ଠ ଭୀରୁ ବିଦେଶ ବତ୍ସଳ କରି ଠିଆ କରିଛି, ଯେଉଁ ଶିକ୍ଷା ନାରୀର ଜନନୀତ୍ୱକୁ ଧିକ୍କାର କରେ, ଘୃଣା ଓ ତାଚ୍ଛଲ୍ୟ କରେ, ଯେଉଁ ଶିକ୍ଷା ନାରୀକୁ ବିଦେଶୀ ବସନ ବ୍ୟସନ ବିଳାସ ବତ୍ସଳା ଶ୍ରମକୁଣ୍ଠିତା, ପର ନିର୍ଭରଶୀଳା କର୍ତ୍ତବ୍ୟଜ୍ଞାନହୀନା ଆତ୍ମସଂଯତଶୂନ୍ୟା ଦେଶମାତୃକା ପ୍ରତି ଉଦାସୀନା ସମାଜ ଚେତନାଶୂନ୍ୟା ଏକ ସ୍ୱାର୍ଥସର୍ବସ୍ୱ ବ୍ୟକ୍ତିତାନ୍ତ୍ରିକା କରି ନାରୀତ୍ୱର ବିକାଶ ଉଦ୍‌ବର୍ତ୍ତନ ବିବର୍ତ୍ତନକୁ ଲାଞ୍ଛିତ କରି ଏକ ବିଭତ୍ସ ଶିକ୍ଷାର ପ୍ରତୀକ ରୂପେ ସମାଜ ଓ ରାଷ୍ଟ୍ର ଜୀବନର ଆତଙ୍କ ରୂପେ ଛିଡ଼ା ହୋଇଛି, ତାହା କଣ ସ୍ୱାଧୀନତା ପରେ ଭାରତବର୍ଷର ଭାରତ ନାରୀର ଯଥାର୍ଥ ଶିକ୍ଷା ? ଏହାପ୍ରତି ବିଦ୍ୱାନମାନେ ଦେଶବତ୍ସଳ ନରନାରୀମାନେ ଚିନ୍ତା କରିବାକୁ ମୋର ଏହି କ୍ଷୀଣ ଚେଷ୍ଟା । ନାରୀଶିକ୍ଷାର ନୂତନ ଯୋଜନା ଭାରତୀୟ ଇତିହାସ, ଭୂଗୋଳ, ସମାଜତତ୍ତ୍ୱ ଓ ଦାର୍ଶନିକତତ୍ତ୍ୱ ଉପରେ ପୁନଃ ଆବିଷ୍କୃତ ଓ ନିର୍ମିତ ନ ହେଲେ ସମଗ୍ର ଭାରତର ଅଧଃପତନ ଓ ଧ୍ୱଂସ ଅନିବାର୍ଯ୍ୟ । ତେଣୁ ଆଧୁନିକ ଶିକ୍ଷା ସତୀ ନାରୀକୁ ଅସତୀ କରନ୍ତି, ଦେବୀକୁ ହିଡ଼ିମ୍ବା ପୁତନା ପରି ଦାନବୀର ମନୋହର

ଆକର୍ଷଣୀୟ ଅଗ୍ନିସ୍ଫୁଲିଙ୍ଗର ବିଚିତ୍ର ରୂପକାନ୍ତି ଦେଖୁଛି—ଯହିଁରେ ଦୁର୍ବଳ ପୌରୁଷହୀନ ବ୍ରହ୍ମଚର୍ଯ୍ୟହୀନ ମଦ୍ୟପ୍ରିୟ କ୍ଷମତାପ୍ରିୟ ଅଧର୍ମଗ୍ରସ୍ତ ମଦମତ୍ତ କାମିନୀ କାଞ୍ଚନ ଲୋଭୀ ପୁରୁଷମାନେ ପତଙ୍ଗବତ୍ ପଡ଼ି ଜୀବନାହୁତି ଦେଉଛନ୍ତି, ମାତୃଜାତି ସନ୍ତାନ-ପୁତ୍ରସଂହାରଣୀ ହେଉଛନ୍ତି ଜଳି ପୋଡ଼ି ଯାଉଛନ୍ତି । ସବୁଆଡ଼େ ରୋଗ ଶୋକର ଜ୍ୱାଳା ପ୍ରାଣର ଜ୍ୱାଳା, ବାସନା ଅତୃପ୍ତିର ହାହାକାର, ଇନ୍ଦ୍ରିୟକ୍ଷୁଧାର ହାହାକାର ଲାଗି ରହିଛି । ତାହାର ପରପ୍ରକାଶ ଆଧୁନିକ ଅଶ୍ଳୀଳ ସିନେମା, ଅଶ୍ଳୀଳ ଶସ୍ତା ସାହିତ୍ୟ, ଅଶ୍ଳୀଳ ଉଲଗ୍ନ ଚିତ୍ରାବଳୀ ଓ ଅଶ୍ଳୀଳ ଇନ୍ଦ୍ରିୟ ଉନ୍ମାଦକ ଉତ୍ତେଜକ ଅବୈଧ ବାସ୍ତବ ଯୌନରସ ସାପ୍ଲୁତ ନଗ୍ନ ସାହିତ୍ୟ ଏବଂ ତାର ଉପଜୀବ୍ୟ ଲୋଭ, ବାସନା, କାମନା, ଇନ୍ଦ୍ରିୟ ସେବାରେ ପର୍ଯ୍ୟବସିତ ଏବଂ ପର୍ଯ୍ୟସିତ ହୋଇ ଏ ଯୁଗର ଭବିଷ୍ୟତ ବଂଶଧର ତରୁଣ ତରୁଣୀମାନଙ୍କୁ ଅନ୍ଧକାରରେ ଆବର୍ତ୍ତିତ ଓ ବିବର୍ତ୍ତିତ ପୂତିଗନ୍ଧମୟ ରକ୍ତମାଂସ କ୍ଳେଦମୟ ନରକ ଗହ୍ୱରକୁ ଟାଣି ନେଉଛି । ଆମ ଜୀବନର ଦର୍ଶନ ନାହିଁ, ନୀତିପଦ୍ଧତି ନାହିଁ । ଉଦ୍ଧାରର ଉପାୟ ଅଛି—ପଥଅଛି—ମାତ୍ର ଭାରତର ଅଜଣା ଗଣତାନ୍ତ୍ରିକ ରାଷ୍ଟ୍ରନୀତିରେ ତାହା ସମ୍ଭବ କି ?

---

# ॥ ଗାଡ଼ି ॥

ଅଧ୍ୟାପକ—**ଶ୍ୟାମସୁନ୍ଦର ମିଶ୍ର**
( ବ୍ରହ୍ମପୁର )

ଅଧ୍ୟାପକ ଜ୍ଞାନରଞ୍ଜନ ନିଜର ଲକ୍ଷ୍ୟସ୍ଥଳ ନିକଟରେ ସାଇକେଲରୁ ଓହ୍ଲାଇଲେ । ଅଳ୍ପ କେତେକ ମୁହୂର୍ତ୍ତ ମଧ୍ୟରେ ନିଜର ଶରୀର ଓ ପୋଷାକ ପରିଚ୍ଛଦ ଉପରେ ଆଖି ବୁଲାଇ ନେଲେ । ପ୍ୟାଡ଼େଲ ଲାଗିଯାଇ ପ୍ୟାଣ୍ଟର ତଳପଟେ କଳାଦାଗ ଲାଗିଯାଇ ନାହିଁତ ? କାଦୁଅର ଲାଲ ଛିଟିକା ଲାଗିଯାଇ ନାହିଁତ ? କୋର୍ଟର ଇସ୍ତ୍ରୀ ଭାଙ୍ଗିଯାଇ ନାହିଁତ ? ଘରୁ ଆସିଲାବେଳେ କେବଳ ଗଳବନ୍ଧନୀ ସଜାଡ଼ିବା ପାଇଁ ଦର୍ପଣ ଆଗରେ ଦଶ ମିନିଟ ପରିଶ୍ରମ କରିଥିଲେ ମଧ୍ୟ ବାଁ ହାତଟା ଆପେ ଆପେ ଉଠିଗଲା ବାନ୍ଧାହୋଇ ପଡ଼ିଥିବା ବ୍ୟକ୍ତିତ୍ୱ ଓ ପ୍ରତିଷ୍ଠାର ଗଣ୍ଠି ଠିକ୍ ଅଛି କି ନା ପରୀକ୍ଷା କରିନେବା ଲାଗି ।

ଦୁଇଦିନ ତଳେ ଠିକ୍ କଲେଜ ସମୟ ପରେ ପରେ ସେ କଲେଜ ଛକ ପାରହୋଇ ଆରପଟ ଜଳଖିଆ ଦୋକାନକୁ ଯାଉଥିବାବେଳେ ଗୋଟାଏ କାର ଆସି ତାଙ୍କ ପାଖରେ ଠିଆହୋଇ ଯାଇଥିଲା, ଆଉ ତା ଭିତରୁ ତାଙ୍କ ନିଜ ଡାକନାମ ଧରି କିଏ ଜଣେ ପାଟିକରି ଉଠିଲା । ସେ ପ୍ରକୃତିସ୍ଥ ହେବା ପୂର୍ବରୁ ଆରପଟ କବାଟ ଖୋଲିଦେଇ ସେ ଆସି କରମର୍ଦ୍ଦନ ପାଇଁ ତାଙ୍କ ଆଡ଼କୁ ହାତ ବଢ଼ାଇ ଦେଇଥିଲା, ତାକୁ ଦେଖି ସେ ଆନନ୍ଦ ଓ ବିସ୍ମିତ ହୋଇ ରହିପାରି ନ ଥିଲେ ।

"ଆରେ ଘଗା କରେଁ! ତୁ ଏଠି କପରି ?"

ଏଠାକୁ ନୂଆ ବଦଳିହୋଇ ଆସିଥିବା ଏସ୍. ଡି. ଓ. ସୌଭାଗ୍ୟ କୁମାର ଦିନେ ତାଙ୍କର ସହପାଠୀ ଥିଲେ । ତାଙ୍କର ନାମର ସ୍ୱାଭାବିକ ଅଭିବ୍ୟକ୍ତିକରଣ ଯୋଗୁଁ ହେଉ କିମ୍ବା ତଥାକଥିତ ଅତ୍ୟାଧୁନିକ ଏକ ଧନୀ ପରିବାରର ଏକ ସନ୍ତାନଠାରେ ସେଉଁ ସହଜାତ ଗୁଣ ସବୁ ଦେଖାଯାଏ, ତାହାର ରୂପ ଦେବାକୁ ଯାଇ ହେଉ ସୌଭାଗ୍ୟକୁମାର ତାର ଏଇ ଡାକନାମଟିରେ ବନ୍ଧୁମହଲରେ ପରିଚିତ ଥିଲେ । ଜ୍ଞାନରଞ୍ଜନଙ୍କୁ କିନ୍ତୁ ତାଙ୍କର ଏଇ ସରଳ କର୍ମମୁଖରତା ଓ ଉଦାରତା ଖୁବ୍ ଭଲ ଲାଗୁଥିଲା-ସେ ଦୁହେଁ ଥିଲେ ଘନିଷ୍ଠ ବନ୍ଧୁ । ଦୁଇ ବିପରୀତ ଧର୍ମୀ ଚରିତ୍ରର ଏ ବିଷମ ମିଳନ ସହାଧ୍ୟାୟୀମାନଙ୍କର ଏକ ଉପଭୋଗ୍ୟ ଦୃଶ୍ୟ ହୋଇଥିଲା ।

"ତୁ ଏଇ କଲେଜରେ ଅଛୁବୋଲି ଖବର ପାଇ ଭେଟିବାକୁ ଆସିଥିଲି ଜ୍ଞାନ । ଯୋଗକୁ ଏଇଠି ଦେଖା ହୋଇଗଲା । ତରେ ଯେମିତି ହେଲେ ପହିଲି ଦିନ ସନ୍ଧ୍ୟା ୭ଟା ବେଳେ ମୋ ବସାକୁ ଯିବାକୁ ହେବ । ପାର୍ଟି ଅଛି, ବୁଝିଲୁ, ଆଦୌ ଭୁଲିବୁ ନାହିଁ । ତୋର ସେଇ ଭୁଲାମନ ଅଛି ନା ଗଲାଣିରେ ।" ଶାସନ ବିଭାଗୀୟ ଉଚ୍ଚ କର୍ମଚାରୀ ସୁଲଭ ଦାମ୍ଭିକତାରେ ଏତକ କହି କହି ସୌଭାଗ୍ୟକୁମାର, ଜ୍ଞାନରଞ୍ଜନଙ୍କ ପିଠି ଥାପୁଡ଼େଇବାକୁ ଲାଗିଲେ ।

ବିହ୍ୱଳ ହୋଇ ଜ୍ଞାନରଞ୍ଜନ ଅତୀତ ଦିନର କଥା ଭାବିବାକୁ ଲାଗିଲେ । କଲେଜ ଜୀବନରେ ସିନିଅର କେମ୍ବ୍ରିଜ ପାଶକରି ଆସିଥିବା ଏହି ବନ୍ଧୁର ଅଙ୍ଗ ସଞ୍ଚାଳନ ଓ କାବ୍ୟ ବିନ୍ୟାସର ବିଚିତ୍ର ଭଙ୍ଗୀ; ଦୁହିଁଙ୍କ ବୌଦ୍ଧିକ ସ୍ତରରେ ବହୁ ପାର୍ଥକ୍ୟ ଥିଲେ ମଧ୍ୟ ତାହା ଜ୍ଞାନରଞ୍ଜନଙ୍କୁ ଆକର୍ଷଣ କରିଥିଲା । ବି. ଏ. ପାଶ ପରେ ଦୁହେଁ ଏକା ବିଭାଗରେ ଏମ୍, ଏ ପଢ଼ିଲେ । କିନ୍ତୁ ଏମ୍, ଏ ପାଶ କରିବା ଅପେକ୍ଷା ଶାସନ ବିଭାଗରେ ଢୁକିବା ଝୁଙ୍କ୍ ସୌଭାଗ୍ୟଙ୍କର ଅଧିକ ଥିଲା, ଯଦିଓ ସହପାଠୀମାନେ ତାଙ୍କର ବିଦ୍ୟାବୁଦ୍ଧି ଯୋଗୁଁ ତାର ଏ ଉଦ୍ୟମର ସଫଳତା ବିଷୟରେ କେବଳ ସନ୍ଦେହ ନୁହେଁ ଥଟ୍ଟା ମଧ୍ୟ କରୁଥିଲେ । ପ୍ରତିଯୋଗିତା ମୂଳକ ଲିଖିତ ପରୀକ୍ଷାରେ ତାଙ୍କର ସ୍ଥାନ ନିମ୍ନତମ ହୋଇଥିଲେ ମଧ୍ୟ ସାକ୍ଷାତ୍କାରବେଳେ ସେ କୁଆଡ଼େ କମିଶନର ସଭ୍ୟମାନଙ୍କୁ ଚମତ୍କୃତ କରିଦେଲେ । ଶୁଣାଯାଏ ଏହା ପଛରେ ତାଙ୍କ ପ୍ରତିପତ୍ତିଶାଳୀ ପରିବାର ଲୋକଙ୍କର ଚମତ୍କାର ଯୋଜନା ଥିଲା । ସେ ଡିପୋଟି ହେଲେ ଓ ଏମ୍. ଏ. ଦୁଇବର୍ଷର କଠୋର ପରିଶ୍ରମ ପରେ ଜ୍ଞାନରଞ୍ଜନ ବିଶ୍ୱବିଦ୍ୟାଳୟରୁ ଭଲ 'ଶ୍ରେଣୀ'ଟିଏ ଧରି ଅଧ୍ୟାପକ ହେଲେ ।

ପ୍ରାୟ ୪ ବର୍ଷ ପରେ ଦୁଇ ବନ୍ଧୁଙ୍କର ମିଳନ ହେଲା । ଅଳ୍ପ କେତେ ସମୟ କଥାବାର୍ତ୍ତା ପରେ ଜ୍ଞାନରଞ୍ଜନଠାରୁ ନିମନ୍ତ୍ରଣ ରକ୍ଷାର ପ୍ରତିଶ୍ରୁତି ଆଦାୟ କରି ସୌଭାଗ୍ୟ କହିଲେ, "ଉଠ୍, କାର୍‌ରେ ବସ୍ । ତୋ ବସାରେ ଛାଡ଼ିଦେଇ ଆସିବି ।"

"ନାଁ ନାଁ, ମୋ ବସା ବେଶି ବାଟ ନୁହେଁ, ମୁଁ ଚାଲିଯିବି ବ୍ୟସ୍ତ ହେନା, ଧନ୍ୟବାଦ ।"

ଅଧ୍ୟାପକ ହୋଇ ତୁ ଖୁବ୍ ଗମ୍ଭୀର ହୋଇ ଗଲୁଣି ନାଁ, ହଉ ଘରକୁ ଆ ଦେଖିବି" ଏତିକ କହି ସାରିବା ପୂର୍ବରୁ ସୌଭାଗ୍ୟ ଆକ୍‌ସିଲେଟରରେ ଗୋଡ଼ ଦବାଇ ସାରିଥିଲେ ।

ଜ୍ଞାନରଞ୍ଜନ ପଛରୁ ଚାହିଁଲେ । ପାଉଁଶିଆ ରଙ୍ଗର ବଡ଼ କାରଟାଏ । ପଛରେ ଲାଲ ଆଲୁଅ ଦେଖାଇ ସମୁଦ୍ରରେ ମଗର ପରି ଗୋଟିଆ ମୁହଁରେ ରାସ୍ତାର ଜନଗହଳି କାଟି କାଟି ଆଗେଇ ଯାଉଚି ।

ଜ୍ଞାନରଞ୍ଜନ ଭାବିଲେ—ବିଶେଷ କିଛି ପରିବର୍ତ୍ତନ ହୋଇନାହିଁ ମୁହଁରେ ସେଇ ଉତ୍‌ଫୁଲ୍ଲ ଭାବ । ଅବଶ୍ୟ କଥାବାର୍ତ୍ତାରେ ସାମାନ୍ୟ ଅସ୍ୱାଭାବିକତା ଫୁଟି ଉଠୁଛି । ଅଙ୍ଗ ସଞ୍ଚାଳନରେ ସେ ସଜୀବ ଭାବ ନାହିଁ । ତେବେ ସେଗୁଡ଼ାକୁ ନିଶ୍ଚୟ ପଦମର୍ଯ୍ୟାଦା ଓ ଗୁରୁ-ଦାୟିତ୍ୱର ଫଳ । କାରଟା ଖୁବ୍ ନୂଆ ନୁହେଁ । ବୋଧହୁଏ ଚାକିରି ପାଇବାର ଅଳ୍ପ କେତେଦିନ ପରେ କିଣିଚି । ହଠାତ୍ ଜ୍ଞାନରଞ୍ଜନଙ୍କ ମନ ମଧ୍ୟରେ ସୌଭାଗ୍ୟ ସହିତ ନିଜକୁ ତୁଳିବାର ସ୍ପୃହା ଜାଗି ଉଠିଲା । ଅନିଚ୍ଛା ସତ୍ତ୍ୱେ ସେ କିଛି ସମୟପାଇଁ ବିମର୍ଷ ହୋଇପଡ଼ିଲେ, କିନ୍ତୁ ବିବେକ ଶକ୍ତିର ପ୍ରଚଣ୍ଡ ଆଘାତରେ ସେ କୁତ୍ସିତ ଚିନ୍ତାଗୁଡ଼ାକୁ ବିନାଶ କରି ଅତି ଶୀଘ୍ର ମନୋରାଜ୍ୟକୁ ନିର୍ମଳ କରିଦେଲେ । ସୌଭାଗ୍ୟ ତାଙ୍କର ନିକଟତମ ବନ୍ଧୁ । ସେ ନିଶ୍ଚୟ ତାର ନିମନ୍ତ୍ରଣ ରକ୍ଷାକରିବେ ।

ସାଇକେଲଟିକୁ ପାଚିଲା କଢ଼ର ବଉଳଗଛ ମୂଳେ ରଖିଦେଇ ଜ୍ଞାନରଞ୍ଜନ ବଙ୍ଗଳାର ପ୍ରଥମ ପାହାଚରେ ଗୋଡ଼ଦେଲେ । ଜିଲ୍ଲାର ପ୍ରଧାନ ସହରର ଏହି କଲେଜକୁ ବର୍ଷେହେବ ବଦଳି ହୋଇ ଆସିଥିଲେ ମଧ୍ୟ ଶାସନ ବିଭାଗୀୟ ବଡ଼ କର୍ମଚାରୀ-ମାନଙ୍କ ବଙ୍ଗଳାକୁ ଆସିବା ତାଙ୍କର ଏଇ ପ୍ରଥମ । ପ୍ରଶସ୍ତ ବାରଣ୍ଡା ଖୁବ୍ ପରିଷ୍କାର, ପରିଚ୍ଛନ୍ନ । ବାରଣ୍ଡା ଆଗରେ ଥିବା ଉଦ୍ୟାନର ଗଛଗୁଡ଼ିକ ସଯତ୍ନ ବର୍ଦ୍ଧିତ । ଗୋଟିଏ କଢ଼କୁ କୁଣ୍ଢେଇ ପରି ଦୁଇଟି ଶିଶୁ ଖେଳନା ମଟର ଗାଡ଼ିରେ ବସି ଖେଳୁଛନ୍ତି । ଆଉ କେହି ନାହାନ୍ତି, କିନ୍ତୁ ଭିତର ଘରୁ ନାରୀ ଓ ପୁରୁଷଙ୍କର ମିଳିତ କଣ୍ଠର ଉନ୍ମତ୍ତ ହାସ୍ୟ କଳରବ ଶୁଭୁଛି । ଜ୍ଞାନରଞ୍ଜନ ଆଉ ଆଗେଇ ପାରିଲେ ନାହିଁ ।

କେହି ତ ପାଟ୍ରେଟି ନେବାକୁ ନାହିଁ । ସେ ସନ୍ଦେହରେ ପଡ଼ିଲେ । ଏ ସମାଜର ରୀତିନୀତି ଓ ପରମ୍ପରା କଣ ? ମନ ଭିତରେ ଅସ୍ୱସ୍ତି ଅନୁଭବ କଲେ । ପ୍ରଧାନ କବାଟର ଅଳ୍ପ କଡ଼କୁ କିଛି ସମୟ ସ୍ଥିରହୋଇ ଠିଆହୋଇ ଏହି ଅସ୍ୱସ୍ତିର କାରଣ ସମ୍ପର୍କରେ ଭାବିଲେ । ନ୍ୟୁନମନ୍ୟତା ! ନା କଦାପି ନୁହେଁ । ଯାହା ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେ ଛାତ୍ରମାନଙ୍କୁ ବାରମ୍ବାର ଉପଦେଶ ଦେଇ ଆସିଛନ୍ତି, ସେ ନିଜେ ପୁଣି ତାରି ଶିକାର ହେବେ । କବାଟ-ଟାକୁ ସଶବ୍ଦରେ ଠେଲିଦେଇ ଗୁରୁ ପଦକ୍ଷେପରେ ବଙ୍ଗଳା ଭିତରକୁ ପଶିଗଲେ ।

ପ୍ରଶସ୍ତ କୋଠରୀଟା ଅବଶ୍ୟ ଗୃହବାସୀଙ୍କର ପଦ-ମର୍ଯ୍ୟାଦାକୁ ଚାହିଁ ସୁଶୋଭିତ, ତାଛଡ଼ା ସେଦିନ ଉତ୍ସବ-ପାଇଁ ଅଧିକ କିଛି ପ୍ରକାର ବନ୍ଦୋବସ୍ତ ହୋଇଥିଲା ପରି ମନେହୁଏ । ଜ୍ଞାନରଞ୍ଜନ ହଠାତ୍ ଗୋଟିଏ ସୁଭୂଷଣ ଭୂଷିତ ଅଭିଜାତ ପୁରୁଷ ଓ ସ୍ତ୍ରୀଙ୍କ ସମକକ୍ଷ ହୋଇଗଲେ, ସଂଖ୍ୟାରେ ପ୍ରାୟ ୧୫ ଜଣ ହେବ । ସନ୍ଧ୍ୟାର ପ୍ରାୟାନ୍ଧକାର ମଧ୍ୟରୁ ହଠାତ୍ ତୀବ୍ର ଆଲୋକିତ କକ୍ଷରେ ପ୍ରବେଶ କରିବାରୁ କି କ'ଣ ସେ ସ୍ତବ୍ଧ ହୋଇଗଲେ । ତାଙ୍କର ସେ ଦିନ ପୋଷାକର ଗାରିମା ଏମାନଙ୍କଠାରୁ ଊଣା ନ ଥିଲେ ମଧ୍ୟ ସେମାନେ ସେହି ପୋଷାକ ଭିତରେ ଯେପରି ସହଜ ବେଖାତିର ଭାବରେ ଚଳପ୍ରଚଳ ହେଉଥିଲେ, ସେ ପରିବେଶ ଭିତରେ ଯେପରି ସ୍ୱଚ୍ଛନ୍ଦ ଭାବରେ ମିଳିଯାଉଥିଲେ, ସେ କାହିଁକି ସେପରି ପାରୁ ନାହାନ୍ତି । ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କୁ ବିଭିନ୍ନ କ୍ଷେତ୍ରରେ ଚିହ୍ନିଛନ୍ତି । ଷୀରରେ ନବମାତ ପରି ଏମାନେ ସମାଜର ସାର ସଂଗ୍ରହ ।

ସୁନ୍ଦରୀ ତରୁଣୀ ଜଣେ ପରିଚର୍ଯ୍ୟାରେ ବ୍ୟସ୍ତ ଥିଲେ । ଅତିଥିମାନେ ବସିଥିବା ଆସନର ପଛପଟକୁ ଯାଇ ସେମାନଙ୍କ କାନ୍ଧରେ ହାତ ପକାଇ, ମୁହଁକୁ ମୁହଁ ଯୋଡ଼ି ନିମ୍ନ ସ୍ୱରରେ କ'ଣ ଟିକିଏ କଥାବାର୍ତ୍ତା ହୋଇ ଜୋରରେ ହସି ଉଠୁଥିଲେ ଏବଂ ବେଳେ ବେଳେ ସେମାନଙ୍କ ସ୍ୱାମୀମାନଙ୍କ ଆଡ଼କୁ ଚାହିଁଦେଇ ଖଣ୍ଡେ ଖଣ୍ଡେ ସ୍ୱଦୟ ବାକ୍ୟାଂଶ ନିକ୍ଷେପ କରୁଥିଲେ । ଜ୍ଞାନରଞ୍ଜନଙ୍କ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ସେ ତାଙ୍କ ନିକଟକୁ ଚାଲିଆସିଲେ ଏବଂ ଗୋଟିଏ ଖାଲିଥିବା ସୋଫା ପାଖକୁ କଢ଼ାଇ ନେଇ ବସିବାକୁ ଅନୁରୋଧ କଲେ । ସେତେବେଳକୁ ପ୍ରାୟ ସମସ୍ତଙ୍କ ଦୃଷ୍ଟି ଜ୍ଞାନ-ରଞ୍ଜନଙ୍କ ଆଡ଼କୁ ଆକୃଷ୍ଟ ହୋଇ ସାରିଥିଲା ଏବଂ କେତେଜଣ ତରୁଣ ଓ ମଧ୍ୟବୟସ୍କ, ତାଙ୍କ ସହିତ ପରିଚୟ ଓ ଆଳାପ ଜମାଇବାକୁ ଉତ୍କଣ୍ଠିତ ହୋଇ ପଡ଼ିଥିଲେ । ଜ୍ଞାନରଞ୍ଜନଙ୍କ ଚେହେରା ଓ ବ୍ୟକ୍ତିତ୍ୱର ଆକର୍ଷଣ ଅନ୍ୟମାନଙ୍କଠାରୁ ଊଣା ନ ଥିଲା ।

ଏହି ସମୟରେ ପରିଚର୍ଯ୍ୟାକାରିଣୀ ଅଳ୍ପ ଦୂରରୁ ଫେରିଆସି ତାଙ୍କୁ ପଚାରିଲେ, "ଆପଣଙ୍କ କାର୍‌ଟା କେଉଁଠି ପାର୍କ୍ କଲେ ?"

ଜ୍ଞାନରଞ୍ଜନ ହତବାକ୍ ହୋଇଗଲେ । ସତ୍ୟଟା ଏଠାରେ ବଡ଼ ତିକ୍ତ, ବାସ୍ତବ ତା' ବଡ଼ କଷ୍ଟ-ଦାୟକ । ସେଥିରୁ ମୁକୁଳି ଯିବାର ସାଧ ତାଙ୍କର ନାହିଁ କି ସେ କଷ୍ଟ ସହ୍ୟକର ହେଉନାହିଁ । ଗଭୀର ଅସ୍ୱସ୍ତି ଓ ଅନୁତାପରେ ସେ ଛଟପଟ ହେଲେ । କଣ କହିବେ, କିପରି ଏ ପରିସ୍ଥିତିରୁ ଉଦ୍ଧାର ପାଇବେ ଚିନ୍ତା କରୁଛନ୍ତି ତରୁଣୀ ଜଣକ ବୀଣାଜିଣା କଣ୍ଠରେ-ପୁଣି ତାଙ୍କ ବକ୍ତବ୍ୟର ଅପର ଅଧିକ ବ୍ୟକ୍ତ କଲେ, "ବଙ୍ଗଳାର ପଛପଟେ ଗାଡ଼ିସବୁ ପାର୍କ କରିବାର ବ୍ୟବସ୍ଥା ହୋଇଛି । ଇଉକାଲିପଟସ ଗଛମୂଳ ରାସ୍ତାଦେଇ ବୁଲାଇ ନେବାକୁ ପଡ଼ିବ । ଯଦି ରାସ୍ତାକଡ଼ରେ ଠିଆ କରାଇ ଥାଆନ୍ତି ତେବେ ଦୟାକରି........"

ତରୁଣୀ ସେତିକି କହି ଏବଂ ତାଙ୍କର ଏହି ଅର୍ଦ୍ଧ ବ୍ୟକ୍ତ ଅନୁରୋଧର ଜୋର ଯେ କେତେ ତାହା

ଭଲକରି ଜାଣି କର୍ମଚଞ୍ଚଳ ଖଣ୍ଡରେ ଅନ୍ୟ ବନ୍ଧୁକୁ ସଙ୍କୁଳିବାକୁ ବୁଲପଡ଼ିଥିଲେ ଏବଂ ଜ୍ଞାନରଞ୍ଜନ ମଧ୍ୟ ଠିଆହୋଇ ପଡ଼ିଥିଲେ କାହିଁକି ? ଠିଆହୋଇ ପଡ଼ିଥିଲେ ହୁଏତ ସେ ସେତେବେଳେ ଠିକ୍ ବୁଝିପାରୁ ନ ଥିଲେ, ଯେଉଁ ଭୁଲକାମ ସେ କରି ପକାଇଛନ୍ତି। ତାର ପ୍ରାୟଶ୍ଚିତ କରିବା ପାଇଁ ମନ ମଧ୍ୟରେ ହୁଏତ କିଛି କଳ୍ପନା କରୁଥିଲେ । ଜଣେ ବିନାଟିକେଟ ରେଳଯାତ୍ରୀ ପ୍ରଥମ ଶ୍ରେଣୀ ରେଳ ଡବାକୁ ପଶି ଯାଉ ଯାଉ ଟିକେଟ୍ ଚଦାରଖିକାରୀଙ୍କ ହାବୁଡ଼ରେ ପଡ଼ି ସେଥିରୁ ଉଦ୍ଧାର କରିବାକୁ ଚେଷ୍ଟା କଲାପରି ସେ ଉପାୟ ଖୋଜୁଥିଲେ । ଏହି ସମୟରେ ସୌଭାଗ୍ୟ ଘର ଭିତରକୁ ପଶି ଆସିଲେ ଏବଂ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ, "ଆରେ ଜ୍ଞାନ, ତୁ ଆସିଲୁଣି ! ଆ-ଆ ଶ୍ରୀମତୀଙ୍କ ସହିତ ପରିଚୟ କରାଇ ଦିଏ --ନେଲି, ଏ ହେଉଛି ଜ୍ଞାନରଞ୍ଜନ, ମୋର ଘନିଷ୍ଠ ବନ୍ଧୁ—ଏଇ କଲେଜରେ ଦର୍ଶନ ଅଧ୍ୟାପକ । ଆଉ ଏ ହେଉଛନ୍ତି ମାଳମା, ମୋର୍......

ପରିଚୟ ପାଇ ତରୁଣୀ ଜଣକ ସଙ୍କୁଚିତ ହେବା ପରି ଜଣା ପଡ଼ିଲେ । ଜଣେ ଅଧ୍ୟାପକଙ୍କୁ କାର୍ ବିଷୟରେ ପଚାରି, ଅପମାନିତ କରିଛନ୍ତି—ସେ ସଙ୍କୋଚ ସେଥିପାଇଁ ନୁହେଁ-ଜଣେ ନିମନ୍ତ୍ରିତ ସାଧାରଣ ବ୍ୟକ୍ତିକୁ ଅପ୍ରସ୍ତୁତ କରିବା ଭଦ୍ରଜନୋଚିତ ନୁହେଁ ବୋଲି ।

ସେ କହିଲେ, "କ୍ଷମା କରିବେ, ମୁଁ ଜାଣି ନ ଥିଲି"— ଜ୍ଞାନରଞ୍ଜନ ପଚାରି ଆସୁଥିଲେ, "କଣ ପାଇଁ କ୍ଷମା ଗୃହୁଁଛନ୍ତି । କଣ ଜାଣି ନ ଥିଲେ ଜଣେ ଶିକ୍ଷକ ଆଉ ତାର ··· ଏଇ କଥାଟି" କିନ୍ତୁ କିଛି କହିବା ପୂର୍ବରୁ ସୌଭାଗ୍ୟ ତାଙ୍କୁ ଟାଣି ଟାଣି ନେଇଗଲେ ଆଉ ଗୋଟିଏ ସୋଫା ଆଡ଼କୁ । କାମ ସରିଥିବା ହତିଆରପତ୍ରକୁ ଗୋଦାମଘରେ ଜମାକରି ଦେଇ ତତ୍ପର ଇଞ୍ଜିନିୟର କାରଖାନାକୁ ଧାଇଁଯିବା ପରି ସୌଭାଗ୍ୟ ଟିକିଏ ମୃଦୁ ହସ ଓ କାନ୍ଧ ଉପରେ ଦୁଇଟି ଗ୍ଲେଟ ଥାପଡ଼ ସହ ଜ୍ଞାନରଞ୍ଜନଙ୍କୁ ସୋଫା ଉପରେ ବସେଇ ଦେଇ କୋଳାହଳରତ ଅତିଥିମାନଙ୍କ ଭିତରେ ସିଧା ଗ୍ଲଲଗଲେ ଜଲ୍ଲିପାଲଙ୍କ ଚୌକୀ ଆଡ଼କୁ ।

ଜ୍ଞାନରଞ୍ଜନଙ୍କ ଆଗମନ ପରେ ଓ ମାଳମା ଦେବୀଙ୍କର ତାଙ୍କସହ କଥୋପକଥନ ସମୟରେ ତାଙ୍କ-- ପ୍ରତି ଅତିଥିମାନଙ୍କର ଯେଉଁ ଆଗ୍ରହ ବଢ଼ି ଯାଇଥିଲା, ତାଙ୍କ ପରିଚୟ ପାଇବା ପରେ ପରେ ତାହା ହଠାତ୍ ଭଟ୍ଟା ପଡ଼ିଗଲା । ଜଗନ୍ନାଥଙ୍କ ପଣ୍ଡାମାନେ ବଙ୍ଗାଳୀ ବା ପଶ୍ଚିମା ଯାତ୍ରୀ ବୋଲି ଆଶାକରି କୌଣସି ଏକ ମୋଟାସୋଟା ଲୋକ ପଛରେ ଗୋଡ଼େଇ ଗୋଡ଼େଇ କିଛିବାଟ ଗଲାପରେ ସେ କଟକଆଡେ ବୋଲି ଜାଣି ପାରିଲେ ଯେପରି ଅନାଦର ଅବସ୍ଥା ହୁଏ, ସେହିପରି ହେଲା । ଏ ଲୋକ ଏଠିକି କେମିତି ଆସିଲା ବୋଲି ବିସ୍ମିତ ହେବା ସଙ୍ଗେ ସଙ୍ଗେ ଅଭ୍ୟର୍ଥନା କାରିଣୀଙ୍କ-ଠାରୁ ଯେ ସେପରି ଲୋକ ଉଚିତ ଶିକ୍ଷା ପାଇଛି ତାହା ଦେଖି ଅବ୍ୟକ୍ତ ଆନନ୍ଦ ଅନୁଭବ କଲେ ।

ଯାହାହେଉ ଏଇ ଘଟଣା ପରେ ପରେ ଆଲୋଚନାର ବିଷୟ ବସ୍ତୁଟା କାହିଁକି କେଜାଣି କାର୍‌କୁ ନେଇ ଗଡ଼ିଗଲା । ଜ୍ଞାନରଞ୍ଜନ ଅନନ୍ୟୋପାୟ ହୋଇ ଏକୁଟିଆ ସେଠି ବସିରହି ସଜଧଜ ହୋଇ ଆସିଥିବା ଚଙ୍ଗୁଡ଼ି ପରି ଛଟପଟ ହେବାକୁ ଲାଗିଲେ ଏବଂ ଆପାତତଃ ତାଙ୍କରି ଲାଗି ସୃଷ୍ଟି ହୋଇଥିବା ଏହି ନୂତନ ଆଲୋଚନା ଶୁଣିବାକୁ ଲାଗିଲେ ।

ଜଲ୍ଲିପାଲ ପ୍ରଥମେ ଆଲୋଚନା ଆରମ୍ଭ କରି ତାଙ୍କ ସାମନା ସୋଫାରେ ବସିଥିବା ମାଛ ବିଭାଗର ସହକାରୀ ନିର୍ଦ୍ଦେଶକଙ୍କୁ ପଚାରିଲେ, "କଅଣ ମୀନ-କେତନ ବାବୁ, ତୁମର ସେ ଆମ୍ବାସାଡ଼ରଟା ପାଇଁ କେତେଦିନଠାରୁ ବୁକ୍ କରିଥିଲ ?" ମାଛ ଅଫିସର ମୀନକେତନ ଘୁଉକା ବରଡ଼ ପରି ହସିଆର । ଜ୍ଞାନରଞ୍ଜନ ତାଙ୍କ ନାଁ ଆଗରୁ କେତେଥର ଶୁଣିଛନ୍ତି । ଦରମା ଓ ସରକାରୀ ଶ୍ରେଣୀବିଭାଗ ଅନୁଯାୟୀ ତାଙ୍କର

ଓ ମୀନକେତନଙ୍କ ସ୍ତର ପ୍ରାୟ ସମାନ । ବର୍ଷକ ତଳେ ସେ ଯେତେବେଳେ ପ୍ରଥମେ ଗାଡ଼ି ଆଣିଲେ ଦୁର୍ନୀତି ନିବାରଣ ବିଭାଗ ତରଫରୁ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହୋଇଥିଲା । କିଛିଦିନ ସସ୍‌ପେଣ୍ଡ ମଧ୍ୟ ହୋଇଥିଲେ । କିନ୍ତୁ ସ୍ଥାନୀୟ ନେତା ଓ କେତେକ ପ୍ରଭାବଶାଳୀ ସାମ୍ବାଦିକଙ୍କ ଜରିଆରେ ମନ୍ତ୍ରୀଙ୍କୁ ସନ୍ତୁଷ୍ଟ କରି ସେ ବିପଦରୁ ଉଦ୍ଧାର ପାଇ-ଥିଲେ । ମୁହୂର୍ତ୍ତେ ବିଳମ୍ବ ନ କରି ସେ ଉତ୍ତର ଦେଲେ, "ଆପଣ ଆଜି ଜାଣନ୍ତି ନାହିଁକି ? ସେଇଟା ମୋର ଭିଣି—ଯେ ଠିକାଦାର- ତାଙ୍କରି । ତାଙ୍କର ବର୍ତ୍ତମାନ ଜଙ୍ଗଲରେ କାମ ପଡ଼ିବାରୁ ନିତି ଯିବା ଆସିବା କରୁଛନ୍ତି । କାରଟା ମୁଁ ଚଢ଼ୁଛି ।" କୂଟନୈତିକ ହାସ୍ୟର ଏକ କ୍ଷୀଣ ତରଙ୍ଗ ଜିଲ୍ଲାପାଳଙ୍କ ଅଧର ପ୍ରାନ୍ତରେ ଉଠି ମିଳାଇଗଲା ।

ସେ ଇଙ୍ଗିତର ଅର୍ଥ ମୀନକେତନ ଠିକ୍ ବୁଝିଗଲେ; କିନ୍ତୁ ବୁଝି ପାରିଲେ ନାହିଁ ପାଖ ସୋଫାରେ ବସିଥିବା ପୂର୍ତ୍ତବିଭାଗର ଇଞ୍ଜିନିୟର । ତଥାପି ନିଜର ଚତୁରତା ଉପରେ ତାଙ୍କର ଖୁବ୍ ଆସ୍ଥା । ସେ କହିଲେ, "ବୁଝିଲେ, ରାସ୍ତା ପଡ଼ୁଛି ଆଉ ସଙ୍ଗେ ସଙ୍ଗେ ମିଳି ଯାଉଛି ବୋଲି ଯିନା ଲୋକେ ଆମ୍ବାସାଡ଼ର-ଗୁଡ଼ାକ କିଣି ପକାଉଛନ୍ତି, କିନ୍ତୁ 'ହିନ୍ଦୁସ୍ଥାନ' ଆଗରେ ସେଗୁଡ଼ାକ ନୁହେଁ, ମତେ ପରା ସେଥିରୁ ଗୋଟାଏ ପାଇବା ପାଇଁ ପକ୍କା ଦୁଇବର୍ଷ ଧାଡ଼ିରେ ରହିବାକୁ ପଡ଼ିଲା । ସେ ବର୍ଷର ମଡ଼େଲ୍‌ଟା ଖୁବ୍ ଭଲ ଥିଲା । ଆମ୍ବାସାଡ଼ାରଠାରୁ ପୂରା ଗୁରିହଜାର ପାଞ୍ଚଶହ ବେଶି । ହେଲେ କ'ଣ ହେବ ଏପର୍ଯ୍ୟନ୍ତ ସର୍ଭିସିଂ ଷ୍ଟେସନ ଦେଖିନି ।

ଜିଲ୍ଲାପାଳଙ୍କ ମୁଖଭଙ୍ଗୀ ପରେ ଇଞ୍ଜିନିୟରଙ୍କ ଏ କଥାଗୁଡ଼ାକ ମୀନକେତନଙ୍କ କଟାଘା'ରେ ଚୂନ ଦେଲପରି ଲାଗିଲା । ପ୍ରତିବାଦ କରିବାକୁ ଆଉ ସାହସ କୁଳାଇଲା ନାହିଁ । ସେ ହୁଏତ ଭାବୁଥିଲେ, ଅଳ୍ପ କେତେବର୍ଷ ପୂର୍ତ୍ତ ବିଭାଗରେ ଗୁକିରି କରି ହିନ୍ଦୁସ୍ଥାନ ଗାଡ଼ି କିଣିବା କ'ଣ ସନ୍ଦେହର ପରିସର ଭିତରେ ନୁହେଁ । କାହିଁ ତାଙ୍କପ୍ରତି କାହାରିତ ଭ୍ରୂକୁଞ୍ଚିତ ହେଉନାହିଁ ? ମୋ ପ୍ରତି କାହିଁକି ?" କିନ୍ତୁ କିଛି ପ୍ରତିକାରର ଉପାୟ ନ ପାଇ ସେ ମନେ ମନେ କ୍ଷୁହୁଳିବାକୁ ଲାଗିଲେ ।

ଅଳ୍ପସମୟ ହେବ ସେଠାରେ ପ୍ରବେଶ କରିଥିଲେ ଜଣେ ଚାପା ପୋଷାକ ପରିହିତ ତରୁଣ ଜଣେ ବୟସ୍କା ଭଦ୍ରମହିଳାଙ୍କୁ ସଙ୍ଗରେ ନେଇ । କୌଣସି ସୋଫାରେ ନ ବସି ସେ ଗୋଟାଏ ଟିପ୍ପଟ ଟେବୁଲ ଉପରେ ଅଧା ବସି ରହିଥିଲେ । ବାଁ ହାତରେ ରେକ୍ସିନ୍ ମପା ଯନ୍ତ୍ରର ଡବା, ଡାହାଣ ହାତରେ ତର୍ଜ୍ଜନୀ ଆଙ୍ଗୁଠିରେ ଗୋଟାଏ ପେଟ୍ରୋଲ କମ୍ପାନୀର ଫଳକ ଲଗାଥିବା ଚାବି ରିଙ୍ଗ୍ । ଚାବିଟିକୁ ଚକ୍ରାକାରରେ ବୁଲାଇବା ସଙ୍ଗେ ସଙ୍ଗେ ଗୋଡ଼ିଆ ଯୋତା ପିନ୍ଧା ବାଁ ପାଦଟିକୁ ମଧ୍ୟ ହଲାଉ ହଲାଉ ଜଣେ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ କଥାବାର୍ତ୍ତା ଲଗାଇ ଥାଆନ୍ତି । କଥାବାର୍ତ୍ତାରୁ ଜଣାଗଲା ଯେ ହାଉସ୍‌ସର୍ଜନ ସମୟ ଅତିବାହିତ କରି ଅଳ୍ପଦିନ ହେବ ସେ ଏଇ ଜିଲ୍ଲା ଡାକ୍ତରଖାନାରେ ଚାକିରି କଲେଣି । ତାଙ୍କ ଆଙ୍ଗୁଠି ଆଗରେ ଘୂର୍ଣ୍ଣାୟମାନ ବସ୍ତୁଟିକୁ ଲକ୍ଷ୍ୟକରି ଭଦ୍ରବ୍ୟକ୍ତି ପଚାରିଲେ, ଅଶ୍ୱିନୀବାବୁ ଆପଣ ଗାଡ଼ି ଖରିଦ୍ କଲେଣି କି ?"

"ନାଁ, ଏ ଗାଡ଼ିଟା ସିଭିଲ୍‌ସର୍ଜନଙ୍କର, ଡିରେକ୍‌ଟରଙ୍କ ଡାକରା ପାଇ ସେ ରାଜଧାନୀକୁ ଚାଲିଗଲେ । ତାଙ୍କ ମିସେସ୍‌ଙ୍କୁ ଏଠାକୁ ଆଣି ନିମନ୍ତ୍ରଣ ରକ୍ଷା କରିବା ଭାରଟା ମୋ ଉପରେ ଲଦି ଦେଇଗଲେ । ସେ ନ ଥିଲାବେଳେ ତାଙ୍କ ଗାଡ଼ିଟା ମୋ ଦାୟିତ୍ୱରେ ଥାଏ । ତେବେ ମୋ ଗାଡ଼ିପାଇଁ ଟଙ୍କା ଜମାକରି ଦେଲିଣି । ଖୁବ୍ ଶୀଘ୍ର ପାଇଯିବାର ଆଶାଅଛି ।

ଇଞ୍ଜିନିୟରଙ୍କ ଉକ୍ତିକୁ ମନ ମଧ୍ୟରେ ରଖି ଅମାୟିକ ଭଦ୍ରବ୍ୟକ୍ତି ଜଣକ ଡାକ୍ତରଙ୍କୁ ପଚାରିଲେ -- "ଆପଣଙ୍କର ମଧ୍ୟ କଣ ସେଇ ହିନ୍ଦୁସ୍ଥାନ ?"

"ହୁଁ, ହିନ୍ଦୁସ୍ଥାନ ହୋଇଥିଲେ ମୁଁ କୋଉ ଦିନାରୁ ପାଇ ସାରନ୍ତିଣି, ଗାଡ଼ି ନ ଚଢ଼ିବ ପଛକେ ହିନ୍ଦୁସ୍ଥାନ-ହେ:" ତାପରେ ଟିକିଏ ଗମ୍ଭୀର ହୋଇ

ଅପେକ୍ଷାକୃତ ଅଳ୍ପ ସ୍ୱରରେ କହିଲେ, "ମୋର ଯୋଉ ଗାଡ଼ିଟା ଆସୁଛି, ଏଇବର୍ଷ ମଡେଲ୍‌ର ଫିଆଟ୍ । ଗାଡ଼ିଟା ଏକା ଗାଡ଼ିପରି । ଏଇ ଦେଶରେ ଯୋଡ଼ା-ହେଲେ ମଧ୍ୟ ତାର ପ୍ରତ୍ୟେକ ଅଂଶ ବାହାରୁ ଆମଦାନି ।"

ଇଞ୍ଜିନିୟର ମୁହଁ ଉଠାଇ ସିଧାହୋଇ ଏଇ ତରୁଣଙ୍କ ଆଡ଼କୁ ଚାହିଁଲେ । ମନ ଭିତରେ ଆଘାତ ଚକ୍ଷୁରେ କ୍ରୋଧରୂପ ରୂପାନ୍ତରିତ ହୋଇଛି, ସେ ବୋଧହୁଏ ଭାବୁଥିଲେ, "ଓଃ, ବାହାଦୁରୀ କେତେ ! ରୋଗୀଙ୍କ ରକ୍ତ ଶୋଷି ପଇସା ଗୁଣି ଏଇ ନରରକ୍ତ ପିପାସୁଗୁଡ଼ାକ ପୁଣି, ଜନତାର ସେବକ ବୋଲି ବାହାବା ନିଅନ୍ତି । ବର୍ଷକ ଭିତରେ ଫିଆଟ୍ କିଣିବାର ଅର୍ଥ ତ କାଲିକା ଟୋକା ବୁଝି ନ ପାରିଲେ କଣ ଲୋକେ ବୁଝି ନାହାନ୍ତି । ଛିଛି ! ସୌଜନ୍ୟର ସୀମା ସ୍ପର୍ଶ କରିନାହିଁ ।" ନିଜ ଆନନ୍ଦକୁ ଲୁଚାଇବାକୁ ଚେଷ୍ଟା କରି ମଧ୍ୟ ମୀନକେତନ ହସି ଉକାଇଲେ ।

ଆଞ୍ଚଳିକ କମିଶନରଙ୍କ କଡ଼ପଟେ କାଠ ଚୌକିଟିରେ ବସିଥିଲେ ସମବାୟ ବିଭାଗର ସହକାରୀ ରେଜିଷ୍ଟ୍ରାର ପ୍ରଭୁପ୍ରସାଦବାବୁ । ଆସିଲାବେଳଠାରୁ ସେ କମିଶନରଙ୍କ ସଙ୍ଗେ ପଦେ କଥା ହେବାର ସୁଯୋଗ ଖୋଜୁଥାଆନ୍ତି । କିନ୍ତୁ ଟିକିଏ ଡରକୁଳା ସ୍ୱଭାବର ଲୋକ ହୋଇଥିବାରୁ ହଠାତ୍ କିଛି ପଚାରି ପାରୁ ନ ଥାନ୍ତି । ଏଇ କଥାର ସୂତ୍ର ଭିତରେ ଗୋଟାଏ ସୁଯୋଗ ପାଇଗଲା ପରି ସେ ପଚାରିଦେଲେ, "ଆଜ୍ଞା, ଆପଣ ଆରବର୍ଷ ଦିଲ୍ଲୀରୁ ଆସିଲାବେଳେ ଯେଉଁ ଆମେରିକାନ୍ ଡିଜେଲଗାଡ଼ିଟା ଆଣିଥିଲେ ତା' ପରି ଡିଜାଇନ୍, ତା'ପରି ବଡ଼ିଟ ଗାଡ଼ି ତ ଓଡ଼ିଶାରେ ଅନ୍ୟ କେଉଁଠି ଦେଖୁନି, ତା' ରଙ୍ଗଟା କି ସୁନ୍ଦର ।"

କମିଶନର କିଛି ଉତ୍ତରଦେଲେ ନାହିଁ । ତାଙ୍କ ମୁହଁରେ କୌଣସି ପ୍ରତିକ୍ରିୟା ମଧ୍ୟ ଦେଖାଗଲା ନାହିଁ, ଯେମିତିକି ସେ ଏ ପ୍ରଶ୍ନ ଜମା ଶୁଣି ନାହାନ୍ତି । ବୋଧହୁଏ ପ୍ରଥମତଃ ଦ୍ରୁମ ଆଗରେ ଗୁଳ୍ମ ପରି ତାଙ୍କ ନିକଟରେ ବସିଥିବା ଛୋଟ ଛୋଟ ଅଫିସରଙ୍କର ଗାଡ଼ି ବିଷୟକ ପ୍ରତିଯୋଗିତାରେ ନିଜେ ସମ୍ପୃକ୍ତ ହେବାଟା ତାଙ୍କୁ ଅବାସ୍ତବ ବୋଧହେଲା । ଦ୍ୱିତୀୟତଃ ଏଇ ପ୍ରଶ୍ନ ଜିଲ୍ଲାପାଳ କିମ୍ବା ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ପଚାରିଥିଲେ ସେ କିଛି ଉତ୍ତର ଦେଇଥାନ୍ତେ, କିନ୍ତୁ ପୁରୁଣା ସରକାରୀ ଜିପ୍ ଛଡ଼ା ଅନ୍ୟ କିଛି ବ୍ୟବହାର କରିବାର ସୁଯୋଗ ପାଇ ନ ଥିବା ଜଣେ ବ୍ୟକ୍ତିଠାରୁ ତାଙ୍କ ଗାଡ଼ି ବିଷୟରେ ପ୍ରଶଂସାପତ୍ର ନେବା ମଧ୍ୟ ତାଙ୍କୁ ଅସମ୍ମାନଜନକ ମନେହେଲା । ତୃତୀୟତଃ ଆମଦାନି ନିୟନ୍ତ୍ରଣ ଖୁବ୍ କଡ଼ାକଡ଼ି ପାଳିତ ହେଉଥିଲାବେଳେ, ସେ ଯେଉଁ କୌଶଳରେ ତାଙ୍କ ବିଦେଶୀ ଗାଡ଼ିଟି ପାଇଛନ୍ତି ତାହାର ସାମାନ୍ୟତମ ସୂଚନା ଯେପରି ଏଭଳି ଆଲୋଚନାରୁ ପ୍ରକାଶ ନ ପାଏ, ସେ ବିଷୟରେ ସେ ବୋଧହୁଏ ଖୁବ୍ ସଚେତନ ଥିଲେ ।

ଘର ଭିତରେ ଚାଲିଥିବା କଥାର ଗତି ବଦଳାଇ ଦେବାପାଇଁ ସେ ଭିଡ଼ିମୋଡ଼ି ହେଲେ । ଶ୍ରେଣୀ ମଧ୍ୟରେ ଛନ୍ଦାଛନ୍ଦି ଶିକ୍ଷକଙ୍କର ସାମାନ୍ୟ ଅଙ୍ଗ ସଞ୍ଚାଳନରେ ନିମ୍ନ ପ୍ରାଥମିକ ଛାତ୍ରଛାତ୍ରୀମାନଙ୍କପରି ସମସ୍ତେ ଚୁପ୍‌ହୋଇଗଲେ ।

ଏଇ ସମୟରେ ଅଭ୍ୟର୍ଥନାକାରିଣୀ ଗୃହକର୍ତ୍ତ୍ରୀ ପୁନଃପ୍ରବେଶ କଲେ । ଖାଇବାବେଳ ହୋଇଗଲା । ସମସ୍ତେ ପଦବୀର କ୍ରମ ଅନୁସାରେ ଧାଡ଼ି ଧରି ଭୋଜନ ଗୃହକୁ ଚାଲିଲେ । ଜ୍ଞାନରଞ୍ଜନ ସମସ୍ତଙ୍କର ଦୃଷ୍ଟି ଏଡ଼ାଇ ସନ୍ତର୍ପଣରେ ବାହାର ବାରଣ୍ଡାକୁ ଖସିଆସିଲେ । ସେଠାରେ ଖେଳନା ମଟରଗାଡ଼ିରେ ଅଫିସର ଶିଶୁଙ୍କ ଖେଳ ସେ ପର୍ଯ୍ୟନ୍ତ ଚାଲିଛି । ସେ ତୃଷ୍ଣା ଯେପରି କି ମେଣ୍ଟିବାର ନୁହେଁ । ଜ୍ଞାନରଞ୍ଜନ ବର୍ତ୍ତମାନ ଆଉ ଦୁଃଖିତ ନୁହାନ୍ତି, ଆତ୍ମଗ୍ଲାନି ମଧ୍ୟ ଝଡ଼େଇ ଯାଇଛି । ତାଙ୍କ ସାଇକେଲ ସେହିପରି ବଉଳଗଛକୁ ଡେରିହୋଇ ରଖା ଯାଇଥିଲା । ସେ ବନ୍ଧୁର ନିମନ୍ତ୍ରଣକୁ ପ୍ରତ୍ୟାଖାନ କରି ଚାଲିଯାଉ ନାହାନ୍ତି । ଆଧୁନିକାଗ୍ରସ୍ତ ମାନବର କରୁଣ ହୀନତା ମଧ୍ୟରୁ ସେ ଚାଲି ଆସୁଛନ୍ତି । ଗୋଟିଏ ଅଳୀକ ମାନଦଣ୍ଡରେ ମାପି ହେଉଥିବା ଗୁଡ଼ିଏ ବସ୍ତୁ, ଅପଦସ୍ଥ, ଅସୂୟାଗ୍ରସ୍ତ, କ୍ରୋଧ ଜର୍ଜରିତ ଜୀବଙ୍କ ଅଧମ ସମାବେଶ ତାଙ୍କ ପକ୍ଷରେ ଅସହ୍ୟ ହୋଇ ପଡ଼ିଥିଲା । ଦୁଷ୍ଟକୀଟ ସମୂହ ତାଙ୍କ ପ୍ରାଣରେ ପ୍ରବେଶ କରିବା ପୂର୍ବରୁ ସେ ଚାଲି ଆସିଛନ୍ତି । ଜ୍ଞାନରଞ୍ଜନଙ୍କର ମନେହେଲା—ଏ ତାଙ୍କର ପଳାୟନ ନୁହେଁ, ମୁକ୍ତି । ପ୍ରଶାନ୍ତ ଚିତ୍ତରେ ନିଜଦେହକୁ ଆଉଥରେ ଚାହିଁଦେଇ ସେ ରାଜରାସ୍ତା ଉପରେ ସାଇକେଲ ଛୁଟାଇ ଦେଲେ ।

———

# ଅସ୍ତଗାମୀ ବସନ୍ତ

ସତ୍ୟଭାମା ମିଶ୍ର

ଅସ୍ତଗାମୀ ବସନ୍ତ ମୁଁ
ନେଉ ଅଛି ବିଦାୟ ।
ହେବ ପୁଣି ଫାଲ୍‌ଗୁନେ
ତୁମ ଲାଗି ଉଦୟ ॥
ସ୍ଥିର ହେବ ନାହିଁ ମୋତେ
ଗ୍ରୀଷ୍ମର ତାପରେ ।
ଭୁଲି ଯିବ ନାହିଁ ପୁଣି
ବାରିଧର ନୃପରେ ॥
ସମ୍ଭାଳିବ ଥରେ ନିଶ୍ଚେ
ତୁମକୁ ବନ୍ଧୁ ମୋର ।
ସାଥୀ ମୋ ଶରତ ଋତୁ
ଆଣି ଦେବ ଖବର ॥
ଶିଶିରେ ଲୋତକ ଢାଳି
କରନ୍ତି ଅନୁତାପ ।
ସ୍ଥବିର ସାଜ ଶୀତରେ
ଦେବନି ଅଭିଶାପ ॥
ନିଷ୍ଠୁର ନିୟତି ବାକ୍ୟ
ଏଡ଼ିବା ଶକ୍ତି ନାହିଁ ।
ବାର ମାସେ ଷଡ଼ ଋତୁ
ନିୟମିତ ଆସଇ ॥
ଆସିବା ବିଦାୟ ନେବା
ଦୁନିଆଁ ରୀତି ଏହି ।
ଜୀବନର ଚଲାପଥେ
କର୍ତ୍ତବ୍ୟ ଗୀତ ଗାଇ ॥
ସୁଖ କାହା ମନେ ଆଜି
କାହାର ମନେ ଦୁଃଖ ।
ଭରି ଦେଇ ଯାଉ ଅଛି
ହେବ ନାହିଁ ବିମୁଖ ॥
ଭୁଲି ମାନ ଅଭିମାନ
କରିଥିବ ଅପେକ୍ଷା ।
ଅ.ଗାମୀ ବରଷେ ତୁମ
ମନ ବନେ ଦେବି ଦେଖା ॥





# ॥ ମନର ଦାଗ ॥

ଶ୍ରୀ ରାଜକିଶୋର ପଟ୍ଟନାୟକ

ସିଏ ଗୋଟିଏ ଅସ୍ୱାଭାବିକ ବନ୍ଧୁତ୍ୱ । ଯାହା ସବୁବେଳେ ଘଟିବାର ଦେଖାଯାଏ ନାହିଁ, ସେହି ଘଟଣାକୁ ମନ ସ୍ୱାଭାବିକ ବୋଲି କହିପାରେ ନାହିଁ । ମଣିଷ ଓ ମଣିଷ ଭିତରେ ବନ୍ଧୁତା ହୁଏ । ମଣିଷ ଓ ପଶୁ ଭିତରେ ବି ହୁଏ । କିନ୍ତୁ ଗଛ ଓ ମଣିଷର ବନ୍ଧୁତା କ'ଣ ସମ୍ଭବ ?

କିଏ କହିବ ? ଗଛ ଓ ମଣିଷର ବନ୍ଧୁତା ଯେତିକି ସମ୍ଭବ, ଯେତିକି ସ୍ୱାଭାବିକ ପୁଣି ସେମିତି ଅସ୍ୱାଭାବିକ ଓ ଅସମ୍ଭବ । ଆଉ ଜଣକ ବାରି ଆଡ଼ର ଆମ୍ବଗଛ ସହିତ ଏହି ବନ୍ଧୁତା ।

ବନ୍ଧୁ ଦୁଆରକୁ ଗଲାବେଳେ ସେଇ ଆମ୍ବ ଗଛଟି ଦେଖା ଦେଇଥିଲା । ଛୋଟିଆଟିଏ ହେଇଥାଏ । ପାଖରେ ଠିଆ ହେଲେ ସାନପିଲା ପରି ଆଉଜି ହୋଇ ଠିଆ ହୁଏ । ପତର ଓ ଡାଳ କଅଁଳ—ଠିକ୍ ଛୋଟପିଲା ପରି । ମୁହଁ ଚିକ୍କଣ ।

ବନ୍ଧୁ ସେହି ଆମ୍ବଗଛଟିର ଗୁଣ କଥା କହନ୍ତି—କଲମି, ମିଠା, ବାସନା । ଟାକୁଆରୁ ସେ ହାତରେ ଗୁଟି କରିଛନ୍ତି । କେମିତି ଫଳିବ କେଜାଣି ?

—ଯେମିତି ଇଚ୍ଛା ସେମିତି ଫଳୁ । ତମେ ସିନା ଫଳ ପାଇବ ଆଉ ତା'ର ଗୁଣ ବୁଝିବ । ତେବେ ଗଛଟି ସୁନ୍ଦରିଆ ହୋଇଛି । ଆମେ ଆସିଲେ ସେ ଯେମିତି ହସି ଡାକେ । ପାଖରେ ଠିଆ ହେଲେ ସେ ଖୁସି ହୁଏ । ତାହାର କଅଁଳ ପତରରେ ଚଅଁର ପକାଇ ଖେଳେ ।

—ଆମକୁ ବି ଭଲ ଲାଗେ । ପିଲା ଏହାର ଡାଳ ପତ୍ରରେ କାଳେ ଲାଗିବେ ସେଥିପାଇଁ ସବୁବେଳେ ଆଖି ରଖିବାକୁ ପଡ଼ୁଛି । କେତେଥର ସେମାନେ ମାଡ଼ ଖାଇଲେଣି । ଭାରି ଭଲ ଗଛଟିଏ ।

—ଯାହାହେଉ ଗଛର ଏଇଟା ଭାଗ୍ୟ । ମଣିଷ ଆପଣା ଛୁଏଁ ଏଠି ସେଠି ହୁଏ । ଗଛକୁ କେହି ଆଣି ବସେଇଲେ ସେ ସିନା ବସିବ । ନ ହେଲେ ତାହାର ବଳ କେତେ ?

ସେହି ବନ୍ଧୁଘର ଆମ୍ବଗଛଟିକୁ ନଜର କରି ପାଳିଥିଲେ । ରୋଷେଇ ଘରର ପେଜ, ଘରର ଝାଡ଼ୁ ଅଳିଆ, ପରିବା ଚୋପା ଓ ଭାତ ଅଇଁଠା ସବୁ ସଜଡ଼ା ହୋଇ ତାହାରି ମୂଳରେ ଦିଆ ହୁଏ । ପାଣି ବି ପାଏ । ବନ୍ଧୁ ଘରର ଦୃଷ୍ଟି ଥାଏ ଗଛ ଉପରେ ଓ ସେ ଯେମିତି ଭଲ ଜିନିଷ ଖାଇବ ସେଥିପ୍ରତି ସବୁବେଳେ ଖିଆଲ ରଖିଥାଏ ।

ଏମିତି ହେଇ ସେ ବଢ଼ିଥିଲା । ତିନି ପୁରୁଷ ଉଞ୍ଚ ହେଇଥିଲା । ସେମିତି ବି ପନ୍ଦର ହାତ ଚକଡ଼ା ବାନ୍ଧିଥିଲା । ଭାରି ଘଞ୍ଚ ପତର । ଗଛ ମୂଳରେ ଭଲ ଛାଇ ହୁଏ । ସେ ସବୁବେଳେ ଟାଲି ସ୍ନେହ ଓ ଯତ୍ନ ଖୋଜିଲା ପରି ଜଣାଯାଏ ।

ଖୋଜେ ଆଉ ପାଏ । ଯେ ଯାହା ପାଇଯାଏ ସେତିକି ସେ କେତେବେଳେ ନା କେତେବେଳେ ଖୋଜିଥାଏ । ସେମିତି ଖୋଜିଲେ ବି କାହାରି ମନକାମନା ବ୍ୟର୍ଥ ହୁଏ ନାହିଁ ।

ପୋଷା ଆମ୍ବଗଛ । ଘରର ଆମ୍ବଗଛ । ମାଲିକଙ୍କର ସ୍ନେହ, ଆଦର ଓ ଶୁଭଦୃଷ୍ଟି ଅନୂଢ଼ ଡାଳରୁ ମିଳିଛି । ଆଉ ଭୟ କଣ ?

ଗଛ ମୂଳେ ପମ୍ପୁଡ଼ି ଲାଗିଲେ ମାଲିକଙ୍କର ଆଖି ଏଡ଼ାଏ ନାହିଁ । ଖରାରେ ମୁହଁ ଶୁଖିଗଲା ପରି ଦିଶିଲେ ଗଛର ଡାଳ ପତର ବି ଗାଧାନ୍ତି । ଦୁଆର ପାଖରେ ଗଛ । ପାଖରେ ପାଣିକଳ । ହେପାଜତ କରିବାକୁ ଲୋକ ଅଛନ୍ତି । ଅସୁବିଧା କ'ଣ ଅବା ହେଇପାରେ ?

ଏଇସବୁ ଏକାଠି ମିଶିଲେ ଭାଗ୍ୟ । ଆମ୍ବ ଗଛଟି ଘରର ମଣିଷ ହୋଇ ରହିଥିଲା । ଘରର ଖାଲି ଜଣେ ଯିଏ ସିଏ, ନୁହେଁ । ସେ ଜଣେ ଆଦରର ମଣିଷ ।

ଆମ୍ବଗଛଟିର ବଉଳ ଧରୁଥିଲା । ଫଳ ଫଳୁଥିଲା । ଭଲ ଆମ୍ବ । ସୁନ୍ଦର, ସୁବାସ ଓ ମିଠା । ଗଛଟିର ଫଳ ପାଇଁ ସେ ଆଉରି ଆଦରର ଓ ଆପଣାର ହୋଇଥିଲା । ଅନ୍ୟର ସ୍ନେହ ପାଇବା ଓ ଦିନକୁ ଦିନ ଅଧିକରୁ ଅଧିକ ସ୍ନେହ ପାଇବା ହେଉଛି ଭାଗ୍ୟର ସୌଭାଗ୍ୟ ।

ଏମିତି ଦିନେ ଗଛଟି ସମସ୍ତଙ୍କର ମନକୁ ଆଉଥରେ ଚହଲାଇ ଦେଇଥିଲା । ବନ୍ଧୁ ଘରର ସମସ୍ତଙ୍କର ମନରେ ସେ ଗୋଟିଏ ପ୍ରଶ୍ନ ଉଠାଇଥିଲା—ମଣିଷର ସ୍ନେହର ଦାମ୍ କେତେ ?

କଥାଟା ସାମାନ୍ୟ ନୁହେଁ । ବନ୍ଧୁଘର ଘରଟିଏ ତୋଳିବାକୁ ନକ୍ସା କରୁଥିଲେ । ସେଥିରେ ଏହି ଆମ୍ବ ଗଛଟି ସମସ୍ୟା ଉଠାଉଥାଏ । କେତେ ଦୂରରେ ଘର ହେଲେ ଆମ୍ବ ଗଛର କ୍ଷତି ହେବନାହିଁ ।

ସହର ଜାଗା । ଏଠି ଆଉ ଯାହା ଯେତେ ମିଳୁଥାଉ, ଘର ତିଆରି ପାଇଁ ଜାଗା ଯଥେଷ୍ଟ ମିଳେନାହିଁ । ଆମ୍ବ ଗଛଟି ଏହି ଜାଗାରେ ଗୋଟିଏ ବାଧା । ସେ ରହିବ ନଇଲେ ଘର ରହିବ । ଦି'ଜଣ ରହି ପାରିବେ ନାହିଁ ।

ଆମ୍ବ ଗଛକୁ ଗୃହିଣି ସମସ୍ତେ କଥା ହୁଅନ୍ତି । —ଏଇଠୁ ଟିକିଏ ଘରଟାକୁ ଘୁଞ୍ଚାଇ କରିଦେଲେ ଗଛଟା ରହିଯିବ । ଭଲ ଫଳୁଛି । ଏଡ଼େ ସୁନ୍ଦର ଆମ୍ବଗଛ । ଆମେ କେଉଁଠି ଦେଖି ନାହୁଁ ।

ଇଏ କ'ଣ ହେବା ସମ୍ଭବ ? ସହର ଜାଗାରେ କିଏ ଅବା ଆମ୍ବ ଗଛକୁ ଚକଡ଼ା ଦଦ ବୋଲି ଘରଟାକୁ ଘୁଞ୍ଚାଇ ଦେଇଛି । ଓଳଟି ଘରପାଇଁ ଜାଗା କାଢ଼ିବାକୁ ଆମ୍ବଗଛକୁ ଘାସ ସାଙ୍ଗରେ ସମାନ କରି ମୂଳେଇ ଦିଆ ହୋଇଛି ।

ସେମିତି ସେ କଅଁଳ ନାଲି ଓ ଶାଗୁଆ ପତ୍ରର ଉଡ଼ାଇ ହସୁଥାଏ । ମଣିଷର ଘର ବଡ଼ ନା ତାହାର ହାତରେ କରା ହୋଇଥିବା ଆମ୍ବଗଛ ବଡ଼—ଏହାର ଉତ୍ତର ସେହି ମଣିଷ ଦିବ ।

ଯେଉଁ ହାତରେ ସେ ଖୁଆଇ ଦିଅଇ, ଯଦି ଆଉଁସି ଚକ୍‌କଣ କରି ପୋଷି ପାଳିଥିଲା । ପୁଣି ସେ ସେହି ହାତରେ ମୂଳେଇ ଦିବ । ମଣିଷ ଛଡ଼ା ଏକଥା କରିବାକୁ ଆଉ କେଉଁଟି ପ୍ରାଣୀ ସମର୍ଥ ?

ଯେତେ ଯୁଆଡ଼ୁ ମାପ ହିସାବ କଲେ ବି ଦେଖାଗଲା ଯେ ଗଛଟି ଘର ପାଖକୁ ରହି ଯାଉଛି । ଘର ତୋଳା ବନ୍ଦ ହେବ କେମିତି ? ସିମେଣ୍ଟ ଗୋଡ଼ି ପାଲଟି ଯିବ । ମିସ୍ତ୍ରୀ ପଳାଇବ । ଇଟା ଜମି ରହିଲେ ସାପ ବସା କରିବେ । ଲମ୍ବା ଲକଡ଼ ପଡ଼ି ରହିଲେ ଚୋରି ହୋଇଯିବ ।

ସେଇ ଆମ୍ବଗଛ ଛାଇରେ ସବୁ କଥାର ବିଚାର ହୁଏ । ମିସ୍ତ୍ରୀ ତାହାର ସୁଖାକୁ ଟାଣି ଆଣି କହେ—ନାହିଁ, ବାବୁ, ବହୁତ ଛୁଆଛି । ଘର ହେଲେ ବି ଗଛଟା ରହିଯିବ । ଦିହେଁ ଆନନ୍ଦରେ ରହିବେ । କାହାରି କ୍ଷତି ହେବ ନାହିଁ । ଘରର ମାପକୁ କମାଇବା ଦରକାର ହେବନାହିଁ । ଗଛର ବି କ୍ଷତି ହେବନାହିଁ ।

ଆମ୍ବଗଛ ତଳ ପାଖରେ ମାଟି ଭିତରୁ କାନ୍ଥ ଉଠି ଆସିଲା । ଗଛ ଥାଏ ଉଚ୍ଚରେ । ସମସ୍ତେ ଖୁସି ଯେ ଗଛର କ୍ଷତି ହେବନାହିଁ । ଦିହେଁ ରହିବେ ସାଙ୍ଗ ସାଥି ହୋଇ ।

ଘର ଧୀରେ ଉଠି ଆସିଲା । ଆଗେ ଗଛର ଅଣ୍ଟାଯାଏ । ସେଉଠୁ ହେଲା ବେକଯାଏ । ତାପରେ ଉଠିଲା ଦୋମହଲା । ଗଛର ଚୂଳ ଓ ଦୋମହଲା ଏକାଧାଡ଼ି ହେଇଗଲା ।

ସେମିତି ସେ କଅଁଳ ଶାଗୁଆ ପତ୍ର, ଅଧା ପାଚିଲା ନେଳି ପତ୍ର ଆଉ ପାଚିଲା ପତ୍ର ଦେଖାଇ ପବନରେ ହଲେ । ତାହାର ସମୟରେ ବଉଳ ଧରେ । ଗୋଟେ ମହୁମାଛି ଧାଡ଼ି ଦିଅନ୍ତି । ଗଛ ଡାଳରେ ଆମ୍ବ ଝୁଲି ଝୁଲି ଘରକୁ ଦେଖାଇଲା ପରି ଦିଶେ—ଯେ ଯାହାର ଗୁଣରେ ଧନୀ । ଆମ୍ବର ମୂଲ ଇଟା ସିମେଣ୍ଟର ମୂଲ ଠାରୁ ଊଣା ହେଲେ ବି ଇଆର ସୁବାସ ଓ ଆଦର ଘରର କାହିଁ ?

ଏମିତି ଚାଲିଲେ କିଛିଦିନ । ଘରଟି ସମ୍ପୂର୍ଣ୍ଣ ହେଇଗଲା । ଗଛଟି ବି ଅକ୍ଷୂର୍ଣ୍ଣ ହୋଇ ରହିଗଲା ।

ସେଇଠୁ ଆସିଲା ସମସ୍ୟା —ଗଛଟି ଡାଳ ମେଲୁଉଛି । ଘର ପାଖକୁ ଥିବା ଡାଳର ଅଗ ଘସିହୁଏ କାନ୍ଥ ଦେହରେ ।

ଲୋକେ ଘର ଦେଖିବାକୁ ଆସିଲେ ଆମ୍ବ ଗଛକୁ ଖୁଣନ୍ତି—ଏମିତି କ'ଣ ? ଏଇଠି ଗଛ ରହିଲେ ଯିଏ ନାହିଁ ସିଏ ଡାଳରେ ଚଢ଼ି ଘର ଭିତରକୁ ପଶି ଆସି ପାରିବ । ପାଚିଲା ପତ୍ର ଆସି ଘର ଅଗଣା ଭିତରେ ପଡ଼ିବ । ଆମ୍ବ ଡାହାଣୀ ତମର କାନ୍ଥକୁ ଭୁଲିବେ ନାହିଁ । ଘର ଭିତରେ ତାଙ୍କର ବୈଠକଖାନା କରିବେ । କୁଆ ଦଳ ଗଛକୁ ଦୟାକରି ତମରି ଘର ଉପରେ ସରକାରୀ ପାଇଖାନା କରିବେ ...ଶେଷକୁ ଗଛର ମୋଟା ଡାଳ ଆସି ଘର ଉପରେ ଭୂଷି ହେଉଥିବ ।

ରାତିରେ ଉଜାଲା କରିବାକୁ ବିଜୁଳି ଆଲୁଅ ଜଳେଇଲେ ଗଛ ସତେ ଯେମିତି ବଦାଳ ସବୁ ଆଲୁଅକୁ ପେଟି ନେଇଯାଏ ନିଜର ଦେହ ଭିତରକୁ । ଆଲୁଅ ବୃଥାରେ ଜଳେ । ଖାଲି ପୋକଯାକ ନିମନ୍ତ୍ରଣ ପାଇ ଘରକୁ ଆସନ୍ତି । ଅନ୍ଧାର ପୂରା କଟେ ନାହିଁ ।

ଏହି ଅସୁବିଧା ପାଇଁ ଗଛଟିର ସଂଶୋଧନ ଦରକାର ହେଲା । ଘର ପାଖକୁ ମୋହିଁଥିବା ଡାଳ କଟା ହେଲା ।

ତେବେ ବି ଅବସ୍ଥା ସୁଧୁରିଲା ନାହିଁ । ଗଛ ତାହାର ଉଚକୁ ବଢ଼େ । ପୋକମାଛିଙ୍କର ଧର୍ମଶାଳା ପରି କାମ କରେ । ଯେତେ- ଦୂର ସମ୍ଭବ ବିଜୁଳି ଆଲୁଅର ତେଜକୁ କମାଇ ଦିଏ ।

ସନ୍ଧ୍ୟା ହେଲେ ଗଛଟି ଖାଲି ଭୟ ଦେଖାଏ—ଚୋରର ଭୟ । ଚୋର ଲୁଚିଲେ ବି ଜାଣି ପାରିବ ନାହିଁ । ରାତିରେ ଗଛ ଉପରୁ ଘର ଛପରକୁ ଚୋର ଆସିବାକୁ ଚାହିଁଲେ ସୁବିଧାରେ ସହଜରେ ସନ୍ତର୍ପଣରେ ବି ଆସି ପାରିବ ।

ସାବଧାନ । ସାବଧାନ ।

ମନର ଭୟ ସବୁ ପ୍ରକାରର ଅବିଚାର ଓ ଶତ୍ରୁତାର କାରଣ । ସେଥିପାଇଁ ମକଦ୍ଦମା ଆଉ ଯୁଦ୍ଧ ।

ଏବେ ଆମ୍ବଗଛ ଭୟ ଦେଖାଉଛି । ବର୍ଷାଦିନ ଅଧା ହୋଇ ଗଲାଣି । ଡାଳପତ୍ର ଯାହା ଗହଳ ଥିଲା ଆଉରି ଅଧିକ ହୋଇ- ଗଲାଣି । ଗଛରେ ବଉଳ ନାହିଁ, କଷି ନାହିଁ ଅବା ଆମ୍ବ ନାହିଁ ।

ଛାଇ ଯାହା ହେଉଛି ସେତିକି । ତେବେ ସେ ଛାଇରେ କ'ଣ କାମ ? ପକ୍କା ଘରର ଛାତରେ ବିଜୁଳି ପଙ୍ଖା ଅଛି । ବଡ଼ ଲୋକ କବାଟ ଝରକା ବନ୍ଦକରି ଘର ଭିତରେ ପଙ୍ଖା ଚଲାଏ । ସେଥିରେ ସେ ସିନା ଶାନ୍ତି ପାଇବ ?

ଆଉ କ'ଣ ସେ ଦେହଳିଆ ଆମ୍ବ ଗଛର ଛାଇରେ ବସି ନିଜକୁ ଶୀତଳ କରିବ ? ତାହାହେଲେ ସେ ବଡ଼ଲୋକ ହେଲା କାହିଁକି ? ଗାଁ ତୋଟା ଅବା ଜଙ୍ଗଲର ଗଛକୁ ଛାଡି ସହରକୁ ଆସିଲା କାହିଁକି । କୋଠାବାଡି କଲା କାହିଁକି ?

ସେ ଅଲଗା ଲୋକ ହୋଇଗଲା । କେବେ ସେ ବଣ ଜଙ୍ଗଲରେ ରହୁଥିଲା ବୋଲି ସିନା ତାହାର ରକ୍ତରେ ଗଛ ପ୍ରତି ମାୟା ଅଛି । ସେହି ମାୟାକୁ ସେ ଶିକ୍ଷିତ କରିବ । ଶ୍ରେଷ୍ଠ ଦୁବ, ଘାସ କି ବାହାଡଆ ଫୁଲ ଗଛରେ ସେ ମନକୁ ଆନନ୍ଦ କରିବ । ଆମ୍ବ ପଣସ ଆଦି ବୃକ୍ଷର ସେଠି କି ସ୍ଥାନ ?......ଖାଲି ବଡ଼ମ୍ବନା···ଦେଖିବାକୁ, ବୁଝିବାକୁ ଆଉ କହିବାକୁ ସିନା ।

ଖେଳୁଅ ଶେଷର ଓଦା ମାଟିରେ ଦୋହଲି ଦୋହଲି ଉପରକୁ ଚାହିଁ ପ୍ରାର୍ଥନା କଲାବେଳେ ଦିନେ ସକାଳେ ଗଛ ଉପରେ କୁରାଢ଼ି ଦାଗ ଆରମ୍ଭ ହୋଇଗଲା ।

ଏଇ ଦେଖି କାଠ—ପୂରା କାଟିବା ଦରକାର ନାହିଁ । ଯୋଉଁଏ ଡାଳ କାଟିଦିଅ ଦେଖିବା କେମିତି ହେଉଛି ।

ବାରିକ ବାଳ କାଟିଲା ପରି ଗଛଟି ଲଣ୍ଡା ହେଉଥାଏ । ସୂର୍ଯ୍ୟ ପୂର୍ବରୁ ଚାହିଁ ଥିଲେ । ସେ ବି ନିଜକୁ ବଞ୍ଚାଇବାକୁ ସୂର୍ଯ୍ୟଙ୍କୁ ଚାହିଁ ଥିଲା । ଖରାର ତେଜ ଘରକୁ ଗରମ ନ କରିବ ବୋଲି ସେ ତାହାର ଦେହ ଅରାଜ ଦେଖାଇ ଘରକୁ ଛାଇ କରୁଥିଲା ।

କିନ୍ତୁ ହୁକୁମ ଅନୁସାରେ ଖଣ୍ଡ ଖଣ୍ଡ ହୋଇ ଡାଳ ଛିଡ଼ି ପଡ଼ୁଥାଏ । ଘରର କାନ୍ଥ ଅଧିକରୁ ଅଧିକ ଆଲୁଅ ପାଉଥାଏ । ଖାଲି ରହିଗଲା ଗୋଟିଏ ଡେଙ୍ଗା ଲୋକର ଦୃଷ୍ଟି ପରି । ଆଉ ତାହାର ସେହି ସୌନ୍ଦର୍ଯ୍ୟ ନାହିଁ । ସେହି ଆଦର ମଧ ନାହିଁ ।

ଦିନେ ସିନା ସେ ଥିଲା ମାଲିକର ଗର୍ବର ବିଷୟ । ସେଦିନ ସେଇଟା ହୋଇ ଯାଇଛି ମାଲିକର ଦୁସ୍‌ମନ୍ ।

ଏମିତିକା ଆମ୍ବ ଗଛରେ କ'ଣ ବା ଫଳିବ ? ସେ ରହିବା ନ ରହିବା ସମାନ ? ସେହି ଫଳ କେତୋଟି ଖାଲି ଚଢ଼େଇ ଖାଇବେ । ହାତ ପାଖରେ ନ ଫଳିଲେ କଲମି ଆମ୍ବଗଛ ଅସୁନ୍ଦର ଓ ଅଗୁଣର ।

ରୂପ ଓ ଗୁଣରେ ଅଧିକାରୀ ତାହାର ସେହି ରୂପଗୁଣ ହରାଇଲେ କଦର୍ଯ୍ୟ । ଅସୁନ୍ଦର ଜନଙ୍କର ସ୍ଥାନ କାହିଁ ?

ଆମ୍ବ ଗଛଟି ସେଇଠୁ ମୂଳରୁ କଟା ହୋଇଗଲା ।

କୋଠାଟି ପାଖରେ ଠିଆ ହୋଇ ଖରା ଆଲୁଅରେ ହସୁଥାଏ—ଜାଣିଥିଲା ଗଛ ମଣିଷ ଇଟା ସିମେଣ୍ଟ ପାଖରେ ରହିବ ବୋଲି ମନେ ମନେ ଆଶଙ୍କା କରିଥିଲା । ଏବେ ସେ ମୂଳରୁ ଯାଉଛି ।

ରହିଗଲା ଖାଲି ଗୋଟାଏ ମେଣ୍ଟା । ଯେଉଁଠି ସେ ଠିଆ ହୋଇଥିଲା ତାହାର ଚିହ୍ନ ।

ଏହି ଚିହ୍ନ କ'ଣ କୋଠା ପାଖରେ ରହି ପାରିବ ? ସୁନ୍ଦର, ଦରକାରି, ଆଦରର ଆମ୍ବ ଗଛର ସମାଧି ପରି ଚକଡ଼ା ରଖି ପାଞ୍ଚ ଛଅ ବର୍ଷ କ'ଣ ରହି ନ ପାରିବ ?

ନା—ନୁହେଁ । ଅସମ୍ଭବ ।

କୋଠା ପାଖରେ ଆମ୍ବଗଛର ଗଣ୍ଡିଟା ଅସୁନ୍ଦର । ଗଲା ଆଇଲା ଲୋକ ଝୁଣ୍ଟିବେ । ଖୋଳିଦେଲେ ଜଳିବ ।

ମାଟି ସମାନ ହୋଇଯିବ । ଗୋଲାପ ଗଛଟିଏ ଲାଗି ପାରିବ । ଆଉ ତାହାର ଗଣ୍ଡି ଓ ଚେରକୁ ଖୋଳି ଚିରି ଶୁଖାଇ ଦେଲେ ପାଞ୍ଚଦିନ କାଠ ଖର୍ଚ୍ଚ ବନ୍ଦ ହୋଇଯିବ ।

ଦିନକୁ କାଠ ଖର୍ଚ୍ଚ ଟଙ୍କାଏ ! ତେବେ ଏହି ଆମ୍ବ ଗଛର ଅଗ ମୂଳ ଓ ଚେର୍ ଆଉ ରହିବ କାହିଁକି ?

ରହିବା କଥା ନୁହେଁ । କେବେ ସେ ଯତ୍ନରେ ହାଣ୍ଡିର ପେଜ, ପନଙ୍କ ପାଖର ସଢ଼ା ପରିବା, ଖାଇ ସାରିଲା ପରେ କୁଳକୁଞ୍ଚା ପାଣି ଅବା ସାର ଖତ ପାଇ ବଢ଼ିଥିଲା । ସେ ସବୁ ଆଜି ପୁରୁଣା କଥା—

ମନକୁ ଘେନିଥିଲା ବୋଲି ନିଜର ଆଦରର ଅଳିଅଳି ବନ୍ଧୁ ପରି ହୋଇଥିଲା । ଆଉ ମନକୁ ନ ପାଇବାରୁ ସେ ଚାଲିଗଲା ହଠାତ୍ ଚିରଦିନ ପରି ।

ମାଟି ପୁଣି ସମାନ ହୋଇଯିବ । ମନ ଉପରେ ତାହାର ଆଞ୍ଚୁଡ଼ା ଦାଗ କ'ଣ ସେମିତି ଲିଭିଯାଇ ସମାନ ହେବନାହିଁ ?

---




**ବସ୍‌ରେ ଯିବା ଆସିବା କରିବାବେଳେ ହାତ ବାହାରକୁ ଦିଅନ୍ତୁ ନାହିଁ ।**

# ମାନବ ବିଜ୍ଞାନ ଓ ଆଦିବାସୀ କଲ୍ୟାଣ

**ଶ୍ରୀ କଳଧର ସ୍ବାଇଁ**, ଏମ୍. ଏସ୍. ସି.
ଆଦିବାସୀ ଗବେଷଣାଗାର,
ଭୁବନେଶ୍ୱର

ମନୁଷ୍ୟର ଶରୀର ଗଠନ, ଆଚାର ବ୍ୟବହାର, ଚାଲି ଚଳନ, ସାମାଜିକ ଜୀବନ ଓ ସଂସ୍କୃତି ପ୍ରଭୃତି ବିଷୟରେ ପୁଙ୍ଖାନୁପୁଙ୍ଖରୂପେ ଜାଣିବାକୁ ହେଲେ ଆମ୍ଭେମାନେ ନୃତତ୍ତ୍ୱ ବା ମାନବ ବିଜ୍ଞାନର ସାହାଯ୍ୟ ନେଇଥାଉଁ । ସଂକ୍ଷେପରେ ମନୁଷ୍ୟ ଏବଂ ତାର କାର୍ଯ୍ୟକଳାପ କହିଲେ ମାନବ ବିଜ୍ଞାନ ବୋଲି ବୁଝାଏ । ନୃତତ୍ତ୍ୱବିତ୍‌ମାନେ ଏହାକୁ ସାଧାରଣତଃ ଶାରୀରିକ, ସାମାଜିକ, ସାଂସ୍କୃତିକ ଓ ପ୍ରାଗୈତିହାସିକ ପ୍ରତ୍ନତତ୍ତ୍ୱ ବିଭାଗ ପ୍ରଭୃତିରେ ବିଭକ୍ତ କରିଥାନ୍ତି । ରାସ୍ତା ମଧ୍ୟରେ ପୋଲ ନିର୍ମାଣରେ ଯାନ୍ତ୍ରିକଙ୍କର ଆବଶ୍ୟକ ଭଳି ପୁରାତନ ଓ ଆଧୁନିକ ସମାଜ ଭିତରେ ସଂପର୍କ ପ୍ରତିଷ୍ଠା କରିବାପାଇଁ ନୃତତ୍ତ୍ୱବିତମାନଙ୍କର ଦରକାର ପଡ଼ିଥାଏ । ଆମେରିକା, ଫ୍ରାନ୍‌ସ୍ ଇଂଲଣ୍ଡ ଓ ଜର୍ମାନ ପ୍ରଭୃତି ଦେଶରେ ମାନବ ବିଜ୍ଞାନ ବହୁଳ ପ୍ରସାର ଲାଭ କରିଛି । ଆସ୍ତେ ଆସ୍ତେ ଏହା ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ଆଦୃତ ହେବାକୁ ଲାଗିଲାଣି । ଭାରତ ଭଳି ଆଦିବାସୀ ବହୁଳ ଦେଶରେ ନୃତତ୍ତ୍ୱବିତ୍‌ମାନଙ୍କର ଚାହିଦା ଯଥେଷ୍ଟ ଥିଲେ ହେଁ ସରକାର ଏ ପର୍ଯ୍ୟନ୍ତ ବିଶେଷ ଦୃଷ୍ଟି ନିକ୍ଷେପ କରିନାହାନ୍ତି । ଧୀରେନ୍ଦ୍ରନାଥ ମଜୁମଦାର ଓ ଶରତଚନ୍ଦ୍ର ରାଏ ପ୍ରଭୃତିଙ୍କର ଆମ ଦେଶରେ ମାନବ ବିଜ୍ଞାନ ପ୍ରତି ଅତୁଳନୀୟ ଦାନ । ସେମାନଙ୍କ ମତରେ ଯେଉଁ ଅନୁନ୍ନତ ଜାତି ବା ଉପଜାତିମାନେ ପାହାଡ଼ ଜଙ୍ଗଲରେ ବିଚ୍ଛିନ୍ନ ହୋଇ ଅର୍ଥନୈତିକ ଶିକ୍ଷା ଓ ରାଜନୈତିକ ଆଦି ସର୍ବବିଧ ଉନ୍ନତି କ୍ଷେତ୍ରରେ ପଛରେ ପଡ଼ିଛନ୍ତି, ସେମାନଙ୍କ ବିଷୟରେ ଯାବତୀୟ ତଥ୍ୟ ସଂଗ୍ରହ କରିବା ସାମାଜିକ ନୃତତ୍ତ୍ୱବିତ୍‌ମାନଙ୍କର ପ୍ରଧାନ କାର୍ଯ୍ୟ ।

ପ୍ରକୃତରେ ଦେଖିବାକୁ ଗଲେ ଆଦିବାସୀ ଗୋଷ୍ଠୀ ପଡ଼ୋଶୀମାନଙ୍କର ପ୍ରଭାବରେ ପ୍ରଭାବିତ ହୋଇ ଓ ନାନା ଜାଗା ବୁଲି ସେମାନଙ୍କର ନିଜର ପାରମ୍ପରିକ ସଂସ୍କୃତିକୁ ଅକ୍ଷୁଣ୍ଣ ନ ରଖି ଏକ କ୍ରମପରିବର୍ତ୍ତନଶୀଳ ଅବସ୍ଥାରେ ଅଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ସାଧାରଣତଃ ଆମ୍ଭ ହିନ୍ଦୁମାନଙ୍କର ସଂସ୍କୃତି ଓ ଆଦିବାସୀମାନଙ୍କର ସଂସ୍କୃତି ମଧ୍ୟରେ ବିଶେଷ ପାର୍ଥକ୍ୟ ଥାଏ । ତେଣୁ ଆଦିବାସୀମାନଙ୍କର ଯେଉଁ ସଂସ୍କୃତି ଆମ୍ଭମାନଙ୍କ ମଧ୍ୟରେ ଦେଖା ନ ଯାଏ, ତାକୁ ଆମେ ଆଦିବାସୀ ସଂସ୍କୃତି ବୋଲି କହିଥାଉଁ । ନୃତତ୍ତ୍ୱବିତ୍‌ମାନେ ସେମାନଙ୍କୁ ଭୌଗୋଳିକ, ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ବିଚାର କରିବା ଉଚିତ୍ । ଆଦିବାସୀମାନଙ୍କୁ ପୂରା ଆଦିବାସୀ ଶ୍ରେଣୀର କି ନୁହେଁ ବିଚାର କରିବା ବ୍ୟତୀତ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତିର ପନ୍ଥା ନିର୍ଦ୍ଧାରଣ କରିବା ଓ ସଂପୂର୍ଣ୍ଣ ଗବେଷଣା କରିବା ମଧ୍ୟ ନିତାନ୍ତ ପ୍ରୟୋଜନ ।

ଭାରତରେ ୨୧୨ ପ୍ରକାର ଆଦିବାସୀମାନଙ୍କ ମଧ୍ୟରୁ ଆମ ରାଜ୍ୟରେ ୬୨ ପ୍ରକାର ଆଦିବାସୀ ଦେଖାଯାନ୍ତି । ଆମ ଦେଶର ଆଦିବାସୀମାନେ ପୂରା ଲୋକ ସଂଖ୍ୟାର ଶତକଡ଼ା ପ୍ରାୟ ୫.୦୬ । ସେମାନେ ଆସାମ, ମଣିପୁର, ତ୍ରିପୁରା, ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶ ପ୍ରଭୃତି ରାଜ୍ୟର ଜଙ୍ଗଲ ଏବଂ ଉପତ୍ୟକା ଅଞ୍ଚଳରେ ବସବାସ କରନ୍ତି । କିନ୍ତୁ ଆମ ଓଡ଼ିଶା ରାଜ୍ୟର ପ୍ରତି ପାଞ୍ଚଜଣଙ୍କ ମଧ୍ୟରୁ ଆଦିବାସୀ ଓ ହରିଜନମାନଙ୍କ ସଂଖ୍ୟା ହେଉଛି ଦୁଇଜଣ । ଭାରତର ସ୍ୱାଧୀନତାପରଠାରୁ ଆମ୍ଭମାନଙ୍କର ଜାତୀୟ ନେତାମାନେ ଆଦିବାସୀମାନଙ୍କର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ନାନାପ୍ରକାର ବାଟ ଓ ଉପାୟ ଅବଲମ୍ବନ କରିବାରେ ଆପ୍ରାଣ ଚେଷ୍ଟା ଚଳାଇଛନ୍ତି । ଭାରତୀୟ ସମ୍ବିଧାନରେ ମଧ୍ୟ ସେମାନଙ୍କର ଅର୍ଥନୈତିକ ଓ ଶିକ୍ଷା ଆଦିର ପ୍ରସାର ଦିଗରେ ସ୍ୱତନ୍ତ୍ର ବ୍ୟବସ୍ଥା ଅଛି । ସେମାନଙ୍କର ମଙ୍ଗଳ ସକାଶେ ଦେଶସାରା କେତେଗୁଡ଼ାଏ ସରକାରୀ ଓ ବେସରକାରୀ ସଂସ୍ଥା ଖୋଲି ଯାଇଛି । ପୂଜ୍ୟ ଠକ୍କର ବାପାଙ୍କର ଆଦିମଜାତି ସେବକସଂଘ ପ୍ରଭୃତି ସଂସ୍ଥା ଜରିଆରେ ଆଦିବାସୀମାନଙ୍କର ପୁନର୍ବସତି, ଅର୍ଥନୀତି ସ୍ୱାସ୍ଥ୍ୟ ଓ ଶିକ୍ଷା ଦିଗରେ ଯଥେଷ୍ଟ ସାହାଯ୍ୟ କରାଯାଉଛି । ସରକାର ମଧ୍ୟ ସେମାନଙ୍କର ଶିକ୍ଷାପାଇଁ ବିଦ୍ୟାଳୟ ଓ ଛାତ୍ରାବାସ, ଆର୍ଥିକ ସମ୍ବଳ ପାଇଁ ସମବାୟ ସମିତି, ଶସ୍ୟାଗାର, ଗମନାଗମନ, ସ୍ୱାସ୍ଥ୍ୟପାଇଁ ଡାକ୍ତରଖାନା, ମାତୃମଙ୍ଗଳ କେନ୍ଦ୍ର ଓ ପାନୀୟଜଳ ଯୋଗାଣ, ପୁନର୍ବସତି ଲାଗି କଲୋନୀ ନିର୍ମାଣ, ସମାଜରେ ମିଳାମିଶି ଚଳିବା ପାଇଁ ଅସ୍ପୃଶ୍ୟତା ନିବାରଣ ଏବଂ ଆଦିବାସୀ ଜମି ହସ୍ତାନ୍ତର ନ ହେବା ପାଇଁ କଡ଼ା ଆଇନ ପ୍ରଣୟନ କରିବାରେ ଦୃଢ଼ ପଦକ୍ଷେପ ନେଉଛନ୍ତି । ୧୯୫୧ ମସିହାଠାରୁ ୧୯୫୪ ମସିହା ମଧ୍ୟରେ ଭାରତ ସରକାର ଆଦିବାସୀ ଓ ହରିଜନମାନଙ୍କର ସମୂହ କଲ୍ୟାଣରେ ୫୧୦, ୩୮, ୯୮, ୪୬୦୯ ଖର୍ଚ୍ଚ କରିଛନ୍ତି । ସରକାର ଆଦିବାସୀମାନଙ୍କର ଶିକ୍ଷାସ୍ତରକୁ ଆଗେଇବାକୁ ଯାଇ ଅନୁନ୍ନତ ଅଞ୍ଚଳରେ ଆଶ୍ରମସ୍କୁଲ, ସେବାଶ୍ରମ ପ୍ରଭୃତି ଖୋଲି ସେମାନଙ୍କର ଖାଇବା ପିଇବା, ପିନ୍ଧିବା ଓ ପଢ଼ିବାପାଇଁ ଯାବତୀୟ ଖର୍ଚ୍ଚ ବହନ କରୁଛନ୍ତି । ଆଦିବାସୀ ସ୍କୁଲଗୁଡ଼ିକରେ ଆଦିବାସୀମାନଙ୍କ ଛଡ଼ା ଅଣଆଦିବାସୀମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କଲେ ସେମାନେ ବହୁ ମାତ୍ରାରେ ଅଣଆଦିବାସୀମାନଙ୍କର ଚାଲିଚଳନ ଆଚାର ବିଚାର, ଓ ପୋଷାକ ପତ୍ର ପ୍ରଭୃତି ଅନୁକରଣ କରି ନିଜ ନିଜର ଜୀବନ ଧାରଣର ମାନ ବଦଳାଇ ପାରନ୍ତି ବୋଲି ମୋର ବିଶ୍ୱାସ । ଏତଦ୍‌ବ୍ୟତୀତ ସେମାନଙ୍କୁ ବଢ଼େଇ କାମ କମାର କାମ, କୃଷିକାମ, ସିଲେଇକାମ ଓ ଅନ୍ୟାନ୍ୟ ସରକାରୀ କାର୍ଯ୍ୟରେ ନିଯୁକ୍ତି ଦେବାରୁ କେତେକାଂଶରେ ସେମାନଙ୍କର ଜୀବନଧାରଣର ମାନ ବଦଳି ଯାଉଛି । ସାନ୍ତାଳ, ଓରାନ୍, ବିରହୋର ଓ ମୁଣ୍ଡାମାନେ ଏବେସୁଦ୍ଧା କେତେକାଂଶରେ ଶୀକାର ଓ ପୋଡ଼ୁଚାଷ କରିବାର ଦେଖା ଯାଉଛି । ତେଣୁ ନୃତତ୍ତ୍ୱବିତ୍‌ମାନେ ଗବେଷଣା କରି ସରକାରଙ୍କୁ ଯୋଜନାବେଳେ ଆଦିବାସୀମାନଙ୍କର ଅନୁନ୍ନତ ଅଞ୍ଚଳର ଉନ୍ନତି ପାଇଁ ନାନାପ୍ରକାର ଉପାୟ ଦେଖାଇବାରେ ସହଯୋଗ କରିବା ସର୍ବାଦୌ ଆବଶ୍ୟକ । ଦେଶର ଅଗ୍ରଗତି ମୂଳକ ଯୋଜନାକୁ ଆଗେଇ ନେବାକୁ ହେଲେ ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ସେବକ କିମ୍ବା ସ୍ୱେଚ୍ଛାସେବକମାନଙ୍କୁ ତାଲିମ୍‌ପ୍ରାପ୍ତ କରିବା ଅଥବା ନୃତତ୍ତ୍ୱବିତ୍‌ମାନଙ୍କୁ ଅଧିକ ସଂଖ୍ୟାରେ ଗ୍ରାମ ମଙ୍ଗଳ ସଂସ୍ଥାରେ ନିଯୁକ୍ତ କରିବା ସରକାରଙ୍କର ଚରମ ଲକ୍ଷ୍ୟ ହେବା ଉଚିତ୍ । କାରଣ ତାଲିମ୍‌ପ୍ରାପ୍ତ ସେବକ କିମ୍ବା ନୃତତ୍ତ୍ୱବିତ୍‌ମାନେ ଆଦିବାସୀମାନଙ୍କର ଶିକ୍ଷା, ସଂସ୍କୃତି, ଚାଲିଚଳନ, ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ଜୀବନ ଅତି ସହଜରେ ହୃଦୟଙ୍ଗମ କରିପାରିବେ । ପ୍ରକୃତରେ ଦେଖିବାକୁ ଗଲେ ଆଦିବାସୀମାନଙ୍କର ଉନ୍ନତିମୂଳକ ଯୋଜନାଗୁଡ଼ିକ କାର୍ଯ୍ୟକାରୀ ହେବା ଅନୁପାତରେ

ଭାରତର ଆଦିବାସୀ ବହୁଳ ରାଜ୍ୟରେ ଖର୍ଚ୍ଚର ପରିମାଣ ବେଶ ବଢ଼ିଯାଇଛି । ତେଣୁ ନୃତତ୍ତ୍ୱବିତ୍‌ମାନେ ଚାଲୁ ରହିଥିବା ଯୋଜନାଗୁଡ଼ିକରେ ଆଦିବାସୀମାନେ କେତେ ପରିମାଣରେ କିପରି ଭାବରେ ଲାଭବାନ୍ ବା କ୍ଷତିଗ୍ରସ୍ତ ହେଉଛନ୍ତି ତାହା ପରୀକ୍ଷା କରି ସେଗୁଡ଼ିକର ସଂଶୋଧନ, ମୂଲ୍ୟନିରୂପଣ, ପରିବର୍ତ୍ତନ ଏବଂ ପୁନରାଲୋଚନା କରିବା ଉଚିତ୍ । ସ୍ୱଦେଶ ବତ୍ସଳ, ନିଃସ୍ୱାର୍ଥପର କର୍ମଠ ପୂଜ୍ୟ ନେତା ବାପୁଜୀ ଓ ବାପୁଜୀଙ୍କର ମହତ୍ ଆଦର୍ଶରେ ଏବଂ ପଦଦଳିତ, ଲାଞ୍ଛିତ, ଅବହେଳିତ, ଆଦିବାସୀ ଓ ହରିଜନ କାହିଁକି ସମଗ୍ର ଦେଶବାସୀ ଆଜି ଅନୁପ୍ରାଣିତ । ସେମାନଙ୍କର ଅଦମ୍ୟ ଚେଷ୍ଟାବଳୀ ଆଜି ଆଦିବାସୀ ଓ ହରିଜନମାନେ ମୂକ ବଧିର ଭଳି ରହିବା ଛଡ଼ା କାଉଣ ବା ଉପାୟ ଥିଲା ।

ନୃତତ୍ତ୍ୱବିତ୍‌ମାନଙ୍କ ମତରେ ଆଦିବାସୀମାନଙ୍କର ମୁଖ୍ୟ ସମସ୍ୟାଗୁଡ଼ିକ ହେଲା ଦାରିଦ୍ର୍ୟ, ନିରକ୍ଷରତା, ଯାତାୟାତର ଅଭାବ, ରୋଗ, ନେତୃତ୍ୱର ଅଭାବ, ଶାସନର ଅବହେଳା ଏବଂ ଶିଳ୍ପୀକରଣ ଯୋଗୁଁ ଜୀବନର ମାନପରିବର୍ତ୍ତନ ଇତ୍ୟାଦି । ଏଗୁଡ଼ିକର ଦୂରୀକରଣ ପାଇଁ ଆଦିମ ଜାତି ସେବକ ସଂଘ, ଝାଡ଼ଖଣ୍ଡଦଳ, ରାମକୃଷ୍ଣ ମିଶନ ଓ ଖ୍ରୀଷ୍ଟିୟାନ୍ ପାଦ୍ରୀମାନେ ମଧ୍ୟ ତତ୍ପର ଥିବା ଦେଖାଯାଉଛି; କିନ୍ତୁ ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ ଆଦିବାସୀମାନଙ୍କ ସାମାଜିକ ସଂସ୍ଥା ମୁଖ୍ୟ ସମସ୍ୟା । ଏକଜାତୀକରଣ, ଶାସକମାନଙ୍କର ସ୍ୱତନ୍ତ୍ର ତାଲିମ୍ ଓ ଉପଯୁକ୍ତ ଯୋଜନାବଳୀ ପ୍ରତି ଦୃଷ୍ଟି ଦେଲେ ସେମାନଙ୍କର ଉନ୍ନତି ସମ୍ଭବପର ହୋଇ ପାରିବ । ଆଦିବାସୀମାନଙ୍କର ଅବସ୍ଥାକୁ ସୁଧାରିବା ପୂର୍ବରୁ ଆମ୍ଭେମାନେ ସେମାନଙ୍କର ଦୈନନ୍ଦିନ ଅବସ୍ଥା, ପାରିପାର୍ଶ୍ୱିକ ଅବସ୍ଥା, ପ୍ରଚଳିତ ଭାଷା ଓ ସ୍ୱଭାବ ପ୍ରଭୃତି ଜାଣିବା ବିଧେୟ । ସ୍ୱାଧୀନତା ପରେ କେନ୍ଦ୍ର ତଥା ରାଜ୍ୟ ସରକାର ଆଦିବାସୀ ଓ ହରିଜନମାନଙ୍କ ନିମନ୍ତେ ଲୋକସଭା, ରାଜ୍ୟସଭା, ବିଧାନସଭା, ସ୍କୁଲ ଓ କଲେଜ ପ୍ରଭୃତିରେ ସ୍ଥାନ ସଂରକ୍ଷିତ ରଖିଛନ୍ତି ।

ସେମାନଙ୍କର ଅର୍ଥନୈତିକ ବିକାଶ ଦିଗରେ ସେମାନଙ୍କୁ ଯଥେଷ୍ଟ ଜମି ଯୋଗାଇଦେବା, ଜମିର ରକ୍ଷଣାବେକ୍ଷଣ ପାଇଁ କଡ଼ା ନଜର ଦେବା, ଋଣଗ୍ରସ୍ତକାରୀ ଆଦିବାସୀମାନଙ୍କୁ ସାହୁକାରମାନଙ୍କ ହାତରୁ ରକ୍ଷା କରିବା, ଶିକ୍ଷାର ଅଗ୍ରଗତି ନିମନ୍ତେ ଆଦିବାସୀବହୁଳ ଅନୁନ୍ନତ ଅଞ୍ଚଳରେ ସ୍କୁଲ, କଲେଜ, ହଷ୍ଟେଲ ପ୍ରଭୃତି ଖୋଲି ମାଗଣାରେ ପଢ଼ିବାକୁ ସୁଯୋଗ ଦେବା, ଥଇଥାନ ନିମନ୍ତେ ଘର ତିଆରି କରିଦେବା, ସ୍ୱାସ୍ଥ୍ୟରକ୍ଷା ପାଇଁ ପାନୀୟଜଳ, ଚିକିତ୍ସାଳୟ ଓ ଗମନାଗମନ ଆଦିର ବନ୍ଦୋବସ୍ତ କରିବା, ଅସ୍ପୃଶ୍ୟତା ନିବାରଣ ପାଇଁ କଠୋର ଆଇନ୍ ପ୍ରଣୟନ୍ କରିବା, ଆଦିବାସୀମାନଙ୍କୁ ବେଶି ପରିମାଣରେ କୁଟୀରଶିଳ୍ପ ଶିକ୍ଷାଦେବା ଓ ତାଲିମପ୍ରାପ୍ତ କରିବା ପ୍ରଭୃତିରେ ସରକାର ନୃତତ୍ତ୍ୱବିତ୍‌ମାନଙ୍କର ପରାମର୍ଶ ଲୋଡ଼ିବା ନିତାନ୍ତ ପ୍ରୟୋଜନ ।

ସ୍ୱର୍ଗତ ପଣ୍ଡିତ ନେହରୁ ଆଦିବାସୀମାନଙ୍କର ପ୍ରକୃତ ଅଭାବ ହୃଦୟଙ୍ଗମ କରି ପ୍ରଥମ ଆଦିବାସୀ ଅଧିବେଶନରେ ଆମ୍ଭମାନଙ୍କର ସେମାନଙ୍କର ଓ ସର୍ବାଙ୍ଗୀଣ ଉନ୍ନତି ପାଇଁ କିଭଳି ଏକ ଧର୍ମ ପନ୍ଥା ଅନୁସରଣ କରିବା ଉଚିତ, ପ୍ରଭୃତି ବିଷୟରେ ଉତ୍ତମରୂପେ ବିଶ୍ଳେଷଣ କରିଥିଲେ । ତଥ୍ୟ ସଂଗ୍ରହକାରୀମାନେ ଆଦିବାସୀମାନଙ୍କୁ କଥା ଏବଂ କାର୍ଯ୍ୟରେ ହୃଦବୋଧ କରାଇଦେବା ଉଚିତ୍ ଯେ ସରକାର ସେମାନଙ୍କର ଉନ୍ନତି ବ୍ୟତିତ ଅବନତି ପାଇଁ ଆଦୌ ଚେଷ୍ଟିତ ନୁହନ୍ତି । ସର୍ବଶେଷରେ ଆଦିବାସୀ ଗବେଷଣାଗାର, ଆଦିବାସୀ ଉନ୍ନୟନ ସଂସ୍ଥା, ନୃତତ୍ତ୍ୱବିଭାଗ, ଭାରତ ସରକାର ଓ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଏବଂ ଜାତିପ୍ରଥା ଲୋପକରି ଏକ ଶ୍ରେଣୀ ବିହୀନ ସମାଜ ଗଠନ କରିବାରେ ଆଗଭର ହେଲେ ଅଚିରେ ଯେ ସେମାନଙ୍କର ସର୍ବାଙ୍ଗୀଣ ଉନ୍ନତି ହେବ ଏଥିରେ ସନ୍ଦେହର ଅବକାଶ ନାହିଁ ।



# ॥ ପଶ୍ଚିମ ଜର୍ମାନୀର ରୋଷେଇଘରେ ତିନିଘଣ୍ଟା ॥

ଶ୍ରୀ ନାରାୟଣ ଆଚାର୍ଯ୍ୟ, ଧାତୁବିଶାରଦ, ହିନ୍ଦୁସ୍ଥାନ ଷ୍ଟିଲ, ରାଉରକେଲା

ରାଏ ବାବୁଙ୍କଠାରୁ ରବିବାର ଦିନ ଖାଇବା ପାଇଁ ନିମନ୍ତ୍ରଣ ପାଇବା ଦିନରୁ ମନେ ମନେ ମୁଁ ଭାରି ଖୁସି । ରାଏବାବୁ ଆମ କଟକର ଲୋକ । ମୋ ପାଇଁ ତିଆରି କରିଥିବା ଖାଇବାଟା ନିଶ୍ଚୟ କଟକୀ ଧରଣର ହୋଇଥିବ । ଏ କଥା ପ୍ରାୟ ମୁଁ ଗତ ସପ୍ତାହରେ ୩।୪ ଥର ଭାବିଛି । ଅର୍ଦ୍ଧ ମାସକ ପରେ ପୁଣିଥରେ କଟକୀ ଖାନା ଯେ ଅମୃତ ପରିକା ଲାଗିବ ଏ କଥା ମୁଁ ଆଗରୁ ଭାବି ନେଇଥିଲି ।

ରବିବାର ଦିନ ସକାଳେ ନିଦ ଭାଙ୍ଗିଲା ବେଳକୁ ସକାଳ ୮ଟା । ଝରକାରୁ ଉଠିପଡ଼ି ପରଦାକୁ ଅନାଇ ଦେଖେତ ଚାରିଆଡେ କୁହୁଡ଼ି ଘୋଟିଛି । ନିତିଦିନିଆଁ କୁହୁଡ଼ି ଓ ବରଫ ଦେଖିବାକୁ ମତେ ଏଠାରେ ସବୁଠାରୁ ବେଶି ଖରାପ ଲାଗେ । କିନ୍ତୁ ଆଜି ସକାଳେ ଆଦୌ ଖରାପ ଲାଗିଲାନି । ଆଗକୁ ନିମନ୍ତ୍ରଣ କଥା ମନେ ପଡ଼ି ବଡ଼ ଫୁର୍ତ୍ତି ଲାଗିଲା ।

ଦାନ୍ତ ଘଷି ଲହୁଣି ବୋଳା ଖଣ୍ଡେ ରୁଟି ଓ କପେ କଫି ପିଇ ପଢ଼ିବାକୁ ବସିଲି । ପଢ଼ାରେ ମନ ଲାଗିଲାନି । ଖାଲି ଘଡ଼ିକୁ ଚାହୁଁଥାଏ, କେତେବେଳେ ୧୦ଟା ବାଜିବ । ଯାହା ହେଉ ସମୟଟା କାହିଁକି ଚଞ୍ଚଳ ଗଡ଼ିଗଲା ପରି ମନେହେଲା । ୧୦ଟା ବାଜି ୫ ମିନିଟରେ ମୁଁ ମୋର ବସାଗୁଡ଼ି ରାଏବାବୁ ରହୁଥିବା ଛାତ୍ରାବାସ ଆଡ଼କୁ ଚାଲିଲି । ୧୦ଟା ୨୦ ମିନିଟରେ ରାଏ ବାବୁଙ୍କ କୋଠରୀରେ ପହଞ୍ଚି ଦେଖେତ, ସେ ରନ୍ଧାରନ୍ଧି କରିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ତାଙ୍କଠାରୁ ଜାଣିଲି ଯେ ତାଙ୍କର ଜଣେ ଜର୍ମାନୀ ସାଙ୍ଗ ମଧ୍ୟ ଏଥି ନିମନ୍ତ୍ରଣ ପାଇଛନ୍ତି । କଟକୀ ଖାନାକୁ ଜର୍ମାନ ଅତିଥି କଥା ଭାବି ମତେ ଭାରି ଖୁସି ଲାଗିଲା । ରନ୍ଧାହେବା ଭିତରେ ହେବ ମିଠା ଖେଚୁଡ଼ି ଓ ଫୁଲକୋବି ତରକାରୀ ।

ରାଏବାବୁ ଆଉ କାଳ ବିଳମ୍ବ ନ କରି ସାଙ୍ଗେ ସାଙ୍ଗେ ତାଙ୍କ କିଣିଥିବା ଜିନିଷ ପତ୍ର ଟେବୁଲ ଉପରେ ଥୋଇଲେ । ବଡ଼ ବଡ଼ ଆଳୁ, ଗୋଟାଏ ବଡ଼ ଫୁଲକୋବି, ପାଏ ହେବ ପିଆଜ ଓ ତା ସାଙ୍ଗକୁ "ନାୟକ" ବାବୁଙ୍କଠାରୁ ସଂଗ୍ରହ କରି ଯାଇଥିବା ହଳଦୀ ଗୁଣ୍ଡ ଓ ଜିରା ଗୁଣ୍ଡା । ଖାଣ୍ଟି ହଳଦୀ ଓ ଜିରା ଗୁଣ୍ଡ ଏ ଦେଶରେ ମିଳେନି, ଗଲା ଥର ନାଏକ ବାବୁଙ୍କ ଘରୁ ଏଥିରୁ ବଡ଼ ଟିଣରେ ଟିଣେ ଲେଖାଏଁ ପାର୍ସେଲ ଆସିଥିଲା । ସେ ଜର୍ମାନୀ ଗୁଡ଼ି ଘରକୁ ଯିବାବେଳେ ତାଙ୍କଠାରୁ ଏତକ ରାଏବାବୁ ରଖି ନେଇଛନ୍ତି ।

ସବୁ ରୋଷେଇ ସରଞ୍ଜାମ ଧରି ଛାତ୍ରାବାସର ରୋଷେଇ ଘରେ ପଶିଲା ବେଳକୁ ଘଣ୍ଟାରେ ବାଜିଥାଏ ଠିକ୍ ୧୦ଟା ୩୦ ମିନିଟ । ଏ ଦେଶର ହଷ୍ଟେଲମାନଙ୍କରେ ତ ପୂଜାରୀ ନ ଥାନ୍ତି । ଖାଲି ରୋଷେଇ ଘର ଓ ରୋଷେଇ ସରଞ୍ଜାମ ପିଲାମାନଙ୍କୁ ଯୋଗାଇ ଦିଆ ଯାଇଥାଏ । କୋଇଲା ବା ଗ୍ୟାସର ଚୁଲି

ପ୍ରାୟ ୪ । ୫ଟା, ପାଣିକଲ ୩ଟା, କଣ୍ଟା ଷ୍ଟମର୍, କପ୍, ପ୍ଲେଟ୍ ଇତ୍ୟାଦି ସବୁ ଯୋଗାଇ ଦିଆଯାଇଥାଏ । ଖାଲି ପିଲମାନେ ନିଜ ଇଚ୍ଛା ଅନୁଯାୟୀ ସେଷେଇ କରି ଖାଇବା କଥା ।

ରାଏବାବୁ ରୋଷେଇ କରିବାରେ ଯେ ବଡ଼ ପ୍ରବୀଣ ଏ ଖବର ମୁଁ ଆଗରୁ ପାଇଥାଏ । ଶୀଘ୍ର କାମ ଶେଷ ହୋଇଯିବ ବୋଲି ମୁଁ ତାଙ୍କୁ ଟିକେ ସାହାଯ୍ୟ କରିବାକୁ ଯାଇଥାଏ । ରାଏବାବୁ ସଙ୍ଗେ ସଙ୍ଗେ ଆଳୁ ଛଡ଼ାଇବାରେ ଲାଗିଗଲେ । ମୁଁ ବାଧ ହୋଇ ପିଆଜ କାଟିଲି । ଆଖିରୁ ଲୁହ ବୋହିଲେ ମଧ୍ୟ ପିଆଜ କାଟିବାକୁ ହେବ । ହଠାତ୍ ମୋର ମନେ ପଡ଼ିଗଲା ଗୋଟିଏ ବହିରେ ଥରେ ପଢ଼ିଥିଲି, କଞ୍ଚା ପିଆଜ ପାଣି ଭିତରେ କମ୍ପା ଟିକିଏ ଚୂଲି କଡ଼ାରେ ଗରମ କରି କାଟିଲେ ଆଖିରୁ ପାଣି ବୁହେନି । ଗୋଟିଏ ଜାଗାରେ ପାଣି ନେଇ ତା ଭିତରେ କାଟିବାରୁ ଟିକିଏ ଉପକାର ହେଲା । ଏହା ମଧ୍ୟରେ ରାଏବାବୁ ଆଳୁ କାଟିସାରି ଖେଚୁଡ଼ି ପାଇଁ କିଣିଥିବା ଚାଉଳକୁ ଧୋଇ ଚୁଲିରେ ହାଣ୍ଡି ଗୁଣ୍ଡ ପକାଇ ଟିକେ ପବନରେ ରଖିବାକୁ ଯାଉଥିଲେ ।

ପବନରେ କାହିଁକି ରଖିବା ଦରକାର ପଚାରିବାରୁ ସେ କହିଲେ "ଶୀଘ୍ର ହୋଇଯିବ" ମୁଁ ମଧ୍ୟ ବିଶ୍ୱାସ କଲି ।

ସେତେବେଳକୁ ହୋଇଥାଏ ୧୦ଟା ୫୦ମିନିଟ୍ ରାଏବାବୁ ଗୋଟିଏ ସାନ ଡେକଚିରେ ତେଲ ପକାଇ ଆଳୁଗୁଡ଼ାକୁ ଭଜା ଦେବାକୁ ପ୍ରସ୍ତୁତ ହେଉଥାନ୍ତି । ଆମ ରୋଷାଇଘର କବାଟ ଧଡ଼କରି ଖୋଲିଲା । ଘର ଭିତରକୁ ପଶି ଆସିଲେ ଦୁଇଜଣ ଟିହ୍ନା ବିଦେଶୀ ଛାତ୍ରବନ୍ଧୁ । ସେମାନଙ୍କ ମଧ୍ୟରୁ ଜଣେ ଦକ୍ଷିଣ ଆମେରିକାର ପେରୁ ରାଜ୍ୟର ଛାତ୍ର । ତାଙ୍କ ନାମ ସେସା । ଅନ୍ୟ ଜଣକ ପାରସ୍ୟର ଛାତ୍ର-ଇବ୍ରାହିମ୍ । ସେସା ପିନ୍ଧିଥାଏ ଗୋଟିଏ କଳା ପ୍ୟାଣ୍ଟ ଓ ଗୋଟିଏ ରଙ୍ଗ ପିନ୍ଧା କାମିଜ, ମୁଣ୍ଡରେ ଗୋଟିଏ ଆମ ଦେଶର ଗ୍ରେଟ ଲେଣ୍ଡପତ୍ର ଟାଳପତ୍ର ଟୋପି, ହାତରେ ଧରିଥାଏ ଗୋଟିଏ ଡେକଚି ଓ ଷ୍ଟମଚ ।

ଇବ୍ରାହିମ୍ କିନ୍ତୁ କୋର୍ଟ ପ୍ୟାଣ୍ଟ ପିନ୍ଧି ରବିବାରିଆ ପୋଷାକରେ ଥାଏ । ହାତରେ ଥାଏ ୪ କି ୬ଟା ପୁଟୁଳା । ଘରକୁ ପଶି ଆସିବା ମାତ୍ରକେ ସେମାନେ ପ୍ରଥମେ ଆମକୁ ନମସ୍କାର କରି, ଚୂଲି ଖାଲି ଅଛିକି ନା ପଚାରିଲେ । ରାଏବାବୁ ଉତ୍ତର ଦେଲେ "ଯଥେଷ୍ଟ ତୁମେ ଯେତେ ରାନ୍ଧିପାର ।" ( ପ୍ରତିଦିନ ପ୍ରଥମ ଦେଖାହେଲେ ପରସ୍ପର ପରସ୍ପରଙ୍କୁ ନମସ୍କାର କରିବା ଏ ଦେଶର ଅତି ସାଧାରଣ ଭଦ୍ରାମି । ) ଇବ୍ରାହିମ ସାଙ୍ଗେ ସାଙ୍ଗେ ତାର ପୁଟୁଳାଗୁଡ଼ିକୁ ଟେବୁଲ ଉପରେ ରଖିଦେଇ ପଚାରିଲା ।

"ଆରେ ଆଜ ପୁଣି ଭାରତୀୟ ଭାଇମାନଙ୍କର କି ପ୍ରକାର ଖାନା ?" ସେସାକୁ ବଡ଼ ପାଟିରେ ଡାକି କହିଲା "ଦେଖିରେ ଭାରତୀୟ ଚାଉଳ କପଡ଼ ହାଣ୍ଡିଆ" । ଆମ ଦେଶରେ ଜମା ଏପରି ଚାଉଳ ମିଳେନି" । ମୁଁ ବାଧହୋଇ ତାକୁ ବୁଝାଇଲି, ନା ଏ ଚାଉଳ ଆମେ ଏଇଠାରୁ କିଣିଛୁ । ଖାଲି ଚୁଲିରେ ଭାରତରୁ ଆଣାଯାଉଥିବା ଗୋଟାଏ ପ୍ରକାର ମସଲା ଦିଆ ଯାଉଥିବାରୁ ତାହା ହାଣ୍ଡିଆ ଦିଶୁଛି । ଇବ୍ରାହିମର କୌତୁହଳ କମେ ଆଡ଼ିଲା, ମୋତେ କହିଲା "ଦେଖା ତ ଟିକିଏ ତୁମ ଭାରତୀୟ ମସଲା କପରି ଦିଶେ" । ଆମ ଦେଶର ହାଣ୍ଡି ଓ ଜରୀକୁ ଦେଖି ତାର ଥରେ ବର୍ଲିନରେ ଭାରତୀୟ ଖାଦ୍ୟ ଖାଉଥିବା କଥା ମନେ ପଡ଼ିଗଲା, ସେ କହି ପକାଇଲା । ବର୍ଲିନରେ ଥରେ ମୁଁ ତୁମ ଦେଶର ଖାଦ୍ୟ ଖାଇଛି । ସେହିଦିନଠାରୁ ତୁମ ଖାଦ୍ୟକୁ ଜୁହାର-ମୋ ପାଟି ଦୁଇଦିନ ପର୍ଯ୍ୟନ୍ତ ଖାଲି ଜଳିଲା ।"

ରାଏବାବୁ କିନ୍ତୁ ଏହା ମଧ୍ୟରେ ତାଙ୍କ ଆଳୁ ଭଜିବାରେ ବ୍ୟସ୍ତ । ମୁଁ ଆମ ଗପ ବନ୍ଦକରି

ପଚ୍ଚରିଲି ।" ରାଏ ବାବୁ କଣ ଆଳୁ ସିଝି ଗଲଣି " ? ଉତ୍ତର ମିଳିଲା "ନାଇଁ ମ । ଏତେ ଚଞ୍ଚଳ କିପରି ସିଝିବ " ? ସେମା ଯୁଆଡ୍ଡେ ତା କାମରେ ବ୍ୟସ୍ତ । ଗୁଡ଼ାଏ କଞ୍ଚା ମସୁର ଓ ମାଂସ ଏକାଠି ପ୍ରାୟ ଅଧ ଡେକଚିଏ ପାଣିରେ ସିଝାଇବାକୁ ଆରମ୍ଭ କରିଛି । ମୁଁ ଟେବୁଲ ପାଖରୁ ଚୁଲି ପାଖକୁ ଆସି ସେମାକୁ ପଚ୍ଚରିଲି । "ଆରେ, ତୋର ପୁଣି ଏ ଆଜି କି ପ୍ରକାରର ଖାଦ୍ୟ" । ଏତେବେଳ ପର୍ଯ୍ୟନ୍ତ ମୁଁ ଜାଣିଥିଲି ଯେ ସେ ଦୁହେଁ ଆଜି ଏକାଠି ରାନ୍ଧୁଛନ୍ତି । ସେମା କହିଲା ଆମର ଆଜି ମାଂସ, ମସୁର, ଟମାଟୋ ଓ ପିଆଜ ମିଶି ଗୋଟାଏ ଝୋଳ ଓ ଭାତ ହେବ । ତୁ କେବେ ଖାଇନୁ କି ? ବଡ଼ ବଢ଼ିଆ ଲାଗେ । ଖାଲି ଟିକିଏ ଅପେକ୍ଷା କର, ମୁଁ ରାନ୍ଧିସାରେ ଦେଖିବୁ କିପରି ଲାଗୁଛି । ମତେ ମନେ ମନେ ବଡ଼ ହସ ଲାଗିଲା । ଖାଲି ମାଂସ, ମସୂର ଓ ଟମାଟୋ ମିଶି ଯେଉଁ ଝୋଳ ହେବ, ତାକୁ ମୁଁ କଣ ଆମ ଦେଶର କେହି କେବେ ଖାଇ ନ ଥିବେ । ତେବେ ତାକୁ ଅମାନ୍ୟ ନ କରି ମୁଁ ରାଏ ବାବୁଙ୍କ ଆଳୁଭଜା ଦେଖିବାକୁ ଚାଲିଗଲି । ଗଲା ବେଳକୁ ସେମା ଗର୍ଜନ କରୁଥାଏ । "ହାଇରେ ଇବ୍ରାହିମ୍ ତୋର ପିଆଜ କଟା ସରିଲାନା ? ମୋର ତ ତରକାରୀ ଆସି ଫୁଟିଲା ।"

ସେତେବେଳକୁ ସମୟ ହୋଇଥାଏ ୧୧ଟା ୧୦ ମିନିଟ୍ । ରାଏବାବୁ ଆଳୁ ଭାଜି କୋବି ତରକାରୀ ପାଇଁ କରେଇରେ ତେଲ ଦେଉଥାନ୍ତି । ମତେ ଦେଖି କହିଲେ ମେତେ ଟିକିଏ କଟା ପିଆଜଗୁଡ଼ାକ ଦିଅନ୍ତୁ ତ । ତାଙ୍କ ହାତକୁ ପିଆଜତକ ବଢ଼ାଇ ଦେଉଁ ଦେଉଁ ମୁଁ କହିଲି ଆମକୁ ବୋଧହୁଏ ଟିକିଏ ଚଞ୍ଚଳ କରିବାକୁ ହେବ କାରଣ ଆପଣଙ୍କ ଜର୍ମାନ ସାଙ୍ଗ ଜଣକ ୧୨ଟା ବେଳେ ଆସିବାର ଥାଏ । ରାଏବାବୁ ତାଙ୍କ ପିଆଜ ଘାଣ୍ଟୁ ଘାଣ୍ଟୁ ଉତ୍ତର ଦେଲେ ଯଥେଷ୍ଟ ସମୟ ଅଛି । ରାଏବାବୁଙ୍କ ରନ୍ଧା ଉପରେ ମୋର ଟିକିଏ ମାତ୍ର ସନ୍ଦେହ ନଥାଏ । ମୁଁ ଜାଣିଥିଲି ଯେ ଆଜି ଗୋଟାଏ ବଢ଼ିଆ କୋବି ଝୋଳ ହେବ । ତେଣୁ ସେ ଦିଗରେ ମୁଣ୍ଡ ଖେଞ୍ଚ ନ କରି ମୁଁ ପୁଣି ସେମା ପାଖକୁ ଆସିଲି ।

ସେମା ସେତେବେଳକୁ ଆଉ ଗୋଟିଏ ଚୁଲିରେ ଭାତପାଇଁ ପାଣି ବସାଇଥାଏ । ମୋତେ ଦେଖି ପୁଣି ତାର ରନ୍ଧା କାଇଦା ଗପିବାକୁ ଲାଗିଲା ଦେଖ ଏହି ମାଂସ ସିଝିଗଲେ ଗୋଟାଏ କରେଇରେ ତେଲ, ପିଆଜ ଓ ଟମାଟୋ ଦିଆହୋଇ ଭଜା ହେବ ଓ ପୁଣି ଏହି ସିଝା ପାଣିରେ ପଡ଼ିବ । ଖାଇବାକୁ ଏମିତି ମଜା ଲାଗେ ଯେ କହିବାର କଥା ନାହିଁ । ଇତିମଧ୍ୟରେ ମସୂରଗୁଡ଼ାକ ସିଝି କ୍ରମେ ଉପରକୁ ଭାସିଲଣି । ମାଂସ ସିଝିଛି କି ନା ଭଗବାନ୍ ଜାଣନ୍ତି । ଇବ୍ରାହିମ୍ ଆସି ଦେଖିଲା ଯେ ପାଣିଟା ଫୁଟିବାରୁ ମାଂସର ଗନ୍ଧ ବାହାରୁଛି । ସେ ଧାଇଁଯାଇ ଆମ ହଳଦୀ ଗୁଣ୍ଡାରୁ ମୁଠାଏ ଆଣି ସେହି ପାଣିରେ ପକାଇ ଦେଲା । ସେମା ତାକୁ ପାଟି କରିବାରୁ ଇବ୍ରାହିମ୍ କହିଲା ତୁ କଣ ଜାଣିଛୁରେ, ଏହି ମସଲା ଦେଲେ ମାଂସର ଗନ୍ଧ ରହିବନି ଏହା ଶୁଣି ସେମା ଚୁପ ।

ସମୟ ସେତେବେଳକୁ ୧୧ଟା ୩୦ମିନିଟ୍, ରାଏ ବାବୁଙ୍କ ଛୁଙ୍କ ବାସନାରେ ଗେଷ୍ଟେଇ ଘରଟା ମହକୁଥାଏ । କୋବି ଆସି ଭାଜିହେବା ଉପରେ-ମୁଁ ପହଞ୍ଚିବାରୁ ମତେ ସଙ୍ଗେ ସଙ୍ଗେ ଖଣ୍ଡେ କୋବି ଚାଖିବାକୁ ମିଳିଗଲା । ଆଉ ଟିକିଏ ସିଝିବ ଓ ଲୁଣ ପଡ଼ିବ ମୁଁ କହିଲି । ଆଜି ଗୋଟାଏ ବଢ଼ିଆ ଖାଇବା ହେଲାପରି ଜଣା ଯାଉଛି । ରାଏବାବୁ କହିଲେ ନାହିଁମ, ଆମ ଦେଶର ଗେଷ୍ଟେଇ କରିବାର ଯେଉଁ ସରଞ୍ଜାମ ସେ ତ ମିଳୁନି, ହବ କଣ ।

ଆମ କୋବି ଝୋଳରେ ପାଣି ଦିଆଯାଇ ଭଜା ହୋଇଥିବା ଆଳୁ ଚକ୍‌ଁରେ ପଡ଼ିଲା ବେଳକୁ

ସମସ୍ତ ହୋଇଥାଏ ୧୧ଟା ୪୫ । ତା’ ପାଖ ଚୂଲରେ ଏଣେ ଖେଚୁଡ଼ି ମଧ୍ୟ ଫୁଟୁଥାଏ । ସ୍ୱଏବାବୁ ତାଙ୍କ ସ୍ୱମତରେ ଝୋଳ ଗୋଳାଇ ଦେଉଥାନ୍ତି । ମୋର ମନ ଆଉ ଆମ ହୋଟେଲ ପାଖକୁ ଲାଗିଲାନି ।

ମୁଁ ସେଯା ପାଖରେ ପହଞ୍ଚିଲା ବେଳକୁ ସେଯାର ବି ଏଣେ ଭାତ ଫୁଟୁଛି । ଇବ୍ରାହିମ୍ ସିଝା ମାଂସତକ ଗ୍ରେଟ ଗ୍ରେଟ କରି କାଟୁଛି । ସେଯା ମତେ ଦେଖି କହିଲା ଦେଖିଲୁ ମସୁରଗୁଡ଼ାକ କପରି ନରମ ହୋଇ ଆସିଲାଣି ମୁଁ ମନେ ମନେ ଭାବିଲି ଏଥିରେ ଆଉ ସନ୍ଦେହ ବା କଣ ଅଛି ।

ଇବ୍ରାହିମ୍ ମାଂସକାଟି ସାରିଲା ବୋଲି ପାଟିକରି କହିବାରୁ ସେଯା ପାଖ ଚୂଲରେ ଗୋଟାଏ କରାଇ ବସାଇଲା ଓ ତେଲ ଢାଳିଲା । ସେଯାର ତ ବଡ଼ ଗର୍ଜ୍ଜନ କରିବାର ପ୍ରକୃତି । ସେ ପୁଣି ଗର୍ଜ୍ଜନକରି କହିଲା “ହେ ଇବ୍ରାହିମ୍ ଟମାଟୋ ଗୁଡ଼ାକ ଆଣେ । ମୁଁ କଣ କରିବି । ବର୍ତ୍ତମାନ ୩ଟା ଜାଗା ମତେ ଦେଖିବାକୁ ହେବ । ଅଉ ତୁ ତେଣେ କଣଗୁଡ଼ାଏ ଗିଳି ଗୁଲିଛୁ” । (ସେତେବେଳକୁ ଇବ୍ରାହିମ୍ ଗୋଟାଏ ସେଓ ଖାଉଥାଏ । ) “ହେଇ ନେଉଛି” ବୋଲି କହି ଟମାଟୋ ଆଣି ସେଯା ପାଖରେ ହାଜର କଲା । ଇବ୍ରାହିମ୍ ବର୍ତ୍ତମାନ କଢ଼େଇରେ ତେଲ ଦେଇ ଓ ତାପରେ ପିଆଜ ଓ ଟମାଟୋ ଦେଇ କସିବାକୁ ଆରମ୍ଭ କରିବା ସମୟରେ ଭାତ ଗାଳିବାକୁ ହୋଇ-ଚଲା । ସେଯା ପୁଣି ଚର୍ଜ୍ଜିଲା-ହେ ଇବ୍ରାହିମ୍ ତୁ ଭାତ ଗାଳିପାରିବୁ ।“ନାଇଁ” ଆସିଲା ଜବାବ ।” ଆଉ ତୁ କଣ କରିବୁ ? ଏହା କହି ସେଯା ଏଣେ ତା ସନ୍ତୁଳୁ ଥିବା ମାଂସ ଚୂଲି ଲଗାଇ ଦେଇ ଭାତ ଗାଳିବାକୁ ଚଲା—କଡ଼ିଆ ଭାତ ସବୁ ହୋଇଥାଏ । ମତେ ଦେଖାଇ ସେଯା କହିଲା—“ଦେଖ୍ ଭାତ ଏହିପରି ଟାଣହେବା ଦରକାର” । ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି । ସେଯାର୍ ଛୁଙ୍କ ବି ଶେଷ ହେଲା । ସନ୍ତୁଳା ମାଂସକୁ ପୁଣି ଫୁଟନ୍ତା ମସୁର ପାଣିରେ ପକାଇବାରୁ ଟମାଟୋର ରଙ୍ଗ ଯୋଗୁ ସମୁଦାୟ ପାଣି ରକ୍ତ ବର୍ଣ୍ଣ ଦେଖାଗଲା- କ’ଣ ଯେ ସ୍ୱାଦୁ ହୋଇଥିବ ସେ କଥା ଏକା ସେୟା ଅନୁମାନ କରି ପାରୁଥାଏ । ଝୋଳ ଗୋଳାଉ ଗୋଳାଉ ସେଯା ଯେତେବେଳେ ମୋ ଆଡ଼କୁ ଅନାଇଲା, ସେତେବେଳକୁ ସମୟ ହୋଇଥାଏ ୧୨ଟା ୧୦ ମିନିଟ୍ ।

ସ୍ୱଏବାବୁଙ୍କର ହୋଷେଇ ପ୍ରାୟ ଶେଷ ଉପରେ । ମୁଁ ଅନ୍ୟାନ୍ୟ ପ୍ଲେଟଗୁଡ଼ାକ ଧୋଇ ଖାଇବା ଘରକୁ ନେବା ବେଳକୁ ସ୍ୱସ୍ତବାବୁ ତାଙ୍କ କୋବି ଝୋଳ ମୋତେ ଚାଖିବାକୁ ଦେଲେ । ମୁଁ ଚାଖିଲି ଭାରି ଭଲ ଲାଗୁଥାଏ । ଇଚ୍ଛାକଲି ସେଯାକୁ ବି ଟିକିଏ ଚଖାଇବାକୁ ଦିଆଯାଉ । ତେଣୁ ଦୁଇଟା ପ୍ଲେଟରେ ସେଯା ଓ ଇବ୍ରାହିମ୍ ପାଇଁ ଝୋଳ ନେଇ ତାଙ୍କୁ ଦେଲି । ଝୋଳ ଚାଖି ସେଯା ମହା ଆନନ୍ଦ, ଇବ୍ରାହିମ୍ କହିଲା “କୋବି ଗୁଡ଼ାକ କପରି ବଡ଼ିଆ ଲାଗୁଛି ଦେଖିଲୁ ସେଯା” ଆଉ ତୋ ମସୁର ଝୋଳ କେତେ-ବେଳେ ଚଖାଇବୁ ?

‘ ସେଯା ପୁଣି ଗର୍ଜିଲା” ଇବ୍ରାହିମ୍ ଭଲକା ପେଟୁ ମୁଁ ଦୁନିଆରେ ଦେଖିନି” ।

୧୨ଟା ୩୦ ମିନିଟ୍‌ରେ ମୁଁ ସ୍ୱଏବାବୁ ଓ ତାଙ୍କ ସାଙ୍ଗ ଜଣକ ଖାଇ ବସିଲୁ ।

ଆମ କୋବିଝୋଳ ଓ ଖେଚୁଡ଼ି ଭାତ ଖାଇ ମୁଁ ତ ଯେତେ ଖୁସି ହେଲି ଆମ ଜର୍ମାନ ଅତିଥି ଜଣକ ମହା ଖୁସି । ତାଙ୍କୁ ପ୍ରକୃତରେ ଭାରି ଭଲ ଲାଗିଥିବ, କାରଣ ତାଙ୍କ ଦେଶର ମସଲାହୀନ ପାଣିସିଝା ଖାଦ୍ୟରେ ଆମ ଖାଦ୍ୟପରି ସ୍ୱାଦୁ କୁଆଡ଼ୁ ଆସିବ ?

ଖାଇସାରି ହାତ ଧୋଇ ଆମ ଜର୍ମାନ ଅତିଥିଙ୍କ ସହିତ ଟିକିଏ କଥାବାର୍ତ୍ତା କରି ପୁଣି ହୋଷେଇ ଘରକୁ ଆସି ଦେଖେତ ସେଯା ସିଗାରେଟ୍ କିଣିବାକୁ ବଜାରକୁ ଯାଇଛି । ଇବ୍ରାହିମ୍ ଟେବୁଲ ପାଖରେ ବସି କ’ଣ

ଗୋଟାଏ କାଗଜ ଦେଖୁଛି । ଭାତ ଚୁଲିଉପରେ ବସି ଛଳଆଡ଼ୁ ପୋଡ଼ା ଘରଯାକ ଗନ୍ଧ ହେଉଛି । ମସୁର ଝୋଳ ଆଗପରି ଫୁଟୁଛି । ମତେ ଦେଖି ଇବ୍ରାହିମ୍ କହିଲା ଆମ ଦେଶରେ ଭାତଗୁଡ଼ାକ ପେଜୁଆ ହେଲେ କେହି ଖାଆନ୍ତିନି; ତେଣୁ ମୁଁ ଶୁଖିଲା କରିବା ପାଇଁ ଚୁଲିରେ ବସାଇ ଦେଇଛି । ଏତକ ଶୁଣି ମୋତେ ଆଉ କିଛି ବୁଝିବାକୁ ବାକି ରହିଲାନି । ମୁଁ ଜାଣିଲି ସେମାନେ ଭାତଖାଇ ପାରିବେନି । ମୁଁ କହିଲି "ଇବ୍ରାହିମ୍ ଭାତ ପୋଡ଼ିଗଲାଣି" "କେଉଁଠି ଏ କଥାଟ ଅସମ୍ଭବ" ଏତକ କହି ଇବ୍ରାହିମ୍ ଭାତ ଚୁଲିରୁ ଆଣି ଯେତେବେଳେ ଘୋଡ଼ଣୀ କାଢ଼ିଲା; ଆମେ ଦେଖିଲୁ ଖାଲି ଡେକ୍‌ଚି ଭିତରୁ ଧୂଆଁ ଉଠୁଛି ।

ସେସା ଲୁଣ ପକାଇ ନଥିବା ଭାବି ମସୁର ଝୋଳରେ ମଧ୍ୟ ଇବ୍ରାହିମ୍ ଲୁଣ ମୁଠାଏ ପକାଇ ଦେଇଛି । ସେସା ଦୁଆର ଖୋଲି ପଶି ଆସିଲା ବେଳକୁ ତା ହାତରେ ଥାଏ ପ୍ୟାକେଟ୍ ସିଗାରେଟ୍ । ତାକୁ ଦେଖି ଇବ୍ରାହିମ୍ କହିଲା ଭାତ ଟିକିଏ ପୋଡ଼ି ଯାଇଛି କିନ୍ତୁ ମୁଁ ଭାବୁଛି ଖାଇ ହେବ, ତୁ ଝୋଳରେ ଲୁଣ ପକାଇଥିଲୁ କି ସେସା । ସେସା ହଁ ମାରିବାରୁ ଇବ୍ରାହିମ୍ ଆଉ କ'ଣ କହିବ କିଛି ଭାବି ପାରିଲାନି । ସେସା ବଡ଼ ଚାଲାଖ, ସେ ଚାମଚ ନେଇ ଝୋଳ ଚାଖି ସାରି କହିଲା "ଇବ୍ରାହିମ୍ ତୁ ଗୋଟାଏ ଇଡିଅଟ୍" । ଆମ ରେଷ୍ଟୋଇ ତ ଶେଷହେଲା ଚାଞ୍ଚଲ ଚାଲ ହୋଟେଲକୁ ଯିବା ନ ହେଲେ ହୋଟେଲ ସବୁ ବନ୍ଦ ହୋଇଯିବ । ସେସା ଓ ଇବ୍ରାହିମ୍ ଦୁହେଁ ଭାରି ସାଙ୍ଗ ।

ସେତେବେଳକୁ ବାଜୁଥାଏ ଠିକ୍ ଗୋଟାଏ ୩ ମିନିଟ୍ । ଆମର ରେଷ୍ଟୋଇ ଘରେ ପଶିବାଠାରୁ ମାତ୍ର ୩ଘଣ୍ଟା ସମୟ ବିତି ଯାଇଥାଏ । ଦୁଇ ସାଙ୍ଗ ଯେତେବେଳେ ରାସ୍ତାରେ ହୋଟେଲ ଆଡ଼କୁ ଚାଲିଥାନ୍ତି ମୁଁ ଖାଲି ରାଏବାବୁଙ୍କ ଘର ଝିଅକାରୁ ତାଙ୍କୁ ଅନାଇ ଥାଏ ଓ ଭାବୁଥାଏ ବିଦେଶରେ ରହିଲେ ବି ଧ ନିଜ ଦେଶ ଖାଦ୍ୟପ୍ରତି ମଣିଷର ଲୋଭ କିଛି କମ୍ ନୁହେଁ ।

—✳—

# ମୋ କବିତା ନୀଳକଇଁ ଲୁହର କବର

କୁମାରୀ ହିମାନୀ,
(ଖୋର୍ଦ୍ଧା କଲେଜ)

ତା ଆଖିର ଅରଣ୍ୟରେ
ମୁଁ ଦେଖିଛି ନୀଳକଇଁ ଲୁହର କବର
ତା ମନର ଜହ୍ନ ଦେହେ
ନଷ୍ଟ ନୀଡ଼ ବେପଥୁର ଆହତ ବେଖର ।
ରାତିର ସେ ସବୁଜ ସାମ୍ନାରେ
ତମାଳର ଛାଇ ନାଚଗଲା
ଆଜିର ସେ ଫଗୁଣ ଦେହରେ
ବତୁରା ସେ ଜ୍ୟୋତ୍ସ୍ନା ଲୋଟୁଥିଲା
ଆହତ ସେ କଳାକାର
ବୟସର ଉପନ୍ୟାସ ନେଇ
ଅଂଧାରକୁ ରଙ୍ଗ ମାଗୁଥିଲା ।
ବର୍ଷାଧୂଆ ଚକ୍ରବାଳ ପରେ
ଚନ୍‌ଚୁ ହାଣେ ଚକ୍ରବାକ ଖାଲି
କେତେ ରାତି ପାହିଗଲେ
ଖୋଜିହେଲା ମରୁଭୂର ବାଲି
ତା ଆଷାଢ଼େ ତାରାଗୁଡ଼ା କାନ୍ଦୁଥିଲେ
ଶ୍ରାବଣୀରେ ବର୍ତ୍ତମାନ ତୋଳି ।
ଭଜା ଭଜା ଫିକା ଆଲୁଅରେ
ନିର୍ଭୁଲ ତା ନିର୍ଭେଦ ଗୁହାଁଣୀ ।
ବ୍ୟର୍ଥ କେତେ ଲୁହଧାର ଭରି
କହୁଥିଲା ଶୁଣ ଜହ୍ନ,
ଅଂଲୁଅଟା ଆସୁଥିଲା ମରି ।

—*—

## "ସୁଶାନ୍ତ—

ସେ ଏକ ଏକାଦଶ ଶ୍ରେଣୀର ଛାତ୍ର"

ଶ୍ରୀ ରାଜକିଶୋର ମିଶ୍ର, (ଢେଙ୍କାନାଳ)

ତୁ କ'ଣ ହେବୁ ମନୋଜ ?

ଡାକ୍ତର···

ମୋହନ···ତୁ ?

ବାରିଷ୍ଟର···

ତୁ···

ମୁଁ ?

ହଁ···ତୁ···

ମୁଁ···ଇଞ୍ଜିନିୟର···ନା ନା ସେଥିରେ ବୃଦ୍ଧି ମିଳୁନ—ଡାକ୍ତର ।

ସୁଶାନ୍ତ କୁମାର ସ୍ୱାଇଁ···

ମୁଁ ହେବ କଲେକ୍ଟର ।

ରବି···ତୁ···

ମୁଁ···ମୁଁ ହେବି···ଡାକ୍ତର ।

ତୁ··· ?

I.A.S, O.A.S. ପାଇଁ ଚେଷ୍ଟା କରିବି ନ ହେଇ ପାରିଲେ ହେବି ଅଧ୍ୟାପକ ।

ତୁ—ଶୁଭ୍ରା··

ଡାକ୍ତର କିମ୍ବା ଅଧ୍ୟାପକ—ନ ହେଲେ କିଛି ନାହିଁ ।

ପ୍ରଶାନ୍ତ···

ଇଞ୍ଜିନିୟର ଅଥବା ପାଇଲଟ୍ ।

ତୁ···

କଲେକ୍ଟର ।

ଅନ୍ୟମାନେ ସବୁ···

ଡାକ୍ତର···କଲେକ୍ଟର···ଇଞ୍ଜିନିୟର—

ଇଞ୍ଜିନିୟର—କଲେକ୍ଟର—ଡାକ୍ତର (ଏକ ସମବେତ କଣ୍ଠର କୋରସ୍ ।

ଆଗୁ ସେତିକି···ସେତିକି ଥାଉ···କାଲୁ ?

କାଲୁ କ'ଣ ସାର୍

ତୁମେ ସବୁ ଖାଇବ କ'ଣ ?

କ'ଣ ସାର୍ ଘରକୁ ଫେରି···

ନାଁ···ବାପାଙ୍କ ଘରକୁ ନୁହେଁ—ନିଜ ଘରକୁ ଫେରି । ଯେତେବେଳେ ତୁମେ ଡାକ୍ତର, ଇଞ୍ଜିନିୟର, କଲେକ୍ଟର ହେଇ ଅଫିସ୍ କାମ ସାରି ଘରକୁ ଫେରୁଥିବ—କାହିଁକି ସାର୍···ସୁଜିର ହାଲୁଆ··· କ୍ଷୀରର ଗରଡ଼ ! ମୁଁ ସାର୍ କାଲୁ କଲେକ୍ଟର ହେଲେ ବି ମୁଡ଼ି ଓ ବାଦାମ ଗୁଡ଼ ପାରିବ ନାହିଁ ।

ଆରେ ଗୁଡ଼ରୁ କ'ଣ···ସେ ଜିନିଷ ଆସିବ କୁଆଡୁ ।

କାହିଁକି ବଜାରରୁ···

ଆରେ ତାକୁ କରିବ କିଏ, ଫେର୍ ବିକିବ କିଏ ?

ମାନେ—କଣ ସାର୍ ଆପଣ କହୁଛନ୍ତି ?

ନାଁ ତୁମ ଭିତରୁ ତ କେଇ କୃଷକ କି ବ୍ୟବସାୟୀ ତ ହେବନି, ଏ ସବୁ ଜିନିଷ ଆସିବ କୁଆଡୁ—ମିଳିବ ବା କେମିତି ?

ଅନ୍ୟମାନେ—ମାନେ ଯେଉଁମାନେ ପାଠ ପଢ଼ୁ-ନାହାନ୍ତି—ସେମାନେ ଏସବୁ କରିବେ—

କିନ୍ତୁ ଏବେ ପାଠ ନପଢ଼ୁଛି କିଏ ?

ତା ବୋଲି କ'ଣ ଆମେ M. A ପାସ୍‌କରି ଚୁଷ କରିବୁ···

କିନ୍ତୁ ତୁମେ ତ ସୁଶାନ୍ତ କହୁଥିଲ କଲେକ୍ଟର ହବ···ଅଥଚ ଅଫିସ୍‌ରୁ ଫେରି ଠିକ୍ ଆଜିପରି ମୁଢ଼ି-ବାଦାମ ଖାଇବ।···

ମୁଢ଼ି-ବାଦାମ ଖାଇ ବଢ଼ିଆ ସାର୍ !

ତୁମପାଇଁ—କିନ୍ତୁ କଲେକ୍ଟରଙ୍କ ପାଇଁ ନୁହେଁ ।

କଲେକ୍ଟର କ'ଣ ମଣିଷ ନୁହନ୍ତି କି ସାର୍ ?

M. A. ପଢ଼ିଲେ ମଣିଷର ଗୋଡ଼ହାତ କ'ଣ ପଙ୍ଗୁ ହୋଇଯାଏ ସାର୍ ?

ନାଁ ହୁଏନି···କିନ୍ତୁ ଆପଣ ମତେ ସାର୍ କହିଲେ ଯେ ସାର୍ କହିବାରେ ଆପତ୍ତି କ'ଣ ? ଏବେ ନ କହିଲେ କେବେ ତ କହିନି ।

ତା କ'ଣ ଉଚିତ୍ ସାର୍—ଆପଣ ମୋର ଶିକ୍ଷକ, କଲେକ୍ଟର ହେଲେ ବି ମୁଁ ଆପଣଙ୍କୁ ସାର୍ ଡାକିବି ।

ଅଥଚ M. A. ପାସ୍ କଲା ମାତ୍ରେ ତୁମେ କୃଷକର ପୁଅ ହୋଇ ବି କୃଷକ ହୋଇ ପାରିବନି କେମିତି ?

କିନ୍ତୁ ସାର୍ M. A. କି LL. M. ପାସ୍‌କଲା ପରେ ମୁଁ କିଛି ଉନ୍ନତତର କାର୍ଯ୍ୟ କରିବା ଉଚିତ୍ ନୁହଁକି ?

କିନ୍ତୁ ଏ ଦେଶର ସବୁ ଗ୍ରାମକୁ M.A., LL.M., M. Com. ବା M. Sc. ପଢ଼ାରୁ ବଞ୍ଚିତ କରିବାର ତୁମର କି ଅଧିକାର ଅଛି ?

ତା ତ ମୁଁ କହିନି···

ତା' ହେଲେ ଧର ଯଦି ସମସ୍ତେ ଏତେ ପଢ଼ିବେ-କେହିତ ତେବେ କୃଷି କରିବେନି ?···ଆରେ ମାରିବ ରହିଲ ଯେ···

ସମସ୍ତେ ପଢ଼ି ପାରିବେନି ସାର୍···

କାହିଁକି—ସବୁ ବାପାଙ୍କର ଟଙ୍କା ନାହିଁ—ତୁମ ବାପାଙ୍କର ଟଙ୍କା ଅଛି ବୋଲି ତ କହୁଛ ?

ନାଁ ତା ନୁହେଁ···ସମସ୍ତଙ୍କର ସମାନ ମେଧା ନାହିଁ···

ମତେ ତମେ ହସେଇଲ ସୁଶାନ୍ତ—M. A. କି M. Com. ପାସ୍ କରିବାକୁ ମେଧା ମୋଟରେ ଆବଶ୍ୟକ ନାହିଁ । ସୁବିଧା—ସୁଯୋଗ ଓ ଅଭ୍ୟାସ··· ଏତିକିରେ ଏ ହେଇଯିବ । M. A. ନ ପଢ଼ି ଯିଏ "ଉଠକଙ୍କାଳ" ବାକ୍ୟ ଲେଖିଥିଲେ ସେ ହେଉଛନ୍ତି ମେଧାବୀ । M. A. ପାସ୍‌କରି ଯେ Collectorate file ରେ ଅର୍ଡ଼ର ଲେଖିବେ ସେ ମେଧାବୀ ନୁହନ୍ତି··· ହଁ ଆମେ ବାଟ ହୁଡ଼ି ଅନେକ ଦୂରକୁ ଚାଲିଆସିଲେ ସୁଶାନ୍ତ !

ନା ବାଟ ହୁଡ଼ନେ-ବରଂ ଠିକ୍ ବାଟରେ ଏବେ ମୁଁ ପହଞ୍ଚି ଯାଇଚି ବୋଲି ମୋର ମନେ ହେଉଚି ସାର୍ ।···

—*—

# ରବର୍ଟ ଫ୍ରଷ୍ଟଙ୍କର ସାତୋଟି କବିତା

**ଅନୁବାଦକ—ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର**

## ୧—ପ୍ରଶ୍ନ

ସତେ ଯେପରି କେହି କହିଥିଲା,
ନକ୍ଷତ୍ର ମଧ୍ୟରେ ମୋତେ ଦେଖ,
ତୁମେ ଧରଣୀବାସୀ, ସ୍ଥିର କରି କହ,
ପ୍ରତିଦିନ ଯେତେ ଯେତେ କ୍ଷତ ଚିହ୍ନ ଦେହ ମନେ ହୁଅଇ ଅଙ୍କିତ,
ଜନ୍ମ ଋଣଠାରୁ ତା'ର ମୂଲ୍ୟ କ'ଣ ନୁହେଁ ବେଶୀ ?

## ୨—ପକ୍ଷୀଗୀତ ପୂର୍ବପରି କେବେ ହେବନାହିଁ

ସେ କେବଳ ମୁହଁରେ ନୁହେଁ, ସେ ଆପଣାକୁ ବିଳାସ କରେ
ଏହି ଉଦ୍ୟାନରେ ଭର୍ତ୍ତି ହୋଇ ଯେତେ ଯେତେ ପକ୍ଷୀ ଥିଲେ
ଇଭ୍‌ର କଣ୍ଠଗୀତ ସାରାଦିନ ଶୁଣିବାର ଲାଗି
ସେହିସବୁ ବିହଙ୍ଗଙ୍କ ମୁକ୍ତ ସ୍ୱରେ ନୂତନ ଐଶ୍ୱର୍ଯ୍ୟ ହୁଏ ଉଦ୍‌ଘାଟିତ
କାହିଁକି ନା ଇଭ ଏହାର କଣ୍ଠେ ଭାଷାହୀନ ଅଥଚ ଅର୍ଥପୂର୍ଣ୍ଣ
ଏତାଦୃଶ ସୁଲଳିତ କଣ୍ଠ ଯୋଗୁଁ ପକ୍ଷୀଗଣ
ପ୍ରଭାବିତ ହେବା ସୁନିଶ୍ଚିତ, ଏହା ସ୍ୱୀକାର କରିବାକୁ ହେବ ।
ଏହି କଣ୍ଠସ୍ୱର, ଡାକିବା କିମ୍ବା ହସ ହସିବା ଦ୍ୱାରା
ତାହା ଯାହା ହେଉ, ତାର ଗଳା ମିଶିଥିଲା ବିହଙ୍ଗ ସଙ୍ଗୀତେ ।
ତା ବ୍ୟତୀତ, ପକ୍ଷୀର କଣ୍ଠରେ ତା'ର କଣ୍ଠ ମଧୁଭାବେ ମିଳିତ ହୋଇଲା ।
ଏ ପର୍ଯ୍ୟନ୍ତ ଏହି ସର୍ବବ୍ୟାପୀ ନିଭୃତ ଅରଣ୍ୟେ ଥିଲା
ତା'ର କ୍ଷୟ ନାହିଁ । ଏ ସୃଷ୍ଟିରେ ମନରେ ଏ ଧାରଣା ହେଲା ।
କେନ୍ତେବେଳେ ପକ୍ଷୀର ସଙ୍ଗୀତ ପୂର୍ବପରି ହେବନାହିଁ
ଏହି କାରଣ ଯୋଗୁ ଇଭ ପକ୍ଷୀ ଜଗତରେ ସମାଗତ ।

---

୧—Aovestion—କବିତାର ଓଡ଼ିଆ ଅନୁବାଦ

୨—Never again world birds song be the same—
କବିତାର ଓଡ଼ିଆ ଅନୁବାଦ

## ୩ – ଆନୁଗତ୍ୟ

ସମୁଦ୍ରର ପାଶେ ସମୁଦ୍ରର ବେଳାଭୂମିଠାରୁ
ହୃଦୟ ଜାଣେନା ଆଉ ଅଧିକ ଆନୁଗତ୍ୟ
ଏକ ଅବସ୍ଥାରେ ଧରା କ୍ଷଣ ଅନୁଗତ କହି
ଅନ୍ତହୀନ ପୁନରାବୃତ୍ତିର ସଂଖ୍ୟା ଗଣିଯାଏ ।

## ୪—ଉଦ୍ୟାନର ଖଦ୍ୟୋତ

ସେହି ଦିଗେ ଆକାଶରେ ପ୍ରକୃତ ତାରକାଗୁଚ୍ଛ କ୍ରମେ କ୍ରମେ ହୁଏ ଉଦ୍-
ଭାସିତ
ଏହି ଦିଗେ ଧରଣୀରେ ତା'ର ଅନୁକରଣକାରୀ ଖଦ୍ୟୋତ ଆଗତ
ତାରକା ସହିତ ତାହା ସବୁ ଆଦୌ ସମକକ୍ଷ ନୁହେଁ
ବାସ୍ତବରେ ସେହିସବୁ କଦାପି ତାରକା ନୁହେଁ
ତଥାପି ଯେ ମଧ୍ୟେ ମଧ୍ୟେ ତାରା ଭୁଲି ସେହିସବୁ ପରିଚୟ ଦିଅନ୍ତି ।
ଯଦ୍ୟପି ସେମାନଙ୍କ ସ୍ୱଳ୍ପ ଅଭିନୟ ଠିକ୍ ଗାଇ ନ ପାରନ୍ତି ।

## ୫—ଅଗ୍ନି ଆଉ ତୁଷାର

କେହି କହନ୍ତି ଏ ପୃଥିବୀ ଲୁପ୍ତ ହେବ ଅଗ୍ନିର ଶିଖାରେ
କେହି କହନ୍ତି, ତୁଷାରରେ ଶେଷ ଅଭିନୟ
କାମନାର ମୋର ଯାହାକିଛି ଅଭିଜ୍ଞତା
ମୁଁ ସେମାନଙ୍କ ସହ ଏକମତ, ଯେଉଁମାନେ କହନ୍ତି ଶେଷ ହେବ
ଅଗ୍ନିର ଶିଖାରେ

ତେବେ ପୃଥିବୀର ଯେବେ ବିନାଶ ଘଟିବ ଦୁଇଥର ଲାଗି
ଏତେ ଘୃଣା ଏ ଜୀବନେ ମୁଁ ପ୍ରତ୍ୟକ୍ଷ କରିଛି ।
ତେବେ କହେ ସମାପ୍ତିର ଧ୍ୱଂସ ପାଇଁ
ଅଗ୍ନିର ସଦୃଶ, ତୁଷାର ମଧ୍ୟ ଭୟଙ୍କର
ତାହାଦ୍ୱାରା ସୃଷ୍ଟି ହେବ, ସମୂଳେ ବିଧ୍ୱସ୍ତ ।

---

୩—Devotion ର ଓଡ଼ିଆ ଅନୁବାଦ
୪—Fire flies in the garden ର ଓଡ଼ିଆ ଅନୁବାଦ
୫—Fire and ice ର ଓଡ଼ିଆ ଅନୁବାଦ

## ୭—ମରୁସ୍ଥାନ

ତୁଷାର ଝରଇ ଆଉ ରାତି ଦ୍ରୁତ ବେଗେ ସମାଗତ
ସେତେବେଳେ ପ୍ରାନ୍ତରର ମଧ୍ୟେ ଯେତେ ଯେତେ ଦୃଷ୍ଟିଗତ
ମୃତ୍ତିକାର ବୁକେ ବରଫ ବ୍ୟାପି ସବୁ ଆଚ୍ଛାଦିତ କରେ
ତେବେ ଧାନକଣ୍ଠା ବାଳୁଙ୍ଗା ଆଉ ନଡ଼ା ଯାହା ଦେଖାଯାଏ ।
ଚତୁର୍ଦ୍ଦିଗେ ବନାମରେ ବରଫ ଝରଇ
ମର୍ତ୍ତ୍ୟ ଜନ୍ତୁ ଜୀବଜନ୍ତୁ ଯେ ଯାହାର ଗହ୍ୱରେ ବିନସ୍ତ
ହିସାବ ରଖିବା ପାଇଁ ମୁହିଁ ପରା ଅତି ଉଦାସୀନ
ନିର୍ଜନତା ମୋତେ ଅତର୍କିତେ ଗ୍ରାସକରେ
ଏହି ନିର୍ଜନତା ଏହିପରି ଖୁବ୍ ବେଶି ବଡ଼, ତାହାହିଁ ଯଥାର୍ଥ
ହ୍ରାସ ହେବାର ପୂର୍ବେ ଏହା ପୁଣି ବୃଦ୍ଧି ହେବ ଆପେକ୍ଷିକ ଭାବେ
ରାତି ବ୍ୟାପୀ ତୁଷାର ଯେ ହେବ ଖାଲି ଶୂନ୍ୟମୟ
ଅଭିବ୍ୟକ୍ତି ହୀନ ସେ ଯେ ନିହାତି ପରିଚୟହୀନ ।
ସେହି ମହାଶୂନ୍ୟେ ମୋତେ ସେମାନେ ଭୟଭୀତ କରି ନ ପାରନ୍ତି
ଯାହାଅଛି ଦୁଇଗୋଟି ତାରକାର ମଧ୍ୟବର୍ତ୍ତୀ ବ୍ୟବଧାନେ
କାରଣ, ମୋର ହାତ ପାଖରେ ଏପରି ବ୍ୟବସ୍ଥା ଅଛି

## ୭—ନୂତନ ହେବାର ସାହସ

ନିଖିଳ ଜଗତ ପୁରାତନମାନଙ୍କର ଭ୍ରମ
ଆବୃତ୍ତି କରିବାର ଶୁଣି ପାରିଥାଏ
ନିଷ୍ଠୁରତା, ହିଂସା, ଯୁଦ୍ଧାନଳେ
ସେମାନେ ଆଉ ହୋଇବେ ବ୍ୟସ୍ତ ।
ଭଗ୍ନପ୍ରାଣ ଏବଂ ଅସମର୍ଥ
ଉଭୟ ଦେହ ଆଉ ମାନସ ଶକ୍ତିରେ
ବର୍ତ୍ତମାନ ସେମାନେ କରନ୍ତି ପୁନର୍ବାର
ବହୁଶ୍ରୁତ ମାନବ ମହାସଙ୍ଘର ।
କିନ୍ତୁ ସେମାନଙ୍କ ବୁଦ୍ଧି ଯେ ପ୍ରଖର
ସେଥିପାଇଁ ମାନବ ଆଖିର ବୁଝିବାର
ସେମାନେ ତ ଦୁର୍ହନ୍ତ ମନୁଷ୍ୟର ଜଘନ୍ୟ ବିଦ୍ୱେଷୀ
ସେଥିପାଇଁ ସେମାନେ ଉତ୍ତେଜିତ ।
ସେମାନେ ବହୁତ କିଛି କହିବେ,
ଯେତେବେଳେ ତୁମେ କହିବ କ'ଣ କରଣୀୟ
ସେମାନଙ୍କର ଚରିତ୍ରର ପରିବର୍ତ୍ତିତ ନୂତନତା
ଏବଂ ନୂତନ ହେବାର ସାହସ ସହିତ ।

---

୭—Desert places ର ଓଡ଼ିଆ ଅନୁବାଦ
୭—The courage to be new ର ଓଡ଼ିଆ ଅନୁବାଦ

—o—

# ।। କବି ଓ କୋବି ।।

ଶ୍ରୀ ସୋମନାଥ ଖୁଣ୍ଟିଆ

ମୁଁ କାଁ ଭାଁ କବିତାଟିଏ କମ୍ବା ଗପଟିଏ ଲେଖି ବଡ଼ିଆ ବୋଲି କହେ । ସ୍ତ୍ରୀକୁ ତାକୁ ପଢ଼ାଏ । କେହି ବାଜେ ବୋଲି ନାକ ଟୁଙ୍ଗାଡ଼େ ।

କିନ୍ତୁ ଯିଏ ବାଜେ ବୋଲି କହେ ମୁଁ ତାକୁ ଛାଡ଼େନାହିଁ । ଫାଇଲରୁ ଯୁକ୍ତି କରେ । ମୁଁ କହେ ଅରେ ଭାଇ ମୋର ବାଜେ କବିତା ସେ ପତ୍ରିକାରେ ଯଦି ଛପା ହେଲା, ତେବେ ତୁ ସେମିତି ବାଜେ ଲେଖି ପଠେଇନୁ । ଏମିତି ଶହେ ବାଜେ କବିତା, ଲେଖିଲେ କେଜାଣି ଗୋଟିଏ 'ସାଜେ କବିତା' ବାହାରି ପଡ଼ିବ । ଯେଉଁ ସମ୍ପାଦକ ଏ ଧରଣର କବିତା ଛାପୁଛନ୍ତି ସେ କେଉଁ ବୋକା । ମୁ ଯଦି କବି ତେବେ ସେଇଟା ଐଶୀଶକ୍ତି । ବାଜେ ଲେଖିଲେ ସେହି ଚକା ଆଖିଙ୍କର 'ସାଜେ' ଲେଖିଲେ ବି ମୋର ବାହାଦୁରୀ ନାହିଁ ।

କିନ୍ତୁ କଥାଟା ଯା' ନୁହେଁ । ମୋ କବିତା ବାଜେ ଏ କଥା ମୁଁ ମାନୁଛି । କେବଳ ଆପଣଙ୍କୁ ଖୁସୀ କରେଇବାକୁ ମୁଁ ଏକଥାଟା କହୁଛି ।

ସେଥିରେ ମୋର ଦୋଷ ପାହୁନ୍ତକର ବି ନାହିଁ । ମୋର ତ ଏ ପର୍ଯ୍ୟନ୍ତ କଲମଟିଏ ନିଜର ହୋଇନାହିଁ ମୁଁ ଲେଖିବି କ'ଣ ?

ଗୋଟିଏ ଧଡ଼ୀ କଲମ ଥିଲା ଯେ ସେଇଟାକୁ କିଶୋରବାବୁ ମାଗି ମାଗି ନେଇ ହଜେଇଲେ । ଆଉ ଗୋଟେ ଦାମିକା କଲମ କୁ'ଠି ପଡ଼ିଲେ ନା କ'ଣ । ଶେଷକୁ କମ୍ ମୂଲ୍ୟର କଲମଟିଏ କିଣିଲି ଯେ ସେଇଟିକୁ ଦେଖିଲେ ମୋ ଝିଅ କାନ୍ଦିଲା; ତେଣୁ ମାସ ସାତଟାର ଝିଅ ତାକୁ ବାଡ଼େଇ ବାଡ଼େଇ ଭାଙ୍ଗିଲା ।

ଶେଷକୁ ସାହିତ୍ୟିକ ବନ୍ଧୁ ନୀଳକଣ୍ଠବାବୁ କଲମଟି ନେଇ କହିଲେ 'ମୋତେ ଏହି କଲମଟି ଦେଇ ଦିଅ । ଭାରି ଭଲ ଚାଲୁଛି' ।

ହଁରେ ବାବା ଚାଲୁ । ମୁଁ କାଳି ଭର୍ତ୍ତି କରିଛି ବୋଲି ସେ ଚାଲୁଛି ! ଏ କଥା ସେ ଜାଣିଥିଲେ କଲମଟି ନେଇ ନ ଥାଆନ୍ତେ !

ତେଣୁ ମୁଁ କେମିତି ଭଲ କବିତା ଲେଖିବି ? ଭଲ କଲମଟିଏ ଥିଲେ ତ ଭଲ କବିତା ଲେଖାହେବ ।

ଭଲ କଲମଟିଏ କିଣିବି କିଣିବି ବୋଲି କିଣି-ପାରୁନାହିଁ । କାହାଠାରୁ କଲମ ମାଗିଆଣି କବିତା ଲେଖେ, କିନ୍ତୁ ଅସଲ ଗରମା ଗରମ ଭାବ କବିତାରେ ପୂରେଇଲା ବେଳକୁ ସେ କହିବେ ଆଜ୍ଞା କଲମ କାମ ସରିଲା, ଦିଅନ୍ତୁ ।

ସେ ଯଦି ଆଉ ଟିକିଏ ଅପେକ୍ଷା କରିଥାଆନ୍ତେ ତେବେ କବିତାଟି ଆଚ୍ଛା ହୋଇଥାଆନ୍ତା । ତା' ହୋଇ ପାରିଲା ନାହିଁ, ତେଣୁ ପାଠକେ ଯେଚ୍ଛାତା କହିଗଲେ ।

କେହି ଯଦି ତୋଷାମଦ କରି କହେ 'ଆପଣ ଯେଉଁ କବିତା ଲେଖୁଛନ୍ତି ନା—'

ମୁଁ କହେ, ଥାଉ ଥାଉ ଗୁଡ଼ାଏ ଗପ ନାହିଁ ଭାଇ । ପଖାଳ ଗଣ୍ଡାକ ହଜମ ହୋଇଯିବ ଯେ !

କବିତା ଭଲ ହେଉ ମନ୍ଦ ହେଉ ତା କେହି ବୁଝିବା ଆବଶ୍ୟକ ହେଉଥିଲେ ମୋ ଅବସ୍ଥା ବଦଳି ସାରନ୍ତାଣି, ଅର୍ଥାତ୍ ଗୁଳଘର ପକ୍କା ହୋଇ

ସାରନ୍ତାଣି । ଝିଅକୁ କାଶ ହେଲେ ଔଷଧ କିଣିବାକୁ ପଇସା ନାହିଁ । ସ୍ତ୍ରୀ ଲୁଗା ନାହିଁ କହିଲେ ଝାଡ଼ା ମାରୁଛି କବି ମୁଁ ଯେଉଁ ଅବସ୍ଥା ଭୋଗୁଛି ତାହା ବୁଝନ୍ତା ନାହିଁ । ବନ୍ଧୁ ବାନ୍ଧବ, ପ୍ରିୟାପ୍ରିୟଙ୍କଠାରୁ ଧାର ଆଣି ପନ୍ଥରେ ତାଙ୍କୁ ଲୁଚାବାକୁ କ ଲଜ୍ଜାକର ବିପଦ୍ ଏବଂ ଦୋକାନ ବଜାରରେ ମୁହଁ ଦେଖାଇ ନ ପାରବା କ ମୁସ୍କିଲ !

କବିତା ଭଲ ହୋଇଛି, ଭଲ ଗଳ୍ପ ଲେଖୁଛନ୍ତି, ସମାଲୋଚନା ବଢ଼ିଆ ହେଉଛି ଏ କଥାରେ କ'ଣ ପେଟ ପୂରିଯିବ ଆଜ୍ଞା ।

ଯଦି ନ କନ୍ତି ଯେତ କଳାପ୍ରେମୀ ଟଙ୍କାଏ ଲେଖା ଏ ମନିଅର୍ଡ଼ର କରିଦଅନ୍ତେ, ତେବେ ଆହୁରି ରସଭରିଆ କବିତା ଲେଖିହୁଅନ୍ତା ।

ରୋହିମାଛକୁ କଡ଼ କଡ଼ କରି ଭାଜି ପେଟପୂରି ଖାଇ କବିତା ଲେଖା ହୁଅନ୍ତା । ନାଗାବାଜା ପରି କବିତାଟି କାନକୁ ଠାଉଁ ଠାଉଁ ନ ଶୁଭି ଲତା-ମଙ୍ଗେସକର ସ୍ୱର ସଙ୍ଗୀତରେ ଝଙ୍କୃତ ହୁଅନ୍ତା ।

ହେ ମୋ ଲେଖାର ପାଠକ ଭାଇମାନେ । ଗରିବ ଲେଖକକୁ କିଛି ଦାନାର୍ଥେ ଚତୁର୍ଥୀ କର । ଭଲ କଲମ କ୍ରୟ କରିବାର ଅଭ୍ୟାସ ମୋର ନାହିଁ । ଯେଉଁମାନଙ୍କ ଘରେ ବେଶି ପିଲା ଫସଲ ସେମାନଙ୍କ ଘରର ଲୋକମାନେ ପିଲାମାନଙ୍କୁ କପରି କଲମ ଯୋଗାନ୍ତି ?

ସ୍ୱାଠୁ ତା'ଠୁ କଲମ ମାଗିନେଇ ଦାମିକା କଲମ କିଣିଛି କହି ସେମାନେ ସେମାନଙ୍କର ପିଲାଙ୍କୁ ଠକନ୍ତି ।

ଏମିତି ଗୁଡ଼ାଏ ଭାବନା ଯେତେବେଳେ ମୁଣ୍ଡକୁ ଆସେ, ସେତେବେଳେ ଦେହ ଶୁଖିଲେଇ ହେଲା ପରି ଲାଗେ । ମୁଣ୍ଡ ବାଳକୁ ଭିଡ଼ ଭିଡ଼ ସବୁ ଛିଣ୍ଡ଼ ପିବାରେ ମୁଁ ବର୍ତ୍ତମାନ ଜବର ଚେହେରା ପାଇଛି ।

ଭଲ ଖାଇବାକୁ ନ ଥିବାରୁ ସାମାନ୍ୟ ଜ୍ୱମଧ୍ୟରେ ସମସ୍ତର ସେଥିଷ୍ଟ ଫୁଙ୍କରୁ ଲୁଙ୍ଗୁ ଲୁଙ୍ଗୁ ହେବା, ଭଲ ପିନ୍ଧିବାକୁ ନ ଥିବାରୁ ସାଙ୍ଗସାଥିଙ୍କଠାରୁ ଟେରେଇକ ମାଗିଆଣି ପିନ୍ଧିବା 'ଖୋଇ' ନ ଥିଲେ ହେଁ କବି ଲେଖକମାନଙ୍କର ଏହାହିଁ ଅବସ୍ଥା ।

ଯେତେକ ଲକ୍ଷ୍ମୀଛଡ଼ା, କୁଳବୁଡ଼ା, ହୀନଛତରଆ, ବାଚେସ୍, କାଙ୍ଗାଳିଆ ଦାଦେନା ଲେଖା ଲେଖି କରିବାକୁ ମନ ବଳାନ୍ତି, କବିତାର ଅ୍ଆ ଲେଖାରେ ସ୍ତ୍ରୀ ପିଲାକୁ ଧରେଇ ଗୁଳିପିବାରେ ଦେହ ମୁଣ୍ଡ ଓଦା ହୁଏ ଏବଂ ଗଳ୍ପଲେଖାର ଆରମ୍ଭରେ ଡିବ ଆଲୁଅର କଳାରେ ମୁହଁ ଦୋ'ଣି ହକେଇଲା ପରି ହୋଇଯାଏ ।

ବଜାରରେ ବେଶି କୋବି ପଡ଼ିଲେ ତାହା ଯେପରି ପୋକା ପୋଗୁ ହୋଇ ଶେଷରେ ଷଣ୍ଢର ଜଳଖିଆ ହୁଏ, ସେପରି ସାହିତ୍ୟ ଦରବାରରେ ମୋ ଭଳି ଅଣିକିଆ କବି ଖୁବ୍ ହୋଇପିବାରେ ଆମେ ଶେଷକୁ ପ୍ରକାଶକମାନଙ୍କର ମଧୁର ସମ୍ପର୍କୀୟ ଗାଳି ଅର୍ଥାତ୍ ସେମାନଙ୍କର ସ୍ତ୍ରୀର ଭାଇ ବୋଲି ପ୍ରମାଣିତ ହେଉ ।

କୋବି ନୂଆ ନୂଆ ବଜାରକୁ ଆସିଲେ ବଜାର ଯେପରି ଫୁଲିଉଠେ, ସେପରି ଗୋଟିଏ ଦୁଇଟି କବିତା ଲେଖି କବି ମନକୁ ମନ ଟେକି ହୁଏ ।

ତେଣୁ ମୋର କଲମ ନାହିଁ, କାଗଜ ନାହିଁ, ଏହା ନାହିଁ ତାହା ନାହିଁ କହିଲେ କେହି ଶୁଣିବେ ନାହିଁ । ବାଜେ କବିତା ଲେଖିଲେ ପାଠକ ଯେପରି ଅର୍ଥ ନ ବୁଝି କବିର ଚଉଦପୁରୁଷକୁ ଉଦ୍ଧାର କରିବାରେ ସାହାଯ୍ୟ କରେ, ତାହା ଜାଣିଥିଲେ ସମସ୍ତିର ସଦ୍‌ବ୍ୟବହାର କରିବାକୁ ମୁଁ ଖାଲି ଚିନା-ବାଦାମ ଖାଆନ୍ତି ।

ବାଜେ କବିତା ଲେଖି ଟେକାପଥର ମାଡ଼ ଖାଇବା ଅପେକ୍ଷା ଦଉଡ଼ ଦେଇ ମରିବା ଭଲ । ଚିରା ଲୁଙ୍ଗି, ଫଟା କାମିଜ, ଅପରିଷ୍କାର ସାତଟଙ୍କିଆ ଧୋତି ପିନ୍ଧି, ସ୍ୱାଠୁ ତାଠୁ ବିଡ଼-ସିଗାରେଟ ଗୁହା କରି କେତେଦିନ ଆଉ ଷଣ୍ଢକୁ ହଳଦିଆ ଖେଚୁଡ଼ି ଖୁଆଇବା ।

# ଅୟି ରାତ୍ରି ! ତନ୍ଦ୍ରା ମାୟାବିନୀ

ଶ୍ରୀମତୀ ରେଣୁବାଳା ଦେବୀ,
ପ୍ରଧାନ ଶିକ୍ଷୟିତ୍ରୀ, ମୁନିଗୁଡ଼ା କନ୍ୟାଶ୍ରମ

ଏକ ଦିଗେ ସ୍ମୃତିର ପାହାଡ଼     ଅନ୍ୟଦିଗେ ତମିସ୍ରା ଅସୀମ,
ଏକଦିଗେ ସମାପ୍ତିର ବ୍ୟାଖ୍ୟା—     ଅନ୍ୟଦିଗେ ଦ୍ୱନ୍ଦ୍ୱ ଅନୁପମ,
ଏଣେ ଥରେ ପାତିଦେଇ କାନ,     ଶୁଣେ କେତେ ଉଜ୍ଜ୍ୱଳ ଆଖ୍ୟାନ,
କେତେ ହସ ମିଳନ-ମୁଖର,     କେତେ ଜ୍ୱାଳା, କେତେ ବା ଦହନ ।
ତେଣେ କିନ୍ତୁ ଦୃଷ୍ଟିରେଖା ତଳେ     ମିଶେ କେତେ ରାସ୍ତା ଅଙ୍କାବଙ୍କା,
କେତେ ସ୍ୱପ୍ନ ତୃପ୍ତି-ଆଶାନ୍ୱିତ,     କେତେ ଭୟ-ଅତିଷ୍ଠ ଆଶଙ୍କା ।
ଅତୀତର ଚଲାପଥ ହେଜ,     ଆଗାମୀର ସ୍ୱାଗତିକା ଭଳି —
ଆଜିର ହେ, ନୀରବ ରଜନୀ,     ତୁମକୁ ମୁଁ କରୁଛି ସଖାଳ ।

ଜଗତର ପ୍ରତିଟି ପାଖୁଡ଼ା     ଏ ମରମେ ଯତନେ ସାଇତା,
ପ୍ରତି କଣ୍ଟା ଗୋଲାପ, ଆଜି ବି     ଭରେ ଗନ୍ଧ, ଅନୁପମ ବ୍ୟଥା ।
'ଅୟି ରାତ୍ରି ! ତନ୍ଦ୍ରା ମାୟାବିନୀ'     'ନିଃସଙ୍ଗ'ର ଏକାନ୍ତ ସଙ୍ଗିନୀ,
'ଅତୀତ'ର 'ପ୍ରତିଧ୍ୱନି' ସାଥେ     'ଅନାଗତ' 'ଇସାରା' ଦେଲଣି ।
ଆଜି 'ତୁମେ' ନ ଥିବ କାଲିକି,     ହଜିଯିବ ସ୍ମୃତିର ଅତଳେ,
ମୁଁ ତୁମକୁ ଖୋଜୁଥିବି ହେଲେ,     ଏ ମନର ଅମଡ଼ା ଉହାଡ଼େ ।

ବୁଝିନି ମୁଁ ସୃଷ୍ଟିର ମହିମା—     ଜାଣିନାହିଁ ଜୀବନର ମୂଳ ।
ସାର୍ଥକତା-ବ୍ୟର୍ଥତା-ବିଭ୍ରାନ୍ତ,     ନିରତ ମୁଁ ଅଦ୍ୟମ ପ୍ରଶ୍ନିଳ ।
ତେଣୁ ମାଗେ ଟିକିଏ ପ୍ରେରଣା,     ତୁମେ ଖାଲି କହିଯାଅ କାନେ ।
'ସ୍ରଷ୍ଟା'ର 'ଅବଦାନ' ସବୁ     ବରନେବି ଅକ୍ଳେଶେ, ଅମ୍ଳାନେ ।
ମୋ 'ଜୀବନ ଧ୍ରୁବତାରା'ସାଥେ     ମିଶିବି ମୁଁ 'ପ୍ରଭାତ କିରଣେ',
ମୋ ଅହଂତ୍ୱ, ତୁମ ଉଦାରତା     ଲୋଟିଯାଉ 'ସ୍ରଷ୍ଟା'ର ଚରଣେ ।

—*—

# ॥ ଗୋଟିଏ ବୀଣା-ଦୁଇଟି ସ୍ୱର ॥

**ଶ୍ରୀ କମଳାକାନ୍ତ ପଣ୍ଡା**
ଫକୀରମୋହନ କଲେଜ, ବାଲେଶ୍ୱର

ସିଲ୍ଭିଆ ଭାବୁଥିଲା । ବାହାରେ ଚନ୍ଦ୍ରର ବିମଳ ଜ୍ୟୋତ୍ସ୍ନା ବିଚ୍ଛୁରି ପଡ଼ୁଛି । କିନ୍ତୁ ସେ ଆଡ଼କୁ ନଜର ନାହିଁ ସିଲ୍ଭିଆର । ଭାବନାର କେଉଁ ଅତଳ ଗର୍ଭରେ ସେ ଘୂରି ବୁଲୁଥିଲା । କଟି ଯାଉଥିବା ଗୁଡ଼ିଭଳି ଭାବନାର ଖିଅ ତା'ର ଛିଣ୍ଡି ଯାଉଥିଲା । କେବେ ଅବା ଭାବନାର ବୁଢ଼ିଆଣୀ ଜାଲରେ ବିବ୍ରତ ହୋଇ ଉଠୁଥିଲା ସେ ।

ସେଦିନର କଳିକାଟିଏ ଆଜି ପୁଷ୍ପରେ ପରିଣତ ହୋଇଛି । କେତେ ମହକ ବିକିରଣ କରୁଛି । କେତେ ଜୀବନକୁ ମରଣ ମୁହଁରୁ ରକ୍ଷା କରୁଛି । କେତେ ରୋଗୀଙ୍କ ମୁଖରେ ଦେଖା ଦେଉଛି ସ୍ମିତହାସ୍ୟ । କେତେ ହୃଦୟ-କନ୍ଦର ପୂର୍ଣ୍ଣ ହୋଇ ଯାଉଛି ଆନନ୍ଦ ଶିହରଣରେ । କିନ୍ତୁ କାହାପାଇଁ ? କାହାର ଉତ୍ସାହ ଆଉ ପ୍ରେରଣାରେ ସିଲ୍ଭିଆ ଆଜି ଜଣେ ଡାକ୍ତର ? ସବୁକିଛି ଗୋଟି ଗୋଟି ମନେ ପଡ଼ୁଛି ସିଲ୍ଭିଆର । ପୁଣି ସବୁକିଛି ସେ ଭୁଲି ଯାଉଛି ରୋଗୀ ମେଳରେ । କିନ୍ତୁ ସେ ଯେତେବେଳେ ଏକାକୀ··· ।

ଏଇ ସେଦିନ ଷ୍ଟେସନରେ ଦେଖା ହୋଇଥିଲା ଅଶୋକ ସହିତ । ଅଶୋକ ଉଚ୍ଛନାସ୍ତୁକ । କୃତିତ୍ୱର ସହ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ଏମ୍. ଏ. ପାଶ୍ କରି ସିଏ ଅଧ୍ୟାପକ ବୃତ୍ତିକୁ ବାଛି ନେଇଥିଲା । I. A. S.ର ସ୍ୱପ୍ନ ତ୍ୟାଗ କଲା । ତା'ର କି କିଛି କମ ଯୋଗ୍ୟତା ନ ଥିଲା ପ୍ରଣବଠାରୁ । କାହାପାଇଁ ସେ ଆଜି ସମସ୍ତଙ୍କ ମତରେ ପାଗଳ ? ? ?

'ତୁମେ ବିବାହ କର ଅଶୋକ'—ସେଦିନ ସିଲ୍ଭିଆ ଆଖିରେ କେତେ ବୁନ୍ଦା ଲୁହ ଆସିଥିଲା ।

ଆଜି ସିଲ୍ଭିଆ ଚିନ୍ତିତ ଅଶୋକ ପାଇଁ । ସମସ୍ତେ ତା'କୁ ଘୃଣା କରୁଛନ୍ତି । କିନ୍ତୁ ସିଲ୍ଭିଆ······ । ନିଜକୁ ନିଜେ ଦାୟୀ କରୁଛି ଅଶୋକର ଏ ମହାକ୍ଷତି ପାଇଁ । କିନ୍ତୁ ଅଶୋକ ତ କେବେ ତାକୁ ଦାୟୀ କରିନି, ଦୋଷ ଦେଇନି ଓ ଘୃଣା କରିନି । ବରଂ ସବୁବେଳେ ଉତ୍ସାହିତ କରି ଆସିଛି ତାକୁ ମଣିଷ ଭଳି ମଣିଷଟିଏ ହେବାକୁ । ପ୍ରତ୍ୟେକ କ୍ଷେତ୍ରରେ ସାହାଯ୍ୟ କରି ଆସିଛି ।

ହଠାତ୍ ଅଶୋକ ମୁହଁରେ ଦେଖାଦେଲା ସ୍ମିତ-ହାସ୍ୟ । କିନ୍ତୁ କିଛି କହି ପାରିଲାନି । ହୃଦୟ-ତନ୍ତ୍ରୀ ତା'ର ଛିନ୍ନଭିନ୍ନ ହେବାକୁ ଲାଗିଲା । ଚକ୍ଷୁ ସଜଳ ହୋଇ ଉଠିଲା । ଏକ ବ୍ୟଥାତୁର ହୃଦୟ ନେଇ ଫେରିଗଲା ଅଶୋକ ସିଲ୍ଭିଆ ସହ ପଦୁଟିଏ କଥା ନ କହି । ସେଇଠି ଷ୍ଟେସନ ପ୍ଲାଟଫର୍ମରେ ଗୁମମାରି ବସି ପଡ଼ିଲା ସିଲ୍ଭିଆ ।

ମନରେ ଅସରନ୍ତି ଭାବନାର ବୋଝ ମୁଣ୍ଡାଇ ସେଦିନ ସିଲ୍ଭିଆ ଫେରିଥିଲା ତା' କୋଠରୀକୁ । ଦଗ୍ଧୀଭୂତ ହୃଦୟର ଶାନ୍ତିପାଇଁ ନିଜର ଆଲବମ୍‌ଟିକୁ ଖୋଲାଇଗଲା ସିଲ୍ଭିଆ । ଅତୀତ ଦିନର କେତେ ଫଟୋରେ ପୂର୍ଣ୍ଣ ତା' ଆଲବମ୍ । କଲେଜ ଜୀବନର କେତେ ସାଙ୍ଗ, ସାଥୀ······ । ସମସ୍ତଙ୍କ ଫଟୋସହ ଅଶୋକର ଫଟୋ ବି ଆଜି ଶୋଭା ପାଉଛି । ତା'ର

ପ୍ରଶାନ୍ତ ମୁଖ ମଣ୍ଡଳ, ସୁଉଜ୍ଜଳ ତନୁଶ୍ରୀ ଆଜି ବି ସିଲ୍ଲେମାକୁ ଟାଣି ନେଉଛି କେଉଁ ଅଜ୍ଞାତ ସ୍ୱପ୍ନର ଗହ୍ୱରକୁ ।

ହଠାତ୍ ଆଲ୍‌ବମ୍‌ଟିକୁ ସଶବ୍ଦେ ବନ୍ଦ କରିଦେଲା ସିଲ୍ଲେମା । ମାନସ ପଟରେ ଦେଖାଦେଲା ଶତ ଶତ ଫେନାୟିତ ଊର୍ମି ।

ସେଦିନ କେଉଁ ଏକ ଦୁର୍ବଳ ମୂହୁର୍ତ୍ତରେ ସିଲ୍ଲେମା ଭଲ ପାଇଥିଲା ପ୍ରଣବକୁ । ଆଉ ପ୍ରଣବ ମଧ୍ୟ । ଅନ୍ୟମାନେ ଏ ବିଷୟରେ ଥିଲେ ଅଜ୍ଞାତ । ଅନ୍ତରଙ୍ଗ ବନ୍ଧୁ ଅଶୋକ ବି । ହଠାତ୍ ଦିନେ ଅଶୋକ ଆବିଷ୍କାର କଲା ସିଲ୍ଲେମାର ଜେଠୋଟି ଚିଠି ପ୍ରଣବର ବହି ଭିତରୁ । ମଥା ତା'ର ଘୂରିଗଲା । ପ୍ରଣବ କ'ଣ କରୁଛି ? ତେବେ କାହିଁକି ଏ ପର୍ଯ୍ୟନ୍ତ ଏସବୁ ସେ ଲୁଚାଇ ରଖିଛି ମୋ ନିକଟରେ ? ପ୍ରଣବ କ'ଣ ମୋତେ ଅବିଶ୍ୱାସ କରୁଛି ? —ନିଜକୁ ନିଜେ ପ୍ରଶ୍ନକଲା ଅଶୋକ ।

ସେଦିନ ଏକ ସନ୍ଧ୍ୟାରେ ନିଶ୍ଚୁପ୍‌କେ କୁଲ୍ କୁଲ୍ ସିଲ୍ଲେମା ବିଷୟରେ ଅଶୋକ କେତୋଟି ମାତ୍ର ପ୍ରଶ୍ନ କରିଥିଲା ପ୍ରଣବକୁ । କିନ୍ତୁ ଛଳନାପ୍ରିୟ ପ୍ରଣବ ଦୁଃଖ କରିଥିଲା, ବିରକ୍ତି ପ୍ରକାଶ କରିଥିଲା ଅଶୋକର ଏ ପ୍ରକାର ସନ୍ଧାନ ଚିନ୍ତାପାଇଁ ।

କ୍ରମଶଃ ବନ୍ଧୁତାରେ ଦେଖାଦେଲା ବିଚ୍ଛେଦ ।

ସିଲ୍ଲେମା ବହୁବାର ଚେଷ୍ଟା କରିଛି ଦୁଇ ବନ୍ଧୁଙ୍କର ଭୁଲ ବୁଝାମଣା ଦୂର କରିବାକୁ । ଦୁଇଜଣଙ୍କ ଉପରେ ଅଭିମାନ କରିଛି । କିନ୍ତୁ ସବୁ ଚେଷ୍ଟା ତା'ର ପାଣି ଫୋଟକା ଭଳି ଉଭେଇ ଯାଇଛି ।

ଦିନକର କଥା । ଅଶୋକ ଏକ ଅଦମ୍ୟ ଆକାଂକ୍ଷାନେଇ କହି ପକାଇଲା—ସିଲ୍ଲେମା । ମୁଁ ତୁମକୁ ବିବାହ କରିବାକୁ ଚାହେଁ । ବହୁ ଦିନରୁ ଏ କଥାଟା କହିବି ବୋଲି ଭାବିଥିଲି । ତୁମେ ମୋତେ ନିରାଶ କରନି ସିଲ୍ଲେମା । ତୁମ ବ୍ୟତୀତେକେ ମୁଁ ବଞ୍ଚି ପାରିବିନି । ମୋ ଜୀବନ ବ୍ୟର୍ଥ ହେବ, ହେବ ହାହୁତାଶମୟ...... ।

ସେଦିନ ସିଲ୍ଲେମା ଅନୁନୟ କରି କହିଥିଲା— ଅଶୋକ ! ତୁମେ ଭୁଲ କରନ୍ତୁ । ନାରୀ କେବଳ ଭଲ ପାଇପାରେ ଜଣକୁ । ହୃଦୟ ତା'ର ଗୋଟିଏ । ଗୋଟିଏ ହୃଦୟରେ କିପରି ସ୍ଥାନ ଦେବ ଏକାଧିକଙ୍କୁ ତେଣୁ ତୁମେ ମୋତେ ଭୁଲି ଯିବାକୁ ଚେଷ୍ଟାକର ଅଶୋକ । ଆଉ ଏଭଳି ଭୁଲ କରନି ।

ଅଶୋକର ସମସ୍ତ ଭାବନାରେ ବାଧା ସୃଷ୍ଟି ହେଲା । ସାହସ ସଂଚୟ କରି ପୁଣି ପ୍ରଶ୍ନକଲା—ଯଦି ପ୍ରଣବ ତୁମ ସହ ପ୍ରବଞ୍ଚନା କରେ ? ସିଲ୍ଲେମା ଉତ୍ତର ଦେଲା ! ମୁଁ ବିଶ୍ୱାସ କରେନି । ଆଉ ପ୍ରବଞ୍ଚନା କଲେ ଭାବିନି ଯେ ମୁଁ ଆଉ କାହାର ଆଶ୍ରୟ ନେବି ।

ସେହି ଦିନଠୁଁ ଚିରଦିନ ପାଇଁ ନୀରବ ରହିଗଲା ଅଶୋକ । ଯାହାକୁ ସେ ପ୍ରାଣ ଦେଇ ଭଲ ପାଉଥିଲା...... ତାରି ପାଇଁ ସେ ଆଜି ପାଗଳ ।

ପ୍ରକୃତରେ ନିଷ୍ପାପ ଶିଶୁଟି ଭଳି କାନ୍ଦି ଉଠିଥିଲା ସିଲ୍ଲେମା ନିଜ କୋଠରିଟି ଭିତରେ । ଆଗରେ ଆଲ୍‌ବମ୍‌ରେ ଥୁଆ ହୋଇଛି ଅଶୋକ ଓ ପ୍ରଣବର ଛବି । କିଏ ଦେବତା ଆଉ କିଏ ପ୍ରବଞ୍ଚକ — ଠିକ୍ କରି ପାରିଲାନି ସିଲ୍ଲେମା । ଗଣ୍ଡଗୋଳ ହୋଇଗଲା ତାର ଭାବନା । ଅନୁଭବ କଲା ଭୂମିକମ୍ପର ପଦଧ୍ୱନି । ଆଉ ସଂଜ୍ଞାହୀନା ହୋଇ ପଡ଼ିଲା ସେ । × × ×

ସେଦିନର ପ୍ରଣବ I. A. S. ପାଇ ଭୁଲିଗଲା ସିଲ୍ଲେମାକୁ । ସେ ଆଜି ବିବାହ କରିଛି ଶ୍ୟାମଳୀକୁ— ତା'ର ଅନ୍ୟ ଜଣେ କଲେଜ ସାଥୀ । ଲେଡ଼ି ଡାକ୍ତର ସିଲ୍ଲେମା ଆଜି ବହୁତ ଦୂରରେ । ସେ ଆଜି ପ୍ରତାରିତ ତା'ର ରୂପ ପାଇଁ, ଗରିବ ଘରର ଝିଅ ପାଇଁ । ଏବେ ପ୍ରଣବର ଝିଅଟିଏ ହୋଇଛି । କେବଳ ସ୍ମୃତି ସ୍ୱରୂପ ପ୍ରଣବ ଝିଅଟିର ନାମ ରଖିଛି 'ବନାନୀ'— ଯେଉଁଥିପାଇଁ ପ୍ରଣବ ଓ ସିଲ୍ଲେମା ମଧ୍ୟରେ ଦିନେ ସ୍ଥିର ହୋଇଥିଲା ସେମାନଙ୍କର ପ୍ରଥମ ଝିଅର ନାମ ରହିବ 'ବନାନୀ' । × × ×

ହଠାତ୍ ଦିନେ ରାସ୍ତାରେ ବୁଲୁ ବୁଲୁ ଅଶୋକ ହୁଏ ଆଘାତପ୍ରାପ୍ତ । ମଥା ତା'ର ଫାଟି ଯାଏ କାର ଧକ୍କାରେ । ପିଚୁରାସ୍ତା ଲାଲ ଧରିଯାଏ । ସଙ୍କଟାପନ୍ନ ଅବସ୍ଥାରେ ଅଶୋକ ଆସେ ଡାକ୍ତରଖାନାକୁ ।

ସିଲେମାର ସେଦିନ ଏମାରଜେନସି ଡିଉଟି ଥାଏ । ସୁଯୋଗ ପାଏ ଅଶୋକର ସେବା କରିବାକୁ । ପ୍ରାଣଦେଇ ସେ ଅଶୋକକୁ ବଞ୍ଚାଇବ—ଏଇ ତା'ର ପ୍ରତିଜ୍ଞା । ଭୋକ, ଶୋଷ ସବୁ ଭୁଲି-ଯାଇଥାଏ ନିଜ କାମରେ । ଦୀର୍ଘ ଦଶଘଣ୍ଟା ପରେ ଅଶୋକର ସଜ୍ଞା ଆସେ । ସିଲେମାର ଆନନ୍ଦ କହିଲେ ନ ସରେ । ଭାବୁଥାଏ, କହିବ ଅଶୋକ ! 'ମୁଁ ତୁମକୁ ବିବାହ କରିବି ।' କିନ୍ତୁ ହାୟ ! ସିଲେମାକୁ ଅଶୋକ ଚିହ୍ନି ପାରେନି । ସିଲେମା ବି । ହାତଠାରି ସିଲେମାକୁ ଡାକେ ନିକଟକୁ । ତା'ର ହାତଟିକୁ ଧରି ପକାଏ ଆବେଗରେ । କଣ୍ଠ ରୁଦ୍ଧ ହୋଇଆସେ । ଫାଟି ଖନିମାରେ । ଆଖି ହୋଇଆସେ ନିମୀଳିତ । ଶେଷରେ ଅଶୋକ ସବୁଦିନ ପାଇଁ ସଂସାରରୁ ବିଦାୟ ନିଏ ।

କୋହଭରା ହୃଦୟ ଓ ଭାରାକ୍ରାନ୍ତ ମସ୍ତିଷ୍କନେଇ ସିଲେମା କୋଠରୀକୁ ଫେରେ । ଆଜି ସେ ନିଃସଙ୍ଗିନୀ । ତା'ର ଆଜ କେହି ନାହିଁ, କିଛି ନାହିଁ । ନିଃସ୍ୱ ସେ । କିନ୍ତୁ କ'ଣ ନେଇ ବଞ୍ଚିବ ସେ ? ଏଇ ବୁଢ଼ିଆଣୀ ଜାଲପରି ଅରୁଆ ତରୁଆ ସ୍ମୃତିତକ ନେଇ ! ବାହାରେ ଚନ୍ଦ୍ରର ବିମଳ ଜ୍ୟୋତ୍ସ୍ନା ପଡ଼ୁଛି । କିନ୍ତୁ ସିଲେମାର ଜୀବନରେ ଯେପରି ଅମାବାସ୍ୟାର ଅନ୍ଧକାର ଚିରଦିନ ପାଇଁ । ସିଲେମା ଭାବୁଛି କିଏ ମଣିଷ, କିଏ ଦେବତା । ବାହାରେ ଚନ୍ଦ୍ରର ବିମଳ ଜ୍ୟୋତ୍ସ୍ନା ।

—※—

# ତାମସୀ-ରାଧା

ଶ୍ରୀ ଶ୍ୟାମସୁନ୍ଦର ପ୍ରଧାନ, ମୁଖ୍ୟ

ସେଦିନ ବକୁଳ କୁଞ୍ଜେ କେତେଫୁଲ ବିକଳେ ଝଡ଼ିଲା
ତୁଚ୍ଛା ଜଳା କୋଇଲିର ଆହା କି'ସେ ମଧୁର କାକଳୀ,
ରକ୍ତମଖା ଗୋଲାପରେ ଗୁନ୍ଥା କେତେ ମମତାର ମାଳା
ପ୍ରେମର କେନ୍ଦ୍ରକୁ ଛୁଇଁ ପରିଧିରେ ରହିଛି ଜଡ଼ାଇ ।
ତାମସୀ-ରାଧାର ଡାକେ ଟହଲଇ ବସନ୍ତର ଶିରୀ
ହସିଲା କଦମ୍ବ ବନ ତନୁ, ମନ, ପ୍ରାଣ ଦୋହଲାଇ;
ସୁନାଚମ୍ପା କଡ଼ କଡ଼ ଯୌବନର ଅତୃପ୍ତ ଶବରୀ
ଗାଇଗଲା ନବଗୀତ 'କଳାକାହ୍ନୁ' ପୀରତିକୁ ଧ୍ୟାୟୀ ।
'ଆଗ୍ନେୟ'ର କନ୍ୟାସମ ରାଧିକାର ରଙ୍ଗା ଯଉବନ
ଥରିଗଲା ବିରହରେ ବିଦର୍ଭର ରସାଳ ନିକୁଞ୍ଜେ;
'ସୁଦର୍ଶନଚକ୍ର' ସମ ଘୂରି ଘୂରି ଅଭିଶ୍ୱାସୀ ହୋଇ
'ଶକ୍ତି'କୁ ବନ୍ଧନ କରି ନାଶି ବହୁ ପରାଣକୁ ଫାନ୍ଦେ ।
ଆକାଶର ନୀଳ ଆଖି ଆଉ ଦୁଇ ନୀଳ ଚିବୁକରେ
ରାଧାର ଯୌବନ ଲୁଣ୍ଠି 'କାହ୍ନୁ' ଅବା ମାଗିଛି ଗୁପ୍ତରେ ।

—×—

# ଛମାଣ ଆଠଗୁଣ୍ଠରେ ମୁକୁନ୍ଦା : ଏକ ଅନୁଶୀଳନ

ଶ୍ରୀ ପ୍ରମୋଦଚନ୍ଦ୍ର ରଥ, (ସିଂହଭୂମି)

ଓଡ଼ିଆ ଭାଷା ଓ ସାହିତ୍ୟର ଚରମ ସଙ୍କଟ ତଥା ନିଶ୍ଚିତ ବିପର୍ଯ୍ୟୟ ମୁହୂର୍ତ୍ତରେ ଗଦ୍ୟ ସାହିତ୍ୟର ଜନକ, କଥା ସାହିତ୍ୟର ଅଗ୍ରଦୂତ ଫକୀରମୋହନ ସେନାପତିଙ୍କର ଆବିର୍ଭାବ ଓ ସାହିତ୍ୟ ସାଧନା ଆରମ୍ଭ ହୁଏ । କିନ୍ତୁ ତାଙ୍କ ସାହିତ୍ୟର ପରୀକ୍ଷା ନିରୀକ୍ଷା ଓଡ଼ିଆ ସାହିତ୍ୟରେ ଅତି ଅର୍ବାଚୀନ । ସ୍ୱାଧୀନୋତ୍ତର ଉତ୍କଳରେ ସାହିତ୍ୟର ଧାରାବାହିକ ନିୟମିତ ଆଲୋଚନା ସୂତ୍ରପାତ ହୁଏ । ଏହି ସମୟରେ ଫକୀରମୋହନଙ୍କର ଉପନ୍ୟାସ ଗଳ୍ପ ଓ କାବ୍ୟ କବିତାସମୂହ ସମାଲୋଚନାର ସଙ୍କୀର୍ଣ୍ଣ ଶାଣିତ ପରିଧିକୁ ଆସିଛି ଏବଂ ସମାଲୋଚିତ ହୋଇଛି ।

ଫକୀରମୋହନଙ୍କର ପ୍ରତ୍ୟେକଟି ଉପନ୍ୟାସ ଚରିତ୍ର ବହୁଳ ଅଟେ । ଯୁଗଧର୍ମର ପ୍ରଭାବରେ ପ୍ରଭାବିତ ହୋଇ ଔପନ୍ୟାସିକ ଏତାଦୃଶ ଉପନ୍ୟାସ ସୃଷ୍ଟି କରିବାକୁ ବାଧ୍ୟ ହୋଇଛନ୍ତି । ତାଙ୍କର ସମକାଳୀନ ବଙ୍ଗୀୟ ଔପନ୍ୟାସିକ ବଙ୍କିମଚନ୍ଦ୍ର ଓ ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦ୍ଙ୍କ ଉପନ୍ୟାସରେ ମଧ୍ୟ ବହୁଳ ଚରିତ୍ର ସମାବେଶ ଦୃଷ୍ଟିଗୋଚର ହୁଏ । ବହୁ ଚରିତ୍ରକୁ ନେଇ ସୁନିପୁଣ କଥାଶିଳ୍ପୀ ଫକୀରମୋହନ ଉପନ୍ୟାସ ସୃଷ୍ଟି କରିଛନ୍ତି ସତ, କିନ୍ତୁ ଚରିତ୍ରଗୁଡ଼ିକୁ ଅନ୍ୟାୟ ଅବିଚାରର ଗୋଲକଧନ୍ଦା ମଧ୍ୟରେ ଛାଡ଼ିଦେଇ ସେ ପାଠକ ତଥା ସମାଲୋଚକର ବିରାଗଭାଜନ ହୋଇ ନାହାନ୍ତି ।

ଉପନ୍ୟାସର ଚରିତ୍ର ସମୁଦାୟକୁ ମୁଖ୍ୟତଃ ବର୍ତ୍ତୁଳ, ଆପେକ୍ଷିକ ବର୍ତ୍ତୁଳ ଓ ସମତଳ ଇତ୍ୟାଦି ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଯାଇଥାଏ । ଏହି ସାମାନ୍ୟ କଥନ ସାହାଯ୍ୟରେ ବିଚାର କଲେ ଯଥାକ୍ରମେ ଛମାଣ ଆଠଗୁଣ୍ଠ ଉପନ୍ୟାସ ଗର୍ଭିତ ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା ବର୍ତ୍ତୁଳ, ସାରିଆ ଭଗିଆ ଆପେକ୍ଷିକ ବର୍ତ୍ତୁଳ ଓ ଗୋବରା ଜେନା, ଗୋବିନ୍ଦା, ଓକିଲ ରାମରାମ ଲାଲ, ବାବାଜୀ ଲକ୍ଷଣ ଦାସ, ମାଣିକ, ମଚୁଆ ଇତ୍ୟାଦି ସମତଳ ପର୍ଯ୍ୟାୟର ଗଣ୍ଡି ଭିତରେ ଧରା ଦେଇଥାନ୍ତି । ବର୍ତ୍ତୁଳ, ଆପେକ୍ଷିକ ବର୍ତ୍ତୁଳ ଚରିତ୍ର ସମୁଦାୟ ସଦୃଶ ସମତଳ ଚରିତ୍ରଗୁଡ଼ିକୁ ଉପନ୍ୟାସରେ ପୂର୍ଣ୍ଣାଙ୍ଗ, ଜୀବନ୍ତ ତଥା ସ୍ୱୟଂ ସମ୍ପୂର୍ଣ୍ଣ କରିବା ପାଇଁ ପ୍ରତିଭାବାନ ଶିଳ୍ପୀର ଉଦାର ମନରେ ଅନୁଦାରତା କିମ୍ବା ଦୀର୍ଘ ସୂତ୍ରୀତାର ଆଲିମ୍ପନ ନାହିଁ । 'ମାମୁଁ' ଉପନ୍ୟାସରେ 'ଗେଲ୍ହେଇ' ଏକ ସମତଳ ଚରିତ୍ର । ଗେଲ୍ହେଇ ପଲ୍ଲୀବାସିନୀ । ଗେଲ୍ହେଇ ବିଧବା, ଅନାଥା, ଅଶିକ୍ଷ, ଅସହାୟ । ପଲ୍ଲୀ ସମାଜରେ ତାର ଆର୍ଥିକ ଓ ସାମାଜିକ ପ୍ରତିଷ୍ଠା ପ୍ରାପ୍ୟ ନାହିଁ କହିଲେ ଚଳେ । କିନ୍ତୁ ମାମୁଁ ଉପନ୍ୟାସରେ ମାନବଧର୍ମୀ ଫକୀରମୋହନ ଗେଲ୍ହେଇ ଚରିତ୍ରର ଭୂମିକା ପ୍ରସ୍ତୁତ କରୁଥିବା ସମୟରେ ଉକ୍ତ ଚରିତ୍ର ପ୍ରତି ଉଦାର ଆନ୍ତରିକତାର ପରିଚୟ ଦେଇ ଲେଖିଛନ୍ତି, "ଯେତେ ଭୁଲ ହେଉ ପଛକେ ଗେଲ୍ହେଇ ଏହି ଉପନ୍ୟାସର ଗୋଟିଏ ନାୟିକା । ସମସ୍ତ ନାୟକ ନାୟିକାଙ୍କ ରୂପ-

ଗୁଣ ବିଷୟ ଯେ ସ୍ଥଳରେ ଲେଖିବାକୁ ବସିଛୁଁ— ଅତି ସାମାନ୍ୟ ବୋଲି ଜଣକୁ ହେଣ୍ଟିଦେଇ ଯିବା ନିହାତି ତରଫଦାରି କଥା ।"

ମୋହନ୍ତମ ମୋହନ ସେନାପତିଙ୍କ, ପଦାଙ୍କ-ଅନୁସରଣ କରି 'ଛମାଣ ଆଠଗୁଣ୍ଠ'ର 'ମୁକୁନ୍ଦା' ଚରିତ୍ରକୁ ଯଣ୍ଡ ହେଣ୍ଡାହେଣ୍ଡୀ ଗୋଷ୍ଠୀକୁ କିମ୍ବା ଅନ୍ୟାନ୍ୟ ସମାଲୋଚକମାନଙ୍କର ମତବାଦ ଅନୁସରଣ କରି ତାକୁ ସମତଳ ଗୋଷ୍ଠୀ ଭିତରକୁ ଠେଲି ଦିଆଯାଏ ତା'ହେଲେ ଫକୀରମୋହନଙ୍କର ସୃଜନଶୀଳ ପ୍ରତିଭାକୁ ଅସୌଜନ୍ୟ ଲାଞ୍ଛନାରେ ଲାଞ୍ଛିତ କଲାପରି ମନେହୁଏ । ପୂର୍ବ କଥିତ କୌଣସି ପର୍ଯ୍ୟାୟରେ ମୁକୁନ୍ଦାକୁ ସୂତ୍ରଧାରେ ରଖାଯାଇ ପାରେନା । ଛମାଣ ଆଠଗୁଣ୍ଠରେ ମୁକୁନ୍ଦା ଏକ ସ୍ୱତନ୍ତ୍ର, ଅସାମାନ୍ୟ ତଥା ଏକତମ ଚରିତ୍ର । ସୃଜନଧର୍ମୀ କଥାଶିଳ୍ପୀ ଆତ୍ମାର ନିର୍ଭୀକ, ନିଖୁଣ, ପ୍ରତିକାତ୍ମକ ପରିପ୍ରକାଶ ।

ଉପନ୍ୟାସର ଶେଷାର୍ଦ୍ଧରେ ଅନ୍ୟୂନ ଗୁଟେଣ୍ଟି ପରିଚ୍ଛେଦରେ ମୁକୁନ୍ଦା ସହିତ ପାଠକର ସାକ୍ଷାତ ହୋଇଥାଏ । ରାମଚନ୍ଦ୍ର ମଙ୍ଗରାଜଙ୍କର ଧର୍ମପତ୍ନୀ ସାନ୍ତାଣୀଙ୍କ ସହିତ ମୁକୁନ୍ଦା ନୋଦନପୁର ଜମିଦାର ଉଆସକୁ ଭୃତ୍ୟରୂପେ ଆସିଥିଲା । ସାନ୍ତାଣୀଙ୍କର ସ୍ୱାସ୍ଥ୍ୟ, ସୁଖ, ଶାନ୍ତି, ଜୀବନର ଦାୟିତ୍ୱ ମୁକୁନ୍ଦା ହସ୍ତରେ ଅର୍ପଣ କରି ଲେଖକ ବର୍ତ୍ତିଲା ଚରିତ୍ର ସ୍ୱାମୀ ରାମଚନ୍ଦ୍ର ମଙ୍ଗରାଜଙ୍କର ପତ୍ନୀ ପ୍ରେମବିମୁଖ, ଚରିତ୍ରହୀନ ତଥା ନାରକୀୟ ପ୍ରବୃତ୍ତି ସମୂହର ଚରମ ବିକାଶ ଘଟାଇ ମଙ୍ଗରାଜଙ୍କର ଚରିତ୍ରସହାର ସହିତ ତାଙ୍କ ପ୍ରତିଭାର ଅମର ସ୍ୱାକ୍ଷର ଅଙ୍କନ କରିଛନ୍ତି । ମଙ୍ଗରାଜ ସାନ୍ତାଣୀଙ୍କର ଦେହ ଭୋଗ କରିନନ୍ତି ସତ, କିନ୍ତୁ ମନ କିଣି ପାରି ନ ଥିଲେ, ରଞ୍ଜେଇପାରି ନଥିଲେ, ହୃଦୟ ଜିଣି ପାରି ନ ଥିଲେ । ସାନ୍ତାଣୀଙ୍କ ପରିଚିତଳେ ସେ ଆତ୍ମଗୋପନ କରନ୍ତୁ ଏଥିର ମନ ଅଭିପ୍ରାୟ ସାନ୍ତାଣୀ-ଙ୍କର ନ ଥିଲା । ମଙ୍ଗରାଜଙ୍କର ପୁରୁଷାର୍ଥକୁ ଖର୍ବ କରିବା ଇଚ୍ଛା ମଧ୍ୟ ତାଙ୍କର ନ ଥିଲା । କିନ୍ତୁ ସ୍ୱାମୀଙ୍କର ଅକ୍ଷମଣୀୟ ନୈଷ୍ଠୁର୍ଯ୍ୟକୁ ସେ ବରଦାସ୍ତ କରିବା ଭଳି ନୈତିକ ବଳ ସଂଗ୍ରହ କରିପାରି ନାହାନ୍ତି । ସ୍ୱାମୀ, ପୁତ୍ର, କନ୍ୟା, ଦାସଦାସୀ, ଧନସମ୍ପତ୍ତି, କ୍ଷମତା, ମାନମର୍ଯ୍ୟାଦା ସବୁଥାଇ ମଧ୍ୟ ସାନ୍ତାଣୀ ନିଜକୁ ଭିକାରୁଣୀ ମନେ କରିଛନ୍ତି । ସ୍ୱାମୀସ୍ନେହ ବଞ୍ଚିତା ସାନ୍ତାଣୀ ଧନକ୍ଷମତାର ଦୁର୍ଗ ମଧ୍ୟରେ ଥାଇ ଏକ ଅନୁରାଗୀ ସ୍ନେହ ସିକ୍ତ ପ୍ରାଣ ଅଭାବରେ ନିଜକୁ ସ୍ନେହ କାଙ୍ଗାଳୁଣୀ ମନେ କରିଛନ୍ତି । କୁଆଁରୀ ଜୀବନର ମନଉଡ଼ା ସୁଖସ୍ୱପ୍ନ ତାଙ୍କର ମରୁ ମରୀଚିକାରେ ପରିଣତ ହୋଇଛି । ଦାମ୍ପତ୍ୟ ଜୀବନ ତାଙ୍କର ବ୍ୟଥା, ଅଶ୍ରୁ, ଅନୁତାପ ଏବଂ ବ୍ୟର୍ଥତା ଜର୍ଜ୍ଜରିତ । ତଥାପି ମୁକୁନ୍ଦା ବ୍ୟତୀତ ସମସ୍ତଙ୍କ ଦୃଷ୍ଟିରେ ସେ ସୁଖୀ, ଯେହେତୁ ସେ ହସ ହସ । ଅଭାବଗ୍ରସ୍ତ ଗ୍ରାମବାସୀଙ୍କୁ ସାମୟିକ ସାହାଯ୍ୟ କରନ୍ତି । ପୋଇଲି ପରିବାରଙ୍କ କଜିଆ ଭାଙ୍ଗନ୍ତି । ଛମାଣ ଆଠଗୁଣ୍ଠ ଜମି ଧାରିଆ ଭଗିଆକୁ ଫେରାଇ ଦେବାଲାଗି ସ୍ୱାମୀଙ୍କୁ ଅନୁରୋଧ କରନ୍ତି । ବାଘ ସିଂହ ଘରେ ଅଗ୍ନି ସଂଯୋଗ ନ କରିବା ଲାଗି ସ୍ୱାମୀ ରାମଚନ୍ଦ୍ର ମଙ୍ଗରାଜଙ୍କୁ ବିନମ୍ରତା ସହିତ ବାରଣ କରନ୍ତି । ଦୈନନ୍ଦିନ ଜୀବନର କର୍ମବ୍ୟସ୍ତତା ତଳେ ସାନ୍ତାଣୀଙ୍କର ଦାମ୍ପତ୍ୟ ଜୀବନର ବ୍ୟର୍ଥତା ଲୁଚି ହୋଇଯାଏ । ସାନ୍ତାଣୀଙ୍କର ଅବଚେତନ ମନ ସୀମାନ୍ତର ଡେଇଁ ଉକ୍ତ ବ୍ୟର୍ଥତା ପ୍ରକାଶିତ ହେବାମାତ୍ରେ କୁଶଳୀ ଔପନ୍ୟାସିକ ମନସ୍ତତ୍ତ୍ୱ-ଧର୍ମୀ ହୋଇ ସାନ୍ତାଣୀଙ୍କ ଆଗରେ ମୂକ ମୁକୁନ୍ଦାକୁ ଠିଆ କରାନ୍ତି । ନୀରବରେ ମୁକୁନ୍ଦା ସମବେଦନା ଜଣାଏ । ନୀରବରେ ସାନ୍ତାଣୀ ତାହା ଗ୍ରହଣ କରନ୍ତି । ଆଖିରୁ ଲୁହ ପୋଛନ୍ତି । ତହଲ ମନ ଶାନ୍ତହୁଏ । ନିରର୍ଥକ କୋଳାହଳ ପୂର୍ଣ୍ଣ ଜନଗହଳ ଉଆସ ଭିତରେ ସାନ୍ତାଣୀଙ୍କ ମନର ପରିଚୟ ପାଇଥିଲା ଜଣେ । ସେ ଜଣକ ଧନଲୋଭୀ ସ୍ୱାମୀ ରାମଚନ୍ଦ୍ର ମଙ୍ଗରାଜ ନୁହନ୍ତି । ସେ ଜଣକ ଚାକର ମୁକୁନ୍ଦା ।

'ଛମାଣ ଆଠଗୁଣ୍ଠ'ରେ ମୁକୁନ୍ଦାର ଆବିର୍ଭାବ ଆକସ୍ମିକ ନୁହେଁ ବରଂ ନାଟକୀୟ କହିଲେ ଅସଙ୍ଗତ ହେବନାହିଁ । ସ୍ୱାମୀ ରାମଚନ୍ଦ୍ର ମଙ୍ଗରାଜଙ୍କର ଚରମ ଅବହେଳା, ମନ୍ଦିରା ଚମ୍ପାର ଘୃଣା ଓ ହତାଦର ଫଳରେ ସାନ୍ତାଣୀଙ୍କ ମାନସିକ ଯନ୍ତ୍ରଣା ସ୍ନାୟୁଗ୍ରନ୍ଥିକୁ ସଂକ୍ରମିତ ହେଇଛି । ମୁକୁନ୍ଦାର ଆନ୍ତରିକ ନୀରବ ଆଶ୍ୱାସନା ତାଙ୍କୁ ଆଉ ବେଶୀଦିନ ବଞ୍ଚାଇ ପାରିଲା ନାହିଁ । ବଞ୍ଚିବାର ଇଚ୍ଛା ମଧ୍ୟ ତାଙ୍କର ନ ଥିଲା । ନିଷ୍ଠୁର ଦୁନିଆକୁ ସେ ପଛକରି ଦୁନିଆର ଆର-ପାରିକୁ ଚିରଶାନ୍ତିର ଅନ୍ୱେଷଣରେ ଚାଲିଗଲେ । ପାରିବାରିକ ବନ୍ଧନ ତାଙ୍କୁ ଅଟକାଇ ପାରିଲା ନାହିଁ । ମୃତ ସାନ୍ତାଣୀଙ୍କ ଶବାଧାର ନିକଟରେ ମଙ୍ଗରାଜେ ଆସୀନ । ନେତ୍ର ଯୁଗଳ ଅଶ୍ରୁ ସଜଳ, ଗଣ୍ଡଯୁଗଳ ଲୋତକଧୌତ ମୁଖ ଛବି ବିଷଣ୍ଣ ଓ ଭାବାକ୍ରାନ୍ତ । ମନ ଭିତରେ ମନ୍ଦ-ମଧୁର ସଂଘର୍ଷ । ପାପ ପୁଣ୍ୟର ପରୀକ୍ଷା ନିରୀକ୍ଷା । ଲକ୍ଷ୍ମୀସ୍ୱରୂପା ସାନ୍ତାଣୀଙ୍କର ଅକାଳ ନିଧନ ମାନେ ମଙ୍ଗରାଜେ ଲକ୍ଷ୍ମୀଛଡ଼ା ହୋଇଛନ୍ତି । ପାପର ପିଚ୍ଛିଳ ସରଣୀ ତାଙ୍କୁ ମୃତ୍ୟୁ ଦ୍ୱାରରେ ପହଞ୍ଚାଇ ଦେବାପାଇଁ ଆହ୍ୱାନ କରୁଛି । ମଙ୍ଗରାଜେ ସେହି ଆହ୍ୱାନକୁ ଅସ୍ୱୀକାର କରିପାରି ନାହାନ୍ତି । ସାନ୍ତାଣୀଙ୍କ ମୃତ୍ୟୁଦ୍ୱାରା ହୃଦୟହୀନ, ପରସ୍ୱପହାରୀ, ସମ୍ପତ୍ତି ସର୍ବସ୍ୱସ୍ୱାମୀ, ବର୍ତ୍ତୁଳ ଚରିତ୍ର ମଙ୍ଗରାଜ ପ୍ରଭାବିତ । ସାନ୍ତାଣୀଙ୍କ ମୃତ୍ୟୁରେ ମଙ୍ଗରାଜଙ୍କ ମାନସିକ ଯନ୍ତ୍ରଣାର ବିସ୍ତୃତ ଚିତ୍ର ଉପନ୍ୟାସରେ ଅଙ୍କିତ । ମୁକୁନ୍ଦାର ମାନସିକ-ଯନ୍ତ୍ରଣା-ଚିତ୍ର ମଙ୍ଗରାଜଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ, ମୁକୁନ୍ଦା ଉପରେ ସାନ୍ତାଣୀଙ୍କ ମୃତ୍ୟୁ ପ୍ରଭାବ କୌଣସି ଗୁଣରେ ଶିଥିଳ ନୁହେଁ, ଉଭୟଙ୍କ ମାନସିକ ଆଲୋଡ଼ନର ତୁଳନାତ୍ମକ ଗୁଣଗତ ସୀମାରେଖା ଟାଣିଦେବା ସହଜସାଧ୍ୟ ନୁହେଁ । ମଙ୍ଗରାଜଙ୍କ ପରି ମୁକୁନ୍ଦା ହଳଆ ପାଳୁଆ ପାଟିଟା ଆଁ କରି ଆଖିବୁଜି ମାଂସଶୂନ୍ୟ ଠେଙ୍ଗା ହାଡ଼ୁଆ ଗୋଡ଼ ଦୁଇଟା ଲମ୍ବାଇ ବାଡ଼କୁ ଆଉଜି ବସି ପଡ଼ିଅଛି । ଆଖିରୁ ଲୁହ ଗଳୁନାହିଁ । ଉଚ୍ଚ-ସ୍ୱରରେ କାନ୍ଦି କାନ୍ଦି ଗଗନ ପବନ ମୁଖରିତ କରୁନାହିଁ । କାରଣ ସେ ମୂକ । ସାନ୍ତାଣୀଙ୍କ ମୃତ୍ୟୁରେ ସେ ଭକୁଆ ହୋଇ ଯାଇଥିଲେ ମଧ୍ୟ ମାନସିକ ମମତା ହରାଇ ନାହିଁ । କର୍ତ୍ତବ୍ୟ ତଥା ଔଚିତ୍ୟଜ୍ଞାନ ହରାଇ ନାହିଁ । ମଙ୍ଗରାଜଙ୍କ ପରି ତାର ଯଦି ପତନ ହୋଇଥାନ୍ତା କିମ୍ବା ସେ ଉଦ୍‌ଭ୍ରାନ୍ତ ହୋଇଥାନ୍ତା ତା'ହେଲେ ଉପନ୍ୟାସର ଶେଷ ପରିଣତି ଅବଶ୍ୟ ଭିନ୍ନ ରଙ୍ଗ ଏବଂ ରୂପ ନେବାକୁ ବାଧ୍ୟ ହୋଇଥାନ୍ତା-କିମ୍ଭୂତକିମାକାର ହୋଇଥାନ୍ତା । କିନ୍ତୁ ସୁନିପୁଣ କଥାଶିଳ୍ପୀ ଏହି ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲେ । ଉପନ୍ୟାସରେ ମୁକୁନ୍ଦାର ଆବିର୍ଭାବ ମାତ୍ରେ ତା'ପ୍ରତି ପାଠକର କୌତୁହଳ ବଢ଼େ—ଏଥିପାଇଁ ଲେଖକ ସାନ୍ତାଣୀଙ୍କ ମୃତ୍ୟୁପରେ ମୁକୁନ୍ଦାକୁ ଏକ କରୁଣ ତଥା ଆକର୍ଷଣୀୟ ପରିବେଶ ମଧ୍ୟରେ ପାଠକ-ମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଛନ୍ତି । ତତ୍କାଳୀନ ଶୋକସନ୍ତପ୍ତ ମୁକୁନ୍ଦାର ଅବସ୍ଥା ଅତି ମର୍ମସ୍ପର୍ଶୀ । ମାର୍ମିକ ଅନୁଭବୀ ଲେଖକ ଫକୀରମୋହନଙ୍କ ଭାଷାରେ, "କେବଳ କାନ୍ଦୁନାହିଁ ଜଣେ । × × × ଯାହାର ଜଗତର ସମସ୍ତ ସୁଖ-ସମସ୍ତ ଶାନ୍ତି-ସମସ୍ତ ଭରସା-ସମସ୍ତ ଆଶା-ସମସ୍ତ ସାନ୍ତ୍ୱନା-ସମସ୍ତ ସ୍ନେହ ଏକ ସଙ୍ଗରେ ଶେଷ ହୋଇଥାଏ, ସେ କାନ୍ଦେନାହିଁ । କେବଳ ସେ ବେଳେବେଳେ ଫଁ ଫଁ ନିଶ୍ୱାସ ପକାଉ ଅଛି । ବୋଧହୁଏ ସେଥିସକାଶେ ତାହାର ଶୁଷ୍କ ହୃଦୟ ଫାଟିଯାଉନାହିଁ ।" ସ୍ୱାମୀ ମଙ୍ଗରାଜଙ୍କର ହୃଦୟହୀନ ଅବହେଳା, ଅବଜ୍ଞା ଏବଂ ଭୃତ୍ୟ ମୁକୁନ୍ଦାର ସହୃଦୟ ଦାସ୍ୟଭକ୍ତି, ଆନୁଗତ୍ୟ ଉଭୟେ ସାନ୍ତାଣୀଙ୍କ ଚରିତ୍ରକୁ ସାଧାରଣ ଗୃହିଣୀ ସ୍ତରରୁ ନେଇ ଆଦର୍ଶ ଗୃହିଣୀ ପଦରେ ଅଭିଷିକ୍ତା କରାଇଛି ।

ମୁକୁନ୍ଦା ମୂକ ଚରିତ୍ର ହେଲେ ମଧ୍ୟ ତାର କୌଣସି କଥା ଅକୁହା ରହିନ । ଇଙ୍ଗିତଧର୍ମୀ କଳାକାର ଫକୀରମୋହନ ମୁକୁନ୍ଦାର ବୋଧଗମ୍ୟ ଇଙ୍ଗିତ

ମାଧ୍ୟମରେ ତାର ମନକଥା ପ୍ରାଞ୍ଜଳ ଭାବେ ପ୍ରକାଶ କରିଛନ୍ତି । ସେଇଟି ହିଁ ରହିଛି ତାଙ୍କ ସୃଜନଶୀଳ ପ୍ରତିଭାର ଅମର ସ୍ୱାକ୍ଷର । ମୂକଚରିତ୍ରକୁ ଗତିଶୀଳ କରିବା ଏକ କଠିନ ସମସ୍ୟା । କଟକରୁ ଦୁଃସମ୍ବାଦ ଆସିଲା । ମଙ୍ଗରାଜେ ବନ୍ଦୀଶାଳାରେ ଆକ୍ରାନ୍ତ ହୋଇ ଜୀବନ ମରଣର ସନ୍ଧିରେ ଗୋଡ଼ ଥୋଇଛନ୍ତି । ମୃତ୍ୟୁ ସୁନିଶ୍ଚିତ । ବଞ୍ଚିବାର ସମ୍ଭାବନା ପ୍ରାୟ ନାହିଁ । ଆତ୍ମୀୟମାନେ ଇଚ୍ଛାକଲେ ସେବାପାଇଁ ମୁମୂର୍ଷୁ ମଙ୍ଗରାଜଙ୍କୁ ଘରକୁ ନେଇ ପାରନ୍ତି । ହାଣ କୁରାଢ଼ୀ ବେକରେ ଥୋଇବା ପାଇଁ ପୁଅ ବୋହୂ, ଦାସ ଦାସୀ କେହି ଆଗ୍ରହ କଲେନାହିଁ, ତତ୍ପର ହେଲେନାହିଁ । କିନ୍ତୁ ମୁକୁନ୍ଦା ଆଗ୍ରହୀ ହୋଇଛି । ଲଣ୍ଡାଭଣ୍ଡା ହୋଇ ଦୁଇଟା ଅଣ୍ଡିରା, ଗୁରି ଛ'ଟି । ପଲ୍ହାଣ ସଜ କଳଦେଇ ଖଣ୍ଡେ ଡୋଲି ଧରି ତରବର ହୋଇ କଟକ ଧାଇଁଲା । ତାର ଏତାଦୃଶ ଆଗ୍ରହ, ତତ୍ପରତା ଓ କର୍ମନିଷ୍ଠା ମଧ୍ୟରେ ଫକୀରମୋହନ ମୂକଚରିତ୍ର ମୁକୁନ୍ଦାକୁ ଗତିଶୀଳ କରିବା ସହିତ ତା' ଚରିତ୍ରରେ ଉନ୍ନତ ମାନବିକତାବୋଧ ଆରୋପ କରିଛନ୍ତି ।

'ଛମାଣ ଆଠଗୁଣ୍ଠ'ର ଉପସଂହାରରେ ଗୋପୀ କବିରାଜଙ୍କ ସହିତ ସାମାନ୍ୟତମ କାବ୍ୟ ବିନିମୟ ଉତ୍ତରେ ଏକାକୀ ମୁକୁନ୍ଦା ମୁମୂର୍ଷୁ ରାମଚନ୍ଦ୍ର ମଙ୍ଗରାଜଙ୍କ ଅତୃପ୍ତ ଆତ୍ମାର ମୁକ୍ତି ସଂଗ୍ରାମ ଦୃଶ୍ୟ ଦେଖିଛି । ମୁକୁନ୍ଦା ରାମଚନ୍ଦ୍ର ମଙ୍ଗରାଜଙ୍କର ଅଭ୍ୟୁଦୟ ନେପଥ୍ୟରେ ଥାଇ ଦେଖିଥିଲା, ପ୍ରକାଶ୍ୟରେ ରହି ବିଳୟ ଦେଖିଲା । ଅଭ୍ୟୁଦୟ ସମୟରେ ସେ ହସି ହସି ଗଗନ ପବନ ଫଟାଇ ନାହିଁ କିମ୍ବା ପ୍ରଗଳ୍‌ଭ ବାକ୍ ହୋଇନାହିଁ । ବିଳୟ ସମୟରେ କାନ୍ଦି କାନ୍ଦି କାରୁଣ୍ୟ ଲହରୀ ସୃଷ୍ଟି କରିନାହିଁ ବରଂ ଦିବଂଗତ ଆତ୍ମାର ଶାନ୍ତିପାଇଁ ଈଶ୍ୱରଙ୍କ ନିକଟରେ ମୌନ ପ୍ରାର୍ଥନା କରିଛି । ସେ ଫତେପୁର ସରସଣ୍ଡ ଜମିଦାରୀ ତଥା ଜମିଦାରଙ୍କର ନୀରବ ସାକ୍ଷୀ, ମୂକ ଇତିହାସ । ସେ ନୀରବ, ସେ ଶାନ୍ତ, ସେ ମୂକ । ସେ ସୁଖ ଦୁଃଖ, ହସ କାନ୍ଦ, ଜନ୍ମ ମୃତ୍ୟୁର ବହୁତ ଊର୍ଦ୍ଧ୍ୱରେ । ସେ ମୂକ ଭଗବାନ ନୁହଁ, ସେ ମୂକ ମଣିଷ । ସୃଷ୍ଟି ମଧ୍ୟରେ ସ୍ରଷ୍ଟାର ଆତ୍ମପ୍ରକାଶ ଯଦି ସମ୍ଭବ ହୁଏ, ତା'ହେଲେ ସେ ସ୍ୱୟଂ ଛମାଣ ଆଠଗୁଣ୍ଠ ଉପନ୍ୟାସର ଅମର କଥାଶିଳ୍ପୀ ବ୍ୟାସକବି ଫକୀରମୋହନ ସେନାପତି କି ? ? ?

—*—

# ॥ ରଂଜନ ରଶ୍ମି ॥

**ଶ୍ରୀ ଜଗନ୍ନାଥ ଶା,** ଅଧ୍ୟାପକ କେନ୍ଦୁଝର କଲେଜ

ଯେଉଁ ବୈଜ୍ଞାନିକମାନଙ୍କ ଗୁରୁତ୍ୱପୂର୍ଣ୍ଣ ଅବଦାନକୁ ମାନବ ସମାଜ କେବେହେଲେ ଭୁଲି ପାରିବ ନାହିଁ, ସେମାନଙ୍କ ମଧ୍ୟରେ X-Ray ବା ରଞ୍ଜନରଶ୍ମିର ଆବିଷ୍କର୍ତ୍ତା ଅଧ୍ୟାପକ ରଞ୍ଜନ ଅନ୍ୟତମ । ବୈଜ୍ଞାନିକ ରଞ୍ଜନ ୧୮୪୫ ମସିହା ମାର୍ଚ୍ଚ ମାସ ୨୭ ତାରିଖରେ ପ୍ରୁସିଆରେ ଜନ୍ମଗ୍ରହଣ କରିଥିଲେ । ହଲାଣ୍ଡରେ କିଛୁବର୍ଷ ଅଧ୍ୟୟନ କଲାପରେ ସେ ସୁଇଜରଲାଣ୍ଡର ଜୁରିଚ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ କରିଥିଲେ । ପଦାର୍ଥ ବିଦ୍ୟାରେ ଡକ୍ଟରେଟ୍ ଡିଗ୍ରୀ ପାଇବା ପରେ ଜର୍ମାନୀର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ଓ ଗବେଷଣା କରିଥିଲେ । ୧୮୮୫ ମସିହାରେ ରଞ୍ଜନ ଉର୍ଜବର୍ଗ ବିଶ୍ୱବିଦ୍ୟାଳୟରେ ପଦାର୍ଥବିଦ୍ୟା ବିଭାଗର ଅଧ୍ୟାପକ ରୂପେ ଯୋଗ ଦେଇଥିଲେ ।

ବିଖ୍ୟାତ ବୈଜ୍ଞାନିକ ମାଇକେଲ୍ ଫାରାଡେଙ୍କ ଗବେଷଣାକୁ ଅନୁସରଣ କରି ବ୍ରିଟିଶ୍ ବୈଜ୍ଞାନିକ ଉଇଲିୟମ୍ କ୍ରୁକ୍ସ ବିଭିନ୍ନ ଆକାରର କାଚ ଟିଉବ୍ ନିର୍ମାଣ କରାଇ ଉନ୍ନତ ଧରଣର ବାୟୁ ନିଷ୍କାସନ ଯନ୍ତ୍ର ସାହାଯ୍ୟରେ କାଚ ଟିଉବ୍‌ରୁ ବାୟୁ ବାହାର କରି, ନିମ୍ନଚାପ ସୃଷ୍ଟି କରି, ତନ୍ମଧ୍ୟରେ ବିଦ୍ୟୁତ୍ ସ୍ରୋତ ପ୍ରବାହର ଫଳାଫଳ ଅଧ୍ୟୟନ କରୁଥିଲେ । କାଚ ଟିଉବ୍‌ର ଦୁଇପାଖରେ ଦୁଇଟି ଇଲେକ୍‌ଟ୍ରୋଡ଼୍ ସଂଯୁକ୍ତ କରାଯାଇ ଯେତେବେଳେ ଏଇ ଦୁଇଟି ଇଲେକ୍‌ଟ୍ରୋଡ଼୍ ମଧ୍ୟରେ ଅତି ଉଚ୍ଚ ବିଦ୍ୟୁତ-ଚାପ ପାର୍ଥକ୍ୟର ସୂତ୍ରପାତ କରାଗଲା ସେତେବେଳେ ଋଣାତ୍ମକ ଇଲେକ୍‌ଟ୍ରୋଡ଼ରୁ ( negative electrode ) ଏକ ରଶ୍ମି ନିର୍ଗତ ହେବାର ଦେଖାଗଲା । ଏଇ ରଶ୍ମି ଚୁମ୍ବକ ଓ ଆବେଶଯୁକ୍ତ ଫଳକର ଉପସ୍ଥିତିରେ ପ୍ରଭାବିତ ହେବା କଥା ପରୀକ୍ଷାରୁ ଜଣାଗଲା । ଯେତେବେଳେ ଏଇ ରଶ୍ମି କାଚ ପାତ୍ରର କାନ୍ଥରେ ଧକ୍‌କା ପାଇଲା, ସେତେବେଳେ ସେଇ ସ୍ଥାନଟି ଏକ ସବୁଜ ବର୍ଣ୍ଣର ଆଲୋକଦ୍ୱାରା ଉଦ୍‌ଭାସିତ ହେବାର ଦେଖାଗଲା ।

ବିଶ୍ୱବିଦ୍ୟାଳୟର ଗବେଷଣାଗାରରେ ରଞ୍ଜନ କ୍ରୁକ୍ସଙ୍କ ଟିଉବ୍ ସାହାଯ୍ୟରେ ଗବେଷଣା କରୁଥିଲେ । ଦିନକର କଥା— ଅନ୍ଧାର ଘରେ କ୍ରୁକ୍‌ସ ଟିଉବ୍‌କୁ ଖଣ୍ଡେ କଳା କାର୍ଡ଼ବୋର୍ଡ଼୍-ଦ୍ୱାରା ଆବୃତ କରି ଟିଉବ୍‌ରେ ବିଦ୍ୟୁତ୍ ସ୍ରୋତ ପରିଚାଳିତ କରାଇଲା ପରେ ରଞ୍ଜନ ଦେଖିଲେ ଯେ ନିକଟରେ ଥିବା ବେରିଅମ୍-ପ୍ଲାଟିନମ୍ ଯୌଗିକ ପଦାର୍ଥବୋଳା ଖଣ୍ଡେ କାଗଜ ଉଦ୍‌ଭାସିତ ହେଉଛି । ଆଶ୍ଚର୍ଯ୍ୟ କଥା—ବାୟୁ ନିଷ୍କାସିତ କାଚ ଟିଉବ୍‌ରେ ବିଦ୍ୟୁତ୍ ସ୍ରୋତର ପ୍ରବାହଦ୍ୱାରା ଉଦ୍‌ଭବ ରଶ୍ମିକୁ କାଥୋଡ଼୍ ରଶ୍ମି ବୋଲିଯାଏ । କାଥୋଡ଼୍ ରଶ୍ମି କାଚକାନ୍ଥ ଓ କାଗଜ ଅତିକ୍ରମ କରିବା ସମ୍ଭବ ନୁହେଁ । ତେଣୁ ବେରିୟମ୍-ପ୍ଲାଟିନମ୍ ଯୌଗିକ ପଦାର୍ଥ ବୋଳା ଉପରୋକ୍ତ କାଗଜ ଖଣ୍ଡିକ ଅନ୍ୟ କୌଣସି ରଶ୍ମିଦ୍ୱାରା ଉଦ୍‌ଭାସିତ ହେଉଛି ବୋଲି ରଞ୍ଜନଙ୍କର ଧାରଣା ହେଲା । ଏ ହେଲା ୧୮୯୫ ମସିହାର କଥା । ଏଇ ଅଜଣା ରଶ୍ମି କେବଳ ଯେ କାଗଜ ଓ କାଚ ମଧ୍ୟଦେଇ ଗତି କରିବାକୁ କ୍ଷମ ତା' ନୁହେଁ, ଅନ୍ୟାନ୍ୟ ପରୀକ୍ଷାରୁ ଜଣାଗଲା ଯେ ଏଇ ରଶ୍ମି ମଧ୍ୟ ଆଲୁମିନିୟମ ଓ ରବର ଆଦି ବହୁ ପଦାର୍ଥ ମଧ୍ୟଦେଇ ଗତି କରିପାରେ । ଖୋଳ ମଧ୍ୟରେ ରଖାଯାଇଥିବା ଫଟୋଗ୍ରାଫିକ୍ ପ୍ଲେଟ୍‌ଗୁଡ଼ିକ ମଧ୍ୟ ଏହି ରଶ୍ମି-ଦ୍ୱାରା ପ୍ରଭାବିତ ହୁଅନ୍ତି । ଏଇ ଅଜଣା ରଶ୍ମିର ନାମ ରଖିଲେ X-Ray ।

କାଥୋଡ଼୍ ରଶ୍ମି ହେଉଚି ଇଲେକ୍‌ଟ୍ରନ୍ ସ୍ରୋତ । ଆମେ ଜାଣୁ ଯେ ପ୍ରତ୍ୟେକ ପଦାର୍ଥ କେତେକ କ୍ଷୁଦ୍ରାତିକ୍ଷୁଦ୍ର ପରମାଣୁରେ ଗଠିତ । ସେହି ପରମାଣୁର ଗଠନ ସମ୍ପର୍କରେ

ବହୁ ତଥ୍ୟ ପରିବେଶିତ ହୋଇ ସାରିଚି । ଏକ ସମର୍ଥିତ ମତ ଅନୁସାରେ ପରମାଣୁ ହେଉଚି ଗୋଟିଏ କ୍ଷୁଦ୍ର ସୌରପରିବାର ସଦୃଶ । ଆମର ସୌର ପରିବାରରେ ଯେପରି ସୂର୍ଯ୍ୟ କେନ୍ଦ୍ରରେ ଅଛି ଏବଂ ତା' ଚତୁର୍ଦ୍ଦିଗରେ ଗ୍ରହମାନେ ବିଭିନ୍ନ କକ୍ଷରେ ଘୂରୁଥାନ୍ତି, ଠିକ୍ ସେହିପରି ପରମାଣୁର କେନ୍ଦ୍ରଦେଶକୁ ନାଭି କହନ୍ତି ଏବଂ ନାଭି ଚତୁର୍ଦ୍ଦିଗରେ କେତେକ କ୍ଷୁଦ୍ରାତିକ୍ଷୁଦ୍ର ଋଣାତ୍ମକ ତଡ଼ିତ୍‌ଯୁକ୍ତ କଣିକା ଇଲେକ୍‌ଟ୍ରନ ବିଭିନ୍ନ କକ୍ଷରେ ଘୂରୁଥାନ୍ତି । ନାଭିରେ ତଡ଼ିତ୍‌ବିହୀନ ନିଉଟ୍ରନ ଓ ଧନାତ୍ମକ ତଡ଼ିତ୍‌ଯୁକ୍ତ କଣିକା ପ୍ରୋଟନ୍‌ଗୁଡ଼ିକ ଅତି ନିବିଡ଼ ସମାବେଶରେ ଥାନ୍ତି । ସାଧାରଣ ଅବସ୍ଥାରେ କୌଣସି ଏକ ନିର୍ଦ୍ଦିଷ୍ଟ ମୌଳିକ ପଦାର୍ଥର ପରମାଣୁର ନାଭିରେ ଥିବା ଧନାତ୍ମକ ତଡ଼ିତ୍‌ଯୁକ୍ତ କଣିକାର (ପ୍ରୋଟନ) ସଂଖ୍ୟା ନାଭି ଚତୁର୍ଦ୍ଦିଗରେ ଘୂରୁଥିବା ଋଣାତ୍ମକ କଣିକାର [ଇଲେକ୍‌ଟ୍ରନ୍] ସଂଖ୍ୟା ସଙ୍ଗେ ସମାନ । ଏ ବିଷୟରେ ସବିଶେଷ ଆଲୋଚନା ଏ ପ୍ରବନ୍ଧର ପରିସର ବାହାରେ । ସାଧାରଣ ଅବସ୍ଥାରେ ଇଲେକ୍‌ଟ୍ରନ୍ ଯେଉଁ କକ୍ଷରେ ଘୂରୁଥାଏ ଯଦି ଉପଯୁକ୍ତ ପରିମାଣରେ ଶକ୍ତି ଯୋଗାଇ ଦିଆଯାଏ, ତେବେ ଇଲେକ୍‌ଟ୍ରନ୍ ସେଇ କକ୍ଷରୁ ଧକ୍‌କା ଖାଇ ଅନ୍ୟ ଏକ ଅଧିକ ଶକ୍ତି ସମ୍ପନ୍ନ କକ୍ଷକୁ ଲମ୍ଫ ପ୍ରଦାନ କରେ । କିନ୍ତୁ ପର ମୁହୂର୍ତ୍ତରେ ସେ ପୂର୍ବ କକ୍ଷକୁ ପ୍ରତ୍ୟାବର୍ତ୍ତନ କରେ । ଇଲେକ୍‌ଟ୍ରନ୍‌ର ଏଇ ଲମ୍ଫ ପ୍ରଦାନ ଓ ପୂର୍ବକକ୍ଷକୁ ପ୍ରତ୍ୟାବର୍ତ୍ତନହିଁ ବିକିରଣର ସୂତ୍ରପାତ କରିଥାଏ । ନାଭିର ଦୂରରେ ଥିବା କକ୍ଷମାନଙ୍କରେ ଏପରି ଘଟିଲେ ଆଲୋକ ରଶ୍ମି ନିର୍ଗତ ହୁଏ, କିନ୍ତୁ ନିକଟତମ କକ୍ଷରେ ଏପରି ଘଟିଲେ x-rays ଉତ୍ପନ୍ନ ହୁଏ । ଏଇ ହେଲା x-rays ଉତ୍ପନ୍ନର ସଂକ୍ଷିପ୍ତ ଆଲୋଚନା ।

ରଣ୍ଟ୍‌ଜେନଙ୍କ ପରୀକ୍ଷାରେ କାଚ ଟିଉବ ମଧ୍ୟରେ ଜାତ ହେଉଥିବା କାଥୋଡ଼ ରଶ୍ମି ଯେତେବେଳେ ଧନାତ୍ମକ ଧାତବ ଇଲେକ୍‌ଟ୍ରୋଡ଼ ଉପରେ ପତିତ ହେଉଥିଲା, ସେତେବେଳେ ଉକ୍ତ ଧାତବ ଫଳକର ପରମାଣୁର ଅନ୍ତର୍ଦ୍ଦେଶରେ ଉପରୋକ୍ତ ପ୍ରକ୍ରିୟା ଘଟିବା ହେତୁ x-ray ଜାତ ହେଉଥିଲା ।

ରଣ୍ଟ୍‌ଜେନଙ୍କ ନାମାନୁସାରେ ଏଇ ରଶ୍ମିର ନାମ ରଖାଗଲା ରଣ୍ଟ୍‌ଜେନରଶ୍ମି । ଏଇ ରଶ୍ମି ଆବିଷ୍କାର ପରେ ରଣ୍ଟ୍‌ଜେନ ୧୮୯୬ ମସିହାରେ ରୟାଲ ସୋସାଇଟିର ରମ୍‌ଫୋର୍ଡ଼ ପଦକ ଲାଭ କରିଥିଲେ । ୧୯୦୧ ମସିହାରେ ତାଙ୍କର ଉଚ୍ଚକୋଟୀର ଗବେଷଣା ପାଇଁ ସେ ପୃଥିବୀର ସର୍ବଶ୍ରେଷ୍ଠ ପୁରସ୍କାର ନୋବେଲ ପୁରସ୍କାର ଲାଭ କରିଥିଲେ ।

ଚିକିତ୍ସା ବିଜ୍ଞାନରେ ରଣ୍ଟ୍‌ଜେନ ରଶ୍ମିର ବ୍ୟବହାର ଖୁବ୍ ବେଶି । ମାଂସ ମଧ୍ୟଦେଇ ରଣ୍ଟ୍‌ଜେନ ରଶ୍ମି ଗତି କରୁଥିବା ହେତୁ ହାଡ଼ର ଅବସ୍ଥା ପରୀକ୍ଷା କରିବାରେ ସାହାଯ୍ୟ କରେ । ସମୟେ ସମୟେ ଏଇ ରଶ୍ମି କ୍ୟାନ୍‌ସର ଆଦି ରୋଗରୁ ଆରୋଗ୍ୟ ଲାଭ କରିବା ପାଇଁ ବ୍ୟବହୃତ ହୋଇଥାଏ । ଅତ୍ୟଧିକ ପରିମାଣର ରଣ୍ଟ୍‌ଜେନ ରଶ୍ମି ଶରୀର ଉପରେ ପଡ଼ିଲେ ତାହା ଶରୀରର କ୍ଷତି ସାଧନ କରିବାର ସମ୍ଭାବନା ରହିଛି । ଶିଳ୍ପ ସଂସ୍ଥାମାନଙ୍କରେ ଥିବା ଜଟିଳ କଳକବ୍‌ଜାମାନଙ୍କର ଦୋଷ ଦୁର୍ବଳତାର ସନ୍ଧାନ ଏଇ ରଶ୍ମି ସାହାଯ୍ୟରେ ମିଳିଥାଏ । ଏହା ବ୍ୟତୀତ ଆଧୁନିକ ବିଜ୍ଞାନର ବିଭିନ୍ନ ବିଭାଗମାନଙ୍କରେ ହେଉଥିବା ଗବେଷଣା-ମାନଙ୍କରେ ରଣ୍ଟ୍‌ଜେନ ରଶ୍ମିର ବ୍ୟବହାର ବହୁଳଭାବେ ଦେଖାଯାଏ । ରଣ୍ଟ୍‌ଜେନ ଇହଧାମ ଛାଡ଼ି ଚାଲିଗଲେଣି ସତ; କିନ୍ତୁ ତାଙ୍କ ଆବିଷ୍କୃତ ରଣ୍ଟ୍‌ଜେନ ରଶ୍ମିକୁ ମାନବ ସମାଜ କେବେ ଭୁଲି ପାରିବ ନାହିଁ । ରଣ୍ଟ୍‌ଜେନ ରଶ୍ମି ପାଇଁ ବୈଜ୍ଞାନିକ ରଣ୍ଟ୍‌ଜେନ ଚିରସ୍ମରଣୀୟ ହୋଇ ରହିବେ ।

—*—



ଘରି ଭଲ ଲାଗୁଛି ପାପା

ଏଇ ମଣିରଜ ବିସ୍କୁଟ-ଲଜେଞ୍ଜ୍
ମୋ ପାଇଁ ଆଉ ଆଣିବ













# ॥ ସମାଧାନ ॥

**ଶ୍ରୀ ହରିହର ପଣ୍ଡା, (ଭୁବନେଶ୍ୱର)**

ପ୍ରେମମୟୀ ଦେବୀ ଖୁବ୍ ଉତ୍ତେଜିତ ହୋଇ ଉଠିଥିଲେ, ସାହିପଡ଼ିଶା, ବନ୍ଧୁବାନ୍ଧବ ବୁଝାଇ ବୁଝାଇ ଥକିଲେ । ନିଜର ଖିଷ୍ଟ ପ୍ରତିଜ୍ଞାରେ ତଥାପି ସେ ଅଟଳ ।

ସେ ନିଜର ଦାବୀ ସାବ୍ୟସ୍ତ କରିବେ ନ୍ୟାୟ ଅଦାଲତରେ । ସେ ସ୍ଥାବର ଅସ୍ଥାବର ସମ୍ପତ୍ତି ସବୁଥିରୁ ଭାଗନେବେ ।

ଭାଗ ! ସୁଶାନ୍ତର ଓଷ୍ଠାଧାରରେ ବିଷାଦ ଭରା ହସ ଟିକିଏ । ଧନ, ସମ୍ପତ୍ତି, କଳ, କାରଖାନା ଆଉ ଏଇ ବିରାଟ ଅଟ୍ଟାଳିକା ସବୁ ତ ବୋଉର । ଏଥିରେ ଭାଗର ପ୍ରଶ୍ନ କାହିଁ ? ବିସ୍ମୟରେ ସୁଶାନ୍ତର ଆର୍ଦ୍ର ନୟନ ଦୁଇଟି ଅର୍ଦ୍ଧ ନିମିଳିତ ହୋଇ ପଡ଼ିଲା । କିନ୍ତୁ ପ୍ରେମମୟୀ ଦେବୀ ଗୋଟାଏ ଚୂଡ଼ାନ୍ତ ନିଷ୍ପତ୍ତି ନେଇଛନ୍ତି । ନୀଳକଂଠ ଆଶ୍ଚର୍ଯ୍ୟଙ୍କୁ ବିବାହ କରି ସେ ଯେଉଁ ଅସୀମ କରୁଣାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ, ତାର ପ୍ରାୟଶ୍ଚିତ ତାଙ୍କୁହିଁ କରିବାକୁ ପଡ଼ିବ । ଅମୃତସରର ସୁଗାୟିକା ପ୍ରେମ୍ ଅରୋରାର ଟିକିଏ ସ୍ମିତହାସ୍ୟ ପଞ୍ଚନଦୀ ବକ୍ଷରେ ଅଗଣିତ ଉତ୍ତାଳ ତରଙ୍ଗ ସୃଷ୍ଟି କରିଥିଲା । ତଥାପି ପୂଜ୍ୟଗୁରୁ ପଣ୍ଡିତ ରାମାନନ୍ଦଙ୍କର ଆଦେଶରେ ଉଲ୍ଲଂଘନ କରି ପାରିଲେନି । ଶ୍ରୀକ୍ଷେତ୍ର ପୁରୀର ନୈଷ୍ଠିକ ବ୍ରାହ୍ମଣ ଯୁବକ ନୀଳକଂଠ ମହାତ୍ମାଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରାଣିତ ଥିଲେ, ସଂକୀର୍ଣ୍ଣ ପ୍ରାଦେଶିକତା, ଘୃଣ୍ୟ ଜାତିଭେଦର ଶୃଂଖଳ ଛିନ୍ନକରି ପଞ୍ଜାବ ଲଳନା ପ୍ରେମ୍ ଅରୋରାଙ୍କୁ ସେ ଗ୍ରହଣ କରିଥିଲେ ହସ ହସ ପ୍ରାଣରେ । ସମାଜର ତୀବ୍ର ପ୍ରତିରୋଧ ତାଙ୍କର ସଂକଳ୍ପର ଗଣ୍ଡି ସ୍ପର୍ଶ କରିପାରି ନ ଥିଲା । ତଥାପି ପ୍ରେମମୟୀ ଦେବୀ ଗର୍ବ କରନ୍ତି-ସେ ଦୟାକରି ବିବାହ କରିଥିଲେ ସୁଶାନ୍ତର ପିତାଙ୍କୁ । ଅତୃପ୍ତ ଜୀବନରେ ଅପରିମାଣ କ୍ଷୋଭର ଜ୍ୱଳନ ଉଦ୍ବେଗର ଶିହରଣ । ସେ ଖୁବ୍ ଚେଷ୍ଟା କରିଥିଲେ ନୀଳକଂଠଙ୍କର ଜୀବନରେ ଉଗ୍ର ଆଧୁନିକତାର ପ୍ରବାହ ସୃଷ୍ଟି କରିବାକୁ, ଉତ୍କଳୀୟ ସଂସ୍କୃତିର ଭସ୍ମକଣିକା ଉପରେ ପଞ୍ଜାବର ପ୍ରଚଣ୍ଡ ପବନ ବୁହାଇ ଦେବାକୁ । ତଥାପି ସବୁ ଝଡ଼, ଝଞ୍ଜା ବନ୍ୟା ସତ୍ତ୍ୱେ ନୂଆଁଣିଆ ବେତଗଛଟି ପରି ନୀଳକଂଠ ହାରି ନାହାନ୍ତି । ପ୍ରତିବାଦ ବି କଣାଇ ନାହାନ୍ତି । ନୀରବରେ ସବୁ ସହିଛନ୍ତି । ହାରିଛନ୍ତି ପ୍ରେମମୟୀ ଦେବୀ, ନୀଳକଂଠଙ୍କର ନୀରବ ଜୀବନର ଅବସାନ ଘଟିଛି । ତାଙ୍କର ଆଦର୍ଶ ଭାରତର ଗଗନବକ୍ଷରେ ହିରଙ୍ଗ ପତାକାର ରୂପ ନେଇଛି ।

ସୁଶାନ୍ତ ସୁତନେ ନୀଳକଂଠଙ୍କର ନିଃସ୍ୱ ଜୀବନରେ ସୁଶାନ୍ତ ହିଁ ଏକମାତ୍ର ଅମୂଲ୍ୟ ସମ୍ପତ୍ତି । ଜୀବନର ପ୍ରଦୋଷରେ ପ୍ରେମମୟୀଙ୍କର ଅଶ୍ରୁବୋଳା ନୟନର ଉପାନ୍ତରୁ ବାରିଧାରା ପୋଛି ଦେଇଥିଲେ ନୀଳକଂଠ । ସୁଶାନ୍ତର ଥର ଥର ହାତ ଦୁଇଟି ଟେକି ଦେଇଥିଲେ ପ୍ରେମମୟୀଙ୍କର କରକମଳରେ । ପ୍ରେମମୟୀ ଦେବୀ ତଥାପି ଆଲୋକର ସନ୍ଧାନ ପାଇଲେ । ସୁଶାନ୍ତ ତାଙ୍କର ଅସହାୟ ଜୀବନର ସର୍ବସ୍ୱ ।

"ବୋଉ ସବୁ ସମ୍ପତ୍ତି ତ ଭାଗ ହେବ । ହେଲେ ପ୍ରଥମେ ତୋ ଜୀବନର ସବୁଠୁ ବଡ଼ ସମ୍ପତ୍ତି ସୁଶାନ୍ତକୁ ଭାଗ କର ।" ସୁଶାନ୍ତର ସ୍ଥିର ଚକ୍ଷୁରେ ଅଶ୍ରୁର ପ୍ଲାବନ ।

"ଆହାଃ, ବୋଉ ! ......" ତାଚ୍ଛଲ୍ୟରେ ମୁହଁରୁ ବାହାରି ପଡ଼ିଲା । ପ୍ରେମମୟୀ ଦେବୀ ନିଜକୁ ଟିକିଏ ସମ୍ଭାଳି କରିନେଲେ । ଖୁବ୍ ଚେଷ୍ଟା କରିଛନ୍ତି 'ମମି' ନହେଲେ ଅନ୍ତତଃ ପକ୍ଷେ 'ମା' ଡାକଟା ଶିଖାଇବାକୁ । କିନ୍ତୁ ସୁଦୀର୍ଘ ବର୍ଷର ପ୍ରଚେଷ୍ଟା ପଣ୍ଡ ହୋଇଛି ।

'ବୋଉ' ଡାକଟା ସୁଶାନ୍ତଙ୍କୁ ଖୁବ ଭଲ ଲାଗେ । ସତେ ଯେପରି ଏଇ ଦୁଇଟା ଅକ୍ଷର ଭିତରେ କୁହୁକ ଭରି ରହିଛି । ସ୍ନେହ, ମମତା, କରୁଣାର ଫଲ୍‌ଗୁ ଲୁଚି ରହିଛି, ପ୍ରେମମୟୀ ଦେବୀ କିନ୍ତୁ ଦୁଃଖ କରନ୍ତି ।

× × ×

ସଞ୍ଜୟ ଫେରିନି । ପ୍ରେମମୟୀଙ୍କର ଦୂର ସମ୍ପର୍କୀୟ । ପଞ୍ଜାବର ଏକ ଭଉଣୀ ପାଖରେ ପ୍ରେମମୟୀଙ୍କର ନୂଆ ଘରଡ଼ିଆର ଖୁଲିଛି । ଶେଷ ଜୀବନ ସେଇଠି କଟିବ । ଲୁଧିଆନାରେ ସେ ବନ୍ଦୀ । ସୁଶାନ୍ତ ହସିଛି । ଭାରି ଚଗଲା ପିଲାଟା ସତେ । ବୋଉ ପାଖରେ ସବୁଦିନେ ରହନ୍ତା କି, ମଣିଷ ଟିକିଏ ଶାନ୍ତିରେ ନିଶ୍ୱାସ ମାରି ପାରନ୍ତା । କିନ୍ତୁ ଜ୍ୟୋତ୍ସ୍ନାଙ୍କର ମୁଖଶ୍ରୀ ନିଷ୍ପ୍ରଭ ହୋଇ ଉଠିଛି । ଠେଣା ଠେଣା ଆଖି ଦୁଇଟିରେ ଦୁଇବିନ୍ଦୁ ଅଶ୍ରୁର ମୁକ୍ତା, ପ୍ରେମମୟୀ ଦେବୀ ଚରମ ପ୍ରସ୍ତାବ ଦେଇଛନ୍ତି । ଲୁଧିଆନାର ନବନିର୍ମିତ ପ୍ରାସାଦକୁ ସୁସଜ୍ଜିତ କରିବାପାଇଁ ଦଶ ସହସ୍ର ମୁଦ୍ରା ସୁଶାନ୍ତକୁ ଦେବାକୁ ପଡ଼ିବ, ନଚେତ୍ ସଞ୍ଜୟ ଆଉ ଫେରିବନି ! ଜ୍ୟୋତ୍ସ୍ନା ମୂର୍ଚ୍ଛିତା । ମା'ର ହୃଦୟ ଭାଙ୍ଗି ପଡ଼ୁଛି । ଚମ୍ବଲ ଉପତ୍ୟକାର ରହସ୍ୟମୟୀ କାହାଣୀର ପର୍ଦ୍ଦା ସତେ ଯେପରି ଖୋଲି ଯାଉଛି ଜ୍ୟୋତ୍ସ୍ନା ନିସ୍ଥା, ଶଂକିତା । ସୁଶାନ୍ତ ତଥାପି ହସିଛି, ବାଘ ଶିଶୁଟି ପରି ସେ ବୋଉର ପ୍ରସ୍ତାବ ଗ୍ରହଣ କରିଛି ହସି । ହସି ବ୍ୟବସାୟ ମାନ୍ଦା ପଡ଼ିଥିବାରୁ ସେ ବହୁତ ଋଣଗ୍ରସ୍ତ ହୋଇଛି । ସତ ତଥାପି ବୋଉକୁ ସୁଖୀ କରାଇବା ପାଇଁ ସେ ମଧ୍ୟ କାରଖାନା ବନ୍ଧୀ କରିପାରେ । କିନ୍ତୁ ପ୍ରେମମୟୀ ଦେବୀ ଏତିକିରେ ସନ୍ତୁଷ୍ଟ ନୁହନ୍ତି । ତାଙ୍କର ଦାବୀ ଏକଲକ୍ଷ ଟଙ୍କା । ନୀଳକଣ୍ଠଙ୍କର ମୃତ୍ୟୁ ପରେ ସେ ସୁଶାନ୍ତକୁ ମଣିଷ କରିଛନ୍ତି, ପାଠ ପଢ଼ାଇ ସୁଯୋଗ୍ୟ କରିଛନ୍ତି, ତାର ବିବାହ ମଧ୍ୟ ସଂପୂର୍ଣ୍ଣ କରିଛନ୍ତି । ଏ ସବୁର ମୂଲ୍ୟ ସ୍ୱରୂପ ସେ ଦାବୀ କରନ୍ତି ଏକଲକ୍ଷ ଟଙ୍କା । ସୁଶାନ୍ତର ସୌମ୍ୟ ବଦନରେ ଘନଘଟାର ଛାଇ । ଉନ୍ନତ କପୋଳରେ ସ୍ୱେଦବିନ୍ଦୁର ଝଲକ । ହୃଦୟରେ ଶତ ବୃଶ୍ଚିକର ଦଂଶନ । ମା'ର ମମତାର ମୂଲ୍ୟ କ'ଣ ମାତ୍ର ଏକଲକ୍ଷ ମୁଦ୍ରା ? ପୁଅକୁ ପାଠ ପଢ଼ାଇ ମଣିଷ କରିବାକୁ ଯଦି ମା' ମୂଲ୍ୟ ଦାବୀକରେ, ଦଶ ମାସ ଗର୍ଭଧାରଣ କରି, ପ୍ରସବ ବେଦନା ସହ୍ୟକରି ସନ୍ତାନ ଜନ୍ମ କରିବା ପାଇଁ ସେ ଯେ କ୍ଷତି ପୂରଣ ଦାବୀ ନ କରିବ ବା କାହିଁକି ? ନିଜ ରକ୍ତରେ ଗଢ଼ା ଶିଶୁଟିକୁ ବକ୍ଷରୁ ଦୁଗ୍ଧ ଖୁଆଇ ବଞ୍ଚାଇ ରଖିବା ପାଇଁ ମା' କ'ଣ ମଜୁରୀ ଦାବୀ କରିବ ? ହୁଏ ତ ପ୍ରେମମୟୀ ଦେବୀ ଯୁକ୍ତି କରିବେ— ସେ ନୀଳକଣ୍ଠଙ୍କୁ ନରକଦଣ୍ଡରୁ ତ୍ରାଣ କରିବା ପାଇଁ ଦୟାକରି ପୁତ୍ର ସନ୍ତାନଟିଏ ଗର୍ଭରେ ଧାରଣ କଲେ ! ସୁଶାନ୍ତ ବେଶୀ କିଛି ଭାବି ପାରିଲାନି । ତାର ମୁଣ୍ଡ ଭିତରେ ଅଗଣିତ ବିଦ୍ୟୁତ୍ ସ୍ଫୁଲିଙ୍ଗ ବିଚ୍ଛୁରିତ ହୋଇ-ଉଠିଲା । ସେ ଚିତ୍କାର କରି ଉଠିଲା ହଁ ବୋଉ, ତୋର କଥା ହିଁ ହେବ—"ନିଶ୍ଚୟ ହେବ ବୋଉ, ନିଶ୍ଚୟ ହେବ........" । ଜ୍ୟୋତ୍ସ୍ନାର ବାହୁବନ୍ଧନରେ ସୁଶାନ୍ତ ସଂଜ୍ଞାହୀନ ।

× × ×

କଳିଙ୍ଗ ଲୁଗାକଳର ମାଲିକ ସୁଶାନ୍ତର ବିରାଟ ସୌଧ । ଏଇ ସେଇ ସୌଖୀନ ବୈଠକଖାନା ପ୍ରେମମୟୀଙ୍କ ନିର୍ଦ୍ଦେଶରେ ମଧ୍ୟସ୍ଥଳରେ ପ୍ରାଚୀର ଗଢ଼ି ଉଠୁଛି । ଟିକିଏ ଦୂରରେ ଏକ ବିରାଟ ତୈଳ-ଚିତ୍ର ଉପରେ ଉଦାସ ଦୃଷ୍ଟି ନିକ୍ଷେପ କରି ସୁଶାନ୍ତ ସ୍ଥାଣୁ ପାଲଟିଛି । "ବୋଉ"ର ହଠାତ୍ ଗୋଟାଏ ବିକଟ ଶବ୍ଦରେ ପ୍ରାସାଦଟି ପ୍ରକମ୍ପିତ ହୋଇ ଉଠିଲା । ଗଢ଼ିଉଠୁଥିବା ସମଗ୍ର ପ୍ରାଚୀରଟି ଧସି ଯାଇଛି । ଧ୍ୱଂସ ସ୍ତୂପର ଅନ୍ତରାଳରେ ସୁଶାନ୍ତର ବହୁ ଚେଷ୍ଟାପରେ ପ୍ରାଣହୀନ ଶରୀରଟି ଉଦ୍ଧାର କରାଯାଇଛି । ନିକଟରେ ନୀଳକଣ୍ଠଙ୍କର ସେଇ ପୁରୁଣା ତୈଳ ଚିତ୍ରଟି ଶତ-ଖଣ୍ଡିତ । ପ୍ରେମମୟୀ ମୂର୍ଚ୍ଛିତା—ଚିର ଈପ୍ସିତ ଦାବୀ ତାଙ୍କର ବିରାଟ ଶୂନ୍ୟତାରେ ବିଲୟ ଲଭିଛି— ।

—*—

# କେଉଁ ଏକ ଆଦିବାସୀ ସ୍କୁଲର ମାଷ୍ଟ୍ରାଣୀ

ଶ୍ରୀ ବୈଦ୍ୟନାଥ ଖିଲାର, ଢେଙ୍କାନାଳ

ମୁଁ ଜାଣିନି ଅକସ୍ମାତ ତୁମେ କେବେ ଚାକରି କଲଣି
ମୁଁ ଶୁଣିନି ଦୁର୍ଭାଗ୍ୟ ମୋ ଛାତ୍ରୀ ଥିଲ ହେଲଣି ମାଷ୍ଟ୍ରାଣୀ ।
( ଯଦିଓ ଅପେକ୍ଷା ମୋର ଜାଣିବାଟା ତୁମ ସୁଖ ଦୁଃଖର କାରଣ)

ହାଇସ୍କୁଲ ବାରଣ୍ଡା ଓ ଲାଲ୍‌ଫ୍ରକ୍ ପଚ୍ଛପଟ ଅରଣ୍ୟର ମାଳ
ତୁମେ ପୁଣି ବୁଲୁଥିଲ ସରୁଅଣ୍ଟା ପାତଳ ଦେହରେ
ମୁଁ ଅବା ରଗାଉଥିଲି କବି ତୋତେ ସାମ୍ନାସାମ୍ନି ଶ୍ରେଷ୍ଠ ଶକ୍ତି ଏକ
ତୁମେ ଯେଣୁ ଆଣୁଥିଲ ହାତେ ଯାକ ମୋଟା ମୋଟା ପୁସ୍ତକ ଅନେକ ।
( ଜାଣିଛି ମୁଁ ଚିଡୁଥିଲ ମୋ ଉପରେ ବିନା ରାଗିବାରେ )

ରାତି ତୁମ କଟୁଥିଲା ଉଜାଗରେ ଘୋଷି ଅନେକ ଭୂଗୋଳ
ସର୍ବାଧିକ ନମ୍ବର ବି ରଖିଥିଲ ସେଇଟା ତୁମ ପରିଶ୍ରମ ଫଳ ।

ଆଜ ମୁଁ ଆଶ୍ଚର୍ଯ୍ୟ ହୁଏ ସେ କୌଣସି ଏକ
ଯାଦୁଖେଳ ସନ୍ଦର୍ଶନେ ସ୍ତମ୍ଭୀଭୂତ ବାଳକାଟି ପରି
ହାତରେ ଭୂଗୋଳ ବହି, ପୁଣି ତୁମେ ଭୂଗୋଳ ମାଷ୍ଟ୍ରାଣୀ
ଶିକ୍ଷାଦାନେ ନିଜ ସୁଖ ସବୁତକ ପାଶୋରି ହେଲଣି ।

ଛାତ୍ରୀ ମାନେ କଟିଯାଏ ତୁମଦିନ ଛାତ୍ରୀଙ୍କ ସୁଖରେ
ବୁକୁତଳେ ଶତ ଦୁଃଖ ମୃଦୁ ହସ ପୁଣି ତୁମ ଅଧର ଧାରରେ ।
ତୁମକୁ ପଚାରେ ଯଦି କେହି କେବେ କେଉଁପରି ଅଛ ମାଷ୍ଟ୍ରାଣୀ
ତୁମେ କୁହ ସବୁ ଭଲ ଶିକ୍ଷାଦାନ ଏଇ ମୋର ଜୀବନ ସରଣୀ ।

ହେ ଶିକ୍ଷୟିତ୍ରୀ,
ଜୀବନରେ ତୁମର କି ଆସିନାହିଁ କେଉଁ ଏକ ପୂର୍ଣ୍ଣିମାର ଜ୍ୟୋତ୍ସ୍ନାପୂତ ରାତି
ଜୀବନର ଭୌଗୋଳିକ ବଙ୍ଗୋପସାଗରେ ଉଠିନିକି ଜୁଆରର ଝଡ଼ ।
ସମପୁର ଜୁଡ଼ାର୍ଜିରେ ଫୁଟିନିକି ସୁବାସିତ ବସୁଧଇ ଜଡ଼ ?
ସେ ଫୁଲର ମହକରେ ଚାହିଁନାକି ଗଢ଼ିବାକୁ ବନ୍ୟ ଏକ କପୋତର ନୀଡ଼ ।
ସ୍ୱପ୍ନ କଣ ତୁମେ କେବେ ଦେଖିନାହିଁ ଆଶାମୟୀ ନିର୍ଜନ ରାତିରେ
ଚକୋରୀ କାରୁଣ୍ୟ ତଳେ ରାଜପୁଷ୍ପ ପ୍ରବାଳ ଦ୍ୱୀପରେ ।
ତୁମେ କଣ ଥରିନାହିଁ ସ୍ପର୍ଶପାଇ ରେବା ରେବ ଯୁବ ଚେତାଳିର ।

॥ ବନଫୁଲ ॥

ଦେହର ମାଳମା ଆଜ କମିଆସେ ଚକ୍ଷୁ ହୁଏ ନିଷ୍ପ୍ରଭ ମଳିନ ।
କୃଷ୍ଣଚୂଡ଼ା ଓଠ ଆଜ ରଙ୍ଗହୀନ ସନ୍‌ଲାଇଟ୍ ଫେଣପରି ଅବା
ତୁମେ ପୁଣି ସ୍କୁଲ୍‌ଅଛ ବାରଣ୍ଡାରେ ପାଦ ଗଣି ଗଣି
ଅଜ୍ଞାତ ଗନ୍ତରେ ତୁମ କ୍ଷିପ୍ରତା ଓ ଲାଳିତ୍ୟ ତ କେଉଁଆଡ଼େ ଉଭାଇ ଗଲଣି ।

ଯାହା ଥରେ ଜୀବନରେ ଆସିଥିଲା କେତେ ଆଶା କେତେ ସ୍ୱପ୍ନ ନେଇ
ତାକୁ କଣ ଭୂଗୋଳର ପ୍ରଶାନ୍ତସାଗରେ ମାରି ଦେଲ ବୁଡ଼ାଇ ବୁଡ଼ାଇ ।
ତୁମ ସାଥେ ସାକ୍ଷାତ ଏ ଆଦିବାସୀ ବିଦ୍ୟାଳୟଟିରେ
ତୁମ ସାଥେ କଥାବାର୍ତ୍ତା, ଭଲମନ୍ଦ ବହୁଦିନ ପରେ ।
ତୁମଲାଗି ଲେଖିଦେଲି ଯାହା କିଛି ଦି'ପଦ କବିତା
ମୋ ଉପରେ ରାଗିବନି ହେ ମାଷ୍ଟ୍ରାଣୀ ହେ ଅବିବାହିତା ।

—×—

# ମଣିଷ

ଅଧ୍ୟାପକ କିଶୋରଚନ୍ଦ୍ର ପାଢ଼ୀ

ଦୁନିଆର ଯେତେ ପ୍ରଶ୍ନ, ସରଳ ଜଟିଳ
ମଣିଷ ମାନ୍ଦ୍ର ହିଁ ସତ୍ୟ, ଏକାଇ ଉତ୍ତର;
ଅବୋଧ ଏ ମନ ତାର ଭାବ ଭାଷାକଥା
ମାପିହୁଏ ନାହିଁ ତେଣୁ ଜୀବନର ବ୍ୟଥା ।
କେତେରଙ୍ଗର ମଣିଷ, ସବୁ ଜୀବନରେ
ନୂଆ ଅନୁଭୂତି, ଲେଖିରଖେ ଇତିହାସ
କେତେ ଯେ କାହାଣୀ ଅଙ୍କା ସମସ୍ତ ଦେଉଳେ
କେହି କେବେ କରିନାହିଁ ସଂପୂର୍ଣ୍ଣ ପ୍ରକାଶ ।
ଏ ମଣିଷ ବହୁରୂପୀ, ଘନ ଅନ୍ଧକାରେ
ଚିହ୍ନାପଡ଼େ, ଝଡ଼ଝଞ୍ଜା ପ୍ରଳୟ ସାଥିରେ
ସଂକୀର୍ଣ୍ଣ ସେ ହୁଏ କେବେ ହୁଏ ଅବା ବ୍ୟାପ୍ତ
'ଅସାଧାରଣ' ପଦବୀ ହୋଇପାରେ ପ୍ରାପ୍ତ ।
ମୋନାଲିସା ହସେ, ଶୁଣି ମହାକାଳ ପ୍ରଶ୍ନ
ମଣିଷ ସେ କିଏ, ତାର ଏ କି ସମାଧାନ ???

—*—

# ॥ ଓଡ଼ିଆ ସାହିତ୍ୟରେ ଲୁଇ ॥

ଆନନ୍ଦ ଚରଣ ରାଉତ

ଓଡ଼ିଶା ଦେଶ ଓ ଓଡ଼ିଆ ଜାତିପରି ଓଡ଼ିଆ ଭାଷା ମଧ୍ୟ ପ୍ରାଚୀନ । ତେବେ ନିର୍ଦ୍ଦିଷ୍ଟ ଭାବେ ଏହାର ଉତ୍ପତ୍ତି କାଳ ନିରୂପଣ କରିବା ସମ୍ଭବପର ନୁହେଁ । ପର୍ଯ୍ୟାୟକ୍ରମେ ଏହା ମାଗଧୀ ପ୍ରାକୃତରୁ ଉତ୍ପନ୍ନ ବୋଲି ଭାଷାତତ୍ତ୍ୱବିତ୍‌ମାନଙ୍କର ମତ । ବର୍ତ୍ତମାନ ସୁଦ୍ଧା ଓଡ଼ିଆ ଭାଷାରେ ଲିଖିତ ସାହିତ୍ୟ ମଧ୍ୟରେ ମାଦଳାପାଞ୍ଜି ସର୍ବପ୍ରାଚୀନ ବୋଲି ବିବେଚିତ ହୋଇଥାଏ । ( ଏହା ମୁଖ୍ୟତଃ ଇତିହାସ ହେଲେହେଁ ଭାଷାର ସାହିତ୍ୟ ଦୃଷ୍ଟିରୁ ଏହାର ଅଧ୍ୟୟନ ଅପରିହାର୍ଯ୍ୟ ) । ମାତ୍ର ଏହା ପୂର୍ବରୁ ଓଡ଼ିଆ ଭାଷାରେ ଲିଖିତ ଅନେକଗୁଡ଼ିଏ ଚର୍ଯ୍ୟାପଦର ସନ୍ଧାନ ମିଳିଛି । ଏହି ଚର୍ଯ୍ୟାପଦଗୁଡ଼ିକ ୧୯୦୭ ମସିହାରେ ବଙ୍ଗଳାର ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ-ଦ୍ୱାରା ନେପାଳ ଦରବାର ପୁସ୍ତକାଗାରରୁ ଆବିଷ୍କୃତ ହୋଇଥିଲା ଓ ଏହି ଚର୍ଯ୍ୟାପଦଗୁଡ଼ିକ ୧୯୧୭ ମସିହାରେ 'ବୌଦ୍ଧଗାନ ଓ ଦୋହା' ନାମକ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଉକ୍ତ ପୁସ୍ତକର ମୁଖବନ୍ଧରେ ମହାମହୋପାଧ୍ୟାୟ ଶାସ୍ତ୍ରୀ କେଉଁଠି ଏହା ପ୍ରାଚୀନ ବଙ୍ଗଳା ଭାଷାରେ ଲିଖିତ ବୋଲି କହୁଥିଲାବେଳେ, ଅନ୍ୟତ୍ର ଏହାର ଭାଷାକୁ ସାନ୍ଧ୍ୟଭାଷା ବୋଲି ସ୍ୱୀକାର କରିଛନ୍ତି । ଉକ୍ତ ପୁସ୍ତକର ଏକ ସ୍ଥାନରେ ଶ୍ରୀଯୁକ୍ତ ଶାସ୍ତ୍ରୀ ମତ ଦେଇଛନ୍ତି ଯେ "ଏକ ଜନ୍ ପଦକର୍ତ୍ତାର ବାଡ଼ି ଉଡ଼ିଷ୍ୟା ଦେଶେ ଓ ତାହାର ଗାନ୍‌ଟି ଉଡ଼ିଷ୍ୟା ଭାଷାୟ ଲିଖିତ × × । ସେ ପଦଟିକେ ଆମି ଉଡ଼ିଷ୍ୟା ଭାଷାର ପଦ ବଲିୟା ସ୍ଥିର କରିୟାଛି ।" (ପୃ-୧୭) ଏହା ସତ୍ତ୍ୱେ ସେ ନିର୍ଦ୍ଦିଷ୍ଟ ପଦ (ଯାହାକୁ କି ସେ ଓଡ଼ିଆ ବୋଲି ମନେ କରନ୍ତି) ଓ ପଦକର୍ତ୍ତାର ନାମୋଲ୍ଲେଖ କରି ନାହାନ୍ତି । ମାତ୍ର ପ୍ରତ୍ୟେକ ପଦ ଓ ପଦକର୍ତ୍ତାଙ୍କୁ ବଙ୍ଗଳା ଓ ବଙ୍ଗାଳୀ ଭାବେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ଯୁକ୍ତି ଅନେକ ସ୍ଥଳରେ ପକ୍ଷପାତ ବୋଲି ମନେହୁଏ ବୌଦ୍ଧଗାନ ଓ ଦୋହାର ୨୨ପୃଷ୍ଠାରେ କାହ୍ନପାଦ ନାମକ ସିଦ୍ଧାଚାର୍ଯ୍ୟଙ୍କର ପରିଚୟ ପ୍ରଦାନ କରିବାକୁ ଯାଇଁ ସେ କହିଛନ୍ତି—"ଏ ପୁସ୍ତକ ଆମରା ପାଇ ନାଇ କିନ୍ତୁ ଇହା ଯେ ବାଙ୍ଗାଲିର ଲେଖା ଓ ବାଙ୍ଗ୍‌ଲାୟ ଲେଖା ସେ ବିଷୟେ କୋନ ସନ୍ଦେହ ନାଇ ।" ପକ୍ଷପାତିତା ଏହି ଦୃଷ୍ଟିରୁ ଯେ ଜଣେ ଲେଖକର ଲେଖା ନ ପଢ଼ି ତାହାର ଭାଷା ବିଷୟରେ ନିର୍ଦ୍ଦିଷ୍ଟ ଭାବରେ ଏକ ମତ ପ୍ରଦାନ କରିବା । ସେହିପରି ଭୁସୁକୁ ରାଉତୁ ନାମରେ ଯେଉଁ ସିଦ୍ଧାଚାର୍ଯ୍ୟଙ୍କ ଚର୍ଯ୍ୟା ଗୀତ ମିଳିଛି ତାଙ୍କ ବିଷୟରେ ଶ୍ରୀଯୁକ୍ତ ଶାସ୍ତ୍ରୀ କହନ୍ତି—"ଆମାଦେର ଭୁସୁକୁ ଯେ ବାଙ୍ଗାଲି ଛିଲେନ୍, ତାହା ତାହାଁର ଗାନେଇ ପ୍ରକାଶ । ତିନି ବଲିୟା ଛେନ୍—ଆଜି ଭୁସୁକୁ ବଙ୍ଗାଲୀ ଭଇଲୀ; ଣିଅ ଘରିଣୀ ଚଣ୍ଡାଲୀ ଲେଲୀ ।"

ଉପରୋକ୍ତ ଉଦ୍ଧୃତିରେ ବଙ୍ଗାଲି ଶବ୍ଦର ବ୍ୟବହାର ଦୃଷ୍ଟିରୁ ସେ ଭୁସୁକୁଙ୍କୁ ବଙ୍ଗାଳୀ ବୋଲି ଦର୍ଶାଇଛନ୍ତି । କିନ୍ତୁ ସେ ଯଦି ବଙ୍ଗାଳୀ, ତେବେ

ପୁଣି ବଙ୍ଗାଳୀ ହେଲେ କାହିଁକି ? ଯେ ହେତୁ ନିଜେ କହୁଛନ୍ତି ଯେ ଚଣ୍ଡାଳୁଣୀକୁ ନିଜର ଘରଣୀ କରି-ନେଇ ଭୁସୁକୁ ଆଜି ବଙ୍ଗାଳୀ ହେଲା, ତେବେ ବୁଝିବାକୁ ପଡ଼ିବ ଯେ ଭୁସୁକୁ ଅନ୍ୟ କୌଣସି ଜାତି ଥିଲେ କିନ୍ତୁ ବଙ୍ଗାଳୀ ନ ଥିଲେ ।

ଏହି ଚର୍ଯ୍ୟାପଦର ଲେଖକମାନଙ୍କୁ ସିଦ୍ଧାଚାର୍ଯ୍ୟ କୁହାଯାଏ । କଥିତ ଅଛି ଏହି ସିଦ୍ଧାଚାର୍ଯ୍ୟମାନଙ୍କର ସଂଖ୍ୟା ୮୪ ଥିଲା, କିନ୍ତୁ ଏ ପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗ ତାଲିକା ସଂଗୃହୀତ ହୋଇପାରି ନାହିଁ । ଏହି ୮୪ ଜଣ ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ 'ଲୁଇ' ଅନ୍ୟତମ । ସେ ମଧ୍ୟ ଲୋହିଦାସ ଓ ଲୁଇପା ନାମରେ ପରିଚିତ ଥିଲେ । ଏହି ସିଦ୍ଧାଚାର୍ଯ୍ୟମାନଙ୍କ ଜୀବନୀ ସମ୍ବନ୍ଧୀୟ ତଥ୍ୟ କେତେଗୁଡ଼ିଏ ତିବ୍ବତୀୟ ଗ୍ରନ୍ଥରୁ ମିଳିଥାଏ । ସେ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଲାମା ତାରାନାଥଙ୍କ ବିବରଣୀ, ପାଗ୍ ସମ୍-ଜୋନ-ଜାଙ୍ଗ୍, ତେଙ୍ଗୁର ଶାସ୍ତ୍ର ଇତ୍ୟାଦି ପ୍ରସିଦ୍ଧ । ଆଲୋଚ୍ୟ ପ୍ରବନ୍ଧଟି ଲୁଇ ଓ ତାଙ୍କ ରଚିତ ଚର୍ଯ୍ୟାପଦ ଉପରେ ପର୍ଯ୍ୟବସିତ ।

ଲୁଇଙ୍କର ଜନ୍ମସ୍ଥାନ ନେଇ ବିଭିନ୍ନ ମତ ଦେଖାଯାଏ । ଶାସ୍ତ୍ରୀ ଲୁଇଙ୍କୁ ରାଢ଼ ଦେଶର ଲୋକ ଓ ସେ ଜାତିରେ ବଙ୍ଗାଳୀ ଥିଲେ ବୋଲି ବୌଦ୍ଧଗାନ ଓ ଦୋହାରେ ଉଲ୍ଲେଖ କରିଛନ୍ତି । ତାଙ୍କର ଏହି ମତଟି ତେଙ୍ଗୁର ଶାସ୍ତ୍ରର ମତ ଉପରେ ପର୍ଯ୍ୟବସିତ । ପାଗ୍-ସମ୍ ଜୋନ୍-ଜାଙ୍ଗ୍ ଗ୍ରନ୍ଥରେ ଲୁଇ ଉଡ୍ଡିୟାନର ଏକ ମତ୍ସ୍ୟଜୀବୀ କୁଳରେ ଜନ୍ମଗ୍ରହଣ କରି, ସ୍ୱ-ପାରଦର୍ଶିତା ଓ ଶିକ୍ଷା ବଳରେ ସ୍ଥାନୀୟ ରାଜାଙ୍କର କରଣ ଭାବେ ସ୍ୱୀକୃତି ଲାଭ କରିଥିଲେ ବୋଲି କୁହାଯାଇଅଛି । ସେହିପରି ଲାମା ତାରାନାଥଙ୍କ ବିବରଣୀରୁ ଜଣାଯାଏ ଯେ ସେ ଉଡ୍ଡ୍ୟାନ ରାଜା ସାମନ୍ତ ଶୁଭଙ୍କ କରଣ ଥିଲେ । ଅନେକ କ୍ଷେତ୍ରରେ ତାଙ୍କୁ ଉଡ୍ଡୀୟାନର ଅଧିବାସୀ ଭାବେ ଗ୍ରହଣ କରାଯାଇଥିଲେ ହେଁ ଉଡ୍ଡୀୟାନର ଭୌଗୋଳିକ ସୀମା ନିର୍ଦ୍ଧାରଣରେ ବିଭିନ୍ନ ମତ ଦେଖାଯାଇଥାଏ । ଉଡ୍ଡୀୟାନକୁ କେହି କେହି ଉଦ୍ୟାନ୍ ବୋଲି କହୁଥିଲା ବେଳେ ଆଉ କେହି କେହି ଆସାମରେ କହିଥାନ୍ତି । ହୁଏନ୍‌ସାଂଙ୍କ ବିବରଣୀ ଅନୁସାରେ କାବୁଲ ଅଞ୍ଚଳ ଉ-ଚ୍ଚ୍ୟଂ-ନ ବୋଲି କଥିତ ହେଉଥିବାରୁ ଉଡ୍ଡୀ-ୟାନକୁ କେହି କେହି ଉଚ୍ଚାରଣ ଗତ ସାମ୍ୟ ଦୃଷ୍ଟିରୁ କାବୁଲ୍ ବୋଲି କହିଥାନ୍ତି । ମାତ୍ର ଓଡ଼ିଶା ଯେ ଉଡ୍ଡୀୟାନର ନବ୍ୟ ନାମ ଏହା କେହି ସ୍ୱୀକାର ନ କଲେ ମଧ୍ୟ ହରପ୍ରସାଦ ଶାସ୍ତ୍ରୀ ସ୍ୱୀକାର କରନ୍ତି । ହିନ୍ଦୁ ଶାସ୍ତ୍ରମାନଙ୍କରେ ଓଡ଼ିଶାକୁ ଉଡ୍ର ପୀଠଭାବେ ବର୍ଣ୍ଣନା କରାଯାଇଅଛି । ଏପରି କି ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ରରେ ( ୧ମ ଶତାବ୍ଦୀ ) ଓଡ୍ର ନାମକ ଏକ ଜାତି ଥିବାର ଉଲ୍ଲେଖ କରାଯାଇଅଛି । ( ଶବରାଭୀର ଚଣ୍ଡାଳ ସଚର ଦ୍ରାବିଡ଼ୋଡ୍ରଜାଃ, ହୀନା ବନେ ଚରଣାଂ ବିଭାଷା ନାଟକେ ସ୍ମୃତା ) ଏବଂ ଏମାନଙ୍କର ନିଜସ୍ୱ ଭାଷା ଥିବାର ଏଥିରୁ ମଧ୍ୟ ଜଣାଯାଏ । ଏହି ଉଡ୍ର ଦେଶକୁ ବୌଦ୍ଧମାନେ ଉଡ୍ଡୀୟାନ କହୁଥିଲେ । ତେଙ୍ଗୁର୍ ଗ୍ରନ୍ଥରେ ଇନ୍ଦ୍ରଭୂତିଙ୍କୁ ଉଡ୍ଡୀୟାନର ରାଜା ଭାବେ ବର୍ଣ୍ଣନା କରାଯାଇଅଛି । ( ଅନେକ ସ୍ଥଳରେ ଇନ୍ଦ୍ରଭୂତ ଓଡ଼ିଶା ରାଜାବୋଲି ଚିହ୍ନିତ ) ଇନ୍ଦ୍ରଭୂତିଙ୍କଦ୍ୱାରା 'ଜ୍ଞାନୋପାୟ ବିନିଶ୍ଚୟ ସିଦ୍ଧି' ନାମକ ଏକ ଗ୍ରନ୍ଥ ରଚିତ ହୋଇଥିଲା । ଏଥିରେ ସେ ଜଗନ୍ନାଥଙ୍କୁ ବନ୍ଦନା କରି ଲେଖିଛନ୍ତି—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତଂ
ସର୍ବ ବୁଦ୍ଧ ମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍"

ଏଥିରୁ ବିଶ୍ୱାସ କରାଯାଏ ଯେ ଇନ୍ଦ୍ରଭୂତି ଓଡ଼ିଶାର ଲୋକ ଥିଲେ, କାରଣ ଜଗନ୍ନାଥ ହିଁ ଓଡ଼ିଶାର ଆରାଧ୍ୟ ଦେବତା । ତେଣୁ ଉଡ୍ଡୀୟାନ ଯେ ଓଡ଼ିଶା ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ହରପ୍ରସାଦ ଶାସ୍ତ୍ରୀ ଓ ବିନୟତୋଷ ଭଟ୍ଟାଚାର୍ଯ୍ୟ ଏଣୁ ଉଡ୍ଡୀୟାନକୁ ଆଧୁନିକ ଓଡ଼ିଶା ବୋଲି ମତ ଦିଅନ୍ତି । ଲାମା ତାରାନାଥଙ୍କ ବିବରଣୀ ଓ ପାଗ୍-ସୋମ୍-ଜୋନ୍-ଜାଙ୍ଗ୍ ଇତ୍ୟାଦି ଗ୍ରନ୍ଥର ଉଡ୍ଡୀଆନର

ଲୁଇ ଯେ ଓଡ଼ିଶାର ଲୁଇ ଏହା ପ୍ରମାଣିତ । ଏଥିରୁ ଅନୁଭବ କରାଯାଏ ଯେ ଲୁଇ ଓଡ଼ିଶାର ଅଧିବାସୀ ଥିଲେ ଓ ସେ ଓଡ଼ିଆ ମଧ୍ୟ ଥିଲେ । ସମ୍ଭବତଃ ତାଙ୍କ ଘର ମୟୂରଭଞ୍ଜ ଜିଲାର ସୀମାରେ ଅବସ୍ଥିତ ଥିଲା । କାରଣ ଲୁଇଙ୍କ ନାମାନୁସାରେ ମୟୂରଭଞ୍ଜରେ ଗୋଟିଏ ଗ୍ରାମ ଅଛି ଏବଂ ମୟୂରଭଞ୍ଜ ଜିଲାର ଅନେକ ସ୍ଥାନରେ 'ଲୁଇ ପୂଜା' ନାମରେ ଏକ ପୂଜା ପ୍ରଚଳିତ ହେବାର ଦେଖାଯାଏ । ଏହା ମଧ୍ୟ ହର-ପ୍ରସାଦ ଶାସ୍ତ୍ରୀ ସ୍ୱୀକାର କରି କହନ୍ତି—"ମୟୂରଭଞ୍ଜରେ ତାଙ୍କର ପୂଜା ହୋଇଥାଏ" (ବୌଦ୍ଧଗାନ ଓ ଦୋହା-ପୃ ୧୫ ) । ମୟୂରଭଞ୍ଜର ଏଇ ସାଂସ୍କୃତିକ ଅନୁଷ୍ଠାନ ପଛରେ ଯଦି କିଛି କାରଣ ଥାଏ, ତାହା-ହେଲେ ତା ହେଉଛି ଲୁଇଙ୍କ ସ୍ମୃତି ଉପଲକ୍ଷେ କେବଳ ଏକ ପରମ୍ପରା । ଓଡ଼ିଶାରେ ସିଦ୍ଧ ପରମ୍ପରାକୁ ଅସ୍ୱୀକାର କରି ହେବନି । ଶ୍ରୀ ମଦନ ମହାଦେବ ( ରାଜ ରାଜ ୧ମ ) ଙ୍କ ସମୟରେ ଲିଖିତ ମାଦଳା ପାଞ୍ଜିରୁ ଏହା ଜଣାପଡ଼େ । ଏଥିରେ ଉଲ୍ଲେଖ ଅଛି—"ଯରଙ୍ଗ ଦଣ୍ଡପାଟେ ଆରାଗଡ଼ ପର୍ବତ ଧଉଳି ପର୍ବତ । ଏ ସବୁ ପର୍ବତ କନ୍ଦରମାନଙ୍କରେ ଚଉରାଶି ଗୁମ୍ଫାମାନଙ୍କରେ ସିଦ୍ଧ ବଉଧମାନେ ରହିଅଛନ୍ତି । ଏମାନେ ସର୍ବଜ୍ଞ ।" ଚଉରାଶି ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ ଲୁଇ ଯେ ଅନ୍ୟତମ ପ୍ରଧାନ ସିଦ୍ଧ ଏହା ଅସ୍ୱୀକାର କରି ରହିହେବ ନାହିଁ । ଲୁଇ ଓଡ଼ିଶାରେ ଏତେ ଘନିଷ୍ଠ ଭାବେ ପରିଚିତ ଥିଲେ ଯେ, ପରବର୍ତ୍ତୀ କାଳରେ ତାଙ୍କ ନାମ ଉଲ୍ଲେଖ ନ କରି ପ୍ରଶଂସା ନ ଗାଇ କବିମାନେ ରହିପାରି ନାହାନ୍ତି । ଯଥା:—

"ଦଣ୍ଡକ ଅରଣ୍ୟ ପୂର୍ବ ପ୍ରାଚୀ ନଦୀକୂଳ—
ତପୀ ଯତି ସନ୍ନ୍ୟାସୀଙ୍କ ସେଠାବରେ ମେଳ, ଲୋହିଦାସ
ମଠ କରି ଥାଆନ୍ତି ଏଠାରେ—ଲୁଇ ରଖିଥାନ୍ତି
ନିରାକାର ଧ୍ୟାନ ପରେ ।"

(ଶୂନ୍ୟ ସଂହିତା-ଅଚ୍ୟୁତାନନ୍ଦ)

"ମାଣ୍ଡବ ଗଉତମ ଅବମାନ,
ଗାଗର୍ବ ମାର୍କଣ୍ଡ ଗୋରେଖ ଜାଣ
କାହ୍ନୁପା ହାଡ଼ିପା ବିରୂପା ଲୁଇ,
ସର୍ବ ଋଷି ବଶିଷ୍ଠ ଜାବାଳ କହି ।"

( ଗୁପ୍ତ ଗୀତା-ଅନନ୍ତ ଦାସ )

ଲୁଇଙ୍କର ସମୟ ନିରୂପଣ ଦିଗରେ ସମାଲୋଚକ-ମାନଙ୍କ ମଧ୍ୟରେ ମତର ଭିନ୍ନାଭିନ୍ନ ଦେଖାଯାଏ । ମାତ୍ର ଲୁଇ ଓ ଅନ୍ୟାନ୍ୟ ସିଦ୍ଧାଚାର୍ଯ୍ୟମାନଙ୍କୁ ସପ୍ତମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ବିଚାର କରାଯାଇପାରେ ।

**ଲୁଇଙ୍କ ସାହିତ୍ୟ —**

ଲୁଇ ୧ନମ୍ବର ଓ ୨୯ ନମ୍ବର ଚର୍ଯ୍ୟାପଦର ରଚୟିତା । ଏହି ଚର୍ଯ୍ୟାପଦର ଭାଷା ଆଲୋଚନା ପୂର୍ବରୁ ଧର୍ମ ବିଷୟରେ କିଛି କହିବା ଆବଶ୍ୟକ । ସେ ଥିଲେ ସହଜ ଯାନପନ୍ଥୀ । ବୌଦ୍ଧଧର୍ମର ଘଟ ନାନାଭାବେ ପରିବର୍ତ୍ତିତ ହୋଇଥିଲା । ସହଜଯାନ ଏହିପରି ଏକ ପରିବର୍ତ୍ତିତ ରୂପ । ଏହାର ପ୍ରବର୍ତ୍ତକ ଥିଲେ "ଲଙ୍କା ପୁରର" ରାଣୀ ଲକ୍ଷ୍ମୀଙ୍କରା । ସାଧାରଣତଃ ଲଙ୍କା କହିଲେ ଆମେ ବୁଝୁ ସିଂହଳ । ମାତ୍ର "ମାର୍କେଣ୍ଡେୟ ପୁରାଣର ୫୮ ଅଧ୍ୟାୟ ୨୦-୨୯ ଶ୍ଳୋକରେ ସିଂହଳ ଓ ଲଙ୍କା ଦୁଇଟି ସ୍ୱତନ୍ତ୍ର ଦେଶ ରୂପେ ଉଲ୍ଲିଖିତ ହୋଇଅଛି । ତେଣୁ ସିଂହଳ ଭିନ୍ନ ଅନ୍ୟ ଏକ ଲଙ୍କାର ଅସ୍ତିତ୍ୱ ତହିଁରେ ସ୍ୱୀକାର କରାଯାଇଛି ।" (ଓଡ଼ିଶାର ବୌଦ୍ଧଧର୍ମ—ଡଃ ନବୀନ କୁମାର ସାହୁ) । ସୋନପୁର ରାଜ୍ୟ (ବଲାଙ୍ଗିର ଜିଲାର) ପୂର୍ବେ ଲଙ୍କା ନାମରେ ଅଭିହିତ ଥିବାର ପ୍ରମାଣିତ ହୋଇଛି । ଲକ୍ଷ୍ମୀଙ୍କରା ଭାଇ ଇନ୍ଦ୍ରଭୂତିଙ୍କ-ଠାରୁ ବଜ୍ରଯାନ ତନ୍ତ୍ରର ଦୀକ୍ଷା ନେଇଥିଲେହେଁ, ସିଦ୍ଧିଲାଭ ପରେ ବଜ୍ରଯାନ ତ୍ୟାଗ କରିଥିଲେ । ବଜ୍ରଯାନ ଉପାୟରେ ମୁକ୍ତି ପଦ୍ଧତିକୁ ସେ ସମର୍ଥନ ନ କରି ଅନ୍ୟ ଏକ ନୂତନ ଚିନ୍ତାଧାରାର ପ୍ରବର୍ତ୍ତନ କରି-

ଥିଲେ । ତାଙ୍କ ମତରେ ମନୁଷ୍ୟ ଜନ୍ମ ସମୟରେ ଯେଉଁ ଗୁଣ ଓ ପ୍ରବୃତ୍ତି ନେଇ ଜନ୍ମ ହୁଏ, ତାହା ସହଜ । "ସେହି ସ୍ୱାଭାବିକ ଗୁଣ ଓ ପ୍ରବୃତ୍ତିକୁ ଦମନ ନ କରି ତାର ଅଭିବୃଦ୍ଧି ଓ ସମ୍ଭୋଗରେ ସିଦ୍ଧିଲାଭ କରିବାର † ପନ୍ଥା ସହଜଯାନ ।" (ଓଡ଼ିଶାରେ ବୌଦ୍ଧଧର୍ମ) ତେଣୁ ସହଜଯାନ ମାର୍ଗ ଓଡ଼ିଶାର ବାୟୁ ମଣ୍ଡଳରୁ ଉତ୍ପନ୍ନ । ଲୁଇପାଦ ଏଇ ସହଜଯାନ ମାର୍ଗର ପଥିକ ଥିଲେ ଓ ତାଙ୍କ ଚର୍ଯ୍ୟା ପଦରେ ସେହି ଚିନ୍ତାଧାରା ହିଁ ସ୍ପଷ୍ଟ ।

ତାଙ୍କ ରଚିତ ଚର୍ଯ୍ୟାପଦର ଭାଷା ଆଧୁନିକ ଓଡ଼ିଆ ଭାଷାର ଅତି ନିକଟବର୍ତ୍ତୀ ।

| ୧ମ ନମ୍ବର ଚର୍ଯ୍ୟାପଦ | ଆଧୁନିକ ଭାଷାରେ |
|---|---|
| କାଆ ତରୁବର ପଞ୍ଚବି ଡାଳ | କାୟା ତରୁବର ପାଞ୍ଚ ବି ଡାଳ |
| ଚଞ୍ଚଳ ଚୀଏ ପଇଠା କାଳ । | ଚଞ୍ଚଳ ଚିତ୍ତେ ପ୍ରବିଷ୍ଟ କାଳ |
| ଦିଢ଼ କରିଅ ମହାସୁହ ପରିମାଣ | ଦୃଢ଼ କରିଣ ମହାସୁଖ ପରିମାଣ |
| ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ । | ଲୁଇ ଭଣଇ ଗୁରୁ ପୁଚ୍ଛିଣ ଜାଣ |

କମ୍ବା

| ୨୯ ନମ୍ବର ଚର୍ଯ୍ୟାପଦ | ଆଧୁନିକ ଭାଷାରେ |
|---|---|
| କାହେରେ କିସ ଭଣି ମଇ ଦିବି ପରିଚ୍ଛା | କାହାରେ କିସ ଭଣି ମୁଇ ଦେବି ପରୀକ୍ଷା |
| ଉଦକ ଚାନ୍ଦ ଜିମ ସାଚ ନା ମିଚ୍ଛା । | ଉଦକ ଚାନ୍ଦ ଯେମିତି ସତ୍ୟ ନା ମିଥ୍ୟା । |
| ଲୁଇ ଭଣଇ (ମଇ) ଭାଇବ କିସ | ଲୁଇ ଭଣଇ ମୁହିଁ ଭାବିବି କିସ |
| ଜାଲଇ ଅଚ୍ଛମ ତାହେର ଉଣ ହ ଦିସ ॥ | ଯାହା ନେଇଅଛୁ ମୁଁ ତାହାର ଉହନା ଦିଶ |
| | (ଚର୍ଯ୍ୟା ଗୀତିକା—ଖଗେଶ୍ୱର ମହାପାତ୍ର |

ଏହି ଦୁଇଟି ଚର୍ଯ୍ୟାପଦକୁ ବିଶ୍ଳେଷଣ କଲେ ଅଧୁନା ଓଡ଼ିଆ ଭାଷାରେ ପ୍ରଚଳିତ ଶବ୍ଦଗୁଡ଼ିକ ଦେଖିବାକୁ ମିଳେ । ପ୍ରଥମ ଚର୍ଯ୍ୟାପଦରେ —ତରୁବର ପଞ୍ଚ, ଡାଳ, ଚଞ୍ଚଳ, କାଳ, ପରିମାଣ, ଭଣଇ, ଗୁରୁ, ଜାଣ, ସୁଖ, ଦୁଃଖ, କପଟ, ଆସ ଇତ୍ୟାଦି ଆଧୁନିକ ଭାଷାରେ ବି ପ୍ରଚଳିତ । ନ୨୯ମ୍ବର ଚର୍ଯ୍ୟାପଦରେ ଭାବ, ଅଭାବ, ନ ହୋଇ, ନ ଯାଇ, ଭଣଇ, ବିଳସଇ, ଚିହ୍ନ, ଜାଣି, ବଖାଣି, ଆଗମ, କିସ, ଉଦକ, ଚାନ୍ଦ ଇତ୍ୟାଦି କେତେକ ତତ୍‌ସମ ଓ ତଦ୍‌ଭବ ଓଡ଼ିଆ ଶବ୍ଦ, ସଂସ୍କୃତରୁ ଆସିଥିବା କେତୋଟି ଶବ୍ଦ ପ୍ରକୃତ ମାଧ୍ୟମ ଦେଇ ଆସିଲାବେଳେ (ଭାଷାତତ୍ତ୍ୱ ନିୟମ ଦୃଷ୍ଟିରୁ) ରୂପାନ୍ତରିତ ହୋଇଛି । ଯେପରି ଦିଢ଼ (ଦୃଢ଼) ପଇଠା (ପ୍ରବିଷ୍ଟ) ମହାସୁହ (ମହାସୁଖ) ରୁବ (ରୂପ) ସାଚ (ସତ୍ୟ), ମିଚ୍ଛା (ମିଥ୍ୟା) ଇତ୍ୟାଦି ।

ଏହି ଗୀତିକା ଦୁଇଟି ପଟ୍ଟମଂଜରୀ ରାଗରେ ଲିଖିତ । ଓଡ଼ିଆ ପ୍ରାଚୀନ ସାହିତ୍ୟରେ ଏହି ରାଗର ପ୍ରଚଳନ ଦେଖାଯାଏ । ତେବେ ପ୍ରୟୋଗରେ ଅସାମଞ୍ଜସ୍ୟ ରହିଛି ।

ଏହିପରି ଭାବେ ଆଲୋଚନା କଲେ ଜଣାଯାଏ ଯେ ପ୍ରାୟ ହଜାର ବର୍ଷ ତଳେ ଲିଖିତ ସାହିତ୍ୟରେ ଆଜିର ଓଡ଼ିଆ ଭାଷାର ବହୁ ପରିମାଣରେ ସାମ୍ୟ ପରିଦୃଷ୍ଟ ହୁଏ । ଏତେ ସାମ୍ୟ ସତ୍ତ୍ୱେ ଏହାକୁ ଓଡ଼ିଆ ଭାଷାରେ ଲିଖିତ ବୋଲି କହିବାରେ ଅପରାଧ କେଉଁଠି ?

ଏଣୁ ଲୁଇ, ଲୁଇପା ବା ଲୋହି ଦାସଙ୍କ ଦାନ ଓଡ଼ିଆ ସାହିତ୍ୟରେ ଅବିସ୍ମରଣୀୟ । ସେ ଥିଲେ ଓଡ଼ିଆ—ଆଜି ତାଙ୍କର ରଚନା ଖାଣ୍ଟି ଓଡ଼ିଆର ଭାଷା ।



## ॥ ସକାଳ ସଂଜ ଓ ରାତି ॥

ଶ୍ରୀ ବୈକୁଣ୍ଠନାଥ ଶତପଥୀ
( ଫକୀର ମୋହନ କଲେଜ, ବାଲେଶ୍ୱର )

॥ ସକାଳ ॥

ପୃଥିବୀ ଓ ଆକାଶ ।
ରକ୍ତ କଇଁ ଓ ରକ୍ତିମ ସୂର୍ଯ୍ୟ......

॥ ସଂଜ ॥

ସଫେଦ୍ ଜହ୍ନ......
ତୁଳସୀ ପତ୍ରର ଚନ୍ଦ୍ର ।
ଏବଂ ଜଳନ୍ତା ଧୂପର ଗୁଇ......

॥ ରାତ୍ରି ॥

ରକ୍ତ କଇଁର ମୃତ୍ୟୁ ।
ସୂର୍ଯ୍ୟ-ଦଗ୍ଧ ଦିବସର ଶାନ୍ତ ସମାଧି ॥
ଏ ରାତ୍ରି ମୋର.........

— * —



# ଝଡ଼-ଏକ ରାତ୍ରିର

ଶ୍ରୀ ସୁଭାଷଚନ୍ଦ୍ର ଦାସ, ରେଭେନ୍‌ସା କଲେଜ

ଫଗୁଣର ଏକ ଶାନ୍ତ ନିଶିଥିନୀର ବାତାବରଣକୁ ମୁଖରିତ କରି ଭାସି ଆସୁଥିଲା କୋଳଆମାନଙ୍କର ବଂଶୀର ଏକ କରୁଣ ମୂର୍ଚ୍ଛନା । ମେଘମୁକ୍ତ ଆକାଶରେ ପୂର୍ଣ୍ଣିମୀ ଚନ୍ଦ୍ରର ଶୀତଳ ଆଲୋକ ରଶ୍ମି ଛୁଇଁଥିଲା ସମୁଦ୍ରର ଖୋଲା ପିଠିର ପରିଧି । ଧୀର ପରଶରେ ଉତ୍ତେଜିତ ହୋଇ ଢେଉଗୁଡ଼ା ବେଳାଭୂମି ଲଂଘିଥିଲେ । କେତୋଟି ସ୍ୱର୍ଣ୍ଣାଭ ଜ୍ୟୋତି ଆକାଶରେ ଦପ୍ ଦପ୍ ଜଳି ଉଠୁଥିଲେ । ଅନତି ଦୂରର ଝାଉଁବଣର ସୁ ସୁ ଶବ୍ଦ ନିର୍ଜନତା ଭେଦକରି ତନ୍ୱୀ, ରୂପସୀ ସୌଦାମିନୀର ମନରେ ଭରି ଦେଇଥିଲା ମାଦକତା । ଆଖିରେ ଥିଲା ଭସା ବାଦଲ । ନନା ଆଜି କୁନୁପରି ଦୁଇଟି ପିଲାଙ୍କର ମାତୃତ୍ୱର ଅହମିକା ନେଇ ମଧ୍ୟ ଏ ପର୍ଯ୍ୟନ୍ତ ତା' ଦେହରୁ ବାସ୍ନା ଲିଭିନି । ବାରଣ୍ଡାର ଗୋଟିଏ କୋଣରୁ କ୍ଷୀଣ ଆଲୋକ ରେଖାର ଧାର ସ୍ପର୍ଶ କରିଥିଲା ସୌଦାମିନୀର ଗୋଲ ମୁଖର ପରିଧି । ଚଞ୍ଚଳ ଗଣ୍ଡକୁ ସ୍ନାତକରି ବହି ଆସୁଥିଲା କେଇଟି ଚୂନା ଚୂନା ଲୁହଧାର । ବାତାୟନର ଲୁହାରେଲିଂ ଉପରେ ଉନ୍ନତ ବକ୍ଷର ଭରା ଅବସାଦ କରି ଠିଆ ହୋଇଥିଲା ସୌଦାମିନୀ । କେଦାର ଭଳି ଜଣେ କଳାକାର—ଘନ ଅନ୍ଧାରରୁ ଝରନ୍ତଶୀର ଜୀବନ ଐଶ୍ୱର୍ଯ୍ୟ ଯିଏ ତୂଳୀରେ ଫୁଟାଇ ପାରନ୍ତି, ତାରି ହାତଧରି କଳ୍ପନା କରିପାରି ନ ଥିଲା ଯେ ଦିନେ ତାର ଦାମ୍ପତ୍ୟ ଜୀବନ ତଟିନୀର ବନ୍ୟା, କୂଳ ଲଂଘିବ ।

ସମାଧାନ କରିପାରୁ ନଥିଲା ସେ । ବିଗତ ଦିନର ସ୍ମୃତିଗୁଡ଼ିକ ତା ମନରେ ସୃଷ୍ଟି କରୁଥିଲା ଘୂର୍ଣ୍ଣିବାତ୍ୟା । ମସ୍ତକରେ ଶତବୃଷ୍ଟି କରି ଆଘାତ । ତାର ହୃଦ ଉଚ୍ଛୁଳା ଢେଉ ଅଶ୍ରୁଳ ଚକ୍ଷୁକୁ ଅବନତ କରି ଆଣୁଥିଲା । ପ୍ରତ୍ୟେକ ହୃଦସ୍ପନ୍ଦନୀକୁ ଦୋହଲାଇ ଦୀର୍ଘଶ୍ୱାସ ଚାଲୁଥିଲା । ହୋଇପାରେ ସ୍ୱାମୀ ତାର ମଦ୍ୟପ, ଲମ୍ପଟ ତଥାପି ସେ ଶିକ୍ଷିତ, କଳାକାର, ସ୍ୱପ୍ନଜୀବୀ । ତା'ହେଲେ କାହିଁକି ତାର ସ୍ୱାମୀ ତାକୁ ସନ୍ଦେହ କରନ୍ତି ! କାହିଁକି ସେ ବୃହାନ୍ତ, ଅନ୍ତହୀନ ଭାବରେ ଅମଡ଼ା ଘାସ ଫୁଲପରି ମାଡ଼ିଦଳି ଗୋଟିଏ ସୁଧାପୂର୍ଣ୍ଣ ପାତ୍ରରେ ଗୁଡ଼ିବାକୁ କଣ୍ଠବ୍ୟାଧି । ସେ ପ୍ରକୃତିସ୍ଥା........ସଂନ୍ଦିଗ୍ଧା.......... ।

ଏ ପର୍ଯ୍ୟନ୍ତ ବଂଶୀର ସ୍ନିଗ୍ଧ ଲହରି, ମୂର୍ଚ୍ଛନାର ପ୍ରତିଧ୍ୱନି ଶୋଭୁଥିଲା । କିନ୍ତୁ ମଧୁର ସଂଗୀତର ମିଳନ ଗୀତିକାର ହୃଦରେ ସୌଦାମିନୀର ମନ ପରିତୃପ୍ତ ହୋଇପାରୁ ନ ଥିଲା । ମନ ତାର ଆନ୍ଦୋଳିତ । ଆଜି କଣ କାହାକୁ ???.........ପାର୍ଟିରେ କଥାଟା କେମିତି ଅଶ୍ଳୀଳ ବୋଧହୁଏ । କାନ୍ଥ ଘଣ୍ଟାଟାର ଡଂ ଡଂ ଦୁଇଟା ଶବ୍ଦରେ ସେ ଚକିତ ହୋଇପଡ଼ିଲା । ଖୁବ୍ ସନ୍ତର୍ପଣରେ ସୌଦାମିନୀ କାନ ଡେରିଲା କ୍ରମାଗତ ବୁଟ୍‌ର ଶବ୍ଦ ଆଡ଼େ । ଏଇ ବୋଧହୁଏ କେଦାର ଯିଏ ତାର ବର୍ତ୍ତମାନ ଓ ଭବିଷ୍ୟତ । ଓଠରୁ ତାର ହସର ଉର୍ମି ବେଳାଭୂମି ଲଂଘିଥିଲା-ଆଖିରୁ ବହି

ଆସିଥିବା ଲୋଚକକୁ ପରିହାସ କରି। ନିଜକୁ ସଜାଡ଼ି ନେଇ ସୌଦାମିନୀ ଘର ଭିତରକୁ ଡାକିନେଲା କେଦାରକୁ। କାମନାର ବହ୍ନିରେ ଜଳି ଉଠୁଥିଲା ସେ। ଭୀଷଣ ଜୋରରେ ସମୁଦ୍ରର ଫେଣାକ୍ତ ଢେଉଗୁଡ଼ା ହିଂସ୍ର ଶ୍ୱାପଦ ପରି ମଥାପିଟି ଗୁଳୁଥିଲେ ସମାହିତ ବାଲୁକା ଶଯ୍ୟାଉପରେ। ଆଖି ଦୁଇଟା ବିସ୍ତାରିତ ହୋଇ ଉଠୁଥିଲା କେଦାରର। ଦେହରେ ଅବସନ୍ନତା ଆଉ ଶରୀର କ୍ଳାନ୍ତ। ପାଦରେ ତାଳହୀନ, ମାନହୀନ, ସ୍ୱପ୍ନସଂପୃକ୍ତ ନୃତ୍ୟର ଭଙ୍ଗୀ।

"ଦେହ କଣ ହେଉଛି"—କପାଳରେ ହାତ ରଖି ପଚାରିଲା ସୌଦାମିନୀ ଆଖିରେ ଶ୍ରାବଣର ଧାରା।

"ତମେ ବ୍ୟସ୍ତ ହୁଅନା, ମିନି", ମୋ ଜୀବନର ବ୍ୟର୍ଥତାମୟ ଆଖିର ଲୁହ ନୁହେଁ ଓଠର ହସ। କହିପାରୁ ନ ଥିଲା କେଦାର।

ଏଁ—ସେ କଏ ? ଜୀବନର ଚନ୍ଦ୍ରବାଳ ତଳେ ହାତଠାରି ଡାକୁଛି। ମୀନ ଆକାଶର ବିଦ୍ୟୁତ୍ ପରି ଲୁଚିଯାଇ ପୁଣି ଦେଖା ଦେଉଛି।

ଚିତ୍କାର କରିଉଠିଲା କେଦାର– ହାଃ, ହାଃ, ହାଃ.........

ମିନି, ମିନି, ତମେ କାନ୍ଦୁଛ ମିନି,—ଭଲ—ଖୁବ୍ ଭଲ—ତୁମେ କାନ୍ଦ ମୁଁ କାନ୍ଦିବ ଆଜ ବହୁତ ବେଶୀ ...କାନ୍ଦୁ...ଉଃ।

କେଦାର ବୋଧକଲା ତାର ଛାତିରେ ଶତ ଶତ ଶଳାକାର ନିର୍ମମ ପ୍ରହାର—ସମାଗତ ମୃତ୍ୟୁର ଇଙ୍ଗିତରେ କେଦାର ଦେଖୁଥିଲା ଆରପାରିର ସ୍ୱପ୍ନ। ତେବେ ବି ସେ ସୌଦାମିନୀର ହାତ ପାପୁଲିରେ ଆଙ୍କୁଥିଲା କେଉଁ ମନଗହୀରର ଛବି।

ସାରା ଶରୀରର ଶିରାଗୁଡ଼ିକ ଉତ୍ତଳ ହୋଇ ଅସ୍ଥି ବନ୍ଧନରୁ ବାହାରି ଯିବାକୁ ଚେଷ୍ଟା କରୁଥିଲେ। କାନ୍ଦି କାନ୍ଦି ସୌଦାମିନୀ ଔଷଧ ଗୁମଟେଟେ ଦେଲା କେଦାରର ପାଟିରେ। ହଠାତ୍ କେଦାରର ମୁଣ୍ଡଟି ସୌଦାମିନୀର କୋଳଆଡ଼କୁ ଢଳି ଆସିଲା।

ନିସ୍ତବ୍ଧତାର ରଜନୀ ଗାଢ଼ତର ହୋଇ ଆସୁଥିଲା- ସୌଦାମିନୀର ବେପଥୁ ଅଙ୍ଗଲତା ମୂର୍ଚ୍ଛିତ ପଡ଼ିଥିଲା। ଫଗୁଣ ପାହାନ୍ତର ଝିଲ୍ଲୀର ପବନରେ ସ୍ତିମିତ ଦୀପଶିଖା ସମାଧି ନେଲା। ତରୁଣ ଅରୁଣର ଲାଲ ପ୍ରତିବିମ୍ବ ମାଡ଼ି ଆସୁଥିଲା ସମୁଦ୍ର ଉପରେ ଗୋଟିଏ ସରଳରେଖା ଦେଇ—କେଦାରର କଫିନ୍ ଶେଯ ଦେଖିବାକୁ ସୌଦାମିନୀ ଆଖିରେ ଜ୍ୟୋତି ନ ଥିଲା। ହନା ଆଉ କୁନୁ ଉଠି ନ ଥିଲେ।

—*—

# ଇସ୍ତାହାର ଆମ ସଂପର୍କର

ଫଣୀଂଦ୍ର କୁମାର ରାଉତ, (ଭଦ୍ରକ)

ସମୁଦ୍ର ତ ବହୁଦୂର, କାଂଦୁରୀ ଏ ସୂର୍ଯ୍ୟର ମୁହଁରେ
କିଏ ଦେଇ ଏତେ ଢେଉ, ଏତେନାଳି, ଏତେ ହାହାକାର
ମୋ ଇଚ୍ଛାକୁ ଷ୍ଟେଚକଲ ପ୍ରଣୟର ପଣତ ଗୁଇରେ
ରଂଗ ମୋର ଲୁଟି ନେଇ ମତେ କଲ ଆହା, ଯାଯାବର ।

*　　*　　*

ଚିନ୍ତାନାହିଁ ଜଳିବାରେ, କାମନାର ଶ୍ୟାମ ଦୀର୍ଘ ପଥେ
ନିଃସଙ୍ଗ ଚଢ଼େଇ ହୋଇ ପ୍ରବାଳର ଦ୍ୱୀପ ଲୋଡ଼ିଯିବା
ଚିନ୍ତା ନାହିଁ, ମରଣର ଯତନା ନିଗାଡ଼ି
ଲୁହକୁ ଆପଣା କରି ଆଶଙ୍କାର ତଟ ବାହିଯିବା

*　　*　　*

କେତେ ବାଟ ସିଂହଳକୁ, କେତେ ବାଟ ଲଂବଗର ଦ୍ୱୀପ
କେତେ ବାଟ ପଣ୍ଡିଚେରୀ… ବେଶୀଦୂର ଅବା ଚିତ୍ରକୂଟ ?
ରାତିର ଦିଗଂତ ଛୁଇଁ ସ୍ମୃତିର ଭସ୍ମକୁ ସାଉଁଟି
ମୁଁ ଖୋଜୁଛି "ପୁରୀ ମଂଦିର"ରୁ କାହିଁଗଲ "ସ୍ୱର୍ଗଦ୍ୱାର" ବାଟ

*　　*　　*

ରାତି ଶେଷ ତାରା ମୁହିଁ ଖୋଜୁଛି ମୁଁ ନିଜ ପରିଧିରେ
ନିଜକୁ ବନ୍ଦୀ କରି ନିଜ ଆଖି ଲୁହର ନଈରେ
କାହାର ଚେତନା ହ୍ରଦ, କାହାର ସେ ତନୁ ଉପତ୍ୟକା
ଫୁଲ ହୋଇ ଛୁଇଁବାର ଅଜସ୍ର ଆଶାରେ ।

*　　*　　*

ଯକ୍ଷର ଜୀବନ ମୋର ମମତାର ମାଟିଦୀପ ଜାଳି
ବରଷାର ବାରିଧାରେ ବେଦନାର ଇତିହାସ ଲେଖି
ଏଲୋରା, ଅଜଂତା ପରି ନିର୍ଜନ ମୋ ଚିଂତା ସ୍ୱରୁଶିଳ୍ପ
ଅଜ୍ଞାତର ସ୍ୱବର୍ଣ୍ଣ ଦର୍ପଣେ ତାର ମୁଖ ଶିରୀ ଦେଖେ ।

*　　*　　*

ଏ ଶୀତ ଝାଡ଼ଇ ପତ୍ର, ସଂପର୍କର ଛନ୍ଦହରା ଲିପି,
ଅକସ୍ମାତ ଛୁଇଁ ଯାଏ… ଏ ମନ-ସୀତାର ତାର,
ଛପି ଛପି… ହାୟ, ଛପି ଛପି ।

—*—

# ଅପ୍ରେଲ ମାସ ରାଶିଫଳ

ପଣ୍ଡିତ ଶ୍ରୀ ଯୁଧିଷ୍ଠିର ମହାପାତ୍ର, ଜ୍ୟୋତିର୍ଭୂଷଣ

**ମେଷ:**—ଏ ମାସରେ କର୍ମ ଜୀବନ, ସ୍ୱାସ୍ଥ୍ୟ ଓ ପାରିବାରିକ ସମସ୍ୟା ଶାନ୍ତିଜନକ ନୁହେଁ । ଗୃହକାର୍ଯ୍ୟରେ ଆର୍ଥିକ ଦିଗ ବିଶୃଙ୍ଖଳା ଜନକ । ନୂତନ କର୍ମ ଯୋଗରେ ବାଧା ସୃଷ୍ଟି ଘଟିପାରେ । ଭ୍ରାତୃ ବା ସ୍ଥାବର ସମ୍ପତ୍ତି ଜନିତ ଅଭିଘାତ ରହୁଛି । ମାତ୍ର ବ୍ୟବସାୟ ଗତାନୁଗତିକ ଭାବରେ ପରିଚାଳିତ ହେବ । ଆଶାଭଙ୍ଗ, ଆଶଙ୍କା ଓ ବିସମ୍ବାଦ ଯୋଗୁଁ ମନ ଉଦ୍‌ବିଗ୍ନ ରହିବ । ଅନ୍ତର୍କର ବ୍ୟବହାର କର୍ମ କ୍ଷେତ୍ରରେ ଅବାଞ୍ଛିତ ପ୍ରତିକ୍ରିୟା ସୃଷ୍ଟି କରିପାରେ । ଶେଷ ସପ୍ତାହରେ ସାମାଜିକ ଜୀବନ ସାମାନ୍ୟ ଅଶାନ୍ତିକର ବୋଧହେବ । ମହିଳାମାନେ ବିମର୍ଷା ରହିବେ । ଛାତ୍ରାଦିଙ୍କର ସେପରି ଶାନ୍ତି ସମୟ ନୁହେଁ ।

**ବୃଷ:**—ଆର୍ଥିକ ଦିଗରୁ ମାସର ପ୍ରଥମାର୍ଦ୍ଧ ହର୍ଷବର୍ଦ୍ଧକ । ଆକସ୍ମିକ ଅର୍ଥାଗମର ସମ୍ଭାବନା ମଧ୍ୟ ରହୁଛି । କିନ୍ତୁ ଶେଷ ଭାଗରେ ସନ୍ତପ୍ତ ଚିତ୍ତ ରହିବ । ଯେମିତି ବନ୍ଧନବତ୍ ବୋଧ କରିବେ । ଉପରିସ୍ଥ-ଙ୍କ ଖିନ୍ନ ସଞ୍ଚାର ଏବଂ ନିଜର କୃତକର୍ମର ପଶ୍ଚା-ତାପ ଭୋଗିବାକୁ ପଡ଼ିବ । ଆମୋଦ-ପ୍ରିୟତାରୁ ବ୍ୟୟ ବାହୁଲ୍ୟ ଏବଂ ରୋଚକ ସାମଗ୍ରୀ ଲାଭ କରିବେ । ସାମାଜିକ-ଜୀବନ ଶାନ୍ତିପଦ ନୁହେଁ । ବାଣିଜ୍ୟରେ କ୍ରମୋନ୍ନତି ଅବସ୍ଥା ବିଦ୍ୟମାନ । ସ୍ୱାସ୍ଥ୍ୟ ଯଥାପୂର୍ବଂ । ମହିଳାମାନେ ବିତଶ୍ରଦ୍ଧାଭାବ ଦେଖାଇବେ । ଛାତ୍ରାଦିଙ୍କର କର୍ତ୍ତବ୍ୟ ପରାୟଣ ବଢ଼ିଆସିବ ।

**ମିଥୁନ:**—ଏ ମାସରେ ଗୁରୁ, ଶୁକ୍ରଙ୍କ ଭିନ୍ନ ଗ୍ରହମାନଙ୍କ ଅନୁକୂଳ ପ୍ରଭାବରୁ ଗୃହକାର୍ଯ୍ୟ ତଥା ଉତ୍ପାଦନ ଦିଗରେ ଆର୍ଥିକ ଶୃଙ୍ଖଳାବୋଧ କରିବେ । ବାଣିଜ୍ୟ ଦିଗ କ୍ଷତିକର ଏବଂ ପାରିବାରିକ ସମସ୍ୟା ଦୁର୍ବିସହ ହୋଇ ଉଠିବ । ବ୍ୟୟ ବାହୁଲ୍ୟ ମଧ୍ୟ ରହୁଛି । ସ୍ୱାସ୍ଥ୍ୟ ମଧ୍ୟେ ମଧ୍ୟେ ବିଗିଡ଼ିବ । ସାମାଜିକ ଝଡ଼ ଝଞ୍ଜା କମି ଆସିବ । ମହିଳାମାନେ ଅଭିମାନଦ୍ୱାରା ନିଜର ଗୌରବ କ୍ଷୁଣ୍ଣ କରିବେ । ଛାତ୍ରାଦିଙ୍କର ଖିନ୍ନ ସଂଗ୍ରହ ହେବ ।

**କର୍କଟ:**—ଏ ମାସରେ କର୍ମକ୍ଷେତ୍ରରେ ଆର୍ଥିକ ଶୃଙ୍ଖଳା ସତ୍ତ୍ୱେ ଉଦ୍‌ବେଗ ଓ ଅବସନ୍ନତା ବୋଧ-କରିବେ । ସ୍ୱାସ୍ଥ୍ୟପୀଡ଼ା ଦେଖା ଦେଇପାରେ । ବାଣିଜ୍ୟ କ୍ଷେତ୍ରରେ ପୂର୍ବାପେକ୍ଷା ଲାଭାଧିକ ଦେଖାଯିବ । ବହିର୍ବାଣିଜ୍ୟ ମଧ୍ୟ ଉନ୍ନତିବର୍ଦ୍ଧକ । ମାନସିକ କ୍ଲେଶ ପାରିବାରିକ ସମସ୍ୟାରୁ ହଟିବ ନାହିଁ । ସାମାଜିକ ପଦ-ମର୍ଯ୍ୟାଦା ବୃଦ୍ଧି ପାଇବ । କିନ୍ତୁ କୌଣସି ବନ୍ଧୁଙ୍କ-ଦ୍ୱାରା ବିଡମ୍ବିତ ହେବେ । ମହିଳାମାନେ ସୌଖୀନ-ବସ୍ତୁ ପାଇବେ । ଛାତ୍ରାଦିଙ୍କର ମନ କ୍ଲେଶ ରହିଯିବ ।

**ସିଂହ:**—ଏ ମାସରେ କର୍ମ କ୍ଷେତ୍ରରେ ଅଶାନ୍ତି ବୋଧ କଲେହେଁ ଆର୍ଥିକ ଦିଗ ମନ୍ଦ ନୁହେଁ । ସ୍ୱାସ୍ଥ୍ୟ-ହାନି ମଧ୍ୟେ ମଧ୍ୟେ ଅନୁଭବ କରିବେ । ବ୍ୟବସାୟ ଦିଗରୁ ଗତାନୁଗତିକତା ବଜାୟ ରହିବ । ମଙ୍ଗଳ, ଶନିଙ୍କ କୁପ୍ରଭାବରୁ ବୃଥା ଭ୍ରମଣ ଏବଂ ଶତ୍ରୁଭୟ ରହୁଛି । ପାରିବାରିକ ଜୀବନ ଝଡ଼ ଝଞ୍ଜାର ମଧ୍ୟ ଦେଇ ଗତି କରିବ । ସାମାଜିକ ସଦିଚ୍ଛା ଲାଭ କରିବେ । ପାରିପାର୍ଶ୍ୱିକ ବାୟୁମଣ୍ଡଳ ଅପାତତଃ ମୈତ୍ରୀପୂର୍ଣ୍ଣ ରହିପାରେ । ମହିଳାମାନେ ବିଷାଦ ମଧ୍ୟରେ ଆତ୍ମ-ପ୍ରସନ୍ନତା ଅନୁଭବ କରିବେ । ଛାତ୍ରାଦିଙ୍କର ସୁସମୟ ।

**କନ୍ୟା:**—ଏ ମାସରେ କର୍ମତଥା ବାଣିଜ୍ୟ ଦିଗରୁ କ୍ଷୁବ୍ଧ ବାତାବରଣ ଅଭାବ ପରିଲକ୍ଷିତ ହେବ ।

ଆର୍ଥିକ ଦିଗ ଅତୃପ୍ତିପ୍ରଦ । ଆଶଙ୍କା, ଭ୍ରାନ୍ତି, ଉଦ୍‌ବେଗ ନେଇ ସମୟ ଗଡ଼ିବ । ପରକଥା ଶୁଣନ୍ତୁ, ନିଜ ଲୋକେ ମଧ୍ୟ ସାହାଯ୍ୟ ଦାନରେ କୁଣ୍ଠିତ ହେବେ । ସ୍ୱାସ୍ଥ୍ୟ ପ୍ରାୟ ଭଲରେ ଯିବନାହିଁ । ସ୍ଥିତିହ୍ଙ୍କତା ଅବଲମ୍ବନୀୟ । ସାମାଜିକ ଦୁରଭିସନ୍ଧିରୁ ଅଲଗା ହୋଇ ପାରିବେ ନାହିଁ । ମହିଳାମାନେ ହନ୍ତ-ସନ୍ତରେ ସମୟ କାଟିବେ । ଛାତ୍ରାଦିଙ୍କର ବିରକ୍ତିଭାବ ବଢ଼ିବ ।

**ତୁଳା:**—ଏ ମାସରେ ପ୍ରତିଷ୍ଠା ଓ ସନ୍ତୋଷ ଲାଭ କରିବେ । ମାତ୍ର ମାସର ଦ୍ୱିତୀୟାର୍ଦ୍ଧରେ ଆର୍ଥିକ ବିଶୃଙ୍ଖଳା ନେଇ ଚିନ୍ତିତ ରହିବେ । ସ୍ୱାସ୍ଥ୍ୟ ଓ ମନର ତୀବ୍ର ଅଶାନ୍ତି ପାତ ଧୀରେ ଧୀରେ ଅପସାରିତ ହେବ । ସାମାଜିକ କାର୍ଯ୍ୟଧାରା ନିରଙ୍କୁଶ ବୋଧ କରିବେ । ବ୍ୟବସାୟରେ ଆକସ୍ମିକ ଶତ୍ରୁ ବୃଦ୍ଧି ଦେଖାଦେବ । ମହିଳାମାନେ ଏକ ଅନୁକୂଳ ପରିବର୍ତ୍ତନର ସଂଘାତ ବୋଧ କରିବେ । ଛାତ୍ରାଦିଙ୍କ ପ୍ରତିଭା ବିସ୍ଫୋରଣରେ ସହପାଠୀମାନେ ଆନନ୍ଦ ଓ ବିସ୍ମୟାଭିଭୂତ ହୋଇ ପାରନ୍ତି ।

**ବିଛା:**—ମାସର ପ୍ରଥମାର୍ଦ୍ଧରେ ବ୍ୟବସାୟ ବା କର୍ମ କ୍ଷେତ୍ରରୁ ଅର୍ଥାଗମ ଥିଲେହେଁ ଶେଷାର୍ଦ୍ଧ ଆଡ଼କୁ ଦୈନ୍ୟତା ଉପଲବ୍‌ଧି କରିବେ । ମନ ବିକ୍ଷୁବ୍‌ଧ ରହିବ । ପାରିବାରିକ ଜୀବନ ସାଧାରଣ ଶାନ୍ତିପ୍ରଦ । ମାତ୍ର ସ୍ଥାବର ସମ୍ପତ୍ତି ଜନିତ ଶତ୍ରୁଭିତ୍ତି ଦେଖାଦେଇ ପାରେ । ସାମାଜିକ କର୍ମକୁଶଳତା ବୃଦ୍ଧି ପାଇବ । ସ୍ୱାସ୍ଥ୍ୟ ଏକପ୍ରକାର ଭଲ ରହିବ । ମହିଳାମାନେ ସ୍ନେହପ୍ରବଣତାରୁ ମାନସିକ ଧକ୍‌କା ଖାଇବେ । ସମ୍ଭବସ୍ଥଳେ ସନ୍ତାନର ଜନମ ହୋଇ ପାରନ୍ତି । ଛାତ୍ରାଦିଙ୍କ ଚିତ୍ତଚାଞ୍ଚଲ୍ୟ ଘଟିବ ।

**ଧନୁ:**—ଏ ମାସଟି ଶାନ୍ତି-ଅଶାନ୍ତି-ସୁଖ-ଦୁଃଖ-ନିନ୍ଦା-ପ୍ରଶଂସାର ମଧ୍ୟଦେଇ ଗତିକରିବ । ସାଧାରଣ ସ୍ୱାସ୍ଥ୍ୟଭଙ୍ଗ ସଙ୍ଗେ ପ୍ରାପ୍ତିଭଙ୍ଗ ଅବସ୍ଥା ସୁଧୁରିବ ନାହିଁ । ବ୍ୟବସାୟ ଦିଗ ଶାନ୍ତି ଜନକ ନ ହେଲେହେଁ ପାରିବାରିକ ଶୃଙ୍ଖଳା ମେଣ୍ଟିବ । ବ୍ୟବସାୟରେ ଉନ୍ନତି ଅବଶ୍ୟମ୍ଭାବୀ । ସାମାଜିକ ପ୍ରଭାବ ଓ ପ୍ରତିଷ୍ଠା ଅକ୍ଷୁଣ୍ଣ ରହିବ । ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଯଥାପୂର୍ବଂ । ମହିଳାମାନେ ବିଷାଦ ମଧ୍ୟରେ ଆନନ୍ଦ ପାଇବେ । ଛାତ୍ରାଦିଙ୍କ ମନ ଅବ୍ୟବସ୍ଥିତ ରହିବ ।

**ମକର:**—ଏ ମାସଟି ବେଶ୍ ରୁଚିକର ବୋଧ ହେବ । ଆର୍ଥିକ ଦିଗରୁ ମାହର ପ୍ରଥମାର୍ଦ୍ଧ ଉତ୍ସାହ ବର୍ଦ୍ଧକ । କିନ୍ତୁ ବ୍ୟୟରେ ଶେଷାର୍ଦ୍ଧ ଆଡ଼କୁ ସମ୍ମାନପ୍ରତି ନଜର ରଖନ୍ତୁ । ସ୍ୱାସ୍ଥ୍ୟ ଏକପ୍ରକାର ଭଲ ରହିବ । ନୂତନ ଶତ୍ରୁ ଯୋଗ ସାମାଜିକ କ୍ଷେତ୍ରରେ ମୁଣ୍ଡ ଟେକିପାରେ । ବାଣିଜ୍ୟରେ ଭାଗ୍ୟଲକ୍ଷ୍ମୀ ସୁପ୍ରସନ୍ନା । ଭୂମିଲାଭ ମଧ୍ୟ ଘଟିପାରେ । ମହିଳାମାନେ ପ୍ରୀତମନା ରହିବେ । ଛାତ୍ରାଦିଙ୍କ ବୋଝ କମି ଆସିବ । କିନ୍ତୁ ତରତରରେ କୌଣସି ସିଦ୍ଧାନ୍ତ ଗ୍ରହଣ କରିବା ଅନୁଚିତ ।

**କୁମ୍ଭ:**—ଏ ମାସରେ କର୍ମ କ୍ଷେତ୍ରରୁ ପ୍ରଥମାର୍ଦ୍ଧରେ ଆଶଙ୍କା ଉପୁଜିଲେହେଁ ଶେଷାର୍ଦ୍ଧ ଆଡ଼କୁ ଆନନ୍ଦ ପାଇବେ । ଅର୍ଥାଗମ ଯଥାପୂର୍ବଂ । ବ୍ୟବସାୟରେ ଅର୍ଥ ବୃଦ୍ଧି ଅବଶ୍ୟମ୍ଭାବୀ । ସାମାଜିକ ସଦ୍ଭାବ ରକ୍ଷା ହେବ । ଉତ୍ପାଦନ ପଦାର୍ଥ ବା ଭୂମ୍ୟାଦିରୁ ଲାଭ ପାଇବେ । ସ୍ୱାସ୍ଥ୍ୟ ଭଲରେ ଯିବ । ପାରିବାରିକ ଓ ଦାମ୍ପତ୍ୟ ଜୀବନ ପ୍ରୀତିପୂର୍ଣ୍ଣ ବୋଧହେବ । ମହିଳା-ମାନେ ପତି ସୋହାଗିନୀ ହୋଇ ବିଳାସ ସାମଗ୍ରୀ ପାଇବେ । ଛାତ୍ରାଦିଙ୍କର ପୂର୍ବାପେକ୍ଷା ଭଲ ସମୟ ।

**ମୀନ:**—ଏ ମାସରେ ବ୍ୟୟ ଦିଗରୁ ହାନିର ସମ୍ଭାବନା । ଆର୍ଥିକ ସମସ୍ୟା ଯଥାପୂର୍ବଂ । ଏକ ବିରାଟ ବ୍ୟର୍ଥତାର ସମ୍ମୁଖୀନ ହେବାକୁ ପଡ଼ିବ । ବ୍ୟବସାୟ ଅର୍ଥ ସଂଯୋଗ ଓ ଶତ୍ରୁନାଶ ଅବଶ୍ୟମ୍ଭାବୀ । ରାଜନୀତି ବା ସାମାଜିକ କ୍ଷେତ୍ରରେ ସମ୍ମାନ ମିଳିବ । ସ୍ୱାସ୍ଥ୍ୟ ଏକପ୍ରକାର ଭଲ ରହିବ । ପାରିବାରିକ ପ୍ରୀତିପୂର୍ଣ୍ଣ ସମସ୍ୟା ଚହଲି ଆସିବ । ମହିଳାମାନେ ଅସୁଖ-ବିସୁଖ ମଧ୍ୟରେ ଗୃହଧନ୍ଦାରେ ଲିପ୍ତ ରହିବେ । ଛାତ୍ରାଦିମାନେ ଖଳ ବୁଦ୍ଧି ସଙ୍ଗକୁ ଅପରିଣାମଦର୍ଶିତାର ଫଳ ହାତେ ହାତେ ଲଭିବେ ।

—*—

# ହନୁର କାହିଁକି କାଳିଆ ମୁହଁ

ହନୁର କାହିଁକି କାଳିଆ ରୂପ
କାଣିଛ ନା ଆରେ ପିଲେ
ଆମର ଦେଶରେ ପୂରୁବ କାଳେ
ରାମଚନ୍ଦ୍ର ରାଜା ଥିଲେ ।
ବାପାଙ୍କର ସତ ରଖିବା ପାଇଁ
ରାମଗଲେ ବନବାସେ
ଭାଇ ଲକ୍ଷ୍ମଣ ଭାରିଜା ସୀତା
ରହିଥିଲେ ପାଶେ ପାଶେ ।
ସୀତାଙ୍କୁ ଯେବେ ସେ ଲଙ୍କାର ରାଜା
ରାବଣ କରିଲା ଚୋରୀ
ଭାରିଯାର ମୁହଁ ନ ଦେଖି ରାମ
ହୋଇଲେ ପାଗଳ ପରି ।
ସେତେବେଳେ ଆସି ମାଙ୍କଡ଼ ହନୁ
ହୋଇଲା ତାଙ୍କର ସାହା

ସୀତାଙ୍କୁ ଉଦ୍ଧାର କରିବାପାଇଁ
ଭିଡ଼ିଲା ତାହାର ବାହା ।
ଖପାହୋଇ ହନୁ—ଆପଣା ଲାଞ୍ଜେ
ନିଆଁର ମଶାଲ ଧରି
ଲଙ୍କାନଗରୀରେ ସବୁରି ଘର
ନିମିଷକେ ଦେଲା ଜାଳି
ଘର ପୋଡ଼ିସାରି ସେ ହନୁମାନ
ନିଭାଇଲା ନିଆଁ ତାର
କଳା ପାଉଁସରେ ଆପଣା ହାତ
ହୋଇଗଲା ଝଲବଲ ।
ହାତରୁ ସେକଳା ପୋଛିବା ପାଇଁ
ମୁହଁଟାରେ ଦେଲା ବୋଳି
ସେହି ଦିନଠାରୁ ମୁହଁରେ ତା'ର
ଲାଗି ରହିଛି ସେ କାଳି ।

—*—

# ॥ ସୁକିଲାଇ କାଥା ॥

( ଆଦିବାସୀ ସାନ୍ତାଳୀ ଭଷା, ସୁକର ମନକଥା ).

ପାସ୍ବାଂସୁସୁଂତେଓ ଉତ୍ତୁଲ୍ ଏନା ଛଦାରପାଲ ଆତୁ । ସୁନ୍ଦରଗାଲ (ସୁନ୍ଦରଗଡ଼) ଖନ୍ ଇଗଲ ମାଇଲ ସାର୍ଙ୍ଗିଓ୍ । ନଆଁ ଆତୁ ଦ ଗୁଡ଼କ ଆତୁକ ଖନ୍ ଆଡ଼ି ସାର୍ଙ୍ଗିଓରେ । ଅଠାତେ ଏଖେନ୍ ଆବ ହେନ୍ଦେ ହାର୍ତା ଦେୟାକଖେନ ଓ୍ଵେଲଃଆ । ସେଣିଃଆୟୁବ୍ କୁଳକ ଖାଁଣ୍ଡିତେ ଦାଃ ଲୁକ ରେଲଅ କଃଆ । ହର ଧାରେତେ ମାଡକମ୍ ଦାରେ ସାରେଲାକାନା । ଦାରେବୁଟାରେ ଡେରେଡେସେ ଡାସେୟାକାନ୍—ମାଡକମ୍ ସଂଧାଣ୍ଡେଗେ ସ ହୁକ୍ଃଆ । କୁଳକ ଟେୟାତେ ହାରେଫାରେକ ହାଲଂଆ ଖାଁଣ୍ଡିଦାଃ ଠିଲିପେରେକ୍ ଭୁଗଃକାତେ ଦମେଲ ଦମେଲ୍କ ଚୁଆଲା । ସୁଦରେ ବାହା ବନ୍ଦଃରେ ଠିଲି ଆର ଟକିରେ ମାଡକମ । ଗ୍ୟାତେ ଖାଁଣ୍ଡି ଦାଃ ଲୁ ଘାଟ୍ରେ ଗଲ୍ଲହାତେକ ଚହଲ୍କାଃଆ ।

ସୁୟୁଲ୍ ସୁୟୁଲ୍ ସେଡାଃରେ କାମି ନାଲହାକ ରେଲଅ ସେନଃଆ । ରୁଆଲାକ ବେଲା ହାସୁର । ମିଦ ଓଣ୍ଡେକ ଜଗଉ ବାନୁଃଆନା । ତବେରେହଁ ହକମ ପେରେକ ଦାଲେ କ୍ଷଓ୍ଵୀ ପେରେକ ଗଯ୍ଯା । ହର ହରତେ ସେରେଓ ଦେରେଓତେ ରୁଆଲାକ । ଚଟରେ ସେମୀ ଅତ୍ରେ ବରବୁରୁ, ହାରା ଓ୍ଙ୍ଗୁଗ୍ରି ନାଇଗାଡ଼ା, ପାଲ୍ ବାଇହାଲ୍ । ଯତଃଗ ଆକଆଃ ଲେକାଗେକ ଆଇଲାଉଆ । ଦନଗେ ଗ୍ୟାତେ ଦନକ ଖାଣ୍ଡାଅଆ ସିଙ୍ଗାଲ୍-ଟାଗ୍ ଖନ୍ ଅଙ୍ଗାଃ ଧାବନ କଲାକୁଲି ଲଗେଣେ ଆଖଲାରେ-ଗେଲ ଅଙ୍ଗାଃଆ ।

ଦଶମ ଅନଜାରେ ହେନ୍ଦେ ହାଡଆଲ୍ ଓ୍ଵେଲଃକାନା । ମନରେ ଗଯ୍ଯା ମେନା ଗେୟା । ମେନଖାନ୍ କ୍ଷଓ୍ଵୀରେ ସୁକ୍ ବାନୁଃଆନା । ଏଗ୍ରହପନ୍ ବାପ୍ଟେ ଦାଃ ମାଣ୍ଡି ବାଂ ଆଣ୍ଟାକ ଆକ କାନା । ଗୁଡ଼କ୍ଠେନ୍କ ନାଲହାକାନା ଗୁଡ଼କ ଦକାନତେ ଗୃଅଲେ କଶଓ୍କ ଦାଲ୍ଏଃଆ । ଅଣ୍ଡେହଁ ଗୃଅଲେ କଲେ ଲଜାଅ ଟାକା (ଦେଲ୍ଠେଙ୍ଗା) । ଆନ୍ତମତେ ଲୁଧ୍ରକ ଘାଁସୁ ଘାଁସୁଃ କାନା । ସୁନୁମ୍ ବୁଲୁଂ ଦାଲ୍ ଟୃଅଲେ ଦାମ୍ ଦନ୍ ଛକପ୍ୟେଃଆ ମାଣାଂସେନ୍ । ବର୍ବୁରୁରେୟାଃ ରେହଦ ସେନ୍ଦେଦ ଟାଲାଅ କଛେ । ଗଟାକ ଟାଣ୍ଡି କୋଃଆ । ବରବୁରୁରେ କୁଇଣ୍ଡି ବାରୁ ଲୁଫୁ ଛଗଲ ତାଟବ ଗୁବାପ୍ୟେନା । ବରବୁରୁଶନ୍ କୁଲଇ, ସାଲ୍, ସୁନ୍ଦୀ, କ୍ରଲ୍ ହୁଳୁନ୍ଦ ବାଂ ହୁୟୁଃକାନା ସେ ବରବୁରୁରେ ଫଳ ପାକଲ କନ୍ଦି ପିପଲୀ ହଁ ବାକ ଓ୍ଵାମଃ କାନା । କାମି ନାଲହା ଲଗିଡତେହଁ ହଲଗେକ ସାହଡାପ୍ୟେନା ଅନାରେହଁ କାମିଗେ ବାଂଲ ଆଃଓ୍ କାନା । ଆଟାବ୍ ଜାଲାବ୍ତେ ଦନ୍ ଗୃଲଃ କାନା ।

ଅଲାଃ ରେରେକ ଗିଦ୍ରା ଟୃଲ ପେରେକ ବଲ ଓ୍ଵେଲତେ ହେରେଲ ମାଉଁକ୍ ଯତଗେ ଗ୍ବବତ ଗ୍ବବନା ସେଟେଗକ କଆ । ଗୁଡ଼କକ ଓ୍ଟେକତେଅଟାଗ୍ନ ବାଗିକାତେକଁ କ୍ରଗ୍ନତେ ଆଡ଼ିଲଖନ୍ ରୁଆଃ ହାସୁଃ ହଲକ ଫାର୍ଚିକାକ୍ନେ ନେଡାଚଦ ଅନାଗେ ହଲକ ଧେଯାଅ ଏଃଆ । ଡାଗ ବଙ୍ଗାଗାନ୍ ହୁସୁ ଏନା ଲଖା ଛକ୍ ମାରାଂ କଲାଗିଦ୍ରା ରୁଆଃଏ ପାଲାଅଂ ଆକାନା । ଟାହୁ ଡାସୁ ସୁକା ଗୁଡ଼କ ଆରୁ ଡାକ୍ତରଖାନା ଗୃଲଅକତେ ଗନ୍ ଆଗୁସୁ ମେନ ଷଗାଅ ଏନା ତବେରେହଁ ଲଖାନ୍କ ବାସୁ ହେଡା ଆଦଆ । ଇଗଲ୍ ଗଟାଂ ଉପ୍ରର ଗିଦ୍ରା । ଅଲାଃ ରେହଁ କମାଃ ବାନୁଃଆନା ଯାହାପୁର ହାଣ୍ଡିକ ଓ୍ଵାମଃଖାନ୍ ଲଖାନ ଦସୁ ଲଥିୟାଉ କଃଆ । ସୁକାସୁ ସିଂହଲ୍ ଗୃବାପ୍ୟେନା । ବାଲେ ଗିଦା ସେପେଓକାତେ ଡାକ୍ତରଖାନାସୁ ଗୃଲଅଏନା । ଡାକ୍ତରଖାନାଅର ହଲକୁଲ ନର୍ସ ଓ୍ଵେଲ୍କତେ ଆଡ଼ି ଦଲ୍ ସେଟେଗ ଦେୟା । ଯତକାଥା ନର୍ସସୁ ଲଇ ଆଦେଖାନ ଡାକ୍ତରଖାନା କୁଲ ଡାକ୍ତର ହଁ ହାରେଫାରେ ଗନକସୁ ଏମାଦେୟା । ଛକନ୍ ବେଲା ସାନ୍ଦି ସିତୁଂ ବାଂ ରୁଅଲକାତେ ଡାଗସିଓ୍ ରଆଲ୍ ମେନ୍ତେ ଡାକ୍ତରଏ ମେନ-କେଃଆ । ସିତୁଂ ବେଲା ସୁକା ଡାକ୍ତର ଯତ କାଥାସୁ କୁଲ୍ କେଦେୟା ଚେଦ ଲେକାତେ ଗିଦ୍ରା ଜନୁଃଏ ବନ୍ଦ କତାୟା ? ଡାକ୍ତର ଲୁପ୍ ଲଗାଅଏ ମେତାଦେଃଖାନ୍ ସୁକା ଆଡ଼ି ଲକାଅ ଗେୟ ବୁଝାଉ କେଃଆ । ଇଖା ଯତକାଥାକ ବୁଝାଉ ଆଦେଖାନ୍ ଲୁପ୍ ହାତାଅ ଏ ଦଲକେଃଆ । ତବେ ସଙ୍ଗେ ସଙ୍ଗେଦ ବାସୁ ହାତାଅ ଲେଃଆ । କଲେ ଗିଦ୍ରାସୁ ସେଣା ଲେନ୍ଖାନ୍ ହାତା-ଅଆ ମେନ୍ତେସୁ ମେତାଦ କନା । ଅନା ଲଗିଦତେ ଡାକ୍ତର ଆର ନର୍ସ କୁଲ ଆଡ଼ି ଆଡ଼ି ଛୁବ କକନ୍ ଦେଖାଅ ଆଦେୟା ଆର ବାରେୟା ପେୟା ଗିଦ୍ରା ଖାନ୍ଗେ ଆଡ଼ି ଉପ୍ରର ମେନ୍ତେକନ ମେତାଦେୟା ତବେ ପ୍ୟେନା କମାଃ ଓ୍ଆଃ ଲୁଗଦ ଲପ ସୁନୁମ ବୁଲୁଂ ଏମ୍ ସାଟାଅ ଦାଲେୟାଃଆ ମେନ୍ତେକନ୍ ଲଇ ବୁଝାଉ ଅଦେୟା । ସୁକା ନଆଁକ ଆନ୍ତମକାତେ ଆଡ଼ି ଦଲ୍ଦାଲେସୁ ଆଇକାଉ କେଃଆ । ଆତୁତେ ମେନକାତେ ଆତୁ କୁଳକ ଚଦାଃ କମାଃ ଓ୍ଆ ଲୁଗଲ ଲପତେ ବାବନ୍ କୁଲାଉ କାନା ମେନ୍ତେ ଯତକାଥାସୁ ଲଇ ଆଦ କଆ ' ଆର ବାରେୟା ପେୟା-

ଝିଅ ଜନ୍ମର ଶିକ୍ଷା ଦାଂ ଜନ୍ମ ଜାଂ ନ୍ଲଗିବ ଏ ।ଲିଗ ଲୁଷ୍ଟାଉ ଅ.ବକଥା । ଜମ୍ ହ୍ବକଷାନ ଘଡ଼ଆ ଦେମ୍ ହାଥାଥାଅ । ଘାଟେଂ ହ୍ବଲବ ବେଦ ତେହିଁ ନାମ ହାଥାଥାଅ । କ୍ଲୁପ ଲଗାଅ ଜାଥା ନହିଁ ଘଡ ନ୍ଲକସ୍ତ ନ୍ଲବ ଆନ ଜଥ । ବ୍ଲକକ ଘଦ ସ୍ଥାବେ ହ୍ବାଟବେ ବ୍ଲଥ ଏନ ଲେକା ଫିଦବନ ଡାକର୍‌ଖାନାନ ବ୍ଲଥ ଏନା । ତା'ବର ଠେନ୍‌ଝନ୍ ଘଡ କାଥାକ ଅନ୍ତମ ଜୋଥା । ବାରପେ ହାଲ ବାରସିଙ୍ଗ ପେ ମାହାଁ । ବାଦରେ ଲୁଡ଼କ ଲଗାଥ ହ୍ବର ଦ୍ବେନା । ପୁଲ ଘାଲକ ଆମ ଜୋଥା । ମରଣ ପେମା-ଖାନ୍‌ଲେ ଅନ୍ନେ ଗିଦା ଜନ୍ମ ଜମ ଇକପ୍ଦେନା ଜମ ହ୍ବଲ୍ ସ୍ଥାବେ ଭନକ ଖଣ୍ଡାଥ ଜୋଥା ।

---

# ॥ ସୁକିର ମନ କଥା ॥

ଦି ଛଟ ଝିଅ. ସକାଳୁ ବାହାରି ପଡ଼ିଲା ଜଙ୍ଗଲପୁର ସୁନ୍ଦରଗଡ଼ ଠାରୁ ପ୍ରାୟ ଆଠମାଇଲ ଦୂର । ଗାଁ ଟି ଗୋଟିଏ ଆଦିବାସୀ ଅଞ୍ଚଳ । ସକାଳୁ ଆଦିବାସୀ ରମଣୀ ପାଣି ଆଣିବାକୁ ଯାଉଥାନ୍ତି । ରାସ୍ତା ପାଖେ ପାଖେ ମହୁଲ ଗଛ । ମହୁଲ ଫୁଲ ତାର ସୁବାସ ବିତରଣ କରୁଥାଏ । ସେମାନେ ସକାଳର ଅଣ୍ଟା ପବନ ସହିତ ସୁଗନ୍ଧ ମହୁଲ ବାସ୍ନା ଗ୍ରହଣ କରି ଅତି ଆନନ୍ଦରେ ଫୁଲଗୁଡ଼ିକ ତୋଳନ୍ତି । ଫେରିବା ବେଳକୁ ପାଣି ମାଠିଆ ଆଣନ୍ତି । ପ୍ରକୃତି କୋଳରେ ବଢ଼ି, ପ୍ରକୃତି ସଙ୍ଗେ ଖେଳା ମେଳା କରି ଯେଉଁମାନେ ଜୀବନ ଯାପନ କରନ୍ତି ସେହିମାନେହିଁ ବାସ୍ତବରେ ଭାଗ୍ୟବାନ ।

ଜୁଡ଼ାରେ ଧାତକୀ ଫୁଲ ଖୋସି କର୍ମକ୍ଳାନ୍ତ ଦିବାବସାନରେ ଆଦିବାସୀ ରମଣୀ ଯେତେବେଳେ ହୃଦୟ ଖୋଲି ଗୀତ ଗାଇ ଗାଇ ନିଜ ଘରକୁ ଫେରୁଥିଲେ ତା' ମୁଣ୍ଡ ଉପରେ ଥିଲା ବିସ୍ତୃତ ମହାକାଶର ଅନନ୍ତ ବକ୍ଷ, ଚତୁଃପାର୍ଶ୍ୱରେ ଥିଲା ପାହାଡ଼ ଏବଂ ଶାନ୍ତ ବନଭୂମି ଓ ବନଜାହ୍ନବୀ ଝରଣାର ନୂପୁର ଧ୍ୱନି ।

ଆଜି ଠିକ୍ ସେପରି ସବୁ ଅଛି । କିନ୍ତୁ ତାର ସେଠ ପୂରୁ-ନାହିଁ । ଯେତେବେଳେ ଦୋକାନକୁ ଯାଉଛୁ, ଗୁଡ଼ଙ୍କ କିଲୋ ୧୨.୫୦ ଶୁଣି ଅବାକ୍ । ଦର ଦାମ୍ ଦିନକୁ ଦିନ ବଢ଼ି ଚାଲିଛି । ଜଙ୍ଗଲ କଟା ହୋଇ ସଫା ହୋଇ ଗଲାଣି । ଆଉ ସେ ମହୁଲ, ମହୁ, ପାଳୁଅ, ପଣସ ନାହିଁ । ଦିନ ରାତି ବନ୍ଧୁକ ଫୁଟି ଫୁଟି ଶିକାର ଗୋଟେ ଦେଖିବାକୁ ମିଳୁନାହିଁ । ସବୁବେଳେ ହାହୁତାଶରେ ଦିନ ଯାଉଛି ।

ଏପରି ଲକ୍ଷ ଲକ୍ଷ ନିଃସ୍ୱ ଅସହାୟା ଅବଳା "ସୁକି" ଯାଇଁ ତାର ଅଜାଘରେ ପଡ଼ିଥିଲା । ଦେଖିଲା ବେଳକୁ ଅଜା ମୁଣ୍ଡରେ ହାତଦେଇ ବସିଛନ୍ତି । ନାତି ନାତୁଣୀ ମିଶି ଅଜାଙ୍କର ୯ଟି ଅ । ଯେତେବେଳେ ମାଦା ଆଣିଲେ ଅଣ୍ଟୁନାହିଁ । ପିଲାଗୁଡ଼ିକ ବେରେଗରେ ଯାଉଛନ୍ତି ଦେବେଇ ଟିକେ ପାନ୍ତ ନାହାନ୍ତି । ଏହିକ-ବେଳେ ଆଦିବାସୀ ଝିଅ "ସୁକି"ର ମନେ ପଡ଼ିଗଲା ଗାଁ ପାଖ ଗୋହିର ମୁହଁର ଡାକ୍ତରଖାନା କଥା । ସେ ସବୁ ଭୁଲିଯାଇ ଅଜାଙ୍କ ନାତୁଣୀକୁ ନେଇ ଡାକ୍ତର ବାବୁଙ୍କ ପାଖରେ ହାଜର । ପହିଲୁ ପହିଲୁ ସୁକିର ଟିକେ ଭୟ ହେଉଥିଲା ଯେତେବେଳେ ସେ ଦେଖିଲା ତାଙ୍କ ନର୍ସମାନଙ୍କ ଝିଅ ଡାକ୍ତରାଣୀ ହୋଇଛନ୍ତି, ତା'ର ଆଉ ଚିନ୍ତା ହେଲା ନାହିଁ ।

ଗାଁ ଝିଅ ଡାକ୍ତରାଣୀ 'ସୁକି'କୁ ଦେଖି ଆଦରରେ ଔଷଧ ଦେଇ ତା'ର ଭଲମନ୍ଦ ପଚାରିଲେ । ସୁକି ମନ ଖୋଲି ତାଙ୍କ ଆଗରେ ତା'ର ଦୁଃଖ କାହାଣୀ ଫିଟେଇଲା । ଡାକ୍ତରାଣୀ ବୁଝେଇଲେ "କଉଡ଼ା ଜାଉ ଶୀତଳେଇ ଖାଇଲେ ଭଲ । ଅର୍ଥାତ୍ ଦାମ୍ପତ୍ୟ ଜୀବନରେ ସଂଯମ ଅବଲମ୍ବନ କଲେ ତା ସୁଫଳର ହୋଇ-ଥାଏ । ପିତାମାତାଙ୍କୁ ବେଶି ଚିନ୍ତା କରିବାକୁ ପଡ଼େ ନାହିଁ । ପିଲା-ମାନେ ସୁସ୍ଥ ସବଳ ହୁଅନ୍ତି । ପରିବାରରେ ସୁଖଶାନ୍ତି ଦେଖାଯାଏ । ଏଣୁ ଶ୍ରେଷ୍ଠ ପରିବାରଟି ମର୍ତ୍ତ୍ୟରେ ସ୍ୱର୍ଗର ଆନନ୍ଦ ଦିଏ ଓ ବଡ଼ ପରିବାରଟି ନର୍କ ଯନ୍ତ୍ରଣା ଦିଏ । ସୁକିର ମନକୁ ଏ କଥାଟି ପାଇଗଲା । ସେ ବୁଝି ପାରିଲା ଯେ ଅଳ୍ପ ପିଲାଛୁଆ ହୋଇଥିଲେ ସେମାନେ ଏପରି ରୋଗା ହୋଇ ନଥାନ୍ତେ । ଡାକ୍ତରାଣୀ ତାକୁ ଶ୍ରେଷ୍ଠ ପରିବାର ଗଠନର କେତେକ ଉପାୟ ବତାଇ ଦେଲେ, ଓ ବିଭିନ୍ନ ଚିତ୍ର ଦେଖାଇ ବୁଝାଇ ଦେଲେ । ସୁକି ଭାବିଲା ଯେ ପ୍ରକୃତରେ ସରକାରଙ୍କର ଏ ଯୋଜନାଟି ତା ପରି ଦୁଃଖୀ ପରିବାର ଲାଗି ସତେ ଯେପରି ଦରକାର । ସେ ବେମାର ପିଲାପାଇଁ ଦବେଇଟିକେ ଡାକ୍ତରଖାନାରୁ ନେଇ ତା ଅଜାଙ୍କ ପାଖରେ ମନଖୋଲି ସମସ୍ତ କଥା ଏକ ନିଶ୍ୱାସରେ କହିଗଲା । ଅଜାଙ୍କ ମନକୁ ଏ କଥାଟା ପାଇଗଲା । କେବଳ ଅଜା ନାହିଁକି ଗାଁର ଅନେକ ସମବୟସ୍କା ଏକଥା ଶୁଣି ସୁକିକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଗାଁ ଡାକ୍ତରାଣୀଙ୍କ ପରାମର୍ଶ ନେଇ ଶ୍ରେଷ୍ଠ ପରିବାର ଗଢ଼ି ସୁଖରେ କାଳ କାଟିଲେ ।

# ॥ ଆତ୍ମଲିପି-ମଶାଣି ହାଡ଼ର ॥

ବିଶ୍ୱଂଭର ପୃଷ୍ଟି
ବଲଙ୍ଗିର

ଜୀର୍ଣ୍ଣ, ଶୀର୍ଣ୍ଣ-ଭଗ୍ନାବଶେଷ,
ମାଂସ-ଖଣ୍ଡେ ହାଡ଼ ମୁଁ —
ମଶାଣିର ।
ଅନେକେ ମୁଁ ହସାଇଛି,
ଜନ୍ମବାସ-ଆସରରେ ମୋର ।
ଶୈଶବ ମୋ ହଜିଗଲା,
ଜୀବନର ମଝି ଦରିଆରେ,
ଯୌବନର ସାମୁକା ସାଉଁଟି ।
କାମନାର ବେଦୀ ପରେ
ଝାଉଁବଣ ଚଟିଳ,
ଯଉବନ ଝରି ଗଲା
ସ୍ଥୂଳତାର ଶିଉଳି ଲଗାଇ ।
ଅହମିକା ଅଟ୍ଟାଳିକା ପରେ
ସମ୍ରାଟ ମୁଁ ବନିଲି ଅନେକ ।
ଛିନ୍ନ କରି ଯେତେକ ବନ୍ଧନ—
ସ୍ୱର୍ଣ୍ଣ-ଲୌହ-ପ୍ରାଚୀରର ବାଡ଼ ।
କିଂତୁ ହାୟ !
ଆଜି ମୁହିଁ, ମଶାଣିର ହାଡ଼ ।

—*—

ଧାରାବାହିକ ଉପନ୍ୟାସ—



( ପୂର୍ବକଥା )

( ପାଣିପାଟପୁର ଇଲାକାର ଭୂତପୂର୍ବ ଜମିଦାର, ଅବସରପ୍ରାପ୍ତ ଇଂଜିନିୟର ସଂଗ୍ରାମ କେଶରୀ ସହରର ମାୟା ତୁଟାଇ ନିଜର ଭିଟାମାଟିକୁ ଫେରି ଆସିଥିଲେ । କାରଣ ଅବସର ଗ୍ରହଣ କରିବା ଆଗରୁ ସେ ଗୋପନରେ ସମ୍ବାଦ ପାଇଥିଲେ ସେହି ଅଞ୍ଚଳରେ ସରକାର ଖୁବ୍‌ଶୀଘ୍ର ବସାଇବେ ଏକ ରାସାୟନିକ ସାର କାରଖାନା !

ସହରରେ ଥିବାବେଳେ ଘର, ବାଡ଼ି ବଗିଚା ବ୍ୟତୀତ ଆଉ ସମସ୍ତ କୃଷିଜମି ସେ ବିକ୍ରୀ କରି ଦେଇଥିଲେ । ଗ୍ରାମଲୋକେ ଆଶା କରୁଥିଲେ, ହୁଏତ ଏଥର ଘର, ବାଡ଼ି, ବଗିଚା ବିକ୍ରୀ କରିବାକୁ ସଂଗ୍ରାମକେଶରୀ ଗ୍ରାମକୁ ଆସିଛନ୍ତି । କିନ୍ତୁ ଜମି ବିକିବା ବଦଳରେ ସେ ଆଖପାଖ ଅଞ୍ଚଳର ବିଭିନ୍ନ ଲୋକଙ୍କ କୃଷିଜମି, ତୋଟା, ବଗିଚା, ପୋଖରୀ ଚଢ଼ା ଦରରେ କିଣିବା ଦେଖି ସେମାନଙ୍କର ସ୍ୱପ୍ନ-ଭଙ୍ଗ ହେଲା । ଚଢ଼ା ଦର ପାଇବାରୁ ସେମାନଙ୍କ ମଧ୍ୟରୁ ଅନେକ ଆଗେଇ ଆସିଲେ ଜମି ବିକ୍ରୀ କରିବାକୁ ।

ଗ୍ରାମର ଶିକ୍ଷିତ ବେକାର ନିରଞ୍ଜନ, ସରପଞ୍ଚ ଶ୍ୟାମସୁନ୍ଦର ଓ ତାଙ୍କର ପୁର୍ବତନ ହଳିଆ ସୁଦର୍ଶନ ନିଜର ସ୍ୱାର୍ଥ-ସିଦ୍ଧି ପାଇଁ ସଂଗ୍ରାମକେଶରୀଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସଂଗ୍ରାମକେଶରୀଙ୍କୁ କେନ୍ଦ୍ର କରି ପାଣିପାଟପୁର ଓ ତାର ଆଖପାଖ ଅଞ୍ଚଳର ନିସ୍ତରଙ୍ଗ, ଶୀତଳ ଜୀବନ ପ୍ରବାହରେ ସୃଷ୍ଟି ହେଲା ବହୁ ତରଙ୍ଗର ଉଦ୍‌ବେଳନ ।

ତାପରେ··· ?

## ॥ ଛଅ ॥

ଯାହା ଯାହା ରାତିର ଅନ୍ଧକାରରେ ଶ୍ୟାମସୁନ୍ଦର ଦାଣ୍ଡପିଣ୍ଡାକୁ ଆସି ଦେଖିଲେ, ଫଗୁଣ ଆସିଛି । ମଳୟର ଦୋଳରେ ଝୁଲି ଝୁଲି, ଅବିରର ରଙ୍ଗରେ ଲାଲ୍ ହୋଇ ବସନ୍ତ ଆସିଛି । ତୋଟା ଭିତରର ଆମ୍ବଗଛ ଉପରୁ ସେ କୁହୁସ୍ୱନ ହେଲା କୋଇଲିର ଗୀତ ଶୁଣିଲେ ବି ଫଗୁଣ ଆସିଥିବା କଥା ତାଙ୍କର ଖିଆଲ୍ ନ ଥିଲା । ଗ୍ରାମ୍ୟ ରାଜନୀତିର ଜଟିଳ ଜଞ୍ଜାଳ ଭିତରେ ଶୀତ ପରେ କେତେବେଳେ ଚୁପ୍‌ଚାପ୍ ବସନ୍ତ ଆସି ସେ ଚାଲିଯାଏ, ସେ ଖବର ରଖିପାରନ୍ତି ନାହିଁ । ମନ୍ତ୍ରୀ ଆସିବା ଖବର ସମ୍ବାଦପତ୍ରରେ ବାହାରେ; ଇଚ୍ଛା ନଥିଲେ ବି ସେ ଖବର ବିଷୟରେ ସେ ସଚେତନ ହୁଅନ୍ତି । କିନ୍ତୁ ଖବର କାଗଜର ପୃଷ୍ଠାରେ ବସନ୍ତ ଆସେନାହିଁ...... ...ମଳୟର ଶିର୍ ଶିର୍ ସ୍ୱର ଲହରୀ ଯେ ଅନେକଙ୍କ ମନର ପତ୍ର ଝରା ଥୁଣ୍ଟା ଗଛରେ ଛନ ଛନ ନୂଆ କଅଁଳପତ୍ର କଅଁଳେଇ ଦିଏ, ସମ୍ବାଦପତ୍ର ସ୍ତରରେ ସେ କଥା ପ୍ରକାଶ ପାଏ-ନାହିଁ ।

ଶ୍ୟାମସୁନ୍ଦର ଆଜି ବଡ଼ ଭୋରରୁ କିନ୍ତୁ ହଠାତ୍ ଚମକି ଉଠିଲେ, ବସନ୍ତ ଆସିଛି !

ବାଃ, ବାଃ, ବସନ୍ତ ଆସିଛି !

କିଶୋର ବୟସରେ ବର୍ଷାରେ ଭିଜିଲାବେଳେ ବର୍ଷା ଆସିଛି, ବର୍ଷା ଆସିଛି ବୋଲି ଚିତ୍କାର କରି ସେ ଯେମିତି ଗାଁଆ ଦାଣ୍ଡର ଏ ମୁଣ୍ଡରୁ ସେ ମୁଣ୍ଡକୁ ଦୌଡ଼ୁଥିଲେ, ବସନ୍ତ ଆସିଛି, ବସନ୍ତ ଆସିଛି ବୋଲି କହି ସେମିତି ଆଜି ଦାଣ୍ଡସାରା ଦୌଡ଼ିବାକୁ ବି ତାଙ୍କର ଖୁବ୍ ଇଚ୍ଛା ହେଉଥିଲା ।

କିନ୍ତୁ ମନ ଭିତରେ ସେଇ ବଳବତୀ ଇଚ୍ଛାକୁ ସେ ଧମକ ଦେଇ ନିଜେ ଚୁପ୍ କରିଦେଲେ । କାରଣ ସେ ଆଜି କେବଳ ବୟସ୍କ ହୋଇ ନାହାନ୍ତି, ସେ ପୁଣି ଏ ଅଞ୍ଚଳର ସରପଞ୍ଚ ହୋଇଛନ୍ତି ! ମାଳାମ୍ବର-ବାବୁ ତାଙ୍କୁ ଅନେକଥର ଉପଦେଶ ଦେଇ କହିଛନ୍ତି, ଜାଣିଲ ଶ୍ୟାମସୁନ୍ଦର ! ତମେ ସରପଞ୍ଚ ହେଲ ଚଉଖୁମ୍ବା ରାଷ୍ଟ୍ରର ତମେ ହେଉଛ ପ୍ରଥମ ଖୁମ୍ବ । ଦ୍ୱିତୀୟ ଖୁମ୍ବ ହେଲା ଜିଲ୍ଲାପରିଷଦ, ତୃତୀୟ ଖୁମ୍ବ ପ୍ରାଦେଶିକ ବିଧାନସଭା ଆଉ ଚତୁର୍ଥ 'ଖୁମ୍ବ' ହେଉଛି ଦିଲ୍ଲୀ ଲୋକସଭା । କ୍ଷମତାର ବିକେନ୍ଦ୍ରୀକରଣ ପାଇଁ ଆମ ଦେଶରେ ଯେଉଁ ଚଉଖୁମ୍ବା ଶାସନ ବ୍ୟବସ୍ଥା ଚାଲୁ ହୋଇଛି, ଗ୍ରାମପଞ୍ଚାୟତ ହେଲା ତାର ମୂଳଦୁଆ । ତା ଉପରକୁ ଉପର ମହଲା ପରେ ମହଲା ସବୁ ତୋଳା ହୋଇଛି । ଯଦି ମୂଳଦୁଆଟିକ୍ ନ ରହେ, ପ୍ରଥମ ଖୁମ୍ବ ଠାଣ ନ ହୁଏ, ତାହାହେଲେ ଉପର ମହଲା ଭୁଷୁଡ଼ି ପଡ଼ିବ । ତମେ ଏଠାରେ ହଲିଲେ ଉପରେ ମୁଁ ଆଉ ସବା ଉପରେ ଆମର ପୂଜ୍ୟନେତା ଲୋକସଭା ସଭ୍ୟ ମାନ୍ୟବର ବରାହ ମିହିର ବାବୁଙ୍କ ଆସନ ଦୋହଲି ଯିବ ।

କଥା ଶେଷକରି ସେ ତାଙ୍କ ମୁହଁକୁ ଚାହିଁଥିଲେ । କାନ୍ଧରେ ପଡ଼ିଥିବା ଖଦଡ଼ ଚଦରକୁ ଆଉଥରେ ସଜାଡ଼ି ନେଇଥିଲେ । ସେ ରାଷ୍ଟ୍ର ପରିଚାଳନା ସମ୍ପର୍କରେ ଯେଉଁସବୁ ତତ୍ତ୍ୱ ବଖାଣିଲେ, ତାହା ତାଙ୍କର ବୋଧଗମ୍ୟ ହୋଇଛି କି ନାହିଁ, ଜାଣିବା ପାଇଁ ତାଙ୍କ ମୁହଁର ରେଖାଗୁଡ଼ିକୁ ନିରୀକ୍ଷଣ କଲେ ।

ଶ୍ୟାମସୁନ୍ଦର ଖୁବ୍ ଏକ ଅକ୍ଷମଣୀୟ ଅପରାଧ କରି ପକାଇଥିବା ଭଳି ଭୟପାଇ ପ୍ରଶ୍ନ କରିଥିଲେ, କଅଣ ଆଜ୍ଞା ମୋର ତ୍ରୁଟିହେଲା !

ମାଳାମ୍ବର ଫିକ୍‌କିନା ହସିଦେଇ ଉତ୍ତର ଦେଇ-ଥିଲେ, ଆରେ ନା-ନା-ତ୍ରୁଟି ହେଲାବୋଲି ମୁଁ କହୁନାହିଁ । ମୋ କହିବା କଥା ତମଠାରେ ମୋଟେ ନେତା ସୁଲଭ ଗାମ୍ଭୀର୍ଯ୍ୟ ନାହିଁ । ନେତା ହେବାର ପ୍ରଧାନ ଗୁଣ ହେଲା ନିଜର ହସ ଓ କାନ୍ଦକୁ ନିୟନ୍ତ୍ରଣ କରିବା । ନେତା ହେଲା ଲୋକଙ୍କର ପ୍ରତିନିଧି । ତା' ମୁହଁର ହସ କାନ୍ଦ ଲୋକଙ୍କ ସ୍ୱାର୍ଥ ଅନୁସାରେ ଯଦି

ପ୍ରକାଶ ନ ପାଇ ଅବେଳରେ ପ୍ରକାଶ ପାଏ, ତାହା-ହେଲେ ସେ କି ନେତା ! ହସ ମାତ୍ର ନ ଥିଲେ ବି ଲୋକଙ୍କୁ ଖୁସି କରିବା ପାଇଁ ଯେମିତି ନେତାଙ୍କୁ ଅଳ୍ପ ଅଳ୍ପ ଦାନ୍ତ ଦେଖାଇ ହସିବାକୁ ହୁଏ, ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ଭାଷଣ ଦେଉଥିବାବେଳେ, ସେମିତି କାନ୍ଦ ନ ମାଡୁଥିଲେ ବି ବେଳେ ବେଳେ ଆଖିରୁ ଲୁହ ଗଡ଼ାଇ ଭେ ଭେ କାନ୍ଦିବାକୁ ପଡ଼େ । ଆଉ ନେତା ଯଦି ନିଜ ଇଚ୍ଛା ଅନୁସାରେ ସ୍ଥାନ, କାଳ, ପାତ୍ର ଭେଦ ନ ରଖି ହେଁ ହେଁ ହୋଇ ହସେ, ଲୋକେ କହିବେ ଏ ତ ଗୋଟାଏ ହେତେରିସା !

ଶ୍ୟାମସୁନ୍ଦର ପୀତାମ୍ବର ବାବୁଙ୍କ କଥାର ଗୂଢ଼ ମର୍ମ୍ମ ବୁଝି ନ ପାରି, ନିଜ ମୁହଁରେ ହସ କାନ୍ଦର କୌଣସି ଅଭିବ୍ୟକ୍ତି ନ ଫୁଟାଇ ଜଗନ୍ନାଥଙ୍କ ମୂର୍ତ୍ତି ଆଗରେ ଗରୁଡ଼ ସ୍ତମ୍ଭ ଭଳି ଠିଆହୋଇ ରହିଥିଲେ ।

ପୀତାମ୍ବର ବାବୁ ତାଙ୍କୁ ଗୁରୁମନ୍ତ୍ର ଶିକ୍ଷା ଦେଲାଭଳି ନିମ୍ନ ସ୍ୱରରେ କହିଥିଲେ, ଶ୍ୟାମସୁନ୍ଦର । ଜମିଦାର ଉଦୟକେଶରୀଙ୍କ ପାଖରେ ଅନେକ ଦିନ ଧରି ଗୁମାସ୍ତା ରହିବା ଫଳରେ ଅକାରଣରେ ହସିବା ତମର ଗୋଟାଏ ବଦଭ୍ୟାସ ହୋଇ ଯାଇଛି । ଜମିଦାରଙ୍କୁ ଖୁସି କରିବା ପାଇଁ ତମେ ଯେମିତି କଥା, ଅକଥାରେ ସବୁବେଳେ ଦାନ୍ତ ଦେଖାଉଥିଲ, ଜମିଦାରୀ ଉଚ୍ଛେଦ ପରେ, ସରପଞ୍ଚ ହୋଇ ବି ତମେ ସେମିତି ଯେକୌଣସି ସର୍ବସାଧାରଣ ଲୋକଙ୍କ ପାଖରେ ଦାନ୍ତ ଦେଖାଉଛ । ତାହାହେଲେ ଏ ସର୍ବସାଧାରଣ ଲୋକେ ତମକୁ ସମ୍ମାନ ଦେଖାଇବେ କାହିଁକି ?

ନିଜର ତ୍ରୁଟିପ୍ରତି ସେଦିନଠୁ ସଚେତନ ହୋଇଥିଲେ ଶ୍ୟାମସୁନ୍ଦର । ସର୍ବସାଧାରଣ ଲୋକଙ୍କ-ଠାରୁ ନିଜକୁ ଦୂରେଇ ରଖିବା ପାଇଁ ସେ ନିଜ ଓଠ ଓ ଦାନ୍ତକୁ ବଡ଼ କାଚ ଅଇନା ଆଗରେ ଠିଆହୋଇ ଆଙ୍ଗୁଠି ଦେଖାଇ କଠୋର ଭାବରେ ଶାସନ କରି-ଥିଲେ । ଗ୍ରାମ ରାସ୍ତାରେ ଗଲାବେଳେ ସେ ନିଜ ନାକର ଅଗ୍ର ଭାଗକୁ ଲକ୍ଷ୍ୟରଖି ବାଟ ଚାଲନ୍ତି । ତାଙ୍କ ଦୁଇ ପାଖରେ କେଉଁ ସର୍ବସାଧାରଣ ଲୋକ ଯିବା ଆସିବା କରୁଛନ୍ତି କି ନାହିଁ, ସେଥିପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । କେଉଁ କରଦାତା କିମ୍ବା ଭୋଟଦାତା ତାଙ୍କୁ ଆସି ଓଳଗି ହେଲେ ସେ ହାତ ଉଠାନ୍ତି, କିନ୍ତୁ ପାଟି ଫିଟାନ୍ତି ନାହିଁ ।

ତାଙ୍କର ଏ ନେତା ସୁଲଭ ଗାମ୍ଭୀର୍ଯ୍ୟ ଲକ୍ଷ୍ୟକରି ରୁକ୍ମଣୀ ଥରେ ଅଭିଯୋଗ କରିଥିଲେ, ତମେ ମୁହଁଟାକୁ ଏମିତି ସବୁବେଳେ ଧାନ ଉଷୁଆଁ ହାଣ୍ଡି ଭଳି କରି ବସିଲେ, ମତେ ଭଡ଼ ମାଡ଼ୁଛି । ବାହାରେ ସରପଞ୍ଚ ହେବବୋଲି କଅଣ ଘର ଭିତରେ ବି ସରପଞ୍ଚ !

ଶ୍ୟାମସୁନ୍ଦର ଡାହାଣ ହାତ ତର୍ଜ୍ଜନୀ ଆଙ୍ଗୁଠି ଦେଖାଇ ଧମକ ଦେଇଥିଲେ, ଚୁପ୍... ଚୁପ୍... ମୁଁ ତମ ଉପଦେଶ ମାନିବି ନା ପୀତାମ୍ବରବାବୁଙ୍କ ଉପ-ଦେଶ ମାନିବି ! ଘରେ ବାହାରେ ଏମିତି ସଂଯମ ରଖିଛନ୍ତି ବୋଲି ତ ସେ ଏ ଅଞ୍ଚଳରୁ ବିଧାନସଭା ସଭ୍ୟ ହୋଇଛନ୍ତି ! ଆଉ ନିଜ ସ୍ତ୍ରୀ କଥା ମାନିଥିଲେ ସେ'ତ ମୋଭଳି ସରପଞ୍ଚ ହୋଇ ନିତି ବି. ଡି. ଓ.ଙ୍କ ପାଖକୁ ଦୌଡ଼ି ଥାଆନ୍ତେ !

ରୁକ୍ମଣୀ ତାଙ୍କ କଥାର କିଛି ପ୍ରତିବାଦ କରି ନ ଥିଲେ, କିନ୍ତୁ ସ୍ୱାମୀଙ୍କ କଥା ଶୁଣି ତାଙ୍କ ମୁହଁରେ ହାଲକାଏ ଗୋରା ହସ ଚମକି ଉଠିଥିଲା ।

ପତ୍ନୀଙ୍କ ସେ ହସ କଥା ସ୍ମରଣ କରି ଶ୍ୟାମସୁନ୍ଦର ପାହା ପାହା ରାତିର ଅସ୍ପଷ୍ଟ ଆଲୋକରେ ନିଜେ ହସି ପକାଇଲେ ।

ଫଗୁଣ ପୂର୍ଣ୍ଣିମୀ ଆଉ ପାଞ୍ଚଦିନ ବାକି । ଠାକୁର କିନ୍ତୁ ଭୋଗ ଖାଇବାକୁ ଆଜି ରାତିରୁ ବିମାନରେ ବସି ବାହାରିଛନ୍ତି । ଦୋଳ ଠାକୁରଙ୍କ ଘଣ୍ଟଧ୍ୱନିରେ ତାଙ୍କର ନିଦ୍ରାଭଙ୍ଗ ହୋଇଥିଲା । ସେହି ଘଣ୍ଟ, ମହୁରୀର ଶବ୍ଦ ଶୁଣି ସେ ହଠାତ ସଚେତନ ହେଲେ, ବସନ୍ତ ଆସିଛି !

ଆଉ ପାଞ୍ଚଦିନ ପରେ ଦୋଳ ମେଲଣ ହେବ । ପାଣିପାଟପୁର ଗାଁ ମୁଣ୍ଡ ଶେଷ ମେଲଣ ପଡ଼ିଆରେ ବିଭିନ୍ନ ଗ୍ରାମର ଦୋଳ ବିମାନ ଆସି ବସିବେ । ପୁଣି ହୁଏତ ସେଇ ଦୋଳ ମେଲଣକୁ କେନ୍ଦ୍ର କରି ଠେଙ୍ଗା ଉଠିବ, ରକ୍ତ ବହିବ । ରଙ୍ଗ ଅବିର ବଦଳରେ ମଣିଷ ରକ୍ତରେ ହେବ ହୋଲି ଖେଳ !

ଗତବର୍ଷ ଏଇ ମେଲଣରେ ମାଡ଼ପିଟା ପିଟି ଯୋଗୁ ପାଣିପାଟପୁର ଆଉ ବ୍ରାହ୍ମଣ ଶାସନ ମଧ୍ୟରେ ଫୌଜଦାରୀ ମକଦ୍ଦମା ଏ ପର୍ଯ୍ୟନ୍ତ ସୁଧା ଚାଲିଛି । ଏ ବର୍ଷ କଅଣ ହେବ କିଏ ଜାଣେ ?

ଘରପଞ୍ଚ ଭାବରେ ଦୁଇ ଗାଁ ଭିତରେ ଆପୋଷରେ କଳି ତୁଟାଇବା ପାଇଁ ସେ ଚେଷ୍ଟା କରିଥିଲେ । କିନ୍ତୁ ହେଲାନାହିଁ । ମାଳାମ୍ବରବାବୁ ତାଙ୍କୁ ଡାକି ବୁଝାଇଦେଲେ, ଏ ଗାଁଆ କଳରେ ମୁଣ୍ଡ ପୂରାଇ ଲାଭ ନାହିଁ ଶ୍ୟାମସୁନ୍ଦର ! ବ୍ରାହ୍ମଣ ଶାସନର ଲୋକେ ଆମକୁ ଭୋଟ ଦିଅନ୍ତି ନାହିଁ । ମେଲଣ ପଡ଼ିଆ ଚୋଟାରେ ତାଙ୍କ ଗ୍ରାମ ବିମାନ ନ ବସିଲାତ ଆମର ଯାଏ ଆସେ କେତେ ?

ଶ୍ୟାମସୁନ୍ଦରଙ୍କ ମନ କିନ୍ତୁ ଅସୁଧିର ହିଁ ଥିଲା । ମାଳାମ୍ବରବାବୁଙ୍କୁ ଭୋଟ ଦେଇ ନ ଥିଲେ ବି ବ୍ରାହ୍ମଣ ଶାସନର ଲୋକେ ତାଙ୍କର ପଡ଼ୋଶୀ । ତାଙ୍କର ନିଜ କୁଳପୁରୋହିତ ଜନାର୍ଦ୍ଦନ ମିଶ୍ରଙ୍କ ଘରତ ସେଇ ଗ୍ରାମରେ ! ସକାଳୁ ଉଠିଲେ ମୁହଁ ଗୁହାଁଗୁହିଁ, କେତେ ଦିନ ଆଉ ମନୋମାଳିନ୍ୟ ଲାଗି ରହିଥିବ !

ଶ୍ୟାମସୁନ୍ଦର ଚେଷ୍ଟା କରିଥିଲେ ।

କିନ୍ତୁ ହେଲା ନାହିଁ । ପାଣିପାଟପୁର ଗ୍ରାମର ଗୋପାଳମାନେ ବ୍ରାହ୍ମଣ ଶାସନର ଦିଅଁଙ୍କ ବିମାନ କାନ୍ଧେଇବା ପାଇଁ ମନା କରିଦେଲେ । ସେମାନେ ପାଞ୍ଚମାଇଲ ଦୂର ନୂଆପାଟଣା ଗ୍ରାମରୁ ଗୋପାଳ ଆଣି ଠାକୁର ବାହାର କରିଛନ୍ତି । ପାଣିପାଟପୁର ଗ୍ରାମର ଲୋକେ ସେଥିପାଇଁ ଅଡ଼ି ବସିଛନ୍ତି, ଯଦି ନୂଆ ପାଟଣାର ଗୋପାଳମାନଙ୍କ କାନ୍ଧରେ ଦିଅଁ ବିଜେ କଲେ, ସେ ଆମ ଗାଁ ମେଲଣ ପଡ଼ିଆକୁ ଆସିବେ କାହିଁକି ? ନୂଆପାଟଣାର ଚୋଟାରେ ତାଙ୍କର ମେଲଣ ହେଉ !

ନିଜ ଗାଁ ଲୋକଙ୍କ ଇଚ୍ଛା ବିରୁଦ୍ଧରେ ସ୍ୱର ଉଠାଇବାକୁ ଶ୍ୟାମସୁନ୍ଦର ସାହସ ଖୋଜି ପାଇ ନ ଥିଲେ । ଚାଲି ଚାଲି ସେ ଯାଇଥିଲେ ଅଗଣି ମଉସାଙ୍କ ପାଖକୁ । ମେଲଣ ପଡ଼ିଆ ସେଟା ତାଙ୍କର ସମ୍ପତ୍ତି । ସେ କଥାଦେଲେ ହୁଏତ ଗାଁ ଲୋକେ ତାଙ୍କ କଥାରୁ ବାହାର ଯିବେ ନାହିଁ ।

ତାଙ୍କ କଥା ଶୁଣିସାରି ଅଗଣି ମଉସା ଗୋଟାଏ ତାଳି ମାରିଦେଇ କହିଲେ, ବୁଝିଲୁ ଶ୍ୟାମ ! ଗତସନ ଚୋଟାରେ ଦୋଳ ମେଲଣବେଳେ ଯେଉଁ ଫୌଜଦାରୀ ହେଲା, ତାହା ଦେଖି ମୋ ଆଖି ଖୋସି ହୋଇ ଯାଇଥିଲା । ଏ ବର୍ଷ ସେଥିପାଇଁ ଗୃହଜମି ସାଙ୍ଗରେ ସେ ଚୋଟାକୁ ମୁଁ ସଗ୍ରାମକେଶରୀଙ୍କୁ କବଲା କରି ଦେଇଛି । ଆଉ ସେ ଚୋଟା ମୋର ହୋଇନାହିଁ କି, ସେ ଦୁଶ୍ଚିନ୍ତା ବି ମୋ ମୁଣ୍ଡରେ ନାହିଁ ।

ଅଗଣି ମଉସା ଜମି ସଗ୍ରାମ କେଶରୀଙ୍କୁ କବଲା କରି ଦେଇଥିବା କଥା ସେ ଜାଣିଥିଲେ, କିନ୍ତୁ ତା ସାଙ୍ଗରେ ମେଲଣ ପଡ଼ିଆ ଚୋଟାକୁ କବଲା କରି ଦେଇଛନ୍ତି ବୋଲି ତାଙ୍କର ଧାରଣା ନଥିଲା ।

ସେ ଗୁମ୍ମାରି ଫେରି ଆସିଥିଲେ ।

ତା ଆରଦିନ ଶୁଣିଥିଲେ, ସଗ୍ରାମକେଶରୀ ସହରକୁ ଚାଲି ଯାଇଛନ୍ତି । ଆଉ ଗଲାବେଳେ କୁଆଡ଼େ ସୁଦର୍ଶନକୁ କହି ଯାଇଛନ୍ତି, ଯଦି ଆମେ ମେଲଣ ପଡ଼ିଆରେ ଦୋଳ ମେଲଣ ହୁଏ ଯାତପୁରୁଷ ଧରି ଯେଉଁ ଦୋଳ ସେଠାକୁ ଆସୁଥିଲେ, ସେ ସମସ୍ତ ଦୋଳ ବିମାନ ସେଠାକୁ ଆସିବ । ତା' ନ ହେଲେ କାହାରି ଦୋଳ ବିମାନ ସେ ଚୋଟା ଭିତରକୁ ଆସି ପାରିବ ନାହିଁ ।

ଶ୍ୟାମସୁନ୍ଦର ସୁଦର୍ଶନର କଥା ଶୁଣି ଅକ୍କାମାରି ରହି ଯାଇଥିଲେ । ଦୋଳ ମେଲଣକୁ ନେଇ ଏ ବର୍ଷ

ପୁଣି ଯେ ଆଉ ଏକ ନୂଆ ନାଟକ ଜମି ଉଠିବ, ସେ କଥା କଳ୍ପନା କରିବାକୁ ତାଙ୍କୁ କଷ୍ଟ ଲାଗି ନ ଥିଲା ।

ବଡ଼ ଭୋଅରରୁ ପାଖ ଗାଁଆରୁ ଭାସି ଆସୁଥିବା ଢୋଲ ଠାକୁରଙ୍କ ଘଣ୍ଟ, ମହୁରୀ ଶବ୍ଦ ଶୁଣି ସେଥିପାଇଁ ବସନ୍ତ ଆସିବା କଥା ମନେ ପଡ଼ିବା ସଙ୍ଗେ ସଙ୍ଗେ ଢୋଲ ମେଳଣ କଥା ମନେପଡ଼ି ଗୁଣ୍ଡ ଭିତର ଦବିଗଲା ।

## ॥ ସାତ ॥

କାର୍‌ର ହର୍ଣ୍ଣ ଶୁଣି ଗାଁଆର ଟ୍ରୋକ ଟ୍ରୋକ ପିଲା କେବଳ ଦୌଡ଼ ଆସିଲେ ନାହିଁ, କବାଟ ଫାଙ୍କରୁ ବହୁ ଗ୍ରାମ୍ୟ ବଧୂଙ୍କ କୌତୁହଳୀ ଦୃଷ୍ଟି ମଧ୍ୟ ଚଳମାନ କାର୍ ଉପରକୁ ଲମ୍ବି ଆସିଲା । ତା' ପରେ ପାଣି-ପାଟପୁର ଗ୍ରାମସାରା ବ୍ୟସ୍ତ ହୋଇଗଲା, ଜମିଦାର ଘରଲୋକେ ସହରରେ ସହର ଛାଡ଼ ଗ୍ରାମକୁ ଆସିଗଲେ !

କାର୍ ଭିତରୁ ପ୍ରଥମେ ବାହାରିଲେ ସଂଗ୍ରାମ କେଶରୀ ଆଉ ତାଙ୍କ ପଛେ ପଛେ ସାନ ଝିଅ ଇନ୍ଦ୍ରାଣୀ । ସବାଶେଷରେ ସଂଗ୍ରାମକେଶରୀଙ୍କ ପତ୍ନୀ କାଦମ୍ବିନୀ ଦେବୀ ।

ସୁଦର୍ଶନ ମାଆଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ପ୍ରଶ୍ନ କଲା, ବାବୁ କମ୍ପା ବୋହୂମାଆ କେହି ଆସିଲେ ନାହିଁ !

ସଂଗ୍ରାମକେଶରୀ ମୃଦୁ ହସି କହିଲେ, ସମସ୍ତେ ଆସିବେ । ପଛେ ପଛେ ସମସ୍ତେ ଆସିବେ । ଭିଟା-ମାଟିକୁ ନ ଆସି ସେମାନେ ସବୁଦିନେ କୁଆଡ଼େ ରହିବେ ସୁଦର୍ଶନ !

ସୁଦର୍ଶନର ମୁହଁରେ ପରମ ତୃପ୍ତିର ହସ ।

ଅଳ୍ପ ସମୟ ମଧ୍ୟରେ ସଂଗ୍ରାମକେଶରୀଙ୍କ ଚଉ-ପାଢ଼ୀ ପାଖରେ ଢୋଲ ମେଳଣ ଭଳି ଭିଡ଼ ଜମିଗଲା । ସଂଗ୍ରାମକେଶରୀଙ୍କ ପତ୍ନୀ ଓ କନ୍ୟାକୁ ଦେଖିବା ପାଇଁ ଗାଆଁର ଅଧେ ସ୍ତ୍ରୀ ଲୋକ ଓ ଟ୍ରୋକ ପିଲା ଆସି ରୁଣ୍ଡହେଲେ ।

କାଦମ୍ବିନୀ ପ୍ରଥମେ ଯାଇ ପୂର୍ବତନ ଶୋଇବା ଘର କୋଣରେ କେଜାଣି କାହାକୁ ସ୍ମରଣ କରି ମୁଣ୍ଡିଆ ମାରିଲେ । ତା ପରେ ବେକରେ ପଣତ ଗୁଡ଼ାଇ ବୈଠକଖାନା କାନ୍ଥରେ ଝୁଲୁଥିବା ଶଶୁର, ଅଜାଶୁର-ମାନଙ୍କ ପ୍ରତିକୃତି ତଳେ ଭୂମିଷ୍ଠ ପ୍ରଣତି ଜଣାଇଲେ ।

ତାଙ୍କ ଦୁଇ ଆଖିର କୋଳ ପୂର୍ଣ୍ଣକରି ଜଳ ଭରି ଆସୁଥିଲା । ହୁଏତ ଅନେକ ଦିନର ଭଙ୍ଗା ଭଙ୍ଗା ପୁରୁଣା ସ୍ମୃତିସବୁ ଶୋଭାଯାତ୍ରା କରି ତାଙ୍କ ମନର ରାଜପଥକୁ ପରିକ୍ରମା କରି ଯାଉଥିଲେ । ପୃଥିବରେ ଏ ଗାଁଆକୁ ଫେରି ଆସିବେ, ଏ କଳ୍ପନା ତ ତାଙ୍କ ମନକୁ କେବେ ଛୁଇଁ ନ ଥିଲା !

କାର୍ ପଛେ ପଛେ ଆସିଲା ଟ୍ରକ୍ ଭର୍ତ୍ତି ଜିନିଷ । ଯେଉଁମାନେ ସେ ପର୍ଯ୍ୟନ୍ତ ସୁଦ୍ଧା ଭାବୁଥିଲେ ନିଜ କଥା ଓ ପତ୍ନୀଙ୍କୁ ନେଇ ସଂଗ୍ରାମକେଶରୀ ଦିନ କେତୋଟି ପାଇଁ କୁଣିଆ ଭଳି ପରିଭ୍ରମଣରେ ଆସିଛନ୍ତି, ଟ୍ରକ୍‌ରୁ ଜିନିଷ ସବୁ ଓହ୍ଲାହେବା ଦେଖି ସେମାନେ ବୁଝିଲେ, ସଂଗ୍ରାମକେଶରୀଙ୍କ କଥା ଓ କାମରେ ତଫାତ୍ ନାହିଁ । ସତକୁ ସତ ଏ ଗାଁଆରେ ଘର କରି ସେ ରହିବେ ।

ସଂଗ୍ରାମକେଶରୀଙ୍କ ପରିବାରର ଗୃହ ପ୍ରବେଶ ଘଟଣାକୁ କେନ୍ଦ୍ର କରି ପ୍ରଥମେ ପ୍ରଥମେ ଗ୍ରାମ ସାରା ଯେଉଁ କଳଗୁଞ୍ଜନ ସୃଷ୍ଟି ହୋଇଥିଲା, କିଛି ସମୟ ପରେ ସେ ଗୁଞ୍ଜନ ନୀରବ ହୋଇଗଲା । ଗ୍ରାମର ଜୀବନ ପ୍ରବାହ ପୋଖରୀର ଜଳ ଭଳି । ଟ୍ରୋକ ଗୋଟିଏ ଗୋଡ଼ି ପଡ଼ିଲେ ପୋଖରୀ ଭିତରେ ଯେମିତି ଢେଉ ଉଠି ସାଙ୍ଗେ ସାଙ୍ଗେ ପୁଣି ସ୍ଥିର ହୋଇଯାଏ, ଗ୍ରାମ ଭିତରେ ସେହିପରି ଟ୍ରୋକ ଘଟଣାଟିଏ ଘଟିଲେ କ୍ଷଣକ ପାଇଁ ଗ୍ରାମ ସାରା ଚହଳ ସୃଷ୍ଟିକରି ଆପେ ଆପେ ପୁଣି ସେ ଘଟଣା ଭୁଲି ହୋଇଯାଏ ।

ଘରର ସବୁ ଜିନିଷ ଯଥା ସ୍ଥାନରେ ରଖି ଖାଇ ପିଇ ଟିକିଏ ବିଶ୍ରାମ ନେବାବେଳକୁ ସଂଗ୍ରାମକେଶରୀ ଲକ୍ଷ୍ୟ କଲେ, ଦିନ ଛଅଟା ହୋଇଯାଇଛି । ଶଯ୍ୟା ଗୁଡ଼ି ଉଠୁ ଉଠୁ ପ୍ରାୟ ସନ୍ଧ୍ୟା ।

ତମକୁ ଶ୍ୟାମ ଗୁମାସ୍ତା କେତେବେଳୁ ଖୋଜୁଛି ।—ଶଯ୍ୟା ଗୁଡ଼ି ଉଠୁ ଉଠୁ କାଦମ୍ବିନୀ ସଂଗ୍ରାମକେଶରୀଙ୍କୁ ସମ୍ବାଦ ଦେଲେ ।

ଶ୍ୟାମ ଖୋଜୁଛି ? କାହିଁ ? କଅଣ ପାଇଁ ଖୋଜୁଛି ? —ସଂଗ୍ରାମକେଶରୀ ପତ୍ନୀଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନଗୁଡ଼ିକ ଉଚ୍ଚାରଣ କରି ଚାଲି ଚାଲି ଦାଣ୍ଡ ବାରଣ୍ଡାକୁ ଚାଲି ଆସିଲେ ।

ଶ୍ୟାମସୁନ୍ଦର ସେହି ଦାଣ୍ଡ ପିଣ୍ଡାରେ ବସି ତାଙ୍କୁ ଅପେକ୍ଷା କରୁଥିଲେ ।

ମୁଁ ଆପଣଙ୍କୁ ଏ ଦୁଇ ତିନଦିନ ହେଲା ମନେ ମନେ ଅନେକ ଖୋଜୁଛି । ଆସିବା ପାଇଁ ଟେଲିଗ୍ରାମ୍ କରି ଥାଆନ୍ତି । ସୁଦର୍ଶନ କହିଲା, ଆପଣ ଏଇ ଦିନେ ଓଳିଏ ଭିତରେ ଆସିବେ ।— ଶ୍ୟାମସୁନ୍ଦର କଥା ଶେଷ କରିବା ଆଗରୁ ତାଙ୍କର ପାଦଛୁଇଁ ପ୍ରଣାମ କଲେ ।

ମତେ ହଠାତ୍ ଖୋଜିବା ଦରକାର ପଡ଼ିଲା କାହିଁକି ? —ସଂଗ୍ରାମକେଶରୀଙ୍କ ଦୁଇ ଆଖିର ଭ୍ରୂଲତା ବିସ୍ମୟରେ କୁଞ୍ଚିତ ହୋଇଗଲା ।

ଶ୍ୟାମସୁନ୍ଦର ନିଜର ସେଇ ପୁରାତନ ଅଭ୍ୟାସାନୁବର୍ତ୍ତୀ ହୋଇ କାନମୁଣ୍ଡା କୁଣ୍ଡାଇବାକୁ ଲାଗିଲେ । ମୂଳ ପ୍ରସଙ୍ଗକୁ ଏଡ଼ାଇ ଦିବାପାଇଁ କହିଲେ, ଆପଣ ଗ୍ରାମରେ ନ ଥିଲେ ବୋଲି ଏ ଲୋକଙ୍କ କଥା ମୁଁ ବୁଝୁଥିଲି । ଆପଣ ଆସିଗଲେ—ମୋ ମୁଣ୍ଡରୁ ବୋଝ ବି ହାଲୁକା ହୋଇଗଲା । ଆପଣଙ୍କ ଗ୍ରାମ କଥା ଆପଣ ବୁଝିବେ । ମୁଁ କିବା ଲୋକ —ଏ ସବୁ ଜଟିଳ ସମସ୍ୟା ସମାଧାନ କରିବା ପାଇଁ ମୋର ଶକ୍ତି କାହିଁ ! ଆପଣ ନ ଥିଲେ ବୋଲି ଗ୍ରାମଲୋକେ ମୋ ବେକରେ ଢିଙ୍କି ବାନ୍ଧି ଦେଇଥିଲେ—ଏଣିକି ଆପଣ ଆଦେଶ ଦେବେ—ମୁଁ ଆଜ୍ଞା ପାଳନ କରିବି······

ସଂଗ୍ରାମ କେଶରୀଙ୍କ ଆଖି ଡୋଳା ଦୁଇଟି ବିସ୍ଫାରିତ ହେବାକୁ ଲାଗିଲା । ଶ୍ୟାମସୁନ୍ଦରଙ୍କ କଥା ଶୁଣି ତାଙ୍କର ମନେହେଲା, କୌଣସି ଜଟିଳ ସମସ୍ୟାର ସମ୍ମୁଖୀନ ହୋଇ ସେ ତାଙ୍କ ପାଖକୁ ଛୁଟି ଆସିଛି । ସମସ୍ୟାଟା କଅଣ ଜାଣିବା ପାଇଁ ତାଙ୍କର କୌତୁହଳ ହେବା ସ୍ୱାଭାବିକ ।

ସେ ଶ୍ୟାମସୁନ୍ଦରଙ୍କୁ ଅଭୟ ଦେବାଭଳି ଶାନ୍ତ କଣ୍ଠରେ କହିଲେ ଘଟଣାଟା କଅଣ ମତେ ଖୋଲି କୁହ ଶ୍ୟାମସୁନ୍ଦର ! ତମକୁ ମୁଁ ନିଶ୍ଚୟ ସାହାଯ୍ୟ କରିବି···

ଶ୍ୟାମସୁନ୍ଦର ମୁଣ୍ଡ ତଳକୁ ପୋତି କହିଲେ, ଏଇ ହୋଲି ମେଳଣ କଥା·········ଥାନା ପୋଲିସ ଅଫିସର ମତେ ଦୁଇଥର ଡକାଇ କହିଲେଣି, ସେଠାରେ ଶାନ୍ତିଭଙ୍ଗ ହେବାର ସମ୍ଭାବନା ଅଛି । ଯଦି ପଞ୍ଚାୟତ ସେ ବିବାଦର କିଛି ଆପୋଷ ସମାଧାନ ନ କରେ, ତାହାହେଲେ ମେଳଣ ପଡ଼ିଆରେ ଶହେ ଚଉରାଳିଶି ଧାରା ଜାରିହେବ······ବାପ, ଅଜା ସାତପୁରୁଷର ମେଳଣ···ପୋଲିସ ଆଇନ୍‌କୁ ଲୋକେ ମାନିବେ ବୋଲି ମୋର ବିଶ୍ୱାସ ହେଉନାହିଁ ।

ପ୍ରସଙ୍ଗଟା ଶୁଣିସାରି ସଂଗ୍ରାମକେଶରୀ ଆଶ୍ୱସ୍ତ ହେଲେ । କହିଲେ, ଏଥିପାଇଁ ଏତେ ଅଧୈର୍ଯ୍ୟ ହେବାର କଅଣ ଅଛି ! ଯଦି ମେଳଣ ଝଗଡ଼ା ଆମ ଗାଁ ଆଉ ବ୍ରାହ୍ମଣ ଶାସନ ଭିତରେ ସମାଧାନ ହୋଇ ନ ପାରେ, ତେବେ ଆଖ ପାଖ ଆଉ ପାଞ୍ଚଖଣ୍ଡ ଗାଁଆର ମୁଖିଆ ଲୋକଙ୍କୁ ଡାକିବା···ତମେ କିଛି ବ୍ୟସ୍ତ ହୁଅନାହିଁ ଶ୍ୟାମ ସୁନ୍ଦର ! ମୋ ତୋଟା ମୋ ପଡ଼ିଆରେ ମୁଁ ପୋଲିସର ଶହେ ଚଉରାଳିଶି ଧାରାକୁ ପ୍ରବେଶ କରିବାକୁ ଦେବିନାହିଁ········· !

ସଂଗ୍ରାମକେଶରୀଙ୍କ କଣ୍ଠସ୍ୱର ଶେଷ ଆଡ଼କୁ କେମିତି ଏକ କର୍କଶ ଅଥଚ ଭାରି ଭାରି ଶୁଣାଗଲା । ଏ କଣ୍ଠସ୍ୱର ଶ୍ୟାମସୁନ୍ଦର ଅନେକ ଦିନ ତଳେ ଶୁଣିଥିଲେ···ସେତେବେଳେ ଦେଶ ସ୍ୱାଧୀନ ହୋଇ-

ନ ଥିଲା··· ଗାଁ ଗହଳରେ ଥିଲା ଜମିଦାରମାନଙ୍କ ଅଖଣ୍ଡ ପ୍ରଭାବ······ସାମିଆନାରେ ବସି ଜମିଦାର ଉଦୟକେଶରୀ ଅବାଧ ପ୍ରଜାଙ୍କୁ ଶାସନ କରିବାକୁ ଗସ୍ତରେ ଯାଉଥିଲେ···ସେତେବେଳେ ଶ୍ୟାମସୁନ୍ଦରଙ୍କ ବୟସ କୋଡ଼ିଏ କମ୍ବା ଏକୋଇଶି, ସେ ନୂଆ ଗୁମାସ୍ତା ଭାବରେ ମୁହରର ହୋଇଥାଆନ୍ତି······ଜମିଦାରଙ୍କ ସାଙ୍ଗରେ ସେ ଯାଆନ୍ତି ସାମିଆନା ପଛେ ପଛେ ପାଦରେ ଚାଲି ଚାଲି···ଜମିଦାରଙ୍କ ହୁକୁମ୍ ଅମାନ୍ୟ କରିଥିବା ପ୍ରଜାର ହାତ ଓ ଅଣ୍ଟାରେ ଦୌଡ଼ି ଲଗାଇ ପିଆଦାମାନେ 'ଧରି ଆଣନ୍ତି···ଜମିଦାର ଉଦୟକେଶରୀ ଠିକ୍ ଏମିତି କର୍କଶ ଅଥଚ ଓଜସ୍ୱିନୀ ଭାଷାରେ ଆଦେଶ ଦିଅନ୍ତି··· !

ଉଦୟକେଶରୀଙ୍କ ସେଇ କଣ୍ଠସ୍ୱରର ପ୍ରତିଧ୍ୱନି ସଂଗ୍ରାମକେଶରୀଙ୍କ କଣ୍ଠରେ ଶୁଣି ଶ୍ୟାମସୁନ୍ଦର ଚମକି ଉଠିଲେ । କିନ୍ତୁ ତାପରେ ତାଙ୍କ ମୁହଁରେ ପରିତୃପ୍ତିର ହସ ଫୁଟି ଉଠିଲା । ସ୍ଥାନ ତ୍ୟାଗକରି ଚାଲି ଆସିବା ଆଗରୁ ସେ କହିଗଲେ, ଆପଣଙ୍କ କଥା ଶୁଣି ମୋ ପିଣ୍ଡରେ ପ୍ରାଣ ପଶିଲା । ସତ କହୁଛି, ଏଇ କେଇଦିନ ହେଲା ଥାନାକୁ ଦୌଡ଼ି ମୋର ଗୋଡ଼ରେ ବଳ ହେଉନାହିଁ ।

## ॥ ଆଠ ॥

ତେର ଚୌଦ ବର୍ଷର ଝିଅଟି ଇନ୍ଦ୍ରଣୀ ।

ସଂଗ୍ରାମକେଶରୀଙ୍କ ସର୍ବଶେଷ ସନ୍ତାନ । ସେଥିପାଇଁ ଟିକିଏ ବେଶୀ ଗେହ୍ଲା । ଯୁଆଡ଼େ ଗଲେ ବି କାଦମ୍ବିନୀ ତାକୁ ସାଙ୍ଗରେ ନେଇ ଯାଆନ୍ତି । ପୁଅ, ବୋହୂ, ବଡ଼ ଝିଅ ମନା କରୁଥିଲେ, ବୋଉ ! ଆପଣମାନେ ଯଦି ଗ୍ରାମକୁ ତୀର୍ଥ ଦର୍ଶନରେ ଯାଉଛନ୍ତି, ଯାଆନ୍ତୁ, କିନ୍ତୁ ଇନ୍ଦିକୁ ସାଙ୍ଗରେ ନିଅନ୍ତୁ ନାହିଁ । ସେ କେବେ ଚାଲି ହୁଡ଼ରେ ଚାଲିନି, ଅରମା ଅସନା ସାପ, ବେଙ୍ଗ ଭରି ଗାଁ ମାଟିରେ ଚଲିନ । ତାର ଅସୁବିଧା ହେବ । ସେ ଏଇଠାରେ ଥାଉ···ଆପଣ କେତେଦିନ ବା ସେଠାରେ ରହିବେ !

କାଦମ୍ବିନୀ ଝିଅକୁ ସାଙ୍ଗରେ ଆଣିବେ କି ନାହିଁ, ସେ ଦିଷୟରେ ଦୋ'ଦୋପାଞ୍ଚ ହେଉଥିଲେ । ବିଜୁଳି ଆଲୁଅ, ବିଜୁଳି ପଙ୍ଖା ନ ହେଲେ ଇନ୍ଦିର ପାଠପଢ଼ା ଚଳେନା । ପୁଣି ଗ୍ରୀଷ୍ମଦିନ ଆସୁଛି !

ଇନ୍ଦ୍ରଣୀ ନିଜେ ଆସିବା ପାଇଁ ଜିଦ୍ କଲା ।

କହିଲା, ନା—ବୋଉ ମୁଁ ଯିବି । ଏମାନେ· ସମସ୍ତେ ଗ୍ରାମ ଦେଖିଛନ୍ତି —ମୁଁ ଆମ ଗ୍ରାମକୁ କେବେ ଯାଇନି । ଗ୍ରାମ କେତେ ସୁନ୍ଦର ! ମୁଁ ଯିବି—

ଭାଉଜ ପରିହାସ କରିଥିଲେ, ଦୂର ପାହାଡ଼ ସବୁବେଳେ ସୁନ୍ଦର ଦେଖାଯାଏ; ପାଖକୁ ଗଲେ ପଥର ଢିମା । ଗାଁ କେବେ ଦେଖିନାହଁ ବୋଲି ସାଙ୍ଗମାନଙ୍କଠାରୁ ଗାଁ କଥା ଶୁଣି ସୁନ୍ଦର ବୋଲି ଭାବୁଛ । ଥରେ ଗାଁଆରେ ପହଞ୍ଚିଲେ, ଫେରିବା ଲାଗି ଲେଜ୍‌ଟାଣି ବସ୍ ପାଖକୁ ଧାଇଁବ । ଆଉ ଏତେ ଯଦି ଗାଁ ଉପରେ ମମତା, ତାହାହେଲେ ଆଉ କିଛିଦିନ ଅପେ‌କ୍ଷା କର, ଗୋଟାଏ ଗାଉଁଲି ବର ସାଙ୍ଗରେ ବାହା କରିଦେବା—

ଜିଭ ଦେଖାଇ ନୂଆ ଭାଉଜଙ୍କୁ ଖତେଇ ହୋଇଥିଲା ଇନ୍ଦ୍ରଣୀ । ଉତ୍ତର ଦେଇଥିଲା, ଦେଖିବ—ଯଦି ମୁଁ ସହରରେ ବାହାହୁଏ· ଗୋଟାଏ ଗାଁ ଉଁଲି ଲୋକକୁ ବାହା ହେବି······

ନୂଆ ଭାଉଜ ଚୁପ୍ ହୋଇ ଯାଇଥିଲେ । କିନ୍ତୁ ଗୀତ ଅପା ତାକୁ ସାବଧାନ କରାଇ ଦେଇଥିଲେ, ଏ ଇନ୍ଦି ! ବାହାହେଲା ବେଳେ ପଛେ ଯାହାକୁ ବାହାହେବୁ, କିନ୍ତୁ ଗାଁ ବାଟରେ ଯିବାବେଳେ ଦେଖି ଶୁଣି ଯିବୁ । ସେ ପାଣିପାଟପୁର ଗାଁଆ ରାସ୍ତାରେ ଯେଉଁ ସାପ·· ······ !

ସାପ କଥା କହିଲାବେଳେ ଗୀତ ଅପାଙ୍କ ସାରା ଦେହ କିପରି ଶିର ଶିର୍ ହୋଇ ଉଠିଥିଲା, ତାହା ଲକ୍ଷ୍ୟ କରିଥିଲା ଇନ୍ଦ୍ରଣୀ । ଗାଁଆକୁ ଯାଇଥିବାବେଳେ ଗୀତ ଅପା ଥରେ କୁଆଡ଼େ ଗୋଟାଏ ଧଣ୍ଡସାପ ପୋଖରୀ ହୁଡ଼ାରେ ପାଦତଳେ ମାଡ଼ି ପକାଇଥିଲେ ।

ସେଥିପାଇଁ ଗାଁଆ କଥା ଭାବିଲେ ପ୍ରଥମେ ତାଙ୍କର ସେଇ ଧଣ୍ଡସାପ କଥା ମନେ ପଡ଼ି ଦେହ ଶୀତେଇ ଉଠେ ।

ଇନ୍ଦ୍ରାଣୀ ଉତ୍ତର ଦେଇଥିଲା, ମୁଁ ତ ସାଇକେଲ ନେଇ ଯାଉଛି । ଗାଁଆ ଦାଣ୍ଡରେ ସାଇକେଲ୍‌ରେ •ଯିବି—ସାପ ମୋର୍ କଅଣ କରିବ ?

ପାଣିପାଟପୁର ଗାଁଆରେ ପହଞ୍ଚିଲା ପରେ ନୂଆ ଭାଉଜଙ୍କ କଥା ସେ ଭୁଲି ଯାଇଥିଲା, କିନ୍ତୁ ଗୀତଅପାଙ୍କ କଥା ସେ ପାଶୋରି ପାରି ନ ଥିଲା । ମନରେ ଯେତେ ଦମ୍ଭ ଥିଲେ ବି ସାପକଥା ମନେ ପଡ଼ିଗଲେ ଏକ ଶୀତଳ ଶିହରଣ ତାର ମେରୁଦଣ୍ଡ ହାଡ଼କୁ ଥରେଇ ଦେଉଥିଲା ।

ଗାଁଆ ବୁଲି ବାହାରିଲାବେଳେ ସେଥିପାଇଁ ସେ ତାର ସାଇକେଲ ବାହାର କଲା । ଆଉ ଗୋଟିଏ ସାଇକେଲ ନେଇ ସାଙ୍ଗରେ ଗଲା ସୁଦର୍ଶନ ।

ପାଣିପାଟପୁର ଗାଁଆର ଅଲେଖା ଇତିହାସରେ ତେର ବର୍ଷର ଝିଅ ଶାଢ଼ୀ ନ ପିନ୍ଧି ଫ୍ରକ୍ ପିନ୍ଧିବା ହୁଏତ ନୂଆ କଥା ହୋଇ ନପାରେ, କିନ୍ତୁ ଗାଁଆ ଦାଣ୍ଡରେ ପୁରୁଷଙ୍କ ଭଳି ସାଇକେଲ ଚଢ଼ି ଯିବା ନିଶ୍ଚୟ ଅଭିନବ ଘଟଣା । ସେଥିପାଇଁ ଇନ୍ଦ୍ରାଣୀର ସାଇକେଲ ରେସ୍ ଦେଖିବା ପାଇଁ ଗାଁଆ ଦାଣ୍ଡରେ ପ୍ରଚୁର ଭିଡ଼ ହୋଇଥିଲା । ଅନେକ ବୟସ୍କ ପୁରୁଷ ମହିଳାଙ୍କ ଭ୍ରୂଲତାକୁ କୁଞ୍ଚିତ କରି ଆଉ ଛୋଟ ଛୋଟ ପୁଅ ଝିଅଙ୍କ ଆଖି ଡୋଳାରେ ବିସ୍ମୟର ବିଦ୍ୟୁତ୍ ନଚାଇ ନଚାଇ, ଗ୍ରାମ ପରିକ୍ରମା ଶେଷକରି ଯେତେବେଳେ ଇନ୍ଦ୍ରାଣୀ ଘରକୁ ଫେରି ଆସିଲା, ସେତେ-ବେଳକୁ ସମାପ୍ତ ସୂର୍ଯ୍ୟର ଶେଷ କିରଣ କାନ୍ଥ ଉପରେ ଜାଇ ଲହ ଲହ କରୁଛି ।

ଅଗଣା ମଝିରେ ଠିଆହୋଇ ଇନ୍ଦ୍ରାଣୀ ଅନୁଭବ କଲା । ଓଦା ମାଟିର ଏକ ଗନ୍ଧ କପରି ତାର ଘ୍ରାଣେନ୍ଦ୍ରିୟ ଉପରେ ଗୃପ ସୃଷ୍ଟି କରୁଛି ।

ଅବାକ୍ ଆଖିରେ ସେ ଚାହିଁ ରହିଲା ତାଙ୍କ ପୁରୁଣା କୋଠା ଘରର ପାଣିଦାଗ ଲଗା କାନ୍ଥ ଆଡ଼କୁ । ଇଟା ଚୂନର ସେହି ବହୁ ପୁରୁଣା କୋଠା ଦେହରୁ ଚୂନ ବାଲିର ପଲସ୍ତରା ଖସି ପଡ଼ିବା ଫଳରେ ଇଟା-ଗୁଡ଼ାକ ବାହାରକୁ ଦାନ୍ତ ଦେଖାଉଛନ୍ତି । ସେଇ ଇଟା ଯୋଡ଼ାର ମଝିରେ ଶିଉଳି ଆଉ ଛୋଟ ଛୋଟ ଉଦ୍ଭିଦମାନ ଗଜୁରି ଉଠିବା ଫଳରେ ସାରା କାନ୍ଥଟା ବିଚିତ୍ର ରୂପ ଧାରଣ କରିଛି । ଖଣ୍ଡିଆ, ଖାବରା ହୋଇ ଥିବା ସେହି କାନ୍ଥରୁ ବାହାରୁଛି ଏକ ଓଦା ଓଦା ଗନ୍ଧ ।

ଏଇ ଶିଉଳି ଲଗା, ଭଙ୍ଗା ପୋଡ଼ା ଇଟାର ଗନ୍ଧ ସହିତ ମିଶି ରହିଛି ଭୂତପୂର୍ବ ଜମିଦାର ପରିବାର ବୃନ୍ଦାଆଦିର ଉଡ଼ିଯାଇଥିବା କର୍ପୂରର ସୁରଭି । ଇନ୍ଦ୍ରାଣୀ ଆସନ୍ନ ସନ୍ଧ୍ୟାର ଅନ୍ଧକାରରେ ଠିଆହୋଇ ଜୋର୍‌ରେ ନିଃଶ୍ୱାସ ନେଲା ସେହି ସୁରଭିର ସୁରଭିକୁ ଆଘ୍ରାଣ କରିବା ପାଇଁ ।

ବାବା କହୁଥିଲେ, ଏ କୋଠାଘରେ ସିମେଣ୍ଟ ବ୍ୟବହାର କରାଯାଇ ନାହିଁ । ଯେଉଁ ସମୟରେ ଏ ଘର ତିଆରି ହୋଇଥିଲା, ସେତେବେଳେ ସିମେଣ୍ଟ ବଦଳରେ ଚୂନ ବ୍ୟବହାର କରା ଯାଇଥିଲା । ଅଥଚ ଖରା, ବର୍ଷା, ଝଡ଼, ତୋଫାନ ଆଉ କାଳର କ୍ଷୟକାରୀ ପ୍ରଭାବକୁ ଉପେକ୍ଷା କରି ଏ ଯେଉଁ ପ୍ରାଚୀନ କୋଠା ଛନା ସନ୍ନରେ ଏ ଦୀର୍ଘକାଳ ଧରି ସଗର୍ବରେ ମଥା ଟେକି ଠିଆ ହୋଇଛି, ତାହା ବିସ୍ମୟର କଥା । ଆଜିକାଲି ସିମେଣ୍ଟ, କଙ୍କ୍ରିଟରେ ତିଆରି କୋଠା ଘର ମଧ୍ୟ ଏତେଦିନ ଏପରି ଅଟୁଟ ଅବସ୍ଥାରେ ରହି ପାରେନା ।

ଏ କଥା କହିଲାବେଳେ ବାବାଙ୍କ ଛାତିର ମାଂସ ପେଶି କପରି ଫୁଲି ଉଠୁଥିଲା, ତାହା ଲକ୍ଷ୍ୟ କରିଛି ଇନ୍ଦ୍ରାଣୀ । ଇଟା ଚୂନର ଏଇ ପ୍ରାଚୀନ ଜୀର୍ଣ୍ଣ ଘର ସହିତ ତାଙ୍କ ପରିବାରର ଆଭିଜାତ୍ୟ ଯେ କେତେ ନିବିଡ଼ ଭାବରେ ଜଡ଼ିତ, ବାବାଙ୍କ କଣ୍ଠ ସ୍ୱରର

କମ୍ପନରୁ ସେ ବେଶ୍ ଅନୁମାନ କରି ପାରୁଥିଲା । ଗ୍ରାମରେ ପାଦଦେବା ପରଠାରୁ ସେମାନଙ୍କ ପ୍ରତି ଗ୍ରାମବାସୀଙ୍କର ଯେଉଁ ଅକୁଣ୍ଠିତ, ଅକୃତ୍ରିମ ଶ୍ରଦ୍ଧା ଓ ସମ୍ମାନ ସେ ଲକ୍ଷ୍ୟ କରିଛି । ସେଥିରୁ ସେ ବେଶ୍ ବୁଝି ପାରିଛି, ଏ ପୁରୁଣା କୋଠାଘର କାନ୍ଥରୁ ଚୂନ ବାଲିର ପଲସ୍ତରା ଭଳି ଜମିଦାରୀ ଉଚ୍ଛେଦ ସହିତ ଏ ଅଞ୍ଚଳ ଉପରୁ ତାଙ୍କ ପରିବାରର କର୍ତ୍ତୃତ୍ୱ ଶିଥିଳ ହୋଇ ଯାଇଥିଲେ ସୁଦ୍ଧା, ଏ ଭଗ୍ନପ୍ରାୟ କୋଠାଘର ଅସ୍ତିତ୍ୱ ପରି ଏବେସୁଦ୍ଧା ତାଙ୍କ ପରିବାରର ପ୍ରଭାବ ଲୋକଙ୍କ ଉପରେ ଅକ୍ଷୁଣ୍ଣ ରହିଛି ।

ହେତୁ ପାଇଲା ଦିନୁ ବାବା, ମାଆଙ୍କଠାରୁ ନିଜ ଜେଜେ ଓ ଜେଜେବାପାଙ୍କ ଅମଳର ଜମିଦାରୀ ପ୍ରତିପତ୍ତି ଓ ସେ ସମ୍ପର୍କୀୟ ଅନେକ ବହୁ କୀର୍ତ୍ତି କାହାଣୀ ସେ ଶୁଣିଥିଲା । ଆଜିର ଏ ଶିଉଳି ଲଗା, ଗଛ ଉଠା ପଲସ୍ତରା ଛଡ଼ା ଜରାଜୀର୍ଣ୍ଣ ପ୍ରାସାଦକୁ ଲକ୍ଷ୍ୟ କରି ସେହି କୀର୍ତ୍ତିର ଭଗ୍ନାଂଶ ସେ ପ୍ରତ୍ୟକ୍ଷ କଲା ।

ଇତିଶ୍ରୀ ଆଉ କିଛି ସମୟ ବୋଧହୁଏ ସନ୍ଧ୍ୟାର ଅନ୍ଧକାରରେ ଆଚ୍ଛନ୍ନ ହୋଇ ଆସିଥିବା ସେହି ଦେଓ୍ୱାଲକୁ ଲକ୍ଷ୍ୟହୀନ ଭାବରେ ଚାହିଁ ରହିଥାଆନ୍ତା । କିନ୍ତୁ ବାବାଙ୍କ କଣ୍ଠସ୍ୱର ଶୁଣି ତାର ଧ୍ୟାନଭଗ୍ନ ହେଲା ।

ସେ ଶୁଣି ପାରିଲା ବାବା କହୁଛନ୍ତି, ନିରଞ୍ଜନ ! ତମକୁ ଗୋଟିଏ ଜରୁରୀ କାମରେ ଡାକୁଛି । ଆମର ସେ ମେଲଣ ପଡ଼ିଆ ତୋଟାକୁ ନେଇ ମୁଁ ଭାରି ବଡ଼ ଅଡୁଆରେ ପଡ଼ିଛି । ମୁଁ ଗ୍ରାମରେ ଥାଉ ଥାଉ ଆମ ଗାଁ ଆଉ ବ୍ରାହ୍ମଣ ଶାସନ ମଧ୍ୟରେ ମାରପିଟ୍ ହେବ, ଏ କଥା ମୁଁ ଘଟିବାକୁ ଦେବିନାହିଁ । ତମେ ମୋତେ ଟିକିଏ ସାହାଯ୍ୟ କରିବ··· ।

ନିରଞ୍ଜନ ନାମ ଶୁଣି ଇତିଶ୍ରୀ ଟିକିଏ ଅପ୍ରତିଭ ହେଲା । ସହରରେ ଥିବାବେଳେ ଏଇ ପିଲାଟି ସମ୍ପର୍କରେ ବାବା ଅନେକ ପ୍ରଶଂସା କରିଥିଲେ ।

ନିରଞ୍ଜନକୁ ଦେଖିବା ପାଇଁ ଇତି ଝରକାବାଟେ ଉଙ୍କି ମାରିଲାବେଳେ ବାବାଙ୍କ ଦୃଷ୍ଟିରେ ପଡ଼ିଗଲା । ସଂଗ୍ରାମ କେଶରୀ ଝିଅକୁ ଡାକି କହିଲେ, ମାଆ ଇତି ! ଏଇ ତୋ ନିରଞ୍ଜନ ଭାଇ ଆସିଛି । ଯାଆନ୍ତ ମାଆ କପେ ଚାହା ତା ପାଇଁ ନେଇ ଆସିବୁ ।

ନିରଞ୍ଜନ ବୋଧହୁଏ କ୍ଷୀଣ କଣ୍ଠରେ କଅଣ ପ୍ରତିବାଦ କରୁଥିଲା । ଇତିଶ୍ରୀ ଶୁଣି ପାରିଲା ନାହିଁ । ଗାଁଆକୁ ଆସିଲା ପରେ ଏଇ ପିଲାଟିକୁ ସେ ମନେ ମନେ ଅନେକ ଖୋଜିଥିଲା । କିନ୍ତୁ ଆଗରୁ କେବେ ତାକୁ ଦେଖି ନ ଥିବାରୁ ସେ ପିଲାଟି ରୁଣ୍ଡ ହୋଇଥିବା ଲୋକଙ୍କ ମଧ୍ୟରୁ କିଏ ହୋଇପାରେ ତାହା ସେ ଅନୁମାନ କରି-ପାରି ନ ଥିଲା । ଗାଁଆକୁ ସେ ପୂର୍ବରୁ କେବେହେଲେ ଆସି ନ ଥିଲା । ଗାଁଆର ସମସ୍ତେ ତାର ଅପରିଚିତ । ଗ୍ରାମରୁ ଫେରି ସହରକୁ ଗଲାପରେ ବାପା ଗ୍ରାମର ଯେଉଁମାନଙ୍କ ନାମ ବାରମ୍ବାର ଉଚ୍ଚାରଣ କରୁଥିଲେ, ସେମାନଙ୍କ ମଧ୍ୟରୁ ସୁଦର୍ଶନ, ଶ୍ୟାମ ଗୁମାସ୍ତା ଆଉ ନିରଞ୍ଜନର ନାମ ସହିତ କେବଳ ସେ ପରିଚିତ ହୋଇଥିଲା । ଆସିବା ମାତ୍ରେ ସୁଦର୍ଶନ ସହିତ ତାର ପରିଚୟ ହେଲା । ତାର ଦୁଇଘଣ୍ଟା ପରେ ଦାଣ୍ଡରେ ଯେଉଁ ଲୋକଙ୍କୁ ବାପାଙ୍କ ପାଇଁ ଅପେକ୍ଷା କରୁଥିଲେ, ଦେଖା ହେବା ମାତ୍ରେ ସେ ନିଜ ପରିଚୟ ଦେଇଥିଲେ ମୁଁ ମାଆ ଶ୍ୟାମସୁନ୍ଦର ! ବାବାଙ୍କୁ ଟିକିଏ ଖବର ଦେବେ ମୁଁ ଖୋଜୁଛି !

ବାକି ଆଉ ଜଣକୁ ଦେଖିବା ପାଇଁ ଇତିଶ୍ରୀ ମନରେ ଏକ ଗୋପନ କୌତୁହଳ ଲୁଚକାଳି ଖେଳୁ-ଥିଲା । ସେ ଚାହା ନେଇ ଆସି ଲଣ୍ଠନ ଆଲୁଅରେ ଦେଖିଲା, ନିରଞ୍ଜନ କଅଁଳା ବାଛୁରୀ ଭଳି ନିରୀହ ଆଖିରେ କେବଳ ତରଙ୍ଗ ତରଙ୍ଗ ହୋଇ ଚାହୁଁଛି । ବାବାଙ୍କ ସବୁ କଥାର ଉତ୍ତର ମଧ୍ୟ ଦେଇନାହିଁ ।

ସଂଗ୍ରାମ କେଶରୀ କହିଲେ, ନିରଞ୍ଜନ ! ଚାହା ନିଅ—

ନା-ନା- ମୁଁ ଗୁହା ଖାଏ ନାହିଁ । ମୋ ପାଇଁ ଏତେ କଷ୍ଟ କରିବା କିଛି ଦରକାର ନ ଥିଲା ।- କଥା କହିଲାବେଳେ ନିରଞ୍ଜନର କଣ୍ଠ ଖନମାରି ଯାଇଥିଲା ।

ହସ ଚୁପି ନ ପାରି ଛତଶ୍ରୀ କଷକୁ ହାସ୍ୟ ମୁଖର କରି କହିଲା, ବାବା ! ତମେ କହୁଥିଲ ନିରଞ୍ଜନ ଗ୍ରାମର ଗୋଟାଏ ଜୁଏଲ ! କିନ୍ତୁ ମୁଁ ତ ଦେଖୁଛି ଏକ ନିସ୍ଟୁକ୍ ଗାଉଁଲି ଲୋକ··· ଗୁହାର ବି ଅଭ୍ୟାସ ନାହିଁ, ସ୍ପଷ୍ଟ ଭାବରେ କଥା କହିବାର ବି ଅଭ୍ୟାସ ନାହିଁ······ ।

ନିରଞ୍ଜନର ଦୃଷ୍ଟି ହଠାତ୍ ଝାଉଁଳି ପଡ଼ି ତଳକୁ ହୋଇଗଲା । ସେ ଲକ୍ଷ୍ୟ କଲା, ତାର ମୁହଁ ପାଖରେ ଗୁହା ଟ୍ରେ ହାତରେ ଧରି ଠିଆ ହୋଇଥିବା ଝିଅଟି ମୁହଁର ମୁଠା ମୁଠା ହସର ଆଲୁଅରେ କଷର ପ୍ରସ୍ତରଭୂତ ମ୍ଳାନ ଅନ୍ଧକାର ସବୁ ଏଣେ ତେଣେ ସତେ ଯେମିତି ଭାଙ୍ଗି ଚୂନା ହୋଇଯାଇଛି !

(କ୍ରମଶଃ)

—*—

# ଅପ୍ରେଲ ପହିଲା

ଶ୍ରୀ ଶେଷଦେବ ମଲ୍ଲିକ୍

ତେତିଶ ବର୍ଷ ମୃତ୍ୟୁ ଲଭିଛି ସମୟର କଷାଘାତେ,
କେତେ ବିବର୍ତ୍ତନ ଘଟି ଯାଇଅଛି ପୁଣ୍ୟ ଉତ୍କଳ ବୁକେ ।
ଊଣାଇଶ ଶତ ଛତିଶ ବିଗତ, ଅଣସ୍ତରୀ ଆଜ ତାକେ,
ଆଜ ସେ ଦିନର ମଧୁର ପ୍ରଭାତ ଏ ପୁଣ୍ୟ ମାଟିର ବକ୍ଷେ ।

ସେଦିନ ପ୍ରଥମ ମହକ ଶୁଙ୍ଘିବା ଭାଗ୍ୟ ଜୁଟିଲାନି ତାର,
ଶୁଭ ଦୃଷ୍ଟି ନେଇ ଚାହିଁ ଥିଲା ଯିଏ ସ୍ୱତଂତ୍ରତା ଉତ୍କଳର ।
ଦେଖିଲାନି ପଥ ଏ ଦେଶ ଦୁର୍ଗତି ତା ଆଗରୁ ବରିଲା ମୃତ୍ୟୁ,
ଧନ୍ୟରେ କାଳ ସଂସାର କ୍ଷେତ୍ରେ ତୁହି ଏକା ମାତ୍ର ଜିତୁ ।

ବିଶାଳ ଉତ୍କଳ ଆଜିତ ହୋଇଛି ଗୋଟାଏ କରଦ ରାଜ୍ୟ,
ବଂଗ ବିହାର ତେଲଂଗାନଙ୍କର ସମ୍ଭାର ଉପଭୋଗ୍ୟ ।
ରାଜନୈତିକ ଶୋଷଣ ମନ୍ତ୍ରରେ ଶୁଖିଯାଏ ତଂଟି ତାର,
ସହି ସହି ସିଏ ଶୋଷକ ଗୋଷ୍ଠୀର ନିର୍ମମ ଅତ୍ୟାଚାର ।

ବିଶାଳ ଉତ୍କଳ ଦିନୁ ଦିନ ଏଠି କ୍ଷୁଦ୍ରତର ହୁଏ ଯାହା,
କା ଆଗେ କହିବ, କିଏ ସେ ଶୁଣିବ, କିଏବା କରିବ ଆହା ।
ବଂଗ ଟାଣିଲା ଏକ ହସ୍ତ ତାର ଆନ୍ଧ୍ର ଅନ୍ୟରେ ଥରେ,
ଏ ଘଟଣା ଦେଖି ବିହାରକି କେବେ ରହିପାରେ ନିଶ୍ଚିଂତରେ

ଆମେ ତା ସଂତାନ କାପୁରୁଷ ଦଳ ଭଣ୍ଡାମି, ଗୁଣ୍ଡାମି ନେତା,
ବ୍ୟକ୍ତିଗତ ସୁଖେ ହୋଇ ମୂହ୍ୟମାନ ବୋହିପାରୁ ଅନ୍ୟଯୋତା ।
ଯୋତା ବୋହିବା ବା ତେଲ ମାଲିସରେ ଆମେ ଓସ୍ତାଦ ଗୁରୁ,
ଏଇ ମହାଜାତି ସମ୍ମୁଖେ ଆମେ ନୈତିକତାହୀନ ଭୀରୁ ।

ଆମେ ଦେଇ ଜାଣୁ ଲଂବା ବକ୍ତୃତା ରକ୍ତ ତତାଇ ଖାଲି,
ଘଣ୍ଟାକ ମଧ୍ୟେ ହଜାର ଥର ନିଜ ଛେପ ନିଜେ ଗିଳି ।
ଆମର ମାଆକୁ କ୍ରୀଡ଼ନକ ଯଦି ଅନ୍ୟ ସଜାଏ କେହି,
ଆମେ ତାକୁ ଦେଉ କ୍ଷମା ଅର୍ଜୁନକେ ଅସ୍ତ୍ର ତ ଆମ ନାହିଁ ।

ଏ କିବା ଆମର ମହାନ ପୌରୁଷ ଏଇ କିବା ଆମ ନୀତି ?
ଜନନୀ ଆମର ଆଖିଲୁହ ଢାଳେ ବେଦନା ମର୍ମେ ଚିଂତି ।
ବେଦନା ବିଧୁରା ଜନନୀ ଆମର କାଂଦି କହେ ଘରେ ଘରେ,
ମୁକ୍ତି ଉଦ୍ଦେଶ୍ୟେ ଭିକ୍ଷାର୍ଥିନୀ ସାଜି ଅପ୍ରେଲ ପହିଲାରେ ।

ଆସରେ ସଭିଏଁ ଏକଜୁଟ୍ ହୁଅ ଜୀବନର ପ୍ରତିଦାନେ,
ଜନନୀକୁ ଆମ ମୁକ୍ତ କରିବା ଆଜି ଏ ମଧୁର ଲଗ୍ନେ ।
ଆମେରେ ଗଢ଼ିବା ବିଶାଳ ଉତ୍କଳ ହୃଦେ ବାନ୍ଧି ସିଂହବଳ,
ହାତେ ଧର ପୁଣି ଆମର ଜାତିର ଖାରବେଳ କରବାଳ ।

—*—

# ॥ ହେବିନି ॥

**ଉପେନ୍ଦ୍ର ମିଶ୍ର**

ମୁଁ ଯେଉଁଦିନ ଠାରୁ "ସମ୍ପାଦକ" ହେଲିଣି, ସେଦିନଠୁଁ କେବଳ ଲେଖକଙ୍କ ଦୋଷ ବାଛିବାରେ ମାଷ୍ଟର ପାଲଟି ଯାଇଛି । ମହୁମାଛି ମଡଗାର୍ଡ଼ ଖାଲି ଭଣଭଣିଆ ହୋଇଛି । ମୋ ଲେଖା ପାଠକ ପସନ୍ଦ କରନ୍ତୁ ବା ନ କରନ୍ତୁ ମୁଁ କିନ୍ତୁ ଲେଖିବାକୁ ତିଆର । ମୋ ଆଗରୁ ଯେ ବହୁ ସମ୍ପାଦକ ଗଲେଣି, ଅଛନ୍ତି, ଏବଂ ହେବେ ସେଥିରେ ମୋର ଚିନ୍ତା ନାହିଁ । ଦିନେ ଦିନେ ସମାଲୋଚନା ଆରମ୍ଭ କରି ପକାଏ ତ ଅନ୍ୟଦିନେ ଲେଖା କାଟି ସଫା କରିଦିଏ । ଏ'ଟା ବୋଧହୁଏ ମୋର ଗୋଟିଏ ରୋଗ । ସମ୍ପାଦକର ଲାଳସା ପାଇଁ ସବୁ ଛାଡ଼ି କଲମ ଧରିଛି । ମୋ କଲମର ତାକତ ଥାଉ ବା ନ ଥାଉ ମୁଁ ଅନ୍ୟର କଲମକୁ ଦୁର୍ବଳ ଭାବେ ।

ଏଥର ଖୁବ୍ ଟାଣୁଆ ଲେଖା ଆରମ୍ଭ କରିବି । ମନରେ ପ୍ରଶ୍ନ ଆସେ ଟାଣୁଆ ଲେଖା କାହାପାଇଁ ? ପତ୍ରିକାରେ ଟାଣୁଆ ଲେଖା ଦେଲେ ବିକ୍ରୀ କମ୍ । ଶସ୍ତା ଲେଖା ଦେଲେ କେତେଜଣ ନାକ ଟେକିବେ । ନଗ୍ନ ଲେଖାରେ ବିକ୍ରୀ ଜୋର; କିନ୍ତୁ ସ୍କୁଲ କଲେଜ ମନା । ସମାଲୋଚନା ହେଲେ ଘରେ ଗୋଡ଼େ ତ ଦରଘା ବଜାର ସାମନାରେ ଗୋଡ଼େ । ଶସ୍ତା କାଗଜ ହେଲେ ବିଜ୍ଞାପନରୁ ବଞ୍ଚିତ । କାଗଜବାଲା ମାରୱାଡ଼ି ଆସି ଦୁଆରେ ହାଜର । ପ୍ରେସ୍ ହାଲ୍ ତ ଅଲଗ. ବଦ୍ରୁତେ ସମସ୍ତଙ୍କୁ ଜଣା । ଏଣୁ ତେଣୁ ଗୁଡ଼ାଏ ଲେଖି କାଗଜ ନଷ୍ଟ କଲିଣି । ଏଥର ଗାନ୍ଧିଶତବାର୍ଷିକୀ ଉପରେ ଆରମ୍ଭ କରିବି । ନାଁ, ନାଁ ବହୁ ପତ୍ରପତ୍ରିକାରେ ଗାନ୍ଧିଜୀଙ୍କ ବିଷୟରେ ବାହାରିଲାଣି । ପାଠକମାନେ ପଢ଼ି ପଢ଼ି ଅଣନିଶ୍ୱାସୀ ହେଲେଣି । ଖଦୀ ଭଣ୍ଡାର ଭାଙ୍ଗିବାକୁ ବସିଲାଣି । ଖରାଦିନ ସମସ୍ତେ ସୁପର ଫାଇନ୍ ପାଇଁ ବ୍ୟଗ୍ର । ଶୀତଦିନ ଥିଲା ଟଙ୍କାରେ ପଚିଶ ପଇସା ରିହାତି ପାଇ ଇଚ୍ଛା ବିରୁଦ୍ଧରେ ଖଣ୍ଡେ ଖଣ୍ଡେ ଆଣୁଥିଲେ । ମୁଁ ମଧ୍ୟ ଛ'ଟଙ୍କା ଦେଇ ଖଣ୍ଡେ ପଞ୍ଜାବି ଆଣିଛି । ବେଳେବେଳେ ସଭା ସମିତିରେ ଟେଳେଇ ପକାଇ ବାହାରେ ।

ଏ ସବୁ ମାମୁଲି କଥା । ଏଥର ପଲ୍ଲୀ କବି ନନ୍ଦ କିଶୋରଙ୍କ ଆଡ଼କୁ ଚାଲିବି । ଖରାଦିନେ ପଲ୍ଲୀ ମାୟା ସମସ୍ତଙ୍କୁ ଟାଣେ । ସହର ଜାଗାରେ ପାଣି ପବନ ଅଭାବ । ନାଳ ନର୍ଦ୍ଦମା ଗନ୍ଧ । ମଶାଙ୍କ ଦାଉ କହିଲେ ନ ଚଳେ । ଗଛ ପତ୍ରର ଦେଖା ଦର୍ଶନ ନାହିଁ । ଘିଆ କୋଠା ଘର ଖରାବେଳେ ହୁ ହୁ ହେଉଛି । ଆମର ସେହି ପୁରୁଣା ଚାଳଘର ଭଲ । ଆମକୁ ପଛେ ମଫସଲିଆ କୁହନ୍ତୁ, ଆମର ଡର ନାହିଁ । ଚାଳଘରେ ଦହି ପଖାଳ ଖାଇବା, ଖରାବେଳକୁ ତାଳସଜ ମିଳିବ । ସଞ୍ଜ ବେଳକୁ ଗାଁ ଆମ୍ବ ତୋଟାର ଥଣ୍ଡା ପବନ ସାଙ୍ଗକୁ ପାଚିଲା ଆମ୍ବ । ରାତିରେ ବେଶି ଗରମ ହେଲେ ବୈତରଣୀ ସ୍ନାନ । ଏଣୁ ଛାଡ଼ିବା କାହିଁକି ? ପଲ୍ଲୀ ମାୟା ମନକୁ ଟାଣୁଛି, ହେଲେ କ'ଣ ହେବ ? ସହରର ଚାକିରି, ପ୍ରେସ, କଳ ପଙ୍ଖା ତ ଅଛି । ଆମର ଏଠି ଯେତେ ଅସୁବିଧା ହେଲେ ବି ଆମେ ଜଣେ ବାବୁ ବନେଇଛୁଁ । କେତେଲୋକ ଆସି ଆମକୁ ବାବୁ ବାବୁ ଡାକୁଛନ୍ତି । ଆଜିକାଲି ଲେଖା ଛପାଇବା ପାଇଁ କଲେଜ ପିଲାଙ୍କ ଠାରୁ ଆରମ୍ଭ କରି ବୁଢ଼ା ମାଷ୍ଟରମାନେ ଆମକୁ ସାର୍ ସାର୍ ଡାକୁଛନ୍ତି । ଆମର ସମ୍ପାଦକ ହେବାକୁ ଯେତେ ଲାଳସା ସେମାନଙ୍କର ଲେଖା ଛପାଇବା ତାଠାରୁ ବେଶି ଲାଳସା । ସତେ ଯେପରି ଲେଖା ଛପା ହେଲେ ସ୍ୱର୍ଗକୁ ବାଟ ଫିଟିଯିବ । କିନ୍ତୁ ଆମ ଦୁଇଜଣଙ୍କ ଉପରେ ଆଉ ଏକ ସାର୍ ଅଛନ୍ତି ସେ ହେଉଛନ୍ତି ଅଫିସ ବାବୁ । ସେ ଭାବନ୍ତି ଆମ ପାଖକୁ କେତେ କେତେ ବଡ଼ ବଡ଼ ସମ୍ପାଦକ ଆସି ଠିଆ ହେଉଛନ୍ତି । ଏମାନେ କି ଲୋକକି ? ଏତେ ତରତର କାହିଁକି ? ତାଙ୍କ ଲାଳସା ହେଉଛି ଯଦି ଲେଖକ, ସମ୍ପାଦକ ଉଭୟ ଯାଇ ସାର୍ ସାର୍ କହନ୍ତେ ତାହାହେଲେ ଆଜି କାଲିକା ପିଅନମାନେ ଯେପରି ପାନ, ପାଣି, ଚା' ଆଣିବାକୁ ଡେରି କରୁଛନ୍ତି ସେପରି ନ କରି ଶୀଘ୍ର ଶୀଘ୍ର ଆଣନ୍ତେ ଓ ଅଫିସ୍ ବାବୁଙ୍କ ଦାମ୍ ବଢ଼ି

ଯାଆନ୍ତି । ଅଫିସ ବାବୁଙ୍କଠାରୁ ଆଉ ଜଣେ ବଡ଼ ସାର୍ ଅଛନ୍ତି, ସେ ହେଉଛନ୍ତି ମିରଓ୍ୱାଣ୍ଡ ବିଜ୍ଞାପନ ଦାତା । ପାଠ ଥାଉ ବା ନ ଥାଉ ବଡ଼ ବଡ଼ ଗଦି ପକାଇ ବସିଛନ୍ତି । ପତ୍ରପତ୍ରିକା ସମ୍ପାଦକମାନେ ଗଲେ ସେମାନେ ଭାବନ୍ତି ଏ ସବୁ ଚାନ୍ଦା ଆଦାୟକାରୀ । କେଉଁ ଦଳ କ୍ଷମତାରେ ଅଛି, କେତେ ଚାନ୍ଦା ଦେଲେ ଫାଇଦା ମିଳିବ, ତାକୁ ସେମାନେ କଷିବା-ବେଳେ ଯେତେବେଳେ ଶୁଣନ୍ତି ଏମାନେ ହେଉଛନ୍ତି ପତ୍ର-ପତ୍ରିକା ସମ୍ପାଦକ ସେତେବେଳେ ତାଙ୍କର ମୁଣ୍ଡ ଟିକିଏ ଗୋଳ-ମାଳ ହୋଇଯାଏ । କଣ କରିବେ କିଛି ଠିକ୍ କରି ନ ପାରି ଆଜି ଆସନ୍ତୁ, କାଲି ଆସନ୍ତୁ, ପହିଲିରେ ଆସନ୍ତୁ ଇତ୍ୟାଦି ଇତ୍ୟାଦି କହି ଫେରାନ୍ତି ।

ଅସଲ ବାବୁଙ୍କ କଥା ଭୁଲି ଯାଉଛି । ଯାହାଙ୍କ ଦ୍ୱାରା ଓଡ଼ିଶାର ପତ୍ରପତ୍ରିକା ମରୁଡ଼ି ହୁଏ, ସେ ହେଉଛନ୍ତି ପତ୍ରିକା ଏଜେଣ୍ଟ । ପଇସା ମିଳିବା ଦୂରର କଥା, ଚିଠି ଦେଲେ ଉତ୍ତର ମିଳେନାହିଁ । ଦଶଟଙ୍କା ପାଇବା ସ୍ଥାନରେ ପନ୍ଦର ଟଙ୍କା ଖର୍ଚ୍ଚ କରି ଗଲେ ଦେଖା ମିଳେନାହିଁ । ଆଉ ସେମାନେ ଚାହାନ୍ତି ପତ୍ରିକା ସମ୍ପାଦକ ଆସି ବସ୍‌ଷ୍ଟାଣ୍ଡରେ ଯଦି ବଡ଼ ପାଟିରେ ସାର୍ ସାର୍ କହନ୍ତେ ତାହାହେଲେ ବସ୍ ପାସେଞ୍ଜର ଶୁଣିଲେ ପତ୍ରିକା ଏଜେଣ୍ଟର ମାନ୍ ବଢ଼ନ୍ତା । ଏହିପରି ସାର୍ ସାର୍ ଭାବରେ କାଗଜ ସର୍ ସର୍ ହୋଇ ଚାଲିବ କେତେଦିନ ?

ହଁ ଭୁଲିଗଲି । ମୋର ପ୍ରଥମ କଥାଟା ଆପଣମାନେ ବୋଧହୁଏ ମନେ ରଖି ନ ଥିବେ । କିଛି ଭାବିବେ ନାହିଁ । ମୁଁ ଆଉଥରେ ମନେ ପକାଇ ଦେଉଛି । ମୋର ବିଷୟବସ୍ତୁ ଥିଲା 'ହେବନ' । ଏବେମଧ୍ୟ ସେଇଆ ଅଛି ଆର ସଂଖ୍ୟାରେ ଆରମ୍ଭ କରିବ ।

---



ସବୁବେଳେ ବାମ ଦିଗକୁ ମାଡ଼ି ଚାଲନ୍ତୁ ।

# ॥ ମାନସୀ ॥

ରବୀନ୍ଦ୍ରନାଥ ସିଂହ

( ୧ )

ରାତିର ପରଦା
ଫେଇ ଯେବେ ଧୀରେ
ସ୍ୱର୍ଣ୍ଣ ଉଠଇ ପୂର୍ବନଭେ,
ମୁଁ ସେତେବେ ବୁଡ଼ଇ
ମୋର ନିଜ କାମେ
ଅନ୍ୟ କଥା ମୁଁ ନାହିଁ ତ ଭାବେ,
ତା ଭିତରେ ବେଳେ ବେଳେ ତମ କଥା—
ମନେପଡ଼ି ହୃଦେ ଜାଗେ ଗୁରୁବ୍ୟଥା
ହେ ମୋ ଅଜ୍ଞାତ
ଗୋପନ-ପ୍ରେୟସୀ
ଶରତଂଚଳା ଅଭାଗୀ ନାରୀ,
ତମେ ମନେ ପଡ଼,
ପଡ଼ୁଛ, ପଡ଼ିବ
ପାରିବନି ମନୁ ତମକୁ ଭୁଲି ।

( ୨ )

ତମକୁ ମୁଁ ମନେ
ରଖିବାରେ ନାରି
ଅନ୍ୟ କେଉଁଥି ପାଇଁକି ନୁହେଁ,
ତମେ ଦେଇଥିବା
ବ୍ୟଥା ଓ ବେଦନା,
ଅପମାନ କଥା ଭୁଲିକି ହୁଏ ?
ଯାହା ମୋର ଥିଲା ସବୁଦେଇ ନେଲ
ହେ ଚିର ପାଷାଣୀ, ଆଗୋ ଅବିବେକୀ,
ନିଃସ୍ୱ ଆଜି ମୁଁ
ହୋଇ ହତବାକ
ଦେଖୁଛି ନୀରବେ ତମର ଦଶା.
ଉଦୟେ, ଅସ୍ତେ
ହୃଦୟୁ ଜଳୁଛି
ନାହିଁ ମୋ କଂଠେନାହିଁ ଗୋ ଭାଷା !

( ୩ )

ଧମନୀ ରୁଧିରେ
ତମର ରୁଧିର
ମଧୁଜୀବନେ ମିଶାଇ ଦେଇ,
ଚିର ଅନ୍ଧାର
ତମର ଜୀବନ
ମୋ ପଞ୍ଜରୁଷର ଅଗ୍ନି ଦେଇ
ଆଲୋକିତ କଲି ବରଷ ବରଷ
ପାଇଲି ନିନ୍ଦା, ଖାଇଲି ଅପଯଶ
ସାଜି ମୋର 'ବଧୂ'
ଲୁଟି ସବୁ ମଧୁ
ଢାଳି ଦେଇ ନିଜ ବଦନ ବିଷ,
ତମେ ଆଜି ଦୂର
ସୁଖସନ୍ଧାନେ
ପୃଥିବୀର ପଥେ ଅହର୍ନିଶ !

( ୪ )

ଅନ୍ୟକୁ ଯିଏ ପ୍ରତାରଣା କରେ
ପ୍ରତାରିତ ହୁଏ ସବୁରିଠାରେ,
ପବଞ୍ଚତାକୁ ପ୍ରତ୍ୟାଘାତ କଲେ
ଶାନ୍ତି ଜୀବନେ ନମିଳ ପାରେ ।
ଏଇ କଥା ତମେ ବୁଝିଲଣି କଛୁ
ଆହୁର ବୁଝିବା ପାଇଁ ବାକଅଛୁ
ସେଦିନ ବି ଆଉ ନାହିଁ ବେଶୀ ଡେରି
ଆସୁଛି ଝଞ୍ଜା ତୋଫାନ ରାତି,
ମୁଁ ଖାଲି ଦେଖିବି ସେହି ଦୁର୍ଦ୍ଦିନେ
କେ ହେଉଛି ତମ ଜୀବନସାଥୀ !

( ୫ )

ମୋ ଦୀପଶିଖାକୁ ବିଷ ଫୁତ୍କାରେ
ମଧ୍ୟରାତିରେ ନିଭାଇ ଦେଇ,—
ତମେ ତ ଯାଇଛ କଆଁ ପୁଣି ଆଉ
ବସିଛ ମୋ ପାଶେ ଫେରିବା ପାଇଁ ?
ଏ ମୋର ମଦନ, ଏ ମୋ ମନୋହର
ତମ ଦଂଶନେ ବିଷ ଜରଜର
ଅରେ ନିଭିଗଲେ ବିଶ୍ୱାସ-ଦୀପ
ଆଉ କି ତା ଜଳେ ପୂର୍ବପରି ?
ଉପାୟ ନାହିଁ ଗୋ, ଭୁଲିବାକୁ ହେବ
ଅସରା ଦୁଃଖ-ପସରା ଧରି !

( ୬ )

ଏ ଜୀବନେ ଆଉ ପୁନର୍ମିଳନ
ସମ୍ଭବ ନୁହେ ତମରି ସାଥେ,
ଆଗୋ ଇନ୍ଦ୍ରାଣୀ, ହୃଦୟ ମୋ ଚୂନା
ହୋଇଛି ତମରି ବଜ୍ରଘାତେ !
ସେହି ହୃଦୟର ଭଗ୍ନାବଶେଷ
ଏଇ କବିତାଟି ଦୀର୍ଘଶ୍ୱାସ
ତମେ ମୋର ମନେ ଥିବ ସର୍ବଦା
ତମରି ଶଠତା, ଛଳନା ପାଇଁ,
ତମକୁ ଭୁଲିବି ଭୁଲି ପାରିବିନି
ଏ ଜୀବନେ କେଭେଁ ଛଳନାମୟୀ !

ତା ୬ । ୧୦ । ୬୮

—*—

# ଅଉଲ୍ ନମ୍ବର ଚୋର

**ଫତୁରାନନ୍ଦ**

ବସନ୍ତୋତ୍ସବ ସମିତିର ସଭ୍ୟମାନେ ସେଥର ହୋଲି ଉତ୍ସବଟା କପରି ପାଳନ କରାଯିବ ତାହା ସ୍ଥିର କରିବାକୁ ସମିତି ଗୃହରେ ଏକତ୍ରିତ ହେଲେ । ପୂର୍ବ ବର୍ଷର କୁତ୍ସିତ ଅଭିଜ୍ଞତା ସବୁ ବର୍ଣ୍ଣନା କରି ସେଗୁଡ଼ିକୁ ଘୃଣାର ସହିତ ପରିତ୍ୟାଗ କରିବାକୁ ବିଶେଷ ତତ୍ପର ହେବାକୁ ଆହ୍ୱାନ ଦେଲେ । ଜଣେ ସଭ୍ୟ କହିଲେ—"ଛି-ଛି ସେ ଚଣ୍ଡିଆ ମେସ୍‌ର ସାଧୁଆ ଆରବର୍ଷ ଯେଉଁ କାଣ୍ଡ କଲା ତାହା ଏବେ ବି ମନେ ପଡ଼ିଲେ ପେଟରୁ ଭାତ ବାହାରି ଆସିବ । ଏତେ ଅସନା ଲୋକ ପୁଣି ଦୁନିଆରେ ଥାଆନ୍ତି ତାହା କେହି ବିଶ୍ୱାସ କରିବନି । ଅଲକ୍ଷଣାଟା କଅଣ କଲାନା—ଗୋଟାଏ ମେହେନ୍ତରାଣୀକୁ ପଇସା ଦେଇ ଗୋଟାଏ ବଡ଼ ଭାର ହାଣ୍ଡିରେ ଗଅଣ୍ଡ ହାଣ୍ଡିଏ ଗୁହ ଓ ପାଣି ଫେଣ୍ଟି ରଖିଲା । ତା ଉପରେ ଭାର ହାଣ୍ଡିରେ ଦେଲାପରି ଖଳି ପତର ବାନ୍ଧିଦେଇ ହାଣ୍ଡି ପେଟରେ ହଳଦି ସିନ୍ଦୂର ମାରିଦେଲା । ନିଜେ ବାଡ଼ିଟାଏ ଧରି, ବୁଢ଼ା ସାଜି ଗୋଟିଏ ମୁଣ୍ଡ ବୋହିଆ ମଲିଆ ଡାକି ଆଣିଲା । ତା ସହିତ ସେ ଭାର ହାଣ୍ଡିଟା ମୁଣ୍ଡାଇ ତା ନାତୁଣୀ ଘରକୁ ଯିବାପାଇଁ ଦରଦାମ କଷିଲା । ଖୁବ୍ ମୂଲଚାଲ ପରେ କଥାଟା ଦୁଇଟଙ୍କାରେ ଛିଣ୍ଡିଲା । ସାଧୁଆ ଠୋ ଟାଂସ୍ ଦୁଇଟା ଚକଚକିଆ ଟଙ୍କା ଧରାଇ ଦେଲା । ମୂଲିଆଟି ତାକୁ ମୁଣ୍ଡରେ ମାରି ଗାଞ୍ଜିଆରେ ଭରିଦେଲା । ଅଧ ଘଣ୍ଟାର ବାଟ, ଟିକିଏ ବେଇଗି ବେଇଗି ଗଲେ ସେଇ ନରମା ଖବରରେ ବି ଫେରି ଆସିହେବ । ସାଧୁଆର ନିର୍ଦ୍ଦେଶରେ ମୂଲିଆଟି ହାଣ୍ଡିଟି ମୁଣ୍ଡେଇ ଆଗେ ଆଗେ ଚାଲିଲା ଆଉ ସାଧୁଆ ବାଡ଼ିଟା ଧରି ବୁଢ଼ାଟିଏ ପରି ଠୁକୁରୁ ଠୁକୁରୁ ହୋଇ ପଛେ ପଛେ ଚାଲିଲା । ଠିକ୍ ବାଲୁବଜାର ସଙ୍ଗତ ମଠର ଗଳି ଯେମିତି ପଡ଼ିଛି ଲକ୍ଷ୍ମୀଛଡ଼ାଟା ପଛଆଡ଼ୁ ବାଡ଼ିରେ ହାଣ୍ଡିଟାକୁ ଠୋ କରି ପିଟିଦେଇ ଦେ ଛୁ ସେହି ଗଳିଏ ଗଳିଏ । ମୁହୂର୍ତ୍ତକ ମଧ୍ୟରେ ସିନେମା ଛବି ବଦଳିଗଲା ପରି ସେ ଥାନର ଛବିଟା ବଦଳିଗଲା । ହାଣ୍ଡିଟି ଦୁଇଗଡ ହୋଇଯିବାରୁ ପାଣିଆ ଗୁହରେ ମଲିଆଟି ଏକାବେଳକେ ଗାଧେଇ ପଡ଼ିଲା । ମଲିଆ କଥା ଗୁହ । ଆଖ ପାଖର ଦୋକାନିମାନେ ହୋ ହୋ ରଡ଼ ଛାଡ଼ି, ଅ-ଅ-ଓ୍ୱାକ୍ ହୋଇ ଥାନଟାକୁ କମ୍ପେଇ ଦେଲେ । ଉଚ୍ଚକଟିଆ ଦୁର୍ଗନ୍ଧରେ ଥାନଟା ଫାଟି ପଡ଼ିଲା । କେତେକ ଦୋକାନ ବୁଜିଦେଲେ । ରେଡ଼ଓ ଦୋକାନୀ କାଲୁ ମିଆଁଟା ବଡବଡ ଢୋକେ ବିରିଆନି ଠୁକିଥିଲା । ପେଟରେ ସମ୍ଭାଳି ରଖି ପାରିଲା ନାହିଁ । ଯେମିତି 'ଅ' କରି ଦେଇଛି, ହୋସ୍ ପାଇପରେ ପାଣି ବାହାରିଲା ପରି ପେଟରୁ ସବୁତକ ବିରିଆନି ଗଳି ଗଳି ହୋଇ ରାସ୍ତା ଉପରକୁ ପାଟି ବାଟେ ଗଳି ପଡ଼ିଲା । ମୁହଁ ଧୋଇସାରି ଅବଶୋଷରେ କହିଲାଗିଲା—ଏଃ ଅସନାଟା ମୋର ଖାଇଥିବା ଆଠଟଙ୍କାର ବିରିଆନି ମାଟି କରିଦେଲା । ଛେଚେଡ଼ିଆ ଟୋକାପିଲା କେଉଁଠି ଥିଲେ ଗଣଗଣିଆ ମାଛି ପରି ଆସି ବେଢ଼ିଗଲେ । ନାକରେ ଲୁଗା ଦେଇ କିଏ କହୁଥାଏ—ଆରେ ପାଣିଆ ଗୁଡ଼ ହାଣ୍ଡିଟା ଭାଙ୍ଗିଗଲାରେ । କିଏ କହୁଥାଏ—ନାହିଁ ବେ ଅଟକାଳି ହାଣ୍ଡି ଭାଙ୍ଗିଗଲା । ଆଉ କିଏ କହିଲା—ନାହିଁ ବେ ଖିରଣି ହାଣ୍ଡି । ସମସ୍ତଙ୍କୁ ଖେଳ ଲାଗିଥାଏ ହେଲେ ମୂଲିଆଟିର ଜୀବନ ଯାଏ କି ରହେ । ସେ ବିଚରା କଥା କହିପାରୁ ନ ଥାଏ । ପାଣିଆ ଗୁହ ତ ମୁହଁଯାକ ବୋହାଇଥାଏ । କଥା କହିବାକୁ ଓଠ ମେଲି କଲାମାତ୍ରେ ପାଣିଆ ଗୁହ

ପାଟିରେ ପଶି ଯାଉଥାଏ । ଅ, ଅ ହୋଇ ସେତେବେଳକୁ ବିଚ୍ଛଳକା ବାନ୍ତି ବି ତାର ହୋଇଗଲଣି । ଟିକିଏ ଆଗରୁ ରାସ୍ତା କଡ଼ରେ ଗୋଟାଏ ପାଇପ୍‌ରୁ ପାଣି ବାହାରୁଥିଲା । ଜୀବନ ବିକଳରେ ସେଠାକୁ ଗାଧୋଇବାକୁ ଗଲାରୁ ସେଠାର ଲୋକେ ତାକୁ ଦୂର ଦୂର୍ କରି ଘଉଡ଼ି ଦେଲେ । ଜଣେ ଦୟା କରି ମୁହଁଟାକୁ ଧୋଇ ଦେବାଲାଗି ତା ମୁଣ୍ଡ ଉପରେ ବାଲ୍‌ଟିଏ ପାଣି ଢାଳିଦେଲା ଓ ତାକୁ ଥାନାକୁ ଯାଇ ସେଠାରେ ଏତଲା ଦେବାକୁ ବତାଇଦେଲା । ମୂଳିଆଟି ତା କଥା ମାନି ଫେରାଦ ହେବାକୁ ଥାନା ଭିତରେ ପଶିଗଲା । ଜଗୁଆଳି ସିପେଇଟା ମୁହଁରେ ବହୁତ ଦୂର୍ ଦୂର କଲା ହେଲେ ତାକୁ ଧରି ଅଟକେଇ ପାରିଲା ନାହିଁ । ଜାଣୁ ଜାଣୁ କିଏ ହାତରେ ଗୁହ ମାଖିବ ଭଲା ! ଦାରୋଗା ବାବୁ ଚ୍ଚ' କରେ ପିଉଥିଲେ । ସେତକ ବି ତାଙ୍କ ପେଟରୁ ବାହାରି ଆସିଲା । ବି ତିନିଜଣ ସିପେଇ ଠେଙ୍ଗା ଆଗରେ ତାକୁ ପେଲି ପେଲି ପଦାକୁ ନେଇ ଆସିଲେ । ଦାରୋଗା ବାବୁଙ୍କର ମନରେ ଦୟା ହେଲା । ସେ ନାକରେ ରୁମାଲ ଦେଇ ତା କଥା ବୁଝିବା ଲାଗି ପଦାକୁ ଚାଲି ଆସିଲେ । ସବୁକଥା ବୁଝିସାରି ସିପେଇମାନଙ୍କୁ ତାର ଧୂଆ ଧୋଇର ବ୍ୟବସ୍ଥା କରିବାକୁ କହି ଘର ଭିତରକୁ ଚାଲେଇଲେ । ଦାରୋଗାଙ୍କ ଦୟାରୁ ବି ତାକୁ ଗୋଟାଏ ବାସନା ସାବୁନ ଓ ଅତର ଶିଶି ଦିଆଗଲା । ବି ବୃନ୍ଦାବନ ଯାଏ ମୂଳିଆଟି ପାଣିଆ ଡାଲି ଦେଖିବାମାତ୍ରେ ଅ-ଅ ହେଲା । ସମସ୍ତେ ସାଧୁଆକୁ କାଇଲ୍ କରି ମୂଳିଆକୁ ଆଉ କିଛି ଟଙ୍କା ଦେଲେ । ଛି ଛି ଏଗୁଡ଼ାକ ତ ହୋରି ଖେଳ ନୁହେଁ ଏଗୁଡ଼ାକ ମଣିଷମାରୁ କାମ । ହୋରି ଖେଳନ୍ତି ମନ ଆନନ୍ଦ କରିବାକୁ । ଏଗୁଡ଼ା ତ ଆଉ ଆନନ୍ଦ ନୁହେଁ ଗୋଟାଏ ଲୋକକୁ କେବଳ କଲବଲ କରିବା ସାର । ଏଥର ହୋରିରେ ଏସବୁର ଦୂରରେ ରହିବାକୁ ହେବ ।

ଆଉ ଜଣେ ସଭ୍ୟ କହିଲା—"ସତେ ହୋରି ଖେଳିବାକୁ ଯାଇ ଲୋକେ କି ନାସନା କାମ ନ କରୁଛନ୍ତି ! ଏ – ହେ ! ଆରଥର ବାସେଲି ସାହିର ଟୋକାଏ ଯାହା କରିଛନ୍ତି ନା—ତାହା କାନ ଶୁଣି ନଥିବ । ବଟକଟିଆତକ ଠାକୁର ଘର ଆଗରେ ୮ ଫୁଟ ଲମ୍ବ ୪ ଫୁଟ ଚଉଡ଼ା ଓ ୨ ଫୁଟ ଗହୀରତାର ଗୋଟାଏ ଗାତ ଖୋଳି ତା ନାଁ ଦେଲେ ନର୍କକୁଣ୍ଡ । ଯେଉଁଠି ଯେତେ ଦୁର୍ଗନ୍ଧ ପଚାସଡ଼ା ଜିନିଷ ଥିଲା ତାକୁ ସେଥିରେ ପକାଇଲେ । ନର୍ଦ୍ଦମା ପାଣି, ପାଇଖାନାର ମଳମୂତ୍ର ସବୁକିଛି ସେଥିରେ ପକାଗଲା । ବାଲ୍‌ଟି ବାଲ୍‌ଟି ପାଣି ଅଜାଡ଼ି ଉର୍ଦ୍ଧ୍ୱରେ ଗୋଳେଇ ଦିଆଗଲା । ପାଣିକୁ ରଙ୍ଗୀନ କରିବା ଲାଗି କିଛି କେଳି ଟଙ୍କଟି ରଙ୍ଗ ବି ଟଙ୍କିରେ ମିଶେଇ ଦିଆଗଲା । ସବୁ ସରିଲା ପରେ 'ପ୍ରସ୍ତୁତ' ନିଶାଣ ଦିଆଗଲା । ସଭ୍ୟମାନେ ଯମଦୂତ ପରି ପାପୀମାନଙ୍କ ସନ୍ଧାନରେ ରହିଲେ । ଯିଏ ଧାର୍ମିକ, ତା ଆଡ଼କୁ ତିନି ଚାରି ଜଣ ଦଳ ବାନ୍ଧି ଆସୁଥିବାର ଦେଖିଲେ ହୁରୁଡ଼ା ଗାଈ ପରି ଉଆଁ ମାରି ପଳଉଥିଲା । କାରଣ ସେ ନର୍କ କୁଣ୍ଡର ଭୟ ବିଷୟରେ ସଚେତନ ଥିଲା ।

ପାପୀ ଯେ ନର୍କକୁଣ୍ଡ ବିଷୟରେ ବିଶେଷ ଗୁରୁତ୍ୱ ନ ଦେଇ ବେଧଡ଼କ ଠିଆ ହୋଇଥାଏ । ଏମିତିଆ ଗୋଟାଏ ଟୋକା ଦେଖିଲେ ତିନି ଚାରିଜଣଯାକ ଡାହାଳ କୁକୁର ପରି ତାକୁ ମାଡ଼ି ବସନ୍ତି । ଦାଣ୍ଡ୍ ଦୁଇ ଗୋଡ଼କୁ ଦିଜଣ ଓ ଦୁଇ ହାତକୁ ଦିଜଣ ଧରି ମୁର୍ଦ୍ଦାର ଟେକି ଆଣିଲା ପରି ଶୂନ୍ୟେ ଶୂନ୍ୟେ ଟେକି ନଅନ୍ତି । ବେଶି ଛଟପଟ ହେଲେ ଅଣ୍ଟା ଓ ଜଙ୍ଘକୁ ଆଉ ଦି ଚାରିଜଣ ଆଣ୍ଟେଇ ଧରି ନଅନ୍ତି । ସମସ୍ତେ ନର୍କକୁଣ୍ଡ ଭିତରେ ପଶି ତାକୁ ସେମିତି ଧରି ଥାଆନ୍ତି । ଏକ, ଦୁଇ ତିନି କହି ସମସ୍ତେ ଏକ ସଙ୍ଗରେ ଛାଡ଼ି ଦିଅନ୍ତି । ପାପୀ ଧପାସ୍ କରି ଗୋଟାସୁଦ୍ଧା ନର୍କକୁଣ୍ଡରେ ପଡ଼ି ଜଉବୁଡ଼ୁ ହୋଇଯାଏ । ତାପରେ ଉଠି ମୁହଁ ହାତ ଧୋଇ ନିଜେ ଖୋଦ୍ ଯମଦୂତ ବନିଯାଏ ଓ ଆଉ ଆଉ ପାପୀଙ୍କୁ ପକ୍ଡ଼ିବାରେ ଅନ୍ୟମାନଙ୍କ ସହ ଯୋଗଦିଏ । ରାମ; ରାମ ! ଏଗୁଡ଼ାକ ମଣିଷ

(ଅବଶିଷ୍ଟାଂଶ ୩୯ ପୃଷ୍ଠା ଦେଖ)

# ହାସ୍ୟରସ-ଯଦୁମଣିଙ୍କ ସାହିତ୍ୟରେ

ଅଧ୍ୟାପକ—**ଜାନକୀ ବଲ୍ଲଭ ମହାନ୍ତି**

ହାସ୍ୟରସ—ଯଦୁମଣିଙ୍କ ସାହିତ୍ୟରେ । ଏ ବିଷୟଟି ଏତେ ସ୍ପଷ୍ଟ ଯେ, ଏହାକୁ ନେଇ ଏକ ଦୀର୍ଘ ଭୂମିକା ପ୍ରସ୍ତୁତ କରିବା ଆବଶ୍ୟକ ମନେହୁଏ ନାହିଁ । ଉତ୍କଳର ପୁରପଲ୍ଲୀରେ ଯଦୁମଣି ପରିଚିତ । ଏହି ପରିଚୟକୁ ନିବିଡ଼ କରି ପାରିଛି, ଯଦୁମଣିଙ୍କର କୌତୁକ ପ୍ରିୟତା । ଜଣେ ହାସ୍ୟରସିକ କବି ହିସାବରେ ତାଙ୍କର ଖ୍ୟାତି ରହିଛି—ରହିଥିବ । ବାସ୍ତବ ଜୀବନର ଅନୁଭୂତି ଭିତରେ ଯେ ଏପରି ରଚନା କରି ଅନ୍ୟକୁ କେବଳ ଦିନେ ହସେଇ ନ ଥିଲେ, ଏବେ ବି ହସାଇ ପାରୁଛନ୍ତି । ତାଙ୍କ ସାହିତ୍ୟରେ ହାସ୍ୟରସର ପରିବେଷଣ ସୁନ୍ଦର ହେବ-ନାହିଁ ତ ହେବ କେଉଁଠି ?

ମାତ୍ର ଏତିକି କହିଦେଲେ ଯଦୁମଣିଙ୍କ ହାସ୍ୟ-ରସର ଉପଯୁକ୍ତ ମୂଲ୍ୟାଙ୍କନ କରି ହେବନାହିଁ । ହସି ହସି ଗଡ଼ି ଯିବାକୁ ସେ ପଦ ଯୋଡ଼ି ନ ଥିଲେ । ସେଇ ହସ ଭିତରେ ପ୍ରକୃତ ସତ୍ୟ ପରିବେଷଣ କରିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ହୁଏତ ଆଜି ଯଦୁମଣିଙ୍କ ସାହିତ୍ୟରେ ଯାହା ଆମକୁ ଆନନ୍ଦ ଦେଉଛି, ତହିଁ ମଧ୍ୟରୁ ଅନେକ ସୃଷ୍ଟି ହୋଇଥିଲା କବିଙ୍କ ଲାଗି ଏକ କରୁଣ ପରିବେଶରେ—କବି ହୁଏତ କେଉଁଠାକୁ ଅତିଥି ହୋଇ ଯାଇଥିଲେ—ଧରନ୍ତୁ ସେ, ସେ କାଳର କେହି ଅତୀବ ଗଣ୍ୟମାନ୍ୟ ପ୍ରତିଷ୍ଠାସମ୍ପନ୍ନ ବ୍ୟକ୍ତି—ଯାହାଙ୍କ ନିକଟରେ ଆତିଥ୍ୟ ସତ୍କାର ଲାଗି କୌଣସି ଉପାଦାନର ଅଭାବ ନ ଥିଲା ମାତ୍ର କବି ସେଠି ଆତିଥ୍ୟ ସତ୍କାର ପାଇବା ଦୂରରେ ଥାଉ, ଏପରି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି, ଯାହା ହୁଏତ ଦୁର୍ବିସହ ହୋଇ ପଡ଼ୁଛି ତାଙ୍କ ଲାଗି । କବି ଜଣେ ସରଳ ନିରାଡ଼ମ୍ବର ବ୍ୟକ୍ତି—ନିରୀହ ସେ । ହାତରେ ତାଙ୍କର ଅସ୍ତ୍ର ନାହିଁ । ଯୁଦ୍ଧ ଭୂମିରେ ସେ ସୈନିକ ସାଜି ପାରିବେ ନାହିଁ । ମାତ୍ର ଯାହା ତାଙ୍କର ହାତରେ ଅଛି, ତା'ରି ସାହାଯ୍ୟରେ ସେ ସାଇତି ଯାଆନ୍ତି କେତେଗୁଡ଼ିଏ ଅକ୍ଷର—ସେଇ ଅକ୍ଷର ଗୁଡ଼ିକ ମଧ୍ୟରେ ତୀକ୍ଷ୍ଣ ଅସ୍ତ୍ର ବାହାରି ଆସେ—ଆଉ ସେଇଥିଲାଗି କବି ହୁଅନ୍ତି, ସମାଜ ଦେଶ ବା ଜାତିର ସଂସ୍କାରକ । ଏଇ ସଂସ୍କାର ବାସନା ଯେତେବେଳେ ହସେଇ ରସେଇ ସଜେଇ ମଜେଇ କଥା କହିବାର ଭଙ୍ଗୀ ଭିତରେ ଦେଖାଦିଏ, ସେତେବେଳେ ସେ ହୁଏ ବ୍ୟଙ୍ଗ ରସ—ଏଇଭଳି ଅପରୂପ ବ୍ୟଙ୍ଗ ସୃଷ୍ଟି କରିଛନ୍ତି ଯଦୁମଣି ।

ସେଇ ଅନୁଭୂତିମୟ ଜୀବନର ଗୋଟିଏ ଘଟଣା—ନୂଆଗଡ଼ ରାଜା ବିନାୟକ ସିଂହ ମାନଧାତାଙ୍କୁ, ଖଣ୍ଡପଡ଼ାର ରାଜା ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ନିମନ୍ତ୍ରଣ କରିଥିଲେ ଥରେ—ତାଙ୍କ ପାହାଡ଼ରେ ଏକ ବଣଭୋଜିର ଆୟୋଜନ ହୋଇଥାଏ । ଦୁଇ ରାଜ୍ୟ ପାଖ ପାଖ—ପଡ଼ୋଶୀ । ଦୁଇ ରାଜା ଦୁଇ ଭାଇ ପରି ।

ବଣଭୋଜିକୁ ଚାଲିଥାନ୍ତି ଉଭୟ ରାଜା ଆଡ଼ମ୍ବରରେ—ଖଣ୍ଡପଡ଼ା ମର୍ଦ୍ଦରାଜେ ହାତୀରେ ବସି ଘାଟୀ ପାରି ହେଉଥାନ୍ତି । ସାଥିରେ ଥାନ୍ତି ଶହ ଶହ ଗୁମୁଆ ପଣ୍ଡିତ, ଖୁଣ୍ଟିଆ, ଦଳବେହେରା—ଆଉ ଏଇଭଳି ଆଖପାଖ ଅନେକ ଲୋକ । ଏଇ ରାସ୍ତାର ଠିକ୍ ତଳକୁ ଏକ ଦଣ୍ଡା ରାସ୍ତାରେ ମାନଧାତା ତାଙ୍କର ଦଳ ବଳ ନେଇ ଏକ ସୁନ୍ଦର ତାମଦାନ୍‌ରେ ରାଜବଧିରେ ଗତି କରୁଥାନ୍ତି ।

ହସ କଉତୁକରେ ନିକାଞ୍ଚନ ବଣ ଫାଟି ପଡ଼ୁଥାଏ—ଏତିକିବେଳେ ଖଣ୍ଡପଡ଼ା ରାଜାଙ୍କ ଗହଣରେ ଥିବା ତାଙ୍କ ପଣ୍ଡିତ ତାଙ୍କ ରାଜାଙ୍କର ବଡ଼ିମା ଦେଖାଇ, ନୟାଗଡ଼ର ମାନଧାତାଙ୍କୁ ନ୍ୟୂନ କରି ଶ୍ଳୋକ ଗାଇଲେ—

"ସମୁଦ୍ରମୁଚ୍ଛେ" ପ୍ରବଦନ୍ତି ସାଧବଃ
ଏଷୋଽପି ସ୍ୱର୍ଗୋପିତ ପାରିଜାତକଃ"

ଏହାର ଅର୍ଥ ହେଲା—"ଅତି ଦୃଢ଼ତାର ସହିତ ମହାନ୍ ବ୍ୟକ୍ତିମାନେ କହୁଥାନ୍ତି, ଅତି ଉଚ୍ଚରୁ ଉଚ୍ଚତମ ହେଉଛି ସ୍ୱର୍ଗ । ଐରାବତ ବଂଶର ସୃଷ୍ଟ ଏକ ହସ୍ତୀ ପାରିଜାତକ ମଧ୍ୟ ଏହି ସ୍ୱର୍ଗ ସହ ।"

ଶ୍ଲୋକଟି ଦେଶ କାଳ ପାତ୍ର ନିୟମରେ ବଯ୍ୟାନ କରିଥିଲେ ପଣ୍ଡିତ ମହାଶୟ । ଅର୍ଥାତ୍ ଖଣ୍ଡପଡ଼ା ରାଜାଙ୍କର ହସ୍ତୀହାତୀର ନାଁ ହେଲା ପାରିଜାତକ । ଏଥିକୁ ଅର୍ଥ ସରଳ—ତାଙ୍କ କହିବାର ଉଦ୍ଦେଶ୍ୟ ହେଲା, "ତୁମଠୁ ଆମ ରାଜା ଦେଖ, କେତେ ଉଚ୍ଚରେ ଏବଂ ସେ କେତେ ମହତ ଅଟନ୍ତି । ଆମେ କେତେ ବଡ଼, ତୁମେ କେତେ ସାନ ।"

ନୟାଗଡ଼ର ମାନଧାତା ଏହା ଶୁଣି ଚମକି ପଡ଼ିଲେ । ମାତ୍ର ଏ ଆକ୍ଷେପକୁ ଗ୍ରହିବାର ଲୋକ ଯଦୁମଣି ? ସେ ଥାଆନ୍ତି ନୟାଗଡ଼ର ରାଜାଙ୍କ ଗହଣରେ । ଆଶୁକବି ସଙ୍ଗେ ସଙ୍ଗେ ପଦ ଯୋଡ଼ିଲେ—

"ନକତି ତଳକ ସାନ ବଡ଼କୁ
ଘାସ ଯେତୁ ସିଏ ତୁଏ ତଳକୁ" ।

ଉପରକୁ କଥାଟା ଯିନା ନକତରେ ସାନ ବଡ଼ ତୁଳିବା କଥା ହେଲା—ଘାସ କନଷ ତଳକୁ ହୋଇ ଯିବାର କୁହାଗଲା—ମାତ୍ର ମର୍ମ ରହିଲା ପୁଣି ସେଇ ଦେଶ କାଳ ପାତ୍ରର ପରିସ୍ଥିତିରେ । ନୂଆଗଡ଼ ରଜା ଯାଉଥିଲେ ତଳଦଣ୍ଡା ରାସ୍ତାରେ, ଖଣ୍ଡପଡ଼ା ରଜାଙ୍କ ହାତୀ ଚଳିଥିଲା ଉପର ଘାଟି ରାସ୍ତାରେ । ଯଦୁମଣିଙ୍କ କଥା ସାପର ବିଷକୁ ଗଦ କାଟିବା ପରି କାମ ଦେଲା—ଖଣ୍ଡପଡ଼ା ରଜାଙ୍କ ହାତୀ ଓହ୍ଲେଇ ଆସିଲା ତଳ ରାସ୍ତାକୁ । ଭାଇ ଭାଇ ମିଶିଗଲେ । ଯଦୁମଣିଙ୍କୁ ସମସ୍ତେ ଧନ୍ୟ କଲେ । ଖଣ୍ଡପଡ଼ା ରଜାଙ୍କ ଗହଣରୁ 'ଶ୍ଲୋକ' ଉଚ୍ଚାର କରିଥିବା ପଣ୍ଡିତେ ବି ଯଦୁମଣିଙ୍କୁ ଆଶୀର୍ବାଦ ଜଣାଇଲେ ।

ମାତ୍ର ସେ ପଣ୍ଡିତଙ୍କର ଆଶୀର୍ବାଦ ବୋଲି ଠିକ୍ କହିହେବ ନାହିଁ—ସେ ତୁଏତ ଅଲୌକିକ ଏକ ପ୍ରତିଭା ଯାହା କି ସହଜାତ ଥିଲା କବିଙ୍କଠାରେ—କ୍ରମେ ତାହା ବଳଶୀ ଉଠିଲା ଏବଂ ଯଦୁମଣିଙ୍କୁ ଓଡ଼ିଆ ସାହିତ୍ୟର କ୍ଷେତ୍ରରେ ହାସ୍ୟରସିକ କବି ହିସାବରେ ଯୁଗ ଯୁଗ ଲାଗି ଏକ ପ୍ରତିଷ୍ଠିତ ଆସନ ଦେଇଗଲା ।

ନୂଆଗଡ଼ର କବି, ଅନେକ ରାଜାଙ୍କ ସଂସ୍ପର୍ଶରେ ଅନେକ ପରିବେଶ ଓ ପରିସ୍ଥିତିରେ ଆସିବାର ସୁଯୋଗ ପାଇଥିଲେ । ଅନୁଭୂତିଭରା ଜୀବନର ପ୍ରତ୍ୟେକ ସମ୍ଭବ ପରିବେଶରେ ସେ ସୃଷ୍ଟି କରି ଯାଇଛନ୍ତି ହାସ୍ୟରସଭରା ରଚନା—ସେହି ରଚନା ଏବେ ସୁଦ୍ଧା ସାହିତ୍ୟର ଅମୂଲ୍ୟ ରସ ହୋଇ ରହିଛି ।

ସ୍ଥାନ ଓ ସମୟର ପରିସର ଦୃଷ୍ଟିରୁ ତାଙ୍କର ହାସ୍ୟରସଭରା ସମସ୍ତ ରଚନା ଆଲୋଚନା କରିବାର ଅବକାଶ ଏଠାରେ ନାହିଁ । ମାତ୍ର ଏହା ନିଶ୍ଚିତ ଯେ, କବିଙ୍କର ହାସ୍ୟରସଭରା ରଚନା ପାଠ କଲାବେଳେ ତାଙ୍କ ଜୀବନର ଅନୁଭୂତି ସହିତ ନିଶ୍ଚୟ ପରିଚିତ ହେବାକୁ ପଡ଼ିବ । ତାହା ନ ହେଲେ, ରଚନାରେ ପ୍ରତିଷ୍ଠିତ ପ୍ରକୃତ ହାସ୍ୟରସ ଉପଲବ୍ଧି କରିବା କଠିନ ହେବ ।

ସବୁ ରାଜାଙ୍କର ଆପଣାର ହୋଇ ନିଜ ଗାଁ ଟେକି, ଜାଣୁ ଜାଣୁ ଖଣାରେ ମୁଁ ପଡ଼ିଲି । ବୁଢ଼ୀ ହୋଇନାହିଁ ମାଇପ ଅଛି, ପେଟ ଜଣକ ପାଇଁ, ପାତ୍ର ପୂରଣ, ଗୃହ ଗଣ୍ଡଗୋଳୀ, ତେଲ ମୁଣ୍ଡେ ନେଲ ବୃଷ୍ଟି, ଏଇଭଳି କେତେକ ହାସ୍ୟରସ ପଦ ତାଙ୍କରି ଅମର ଲେଖନୀରୁ ସୃଷ୍ଟି ହେଲା—

ଆଉ ଦିନକର ଘଟଣା—ଥରେ ନୟାଗଡ଼ ରାଜା ମକର ସଂକ୍ରାନ୍ତିକୁ ତାଙ୍କ ସହିତ ମକର ବୁଡ଼ ପକାଇ ଯିବାକୁ କବିଙ୍କୁ ଅନୁରୋଧ କରିଥିଲେ । ମକର ବୁଡ଼ର କିଛିଦିନ ଆଗରୁ କବି ତାଙ୍କର ମାମୁଁଘର ରଣପୁରକୁ ଚାଲି ଯାଇଥିଲେ । ବୁଡ଼କୁ ଆସିବାକୁ ଯେତେ ଚେଷ୍ଟା କଲେବି, ଦିନ ବାର ବେଳା ନିୟମରେ ପଡ଼ି କବି ନୟାଗଡ଼ ଆସି ପାରିଲେ ନାହିଁ । ବୁଡ଼ର ଦିନ ଚାଲିଗଲା । କବି ନୂଆଗଡ଼ ଫେରି ରାଜାଙ୍କ ନିକଟକୁ କ୍ଷମା ମାଗିବାକୁ ଗଲେ ମାତ୍ର ଦେଖା ନ ପାଇ

ଫେରି ଆସିଲେ । ମନ କଷ୍ଟରେ କଟୁଆଳ ଶ୍ୱଶୁର ଘରେ ଏବଂ କଟୁଆଳ ପୁଣି ମାମୁଘରେ କଟାଇ ନୂଆଗଡ଼ ଆସିଲେ । ସେତେବେଳକୁ ରଥଯାତ୍ରା ନିକଟ ହୋଇ ଆସୁଥାଏ । ଅଣସର ଘରେ ଯଦୁମଣି ମହାପ୍ରଭୁଙ୍କ ରଙ୍ଗକାମ କଲେ । ରଥଯାତ୍ରା ଦିନ ଠାକୁରଙ୍କର ଯାତ୍ରା ଗହଣରେ ଯିବା କଥା । ମାତ୍ର ଯଦୁମଣିଙ୍କ ମୁହଁ ରାଜା ଚାହିଁବେ ନାହିଁ ବୋଲି, ଯଦୁମଣି ଶୁଣିଥାନ୍ତି । ତହୁଁ ଯଦୁମଣି ଜଣଙ୍କ ବାରଣ୍ଡାରୁ ଛିଦ୍ର ଥିବା ଗୋଟିଏ ଢୋଲ ଧରି, ତାକୁ ମୁଣ୍ଡରେ ଢାଙ୍କି, ଦୁଇ ହାତରେ ଧରି ରଥ ଆଗେ ଆଗେ ଚାଲିବାକୁ ଲାଗିଲେ । ରାଜା ଏ ଢୋଲଟିକୁ ଲକ୍ଷ୍ୟକରି ଏହାର କାରଣ ପ୍ରଶ୍ନ କଲେ । ଶୁଣିଲେ ଯଦୁମଣିଙ୍କ ମୁଖ ଦର୍ଶନ ନ କରିବା ଲାଗି ରାଜାଙ୍କର ଆଜ୍ଞା ହୋଇଥିବାରୁ ଯଦୁମଣି ଏହିପରି ଚାଲୁଛନ୍ତି । ଏତେବେଳକୁ ରାଜା ବୁଝିପାରିଲେ, ସଙ୍ଗେ ସଙ୍ଗେ ସେ ଯଦୁମଣିଙ୍କୁ ଡାକି କହିଲେ—"ହେଉ ଏବେ ମୁଖ ଦେଖାଅ ।"

ରାଜାଜ୍ଞା ମାତ୍ରେ ଯଦୁମଣି ମୁହଁ ଦେଖାଇ ହାତଯୋଡ଼ି ପଦ ଉଚ୍ଚାର କଲେ :—

"ଅମଳ କମଳ ଦଳ ଲୋଚନ
କୁଣ୍ଡଳାଙ୍କ କୃତ ଶୁଦ୍ଧ ଦର୍ଶନ
କଥ୍ୟ କଥନକୁ ଦୃଢ଼ ସଂଯମ
ବିଚ୍ୟୁତ ବିଚାର କି ବିଘଟନ
ନବଦୁର୍ଗ ରଣ
ଇଷ୍ଟଦେବତା ପରି ଆଚରଣ ।"

ପଦର ଅର୍ଥ ହେଲା—

ହେ ରାଜା, ତୁମର ଏତେ ସୁନ୍ଦର ରୂପ । ତୁମେ କଥାରେ ସର ପକାଇଲା ପରି କଥା କହ । ମାତ୍ର କି ବିଚାର ! ଟିକିଏ ବିରୋଧ ଭାବ ଆସିଲେ ତୁମ ଚରିତ୍ରରେ ବିଚ୍ୟୁତି ଦେଖାଦିଏ, ଯାହାକି "ବାଉରା" ପରି ଏକଜିଦିଆ ହୋଇପଡ଼େ ।

ବାଉରା ହେଉଛନ୍ତି ନୂଆଗଡ଼ର ଅଧିଷ୍ଠାତ୍ରୀ ଦେବୀ । କଥାଟା କପରି କଉତୁକପୂର୍ଣ୍ଣ ତାହା ପ୍ରକୃତ ସମୀକ୍ଷକ ବିଚାର କରିବେ—ଉପରକୁ ବାଉରା ଶବ୍ଦ ବୁଝାଇଲା ଅଧିଷ୍ଠାତ୍ରୀ ଦେବୀଙ୍କି—ମାତ୍ର ଭିତରେ 'ବାଉରା' ଲକ୍ଷ୍ୟ କଲା ସାନ ବୁଦ୍ଧିକୁ ।

ରଥଯାତ୍ରା ଉତ୍ସବରେ ରଥରେ ଆସୀନ ଥିଲେ ପ୍ରଭୁ ଜଗନ୍ନାଥ । ସେହି ଉତ୍ସବରେ ଏକ ସ୍ୱତନ୍ତ୍ର ହସ୍ତୀରେ ଯଦୁମଣୀଙ୍କୁ ବସାଇ ସମ୍ମାନ ଦିଆଗଲା-ବୁଦ୍ଧି ବଳରେ ଜିଣିଲେ କବି ଯଦୁମଣି —

ଯଦୁମଣିଙ୍କର ଶତାଧିକ ରଚନା ହାସ୍ୟ କଉତୁକ-ଭରା ରଚନା ରହିଛି—କେଉଁଠି ପଦେ, କିଏ ଦୁଇପଦ କିଏ ଅବା ଅର୍ଦ୍ଧ । ତଥାପି ଏ ପ୍ରତ୍ୟେକ ଭିତରେ ଆନନ୍ଦ ଲାଗି ପୂରି ରହିଛି ଅସୁମାରି ଉପାଦାନ ।

ଯଦୁମଣିଙ୍କ କବି ଲେଖନୀ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଓ 'ରାଘବ ବିଳାସ' ପରି ବଳିଷ୍ଠ କାବ୍ୟ ସୃଷ୍ଟି କରିଥିଲା ସତ୍ୟ—ମାତ୍ର କବି ଓଡ଼ିଶାର ପୁରପଲ୍ଲୀର ଜନସାଧାରଣଙ୍କ ନିକଟରେ ଅତି ନିଜର, ଅତି ଆପଣାର, ସାହିତ୍ୟରେ ତାଙ୍କର ହାସ୍ୟରସିକତା ଯୋଗେ । ଯଦୁମଣି ପୃଥିବୀରୁ ବିଦାୟ ନେଇଗଲେଣି ବହୁଦିନରୁ; ମାତ୍ର ଏବେ ବି ତାଙ୍କର ସାହିତ୍ୟ ଭିତରେ ତାଙ୍କୁ ପାଇଲା ଭଳି ମନେ ହେଉଛି । ସତେ ଯେପରି ରାଜାଙ୍କ ଗହଣରେ ସେ ଛିଡ଼ା ହୋଇଛନ୍ତି, କଥା କହୁଛନ୍ତି, ହସୁନାହାନ୍ତି ଅଥଚ ହସାଉଛନ୍ତି ସମସ୍ତଙ୍କୁ—



# ଚା ଗରମ୍

(ପଢୁଥିବା ବେଳେ ଚା ଖାଇବେ ନାହିଁ)

ଚା ଗରମ୍ ଚା ଗରମ୍ ଚା ଗରମ୍
ହୋଟେଲ ଗଳି ନଗର ଭିଲ୍ଲା
ତୁମ ଶୁଭାଗମେ ସରଗରମ
ଚା ଗରମ୍ ଚା ଗରମ୍ ।
ଟସ୍ ବୃକ୍‌ଫାଷ୍ଟ ଲପ୍‌ଟନ୍ କେଉଁଶେ
ନାନା ରୂପେ ଆହା ଭ୍ରମ ଦେଶେ ଦେଶେ
ଭ୍ରମଣର ଶେଷେ କେଟିଲ୍ ଆବେଶେ
ହୋଟେଲ ଚୂଲରେ ହୁଅ ଗରମ୍ ।
ଚା ଗରମ...ଚା ଗରମ୍ ।
ଅଧରରେ ଚୁମି ମଡର୍ଣ୍ଣ ନାୟିକା
କାହିଁ ନର୍ସ କାହିଁ ସିନେମା ଗାୟିକା
ସୁରେଇ କଣ୍ଠୀଳ ହୋହଲାଇ ଚାଲେ
ମନରୁ ଛାଡ଼ି ତା ସବୁ ସରମ୍
ଚା ଗରମ୍...ଚା ଗରମ୍ ।
କେବେ ଗ୍ଲାସ କେବେ ଷ୍ଟେଶାଲ ତୁମେ
କେବେ ହାଫ୍ କପ୍ ରୂପରେ ଆମେ
ତୁମକୁ ଦେଖୁଛୁ ସବୁଠାରେ ତୁମେ
ଜଦରି ନାଡ଼ିକୁ କର ଗରମ୍ ।
ଚା ଗରମ୍...ଚା ଗରମ୍ ।
ହୋମିଓ ଡଚେନ୍ ଏଲୋର ପଥ୍ୟ
ତୁମେ ଯୋଗାଇଛ ଅନେକ ତଥ୍ୟ
ସର୍ଦ୍ଦି ବାତ ପିତ ଟାଇଫଡ୍ ପାଇଁ
ତୁମେ ହଅ ନାହିଁ ନଥିବା କାମ୍
ଚା ଗରମ୍...ଚା ଗରମ୍ ।
ଡାଣ୍ଡ ଘରେ ଥିବା ସୋଫାର ସେଟ୍
ଉପରେ ବସୁଛ ଲଗାଇ ବେଟ
ସାଙ୍ଗ ସାଥୀ ମେଳେ ତୁମରି ଆସରେ
ଆଲୋଚନା ଚାଲେ ସରଗରମ୍
ଚା ଗରମ୍...ଚା ଗରମ୍ ।
ଲକ୍ଷ୍ମୀ ଘରେ ନାଲି ଗୁଲର ବଧୂ
ମୁଢ଼ି ସହ ମିଶି ଅଣୁଛ ସ୍ୱାଦୁ
କରଣୀ ମହଲେ ଫିକା ଫିକା ହୋଇ
ସାରୁଛ କେବେ ଏ ଚା ଧରମ
ଚା ଗରମ...ଚା ଗରମ ।
ବାବୁ ଭଇଁଆଙ୍କ ଟେବୁଲ ପରେ
ଧୋବ ସର ସର ନୂଆ ରୂପରେ
ବିରାଜୁଛ କେବେ ବରହ୍ମଣୀ ପ୍ରିୟା
ଅଧରେ ଦେବାକୁ ଟିକେ ସରମ୍
ଚା ଗରମ୍...ଚା ଗରମ୍ ।
ବଜାରରେ ବଢ଼େ ତୁମରି ଦର
ଗୁଣ୍ଡ ଦୁଧରେ କଳାବଜାର
ଜୟ ଲପ୍‌ଟନ୍ ଜୟ ବୃକ୍‌ବଣ୍ଡ
ତୁମକୁ କରେ ମୁଁ ତିନ ସଲାମ୍
ଚା ଗରମ୍...ଚା ଗରମ୍ ।
କବି ଗାଲ୍ପିକ ପାଖରେ ରହି
ପଦ ପରେ ପଦ ଦେଉଛ କହି
ରାତି ଉଜାଗରେ ତୁମେ ତ ବନ୍ଧୁ
ସଭାରେ ଦେଉଛ ତୁମେ କୋରମ୍—
ଚା ଗରମ୍...ଚା ଗରମ ।
ଅଫିସିର ଯେତେ ପିଅନ ସବୁ
ବୋହି ବୋହି ବାବୁ ହେଲେଣି କାବୁ
ତୁମ ଆଗମନ୍‌ ଡେରି ହେଲେ କାହିଁ
ଗାଳି ଶୁଣେ ଶାଳୀ ବଡ ହାରାମ
ଚା ଗରମ...ଚା ଗରମ ।
ରାସ୍ତାରେ ଘାଟରେ ବାଟରେ ହାଟରେ
ବିଶ୍ୱରୂପୀ ତୁମ ରୂପ ନାଟକରେ
ତୁମେଇ ଆଣୁଛ ଠୋକା ଠୋକି ମେଳେ
ହେଉ ଘଷା ଘଷି ହିନ୍ଦୀ ସେରମ୍
ଚା ଗରମ...ଚା ଗରମ ।
କି ରୂପେ ଆସୁଛ ତୁମ କାହାଘରେ
ସକାଳେ ତୁମକୁ ମୁଁ ଯେ ନଷ୍ଟ ଝଟରେ
ଟିକେ ଚୁମି ଦେଲେ ଏକ ଦୁଇ ଜନ
ତା' ପରେ ମଣ୍ଡାଏ ଝାଡ଼ା ବେଦମ୍ ।
ଚା ଗରମ ଚା ଗରମ ।

# ଦୋଳି

ସୌଦାମିନୀ ମହାନ୍ତି

ବରଷକେ ଥରେ ଉଠିଛି ଜହ୍ନ
ଦୋଳର ଜହ୍ନ
ଆମର ଆକାଶ ପିଠିରେ
କର ଲେଉଟାଇ କବରୀ ଫିଟାଇ
ବସୁଛି ଲେଖି ମୁଁ ଖଟିରେ
ଝୁଣ୍ଟି ଗୁଣ୍ଟି ପାଣି ଆଖିରେ ମଲାଣି
ଆସିବ ଏ ଦୋଳ ଛୁଟିରେ ।

ଗଲା ଦିନ କଥା ମନେ ନାହିଁ ସିନା ତୁମର
ଗାଁ ମୁଣ୍ଡରେ ଦୋଳ ଦାଣ୍ଡରେ
ପଡ଼ିଥିଲା ଯେବେ ଗୁମର
ଝୁଲି ଝୁଲି ଦୋଳି ଖେଳୁଥିଲ ତୁମେ
ସତେ କିବା ରାଜ କୁମର ।
ଚମ ସିନା ଚଲି ଉହଳ
ଗାଁ ଝିଏ ଆଜ କଥା କରଛନ୍ତି ଚହଳ ।

ସେଠି ଦିନା ତୁମେ ଦିନ କାଟୁଥିବ ଖଟିରେ
ମୁଁ ଏଠି କାନ୍ଦେ ଷ୍ଟେକଡ ଅଠାର ଛୁଟିରେ ।
ବରଷକେ ଥରେ···
ବାହା ହୋଇଥିଲ ତୁମେ ମୋତେ ପରା
ସନ ଏକଷଠୀ ଫଗୁଣେ
ସେ ଦିନ ଦୋଳରୁ ଆଜିର ଦୋଳଟା
ମାଡ଼ି ବସେ ମତେ ଦିଗୁଣେ ।

ଏଥର କୁହ କ କାରଣ···
ଦିନୁ ଦିନ ଖାଲି କାଖ କୋଡ଼ ମୋର
ହେବାରେ ଲାଗିଛି ପୂରଣ
ଆସ ଦେଖିଯାଅ ଅଳକରେ କଏ
କଳକରେ ନାଚ କଟୀରେ···
ବରଷକେ ଥରେ ।

ଠୁନୁ ଝୁନୁ ଆଉ ବାବୁଲି ବୋଉ ମୁଁ ସାଜିଲି
ତୁମରି ଗହଣେ ତୁମରି ସପନେ ହଜିଲି
ତଥାପି ତ କାହିଁ ତୁମ ଗୁଣ ଗାଇ
ପାରିଲି ନାହିଁ ମୁଁ ପାଟିରେ ।
ବରଷକେ ଥରେ··· ।

ଆହା ମୋ ଜୀବନ ପୀରତି ସୁମନ
ପ୍ରଣତି ଜଣାଇ ରହିଲି
ଯାହା ଭାବୁଥିଲି ଯାହା ଚିନ୍ତୁଥିଲି
ଗୋଟି ଗୋଟି କରି କହିଲି ।

ଆସିବ ଦୋଳକୁ ମୁକର
କଖାରୁ ଗଛଟା ଗାଈ ଖାଇଲାଣି
ଦଣ୍ଡବତ ନେବ ଶୁକର ।

ତୁମେ ନ ଆସିଲେ ଜାଣିଥା କହୁଛି
ଗଡ଼ିଯିବି ଏଇ ମାଟିରେ ।
ବରଷକେ ଥରେ······



## ଅର୍ଥପୂର୍ଣ୍ଣ ଢଗ ଢମାଳିରେ ହସ—

ନୋହିବ ହରଣ ନୋହିବ ଗାଈ
ଯୋଡ଼ା ନାମ ବହି ହୋଇବ ମାଈ,
ପିଇବ ତୋରାଣି ଖାଇବ କୁଣ୍ଡା
ତେବେ ଯଦୁମଣି ହୋଇବ ଭେଣ୍ଡା ।

# କନାଢଣ୍ଡା

ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

"ଯିଏ ଯାହାକୁ ରସିଲା—ତାକୁ କଅଁଫୁଲ ପରି ବାସିଲା ।"

ଯିଏ ଯାହାକୁ ଭଲପାଏ ଅର୍ଥାତ୍ ଅତି ଆଦର ସହକାରେ ଗ୍ରହଣ କରେ ମାନେ ପ୍ରେମ କରେ ବୋଲି କହିଲେ କିଛି ଭୁଲ ହେବନାହିଁ । ତା ଉପରେ ଦୃଷ୍ଟି ପଡ଼ିବା ମାତ୍ରେକ ତା କଥା ମନେପଡ଼ିବା ମାତ୍ରେ ଭାବ-ଗୁଡ଼ିକ ନାଭି କମଳ ଦେଇ ଫୁଟିଉଠେ । ମନ କ'ଣ ହୋଇଯାଏ ହୃଦୟରେ କେମିତି ଗୋଟିଏ ହାବୁକା ଉଠେ ।

ବଲ ଖେଳାଳୀମାନେ ଖେଳ ଦେଖୁ ଦେଖୁ ଭାବ ଗୁଡ଼ିକ ତାଙ୍କ ପ୍ରତି ଅନ୍ତରେ ସ୍ପନ୍ଦିତ ହେବାକୁ ଲାଗେ ଏବଂ ତାଙ୍କର ସେହି ହୃଦ୍‌ଗତ ଭାବଧାରାକୁ ଆଉ ବାଧା ଦେଇ ନ ପାରି ସାଇକେଲ୍ ଷ୍ଟ୍ୟବ୍ର ଲିକ୍‌ମର ପାଟିହାଟେ ସାଧାରଣତଃ ଲିକ୍ କରିଥାଏ:—"ଟାଓର୍ ଅଫ୍, ଗୋ ଅନ୍, ଏକ୍‌ସଲେଣ୍ଟ ଏବଂ ମାର୍ ଟଳାକୁ ।" ଠିକ୍ ସେହିପରି ସଙ୍ଗୀତ ପ୍ରେମୀମାନେ ଗୀତ ଶୁଣିଲେ କିମ୍ବା ବାଜାର 'ଧେର୍ କେଟେ ଧା ତେର କେଟେ ତା'...ଇତ୍ୟାଦି କାନରେ ବାଜିଲେ ଆଉ ସମ୍ଭାଳି ହୁଅନ୍ତି କେତେକେ ? ସଙ୍ଗେ ସଙ୍ଗେ ମୁଣ୍ଡ ହଲିଯାଏ ସଙ୍ଗୀତର ତାଳେ ତାଳେ କର୍ଣ୍ଣ ଜାଗ୍ରତ ହୋଇଉଠେ, ହାତ ହଲିଯାଏ...ନ ହେଲେ ଏପରିକି ଗୋଡଟା ତାଳ ଦେଇ ହଲିଉଠେ । ମନ ଦୋହଲି ଦୋହଲି ପରମ ତଳରେ ବୁଡ଼ିରହେ । ନାମ ଯଜ୍ଞ ସଂକୀର୍ତ୍ତନ ଠିକ୍ ସେହିପରି ଗୋଟିଏ ଜିନିଷ । କୀର୍ତ୍ତନ ଜାଣିଥିବା ଲୋକ କୀର୍ତ୍ତନ ଦେଖିଲେ ସମ୍ଭାଳି ପାରନ୍ତି ନାହିଁ, କରତାଳର ଦୁଇତାଳ, ଛତାଳ, ଘୁମୁରୀ ଇତ୍ୟାଦି ଇତ୍ୟାଦି ବାଜା ଓ ରାଗିଣୀ ମନେଇଡ଼ି ମନକୁ ଉଛନ୍ନ କରି ପକାଏ ।

କଟକ ଜିଲ୍ଲାର ମଦରଙ୍ଗାପାଳ ବୋଲି ଗୋଟିଏ ଗାଁ । ସେଠାରେ କରଣ ବସ୍ତି, ତେଲି ବସ୍ତି, ଧୋବା ବସ୍ତି, କାରିକା ବସ୍ତି ଏହିପରି ନାନା ଜାତିର ଲୋକ ବାସ କରନ୍ତି । କଥାରେ କହନ୍ତି 'ଗାଁ—ପରିମଳ ଧୋବା ଭୁଠରୁ' କିନ୍ତୁ ବଡ଼ ସୁଖର କଥା ଏ ଗାଁ ପରିମଳ ଦେବ ଝୁଙ୍ଗିରୁ ଜଣା ପଡ଼ିଥାଏ । ଆପଣମାନେ କେବେହେଲେ ଭ୍ରମରେ ପଡ଼ି 'ଗାଁ' ସଙ୍ଗରେ 'ପରି'କୁ ଯୋଗକରି 'ମଳ'କୁ ବିୟୋଗ କରି ପଢ଼ିବେ ନାହିଁ, ତା'ହେଲେ ଅର୍ଥ ଅନର୍ଥରେ ପରିଣତ ହେବ । ସେହି ଗାଁରେ ବହୁ ସଂକୀର୍ତ୍ତନପ୍ରେମୀ ଲୋକ କୀର୍ତ୍ତନ କରି ଆନନ୍ଦରେ ଜାଳାଡପାତ କରନ୍ତି ।

ଗୁରିଅଡ଼୍ ସବୁ ସମୟରେ କୀର୍ତ୍ତନ ପାଇଁ ଆମନ୍ତ୍ରଣ ପତ୍ର ଆସିଥାଏ । ଏମାନେ ବି ଖୁବ୍ ସୁନ୍ଦର ଲୋକ । ଆମନ୍ତ୍ରଣକୁ ଠେଲି ନ ପକାଇ କୀର୍ତ୍ତନରେ ଯୋଗ ଦିଅନ୍ତି ଓ ବାଟ୍‌ଲାକୁ ଆଦରରେ ଗ୍ରହଣ କରନ୍ତି ।

ଏମାନଙ୍କର ସବୁବେଳେ ମନ ନିର୍ମଳ ହୃଦୟ ଫାଙ୍କା । ସେମାନଙ୍କର ଭିତରେ ଝିଣ୍ଟିଏ ମଳି ପାଇଲା ଗାମୁଛା ପଡ଼ିଥିବ । କାରଣ ସେମାନେ ସବୁବେଳେ ହୃଦୟରେ ମଳପୁ ଟାଳିବାକୁ ଏହା କରିଥାନ୍ତି; କିନ୍ତୁ କେତେକ ନୂତନ ବ୍ୟକ୍ତି ଏମାନଙ୍କୁ ନିର୍ମଳି ବୋଲି କହନ୍ତି, ସେମାନଙ୍କର ଆଦର୍ଶ ହେଲା—"ସ୍ନେକ୍ ଲିଭିଙ୍ଗ୍ ଏଣ୍ଡ ହାଇ ଥିଙ୍କିଙ୍ଗ"—ଅର୍ଥାତ୍ "ସରଳ ଜୀବନ ଯାପନ ଓ ଗଭୀର ଭାବନା" । କିନ୍ତୁ ତାଙ୍କ ଗଭୀର ଭାବନାର ଜନଶ୍ରୁତି ଥିଲା ପରି ମନେ ହୁଏନା ।

ସେହି ଗ୍ରାମରେ ମଧ୍ୟ ଗୋଟିଏ ବଡ଼ ଗଡ଼ିଆ ଥାଏ । ଗଡ଼ିଆ କହିଲେ ସାଧାରଣତଃ ପାଣି ଥିବା ଗୋଟିଏ ଛୋଟିଆ ଖାଲକୁ ବୁଝାଏ; କିନ୍ତୁ ଏଠାରେ ବଡ଼ ଗଡ଼ିଆ

ବୋଇଲେ ଗଡ଼ିଆଟି ଟିକିଏ ବଡ଼; ଅନ୍ତି ପେଟଗ୍ରାମାନେ ତାଙ୍କ ପେଟରେ ଥିବା ଖାଦ୍ୟର ଅସାର ଜିନିଷ ଗୁଡ଼ିକୁ ସେହି ଗଡ଼ିଆର ସ୍ୱଚ୍ଛ ନୀରରେ ଛାଡ଼ିଦେଇ ପୁଣି ସେହି ଗଡ଼ିଆରେ ପାଣି ଖାଉଥାନ୍ତି। ଏ କଥା ଶୁଣି ହୁଏତ ଆମର କେତେକ ଅଗ୍ରଣୀ ପାଠକେ ନାକ ଟେକୁଥିବେ; କିନ୍ତୁ ଏଥିରେ କ'ଣ ମନ୍ଦ ଅଛି ? କାରଣ ଗାଁର ଶିକ୍ଷିତା ସ୍ତ୍ରୀମାନେ ସନ୍ତାନ ସନ୍ତତିମାନଙ୍କର ପରିଚ୍ଛନ୍ନତା ପାଇଁ ମଳ ତଥା ଅନ୍ୟାନ୍ୟ ଅସନା କନାକୁ ସାଧାରଣତଃ ଧୋଇ ଆଣିଥାନ୍ତି। ହେଲେ ସେଗୁଡ଼ିକ କ'ଣ ସେଠାରେ ରହେ !! କାରଣ ଆମେ ଦେଖିଥାଉଁ ସୋଡ଼ା, ନିହାତି ମଳ ଓ ଅସନା ପଦାର୍ଥକୁ କାଢ଼ି ଲୁଗାକୁ ସଜ ଫୁଟିଲା ମଲ୍ଲିଫୁଲ ପରି ଧୋବ ଫର୍ ଫର୍ କରିଦେଉଛି ଏହାହିଁ ସୁସ୍ପଷ୍ଟ ପ୍ରମାଣ। ସେ ଗଡ଼ିଆରେ ଧୋବା ଯେତେବେଳେ ନିତି ସଫା କରେ ମଇଳା ତ ମଇଳା ତାର ବାପ ଗୋସ-ବାପ ଚଉଦ ପୁରୁଷ ମଧ୍ୟ ଗ୍ରୁଡ୍ ଗ୍ରୁଡ୍ ବୋଲି କାହାର ଆଜ୍ଞା, ନା କାହିଁକି କାମାକ୍ଷାଙ୍କ ଆଜ୍ଞାରେ ଗ୍ରୁଡ଼ ପଳାଇ ଯିବେ। ସତେ ଯେପରି ସେହି ଗଡ଼ିଆର ନିର୍ମଳ ଜଳ ତାଙ୍କ ହୃଦୟରେ ପ୍ରବାହିତ।

କୀର୍ତ୍ତନିଆଁଙ୍କ ମଧ୍ୟରେ ଟେମା, ସୁକୁଟା, ଗନ୍ଧିଆ —ଏ ତିନିଜଣଙ୍କ ଖାତି ବେଶୀ। ଟେମାର କାନ୍ଧରେ ଯଦି ଖୋଳ ଖଣ୍ଡେ ପଡ଼ିଛି, ତେବେ ନିଅ ତା ନାଚ। କେତେ ନାଗରେ ଡିଆଁ, ଭେଳିକି ଭେଳି ବୋଲ୍ ପୁଣି ଭେଳିକି ଭେଳି ବାଜା। ମୂକାବାଲା ଯେପରି ଶ୍ରୀପାଳିଆ ପାଖରୁ ଶୁଣିଲା ଯେ ତାକୁ ଝାଡ଼ା ତଲବ୍ ଦେଇଥିଲା ଦେଲାଣି ତତ୍‌କ୍ଷଣାତ୍ ସେ ଶ୍ରୋତାଙ୍କ ଆଗରେ ଆଣ୍ଠୁଲି ପଡ଼ି ଆରମ୍ଭ କରିଦିଏ—''ଗୁପି ଦେ, ଗୁପି ଦେ ଅବନିତେ ବନ୍ଧୁଆ ଗିଲରେ ବରନ୍ଦା, ଧେ ଧେରେରେକେଟ ପୋଖରୀ ନିକଟ ଧାଇଁଯା ପାଣି ଖାଉଥିଆ।'' ଠିକ୍ ସେହିପରି ତାର ଭେଳିକି ଭେଳି ନାଚ ଆଉ ଭେଳିକି ଭେଳି ବୋଲ୍।

ସୁକୁଟା ! ତା ନାଁଟି ସିନା ସୁକୁଟା; ହେଲେ ଦେଖିବାକୁ ଖୁବ୍ ଚହଟ ଚିକ୍କଣ ଜହ୍ନି ମଞ୍ଜିଠାରୁ ଆହୁରି ଗୋରା। ବାହା ଗୁଡ଼ିକ ଲୁହା ତ ଲୁହା ଇସ୍ପାତ ମଧ୍ୟ ତା ସହିତ ତାଳ ଦେଇ ପାରିବନି। ମୁହଁଟି ଚନ୍ଦ୍ରଠାରୁ ଆହୁରି ସୁନ୍ଦର। ଚନ୍ଦ୍ରକଳା ପରି ମାଡ଼୍ ମାଡ଼ ତା ମୁହଁରେ କେତେ ଗଣ୍ଡା ବସନ୍ତ ଚିହ୍ନ ମାତ୍ର ପୁଣି ଗୁମୁ ଦାନ୍ତ ଦୁଇଟି ବାହାରକୁ ବାହାରି ପଡ଼ି 'ଗଣ୍ଡା କେତେ କରୁଣ ଚିହ୍ନକୁ ପୋକଖିଆ କାଳିଆ ରଙ୍ଗ ଦାଗ ଯୋଡ଼େଇ ଟେକିଇଛି। ତା ସଙ୍ଗକୁ ଖଣ୍ଡା ଧାର ପରି ନାକ ଖାସା ଉଜଳ ଦେଖାଯାଏ। ବସନ୍ତ ଯୋଗୁ ଗୋଟିଏ ଆଖିରେ ବସନ୍ତ ଫୁଲ ପଡ଼ିଛି। ଯାହା ହେଉନା କାହିଁକି ସେ ପରର ଦୋଷ ଦୁର୍ଗୁଣ ଗୁଡ଼ିକୁ ସେହି ଆଖିରେ ଦେଖେ ଓ ଭଲ ଆଖିରେ ଅନ୍ୟର ସୁଗୁଣ— ଅର୍ଥାତ୍ ଅଜକାଲି କଳିକାଳରେ, କଳାପଟେଇ ଯୁଗରେ କପରି ତାଳ ଦେଇ ଚଳିବାକୁ ହେବ ସେହି —ସେହି ଗୁଣ ଗୁଡ଼ିକ ଦେଖେ ଓ ଗ୍ରହଣ କରି ତଦନୁଯାୟୀ କାର୍ଯ୍ୟ ମଧ୍ୟ କରେ। ତାର ହାତରେ ଯଦି କରତାଳି ପଡ଼ିଲେ ଈଶ୍ୱରଙ୍କ ପ୍ରେମରେ ଭାବବିହ୍ୱଳ ହୋଇ ତାଳ କଥା ମଧ୍ୟ ଭୁଲିଯାଏ।

ଗନ୍ଧିଆ—ଗୁଡ ତା କଥା, ନାଁଟି ଯେପରି ଗୁଣ ମଧ୍ୟ ଠିକ୍ ସେହିପରି। ଗନ୍ଧ ଯେପରି ଚାରିଆଡ଼କୁ ମହକାଇ ଦିଏ, ତା'ର ସେହିପରି ସର୍ବବ୍ୟାପୀ ଆଉ ଅସୀମ। ବେଳେ ବେଳେ ଅକାଳେ ସକାଳେ ତା' ନାଁଟି ପଡ଼ିଲେ କେହି କେହି କହି ଉଠିଥାନ୍ତି ''ସକାଳୁ ହ୍ୟାଲୁ ଅଲଖାଇଷ ଗନ୍ଧିଆ ନାଁଟା ପଡ଼ିଲାଣି ଯେ ଆଜ ମଣିଷର କି ଦୁର୍ଯୋଗ ଅଛି କେଜାଣି ?'' ଅତି ଆଦରରେ ଓ ସ୍ନେହରେ କୌଣସି କୌଣସି ବିଧବା ଓ ଅଧାବୟସୀ ସ୍ତ୍ରୀ ଲୋକମାନେ ''ଯୋଗଣିଖିଆ'' ବୋଲି କଲ୍ୟାଣ କରିଥାନ୍ତି।

ତାର କଣ୍ଠ ଯେପରି ମଧୁର ସ୍ୱର ସେହିପରି ଧୀର ଆଉ ସୁନ୍ଦର। ଗୀତରେ ସ୍ୱର ଦେଲାବେଳେ ଖୁବ୍ ମଜେଇ ମଜେଇ, ସଜେଇ ସଜେଇ ଆରମ୍ଭ କରେ। ଗନ୍ଧିଆ ଯଦି 'ଆ' ବୋଲି ଧରିଛି ନ ହତିଯାଉ ପାଞ୍ଚ

ଉଣସିନହଟ୍, କ'ଣ ଏବେ ଭାଷିଗଲା ? ପ୍ରକୃତରେ ତା ଗୀତର କି ବିମୋହିନୀ ଶକ୍ତି ! ଏଥିକୁ ପୁଣି ତା' ଗୀତରେ ଭଗବାନଙ୍କର ନାମ—ଆହା, ଶୁଣିଲେ ରୁମ ମୂଳ ଠାକୁରି ଉଠେ । ସମସ୍ତ ଜୀବଜଗତ—ମନୁଷ୍ୟ-ଠାରୁ ଆରମ୍ଭ କରି ବୃକ୍ଷଲତା ଇତ୍ୟାଦିଙ୍କ ବାଦଦେଇ ପୁଣି ପଶୁମାନଙ୍କ ମଧ୍ୟରେ କୁକୁର ପର୍ଯ୍ୟନ୍ତ ସମସ୍ତେ ଏକାଗ୍ର ଚିତ୍ତରେ କର୍ଣ୍ଣ ଉମାୟୂନ କରନ୍ତି ଓ ଗୋଟିକର ଶବ୍ଦରେ ଆଖ ପାଖରେ ଯେତେ କୁକୁର ଥାନ୍ତି ମେଣ୍ଢ-ହୋଇ ଭୁକାଭୁକି କରି ମଠ ଆଗରେ ଜମା ହୁଅନ୍ତି ।

ଏହି ତିନିଜଣ ହେଲେ ସବୁ କୀର୍ତ୍ତନରେ ଆଗଭର । କୀର୍ତ୍ତନ ଯାହା କରନ୍ତି, କୀର୍ତ୍ତନିଆଁଙ୍କ ସଙ୍ଗରେ ଗଲେ ଅନ୍ତତଃ ଜୋର କରି ବାଟୁଲା ମିଳେ ଏହା ସେମାନଙ୍କର ଧାରଣା ଓ ଭରସା ମଧ୍ୟ । "ତା ନହେଲେ ମଣିଷ ଏ ମହରଗ ଯୁଗରେ ଚଳିବ କିପରି ?" ଏହା କେତେବେଳେ କେତେବେଳେ ତାଙ୍କରି ମୁଖରୁ ମଧ୍ୟ ଶୁଣାଯାଏ । ତେଣୁ କେହି କେହି ନିନ୍ଦୁକ ଲୋକ ତାଙ୍କୁ "ହରିସଖା ବାଟୁଲା ଖିଆ" ବୋଲି ଡାକନ୍ତି ଓ "ଘର ଉପରେ ଖିଆ, ହାଡ଼ ଉପର ହଗୁରି" ବୋଲି କହନ୍ତି ।

× × ×

ଗୌରାଙ୍ଗ ମହାପ୍ରଭୁଙ୍କ ଜନ୍ମଉତ୍ସବ ହେବ ଆସନ୍ନା ପାଞ୍ଚ ତାରିଖରେ । ପୂର୍ବପରି ଏଥର ମଧ୍ୟ ଚବିଶ ପ୍ରହର କୀର୍ତ୍ତନ ପାଳନ କରିବା ପାଇଁ ଆୟୋଜନ ଚାଲିଥାଏ । ହରି, ପାଞ୍ଚ ଦିନ ପୂର୍ବରୁ ଚାଲିଛି ଚାଟିପକା, ହାଣ୍ଡିବୁଢ଼ା, ଲାଠ ଚଗ, ଲିପା ପୋଛା ଇତ୍ୟାଦି ଇତ୍ୟାଦି ଆବଶ୍ୟକ କାମ । ହେଲେ ହରିସଖାଙ୍କ ଦେଖା କାହିଁ ? ବୁଝ୍ ବୁଝ୍ ଘଟଣା ପାଇଁ ସେଇଠି—ଝାଡ଼ାଖିଆ ଔଷଧ ଖାଇ ପଡ଼ିଆକୁ ଯିବାରେ ବ୍ୟ । ନିଜ ମଠ, ନିଜ କୀର୍ତ୍ତନ; ସେଥିରେ ଜୋଉ ଶଶୁର ପୁଅ କ'ଣ କହିବ ? ନାହା ଜିଭରେ କ'ଣ ହାଉ ଉଠିଛି ? ଯେତେ ଖାଇବେ ସେତେ ଭଲ, ପେଟ ସଫେଇ ପାଇଁ କାଳେ କ'ଣ ଝାଡ଼ା ଔଷଧ ଖାଇଥିଲେ ଯେ ପଡ଼ିଆରେ ସାର ଦେଇ ଦେଇ ନାକେଦମ୍ ହେଲେଣି ।

ଯା ହେଉ ଗୋଟେ ଦିନ ଭିତରେ ସେମାନଙ୍କର ପଡ଼ିଆକୁ ଦୌଡ଼ ଦେବାରେ ଦରକାର ପଡ଼ିଲନି । ସେମାନେ ଠିକ୍ କଲେ ଯେ ଏ ଦୁଇ ଦିନର ବାଟୁଲା ଯେପରି ଚଳେ ନ ପଡ଼େ । ସେହିଦିନଠୁ ଠାଁ'ର ଘଣ୍ଟା ଶବ୍ଦ ଶୁଣିଲେ ମୋଫତବାଜ ଗଡ଼ିଲ ପରି ମଠରେ ଏ ତିନିଜଣଙ୍କର ମିଳନ ହୁଏ । ଖୁବ୍ ଭଲ ଭାବରେ, ଅତି ଭକ୍ତି ସହକାରେ ଥରକୁ ଥର ପ୍ରସାଦ ମାଗି ମୁହଁକୁ ତଳକୁ ପୋତି ଚୁପ୍ ଚାପ୍ ଆପଣାର ନଲେଲବାରେ ଲାଗିଯାନ୍ତି; କିନ୍ତୁ ଅନ୍ୟ ଲୋକଙ୍କ କଥା କିଏ ପଚାରେ ? ଖାଲି ସାର ହାତ ଟେକି ବସିଥାନ୍ତି । ଟଙ୍କାତ ଚାଲିଛି, ପଙ୍ଗତରୁ କିପରି ବା ଉଠନ୍ତେ ? ସମସ୍ତଙ୍କର ମୁହଁ ତାଙ୍କରି ଆଡ଼କୁ ସତେ ଯେପରି ସେହି ତିନିଜଣ ସମସ୍ତଙ୍କ ଉଠିବାରେ ସାହାଯ୍ୟ କରିବେ । କେତେକ ଚୁଟୁଚୁରିଆ ଲୋକ—"ମଠ ବାଡ଼ କଥା, ପଙ୍ଗତ ଗୋଟେ କ'ଣ ମ ?" କହି ଉଠିଯାନ୍ତି ।

ଶେଷ ଦିନ, କୀର୍ତ୍ତନ ସରିବାକୁ ବସିଲାଣି । ହରିସଖା ସାଙ୍ଗ ହୋଇ ଗୋଟିଏ ମେଳାକୁ ଯାଇଥାନ୍ତି । ସେଠାରେ କ'ଣ ଟିକିଏ ଟିକିଏ ଚୂଡ଼ାଘସା ଖାଇ ଧିଁ ଧିଁ ହୋଇ ଧପାଳିଥାନ୍ତି । "ପରିବଶିଆ ମଙ୍କଟକୁ ଟେକାଟାଏ ।" ଏତିକିରେ ସେମାନଙ୍କୁ ଅଣ୍ଟନ୍ତା ବା କିମିତି ? ମଝିରେ ମଝିରେ ଡୋ ଡା, ପୁଁ ପାଁ, ଟୁଁ ଟାଁ, ଟୁସ୍ ଠାସ୍, ଫୁସ୍ ଫାସ୍ ଶବ୍ଦ ହେବାର କେହି କେହି କହନ୍ତି । ଏହିଠାରେ ଗୋଟିଏ ପୁରୁଣା କଥା ମନେ-ପଡ଼େ । ଏହିପରି ବାୟୁର ଗୁଣ ବର୍ଣ୍ଣନା କରିବାକୁ ଯାଇ କେତେକ କହନ୍ତି—

"ଉଡ଼ଡା ପଡ଼୍ ପଡ଼ା ପାଡ଼ା ମଧ୍ୟମା ପ୍ରାଣ ଘାତକା ।
ଫୁସି ଫାସୀ ସତ୍ୟାନାଶୀ ଗୋଳିଆ ଜୀବନ ମାରଣା"

ଗାଁ ପାଖ ହେଲା, ପୁଣି ମଠ ବା ପାଖେଇ ଆସିଲା, ହେଲେ କୀର୍ତ୍ତନ କାହିଁକି ଭଲକରି ଶୁଭୁନାହିଁ । ବାଟୁଲା ସରିପଇଥିବ ବୋଲି ଆଶଙ୍କା କରି ମନଟା ମରି ମରି

(ଅବଶିଷ୍ଟ ୩୧ ପୃଷ୍ଠା ଦେଖନ୍ତୁ)

## ॥ ଖାଲି ପ୍ରେମ ଆଉ ପ୍ରେମ ॥

କୁମାରୀ କନକ ନମ୍ରତା ଭୂୟାଁ ।

ମୋ ବୋଉ ଲୋ ! ଏ ମଣିଷଠାରୁ ଆରମ୍ଭ କରି ଜନ୍ଦା ପିମ୍ପୁଡ଼ି ଯାଏ ସମସ୍ତେ କହନ୍ତି ଆମେ ପ୍ରେମ କରୁ ! କି ଯେ ସେ ପ୍ରେମ···ସେ ଜିନିଷଟା କ'ଣ ଏଡ଼େ ମଧୁରିଆ ! ମଣିଷମାନେ କହନ୍ତି ଆମେ ପ୍ରେମ କରୁ । ପ୍ରେମ ବ୍ୟତୀତ ଆମେ ବଞ୍ଚି ପାରିବୁନାହିଁ··· ହେଲେ, ସେଦିନ ଗୋଟାଏ କିଏ ଅଜଣା ଅଶୁଣା ପୁଅଟା ମୋ ପାଖକୁ ଚିଠି ଲେଖିଥିଲା···"ତୁମ କବିତା ପଢ଼ି ମୁଁ ତୁମକୁ ଏତେ ଭଲପାଇ ବସିଛି ଯେ···ଆଃ ! କାହିଁକି କହୁଛ ସେ କଥା···ଆଉ ଆଜି, ଏ ଚିଠିଟି ଯେ କେତେ ଆନନ୍ଦରେ ତମ ପାଖକୁ ଲେଖୁଛି ତା ଜଣାଇବାକୁ ମୁଁ Word fail ? ଏଇତ ପ୍ରେମର ପ୍ରଥମ ସୋପାନ । କେଇଦିନ ହେବ ଏଇ ଅଡନ୍ତୁ ଦାସଟା ମ ! ପଛେ ପଛେ ଗୁଇ ଭଳି ଗୋଡ଼ାଇଥିଲା । ପ୍ରତି କଥାରେ ତା'ର ପ୍ରେମ ନିବେଦନ···ତା' ଭଲପାଇବା କଥା— "ମୁଁ ତୁମ ବିନା ପାଗଳ ହୋଇଯିବି । ତୁମ ବ୍ୟତୀତ ମୋ ଜୀବନ ବ୍ୟର୍ଥ···ମୂଲ୍ୟହୀନ···ମୁଁ ଯେ ତୁମକୁ କେତେ ଗଭୀରଭାବେ ଭଲପାଏ···ତମେ କ'ଣ ତା' ବୁଝି ପାରୁନ ?" ଦିନକୁ ପୁଣି ଦଶଥର ଯାଉଥିବ ଆମ ଘରବାଟ ଦେଇ । ମୋ ସହିତ ଥରେ ଅବଧ ଦେଖା-ହୋଇଯିବାରି ଆଶାନେଇ । ଏଡେ ବକଟେ ଟୋକା, ପାଠବୋଲି ପଢ଼ୁଛି ବି. ଏ. ତାର ପୁଣି ଦେଖ ପ୍ରେମ କରିବାର ମୋହ ! ହାଇରେ ବିଧାତା ! କ'ଣ ହେଲା ଏ ଦୁନିଆଟା···!

ଇଏ ତ ଗଲା ମଣିଷଙ୍କ କଥା । ପୁଣି ଗୋରୁ-ଗାଈଙ୍କର ପ୍ରେମ କ'ଣ କେମିତି ! ମଣିଷକୁ ଦେଖିଲେ କ'ଣ ସେ ବ୍ୟସ୍ତବ୍ୟସ୍ତ କରି ନପକାଇ ସହଜେ ଛାଡ଼ିବେ । ପାଖରେ ଦେଖିଲାକ୍ଷଣି ଗୋଡ଼ଠାରୁ ଆରମ୍ଭ-କରି ମୁଣ୍ଡଯାଏ ଚାଟି ପକାଇବେ ପ୍ରେମରେ । ସେଥିରେ ପୁଣି ଯେଉଁ ଚାହାଣୀ···ମଣିଷ କି ସେମିତି ଚାହିଁ ପାରିବେନି । ଉର୍ବଶୀ ତ ନୁହେଁ···।

ଆଉ ଏ ଧାପୁ କୁକୁରଟା ଏଡ଼େ ବଡ଼ ଆଲ୍‌ସିସିଆନ କୁକୁରଟା···ଦେଖିଲେ ଡରମାଡ଼େ । ପ୍ରେମରେ 'ଗଦ୍‌ଗଦ୍ ହୋଇ ଯେତେବେଳେ ସେ ଉପରକୁ ଚଢ଼ି ଆସେ, ଗୁଣ୍ଡରେ ଥୁଃ କିନା ନଣ୍ଡାଏ ଛେପ ମୁଁ ପକେଇଦିଏ ପରା ! କେଇଦିନ ହେଲା ସେଥିପାଇଁ ଗୋଟାଏ ଡେଉଁରିଆ ପିନ୍ଧିଛି ମ ! କାଳେ କେତେବେଳେ ସଂଜବେଳେ କି ରାତିରେ ସିନେମା ଦେଖି ଫେରିଲା ବେଳେ ଅନ୍ଧାରରେ ଆସି ଉପରକୁ ଚଢ଼ିଗଲେ ଭୟରେ ଚମକି ପଡ଼ିବ ! ଡାହାଣିଆ ଦେହଟା କିନା ! ଏତେ ପ୍ରେମ କୁଆଡ଼ୁ ସୁହାଉଚି···

ହେଇଟି ! ସେ ଯୋଉ ଗୋବରା ଚଢ଼େଇଟିକୁ ମୁଁ ଲୁହା ପିଞ୍ଜରା ଭିତରେ ରଖିଛି ତା'ର ପ୍ରେମ କଥା ଶୁଣିଲେ ତ ପାଠକେ ଏକବାରେ ତାଜୁବ ହୋଇଯିବେ । ଏତେ ପ୍ରେମ ପୁଣି ତା'ର । ପାହାନ୍ତାଟାରୁ କି ନିଦରୁ ଉଠି ସେ ପ୍ରେମଭରା କଣ୍ଠରେ ମତେ ଡାକି ପକାଏ । ଆଜି ଯେତେବେଳେ କଦଳୀ କି ନାଲି ଟହ ଟହ ପାଚିଲା କୁନ୍ଦୁରି ତାକୁ ଖାଇବାକୁ ଦିଏ··· ସେତେବେଳେ ଏକା ଦେଖିବ ତାକୁ । ପ୍ରେମରେ ଅଧିର ହୋଇ ମୋ ହାତ ଆଙ୍ଗୁଠିକୁ ବି ଖମ୍ପି ପକାଏ ପରା ।

କ'ଣ ଏତିକି ଜଣ ପ୍ରେମ କରନ୍ତି କି ! ଆହୁରି ଜନ୍ଦା ପିମ୍ପୁଡ଼ି ଅଛନ୍ତି ଯେ । ସେଇ ବାଡ଼ିପଟରେ ଯେଉଁ ଲିଚୁକୋଳି ଗଛଟା···ଦେଖିଛ; ସେଥିରେ ଥିବା ଧୂଳିଆ ଜନ୍ଦା ଆଉ କାଠ ଜନ୍ଦାଙ୍କର ଯେଉଁ ପ୍ରେମପୂର୍ଣ୍ଣ ଆହ୍ୱାନ ଓ ସ୍ୱାଗତ ସମ୍ଭାଷଣ । ଯେମିତି ଗଛ ଉପରକୁ ଚଢ଼ିଯିବ, ଆରେ ବାପ୍‌ରେ ! ଘେରିକଡ଼ଯାକ ତ ଘେରିଯାଇ ଖାଲି ଚୁମ୍ବନ ପରେ ଚୁମ୍ବନ ଦେଇ

ତୁମକୁ ଝାଳନାଳ କରିଦେବ । ଆଉ ଉପାୟ କେଉଁଠି ଥିବ କି ତାଙ୍କଠାରୁ ମୁକ୍ତି ପାଇବାକୁ ! ଶେଷରେ ହାତ ହ'ଠା ଗୁଡ଼ିଦେଇ ଚଳେ ଅ.ସି ଦୁମ୍‌କା ପଡ଼ିବା କଥା । ଏକାଦିନରେ ତ ମନେ ରହିଯିବ ସେ ପ୍ରେମ କାହାଣୀ···ଆଉ କ'ଣ କେବେ ମୁଁ ଯାଏ କି ସେଠିକି ! ଲଟ୍‌କାଳି ଖିଆ ତ ମୋ'ର ସେଇଦିନୁ ବନ୍ଦ । ସେ ପ୍ରେମକୁ ଜୋଡ଼ିଏ ହାତ ଦୂରରୁ ଜୁହାର ।

ଆଉ ଆଜିକାଲି···ନଦୀଙ୍କ ପ୍ରେମରୁ ନିଜକୁ ଦୂରେଇ ରଖିବା ପାଇଁ ପିନ୍ଧା ଲଟ୍‌କାଳି ପଛପାଖକୁ ଗଲାଣି···ହେଲେ ଏ ଯେଉଁ ପିମ୍ପୁଡ଼ି ଶ୍ରୀଙ୍କୁ ସମ୍ଭାଳିବା ତ ବିଷମ ସମସ୍ୟା । ଅଳ୍ପବୟସ୍କ ପୁଅ ଝିଅଙ୍କର ପ୍ରେମପରି ଏମାନଙ୍କର ପ୍ରେମ ମଧ୍ୟ ଖୁବ୍ ଉଗ୍ର । କ'ଣ ଏମିତିଆ ସେମିତିଆ ପ୍ରେମ କରନ୍ତି କି ସେମାନେ ! ଚଳେ ତ ଚଳେ···ପୁଣି ନହେଲେ ବେଳକୁ ଖରାବେଳେ କି ରାତିରେ ଟିକେ ଶୋଇବାକୁ ଗଲାବେଳକୁ ଖଟ ଉପରକୁ ବି ରେଲଗାଡ଼ିର ଡବା ପରି ଗୋଟିକ ପରେ ଗୋଟି ଧାଡ଼ିବାନ୍ଧି ଚାଲି ଆସୁଛନ୍ତି । ତା'ପରେ··· ଏକାବେଳକେ ଦଶ ପନ୍ଦର ହାତକୁ ତ ଜୋଡ଼ିଏ ପଡ଼ିଗଲି ବେକଚଳକୁ ଯାଇ ଏମିତି ଗଭୀର ପ୍ରେମରେ ଛନ୍ଦି ଧରୁଛନ୍ତି ଯେ ··ଘୁମ ନିଦଟା ଫଟ୍‌କିନା ଭାଙ୍ଗିଯାଉଛି ସ୍ୱପ୍ନ ଦେଖୁଥିଲେ ବି ସେଇଟା ଅଧା ରହିଯାଉଛି । ଆରେ ବାବା ! ଏତେ ପ୍ରେମ ଶ୍ରୀଙ୍କର ! ଆଜି ତ ହବନ ଦେଖୁଛି ।

ଅତନୁ ଦାସଙ୍କୁ ବୁଢ଼ୀ ବସିଯିବା କଥା କହିବାରୁ ସେ ଯେମିତି ଏବେ ଥସିଥାସି ଯାଉଛି···ସେମିତି ପିମ୍ପୁଡ଼ିମରା ଔଷଧ ନ ପକାଇଲେ ପିମ୍ପୁଡ଼ି ମାନଙ୍କର ଏ ଉଦ୍ଧାମତା ବନ୍ଦ ହେବନି ଦେଖୁଛି । ତାଙ୍କ ପ୍ରେମ ନିଶା ଛୁଟିବନି ଯେ ପୁଣି । ପାଠକେ ଦେଖନ୍ତୁ ନା ଏ ମଣିଷଙ୍କଠାରୁ ଆରମ୍ଭ କରି ପିମ୍ପୁଡ଼ି ପର୍ଯ୍ୟନ୍ତ ବି କେମିତି ପ୍ରେମ କରିବାକୁ କଦମ ପରେ କଦମ ପକାଇ ଆଗେଇ ଆସୁଛନ୍ତି ।

ସବୁଠେଇ ଖାଲି ପ୍ରେମ ଆଉ ପ୍ରେମ···



# ହସନ୍ତୁ ନାହିଁ

ଏବେ ଜାତୀୟକରଣ ପାଇଁ ଆମ ଦେଶର ଲୋକମାନେ ଖୁବ୍ ଆଗ୍ରହ ପ୍ରକାଶ କରୁଛନ୍ତି । ବ୍ୟକ୍ତିଗତ ମାଲିକାନା ଲୋପ କରି ଜାତୀୟକରଣକୁ ଉତ୍ସାହିତ କରୁଛନ୍ତି । କିନ୍ତୁ ଗୋଟିଏ ମହିଳା ସମିତି ଏହାର ବିରୋଧ କରି ଏକ ପ୍ରସ୍ତାବ ଗ୍ରହଣ କରିଛି । ମହିଳା ସେମାନଙ୍କର ଅନୁରୋଧ ହେଲା ଯେ—ପୂର୍ବରୁ ଆମ ଦେଶର ମହିଳାମାନେ ପୁରୁଷର ବ୍ୟକ୍ତିଗତ ସମ୍ପତ୍ତି ଭାବେ ବିବେଚିତା ହୋଇ ଆସୁଛନ୍ତି । କୌଣସି ସମୟରେ ଯେପରି ସେମାନଙ୍କୁ ଜାତୀୟକରଣ କରା ନ ଯାଏ ।

●

ବିଦେଶରୁ ତାଇଚୁଙ୍ଗ୍, ତାଇନାନ ଇତ୍ୟାଦି ଧାନ ଆଣି ଆମ ଦେଶରେ ଉନ୍ନତ ଧାନ ଚାଷ ହେଉଛି । ଜର୍ସି, ହଲିଆନା ଆଦି ଷଣ୍ଢ ବାହାରୁ ଆଣି ଆମ ରାଜ୍ୟର ଗୋ ସମ୍ପଦକୁ ଉନ୍ନତ କରାଯାଉଛି । ଆର·ଆଇ· ଆର, ହ୍ୱାଇଟ୍ ଲେଗ୍‌ହର୍ଣ୍ଣ, ଅଷ୍ଟ୍ରେଲିଅନ୍ କୁକୁଡ଼ା ବାହାରୁ ଆଣି ଆମ ରାଜ୍ୟର କୁକୁଡ଼ାମାନଙ୍କୁ ଉନ୍ନତ କରାଯାଉଛି । ସେହିପରି ଆମେରିକା, ଋଷିଆ, ଅଷ୍ଟ୍ରେଲିଆରୁ ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ ଆଣି ଆମ ରାଜ୍ୟରେ ସୁସ୍ଥ ସନ୍ତାନ ଜନ୍ମ କରାଯାଉ ।

●

# ॥ ରାଗ ଚୋଖୀ ॥

**ଅଧ୍ୟାପକ ଶ୍ରୀ ଧୂନଚରଣ ଖୁଣ୍ଟିଆ**

ମଙ୍ଗଲେ ଅଭିନ୍ନ ଭୂଷା   ବିକଚ ଆଦମ ତୃଷା
ରସିକା ପରଶ ଆଶା ହୃଦୟେ ବନ୍ଧି
ଅଙ୍ଗେ ଭରି ଭାବ ରାଶି   ନେଲା ସବ ମନ ଶୋଷି
କି ଗାଉଁଲି କି ସହରୀ ଅନ୍ତର ଦହି ।
ନବ୍ୟ ଯୁଅ ଉଠଇ ଚେଇଁ
ଘୁମ ଆରବେ ସିନେମା-ଭୃଗୁରୁ ଡେଇଁ । ୧ ।

ହେ ପୂଜ୍ୟ ଚପା ପୋଷାକ   କେତେ ରସିକା ରସିକ
ହୋଇ ତୁମର ଗ୍ରାହକ ଚଢ଼ାନ୍ତି ଦର
ଚୁଟାଇ ଲାଜ ବିବେକ   ଉଠାଇ ତୁମର ଟେକ
ଦେଖାନ୍ତି ବାହାରେ ଭେକ ରସ ବେଭାର
ବେଶ ହୋଇ ଖେଳନ୍ତି ଗେଲ
ପେଟରେ କିଛି ନଥାଉ ମୁଣ୍ଡରେ ତେଲ । ୨ ।

ବାପ ଆଗେ କେଉଁ ଝିଅ କହେ ମୋତେ ଡ୍ରେସ ଦିଅ
ପିନ୍ଧିବି ଯେପରି ସିନେମାର ନାୟିକା
ପ୍ରେମିକ ଆଗେ ପ୍ରେମିକା   ଦେଖାଇ ତା ଅନ୍ତମିକା
ବୋଲେ କମିତି ଦିଶୁଛି ମୋ ଉର ଏକା
ଧନ୍ୟ ତୁମ ପୋଷାକ ଟାଣ
ସେ ପୋଷାକେ ଅଛି ଏତେ ଅନଙ୍ଗ ବାଣ । ୩ ।

କେଉଁ ପ୍ରବୀଣ ଶିକ୍ଷକ   ନିଜକୁ କହଇ ଧିକ
ଛାତ୍ର ଛାତ୍ରୀଙ୍କ ପୋଷାକ ଦେହର ଚୋରା
ଭିତରେ ତ ଅଛି ଯାହା   ବାହାରେ ଫୁଟିଛି ତାହା
କେବଳ କଳାପଟାରେ ମନ ତାଙ୍କର
ଅନାଇଁଲେ ଶ୍ରେଣୀ କକ୍ଷକୁ
କେଉଁ ଛାତ୍ରୀ ଟେରଛେଇଁ ଫୁଲାଇ ବୁକୁ । ୪ ।

ବିଦ୍ୟାଳୟେ ଦେବାଳୟେ   ନିଳୟେ ବା ପ୍ରେକ୍ଷାଳୟେ
ଚପା ପୋଷାକ ବଳୟେ ସର୍ବେ ବନ୍ଦୀ
କେଉଁ ଯୁବକ ଗାଡ଼ିରେ   ଆହା ନପାରେ ଚଢ଼ିରେ
କେ ଜନନୀ କ୍ଷୀର ଦାନେ ହେଉଛି ଛନ୍ଦ,
ସନ୍ତାନର ଭୋକିଲା ଆଖି
ସଙ୍ଗେ କେତେ ଆଖି ସତେ ରହିଛି ଲାଖି । ୫ ।

ଖଡ଼ୁ ଚୁଡ଼ି ନାକ ଚଣା   କଣ୍ଟଫଳ ନୋଥ ଗୁଣା
ହୋଇଲେଣି ବାଟବଣା ଏ ବେଶ ଦେଖି
କଙ୍କଣ କଣ୍ଠୀ ମେଖଳା   ବାଜୁବନ୍ଧ ମଣିମାଳା
ପାଉଁଜ ପାଦର ବଳା ଗଲେଣି ଶୁଖି
ହାତଘରା କି ଯୁଗ ହେଲା
ଦେହଠାରୁ ମୋଟେ ଶ୍ରେଷ୍ଠ ପୋଷାକ ଭଲା । ୬ ।

ହେ ଚପା ତୁମକୁ ଧନ୍ୟ-   ବାଦ ଦେବାକୁ ମୋ ମନ
ହୁଏ କାହିଁ କନ କନ ନପାରେ ଜାଣି
ମୋ ମନ ଅନ୍ଧକନ୍ଧରେ   ପକାନ୍ତି ତୋତେ ବାନ୍ଧିରେ
ପୁଣି ଆଦମ ଯୁଗ କି ବହେ ଉଜାଣି ?
ତୁମ ପଦେ କୋଟି ମିନତି
ଏ ଅଧମ ରସିକର ଘେନ ପ୍ରଣତି । ୭ ।



# ॥ ବିବାହ ବିଭ୍ରାଟ ॥

ନୀଳକଣ୍ଠ ଭୃଗୁଶାସ୍ତ୍ରୀ

ଶନିବାରିଆ, ରବିବାରିଆ, ମଙ୍ଗଳବାରିଆ ଏପରି ଅନେକ ପରିଷଦ ରହିଛି । କିନ୍ତୁ ମୁଁ ଶୁକ୍ରବାରିଆ ପରିଷଦ କଥା କହୁଛି । ଏମାନେ ଟିକିଏ କଣ୍ଠ ବେଗାର୍ତ୍ତାନ୍ତ । କାରଣ ଶୁକ୍ରେଣ କଣ୍ଠ ଉତ୍ପନ୍ନ । ପିଲାଏ ଗୀତ ବୋଲନ୍ତି :—

ଶୁକ୍ରବାର ଉପର ବେଳା ।
କଣ୍ଠ ଅନୁକୂଳ ହେଲା ।

ତେବେ ଯାହାହେଉ ଦଣ୍ଡିକର—ଆଇଗିଣିଆ ପରିଷଦର ଜଣେ ମୁଖ୍ୟ କର୍ଣ୍ଣଧାର ବିଭ୍ରାଟ ଲେଖି ତହଲ ପକାଇ ଦେଇଥିଲେ । ମୁଁ ବା କଣ ଲେଖିବି ? କାଳି କଲମଙ୍କ ସହ ମୋର ଷଷ୍ଠାଷ୍ଟକ । କାଗଜ ତ ଯେଉଁ ମହର୍ଘ ହେଉଛନ୍ତି । ସେ ବା କିପରି ରାଜଯୋଟକ ହେବ ? ଏଣୁ ମୁଣ୍ଡର ଉକୁଣି ଗଣି ଗଣି ଦିନ ନେବା କଥା । ସୌଭାଗ୍ୟକୁ ଯଦି ଓଡ଼ିଶାର ସହୋଦରୀ ଆସି ପହଞ୍ଚିଯାନ୍ତି । ତାହେଲେ ତ ଚିନ୍ତା ନାହିଁ ରାତି ୧ । ୨ । ୩ ଗଣି ଗଣି ପାହିଯିବ ।

ଆପଣ ମୋ କଥାରେ ହସିବେନି । ମୁଁ ଯାହା କହୁଛି ନିରାଟ ସତକଥା । ମୁଁ ଜଣେ ନୀରବ ଦର୍ଶକ ମାତ୍ର । ମାତ୍ର ଏଇ କେତେଦିନ ହେଲା, ଆଇଗିଣିଆ ପରିଷଦର ଭାଉ ଦେଖୁଛି । ଝିଁକାରି ଝିଁ ଝିଁ ହେଲା ଭଳି ସେମାନେ ଉଡ଼ି ବୁଲିଲେଣି । ବାବା ସଦାନନ୍ଦ ତାଙ୍କ କୋଷରେ ଆଶ୍ରୟ ଦେଲେ । କିନ୍ତୁ ଏ ତେଜ ଏତେ ପ୍ରବଳ ହେଲାଣି ଯେ ସବୁ ଜଳିଯିବା ଉପରେ । ଏମିତିକି ଏ ଆଇଗିଣିଆ ପରିଷଦର ମାନ୍ୟବର ସଭ୍ୟ ମଧ୍ୟ ଜଳିଯିବେ । ଘର ଉପରେ ଏ ନିଆଁ ମଧ୍ୟ ଧରାଇ ଯାଇ ପଡ଼ିବ । ଆଜି ଧରିଲା ପୁଅକୁ ତ କାଲି ଝିଅକୁ ପରଦିନ ସ୍ତ୍ରୀକୁ । ଏଣୁ ସାଧୁ ସାବଧାନ । ଆଇଗିଣିଆ ସମ୍ପାଦକ କର୍ଣ୍ଣଧାର ପ୍ରତିଷ୍ଠାତା ମହୋଦୟ ଏ କିଙ୍କରର ବିନୟ ଅନୁନୟ କର୍ଣ୍ଣଗୋଚର ହେଉ ।

ଏ ଲୋକେ ଆଖିରେ ସିନା ରଂଗୀନ ନିଶା ଲାଗିଛି ମୁହଁରେ ଅଜାଡ଼ି ନିଶା ଲାଗିଛି । କିନ୍ତୁ ଦିନ ଆସିବ ଗୋଡ଼ ଚଡ଼ ଚଡ଼ ହୋଇ ଫାଟିଯିବ । ଆଖିକୁ ଜାଳୁଜାଳୁଆ ଦିଶିବ । ସେତେବେଳେ ପୁଅ କଣ କଲା ଝିଅ କଣ କଲା ଦେଖିବାକୁ ବେଳ ନ ଥିବ । ଏଣୁ ବନ୍ଧୁ ଏତିକିବେଳୁ ବୁଜୁଳା ବାନ୍ଧିଥାନ୍ତୁ । ଏତେ ଗୁଡ଼ାଏ କଥା କହିଲିଣି ବୋଲି ଆପଣମାନେ ମୋ ଉପରେ ରକ୍ତ ଚକ୍ଷୁ ଦେଖାଇବେଣି, ତେଣୁ କିଛି ଏ ବିଷୟରେ ଉପାୟ ବତାଇ ଦେବା । ଏ ଯେଉଁ ବାହାଘର ବଜାର । ପଜ ପତ୍ର ଘଟସ୍ଥାପନ କଂସାମାଳ ଯାହା କହନ୍ତୁ । ଆଜି ବାହାଘର ହେଉଛି ତ ଦୁଇ ମାସ ପରେ ଛାଡ଼ପତ୍ର ବା ମନୋମାଳିନ୍ୟ ଏ ଗୋଟାଏ ଗୁଳରେ ପରିଣତ ହେଲାଣି । ଏକଥା କାହିଁକି ହେଉଛି ଶିବଚନ୍ଦ୍ର ଟିକିଏ ମୁଣ୍ଡ ଖେଳାନ୍ତୁ । ଯେଉଁଦିନ ଡକ୍ଟର ଭାର୍ଗବ ଆମେରିକାରୁ ଆସି ବାହାହେଲେ ଅଧ୍ୟାପିକା ସୁମିତା ମହାନ୍ତିଙ୍କୁ । କିନ୍ତୁ ମାତ୍ର ୨ । ୩ ମାସପରେ ଦୁହେଁ ଅଲଗା ଅଲଗା । ଜଣେ ସମ୍ବଲପୁରରେ ବାପ ଘରେ ତ ଆଉ ଜଣେ ଭୁବନେଶ୍ୱରରେ । ତାର କାରଣ କେଉଁଠି ବନ୍ଧୁମାନେ—ଠିକ୍ କଲେ ମିସେସ ଅଧ୍ୟାପିକା ବାଲ୍‌ଡାନ୍‌ସ ଜାଣନ୍ତିନି । ସେ କେଉଁଠି ସେଇ ପୁରୁଣା କାଳିଆ ତୁଳସୀ ଚଉଁରାମୂଳ ଭକ୍ତ । ଏସବୁ ଡକ୍ଟରଙ୍କ ଆଖିରେ ଚଳନାହିଁ । ତେବେ ଆମେ ବେଶ୍ ଠଉରାଇଛୁ । ଡକ୍ଟର ଭାର୍ଗବ୍ ଟିକିଏ ମଡ଼ର୍ନିଆ ଲୋକ । ହଁ । ବଡ଼ା ଲୋକ । ତାଙ୍କୁ ଯଦି

ହୁଁ ହାଁ କରି ପାଲଗଦା ଉପରକୁ ଟେକି ଦେବ ତୁମେ ସୁ କଳଖିଆ ଖାଇ ଖାଇ ତୁମର ଡାଇରିଆ ହୋଇଯିବ । ମିସେସ୍ ଅଧ୍ୟାପିକା ଟିକିଏ ଧନୀ ଘରର ପିଲା । ଏଣେ ଦର୍ଶନ ବିଭାଗର ଅଧ୍ୟାପିକା । ତେଣୁ ସେ କହନ୍ତି ମୁଁ କାହିଁକି ଗ୍ରେଟ ହେବି ? ଆରେ ମାରଣା ବୁଲି ବୁଲି କରି ସେଇ ଅଗଣା । ଯାହାହେଉ ପଛେ ଯଦି ପରସ୍ପର ମଧ୍ୟରେ ଭଲ ବୁଝାମଣା ନ ରହିବ ସେ ଘର ସୁନା ହୋଇଥିଲେ ବି ଚୂଡ଼ା ହୋଇଯିବ । ଖାଲି ଟିକିଏ ନରମି ଯାଇଥିଲେ ଡକ୍ଟର ଭାର୍ଗବଙ୍କଠାରୁ ବହୁତ ସାହାଯ୍ୟ ସହଯୋଗ ମିଳିବା ସଂଗେ ସଂଗେ ଡକ୍ଟର ଭାର୍ଗବଙ୍କୁ ବୁଝାଇ ସୁଝାଇ ବଦଳାଇ ବି ହୋଇଥାନ୍ତା । କିନ୍ତୁ ଅରଣ୍ୟ ରୋଦନ ସାର ହେଲା । ଏ ବିଗରେ ଜ୍ୟୋତିଷୀର ଟିକିଏ ହାତ ଅଛି । ସେଠାରେ ମନସ୍ତତ୍ତ୍ୱବିଦ୍ ରୂପେ ଗଣ୍ୟ ।

ଲେଫ୍‌ଟେନାଣ୍ଟ ସ୍ୱାମୀନାଥନଙ୍କ କଥା ଶୁଣନ୍ତୁ । ତାଙ୍କର ସ୍ତ୍ରୀଟି କେଉଁଠି ଗୋଟିଏ ମଫସଲ ଝିଅ । ଲେଃ ସ୍ୱାମୀନାଥନ ମଧ୍ୟ ଖୋଦ୍ ପଲ୍ଲୀମାଳର ଲୋକ । କିନ୍ତୁ ଏବେ କେତେବର୍ଷ ହେଲା ସହରୀ ପାଲଟି ଯାଇଛନ୍ତି । ଅସଲ କଥା ସେଇଠି ନୁହେଁ । ଲେଃ ସ୍ୱାମୀନାଥନ ଲୋକଟି ଦେଖିବାକୁ ସାଦାସିଧା । ମୁଣ୍ଡରୁ ଅଳ୍ପ ଚନ୍ଦା ହେଇ ଖଦଡ଼ର ଚଷ୍ମା ମଦା ମଦା ଭଳି ଦେଖାଯାଉଛି । ହେଲେ ଭାରି ମେଳାପି ଲୋକ । କିନ୍ତୁ ମିସେସ୍ ଭୈରବୀ ଦେବୀ ଟିକିଏ ଚୁଗୁଲି ମୁଗୁଲି ଲୋକ । ବାପ୍ ଘରର ଜଣଙ୍କ କଥା ଏପଟ ସେପଟ ନ କଲେ ତାଙ୍କର ଘାତ ଶାନ୍ତି ହେବନାହିଁ । ଲେଃ ସ୍ୱାମୀନାଥନ ନାଁ'ଟା ସିନା ଭୟଙ୍କର; କିନ୍ତୁ ଭାରି ଶାନ୍ତିପ୍ରିୟ ଲୋକ । ତାଙ୍କର ସ୍ତ୍ରୀ ମନରକୁ ସ୍ତ୍ରୀ ହେଉଛନ୍ତି ସିଂହୀ । ତେଣୁ ପଡ଼ୁଛନ୍ତି କେତେବେଳେ । ମିସେସ୍ ଭୈରବୀ ଦେବୀ ସ୍ୱାମୀ ତାଙ୍କ ଘର ଧନରତ୍ନର ଭଣ୍ଡାର ଆଉ ବନ୍ଧୁ-ମାନଙ୍କ ଚହଳରେ ଘର ସଦାସର୍ବଦା ମୁଖରିତ ହେଉ । ପଡ଼ୋଶୀ ଘର ସ୍ତ୍ରୀ ଲୋକମାନେ ଅଧିକାଂଶ କନର୍ସ ହାତପତ୍ରା କରି ସେଇଠୁ ଚାଲିଯାନ୍ତି ।

ପ୍ରଫେସର ଉଗ୍ରସେନ ସେଦିନ ବାଟରେ ଦେଖା-ହେଲେ । ସେ କହିଲେ ମୁଁ ନୃତତ୍ତ୍ୱ ବିଭାଗରେ ଗବେଷଣା କରିବାକୁ ଇଚ୍ଛା କରିଥିଲି, କିନ୍ତୁ ମୋ ସ୍ତ୍ରୀଙ୍କର ନୃତ୍ୟ ଲିପ୍‌ସା ଯୋଗୁଁ ମୁଁ ତାଙ୍କ ସଂଗରେ ଧରି ନୃତତ୍ତ୍ୱରୁ ନୃତ୍ୟକୁ ଖସି ଆସିଛି । ଏ ଅମେଳ କାହିଁକି ? ଏ ପ୍ରକାର ବହୁତ ଅମେଳ ଘଟୁଅଛି । ତାର ହିସାବ ନିକାଶ କରିବାର କାଠିକର ପାଠ । ତେବେ ଆମେ ଠିକେ ଠିକେ କେତୁଟା କଥା ଆପଣଙ୍କୁ କହାଇ ଦେବୁ । ଏ ଜଡ଼ ବୁଦ୍ଧିପର କାମଦେବ ଆଜ୍ଞା, ଟିକେ ମନ ଦେଇ ଶୁଣନ୍ତୁ ।

ଲେଫ୍‌ଟେନାଣ୍ଟ ସ୍ୱାମୀନାଥନଙ୍କ କଥା ତ କହିଛୁ ! ଉଭୟଙ୍କ ଜନ୍ମମାସ ଷଡ଼ାଷ୍ଟକ ହେଉ ସେମାନଙ୍କ ଭିତରେ ବିମଳ ପ୍ରେମ ରହି ପାରିଲା ନାହିଁ । ଯଦି ଲେଃ ସ୍ୱାମୀନାଥନଙ୍କ ଭାଗ୍ୟରେ ଆଷାଢ଼ ମାସର ଗୋଟିଏ ପାର୍ଶ୍ୱୀ ଯୁଟିଥାନ୍ତା ତାହେଲେ ଏକ ସୁଯୋଗ୍ୟ ମିଳନ ଘଟିଥାନ୍ତା । ସେପରି ଜ୍ୟେଷ୍ଠ ମାସ ଜାତକା, ଆଶ୍ୱିନ ଜାତକାମାନେ ତାଙ୍କ ଜୀବନରେ ଶାନ୍ତି ଆଣି ପାରି-ଥାନ୍ତେ ।

ଏଥିକୁ ଉପାୟ ସେବାକାର୍ପଣ୍ୟ ଦାନ ।

ସେହିପରି ଡକ୍ଟର ଉଗ୍ରସେନଙ୍କ ଜନ୍ମ ହେଉଛି ପୌଷ ମାସରେ ଆଉ ତାଙ୍କ ସ୍ତ୍ରୀଙ୍କର ଜନ୍ମ ହେଉଛି ଜ୍ୟେଷ୍ଠ ମାସରେ । ଏ ବି ସେହିପରି ଶତ୍ରୁତା ହେଲା । ଜଣେ ସଂଗୀତ ପାରଦର୍ଶୀ ଓ ଅପର ଜଣକ ଦାର୍ଶନିକ । ଯଦି ଡକ୍ଟର ଉଗ୍ରସେନ ବାଛି ବାଛି ଗୋଟିଏ ପାର୍ଶ୍ୱୀ ତାଙ୍କ ସ୍ୱଭାବକୁ ଚାହିଁ ନିର୍ବାଚନ କରିଥାନ୍ତେ । ତାହେଲେ ତାଙ୍କର ନୃତତ୍ତ୍ୱ ଗବେଷଣା ଅଟକି ନ ଥାନ୍ତା । ଅଧିକନ୍ତୁ ଗବେଷଣାରେ ତାଙ୍କୁ ସାହାଯ୍ୟ କରିଥାନ୍ତେ ।

କିନ୍ତୁ ସ୍ୱଭାବ ପାଇଁ କିଏ କଣ କା ପେଟ ଭିତରେ ପଶିଛି ଆଜ୍ଞା । ଦେଖିବେ ଅନେକ ଲୋକଙ୍କ ମୁହଁରେ ମିଠା ଗୁଲୁଗୁଲିଆ ହସ ଆଉ ପେଟରେ ଛୁରୀ । ତାଙ୍କୁ ଜୁହାର ଆଜ୍ଞା ଜୁହାର । ଆଉ ଦେଖିବେ କେତେ ଲୋକ ଅଧିକାଂଶ ସମୟରେ ହାଣ୍ଡିଭଳି ମୁହଁ କରିଥିବେ । କିନ୍ତୁ ସେମାନେ ଭାରି ଉଦାର । ଯେ

କୌଣସି ବିଷୟ କହନ୍ତୁ ସେମାନେ ସାହାଯ୍ୟ କରିବେ । କିନ୍ତୁ ଖିଲ ହସବାଲାମାନେ ହୁଁ ହୁଁ । କରି ଦିନ ବିତାଇ ଦେବେ । ଦେଖାହେଲେ ମୁହଁରେ ସେଇ ଖିଲ ହସ । ଏହାର କାରଣ କଣ । ଆପଣଙ୍କୁ ତାଙ୍କୁ ଭଲ ପଡ଼ୁନି ବୋଧହୁଏ । ଆମେ ତା'ର ହିସାବ ରଖିଛୁ । ଯଦି ଡ଼ଃ ଉଗ୍ରସେନଙ୍କ ଜୀବନ ସଂଗିନୀ ଫାଲଗୁନ କି ବୈଶାଖ କିମ୍ବା ଭାଦ୍ରବ ମାସରୁ ହୋଇଥାନ୍ତେ ତେବେ ବେଶ ଯୋଡ଼ ମିଳିଯାଇ ଥାନ୍ତା । କିନ୍ତୁ କପାଳକୁ କରମଙ୍ଗା ଫଳିଲା । ଏଣୁ ସାଧୁ ସାବଧାନ । ବିବାହ ବେଦୀ ଉପରକୁ ଆଗେଇବା ପୂର୍ବରୁ ଏ କଥା ଟିକିଏ ବିଚାର କରନ୍ତୁ ।

ସେହିପରି ଡକ୍ଟର ଭାର୍ଗବ ଅଧ୍ୟାପିକା ସୁମିତା ମହାନ୍ତିଙ୍କ କଥା ବିଚାର କରନ୍ତୁ । ଡକ୍ଟର ଭାର୍ଗବ ଆଷାଢ଼ ମାସର ଲୋକ ଆଉ ମିସେସ୍ ମହାନ୍ତି ମାର୍ଗଶୀର ମାସର କନ୍ୟା । ଏଣୁ ପ୍ରଣୟ ବିଚ୍ଛେଦ । ତେବେ ବି ଆଶା ଅଛି । ଯଦି ମିସେସ୍ ମହାନ୍ତି ଟିକିଏ ଧ୍ୟାନ ଦିଅନ୍ତି । ଅଳ୍ପକେ ଡକ୍‌ଟର ଭାର୍ଗବ ଆସିଯିବେ । ସେଥିଲାଗି ଡକ୍‌ଟର ଭାର୍ଗବଙ୍କର ମାନସିକ ସାନ୍ତ୍ୱନା ଲୋଡ଼ା । ଏହାର ଉପାୟ ପରବର୍ତ୍ତୀ ସଂଖ୍ୟାରେ ବତାଇ ଦେବୁ ।

**Astrology is a Science of Tendency**

ଏଣୁ ଲୋକର ବା ସମୟର ହାବଭାବ ସମ୍ବନ୍ଧରେ ସେ କେବଳ ଜଣାଇଦେବ ମାତ୍ର । ଆପଣ ତାର ସୂତ୍ର ଅନୁସାରେ ନିଜକୁ ପ୍ରସ୍ତୁତ ରଖି ପାରିଲେ ଅପଦସ୍ତ ହେବାର ସମ୍ଭାବନା ରହିବ ନାହିଁ ।

ଆମର ପ୍ରଥମ ପ୍ରଶ୍ନ ହେଉଛି ଆପଣ ବିବାହିତ ନା-ଅବିବାହିତ ? ଯାହାହେଉ ସେଥିରେ ଆମର ଯାଏ ଆସେ କେତେ ? କେବଳ ଆମେ ପୂର୍ବାଚାର୍ଯ୍ୟଙ୍କର ପାଦ ଚିହ୍ନକୁ ଉଣ୍ଡି ଉଣ୍ଡି କିଛି ଗୋଟାଏ ସୂତ୍ର ବାହାର କରିଛୁ । ଆପଣ ଶୁଣିଲେ ହେଲା । ହେଇ ଦେଖନ୍ତୁ ଯଦି ବାହାଘର ହୋଇ ନଥାଏ ତେବେ ଦେଖନ୍ତୁ । ଆପଣ କେଉଁ ମାସରେ ଜନ୍ମ, ଏଟା ତ ନିଶ୍ଚୟ ଜାଣିଥିବେ । ମା'ତ ଆପଣଙ୍କର ଜନ୍ମତିଥି ପାଳନା କରୁଥିବେ । ସେହି ଅନୁସାରେ ଆପଣଙ୍କ ଜୀବନ ସଂଗିନୀ ବାଛିବାକୁ ହେବ ।

ଆପଣ କହିବେ ଏ ଗୋଟାଏ କଣ ମାସ ଫାସ କହିଲଣି ହୋ । ଏଟା ଗୋଟାଏ ପାଗଳ । ହେଉ ଯାହା କହନ୍ତୁ । କିନ୍ତୁ ମାସକୁ ଧରି ଚାଲିବାକୁ ହେବ । ମକର ସଂକ୍ରାନ୍ତି ବା ମକର ମାସରେ କେବଳ ମକର ଗୁଡ଼ଲ ଖାଇ ଜୀର୍ଣ୍ଣଯିବ । ପୁଣି ଦେଖନ୍ତୁ ଜଣେ ଲୋକଙ୍କୁ ଆପଣ ଅଫୁରନ୍ତ ଭାବେ ଭଲ ପାଉଛନ୍ତି; କିନ୍ତୁ ସେ ଆପଣଙ୍କ ପ୍ରତି ଅସୂୟା ପ୍ରଦର୍ଶନ କରୁଛନ୍ତି । କାହିଁକି ? ଏଇ କାହିଁକିରୁ ସବୁ ବାହାରିବ । ମାଆ ତାର ସବୁ ପିଲାଙ୍କୁ କି ସମାନ ଦୃଷ୍ଟିରେ ପାଳନ କରିପାରେ ନାହିଁ । ଗୋଟିଏ ପୁଅ ଉପରେ ତାର ଅଧିକ ସ୍ନେହ ଥାଏ । ଅନେକ ପ୍ରଶ୍ନ ଉଠାଇବେ ମା'ର ସାନ ପୁଅ ପ୍ରତି ସ୍ନେହ ଅଧିକ ଦେଖାଇବା ସ୍ୱାଭାବିକ । ନା ତା ନୁହେଁ । ଅନେକ ସ୍ଥଳରେ ମଝିଆଁ ପୁଅ ପ୍ରତି ମାଆ ଅଧିକ ସ୍ନେହ ଦେଖାଇଥାଏ । ତେବେ ଯାହାହେଉ ଆପଣ ବାଟକୁ ଆସିଲେ ତ ? ଜଣେ ଲୋକ ଆପଣଙ୍କର କାହିଁକି ଶତ୍ରୁ । ଆଉ ଜଣେ କାହିଁକି ମିତ୍ର ? ଏହାର ସମାଧାନ ଦେବେ କି ? ଅନେକ ସମୟରେ ଆପଣଙ୍କ ବ୍ୟବହାରରେ କିଛି ମାତ୍ର ତ୍ରୁଟି ନ ଥିଲେ ମଧ୍ୟ ଆଉ ଜଣେ କାହିଁକି ଶତ୍ରୁ ପାଲଟି ଯାଉଛି ?

ପାଠକେ ଆପଣ ଅବଧାନ କରିବେ କି ? ଏ ଯୋଗସୂତ୍ର ଭାଗ୍ୟସୂତ୍ର ଆଜ୍ଞା । ଏ ବାରବୁଲା ପକ୍ଷୀ ଶୁଣିଛୁ ପୂର୍ବଜନ୍ମର ଶତ୍ରୁମାନେ, ପୂର୍ବଜନ୍ମର ମିତ୍ରମାନେ ପୁତ୍ର ଭାର୍ଯ୍ୟା ଇତ୍ୟାଦି ରୂପରେ ଆସି ତାଙ୍କର ଓଉମାନ ମେଣ୍ଟାନ୍ତି । ଆପଣଙ୍କ ଭାଗ୍ୟକୁ କିଏ ପଢ଼ିଛି ବା କିଏ କହିବ ? ଆଇଟିଣିଅର ସଭ୍ୟମାନେ ସାଧୁ ସାବଧାନ । ପୁରାଣ ଆରମ୍ଭ ହେଲା—

ଏଥୁପର ରାଶିଚକ୍ର ମାହଲା ପାଞ୍ଜି ପ୍ରାରମ୍ଭ

ପ୍ରଥମ ଅଧ୍ୟାୟ

ମେଷୋବାଚ—ଏମାନଙ୍କର ଜନ୍ମ ସୂର୍ଯ୍ୟ ମେଷ ରାଶିରେ ଥିବା ସମୟରେ । ଅପ୍ରେଲ ୧୩ ଠାରୁ ମଇ

୧୩ ସାଧାରଣତଃ ମେଷ ବା ବୈଶାଖ ସଂକ୍ରାନ୍ତି ସମୟ । ଆମ ହିନ୍ଦୁ ମତରେ ସଂକ୍ରାନ୍ତି ଠାରୁ ଧରନ୍ତୁ । ଏମାନେ ବୀର ଶୂର ଅହଂଭାବ ବିଶିଷ୍ଟ । ଏମାନେ ହେଲେ ବୈଶାଖମାସ ଜାତ । ତତ୍ପରେ ବୃଷ ଜ୍ୟେଷ୍ଠ ମାସ ଜାତ ଏପରି ଧରିବାକୁ ହେବ । ଅଧୈର୍ଯ୍ୟ ହଅନ୍ତୁନ ଆଜ୍ଞା । ଆପଣଙ୍କ ଲାଗି ମନଲାଖି ପ୍ରିୟ ବା ପ୍ରିୟାର ଯୋଗାଡ଼ରେ ଆମେ ବାହାରିଛୁ । ଯଦି ଆପଣ ବାଟ ଓଗାଳିବେ ଆମେ ନାଚାର । ଏଇ ବୈଶାଖ ଜାତ ଲୋକଙ୍କ ସହିତ ଭାଦ୍ରବ ପୌଷ ମାସ ଜାତ ଲୋକଙ୍କର ମନ ମିଳେ । ବଡ଼ ଶତ୍ରୁ ହେଉଛନ୍ତି ମାଘ ମାସର ଲୋକେ । ତେବେ ପରୀକ୍ଷା କରି ଦେଖନ୍ତୁ । ଅବଶ୍ୟ ମାସର ପ୍ରଥମ ସପ୍ତାହ ଉପରେ ପୂର୍ବମାସର ପ୍ରଭାବ ଓ ମାସର ଶେଷ ସପ୍ତାହ ଉପରେ ଆଗାମୀ ମାସର ପ୍ରଭାବ ପଡ଼େ । ବର୍ତ୍ତମାନ ମେଷବାଲଙ୍କର ଅର୍ଥାତ୍ ବୈଶାଖ ମାସ ଜାତ ଲୋକଙ୍କର ଆକର୍ଷଣୀୟ ବ୍ୟବସାୟ କଣ, ରୁଚିକର ଖାଦ୍ୟ କଣ ? ଏ ବିଷୟରେ ଟିକିଏ ଆଭାସ ଦେବା । ଏମାନେ ଗରମ ଚଟକା ମସଲା ତେଲଯୁକ୍ତ ଖାଦ୍ୟକୁ ଭଲ ପାନ୍ତି । ତେଣୁ ଜଣେ ସୁଗୃହିଣୀ ହେବାକୁ ଯଦି କୌଣସି ପାଠିକା ଚାହାନ୍ତି ତେବେ ସର୍ବପ୍ରଥମେ ଏଥିକୁ ଧ୍ୟାନ ଦିଅନ୍ତୁ । ତତ୍ପରେ ସେ ଚାହାନ୍ତି ତାଙ୍କ ସ୍ତ୍ରୀ ସବୁଠାରୁ ସୁନ୍ଦରୀ ହେଉ ଏବଂ ସେ ତାଙ୍କର ଇଚ୍ଛା ଅନୁସାରେ ବେଶ ଗ୍ରହଣ କରୁ । ଅଧିକ ସୁନ୍ଦରୀ ନ ହେଲେ ଚଳିଯିବ । ମାତ୍ର ବେଶ ବାସ ତାଙ୍କ ମନ ଅନୁଯାୟୀ କରିବାକୁ ହେବ । ଗାଢ଼ ନାଲି ରଙ୍ଗ ତାଙ୍କ ଆଖିରେ ଖୁବ୍ ଭଲ ।

ସେ ଯଦି ଆପଣଙ୍କର ସ୍ତ୍ରୀ ତା ହେଲେ ଦେଖନ୍ତୁ ତାଙ୍କ ମନର ଅବସ୍ଥା ବୁଝିବାକୁ ହେବ । କେବଳ ଦେଖି ଖାଲି ଗୋଟାଏ ରକ୍ତ ଗୋଲାପ ଉପହାର ଦେଲେ ସେ ସନ୍ତୁଷ୍ଟ ହୋଇଯିବେ । କିନ୍ତୁ ଆପଣଙ୍କୁ କଥାଟା ଭୁଞ୍ଜାଇବାକୁ ପଡ଼ିବ ।

ଏମାନେ ଚାହାନ୍ତି କର୍ମଶୀଳା ରହିବାକୁ । ଏଣୁ ଘରର ଗୃହକର୍ମଣୀଙ୍କୁ ସେ ଖଟାଇବାକୁ ଚାହିଁବେ । ଆପଣ ବାଧା ଦେବେ ନାହିଁ । ସେ ନିଜେ ମଧ୍ୟ ଖଟିବେ । ତାଙ୍କର ପ୍ରଦର ଇତ୍ୟାଦି ରୋଗ ହେଲେ ହେଳା ନ କରି ସଙ୍ଗେ ସଙ୍ଗେ ଚିକିତ୍ସା କରାଇବେ । ସେ ରଗିଡ଼ ଯାଇଥିଲାବେଳେ କିଛି ନ କହି କିଛି ସମୟ ଦୂରକୁ ଚାଲିଯିବେ । କ୍ରୁଦ୍ଧ ଫିଟିଲେ ଝିମିଟିରୁ ମହାଭାରତ ଜାତ ହେବ । ଘରକରଣା କରିବାରେ ତାଙ୍କର ଆଗ୍ରହ । ନାଲି ଓ ଗୋଲାପୀ ରଙ୍ଗର ଲୁଗାରେ ଶ୍ରଦ୍ଧା । ହେଉ ଏଇଠି ଥାଉ । ଅନ୍ୟ ଅଧ୍ୟାୟରେ ବୃଷ ବା ଜ୍ୟେଷ୍ଠ ମାସ ଲୋକଙ୍କ କଥା କହିବା ।

ଇତିଶ୍ରୀ ଖଟାଙ୍ଗ ପୁରାଣେ, ବୈଶାଖ ମାସ ଜାତକ ବର୍ଣ୍ଣନେ ନାମେ ୧ମୋଽଧ୍ୟାୟ ସମ୍ପୂର୍ଣ୍ଣ ।

—କ୍ରମଶ—



# ॥ ପାଗଳା ଗାରଦ ॥

ଶ୍ରୀ ଯତୀନ୍ଦ୍ର କୁମାର ମହାପାତ୍ର

ପାଗଳ ଅନେକ ପ୍ରକାରର ଥାଆନ୍ତି; ସିଆଣା ପାଗଳ, ପ୍ରେମ ପାଗଳ, ଜ୍ଞାନ ପାଗଳ—ଏହିପରି ବିଶ୍ଳେଷଣ କଲେ ଆହୁରି ଅନେକ ପ୍ରକାର ମଧ୍ୟ ବାହାରିବେ । କିନ୍ତୁ ମୁଁ ଉପରୋକ୍ତ କୌଣସି ପ୍ରକାରର ମଧ୍ୟ ଅନ୍ତର୍ଭୁକ୍ତ ନୁହେଁ । ପିଲାଦିନୁ ମୋର ବାପା ମା' ଭାଇ ଭଉଣୀ ସମସ୍ତେ ମତେ ବୋକା ଅର୍ଥରେ ହୁଣ୍ଡା ବୋଲି କହି ଆସୁଛନ୍ତି, ତେଣୁ ମୁଁ ସିଆଣା ପାଗଳ ହେବାର ପ୍ରଶ୍ନ ଉଠୁନାହିଁ । ମୋ ଜୀବନରେ ମୁଁ କୌଣସି ଝିଅକୁ ପ୍ରେମ କରିବା ପାଇଁ ଯେଉଁ ମୌଳିକ ଶକ୍ତି ବା ମନୋବୃତ୍ତି ଦରକାର, ତାହା ମୋଠାରେ ନାହିଁ । ଏହାର ଉଦାହରଣ ହେଉଛି ଜୀବନରେ କେତେକ ଝିଅ ମତେ ମନେ ମନେ ପ୍ରେମ କରି ବସିଥିଲେ ମଧ୍ୟ ମୋର ସିଙ୍ଗି ସିଙ୍ଗା ପ୍ରକୃତି, ଖାପଛଡ଼ା ମନୋଭାବ ଲକ୍ଷ୍ୟ କରି ସେମାନେ ଆଉ ଅଗ୍ରସର ନହୋଇ ବରଂ ପୃଷ୍ଠ ପରିବର୍ତ୍ତନ କରିଛନ୍ତି । ଏପରିସ୍ଥଳେ ମୁଁ ପ୍ରେମ ପାଗଳ ବା ହେବି କିପରି ? ମତେ ଜ୍ଞାନ ପାଗଳ ବୋଲି କହିବାଟା ଏକ ହାସ୍ୟକର ବ୍ୟାପାର ଛଡ଼ା ଆଉ କିଛି ନୁହେଁ । ମୁଁ ଯଦି ଜ୍ଞାନୀ ହୋଇଥାନ୍ତି, ତେବେ ମୋର ଗାଁରେ ଜମିବାଡ଼ି ଥାଇ ମଧ୍ୟ ମୁଁ ପ୍ରବାସରେ ତୃତୀୟ ଶ୍ରେଣୀର ଗୋଲାମଗିରି କରି ପେଟ ପୋଷିବାକୁ ଯାଆନ୍ତି କାହିଁକି ?

ଏହା ସତ୍ତ୍ୱେ ମଧ୍ୟ ମୁଁ ପାଗଳ । ମୁଁ ପାଗଳ ନୁହେଁ ବୋଲି ଯେତେ ମନାକଲେ ମଧ୍ୟ ଆପଣ ଆଉ ପାଞ୍ଚ ଲୋକଙ୍କ କଥା ନ ଶୁଣି କଣ ମୋ କଥା ଶୁଣିବେ ? ଯଦି ଶୁଣିବା ପାଇଁ ଆପଣଙ୍କର ପ୍ରକୃତ ଆଗ୍ରହ ଥାଏ, ତେବେ ଶୁଣନ୍ତୁ—

ମୋର ପାଗଳାମୀର ଇତିବୃତ୍ତି ମୁଁ ଆରମ୍ଭ କରୁଛି ମୋର ଚାକିରୀ ଜୀବନରୁ । ପୂର୍ବରୁ ତ କହିଛି ମୋର ବାଲ୍ୟାବସ୍ଥାର କାର୍ଯ୍ୟକଳାପରୁ ମୋର ଆତ୍ମୀୟମାନେ ମତେ ହୁଣ୍ଡା ଆଉ ପାଗଳା ବୋଲି କହୁଥିଲେ । ଯେତେବେଳେ ମୁଁ ପାଠପଢ଼ା ସାରି ଚାକିରୀ କଲି, ମୋର ଆତ୍ମୀୟମାନେ ପରସ୍ପର ଆଲୋଚନା କଲେ, ପାଗଳାଟାଏ, ଚାକିରୀ ଖଣ୍ଡେ ପାଇଛି, ସବୁଦିନେ ରଖିପାରିବ କି ନାହିଁ କେଜାଣେ ।

ମୋର ଆତ୍ମୀୟମାନେ ଯାହା ଆଶଙ୍କା କରୁଥିଲେ ଶେଷକୁ ସେଇଆ ହେଲା ।

ମୋ ଜୀବନର ପ୍ରଥମ ଚାକିରୀ ହେଲା କଟକ ସହରରେ ଏକ ନାମଜାଦା ଛାପାଖାନାରେ ସହକାରୀ, ଅର୍ଥାତ୍ କିରାଣୀ କାମ । ଯାହାଙ୍କ ପାଖରେ ମୁଁ ସହକାରୀ କାର୍ଯ୍ୟ କରୁଥିଲି ସେ ମତେ ଏଇ ଚାକିରୀ ଖଣ୍ଡିକ ମିଳିବା ଦିଗରେ ବହୁତ ସାହାଯ୍ୟ କରିଥିଲେ । ସେଥିପାଇଁ ମୁଁ ମନେ ମନେ ତାଙ୍କ ପାଖରେ କୃତଜ୍ଞ ଥିଲି । ଏଇ ଋଣର ପରିଶୋଧ ପାଇଁ ମୁଁ ଖୁବ୍ ଯତ୍ନବାନ ଥିଲି । ତାଙ୍କୁ କୌଣସି କାର୍ଯ୍ୟ କରିବାକୁ ମୁଁ ଦିଏ ନାହିଁ । ମୋର ଅଫିସ୍‌ରେ ଯାହା ଦାୟିତ୍ୱ ତାହା ସବୁ କରି ତାଙ୍କ ପାଇଁ ଉଦ୍ଦିଷ୍ଟ କାମତକ ମଧ୍ୟ ମୁଁ ଅଯାଚିତ ଭାବରେ କରିଦିଏ । ଏହା ମୂଳରେ ମୋର କୌଣସି ପଦୋନ୍ନତିର ଅଭିଳାଷ ମଧ୍ୟ ନ ଥାଏ । ଖାଲି ତାଙ୍କୁ ସନ୍ତୁଷ୍ଟ କରି କୃତଜ୍ଞତା ଜ୍ଞାପନହିଁ ମୋର ଲକ୍ଷ୍ୟଥାଏ । ପ୍ରତ୍ୟେକ ଅଧିକାଂଶ ଦିନ ସେ ଖାଲି ଅଫିସକୁ ଆସି ଅଧଘଣ୍ଟା ଖଣ୍ଡେ ଆସନ ଅଳଙ୍କୃତ କରି ପ୍ରସ୍ଥାନ କରନ୍ତି । ଏହାଦ୍ୱାରା ମୁଁ ମନେ ମନେ ଆତ୍ମତୃପ୍ତି ଲାଭ କରେ । ମୋର ଅହେତୁକୀ ମନରେ ମୁଁ ତାଙ୍କଦ୍ୱାରା ପ୍ରଶଂସିତ ହେବାର ବାସନା ମଧ୍ୟ ପୋଷଣ କରେ । ତାଙ୍କଠାରୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କେବେ

କୌଣସି ପ୍ରଶଂସା ନ ଶୁଣିଲେ ମଧ୍ୟ ମୋର ଧାରଣା ଥାଏ, ତାଙ୍କର ମୋ ପ୍ରତି ମନୋଭାବ ନିଶ୍ଚୟ ଆଶାପ୍ରଦ ।

କିନ୍ତୁ କାଳକ୍ରମେ ମୋ କାର୍ଯ୍ୟରେ ତାଙ୍କର ପ୍ରକାଶ୍ୟ ବିରକ୍ତି ମୁଁ ଅନୁଭବ କଲି । ଏପରିକି ତାଙ୍କର ଯେଉଁ କାର୍ଯ୍ୟ କରିବାର କଥା ମୁଁ ତାହା କରିଥିବା ଭିତରେ କୌଣସି କ୍ଷୁଦ୍ର ବ୍ୟତିକ୍ରମ ଘଟିଥିଲେ ମଧ୍ୟ ସେ ମୋ ପ୍ରତି ବିରକ୍ତ ହୁଅନ୍ତି । ତାଙ୍କର କର୍ତ୍ତବ୍ୟ ପ୍ରତି ସେ ସଚେତନ ନ ହୋଇ ମୋ ଉପରେ ବିରକ୍ତ ହେବା ଅଯୌକ୍ତିକ ଏବଂ ମୁଁ ତାହା ପ୍ରକାଶ କରି ପାରିଲେ ସେ ନିଜର ଭ୍ରମ ବୁଝି ପାରନ୍ତେ—ଏକଥା ମୁଁ ଅନୁଭବ କଲେ ମଧ୍ୟ ମୋର ଉପକାର କରିଥିବା ହେତୁ ମୁଁ ଏଭଳି ଅପ୍ରିୟ ସତ୍ୟ ସ୍ୱଭାବ ସୁଲଭତା ହେତୁ ପ୍ରକାଶ ନ କରି ନୀରବ ରହେ । ସେ ମୋର ଏଇ ନୀରବତାରୁ କଣ ବୁଝନ୍ତି କେଜାଣି ମୋ ପ୍ରତି ବରଂ ଅଧିକରୁ ଅଧିକତର ଦୁର୍ବ୍ୟବହାର ପ୍ରଦର୍ଶନ କରନ୍ତି । ଏତେ ସତ୍ତ୍ୱେ ମଧ୍ୟ ମୁଁ ଅପ୍ରିୟ ସତ୍ୟ ପ୍ରକାଶ କରି ନପାରି ବାଧ୍ୟ ହୋଇ ମାତ୍ର ଛଅଟି ମାସପରେ ବ୍ୟାଙ୍କରୁ ଇସ୍ତଫା ଦେଇଦେଲି ।

ମୋର ଆତ୍ମୀୟମାନେ ପ୍ରଥମରୁ ଯାହା ଆଶଙ୍କା କରୁଥିଲେ ତାହା ସତ୍ୟରେ ପରିଣତ ହୋଇଗଲା । କିନ୍ତୁ ଆପଣ ବିଚାର କରନ୍ତୁ ତ, ମୋର ଉକ୍ତ ଉପରିସ୍ଥ କର୍ମଚାରୀ, ଆତ୍ମୀୟ ସ୍ୱଜନ, ଆଉ ମୁଁ ନିଜେ —ଏଇ ତିନି ପକ୍ଷଙ୍କ ମଧ୍ୟରୁ ପ୍ରକୃତରେ କିଏ ପାଗଳ !

ତା ପରେ ବ୍ୟାଙ୍କରୀ ଜୀବନର ଦ୍ୱିତୀୟ ପର୍ଯ୍ୟାୟକୁ ଆସନ୍ତୁ ।

ମୋ ବ୍ୟାଙ୍କରୀର ଦ୍ୱିତୀୟ ପର୍ଯ୍ୟାୟ ସେଇ କଟକ ସହରରେ । ପୂର୍ବଭଳି ଏକ ବ୍ୟାଙ୍କରୀ ।

ଏ ଅନୁଷ୍ଠାନର କର୍ମକର୍ତ୍ତାମାନେ ମୋ ପ୍ରତି ଭାରି ସଦୟ । ତା ନ ହୋଇଥିଲେ ଗୋଟାଏ ବ୍ୟାଙ୍କରୀ ଛାଡ଼ି ଛାଡ଼ି ମତେ ଆଉ ଗୋଟାଏ ବ୍ୟାଙ୍କରୀ ମିଳି ଯାଇଥାନ୍ତା !

କିନ୍ତୁ ମୋର ପାରିଶ୍ରମିକ ନେଇ ମୁଁ ସନ୍ତୁଷ୍ଟ ନ ଥିଲି । ମୋର କାର୍ଯ୍ୟ ନେଇ ଅନୁଷ୍ଠାନର କର୍ତ୍ତୃପକ୍ଷଙ୍କଠାରୁ ମୁଁ କେବେ କୌଣସି ନିନ୍ଦା ବା ନାପସନ୍ଦ ଶୁଣିନି । ହେଲେ କଣ ସେଥିପାଇଁ ମତେ ମୋର ଉଚିତ ପ୍ରାପ୍ୟରୁ ତାର ପାଉଣା ଦେବାକୁ ପଡ଼ିବ ! ବ୍ୟାଙ୍କରୀ କ୍ଷେତ୍ରରେ ମାଲିକ ଆଉ କର୍ମଚାରୀର ମଧ୍ୟରେ ଅନୁଗ୍ରହର ପ୍ରଶ୍ନ କାହିଁକି ଉଠେ ମୁଁ ବୁଝି ପାରେନା । କର୍ମଚାରୀର ଦରକାର ଅର୍ଥ ଆଉ ମାଲିକର ଦରକାର କାମ । ଏହା ତ ସାଧାରଣ ବିନିମୟ ମାତ୍ର । ଏ କ୍ଷେତ୍ରରେ ଅନୁଗ୍ରହର ପ୍ରଶ୍ନ କାହିଁ ? ଯେଉଁ ମାଲିକ ନିଜକୁ 'କର୍ମଚାରୀ ପ୍ରତି ଅନୁଗ୍ରହ ପ୍ରଦର୍ଶନ ଭାବି ତା ପ୍ରତି କୌଣସି ଅବାନ୍ତର ପ୍ରଭୁତ୍ୱ ବା ପ୍ରଭାବ ବିସ୍ତାର କରିବାକୁ ବସନ୍ତି, ମୋ ମତରେ ସେ ପାଗଳ ଛଡ଼ା ତ ଆଉ କିଛି ନୁହଁନ୍ତି ! ମୋର କାର୍ଯ୍ୟ ପାଇଁ ମୁଁ ଯେତିକି ପାଇବାକୁ ହକଦାର, ତା ନ ପାଇଲେ ମୁଁ ହୁଏତ ବିପ୍ଳବ କରିବି, ନହୁବା ବ୍ୟାଙ୍କରୀ ଛାଡ଼ିବି । ଦୁଇଟା ଭିତରୁ ଯେ କୌଣସି ଗୋଟାଏ ।

କିନ୍ତୁ ତା ପୂର୍ବରୁ ମୁଁ କର୍ତ୍ତୃପକ୍ଷଙ୍କୁ ସାଧାରଣ ଭଦ୍ରତା ଦୃଷ୍ଟିରୁ ମୋର ଦାବୀ ଜଣାଇଦେଲି ।

ଉତ୍ତର ମିଳିଲା ନାସ୍ତିବାଚକ । ଦରମା ନ ପୋଷାଇଲେ ଆପଣ ବ୍ୟାଙ୍କରୀ ଛାଡ଼ି ଦିଅନ୍ତୁ !

ବିପ୍ଳବ କରିବାର ପରିସ୍ଥିତିରେ ନ ଥିଲେ ବ୍ୟାଙ୍କରୀ ଛାଡ଼ିବାର କଥା । ମୁଁ ବ୍ୟାଙ୍କରୀ ଛାଡ଼ିଦେଲି ।

ଏଥିପାଇଁ ଆପଣ କାହାକୁ ପାଗଳ କହିବେ ବିଚାର କରନ୍ତୁ ତ !

କିନ୍ତୁ ମୋ ବିଚାରରେ ମୋର ଗୋଟିଏ ପାଗଳାମି ଥିଲା । ତାହା ହେଉଛି ଯଦି ଜଣେ ବିଜ୍ଞ ଲୋକ ଏକ ପାଗଳ ଗାରଦରେ ବାସ କରେ, ତେବେ ତାକୁ ବାଧ୍ୟ ହୋଇ ପାଗଳାମିକୁ ପ୍ରଶ୍ରୟ ଦେବାକୁ ହେବ—ଏକଥା ମୁଁ ବୁଝି ନପାରି ପାଗଳାଗାରଦରେ ମଧ୍ୟ ବିଜ୍ଞତାର ମଶାଲ ଜାଳୁଥିଲି । ଏ ଯୁଗରେ ବାସ୍ତବବାଦୀ ହେବା

ଏକ ବଡ଼ ପାଗଳର କାର୍ଯ୍ୟ, ଏକଥା ମୁଁ ଜାଣି ନ ଥିଲି ।

ଏହାପରେ ମୁଁ ଯେଉଁ ଜାଗାରେ ଚାକିରି କଲି ସେଠାରେ ଜାଣି ଜାଣି ପାଗଳ ହୋଇଛି । ଅବାନ୍ତର ଭାବରେ ଅନେକଙ୍କର ପ୍ରଶଂସା ଗାନ କରିଛି । ବିବେକର ବାଧା ସତ୍ତ୍ୱେ ଅନେକଙ୍କ ପାଖରେ ନମ୍ରତା ପ୍ରକାଶ କରିବାକୁ ବାଧ୍ୟ ହୋଇଛି । ମୋ ପ୍ରତି ସମସ୍ତ ଅନ୍ୟାୟ ଅବିଚାରକୁ ହସି ହସି ହଜମ କରି "ଭଲ ଲୋକ"ର ପରିଚୟ ଦେଇଛି । ତା ନକଲେ ଦୁନିଆଁ ମତେ ପାଗଳ କହିବ ଏଇ ଭୟରେ ।

ନିଜର ବିବେକ ପାଖରେ ନିଜକୁ ଏକ ବଡ଼ ପାଗଳ କରି ତୋଳି ସାରିବାପରେ ମତେ ଆଉ ଗୋଟାଏ ପରେ ଗୋଟାଏ ଚାକିରି ଛାଡ଼ି ଅନ୍ୟ ଚାକିରି ପାଇଁ ଯିବା ତା ପାଖକୁ ଦଉଡ଼ିବାକୁ ପଡ଼ିନାହିଁ । ବରଂ ଯେଉଁଠି ଚାକିରି କରିଛି ସେଠି ପରିଶ୍ରମର ଉପଯୁକ୍ତ ମୂଲ୍ୟ ନ ପାଇଲେ ମଧ୍ୟ ସୁନାମଟା ଅନ୍ତତଃ ପାଇ ପାରିଛି । ସମସ୍ତେ କର୍ମଠ, ସାଧୁ, ସୁଚରିତ୍ର ଆଉ ନୀତିବାନ ବୋଲି ମତେ ତାରିଫ୍ କରିଛନ୍ତି । ରାତି ରାତି ଅନିଦ୍ରା ହୋଇ ଏଇସବୁ ସାର୍ଟିଫିକେଟ୍‌ର ମୂଲ୍ୟ ମୁଁ କେତେ ଯେ ଉଣ୍ଡିଛି ତାର ଠିକଣା ନାହିଁ, ହେଲେ କୌଣସି ଗୋଟିକର ମୂଲ୍ୟ ଥିଲାଭଳି ତ ମୋର ବିବେକ ଅନୁମୋଦନ କରିନାହିଁ ।

ଚାକିରି କ୍ଷେତ୍ରରେ ମୋର ପାଗଳାମି ଏଇଠି ଥାଉ । ଏଣିକି ସାଧାରଣ ଜୀବନ କ୍ଷେତ୍ରକୁ ଡେଇଁ ପଡ଼ନ୍ତୁ ।

ମୁଁ ଯେତେବେଳେ ଗଳ୍ପ ଲେଖିବା ଶୈଳୀରେ ଆପଣମାନଙ୍କ ନିକଟରେ ମୋର ପାଗଳାମିର ଉପସ୍ଥାପନା କରୁଛି, ଆପଣ ନିଶ୍ଚୟ ମତେ ଲେଖକ ବୋଲି ଜାଣୁଥିବେ । ଏହି ଲେଖାଲେଖି, ଅର୍ଥାତ୍ ସାହିତ୍ୟ ସାଧନା ଭିତରେ ମଧ୍ୟ ମୁଁ ଏକ ବଡ଼ ପାଗଳ । ତା ନହେଲେ ମୁଁ ଜନସାଧାରଣରେ ନିଜକୁ ଲେଖକ ବୋଲି ବିଜ୍ଞାପିତ କରିପାରିବ ନାହିଁ ।

ମନେ ପଡ଼ୁଛି ସାହିତ୍ୟ ସାଧନାର ପ୍ରଥମ ଯୁଗର କଥା । ନିପଟ ପଲ୍ଲୀଗ୍ରାମରେ ଥାଇ ମଧ୍ୟ ମୁଁ ଦୂର ଦୂରାନ୍ତର ସାହିତ୍ୟ ପତ୍ରିକା ଏବଂ ଆକାଶବାଣୀ ସାହିତ୍ୟ ସଂସଦ ସହିତ ସଂଶ୍ଳିଷ୍ଟ ହୋଇ ପାରିଥିଲି । କିନ୍ତୁ ଏତିକି ତ ସାହିତ୍ୟିକ ଜୀବନର ପୂର୍ଣ୍ଣାଙ୍ଗପ୍ରାପ୍ତି ପାଇଁ ଯଥେଷ୍ଟ ନୁହେଁ । ମରଣାନ୍ତରେ ନିଜର ସାହିତ୍ୟ କୃତିକୁ ଜନ ମନରେ ଜାଗ୍ରତ କରି ରଖିବା ପାଇଁ ଅତି ଆବଶ୍ୟକୀୟ ବସ୍ତୁ ହେଉଛି ନିଜର ସାହିତ୍ୟ କୃତିର କେତୋଟି ଉଜ୍ଜ୍ୱଳ ସ୍ୱାକ୍ଷର—ଅର୍ଥାତ୍ ନିଜ ପ୍ରଣୀତ କେତେ ଖଣ୍ଡି ପାଣ୍ଡୁଲିପିର ମୁଦ୍ରିତ ପ୍ରତିରୂପ । ଅତି ସହଜିଆ ଭାଷାରେ କହିଲେ ନିଜର କେତେ ଖଣ୍ଡି ବହି ।

ପଲ୍ଲୀ ଗାଁ ଛାଡ଼ି ସହରକୁ ଆସିବା ପରେ ସେଥିପାଇଁ ବାଟ ଆପେ ଆପେ ଫିଟିଯାଏ । ମୋର ମଧ୍ୟ ନ ଫିଟିବ କାହିଁକି ? ହେଲେ ବହି ଲେଖିଲେ ତ ! ଚାକିରିଆ ଜୀବନରେ ସାହିତ୍ୟ ସାଧନା କରିବାକୁ ସମୟ ବା କାହିଁ ? ଏଣେ ପୁଣି ପିଲାଛୁଆଙ୍କ ଜଞ୍ଜାଳ ।

କଟକରେ ଗଣ୍ଡା ଗଣ୍ଡା ପୁସ୍ତକ ପ୍ରକାଶନୀ ସଂସ୍ଥା । ପ୍ରତି ମାସରେ ଶହ ଶହ ନୂଆ ବହି ପ୍ରକାଶ ପାଉଛି । ରାସ୍ତାରେ ଯାଉଥିବା ଲୋକର ଦୃଷ୍ଟି ସହଜରେ ବହି ଦୋକାନ ପ୍ରତି ଆକୃଷ୍ଟ ହୁଏ । କେତେ ନୂତନ ଲେଖକ ଲେଖିକାଙ୍କର ବହି । ଯେଉଁମାନେ ମୋଠାରୁ ସାତ ପଛରେ ପତ୍ର ପତ୍ରିକାରେ ଲେଖିବା ଆରମ୍ଭ କରିଥିଲେ, ସେମାନଙ୍କର ଗଣ୍ଡା ଗଣ୍ଡା ବହି ଦୋକାନର ଶୋ କେଶରେ ଦେଖିବାକୁ ମିଳୁଛି ।

ନାନା ଜଞ୍ଜାଳ ଭିତରେ ନୂଆ ବହି ସିନା ଲେଖା ହୋଇ ପାରିବ ନାହିଁ, ପତ୍ର ପତ୍ରିକାରେ ତ ଶହ ଶହ ଗଳ୍ପ କବିତା ପ୍ରକାଶ ପାଇଛି, ସେଗୁଡ଼ିକ ସଂକଳନ କରିଦେଲେ ତ ଅନ୍ୟୂନ ଚାରି ପାଞ୍ଚ ଖଣ୍ଡ ବଡ଼ ବହି ହୋଇ ପାରନ୍ତା !

କଣ ଭାବି କେଜାଣି ଗୋଟାଏ ବଡ଼ ବହି ଦୋକାନକୁ ପଶିଗଲି । କୁସନ ଚଉକୀ ଉପରେ ଉପବିଷ୍ଟ ଦୋକାନ ମାଲିକଙ୍କ ପ୍ରତି ହାତ ଦୁଇଟା ଯୁଏଁ ଯୁଏଁ ଯୋଡ଼କର ହୋଇ ଉଠିଲା । ଏ ମଧ୍ୟ ଏକପ୍ରକାର ପାଗଳାମି ନୁହେଁ···ଆଉ କଣ ?

କଣ ଦରକାର ? ଦୋକାନ ମାଲିକ ଗମ୍ଭୀର ସ୍ୱରରେ ପ୍ରଶ୍ନ କଲେ ? ମୁଁ ଏକ ନିଃଶ୍ୱାସକେ ମୋର ସମ୍ପୂର୍ଣ୍ଣ ପରିଚୟ ଦେଇଦେଲି ।

ମୁଁ ଦୀର୍ଘ ପନ୍ଦର ବର୍ଷ ଧରି ପତ୍ରପତ୍ରିକା ଓ ବେତାର ଆଦି ପାଇଁ ଗଳ୍ପ କବିତା ଆଉ ସଙ୍ଗୀତ ଆଦି ରଚନା କରି ଆସୁଛି । ଯେତେ ଲେଖା ପ୍ରକାଶିତ ହୋଇ ରହିଛି, ଅନ୍ତତଃ ପାଞ୍ଚ ଖଣ୍ଡ ଯାଏ ବଡ଼ ବହି ହୋଇ ପାରିବ । ଆପଣ ଅନ୍ତତଃ ଖଣ୍ଡିଏ ବହିର ପ୍ରକାଶ ଦାୟିତ୍ୱ ନେଇ ପାରିବେ କି ?

ଦୋକାନ ମାଲିକ ସେହିପରି ଗମ୍ଭୀର ସ୍ୱରରେ କହିଲେ, ଆଣନ୍ତୁ ଦେଖିବା ।

ଆଣିଗଲି । ପ୍ରକାଶକ ମହାଶୟ ଲେଖାଗୁଡ଼ିକ ଦେଖିଲେ । କହିଲେ ବହି ଛପା ହେବ ।

ମନଟା କୁଣ୍ଢେମୋଟ ହୋଇଗଲା ।

ସେହିଭଳି ଆଉ କେତେଜଣ ପ୍ରକାଶକଙ୍କ ସହିତ ଦେଖାକରି ମୋର ପତ୍ରପତ୍ରିକାରେ ପ୍ରକାଶିତ ଯେତେଗୁଡ଼ିଏ ଲେଖାଥିଲା, ସବୁ ବହି ଆକାରରେ ପ୍ରକାଶ ପାଇଁ ଦେଇ ଆସିଲି । ପ୍ରଥମତଃ ନିଜ ସାହିତ୍ୟ କୃତିର ସମ୍ବର୍ଦ୍ଧନ ପାଇଁ ଏକ ଏକ ଉଜ୍ଜ୍ୱଳ ସ୍ୱାକ୍ଷର—ଦ୍ୱିତୀୟତଃ କିଛି ଅର୍ଥ ମଧ୍ୟ ଏ ବାବଦରେ ଉପାର୍ଜନ । ମନରେ ଆତ୍ମତୃପ୍ତି ଜନିତ ଆନନ୍ଦରେ ଊର୍ମି ।

କିନ୍ତୁ ହାୟ, ଚାହିଁ ଚାହିଁ ଆଖିରୁ ପାଣି ମଲା । ଅଥଚ କୌଣସି ପ୍ରକାଶକଙ୍କର ସୋକେଶ ମଧ୍ୟରେ ମୋର ଖଣ୍ଡିଏ ମାତ୍ର ବହି ଶୋଭା ପାଇଲା ନାହିଁ ।

ବହି ପ୍ରକାଶ ସଂପର୍କରେ ମୁଁ କେତେଥର ଯେ ଉକ୍ତ ପ୍ରକାଶକମାନଙ୍କୁ ଭେଟିଛି ତାର ହିସାବ ରଖିନାହିଁ । କୁସନ ଚଉକି ଉପରେ ପ୍ରକାଶକ ମାନଙ୍କର ସେହିପରି ଗମ୍ଭୀର କଣ୍ଠସ୍ୱର—ହିଁ, ଦେଖିବା, ଛାପିବା, ଅପେକ୍ଷା କରନ୍ତୁ । ତରତର ହେଲେ କଣ ହେବ ?

ଦିନେ କଥା ପ୍ରସଙ୍ଗରେ ଜଣେ ଲେଖକ ବନ୍ଧୁ ପଚାରିଲେ—କେତେ ଖଣ୍ଡ ବହି ଆପଣଙ୍କର ଛାପା ହେଲାଣି ?

ମୁଁ କହିଲି—ମୋଟେ ନୁହଁ !

ଆପଣଙ୍କର କଣ କୌଣସି ପ୍ରକାଶକଙ୍କ ସହିତ ପରିଚୟ ନାହିଁ ?

ମୁଁ କହିଲି—ଅଛି, ବହି ମଧ୍ୟ ଦେଇଛି—ହେଲେ ଛପି ନାହାନ୍ତି ତ ।

ଟିକିଏ ଜୁହାବୋଲା କରନ୍ତୁ···ଥରକୁ ପାଞ୍ଚ ଥର ଯାଆନ୍ତୁ··· ।

ବନ୍ଧୁଙ୍କର ଏଇ କଥା ଦୁଇ ପଦକୁ ଘଣ୍ଟା ଘଣ୍ଟା ଧରି ବିଶ୍ଳେଷଣ କରିଛି । ସେଇଥିରୁ ଯେଉଁ ସାର ପାଇଛି ତାର ମର୍ମ ହେଲା—ପ୍ରକାଶକଙ୍କ ନିକଟ ଘନ ଘନ ଧାଁ ଦଉଡ଼ । ଆଗକରି ନମସ୍କାର । କଥା ପଦକରେ ଦଶଥର 'ଆଜ୍ଞା' ଶବ୍ଦର ଅପବ୍ୟବହାର । ତା ନ ହେଲେ ଲେଖାଗୁଡ଼ିକ ସେମିତି ପ୍ରକାଶକଙ୍କ ବସ୍ତାନି ଭିତରେ ପଡ଼ିଥିବ ।

ଲେଖକ ଜୀବନର ଉଜ୍ଜ୍ୱଳ ସ୍ୱାକ୍ଷର ଭବିଷ୍ୟତ ବଂଶଧର ମାନଙ୍କ ପାଇଁ ରଖିଯିବା ଶେଷକୁ ଏ ଅଧମ ଜୀବନରେ ଜୁଟିଲା ନାହିଁ ।

କେତେକ ବନ୍ଧୁ ପରୋକ୍ଷ ଭାବରେ କହନ୍ତି, ଅମୁକ ବାବୁ ଏକ ବଦ୍ଧ ପାଗଳ । ଦୀର୍ଘ ପନ୍ଦର ବର୍ଷର ସାହିତ୍ୟ ସାଧନା ଭିତରେ ଖଣ୍ଡିଏ ବହି ମଧ୍ୟ ଛପି ପାରିଲେ ନାହିଁ । ଅଥଚ ତାଙ୍କ ସାଥ ପଛରେ ଲେଖା-ଲେଖି ଆରମ୍ଭ କରି ଅନ୍ୟମାନେ ପନ୍ଦର କୋଡ଼ିଏ ଖଣ୍ଡ ଲେଖାଏଁ ବହି ଛପି ଓଡ଼ିଶାରେ ବେଶ୍ ଜଣା-ଶୁଣା ହେଲେଣି । ନିଜ କାମ ପାଇଁ ନିଜେ ଉଦ୍ୟମ ଉଦ୍ୟମ କରିବାକୁ ଏତେ କୁଣ୍ଠା ? ଆଜିକାଲି ଯୁଗ ତ ସେଇଆ ହୋଇଛି । କହି ବୋଲି ପାରିଲେ ପସ୍ତ ଶଙ୍ଖଉ ମଧ୍ୟ ବଂଶୀ ହେବ । ବଡ଼ ହେବାପାଇଁ ସାମାନ୍ୟ କେଇପଦ କଥା ଆଉ ଟିକିଏ ପରିଶ୍ରମ—ଏଇ ତ ।

ଆପଣ ବିଚାର କରନ୍ତୁ—ପ୍ରକୃତରେ ପାଗଳ କିଏ ? ମୋର ବନ୍ଧୁମାନେ ନା ମୁଁ ! ଯୁଗର ମଳିନତା ଭିତରେ ନିଜର ଉଜ୍ଜ୍ୱଳତା ରଖି ନ ପାରିବା ହିଁ ପ୍ରକୃତରେ ବଞ୍ଚତା । ମୋର ପାଗଳାମୀ ହେତୁ ମୁଁ ଏକଥା ହୁଏତ ବୁଝିପାରି ନଥିଲି । ବୁଝିବା ପରେ

ମତେ ଆଉ କିଏ ରଖିପାରେ ? ମୋର ଲେଖାକୁ କିଏ ଅଳିଆ ବସ୍ତାନି ଭିତରେ ପକାଇ ପାରେ ?

ମୋର ଏକାଧିକ ବହି ପ୍ରକାଶ ପାଇଛି, ମତେ ମଧ୍ୟ ଭଲ ଗୁଣ ଗାନ କରି ଆସେ । ଆପଣ ଭଲ, ଆପଣଙ୍କ ଦୋକାନ ଭଲ, ଆପଣଙ୍କ ଭଳି ଉପାଦେୟ ବହି ଆଜିକାଲି କିଏ ଛାପୁଛି ! ଆପଣଙ୍କ ପ୍ରତିଷ୍ଠାନର ଲେଖକ ହେବାରେ ଗୌରବ ଅଛି କେତେ କଣ ! ଏପରି ଅଭିନୟ କରି ପାରିଲେ ପ୍ରକାଶକଙ୍କଠାରୁ ଲେଖାପାଇଁ ଉପଯୁକ୍ତ ପାରିଶ୍ରମିକ ମିଳୁ, ନ ମିଳୁ ବ୍ଲୁ ସିଗାରେଟ୍ ଅନ୍ତତଃ ମିଳେ । ତା ଛଡ଼ା 'ବ୍ୟକ୍ତିତ୍ୱ' ବିଜୁଳି ବେଗରେ ସମାଜରେ ପ୍ରଚାରିତ ହୋଇଯାଏ । ଅମୁକ ବାବୁ, ଲେଖକ, କବି, ଜ୍ଞାନୀ, ପଣ୍ଡିତ । ଭଦ୍ର ସମାଜରେ ଚଉକି ମିଳେ । ଏଇ ଆତ୍ମସମ୍ମାନ ଆଉ ବିଜ୍ଞାପନ ପଛରେ ମଣିଷ ଆଜି ଅଣନିଃଶ୍ୱାସୀ ହୋଇ ଧାଇଁଛି—ଠିକ୍ ଆମେରିକା ଚନ୍ଦ୍ର ଲୋକକୁ ଧାଇଁବା ଭଳି । ଶିଷ୍ଟାଚାର, ଭଦ୍ରତା, ସୁପରିବେଶ, ଯାହାକିଛି କହନ୍ତୁ ସବୁ ଏଇ ବିଜ୍ଞାପନ ରୂପୀ ବ୍ଲେବେଟି ଅକ୍ଷର ଭିତରେ ସୀମାବଦ୍ଧ । ସେତିକି ଯଦି ଆପଣଙ୍କ ପାଖରେ ଅଛି, ତେବେ ଆପଣ ଜଗତ୍ ଜେତା, ମାନବିକତା ଅଲବତ୍ ଆପଣଙ୍କ ପାଖରେ ରହିବ । ରାତି ପାହୁଁଣୁ କେତେ ଲୋକ କେତେ କାମ ନେଇ ଆପଣଙ୍କ ଦ୍ୱାରସ୍ଥ ହେବେ । ଆପଣଙ୍କ ବାକ୍ୟକୁ ଶିରୋଧାର୍ଯ୍ୟ ମନେ କରିବେ··· । କେତେ ନମସ୍କାର ···କେତେ କଂଗ୍ରାଚୁଲେସନ୍—ଗ୍ରିଟିଂସ୍··· ।

ଏହାକୁ ଆପଣ କଣ ପାଗଳାମି ବୋଲି କହିବେ ? ତେବେ ଆପଣ ନିଜେ ଏକ ବଡ଼ ପାଗଳ । ପାଗଳାମିର ସଂଜ୍ଞା ଜାଣନ୍ତି ନାହିଁ । ଗଣତନ୍ତ୍ର ଯୁଗ ଇଏ । ପାଞ୍ଚ ଲୋକ ଯାହା କହିବେ ସେଥିରେ ହୁଁ ମାରିବାକୁ ଆପଣ ବାଧ୍ୟ । ହୁଁ ନ ମାରିଲେ ଆପଣ ମାଟି ଗୋଡ଼ ସାଙ୍ଗରେ ସମାନ ।

ଛାଡ଼ନ୍ତୁ···ଏ ପ୍ରସଙ୍ଗ ଏଇଠି ଥାଉ । ଅନ୍ୟ ପ୍ରସଙ୍ଗ ଆଡ଼େ ଦୃଷ୍ଟି ଫେରାନ୍ତୁ··· ।

ମୋ ପାଗଳାମିର ଦ୍ୱିତୀୟ ପର୍ଯ୍ୟାୟରେ ଆପଣ ଶୁଣିବେ ମୋର ପାରିପାର୍ଶ୍ୱିକ ବାୟୁମଣ୍ଡଳ, ଅର୍ଥାତ୍ ପ୍ରବାସରେ ମୋର ବସାଘର, ସାଇ ପଡ଼ିଶା ଆଦିଙ୍କ କଥା ।

କଟକ ସହରରୁ ରାଜଧାନୀ ଭୁବନେଶ୍ୱର ବଦଳି ହୋଇ ଆସିବା ପରେ ମୁଁ ଗୋଟାଏ ବଡ଼ ସାର୍ଟିଫିକେଟ୍ ପାଇଗଲି । ତା ହେଉଛି—ମୁଁ କୁଆଡ଼େ ଖୁବ 'ଭଲ ଲୋକ' । ଏଇ ସାର୍ଟିଫିକେଟ୍‌ଟା ମତେ ବିଶେଷ ଭାବେ ମିଳୁଥିଲା ମୁଁ ଯେଉଁ ଭଦ୍ରଲୋକମାନଙ୍କ ଘରେ ଭଡ଼ାଦେଇ ରହୁଥିଲି ସେଇମାନଙ୍କଠାରୁ । ମାସ ପହିଲରେ ଦରମା ପାଇ ଘର ମାଲିକଙ୍କ ଭଡ଼ାଟା ପ୍ରଥମେ ଦେଇ ଆସୁଥିଲି ବୋଲି ଯେ ଏ ସାର୍ଟିଫିକେଟ୍ ମିଳୁଥିଲା, ତା ନୁହେଁ । ଘର ତୁଳନାରେ ଭଡ଼ା ବେଶୀ, ଛାତରୁ ପାଣି ବର୍ଷା, ପାଇଖାନାର ଅସୁବିଧା, ଏସବୁ ସତ୍ତ୍ୱେ ମୁଁ କୌଣସି ଅଭିଯୋଗ ନ କରି ନିଜକୁ ଚଳାଇ ଦେଉଥିଲି । ବିଶେଷତଃ ପ୍ରଥମେ ମୁଁ ଯାହାଙ୍କ ଘରେ ଭଡ଼ାରେ ଥିଲି, ତାଙ୍କ ସହିତ ଘରଭଡ଼ା ଯେତେ ଦେବାପାଇଁ ଚୁକ୍ତି ହୋଇଥିଲା, ପ୍ରାୟ ୬ଟି ମାସପରେ ମତେ ସ୍ୱଇଚ୍ଛାରେ ତାଠାରୁ ବେଶୀ ଦେବା ପାଇଁ ବିବେକ ବାଧ୍ୟ କଲା । କାରଣ ଠିକ୍ ମୋର ପାଖ ଘରେ ଯେଉଁ ଭଦ୍ରଲୋକ ଆସି ରହିଲେ, ସେ ସେତିକି ଦେଲେ । ସୁତରାଂ ମୁଁ ତାଙ୍କଠାରୁ କମ ଦେଲେ ଘର ମାଲିକଙ୍କର ସାର୍ଟିଫିକେଟ୍‌ଟା ତ ହରାଇବାକୁ ପଡ଼ିବ, ତାଛଡ଼ା ଆହୁରି ଅନେକ ଅସୁବିଧା ସୃଷ୍ଟି ହୋଇପାରେ । ସମ୍ଭବତଃ ଏଇ ଭୟରେ ଘର ମାଲିକ ନୋଟିଶ ନେବାପାଇଁ କୌଣସି ପ୍ରତ୍ୟକ୍ଷ ଜୁଲୁମ ନ କରିଥିଲେ ମଧ୍ୟ ମୁଁ ସ୍ୱଇଚ୍ଛାରେ ତାହା ଦେଇଦେଲି । ଯାହା ଫଳରେ ମୁଁ ଖୁବ ଭଦ୍ରଲୋକ, ମୋ ଭଳି ଭଦ୍ରଲୋକ ନାହାନ୍ତି ବୋଲି ସେ ଆହୁରି ଚକଚକିଆ ସାର୍ଟିଫିକେଟ୍ ଦେଇଥିଲେ ।

ମୋର ଏଇ ଉଦାରତା ଘରମାଲିକଙ୍କ ନିକଟରେ ବୋଧହୁଏ ଧରା ପଡ଼ିଗଲା । ସେ ପ୍ରକୃତରେ ଜାଣି ପାରିଲେ ମୁଁ ଗୋଟାଏ ବଡ଼ ବୋକା । ତା

ନ ହୋଇଥିଲେ ସେ ପରୋକ୍ଷ ଭାବରେ ପୁଣି ଘର-ଭଡ଼ା ବେଶି ହେବ ବୋଲି ସୂଚନା ଦିଅନ୍ତେ କାହିଁକି ? ଜାଣି ଜାଣି ଘର ଭିତରେ ମୋ ପାଇଁ ଅନେକ ଅସୁବିଧା ସୃଷ୍ଟି ହେବା ଭଳି କାର୍ଯ୍ୟ କରନ୍ତେ କାହିଁକି ? ମୁଁ ତ ପ୍ରକୃତରେ ବୋକା ନଥିଲି କିମ୍ବା ଆଉ ଅଧିକ ଘରଭଡ଼ା ଦେବାପାଇଁ ମୋର ବିବେକ ମତେ ବାଧ କରୁ ନ ଥିଲା, ତେଣୁ ମୁଁ ବା ଆଉ ବେଶି ନାହିଁକି ଦିଅନ୍ତି ?

ଏଥର ଫଳ କିନ୍ତୁ ହେଲା ଓଲଟା । ମୋର ସାର୍ଟିଫିକେଟ୍ ସବୁ ତ ସେ ଫେରାଇ ଦେଲେ । ଅଧିକନ୍ତୁ ପରୋକ୍ଷ ଭାବରେ ମୋର ଆଭିଜାତ୍ୟ କ୍ଷୁର୍ଣ୍ଣ କରିବା ଭଳି କାର୍ଯ୍ୟ କଲେ—ଯାହା ଫଳରେ ମତେ ଉକ୍ତ ବାସଗୃହ ତ୍ୟାଗ କରିବାକୁ ପଡ଼ିଲା ଆଉ ତାଙ୍କର ସେଇ ପୂର୍ବୋକ୍ତ "ଭଦ୍ରଲୋକ" ସାର୍ଟିଫିକେଟ୍ ପରିଣତ ହେଲା "ବଡ଼ ପାଗଳ"ରେ ।

ତାଙ୍କର ଏଇ "ବଡ଼ ପାଗଳ" ସାର୍ଟିଫିକେଟ୍ ଅନ୍ୟମାନଙ୍କ ଦ୍ୱାରା ଅନୁମୋଦିତ ହେବା ପାଇଁ ମଧ୍ୟ ମୁଁ ପରିସ୍ଥିତି ସୃଷ୍ଟି କଲି ।

ତାଙ୍କ ଘର ଛାଡ଼ି ମୁଁ ଅଳ୍ପ ଦୂରରେ ଅନ୍ୟ ଜଣେ ଭଦ୍ରଲୋକଙ୍କର ଘର ଭଡ଼ା ନେଇ ତାଙ୍କ ପରିବାର ସହିତ ରହିଲି । ସେଠାରେ ମଧ୍ୟ ପ୍ରଥମେ ପ୍ରଥମେ ସେଇ ସାର୍ଟିଫିକେଟ୍ ହାସଲ କଲି । ମୁଁ ଖୁବ୍ ଭଲ ଲୋକ । ଘର ଛାତରୁ ପାଣି ଗଳୁଥିବା ସତ୍ତ୍ୱେ ମୁଁ କୌଣସି ଅଭିଯୋଗ ନକରି ବରଂ ପହିଲକୁ ପହିଲ ଘରଭଡ଼ା ଛିଣ୍ଡାଇ ଦେଉଛି । ଘର ମାଲିକଙ୍କ କୁକୁଡ଼ା ମୋ ଶୋଇବା ଘର ଭିତରକୁ ପଶି ଆସି ଦିନକୁ ପଚିଶ ଥର ଝାଡ଼ା ଫେରୁଥିଲେ ମଧ୍ୟ ମୁଁ ନିଜେ ସଫା କରି ଦେଉଛି । ମୁଁ ଘରେ ଜଳଖିଆ ଖାଉଥିବା ସମୟରେ ତାଙ୍କ ଗାଈ ଗୁହାଳ ସଫା ହେଉଥିବାରୁ ଆମ ଘର ଝରକାବାଟେ ଦୁର୍ଗନ୍ଧ ପଶିଆସି ମୋର ଖାଇବାରେ ବ୍ୟାଘାତ ସୃଷ୍ଟି କଲେ ମଧ୍ୟ ମୁଁ ଏହାର ପ୍ରତିକାର ପାଇଁ ମାଲିକଙ୍କୁ ନ କହି ନିଜେ ବରଂ ଝରକା କବାଟ ବନ୍ଦକରି ଏକା ନିଃଶ୍ୱାସକେ ଖାଦ୍ୟ ଆଖି ବୁଜି ଗିଳି ପକାଉଛି । ଏପରିସ୍ଥଳେ ମୁଁ ଭଲ ଲୋକ ହେବି ନାହିଁ ଆଉ କଣ ଆପଣ ଭଲ ଲୋକ ହେବେ ?

ଏ ଘରର ମାଲିକ ସରକାରୀ ଚାକିରିରୁ ଅବ୍ୟାହତି ପରେ ରାଜଧାନୀରେ ଘର ଖଣ୍ଡେ ତୋଳି ସପରିବାରେ ଏଇଠି ରହୁଛନ୍ତି । ନିଜେ ଦୁଇ ବଖରାରେ ରହି ବାକି ଘରଗୁଡ଼ିକ ଭଡ଼ା ଲଗାଇ ଦେଇଛନ୍ତି । ଭାରି ସୁନ୍ଦର ଲୋକ—ଘରଭଡ଼ା ଦିଅନ୍ତେ ନାହିଁ । ଲୋକେ ଅସୁବିଧାରେ ପଡ଼ି କୁହାବୋଲା କରିବାରୁ ନିଜେ ବରଂ ଦୁଇଟି ବଖରାରେ ଅସୁବିଧାରେ ଚଳି ବାକି ଗୁଡ଼ିକ ଭଡ଼ା ଲଗାଇଛନ୍ତି ଖୁବ୍ ଅଳ୍ପ ଟଙ୍କାରେ । ଭଦ୍ରଲୋକ-ସମାଜରେ ବଢ଼ିଛନ୍ତି । ସେ ପର ଦୁଃଖ ହୃଦୟଙ୍ଗମ କରିବେ ନାହିଁ ତ କରିବ କିଏ ? ତାଙ୍କ ବନ୍ଧୁ-ବାନ୍ଧବରେ ସବୁ ବଡ଼ ବଡ଼ ଚାକିରି କରି ମଟର ସାଇକେଲ ମେଣ୍ଟେନ୍ କରନ୍ତି । ତାଙ୍କ ପୁଅ ମଧ୍ୟ ଆଉ କେଇଟା ମାସ ପରେ ମଟର ସାଇକେଲ କିଣିବେ ବୋଲି ତାଙ୍କ ପୁତ୍ରବଧୂଙ୍କ ମୁହଁରୁ ଶୁଣିବାକୁ ମିଳେ । ଏତେ ବଡ଼ଲୋକ··· ଅଥଚ ଲୋକଙ୍କର ଏତିକି ଅସୁବିଧା ବୁଝିବେ ନାହିଁ ।

ତାଙ୍କ ଘରେ ଯେଉଁମାନେ ଭଡ଼ାରେ ରହନ୍ତି, [illegible] ପରିବା କଟାଠାରୁ ଆରମ୍ଭ କରି ସମୟେ ଅସମୟେ ରୋଷେଇ ବାସ ପର୍ଯ୍ୟନ୍ତ ସବୁ କାମରେ ତାଙ୍କ ପୁତ୍ରବଧୂଙ୍କୁ ସାହାଯ୍ୟ କରନ୍ତି । ସବୁବେଳେ ତାଙ୍କ ପଛ ପଛେ ଗୋଡ଼ାଇଥାନ୍ତି ।

ମୁଁ କିନ୍ତୁ ତାଙ୍କ ଭଡ଼ା ଘରର ପରମ୍ପରା ଭାଙ୍ଗି ଦେବାକୁ ସାହସ କଲି । ଅନ୍ୟମାନେ ତାଙ୍କୁ ଏତେ ମାନ ଥାନ ଦେଇ ଚଳୁଥିବା ବେଳେ ମୋର ଏତେ ଅସ୍ପର୍ଦ୍ଧା ଯେ ମୁଁ ତାଙ୍କ ପାଖରେ ଗାମ୍ଭୀର୍ଯ୍ୟ ରଖି ଚଳିବି ! ପୁଣି କୌଣସି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବି ନାହିଁ ବା ତାଙ୍କର ସାହାଯ୍ୟ ଲୋଡ଼ିବି ନାହିଁ ! ସେ ଘରର ମାଲିକ—ତାଙ୍କ ଦୟାରୁ ଇଲେକ୍‌ଟ୍ରି ନଥିବା ଗୋଟାଏ ଆସ୍‌ବେଷ୍ଟସ୍ ଘରକୁ ମାସ ପଚିଶ ଟଙ୍କା ଭଡ଼ାଦେଇ ଆସି ମୁଣ୍ଡି

ଗୁଞ୍ଜିଛୁ । ଅଥଚ ତାଙ୍କ ପାଖରେ ନିଜର ମାରବ ବଡ଼ିମା ଦେଖାଇ ହେବ ! ତା ହୋଇ ପାରିବ ନାହିଁ !

ସେ କଣ ଆଜ କହିବେ ତୁମେ ଆମର ଅଧୀନତ୍ୱ ସ୍ୱୀକାର ନ କଲେ ଆମ ଘର ଛାଡ଼ ବୋଲି ?

ସେ କଥା ସିନା କହି ପାରିବେ ନାହିଁ ତେବେ ମୁଁ କଣ ଖାଇଲି, କଣ ପିନ୍ଧିଲି, ଆଉ ବିଷୟ ସଂଗ୍ରହ କରି, କାନ୍ଥକୁ କାଡ଼କୁ ଦେଖାଇ ତାଙ୍କ ଘରର ସ୍ତ୍ରୀ ଲୋକେ କଣ ମତେ ଖୁଣ୍ଟା ଦେଇ ପାରିବେ ନାହିଁ ! ତା ହେଲେ ତ ମୁଁ ଛୁଏଁ ଛୁଏଁ ଘର ଛାଡ଼ିଦେବି !

ପୂର୍ବ ଘରର ମାଲିକଙ୍କ ଭଳି ସିଏ ବି ତାଙ୍କ ସାର୍ଟିଫିକେଟ୍ ଉଇଥ୍‌ଡ୍ର କଲେ ଆଜ ମୁଁ ତାଙ୍କ ଘର ଛାଡ଼ିବା ପରେ ପରେ ତାଙ୍କର ମଧ୍ୟ ସେଇ "ଭଲ-ଲୋକ" ସାର୍ଟିଫିକେଟଟା ପରିଣତ ହେଲା "ବଦ୍ଧ ପାଗଳ"ରେ । ଏହାପରେ ମୋର "ପାଗଳାମୀ" କ୍ରମେ ବହୁ ଜନ ସମର୍ଥନ ଲାଭ କଲା ।

ଆପଣ କଣ ଖାଲି ତାଙ୍କ କଥା ଶୁଣିବାକୁ କାନ ପାରିଛନ୍ତି ? ମୋ କଥା ଶୁଣିବେ ନାହିଁ ! ତେବେ ବିଚାର କରି ଆପଣଙ୍କର ସ୍ୱତନ୍ତ୍ର ମନ୍ତବ୍ୟ ଦିଅନ୍ତୁ ନା !

ତା ପରେ ମୁଁ ଯେଉଁଟି ରହିଲି ସେ ଜାଗାଟା ବାସ୍ତବିକ୍ ଖରି ଭଲ । ଘର ମାଲିକ ସେଠାରେ ନ ଥାନ୍ତି । ପ୍ରତି ମାସରେ ଆସି ଘର ଭଡ଼ା ଟଙ୍କା ନେଇ ଚାଲିଯାନ୍ତି ।

ବିଦେଶରେ ଲୋକଙ୍କ ସାଙ୍ଗରେ ଏତେଟା ମିଶିବା ଭଲ ନୁହେଁ । ନିଜର ଗୁମର ପଦାରେ ପଡ଼ିବ । ଏ ନୂଆ ଜାଗାରେ କାହା ସହିତ କାହାର ସେମିତି ମିଳା-ମିଶା ମୁଁ ଦେଖୁନାହିଁ—ଭଲ କଥା ।

ତା ବୋଲି ମୁଁ କଏ, କୋଉଠି ଚାକିରି କରେ, କେତେ ଦରମା ପାଏ ଆଉ ବିଷୟ ମୋ ଠାରୁ ସିଧା-ସଳଖ ନ ବୁଝିଲେ ମଧ୍ୟ ଅନ୍ୟ ଲୋକ ଜରିଆରେ ପଡ଼ୋଶୀମାନେ ନ ବୁଝି କଣ ଆଉ ବାକି ରଖିଛନ୍ତି !

ଆମ ପଡ଼ୋଶୀମାନଙ୍କର ମଟରଗାଡ଼ି ଅଛି । ନିଜର ବଡ଼ ବଡ଼ କେତେ ସୁନ୍ଦର ବିଜୁଳି ଆଲୁଅ ଖଞ୍ଜା କୋଠାଘର ସବୁ ! ବାବୁମାନେ ଦିନକୁ ଦିନ ଭଲ ଭଲ ଟେରେଲିନ୍ ଟେରିକଟ୍ ପିନ୍ଧି ଅଫିସ୍ ଯାଆନ୍ତି । ମୋଟା ଦରମା ପାଆନ୍ତି ।

ଆମର ଅଲ୍ଟଙ୍କିଆ ଆଜ୍‌ବେଷ୍ଟସ ଘର । ବିଜୁଳି ଆଲୁଅ ତ ନାହିଁ । କରୋସିନି ଲଣ୍ଠନ ।

ବାବୁମାନେ ଫ୍ଲାସ୍ ପାଇଖାନାରେ ଝାଡ଼ା ବସନ୍ତି । ଆମର ସେମିତି ଏଣୁ ତେଣୁ ପାଇଖାନାଟାଏ ଥିଲେ ବି ସେଥିରେ ସ୍ତ୍ରୀ ଲୋକେ ଝାଡ଼ା ଯାନ୍ତି । ପାଇଖାନାରେ ଝାଡ଼ା ଫେରିବାକୁ ମତେ ଭଲ ଲାଗେ ନାହିଁ । ପାଣି ଢାଳ ଧରି ମୁଁ ସିଧା ବାଟ କାଟେ ପାଖରେ ଥିବା ବଣ ଭିତରକୁ । (ବଣ ନ ଥିଲେ ଅବଶ୍ୟ ପାଇଖାନାକୁ ଯାଆନ୍ତି )

ପଡ଼ଶା ଲୋକେ ମତେ ଚାହିଁ କଣ ଠରଠରି ହୋ' କଥାବାର୍ତ୍ତା ହୁଅନ୍ତି । ହୁଏତ ଏଇଆ ହୋଇଥିବ—ଲୋକଟା ପାଗଳା ନା କଅଣ ? ରାଜଧାନୀରେ ରହି ମଫସଲିଆଙ୍କ ଭଳିଆ ପାଣି ଢାଳ ଧରି ବଣକୁ ଯାଉଛି ହଗିବାକୁ ।

ପଡ଼ଶା ଘରର ବାବୁ ବାବୁଆଣିମାନେ ଆମ ବାହାର ସାଙ୍ଗରେ କଥାବାର୍ତ୍ତା ହୁଅନ୍ତି ନାହିଁ । ଯଦି କେବେ କୌଣସି ଦରକାର ପଡ଼େ ତାଙ୍କ ଚାକରଆ ମାନଙ୍କୁ ପଠାଇ ଦିଅନ୍ତି ।

ପଡ଼ଶା ବାବୁମାନଙ୍କ ଦରଜା ଆଉ ଝରକାରେ କେତେ ଦାମିକା ଜନାର ପରଦା ସବୁ ଝୁଲୁଛି । ପରଦା ଟାଣିଲେ କୁଆଡ଼େ ଭଲ ପବନ ହୁଏ ।

ଘରେ ଆମେ ଚଳପ୍ରଚଳ ହେଲାବେଳେ, ମୁଁ ଧୋତି ପଞ୍ଜାବୀ ପିନ୍ଧି ଛତାଟା ହାତରେ ଧରି ଚାଲି ଚାଲି ଅଫିସ ବାହାରିଥିଲା ବେଳେ ସେଇ ପରଦା ଆଡ଼ୁଆଳରୁ ପଡ଼ଶା ଘରର ବାବୁଆଣୀମାନଙ୍କର କୁତୁକୁତୁ ଆଖି ଝିଡ଼କି ଦେଇ ଆମ ଉପରେ ପଡ଼େ । ତାପରେ ଶୁଭେ କରି କରି ହସ । ସେ ହସର ଅର୍ଥ ଅତି ସ୍ପଷ୍ଟ ।

ବାବୁଆଣୀମାନଙ୍କର ଦୃଷ୍ଟି ଯେପରି ତୀକ୍ଷ୍ଣ, ପାଟିରେ ବି ସେମିତି ବାଟୁଳି ବାଜେ ନାହିଁ । କାର୍ଯ୍ୟ

ମଧ୍ୟ ଉତ୍ତୋଧିକ । ତା ନ ହୋଇଥିଲେ ବାବୁଆଣିମାନେ ଏକା ଏକା ହାଟକୁ ଯାଇ ପରିବା କିଣିବାବେଳେ ନିକଟ କଣ୍ଠା ସୂତାଏ ଏ ପାଖକୁ ହୋଇଥିଲେ ବିକ୍ରି ଦୋକାଣୀ ସାଙ୍ଗରେ ବଡ ବଜାରରେ ଝଗଡ଼ା କରୁ ନ ଥାନ୍ତେ । ବିରାଟ ବାଇଗଣ ଗଦା ଭିତରୁ ନାଡ ଚିପି ଭଲ ବାଇଗଣ ଯାକ ନିଜ ବେଗ୍‌ରେ ଭରି ଆଣୁ ନ ଥାନ୍ତେ, ଗୋଟାଏ ନୂଆ ପଇସା ବିକ୍ରି ଗଣ୍ଡିବ ପରିବା ବିକାଳି ଆଡ଼େ ରହି ଯାଉଥିଲେ ସେଥିପାଇଁ ଦଶ ପଇସାର ମାଲ ହାତେ ହାତେ ଉଠାଇ ନେଉ ନ ଥାନ୍ତେ । ଆପଣଙ୍କ ଘରର ଝିଅ ବୋହୂମାନେ ଏ କାମ ପାଇଁ କଣ ଉପଯୁକ୍ତ ହୋଇ ପାରିବେ ? ଦେଶ ଠିକ୍ ନାଗ୍ ପ୍ରଗତି ହାସଲ କରୁଛି । ସାଧୁବାଦ !

ଯାହାହେଉ ପୂର୍ବ ସ୍ଥାନମାନଙ୍କ ଠାରୁ ଏହା କଣ ଭଲ ନୁହେଁ ? ଏଠାରେ ତ ସାର୍ଟିଫିକେଟ ଇସୁ କରି ପୁଣି କେହି ଉଇଥ୍ ଡ୍ର କରନ୍ତି ନାହିଁ । କାନ୍ଥକୁ ବାଡ଼କୁ ଦେଖାଇ କେହି ବାକ୍ୟ ବାଣ ମାରନ୍ତି ନାହିଁ ।

ବିଦେଶ ଜାଗାରେ ଯେଉଁଭଳି ଚଳିବା ସାଧାରଣ ଭଦ୍ରତା ଦୃଷ୍ଟିରୁ କାମ୍ୟ, ଏଠ ସେଇଭଳି ଏକ ଜାଗା । ଅନ୍ୟମାନଙ୍କ ସହିତ ବିଶେଷ ମିଶିବାରେ କଣ ଆତ୍ମସମ୍ମାନ ବୃଦ୍ଧି ପାଏ ? ଏହା ସତ୍ତ୍ୱେ ଯଦି ମୁଁ ଏ ସ୍ଥାନ ପରିତ୍ୟାଗ କରେ, ତେବେ ଲୋକେ ମତେ ପ୍ରକୃତ ପାଗଳ ନ କହି ଆଉ କଣ କହିବେ ? କିନ୍ତୁ ମୁଁ ତ ଲୋକଙ୍କ ଆଖିରେ ପ୍ରଥମରୁ ହିଁ ଏକ ବଦ୍ଧ ପାଗଳ ବୋଲି ପରିଚିତ । ମୁଁ ଯେତେ ସଫେଇ ଦେଲେ ମଧ୍ୟ ଲୋକେ ମତେ ଠିକ୍ ମଣିଷ ବୋଲି କହିବେ ନାହିଁ । କାରଣ ଶୈଶବଠାରୁ ଆରମ୍ଭ କରି ବସା ଘର ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ମୁଁ ମୋର ଅବ୍ୟବସ୍ଥିତ ଚିତ୍ତର ପରିଚୟ ଦେଇ ଆସିଛି ।

ଗଣତନ୍ତ୍ର ଯୁଗରେ, ଯେଉଁଠି ମଣିଷ ସାଧାରଣ ଶିଷ୍ଟାଚାର ଆଉ ଭଦ୍ରତା ରକ୍ଷା ମାନସରେ ନୀରବ ରହିଲେ, କମ୍ କଥା କହିଲେ, ଅନ୍ୟମାନେ ବୋକା ବା ଗର୍ବୀ ମନେ କରନ୍ତି ଆଉ ଚଡ଼ାଉ କରି ଭଦ୍ରଲୋକର ଇଜ୍ଜତ ରଖି ଦିଅନ୍ତି ନାହିଁ; ଆଉ ମଧ୍ୟ ମଣିଷ ସମାଜରେ ମିଶି ପ୍ରସଙ୍ଗକ୍ରମେ ନିଜ ଜୀବନର କୌଣସି ଘଟଣାର ଅବତାରଣା କଲେ ଲୋକେ ଦେଖାଇ ହେଉଛି କହି କେଟୁ ସମାଲୋଚନା କରି ଭଦ୍ରଲୋକର ଇଜ୍ଜତ ଉଡ଼ାଇ ଦିଅନ୍ତି—ଯେଉଁ ଯୁଗରେ ହୋଟେଲଠାରୁ ଆରମ୍ଭ କରି ଅଫିସ୍ କାରଖାନା ପର୍ଯ୍ୟନ୍ତ ସବୁଠାରେ ବ୍ୟକ୍ତିତ୍ୱର ହୀନ ପ୍ରତିଦ୍ୱନ୍ଦ୍ୱିତା, ଯେଉଁ ଯୁଗର ପ୍ରତି ବାୟୁକଣାରେ ମଧ୍ୟ ଭରିରହିଛି ପରସ୍ପର ପ୍ରତି ଈର୍ଷା, ଦ୍ୱେଷ ଅହଂକାରର ଜ୍ୱଳାମୟ ହଳାହଳ—ଯେଉଁଠି ମିଥ୍ୟା ନ କହିଲେ ପଦେ ପଦେ ବିପଦର ସମ୍ଭାବନା ଏବଂ ସତ୍ୟୋପର କହିବାକୁ ଗଲେ ଯେଉଁ ଯୁଗରେ ମଣିଷ ସମାଜ ଅସାଧ ଆତ୍ମହେୟଜ୍ଞାନ ରୋଗରେ ପୀଡ଼ିତ, ସେ ଯୁଗରେ ମୋ ନିଜ ପାଇଁ ମୋର ଶ୍ରେଷ୍ଠ ପନ୍ଥକେ ଅମାନତ ହରାଉ, ଲୋକଙ୍କ ଆଖିରେ ମୁଁ ପନ୍ଥକେ କ୍ଷୁଦ୍ରାତିକ୍ଷୁଦ୍ର କୀଟ ସମ ପ୍ରତୀୟମାନ ହୁଏ, ତଥାପି ମୁଁ ସୁସ୍ପଷ୍ଟ ସ୍ୱରରେ ଘୋଷଣା କରିବି ଯେ ଏ ଦୁନିଆଁ ଗୋଟାଏ ପାଗଳା ଗାରଦ ଆଉ ତା ଭିତରେ ବାସ କରିବା ପାଇଁ ହେଲେ ମଧ୍ୟ ବାଧ୍ୟ ହୋଇ ଆମ୍ଭମାନଙ୍କୁ ବଦ୍ଧ ପାଗଳ ସାଜିବାକୁ ପଡ଼ିବ ।



# ଆଜ୍ଞା ! ମୋ କଥା ଟିକଏ ଶୁଣିବେ କି ?

ଶ୍ରୀ ଭାସ୍କର ଚନ୍ଦ୍ର ଖଣ୍ଟାଇ, ଏମ୍. ଏ.

ଆଜ୍ଞା ! ମୋ କଥା ଟିକଏ ମନଦେଇ ଶୁଣିବେ ? କାହିଁକି ନା ମୁଁ ଗୋଟିଏ ଅତି ସାରଗର୍ଭକ ବିଷୟ ଆପଣମାନଙ୍କ ଆଗରେ କହିବାକୁ ଯାଉଛି । ତା ବୋଲି ଆପଣ ଭାବିଲେ କି ମୁଁ ଆପଣଙ୍କ ବୁଝିବା ବା ଶୁଣିବା ଶକ୍ତିକୁ କମ୍ ବୋଲି ଭାବିଲି ? ନାହିଁ ଆଜ୍ଞା ତାହା ନୁହେଁ । ମୋର ଟିକିଏ କହିବାରେ ଭୁଲ ହୋଇଯିବ ବୋଲି ମୁଁ ଭାବୁଛି, ବୁଝି ପାରୁ ନାହାନ୍ତି ? କଥା ଯେତେବେଳେ ଅତି ସାରଗର୍ଭକ ମାନେ ଟିକିଏ ଅତି ଦାମିକା କଥା ତାକୁ ବୁଝେଇ କରି କହିବା କିଛି ସହଜ ବ୍ୟାପାର ନୁହେଁ, ଖାଲି ତ ବୁଝାଇ କରି କହିଲେ ଚଳିବ ନାହିଁ ତାପରେ ଆପଣମାନଙ୍କୁ କିମିତି ଶୁଣିବାକୁ ଭଲ ଲାଗିବ ସେ ବାଟ ମଧ୍ୟ ମାଲୁମ ଥିବା ଦରକାର । ମୁଁ ମୋର ଅନୁଭୂତିରୁ ଦେଖିଛି ଆଜ୍ଞା ଯେତେ ଦାମିକା ହେଲେ ବି ଆମର ଘର ଦରକାରକୁ ଆସିବ ବୋଲି ହଜାର ଥର ଜାଣିଥିଲେ ବି ଯଦି ଶୁଣିବାକୁ ବାଗ ନ ଲାଗିଲା ଖାଲି ହାଇ ଉପରେ ହାଇ ଆସିବ । ନହେଲେ ପରିଶ୍ରା ମାଡ଼ିବ । ସେଇଥିପାଇଁ ମୁଁ ଅଜ୍ଞା ଟିକିଏ ଆଗରୁ ଆପଣ ମାନଙ୍କୁ କହୁଛି । ଯେତେ ହାଇ ମାଡ଼ିଲେ ବା ପରିଶ୍ରା ଲାଗିଲେ ଆପଣ ମୋ କଥାଟି ପୁରାପୁରି ଭାବରେ ଶୁଣି ନସାରି ଅନ୍ୟ କୁଆଡ଼କୁ ମୁହଁ ବୁଲାଇବେ ନାହିଁ । ଏକଥା ଅଜ୍ଞା ମୁଁ ମୋ ସକାଶେ କହୁନାହିଁ, ଆପଣମାନଙ୍କ କଥା ଅଜ୍ଞା । ଆପଣ ମାନଙ୍କ ଦରକାରରେ ଲାଗିବ । ମୋ ସ୍ୱାର୍ଥ-ଭିତରେ ଏତିକି କଥାଟା କହିଦେଲେ ଟିକିଏ ଆଶ୍ୱସ୍ତି ମିଳିବ । ଆଉ କିଛି ନୁହେଁ । କ'ଣ କହିଲେ ଅଜ୍ଞା ? ଉପକ୍ରମଟା ବେଶି ହୋଇଗଲା ବୋଧେ ? ଏଥର କଥାଟା ଆରମ୍ଭ କରିବି । ହଁ ଅଜ୍ଞା, ମୁଁ ବି ତାହା ଅନେକ ବେଳୁ ବୁଝିପାରିଲିଣି । ହେଲେ କ'ଣ କରିବି, ନିହାତି ଯେତିକି ନ କହିଲେ ଚଳିବ ନାହିଁ ସେତିକି ତ ପୁଣି କହି ସାରିଲେ କଥାଟା ଆରମ୍ଭ କରିବି ? ମୋର ବି ଆଜ୍ଞା ସମୟ ଅତି ଅଳ୍ପ ।

ଆପଣ ଏ ପଦକ ନ କହିଥିଲେ ମୁଁ ଠିକ୍ ଆରମ୍ଭ କରିବାକୁ ଯାଉଥିଲି । ଆପଣମାନେ ଏମିତି ଗୋଳମାଳ କଲେ କିବା ମନ୍ତବ୍ୟ ପ୍ରକାଶ କଲେ ମୁଁ ପୁଣି ତାର ଜବାବ ଦେଉ ଦେଉ ଅଯଥା ବିଳମ୍ବ ହେବ । ବୁଝୁ ନାହାନ୍ତି ? ଆପଣ ମୋର ଉଦ୍ଦେଶ୍ୟଟା ବୁଝି ନପାରି ଯେତେବେଳେ ପଦେ କଥା କହିଦେଲେ ମୁଁ ତ ପୁଣି ତାକୁ ବୁଝେଇ ଦେବା ଦରକାର ? ନହେଲେ ମୋର କହିବାରେ କିଛି ମୂଲ୍ୟ ରହିବ ନାହିଁ । ଏତେ ପରିଶ୍ରମ କରି ସମୟ ବ୍ୟୟ କରି କହିବା ଅପେକ୍ଷା ନ କହିଲେ ଭଲ । କାହିଁକି ମୁଁ ଏକଥା ଆପଣମାନଙ୍କୁ କହୁଛି କିଛି ବୁଝି ପାରିଲେ ଆଜ୍ଞା ? ନ କହିବା କାହିଁକି ଭଲ କ'ଣ କିଛି ବୁଝି ପାରୁ ନାହାନ୍ତି ? ଆପଣମାନେ ରେଡ଼ିଓ ପ୍ରତ୍ୟେକ ଦିନ ଶୁଣନ୍ତି ତ ? ବେତାରର ସୁରେନ୍ ବାବୁ (ସୁରେନ୍ ମହାନ୍ତି)ଙ୍କୁ ଚିହ୍ନନ୍ତି ? ସେ ବେତାର ମାଧ୍ୟମରେ ଆମକୁ ଅଧିକାଂଶ ସମୟରେ କ'ଣ ଶୁଣାନ୍ତି ? କୌଣସି ଜିନିଷ ଆମକୁ ବୁଝାଇବା ବା କହିବା ଅପେକ୍ଷା 'ନ କହିଲେ ଭଲ' । ଏହାର ମାନେ କ'ଣ ବୁଝିଲେ ତ ? ସେଇକଥା ସବୁବେଳେ ଶୁଣି ଶୁଣି ମୋର ବି ଗୋଟିଏ ବଦଭ୍ୟାସ ହୋଇଗଲାଣି । ଭଲରେ ମନ୍ଦରେ, ଖାଇଲା ପିଇଲା ବେଳେ ଏମିତିକି ବନ୍ଧୁ ବାନ୍ଧବଙ୍କ ନିକଟକୁ ଚିଠି ପତ୍ର ଲେଖିଲାବେଳେ ବି ମୁଁ କଥା ପ୍ରସଙ୍ଗରେ ସେହିକଥା ଲେଖି ଦେଉଛି । କ'ଣ କ୍ଷମା କରିବେ ନି ଅଜ୍ଞା ? ଆଶାକରେ ନିଶ୍ଚୟ କ୍ଷମା କରିବେ ।

[କ୍ରମଶଃ]

# ॥ ସାହାଣ ମେଳା ॥

ଶ୍ରୀ ପୁଳିନ ବିହାରୀ ରାୟ

ଟ୍ରେଜେରୀ ଅଫିସ, ମାସ ଶେଷ ହେଲେ ଲୋକଙ୍କର ବେଶୀ ଗହଳି, ଡାକ୍ତର, ପୁଲିସ, ଇଞ୍ଜିନିୟର, ପ୍ରଫେସର, ଲେକ୍‌ଚରର୍, ବି.ଡ଼ି.ଓ. ସରପଞ୍ଚ, କଣ୍ଟ୍ରାକ୍‌ଟର, ହାକିମ, ଚପରାସୀ, ଭଦ୍ରଲୋକ, ଟାଉଟର, ପକେଟ୍‌ମାର, ବିଲ୍, ଚେକ୍, ଚାଲାନ ସବୁ ଏକାଠି ।

ଅଫିସ ବାରଣ୍ଡାରେ ଠେଲା, ପେଲା, ଧକାମ; ଧକା, ଧସ୍ତାଧସ୍ତି, ଲୋକଙ୍କର ଗୋଡ଼ର ଶବ୍ଦ— ଦୁଲ୍‌ଦାଲ୍, ଧପଧାପ, ମଚମାଚ·

ଆସିବା, ଯିବା, ଦବା, ନବା, ଖୋଲାଖୋଲି, ଲୁଚ୍ଚ ଷ୍ଟେର, ଦରମା, ପାଉଣା, ଡ୍ର, ଡିପୋଜିଟ୍‌ର କୋଳାହଳ ଲାଗିଛି ।

ଏ ଗଲା ଯବାନ୍, ଭେଣ୍ଡା, ଅଧୁଆଡ଼ଙ୍କ ଘଟଣା, ଯେଉଁମାନଙ୍କର ଚାକିରି ଅଛି, ବ୍ୟବସାୟ ଅଛି, ଦେହରେ ବଳ ଅଛି, ହାକିମୀ ଅଛି, ସେ ଭାବୁଛନ୍ତି— ଇମିତି ଯବାନୀ ଥିବ, ଚାକିରି ଥିବ, ଐଶ୍ୱର୍ଯ୍ୟ ଥିବ, ବ୍ୟବସାୟ ଚାଲିଥିବ, ଭବିଷ୍ୟତ ଚିନ୍ତା ନାହିଁ, ଦେହ ଇମିତି ଚିକ୍‌କଣ ଥିବ, ବାଳ କଳା ଥିବ, ଦାନ୍ତ ମଜଭୁତ ଥିବ, ଆଖିରେ ଜ୍ୟୋତି ଥିବ, ଗାଲ ଇମିତି ଫୁଲି ରହିଥିବ, ଶତ୍ରୁ, ମିତ୍ର, ପରିଚିତ ଅପରିଚିତଙ୍କର ଟ୍ରେଜେରି ଅଫିସ, ବାରନ୍ଦା ପ୍ରତ୍ୟେକ ମାସର ଶେଷରେ ଗୋଟାଏ ପ୍ରଧାନ ମିଳନ ପୀଠରେ ପରିଣତ ହେଉଥିବ···

ଏମାନେ ହେଲେ ଜୀବନର ଆଲୋକରେ ଯାତ୍ରିମାନ ଏମାନେ ଭାବୁ ନାହାନ୍ତି - ଏଇ ଜୀବନର ଯେ ଗୋଟାଏ ଅନ୍ଧକାର ଅଂଶ ଅଛି, ଏଇ ଅଂଧକାର ଅଂଶରେ କେତେକ ଲୋକ ଅଛନ୍ତି, ଯେଉଁମାନେ ଦୀର୍ଘ ଅତୀତ ଶୈଶବ, ବାଲ୍ୟାବସ୍ଥା, ଯୌବନ ଅତିକ୍ରମ କରି ବାର୍ଦ୍ଧକ୍ୟରେ ପହଞ୍ଚିଲେଣି । ଜୀବନ ତମସାଚ୍ଛନ୍ନ, ଏମାନଙ୍କୁ କେହି ଅନେଇ ଯାଉନାହାନ୍ତି, ଏମାନେ ମଧ୍ୟ ଦିନେ ଇମିତି କେତେ ଟ୍ରେଜେରୀ ବାରନ୍ଦାକୁ ଯୌବନର ଆଧିକ୍ୟରେ ପ୍ରାଣର ପ୍ରାଚୁର୍ଯ୍ୟରେ ସରଗରମ କରିଥିଲେ, ଆଜି ଆଉ ସେଦିନ ନାହିଁ। ଟ୍ରେଜେରୀ ବାରଣ୍ଡାରେ ଲୋକ ଗହଳି ଦେଖି ପ୍ରାଣର ଭୟରେ—କିଏ ଠେଲି ଦେବ; ମାଡ଼ି ପକେଇବ, କାର ଧକ୍‌କା ବାଜିବ, ନିଜର ମାନସମ୍ମାନ ଇଜ୍ଜତକୁ ଜଗି ଉଭି ଟ୍ରେଜେରୀର ବାରଣ୍ଡାର ଗୋଟିଏ ପାଖରେ ଦୂରରେ ରୁଣ୍ଡ ହୋଇଛନ୍ତି, ଖଣ୍ଡିଏ ଖଟିଆ ପଡ଼ିଛି, କେତେକ ତାରି ଉପରେ ବସିଛନ୍ତି, କେତେକ ତଳେ କାନ୍ଥକୁ ଆଉଜି ବସିଛନ୍ତି, କିଏ ବସି ବସି ଢୋଳେଇଲେଣି । ଦେହରେ ବଳ ନାହିଁ, ମୁଣ୍ଡରେ ପାଚିଲା ବାଳ, କେତେକଙ୍କର ଦାନ୍ତ ଅଳ୍ପ କିଛି ଅଛି ତ କିଏ ପୂରାପୂରି ପାକୁଆ, କିଏ ଆଖିରେ ଦେଖି ପାରୁଛି ତ, କାର ଆଖିରେ ଆଉ ଦିଶୁନାହିଁ, ଗାଲ ଠାକରା, ଅଣ୍ଟା ନଇଁ ପଡ଼ିଲାଣି, କାର ବୟସ ହେଲେ ମଧ୍ୟ, ବେଶ୍ ଟାଣୁଆ ଅଛି, ଠୋସ୍ କଥା, ହଟଚମଟି ଆଲୋକ, କଥାଏ କଥାଏ ରସ, କଥାଏ କଥାଏ ହସ···

ଏମାନେ ହେଲେ ଅବସରପ୍ରାପ୍ତ କର୍ମଚାରୀ, ପେନ୍‌ସନ୍ ବାଲା—ଜୀବନର ତମସାଚ୍ଛନ୍ନ ଗୋଷ୍ଠୀ, ଜନ୍ମ କେତେ ପଛରେ ପଡ଼ିଲାଣି, ମୃତ୍ୟୁ ନିଆଣ ଟିକି ଟାକି ବସିଲାଣି—ବେଳଉଣ୍ଡି ଝାମ୍ପି ନେବ, ତଥାପି ଜୀବନ ଅଛି, ନିଜର ଶକ୍ତି ଅନୁଯାୟୀ ଗପ ଚାଲିଛି···

ହରିବାବୁଙ୍କ ସହିତରେ ସାଧୁବାବୁଙ୍କର ଭେଟ ହେଲା । ସାଧୁବାବୁ ଆଖିରେ ଆଉ ଭଲ ଦେଖି ପାରୁ ନାହାନ୍ତି, ତଥାପି ଦିହେଁ କୁଣ୍ଢାକୁଣ୍ଢି ହେଇ-

ଗଲେ । ଉଭୟେ ଉଭୟଙ୍କର ସମୁଖୀ, ସାଧୁବାବୁ କାନ୍ଧ ପକେଇ କହିଲେ—ଆମେ ପାଚିଲା ଗାଳ ହେଲୁ, ଆମର ସମୟ ହେଇ ଅସିଲା, ଆଉ ବେଶି ଦିନ ନୁହେଁରେ···

ସାଧୁବାବୁଙ୍କର ଝିଅ ବାହା ହୋଇଥିଲା, ହରି-ବାବୁଙ୍କ ପୁଅକୁ । ଝିଅ ଅନେକ ଦିନ ଆଗରୁ ମରି ଯାଇଛି । ସାଙ୍ଗରେ ଆସିଛି ଗୋଟିଏ ଚାକର । ସେଇ ଧରାଧରି କରି ନିଆଅଣା କରୁଛି । ପାଣି ମାଗିଲେ ପାଣି ଆଣି ଦେଉଛି, ପାନ ମାଗିଲେ ପାନ ଛେଚି ଦେଉଛି···

ଆଉ ଗୋଟାଏ ଜାଗାରେ କଣିକିଆ ହୋଇ ତିନି ଚାରିଜଣ ବୁଢ଼ା ବସି ଗପ କରୁଛନ୍ତି । ଗପର ବିଷୟବସ୍ତୁ ହେଲା—ଆଜିକାଲିର ମହରଗ ଯୁଗ, ଅତ୍ୟଧିକ ଦର ବୃଦ୍ଧି, ପେନ୍‌ସନ ନିଅଣ୍ଟ । ଗୋରାଙ୍କ ଅମଳ, ପରାଧୀନ ଦେଶ, ଆଜିକାଲି ସ୍ୱାଧୀନ ଦେଶ, ରାମରାଜ୍ୟ କାହାକୁ କହନ୍ତି ? ଶସ୍ତା ଯୁଗ କୁଆଡେ ଗଲା ? ଆଜିକାଲି ଲୋକେ କି ଛଟପଟ ହେଉଛନ୍ତି । ଜଳ ବିହୁନେ ମୀନ, ଥୋକାଏ ସୁଖ କଲେ । ଆମେ ମଲୁ । ଦାନା କନା ମିଳୁନାହିଁ । ଟଙ୍କା ଗୋଟାଏ କିଛି ନୁହେଁ···

କିଏ କଥା କହୁ କହୁ କାନ୍ଦୁଛି, କିଏ ଆଖିରୁ ପେଞ୍ଚୁଡ଼ା କାଢ଼ୁଛି, କିଏ କଥା କହୁ କହୁ ଆଖି ବୁଜି ଢୋଳେଇ ପଡ଼ୁଛି···

ଶେଷ ମନ୍ତବ୍ୟ—ଆମେ ପେନ୍‌ସନବାଲା ମଲୁ···

ଅଳ୍ପ ଦୂରରେ ଜଣେ ସନ୍ୟାସୀ ପରି ଲୋକ ବସିଛନ୍ତି । ଦେହରେ ଗେରୁଆ ବସନ, ନାମାବଳି, ପାଚିଲାବାଳ, ପାଚିଲା ଦାଢ଼ି, ବେକରେ ତୁଳସୀ ମାଳି, ହାତରେ ମାଳା ଝୁଲି, ମଝିରେ ମଝିରେ ମାଳା ଝୁଲି ମୁଣ୍ଡରେ ଛୁଆଁ ହେଉଛି, କାହାରି ସାଙ୍ଗରେ କଥା ନାହିଁ, ନୀରବ, ଯେମିତି ଭଗବତ୍ ପ୍ରେମରେ ବିଭୋର । ଚାକିରି ଜୀବନରେ ଡାକ୍ତର ଥିଲେ । ଯୌବନ ସମ୍ଫୁଟା କେତେ ରଙ୍ଗୀନ, କେତେ ରହସ୍ୟମୟ । ପ୍ରାୟ ମନ ଭିତରେ ଓଡ଼ିଉ ଉଠୁଛି—ଶ୍ରୀକୃଷ୍ଣଙ୍କ ସହିତରେ ଗୋପୀମାନଙ୍କର ରାସଲୀଳା ପରି, ପଢ଼ିବାବେଳେ, ଚାକିରି ଜୀବନରେ କେତେ ଗୋପିଣୀ କୁଆଡେ ଗଲେ—ବିନୋଦିନୀ, ପ୍ରମିଳା, ବାସନ୍ତୀ, ସବିତା···

ଆଜି ବଳ ପାଉନି, ଯୌବନ ବେଳର କଥା, ମନର ଗତି କ'ଣ ? ଆଜିକାଲି ବଳ ହଟିଲାରୁ ମାଳ ଟପ ଟପ ଗୋଳୁଛି, ବୁଢ଼ା କାଳେ ରାମାନନ୍ଦୀ ଚିତା, ଶେଷ ଫଳ—ପେନ୍‌ସନ ଗଣ୍ଡାକ ଆସି ନବା ପାଇଁ ବଳ ପାଉନି···

ଜଣେ ବୁଢ଼ା ପେନ୍‌ସନ୍ ନବା ପାଇଁ ଶଗଡରେ ଆସିଛନ୍ତି । ସାଙ୍ଗରେ ଦ୍ୱିତୀୟ ପକ୍ଷର ଯୁବତୀ ସ୍ତ୍ରୀ, ଆଉ ଗୋଟିଏ ଦଶ ବାର ବର୍ଷର ପୁଅ, ତକିଆ, ବିଛଣା ପାଣି ଲୋଟା, ଗାମୁଛା, ପାନକୁଟା ସବୁ ଆସିଛି, ଶଗଡ଼ିଆ, ଚାକର, ଔଷଧ···

ଚାକିରି ଜୀବନରେ ପେସକାର ଥିଲେ । ମର୍ଦ୍ଦରାଜ ପେସ୍‌କାର ବୋଲି ସମସ୍ତେ ଜାଣନ୍ତି, ଆଉ ବେଶି ଦିନ ନୁହେଁ, ବଳ ହଟିଲାଣି, ଦେହ ଭାଙ୍ଗିଲାଣି, ରୋଗ ଧରିଲାଣି—ଖୁଁ ଖୁଁ କାଶ, ଖର ନିଶ୍ୱାସ, କାଶି କାଶି ଲଙ୍ଗଳା ମୁକୁଳା ହୋଇ ପଡ଼ୁଛନ୍ତି । କୁଆଡେ ଯାଏ ସେ ବେଳ ।

ଏମିତି ବେଳ ବି ଶେଷ ଜୀବନରେ ଆସେ । କୁଟା ଖଣ୍ଡିକ ଦି'ଖଣ୍ଡ କରିବାକୁ ବଳ ପାଏନା···

ଦ୍ୱିତୀୟ ପକ୍ଷର ସ୍ତ୍ରୀ ଭାବୁଛି—ସରିଗଲା, ପ୍ରତ୍ୟେକ ମୁହୂର୍ତ୍ତରେ ମନେ ପଡ଼ୁଛି—ସିନ୍ଦୁର, ଶାଢ଼ୀ, କାଚ, ଅଳତା ସବୁ ଛାଡ଼ିବାକୁ ହେବ···

ଜଣେ ବୁଢ଼ା ବସିଥିଲେ—ଦେଖିଲେ ମନେହୁଏ—ଚାକିରି ଜୀବନରେ କଣ ଗୋଟାଏ ହାକିମ ଥିଲେ, ହଠାତ୍ ଗୋଟାଏ ଲୋକ ଆସି ପୁଲିସ ଭାଷାରେ ସ୍ୟାଲୁଟ ବଜେଇଲେ ।

ଜଣେ ପୁଲିସ ଇନ୍‌ସ୍‌ପେକ୍‌ଟର, ଆଉ ଜଣେ କନ୍‌ଷ୍ଟାବଲ୍, ଏକାଠି ଚାକିରି କରୁଥିଲେ । ବର୍ତ୍ତମାନ ଏକାଠି ପେନ୍‌ସନ୍ ନବାକୁ ଆସିଛନ୍ତି । ଉଭୟଙ୍କ

ମଧ୍ୟରେ ଗପ ଚାଲିଲା — ତାଙ୍କର ଚାକିରିବେଳେ ସେମାନେ କେମିତି କାମ କରୁଥିଲେ । ଆଜିକାଲି ପୁଲିସ କର୍ମଚାରୀ କିମିତି କାମ କରୁଛନ୍ତି । ଚୋରି, ଡକାୟତି, ମର୍ଡର ଗଣ୍ଡାକୁ ଗଣ୍ଡା ବଢ଼ି ଚାଲିଛି । ନୂଆ ନୂଆ ଧରଣର ଡକାୟତି ସବୁ ଫସରଫାଟ । କିଂ କାମ କରୁଛନ୍ତି ଏମାନେ । ତାଙ୍କ ସମୟରେ କଣ ଏତେ ଚୋରି, ଡକାୟତି, ମର୍ଡର ଥିଲା ? ସବୁ ଜବତ୍ କରି ରଖିଥିଲେ, ଏବେ ତ ଖାଲି ଧରା-ଧରି ଖସପଡ଼ୁ···

ଜଣେ ବୁଢ଼ା ଶିକ୍ଷକ, ତାଙ୍କର ଜଣେ ଛାତ୍ର ମଧ୍ୟ ବୁଢ଼ା, ଉଭୟେ ପେନ୍‌ସନ ନବାକୁ ଆସିଛନ୍ତି ।

ଶିକ୍ଷକ ବଞ୍ଚିଛନ୍ତି, ଛାତ୍ର ବୁଢ଼ା ହୋଇ ପେନ୍‌ସନ ପାଇଲେଣି । ଉଭୟଙ୍କର ଭେଟ ହେଲା, ଗପ ଚାଲିଲା—ସେଇ ଆଗ ଅମଳରେ ଛାତ୍ର କିମିତି ପାଠ ପଢ଼ୁଥିଲେ, ଗୁରୁଙ୍କୁ କିମିତି ମାନୁଥିଲେ, ଶିକ୍ଷକଙ୍କୁ କେତେ ଭୟ କରୁଥିଲେ, କେତେ ଭକ୍ତି କରୁଥିଲେ, କେତେ ସମ୍ମାନ ଦେଉଥିଲେ, ଶିକ୍ଷାର ମାନ କଣ ଥିଲା, ଏବେ କଣ ହେଲା ?—ଶହ ଶହ ସ୍କୁଲ, ଶହ ଶହ କଲେଜ, ପାଠ ବୋଲି କିଛି ନାହିଁ, ଇଂରେଜୀ କି ଓଡ଼ିଆରେ ଖଣ୍ଡେ ଶୁଦ୍ଧ ଭାବରେ ଦରଖାସ୍ତ ଲେଖି ପାରୁ ନାହାନ୍ତି ।

ଆଜିକାଲି ତ ଟିକିଏରେ ଛାତ୍ରମାନଙ୍କର ଧର୍ମଘଟ, ଘେରାଉ, ଅନଶନ, ପରୀକ୍ଷା ତ କିଛି ନୁହେଁ । ଇଚ୍ଛା କଲେ ମୁହୂର୍ତ୍ତକେ ପରୀକ୍ଷା ବନ୍ଦ । ଲାଉଡ୍‌ସ୍ପିକରରେ ପ୍ରଶ୍ନର ଉତ୍ତର କୁହାଯାଉଛି । ପରୀକ୍ଷାରେ ଯେ ଗାର୍ଡ ହେଲେ, କପି ଧରିଲେ, ତାଙ୍କର ଜୀବନ ବିପନ୍ନ । ସାଙ୍ଗରେ ଛୁରି ନେଇ ପରୀକ୍ଷା ଦବାକୁ ଆସୁଛନ୍ତି । ଏଣେ 'ଗୁରୁଦିବସ' ପାଳନ ହଉଛି ତ, ତେଣେ ଶିକ୍ଷକଙ୍କୁ ଅସମ୍ମାନର ବାକି ନାହିଁ···

ଦି'ଜଣ ବୁଢ଼ା, ଚମ ଓହଳିଛି ଉଭୟଙ୍କର, ଦୁଇଜଣ ଦୁଇଟା ଭିନ୍ନ ସ୍କୁଲରେ ପାଠ ପଢ଼ୁଥିଲେ, ଉଭୟେ foot ball ଖେଳାଳୀ ଥିଲେ । ଜଣେ ସ୍କୁଲଟିମ୍‌ରେ ଖେଳିଲାବେଳେ ଅନ୍ୟ ଜଣକର ଟିମ୍‌କୁ ଫାଇନାଲ ମ୍ୟାଚ୍‌ରେ ହରେଇ କପ୍ ଜିତି-ଥିଲେ । ତାର ସେହି ଜିତାପଟର ମନୋଭାବ ଏ ବୁଢ଼ା ବୟସରେ ଏପର୍ଯ୍ୟନ୍ତ ଅଛି । ସେହି ଦାମ୍ଭିକତା, ସେଇ ଗର୍ବ, ତାଙ୍କ ଟିମ୍ ହରେଇଥିଲା । ସେ କେଡ଼େ ବଡ଼ ଖେଳାଳୀ ଥିଲେ···

ଯେ ହାରିଯାଇ ଥିଲେ, ଏବୁଢ଼ା ବୟସରେ ସେହି ହାରିବା ବେଳର ମନୋଭାବ, ସରମ, ଲଜ୍ଜା, ସେହି ଦିନର ସ୍ମୃତି—କଣ ହେଲା ! ଅଳ୍ପକରେ ସେମାନେ ହାରିଗଲେ ! ରେଫରୀ ହରେଇ ଦେଲା, ଉଭୟେ ବୁଢ଼ା ଅନାଅନି ହେଲେ, ସାମାନ୍ୟ ହସ, କଥା, ଯେ ଜିତି-ଥିଲା, ତାର ଇଚ୍ଛା—ଆହୁରି ଗପ କରିବାକୁ, କିନ୍ତୁ ଯେ ହାରିଥିଲା, ତାର ଇଚ୍ଛା ନୁହେଁ ତା' ସମ୍ବନ୍ଧରେ ଗପ କରିବାକୁ, ବାଁଆଡ଼େଇ ଅନ୍ୟ କୁଆଡ଼େ ଯିବାର ଉଦ୍ୟମ ।

ଆଉ ଦୁଇଜଣ ବୁଢ଼ା, ଦି' ଜଣଙ୍କ ବୟସ ସମାନ ସମାନ ହବ । ଯମ ନବା ପାଇଁ ଉଭୟଙ୍କର ଦେହର ଅବସ୍ଥା ସବୁ ବାଗେଇ ଆସିଲାଣି । ଆଉ ବେଶିଦିନ ନୁହେଁ, ଉଭୟେ ପଢ଼ୁଥିଲେ ଗୋଟାଏ ସ୍କୁଲରେ, ଗୋଟାଏ କ୍ଲାସରେ । କେବେ ପିଲାବେଳେ ପଢ଼ିବା ସମୟରେ କଳିକଜିଆ ହୋଇଥିଲା । ଦୁଇଜଣ ଭିନ୍ନ ଭିନ୍ନ ବିଭାଗରେ ଚାକିରି କରି ପେନ୍‌ସନ ପାଇଲେ । ଟ୍ରେଜେରୀରେ ପ୍ରତିମାସରେ ଏଣିକି ଭେଟ, କିନ୍ତୁ ପିଲାବେଳର ସେଇ କଳି କଜିଆରେ ଯେ କଥାବାର୍ତ୍ତା ବନ୍ଦ ଥିଲା, ଆଜି ମଧ୍ୟ ସେଇଆ । ଜଣଙ୍କର ମୁହଁ ଇଆଡ଼େ ତ ଆଉ ଜଣକର ମୁହଁ ସିଆଡ଼େ, ପରସ୍ପର ପରସ୍ପର ମୁହଁକୁ ଆଉ ଅନଉ ନାହାନ୍ତି···

ଚାକିରି ଜୀବନରେ କିଏ ହାକିମ ଥିଲାବେଳେ କିଏ ତଳିଆ କର୍ମଚାରୀ ଥିଲା । କିରାଣି ହଉ କି ଚପରାସୀ ହଉ, କେଉ ହାକିମ କେଉ କିରାଣୀକୁ କି କେଉ ଚପରାସୀକୁ ଦଣ୍ଡ ଦେଇଥିଲା, ବଦଳି କରିଥିଲା, ଅସୁବିଧାରେ ପକେଇଥିଲା, ସେଇଁ ଚାକିରି ଜୀବନରେ ତଳିଆ କର୍ମଚାରୀର ଯେଉଁ ବିଦ୍ୱେଷ, ଯେଉଁ ଘୃଣା, ଗାଳି, ଅପଦସ୍ଥର, ଆଜି ମଧ୍ୟ ସେଇଆ; ସେହି ଭକ୍ତ

ମନୋଭାବ, ସେଇ ଗାଳ—ଶଶୁର ପୁଅ, ଚାଂପଟାଏ, ଖେଚଡ଼ାଟାଏ, ଲଫଙ୍ଗାଟାଏ, ଲାଂଚ ଦେଲେ ମୁହଁକୁ ଅଣେଇବ, ଲାଂଚ ନ ଦେଲେ ମୁହଁକୁ ଅଣେଇବ ନାହିଁ, ପକ୍କା ସ୍ୱାର୍ଥପର, ଏଡ଼େ କଡ଼ା ! ଏଡ଼େ ନିଷ୍ଠୁର !

ଚାକିରି ଅମଳ ଯାଇ ପେନ୍‌ସନ୍ ନେଲେ, କିନ୍ତୁ ମନରେ ସେହି ବିଦ୍ୱେଷ, ସେହି ହିଂସା, ତଳିଆ କର୍ମଚାରୀ ଉପରିସ୍ଥ କର୍ମଚାରୀଙ୍କୁ ଦେଖିଲେ ଗୋଟାଏ ନମସ୍କାର ନାହିଁ । ସମ୍ମାନ ନାହିଁ । ପୂର୍ବ ବେଖାତିର ଭାବ—ତୁ ହାକିମ ହେଇଥିଲୁ, ଆଜି ପେନ୍‌ସନ୍ ନବା ପାଇଁ ଆସିଛୁ, ମୁଁ ଚପରାଶୀ ହେଇଥିଲି, ମୁଁ ବି ଆଜି ପେନ୍‌ସନ୍ ପାଇଁ ଆସିଛି···

ବୁଢ଼ାମାନଙ୍କ ଭିତରେ ଯେ ଦାନ୍ତ ବଂଧେଇଛି, ସେମାନଙ୍କର କଥାଏ କଥାଏ ହସ, ଠୋସ୍ କଥା, ମୁଣ୍ଡରେ ଧଳାବାଳ ନ ଥିଲେ, ଚମ ଧୁଡ଼ୁକା ହେଇ ନ ଥିଲେ, ପୁରା ଟୋକା ଯବାନ ମନୋଭାବ···

ଯେ ଦାନ୍ତ ବଂଧେଇ ନାହିଁ, ପାକୁଆ, ଓଠ ଦ'ଟା ଭିତରକୁ ପଶି ଗଲାଣି, କଥା ଅସ୍ପଷ୍ଟ, ବୁଝା ଯାଉନ, ଲାଳ ଗଳି ପଡ଼ୁଛି, ପାନପିକ ଚୋପାପଡ଼ ଜାମା, ଚାଦରରେ ଲାଗି ଯାଉଛି, ତାର ମନେ ମନେ ସରମ ସରମ ଭାବ···

ଚାକିରି ଜୀବନରେ ଯେଉଁମାନେ ସବୁ ଜାମ ସାରିଛନ୍ତି, ପେନ୍‌ସନ୍ ଗଣ୍ଡାକ ତାଙ୍କୁ କିଛି ନୁହେଁ । ଯେମିତି ଗୋଟାଏ ଉପୁରି କିଛି ମିଳୁଛି, ତିନି ଚାରି ମାସରେ ଥରେ ନେଲେ ଚଳେ ।

ଆଉ ଯେଉଁମାନେ ଚାକିରି ଜୀବନରେ କିଛି କରିପାରି ନାହାନ୍ତି, ପେନସନ୍ ଗଣ୍ଡାକ ସମ୍ବଳ, ସେମାନେ ଭାବୁଛନ୍ତି—ପେନ ସନ୍ ଟଂକା ମିଳିଲେ, ଏଇଥର ବଜାର କରି, ଜିନିଷ କିଣି, ଔଷଧ କିଣି ଘରକୁ ଫେରିବେ, ପ୍ରତି ମାସରେ ପେନ୍‌ସନ୍ ଟଂକା ନବାକୁ ହୁଏ । ଦିନେ ଡେରି ହେଲେ ଅଚଳ ଅବସ୍ଥା···

ଏଇ ପେନ୍‌ସନ୍‌ବାଲାଙ୍କୁ ଏକଜୁଟ ହବାର ଯେ ଦେଖୁଛନ୍ତି, ସେମାନଙ୍କ ମଧ୍ୟରୁ କେତେକ ଏମାନଙ୍କ ପ୍ରତି ସହାନୁଭୂତିଶୀଳ ହେଇ କୁହାକୁହି ହଉଛନ୍ତି—

—ଏମାନେ କଣ ପେନ୍‌ସନ୍ ପାଉଛନ୍ତି ?

—ହଁ ।

—ଆଜି ତ ବହୁତ ପେନ୍‌ସନ୍‌ବାଲା ଆସିଛନ୍ତି !

—ହଁ, ହାକିମ କୁଆଡ଼େ ସେମାନଙ୍କୁ ଡକେଇଛନ୍ତି ଦେଖିବା ପାଇଁ···

—ସେମାନେ କଣ ଆଜି ହାକିମଙ୍କ ସଂଗେ ଦେଖା କରିବେ ?

—ହଁ ।

—ଏମାନେ କେତେ ଖଟି ନାହାନ୍ତି ! ଆଜି ଜୀବନର ଶେଷ ଅଂକରେ ଆସି ପହଁଚିଲେଣି, ଆଉ ଦେହରେ ବଳ ନାହିଁ, ମନରେ ଉତ୍ସାହ ନାହିଁ, ପ୍ରାଣରେ ଉତ୍ତେଜନା ନାହିଁ । ଖାଲି ମୃତ୍ୟୁର ଅପେକ୍ଷାରେ ଅଛନ୍ତି···

—ଆମର ବି ଦିନେ ଇମିତି ଅବସ୍ଥା ହବ, କେହି ବାଦ ଯିବେ ନାହିଁ । ସେମାନେ ହେଲେ ତ ଏତେଦିନ ଯାଏ ବଂଚି, ଚାକିରି କରି, ପେନ୍‌ସନ୍ ପାଉଛନ୍ତି, ଆମେ ଏତେଦିନ ଯାଏ ବଂଚିବା କି ନା ସଂଦେହ···

ଆଉ ଜଣେ କହିଲା—ଏ ସାହାଣ ମେଳାରେ ହଇ ହାହାଣ ମେଳା···



(୧୦ ପୃଷ୍ଠାର ଅବଶିଷ୍ଟାଂଶ)

ଗଲା, ହାଲୁଚା ଶୁଖିଗଲା, ହାତ ହାତ ଅବଶ ଅବଶ ଲାଗିଲା । ସନ୍ତର୍ପଣରେ ମଠ ଦୁଆରେ ଆସି ଉଙ୍କି ମାରନ୍ତେ ଦେଖିଲେ ମାଞ୍ଜ ତ୍ର' ଜଣ ଟୋକା ବସି ଧିଟମଇ ଧିଟମଇ କୀର୍ତ୍ତନ କରୁଛନ୍ତି । ଆଙ୍କୁ ଦେଖି ମାଗୁଣିଆଟା କହି ଉଠିଲା—"କେଲେ ଗନ୍ଧଆ ଭାଇ କଲେ ! ଆଜ ଏତେ ଡେରି କଆଁ ମ ? ତୁମ ତିନଜଣଙ୍କୁ ଅନେଇ ଅନେଇ ଆମ ଆଖିରୁ ପାଣି ମଲାଣି । ଆସ ଆସ ଶୀଘ୍ର ଖାଇଦଅ, ବହୁତ ରାତି ହେଲାଣି ।"

ଓଃ ! "ଏ ମନ ମାଞ୍ଜୁଥାଏ ଯାହା କାଳେ ପ୍ରାପତ ହୁଏ ତାହା" ପ୍ରାଣଟା ବଞ୍ଚିଗଲା ବୋଲି ଆଶ୍ବସ୍ତିରେ ଏକ ନିଃଶ୍ବାସ ମାରିଲେ । ହେଲେ ମଙ୍ଗୁଳିଆଟା ହେଲ ସବୁ ଅମଙ୍ଗୁଳିଆର କାରଣ । ସେ କହି ଉଠିଲା "ହେମା ଭାଇ ! ଆମକୁ ଭାରି ଭୋକ ହେଲାଣି, ତମେ ଟିକିଏ ଖୋଳଟା ଧରିପକା ଆମେ ଗଣ୍ଡେ ଗଣ୍ଡେ ନାକରେ କାନରେ ପୂରେଇ ପାରେଇ ଦେଇ ଆସି ବସିବୁ ଆଉ ତୁମେ ତାପରେ ଖାଇ ଘରକୁ ଯିବ । ବଡ଼ ବିଷମକଥା, ତିନହେଁ କ'ଣ ବିଚାରିଲେ କେଜାଣି 'ହଉ' କହି କୀର୍ତ୍ତନରେ ବସି ପଡ଼ିଲେ ।

ଖାଇବା ଚାଲିଛି···ହେଲେ ମନ ଘୂରୁଛି ଅନ୍ୟ-ଆଡ଼େ । ଯେପରି ଏ ତିନିସଖା ବାଟୁଳା ଖିଆଙ୍କୁ ନାମ ଦେବେ ଠିକ୍ ସେତିକିବେଳେ ଡାଲି, ଖିରି, ଖଟା, ତରକାରି ଇତ୍ୟାଦି ଇତ୍ୟାଦିର ବାସନା ଏମାନଙ୍କ ନାକରେ ବାଜି ଜିଭ ଅସ୍ଥିର ହୋଇ ଉଠୁଥାଏ । ମହନ୍ତଙ୍କ ଆଗରେ ଖଟା ରଚିଲା ପରି ପାଟିରୁ ଲାଳ ଗଳି କୀର୍ତ୍ତନ ମଝିରେ ମଝିରେ ଛୁଡ଼ି ଯାଉଥାଏ । ଏତିକିବେଳେ ପଛରୁ ଶୁଣିବାକୁ ପାଇଲେ—"ଭାଇରେ ! ଶ୍ରୀ ଚୈତନ୍ୟ ବଡ଼ ଦୟାମୟ, ଜିହ୍ବା କରିବାରେ ଜୟ, ସୁପ୍ରସାଦ ଅଳ୍ପ ଦିଲ ଖାଏ; ସୁପ୍ରସାଦ ଅନ୍ନ ଖାଅ" ରାଧାକୃଷ୍ଣ ଗୁନ ଗାୟ ପ୍ରେମେ ବୋଲ ଚୈତନ୍ୟ ନଚାଏ ।"

ମୁଖରେ ଯିନା ହରିନାମ, ହେଲେ ଭିତରେ ସତେ ଯେପରି ଆଉ ଜଣେ ବୋଲୁଛି "ଖାଇବ—ଖାଇବ" ଆଉ କାନ୍ଦୁଛି । ଲୁହଗୁଡ଼ିକ ସତେ ଯେପରି ନାକ ବାଟେ ବହି ଆସୁଛି । ତେଣୁ ମଝିରେ ମଝିରେ ଗୋଟିଏ ଗୋଟିଏ ସୁଁ ଧାଁ ଓ ନାକର ଲୁହକୁ ଢୋକି ଦେଇ ତୃପ୍ତିରେ ଗୋଟିଏ ଗୋଟିଏ "ଆହାଃ ।" ଏମାନେ ବେଶ୍ ଆନନ୍ଦରେ ଖାଇ ପଚରି ଧରି ମଠ ବାହାରକୁ ଯାଉଛନ୍ତି । ଗନ୍ଧଆ କହି ଉଠିଲା "ନିତାଇ ଗୌର—ଶୀଘ୍ର —ରାଧେ ଶ୍ୟାମ-ଆସିବ—ହରେକୃଷ୍ଣ ହରେରାମ—ହେ" ମୁରୁକି ହସା ଦେଇ ସେମାନେ ବାହାରିଗଲେ । ହାତ ଧୋଉ ଧୋଉ ଜଣେ କିଏ କହିଲା "ହେ ଗୋଟିଏ କାମ କରିବା ଚାଲ । ଆଉ ଚାଲ ଯିବାନି ।" "ଆରେ ନ ଗଲେ ଯେ ନାମ ଛାଡ଼ିଦେବେ ।" "ଏ ବେଳରେ ତାଙ୍କୁ ନାମ ନ ଦେଲେ ଆଉ ଆମକୁ ସୁବିଧା ସୁଯୋଗ ମୋଟେ ମିଳିବନି । ତେବେ ଉପାୟ କ'ଣ ?" ଚୁପ୍ ଚାପ୍ ହୋଇ ଶିଖାଶିଖି ହେଲେ ଓ ଶେଷରେ ନିକଟରେ ଥିବା ଗୋଟିଏ ଗଛ ଉପରେ ଛପି ବସିଲେ ।

ଯୁଆଙ୍କ ନାଚ ଚାଲିଛି······

ଧଇଁସଇଁ ହୋଇ ଗଲେଣି । ସେଥିରେ ପୁଣି ଭୋକ । ନିଃଶ୍ବାସ ଘନ ଘନ ଚାଲିଛି । ସାପ ଭଳି ଫଁ ଫଁ ହେଲେଣି । ପାଟି ଘୋଳେଇ ହୋଇ ପଡ଼ିଲାଣି । କରତାଳର ଝେଁ ଝେଁ ଶବ୍ଦ ଆସ୍ତେ ଆସ୍ତେ କମି ଆସିଲାଣି । ଖୋଳ ବାଡ଼େଇ ବାଡ଼େଇ ଆଙ୍ଗୁଳି ପରସ ହୋଇଗଲାଣି । ଆଉ ସମ୍ଭାଳି ପାରିଲେନି । ଅସମ୍ଭାଳ ହେଲା ମନ । ଅସମ୍ଭାଳ ହେଲା ପେଟ । ନିତାଇ ଗୌରଙ୍କ ପ୍ରତି ବିତୃଷ୍ଣା ଦେଖାଦେଲା ।

"ଶଳା—ନିତାଇ ଗୌର— କୁଆଡ଼େ—ରାଧେଶ୍ୟାମ—ଗଲେ—ହରେକୃଷ୍ଣ—ବେ— ହରେ-ରାମ । ନିତାଇଗୌର—ଶଳା—ଭାଲୁ—ରାଧେଶ୍ୟାମ—ଲଙ୍ଗୁଡ଼ି— ହରେରାମ—ଧରାଇଲେ ।" ଏମିତି ଏମିତି ନାନାପ୍ରକାର ଦୋ ଅକ୍ଷରୀ, ତିନ ଅକ୍ଷରୀ ସାଧୁ ଶବ୍ଦକୁ ଯୋଡ଼ି ସପ୍ତପୁରୁଷଙ୍କୁ ଗୋଳେଇ ମିଶେଇ

ନତାସୁଂଗୌରଙ୍କ ସଙ୍ଗେ ଉଦ୍ଧାର କରିବାରେ ଲାଗିଗଲେ ।

ଏମାନେ ଉପରେ ବସି ହସି ହସି ନାକେଦମ ହେଲେଣି । ମୁହଁରେ ଲୁଗାଖଣ୍ଡା ଗେଞ୍ଜି ଗେଞ୍ଜି ବେଦମ ହେଲେଣି । ହେଲେ କ'ଣ ହେବ ହସ ଆଉ ସମ୍ଭାଳ ହେଉନ । ଫିକ୍ କରି ହସ ବାହାରି ପଡ଼ୁଛି । ସେମାନେ ତ ନାମ-ଗୁଡ଼ିବା ଉପରେ । ଏମାନେ ଉପରୁ ନାମ ଧରି ଗୋଟିକ ପରେ ଗୋଟିଏ ଦୁମ୍ ଦାମ୍ ହୋଇ ଡେଇଁଲେ । ଏଣେ ନିସଖା ଝାଳ ନାଳ ଆଣ୍ଠୁ ଏ ହୋଇ ପଳାଇ ଯିବାକୁ ବସିଲେ । ତାଙ୍କୁ ଯେତେ ଡାକିଲେ ବି ଆଉ ଖାଇଲେ ନାହିଁ । ଖାଲି ପୁଅର ମାମୁଁ ସମ୍ବନ୍ଧଟାକୁ ଯୋଡ଼ ଯୋଡ଼ ପଳାଇ ଗଲେ ।

ସେଇଦିନଠାରୁ ନିସଖା ବାଟୁଳା ଖିଆଙ୍କ ନଟବର ଗୁଣ୍ଡାରୁ ଲୋଭ ତୁଟିଲା । ମେଣ୍ଟ ଭାଙ୍ଗିଲା । ମନ ଘର ଧରିଲା । ବାଟକୁ ଆଇଲେ ଚୋଟ ଖାଇ ବୁଢା ଉଆଁ ଅଭ୍ୟାସ ଗୁଡ଼ି କାମ ଧନ୍ଦାରେ ମନ ଦେଲେ ।



# କବି ଯଦୁମଣିଙ୍କ ହାସ୍ୟରସ

ଥରେ କବିସୂର୍ଯ୍ୟ ବଳଦେବ ରଥ ଯଦୁମଣିଙ୍କ ନିକଟକୁ ଗୋଟିଏ ପ୍ରଶ୍ନ ଲେଖି ପଠାଇ ଉତ୍ତର ଲୋଡ଼ି ଥିଲେ । ପ୍ରଶ୍ନଟି ହେଲା—

ନାହିଁ ବାରୁଦ ଆଉ ବେଲସଜ
ବଡ଼ ଉତ୍କଟ ସେ ତୋପ ଆବାଜ
ଯାମୁକା ଅନଳ ଦେଖିଲା ନାହିଁ,
ଚମକି ପଡ଼ଇ ଧୂମୁକା ମହୀ
ସପ୍ତ ପାତାଳକୁ
ଆଗ କରି ଦମ୍ଭ ଦେଲା ସ୍ୱର୍ଗକୁ ।

ଯଦୁମଣି ତାର ଉତ୍ତରରେ ଲେଖିଲେ—

ପାର୍ଥ ଧନୁ—ନାମ ଗ୍ରହିଲା ବେଳେ
ଖିମ ଜାତ ବାତ ହେଲେ ସେକାଳେ
ବଡ଼ ବଙ୍କ ପଣ
ଅମ୍ଭ ପାଖକୁ ଲେଖିଛ ଆପଣ ।

ଅର୍ଥ—ପୂର୍ବେ ଭିନ୍ନ ପ୍ରକାର ବନ୍ଧୁକ ଥିଲା । ଏହି ବନ୍ଧୁକରେ ବାରୁଦ ଭର୍ତ୍ତି କରିବା ପାଇଁ ଯେଉଁ ଜିନିଷଟି ଦରକାର ପଡ଼େ ତାହା ବେଲସଜ ଓ ବାରୁଦ ସହିତ ନିଆଁ ଯୋଗିବା ପାଇଁ ଯେଉଁ ଜିନିଷ ଦରକାର ପଡ଼େ ତାକୁ ଯାମୁକା କହନ୍ତି । ତେଣୁ ବଳଦେବ ଲେଖିଲେ—ବାରୁଦ ନାହିଁ, ବେଲସଜ ନାହିଁ, ତଥାପି ତୋପ ଆବାଜ ହେଉଛି ଓ ଯାମୁକା ନିଆଁ ନ ଲାଗି ମଧ୍ୟ ବନ୍ଧୁକ ଫୁଟୁଛି । ଯାହାଦ୍ୱାରା କି ମହୀ ଦୋହଲି ଉଠୁଛି, ଏ ସମୟରେ ସେ ତଳକୁ ଗର୍ତ୍ତ କରୁଛି ସତ, କିନ୍ତୁ ଉପରି ବାୟୁକୁ ମଧ୍ୟ ଘାଣ୍ଟି ପକାଉଛି । ଏହାର ଉତ୍ତରରେ ଯଦୁମଣି ଲେଖିଲେ— ପାର୍ଥ ଧନୁ=ଗାଣ୍ଡିବର ନାମ ଗ୍ରହିଲାବେଳେ ବା ଗାଣ୍ଡି+ଇବ=ଗୁହ୍ୟ ଦ୍ୱାର କଥା ଭାବିଲା ବେଳେ ଏହାର ଉତ୍ତର ମିଳିବ । ଅର୍ଥାତ୍ ଗୁହ୍ୟ ଦ୍ୱାରରୁ ଯେଉଁ ବାୟୁ ନିର୍ଗତ ହୁଏ ତାହା ତଳକୁ ଗର୍ତ୍ତ କରେ—ଉପରକୁ ଗନ୍ଧ କରେ, ବନ୍ଧୁକ ଓ ନିଆଁ ନ ଥିଲେ ମଧ୍ୟ ଶବ୍ଦ କରେ ।



# ଶଳାବନ୍ଧନ

ଶ୍ରୀ ରାମଚନ୍ଦ୍ର ସେଠୀ

ଚନ୍ଦ୍ର ସେଦିନ କମିତି ଗୋଟେ "ଅଳଓ୍ୟାଡ୍" ଫିଲ୍ କଲେ । ବାସ୍ତବିକ ମନଟା ତାଙ୍କର ଭାରି ଦୁଃଖ ହେଲା । "ଛି—ଛି ଯୁଗ ଯୁଗ ଧରି ସମସ୍ତେ କହୁଛନ୍ତି । ନାହିଁ ନାହିଁ, ମୋର ତ ଗୋଟେ ମନ, ହୃଦୟ, ସକ୍ତି ଅଛି । ପରୋକ୍ଷ ଭାବରେ ସମସ୍ତେ କହିଲେ । ପୁଣି ସବୁବେଳେ କହିଲେ, ମୋ ବାପାର ଶଳା, ମୋ ବାପାର ଶଳା । ନାଁ—ଏହାର ଗୋଟିଏ ପ୍ରତି-ବିଧାନ କରିବା ନିହାତି ଦରକାର । ମନରେ ଗୋଟେ ବଡ଼ ବୁଦ୍ଧି ପ୍ରବେଶ କରିଗଲା । ଆଉ ଚନ୍ଦ୍ରଙ୍କୁ ଜ୍ଞାତବ୍ୟ ହେଲା, ସେ ଯେବେ ବାହାରକୁ ମୋଟେ ବାହାରିବେ ନାହିଁ, ତେବେ ସବୁ ସାଫ୍—ରାଧା ଆଉ ରହିବେ ସେ, ବଂଶୀ ବାଜିବ ।

ଅବଶ୍ୟ ମନର ରାଗ ଆଉ ପ୍ରତିକାରର ପନ୍ଥାଟା ତାଙ୍କୁ ବ୍ୟତିବ୍ୟସ୍ତ କଲା । ତଥାପି ମନର ଓରମାନ ମେଣ୍ଟାଇବା ପାଇଁ ସେ ସେଦିନ ଶୋଇଲେ ଘରର କବାଟ କିଳି—ଦେଖାଯାଉ—

ଗେଷେପୁ କବାଟ ବାଡେଇ ଡାକ ଛାଡ଼ିଲା, "ମାମୁଁ—ମାମୁଁ"

"ଧେତ୍ତେରି—ଶେଷକୁ ଗେଷେପୁ ବି ଡାକିଲା ମାମୁଁ—ପ୍ରକୃତରେ ଏ ଜୀବନରେ ପ୍ରୟୋଜନ ଆଉ କଅଣ ? ପିଲାମାନଙ୍କ ଠାରୁ ଆରମ୍ଭ କରି ସଭିଙ୍କର ମାମୁଁ ମାନେ ବାପାର ଶଳା ହେବା ଅପେକ୍ଷା ମରି-ଯିବା—ଏଁ—ଏ ସୁନ୍ଦର ଜୀବନଟା— । ପୁଣି ମରିବା ପରେ ମମତାଙ୍କ ମୁହଁରୁ ବାହାରିବ ମମୁଁ ମରିଗଲେ । ଧାଇଁରେ ବିଧାତା—ମଲା ପରେ ବି ସେ ଦାଗ ଲିଭିବନି । ମଲା ପରେ ଯେବେ ମନ୍ଦ କୀର୍ତ୍ତି ରହିଯିବ ତେବେ ତ ଜନମଟା ମୂଳରୁ ବୃଥା ।" ଆତ୍ମହତ୍ୟା କରିବେ ବୋଲି ଯାହା ଭାବିଥିଲେ କଥାଟା ସେଦିନ ବନ୍ଦ ରହିଲା । ବୁଦ୍ଧି ବଳରେ କାର୍ଯ୍ୟ କରିବାକୁ ଭାବିଲେ ।

ଏଣେ ଗେଷେପୁ ମନ ବି ବିକଳ । "ଆହା କେତେ କଥା ଗେଷେଇ ହେଉଛି । ଅଣ୍ଡା ହୋଇଗଲେ ତ ଗଲା— ଆଉ କୋଉଥିକି ଲେଖା"—ପୁଣି ଡାକିଲା —"ମାମୁଁ ସାଆନ୍ତେ—ମାମୁଁ ସାଆନ୍ତେ—"

ଚନ୍ଦ୍ରଙ୍କ ବୁଦ୍ଧି ଏକବାରିରେ ବାଉଳା ଧରିଲା । ଘରଆଡେ ଆଖି ବୁଲେଇଲେ । ଦେଖିଲେ ପାଉଛନ୍ତି କୋଉଠି । ଏ ଘରକୁ ଆସିଲାବେଳେ ଭଲା ସେ ଦଉଡ଼ି ଖଣ୍ଡିଏ ଆଣି ଥାଆନ୍ତେ···

ଗେଷେପୁକୁ ବିକଳ ପଡ଼ିଲା—"ଜହ୍ନମାମୁଁ ସାଆନ୍ତେ ··"

ଅସମ୍ଭାଳ ହୋଇ ଚନ୍ଦ୍ର କହିଲେ—"ଆବେ ଶ୍ୱା'-ରଜା ବାସ୍—ହମ୍ କ୍ୟା ତୁହ୍ମାର ପିତା କା ଶାଲା ହେଁ ?"

ଗେଷେପୁର ବୁଦ୍ଧି ଗୁଡ଼ୁମ୍—ଥଙ୍ଗେଇ ଥଙ୍ଗେଇ କହିଲା "ନାହିଁ ଯେ, ଏ ଜଅାଁସ ରାତିରେ ଅନ୍ଧାର କରି ସବୁଆଡ଼ ଇମିତି କାହିଁ ରହିଚ ଭଲା କହିଲ ? ଆସ କ'ଣ ହଟା—"

"ତୋ ମୁଣ୍ଡ କାହିଁ ବଥଉଚି ? ମୁଁ ଖାଇବନି ଯା—"

ଗେଷେପୁ ମୁଣ୍ଡିଆ ମାରୁଥାଏ କିପରି ମାମୁଁ କହନ୍ତି "ଭଣଜା ! ତମେ କାହିଁ ଅପେକ୍ଷା କରିବ ? ଗଣ୍ଡିଏ ଖାଇନିଅ ।"

କିନ୍ତୁ—ଚନ୍ଦ୍ର କିଛି କହିଲେନି ।

ଉଦ୍ଦେଶ୍ୟ ରଖି ଗେଷେପୁ ଅନୁରୋଧ କଲା "ଅଜ୍ଞା ! ମଶୋହି କରିବାକୁ ବିଜେ ହୁଅନ୍ତୁ ।"

ଚନ୍ଦ୍ର ଗର୍ଜି ଉଠି କହିଲେ, "ଆରେ ହତଭାଗା ! ମୁଁ ଅଜୀବନ ଆହାର ତ୍ୟାଗ କଲି । ମୋ ସହିତ

କୌଣସି ବାକ୍ୟାଳାପ ନକରି ଶୀଘ୍ର ଏଠାରୁ ଚାଲିଯା—"

ମହା ବିଷମ ସମସ୍ୟା ପଡ଼ିଲା । ତରତର ହୋଇ ଗୋଷ୍ପେଦ୍ୱ ଧାଇଁଲା ଭଗବାନଙ୍କ ପାଖକୁ । ଭଗବାନ କଥାଟା କଅଣ ଜାଣିବା ପାଇଁ ଧାଇଁଲେ ଚନ୍ଦ୍ରଙ୍କ ପାଖକୁ । ପୁଣି ହକ୍ କଥାରେ ଯେତେବେଳେ ଶଳା ତ...

ଗୁମର ନ ଜାଣି ଭଗବାନ କହିଲେ "ଶାଳକ ଚନ୍ଦ୍ର ! ଦ୍ୱାର ଖୋଲ ।"

ଏଥର ଚନ୍ଦ୍ରଙ୍କର ପିତ୍ତ ହାଣ୍ଡିଆକୁ ଚଢ଼ିଗଲା । କହିଲେ, ଆଜ ମାରେ କି ମରେ—ଦ୍ୱାର ଖୋଲି ଦେଖନ୍ତି ତ ସମ୍ମୁଖେ ଭଗବାନ । କିଛି ନ କହି ଦଣ୍ଡବତ ନ ପକାଇ ଚନ୍ଦ୍ର ଫେରିଲେ ।

ଘର ଭିତରକୁ ଯଣି ଭଗବାନ କହିଲେ, "କଥା କଅଣ କୁହ ଚନ୍ଦ୍ର ?"

"ହୁଁ—ହୁଁ କଥା ନେଇନା ଆଉ ଲେମ୍ବୁ । ସବୁ ତମରି ଗୁଣ । ହଇଏ ସାର୍ ଗାଇଙ୍କରେ ଛତରି ବନାଇଙ୍କ ପରି ତମର ଏତେ ଭାବ କଅଣ ? ତମରି-ଆଉ ଲେଖା ପଢ଼େଇ ସମସ୍ତେ ମତେ ଡାକିବେ ମାମୁଁ ! ମାନେ ମୁଁ ତାଙ୍କ ବାପାର ଶଳା । ନାଇଁ ନାଇଁ ମୋର ତ ପୁଣି ଗୋଟାଏ ମାନ ସମ୍ମାନ ଅଛି..."

ଭଗବାନ କହିଲେ —"ନିଶ୍ଚୟ-ନିଶ୍ଚୟ, କିନ୍ତୁ ମୁଁ କରିବି କଅଣ ?"

"ସମସ୍ତଙ୍କୁ ଆପଣ କହିଦିଅନ୍ତୁ ମୋତେ ଯେପରି ଏଣିକି କେହି ମାମୁଁ ବୋଲି ନ ଡାକନ୍ତି ।" ଚନ୍ଦ୍ର କହିଲେ ।

ଭଗବାନ କହିଲେ, "ତମେ ମନ ଦୁଃଖ କରନି ଚନ୍ଦ୍ର । ଏ ଗୋଟିଏ ଶାପର ଫଳ । ଏଇ କଳିଯୁଗରେ ତୁମର ଶାପ ମୋଚନ ହେବ । ଏଥିକି ଏତେ ଶୋଚନା କାହିଁକି ? ଟିକିଏ ହସ ।" ଯାହାହେଉ ଗୋଟେ ରାତି ଗୋଟେ ଦିନ ପରେ ଗୋପେଶ୍ୱର ଦେଖିଲା ଚନ୍ଦ୍ର ଟିକିଏ ହସୁଛନ୍ତି । ଏ ପ୍ରତିଶ୍ରୁତି ଶୁଣି ଚନ୍ଦ୍ର ଅବଶ୍ୟ ହସିଲେ । କିନ୍ତୁ ସନ୍ଦେହଟା ଏକାଥରେ ତୁଟିଲାନି । ସେ ଯାହାହେଉ ଦିନକୁ ଦିନ ସନ୍ଦେହ ବଢ଼ିଲା ।

× × ×

ବୁଲର ଦିନଆଁର ଘମାଘୋଟ କଜକଜଆ ଲାଗିଲା । ବୁଲ କହିଲା "ଜହ୍ନ ତୋ ମାମୁଁ କଅଣ, ତୋ ବାପାର ଶଳା ହେଉଥିବ । ହଇରେ ଗୋପାଳ ବାବୁଙ୍କଠୁ ତୁ କ'ଣ ବେଶି ବୁଝିଆ । କଲେଜରେ ସିଏ ପାଠ ପଢ଼ୁଛନ୍ତି । ସିଏ ସବୁ କାଲି ଆସିଛନ୍ତି ଯେ କହୁଥିଲେ, ଚନ୍ଦ୍ର ପାଖକୁ ତିନିଜଣ ଲୋକ ଯାଇ ସେଠୁ ମାଟି ପଥର ଆଣି ଫେରିଛନ୍ତି ।"

ଯାହାହେଉ ଜହ୍ନଙ୍କର ମନଟା ପୁରା ଖୁସି । ଯେତେବେଳେ ସେ ଜାଣିଲେ ଲୋକଙ୍କର ବିଶ୍ୱାସ ତୁଟିଲାଣି, ସେ ଆଉ କାହାର ମାମୁଁ କି ଶଳା ନୁହନ୍ତି । ହସି ହସି ଜହ୍ନପୁନିଅଁ ରାତିଟା ସେ ବେଦମ ହେଲେ । "ଓହୋ ! ଯାହାହେଉ ଶଳା ବନ୍ଧନଟା ଖୋଲିଗଲା ।" ଚନ୍ଦ୍ରଙ୍କର ଦିଲ ପୁରା ଖୁସ୍ ।

●

## ଅର୍ଥପୂର୍ଣ୍ଣ ତଗ ତମାଳରେ ହସ —

ପକା କମଳ ପିଠା କଣ୍ଠ
ଯେଉଁ ପୁରୁଷର ଯେତେ ଇଚ୍ଛା ।

●

# ଗୋଗଚ୍ଛବାଣ୍ଡଆ

ଶ୍ରୀ ସୋମନାଥ ଖୁଣ୍ଟିଆ

ମୁଁ କେମିତି ବଡ଼ଲୋକ ହେଲି ଜାଣି, ମୋର କିଛି ନ ଥିଲା । ବର୍ତ୍ତମାନ ଦେଖନ୍ତୁ ମୁଁ ଅନ୍ତତଃ କୋଡ଼ିଏଟି ବହିର ଲେଖକ, ମୋ ବହି ପୃଥିବୀର ସବୁ ଭାଷାରେ ଅନୁଦିତ ହୋଇ ପୃଥିବୀକୁ ହୁଲ୍‌ସ୍ଥୁଲ୍ କରୁଛି । ମୁଁ ଖୁବ୍ କମ ବୟସରେ ଗୁଡ଼ିଏ ବୁଦ୍ଧି ମୁଣ୍ଡ ଭିତରେ ପୂରେଇ ସାରିଲିଣି । ଆପଣ ଓଲୁ ତେଣୁ ବଡ଼ଲୋକ, ବଡ଼ ଲେଖକ ହେବାର କାଇଦା ଜାଣିନାହାନ୍ତି ମୁଁ ଶିଖେଇ ଦେଉଛି ଟିପି ରଖନ୍ତୁ ।

ବଡ଼ଲୋକ ହେବା ପୂର୍ବରୁ ନିଜକୁ ନିଜେ ଗବେଷକ, ସାମ୍ବାଦିକ ବୋଲି ବାହାରେ, ବନ୍ଧୁ-ବାନ୍ଧବଙ୍କ ଗହଣରେ, ଭୋଜି ଭାତରେ, ସିନେମା ହଲରେ ସବୁଠି ପ୍ରଚାର କରନ୍ତୁ । ଭୁଲଭାଲ ଶ୍ଳୋକ ଦିଟା ଘୋଷି ପାରିଲେ ଆହୁରି ଭଲ ।

ଗାଁ ଗାଁ ବୁଲି ତାଳପତ୍ର ସଂଗ୍ରହ କରନ୍ତୁ, ନହେ ଯୁ'ଡ଼ୁ ସିଆଡ଼ୁ ଲେଖି କେଉଁଥିରେ ଲେଖିବେ, ଜାଣିଲେ ତ । ପୁରୁଣା ତାଳପତ୍ର ପୋଥି ଆଗ ଓ ପଛପଟେ ବହୁତ ଖାଲି ପତ୍ର ଥାଏ । ପୋକଖିଆ, ଖରାପ ହୋଇଥିବା ପତ୍ରଗୁଡ଼ିକୁ ସଂଗ୍ରହ କରି ସେଥିରେ ମନକୁ ଯା ଆସିଲା ତାହା ଲେଖି ଦିଅନ୍ତୁ । ଭବଭୂତିଙ୍କର କର୍ପୂରଗରିଷ୍ଠ କିମ୍ବା କାଳିଦାସଙ୍କର ଜୈନଭ୍ରୂକୁଟୀ ଯଦି ଲେଖାର ନାଁ ହୁଏ ତେବେ ଦେଖ ମଜା !

ଯା ସାଙ୍ଗକୁ ଆଉ ପାଦେ ଆଗେଇଲେ ଉତ୍ତମ । ପୁରୁଣା ସ୍ଥାନରୁ ମୂର୍ତ୍ତି ଚୋରେଇନ୍ତୁ ତାକୁ ପୋତି ଦିଅନ୍ତୁ । ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ଆଣି ସେ ସ୍ଥାନଟି ଖୋଳି କହନ୍ତୁ 'ବହୁଦିନରୁ ମୂର୍ତ୍ତି ଏହିସବୁ ସ୍ଥାନରେ କେତେ ପୋତା ନ ହୋଇଛି ।'

ଟିକିଏ ଭଲ ଅଭିନୟ କରି ଭାବପ୍ରବଣ ହେଲାପରି ହେଲେ ଆପଣ ଭଲ ପଇସା ପାଇ-ପାରିବେ, ଭଲ ନାଁ ହେବ । ଏମିତି କିଛିଦିନ ଚାଲିଲେ ଦେଶ ବିଦେଶକୁ ମଧ୍ୟ ମୂର୍ତ୍ତି, ତାଳପତ୍ର ପୋଥି ନିଜ-ନିଜର ଇଚ୍ଛା ମୁତାବକ ଲେଖି, ତିଆରି କରି ପଠାଇ-ପାରିବେ ।

ମାରୱାଡ଼ିମାନେ ଯେଉଁ ହଳଦିଆ କାଗଜରେ ଜମାଖର୍ଚ୍ଚ ଟିପନ୍ତି ସେମିତି କେତେଖଣ୍ଡି କାଗଜ ଯୋଗାଡ଼ କରି ପାରିଲେ ଐତିହାସିକ ଦଲିଲ ବି ଲେଖାଯାଇ ପାରିବ । ଲୋକଙ୍କୁ ଠକିବାକୁ ବହୁ ରାସ୍ତା ଅଛି । ଦେଖେଇ ପାରିଲେ ହେଲା ।

ସାହିତ୍ୟିକ ଭ୍ରୂକୁଟି ନନ୍ଦନ ଦଶ ପଚାଶଜଣ ଲୋକଙ୍କୁ ବସାଇ ଏସବୁ କଥା ବଖାଣୁ ଥାଆନ୍ତି । ଜଣେ ସିନ୍ଦୂର କଳି ମାରିଥିବା ଲୋକ ସାହସରେ କହିଲେ, "ଆପଣଙ୍କ କଥା ମିଛ ଜଣାପଡ଼ି ପାରେ, ଲୋକେ କ'ଣ ଛ'ମାସିଆ ହୋଇଛନ୍ତି ଯେ ଭୁଚ୍ଛାଟାରେ ଇସ୍ତ୍ରୀକରି ନୋଟଗୁଚ୍ଛ ବଢ଼େଇଦେବେ । ଗୋଗଚ୍ଛ-ବାଣ୍ଡଆ ଖାଇବା କଥା ଖାଲି ।"

ଭ୍ରୂକୁଟି ନନ୍ଦନ ଶୁଣୁଥିଲେ । ସେ କହିଲେ— "ବାପ୍ୟାଟେ କରେ, ତୁମର ଯଦି ଏ କଥାରେ ବିଶ୍ୱାସ ନ ହେଉଛି ଦେଖେଇଦେବା, କ'ଣ ଦେଖେଇଦେଲେ ହେବଟି ! ମୁଁ ତୋ ଗୁରୁ ହେବି । କ'ଣ ମାନିବୁ ନା ନାହିଁ !"

ତା ପରଦିନ ବହୁତ ପୋକାଟୁକୁରା ତାଳପତ୍ର ଯୋଗାଡ଼ ହେଲା । ମୁଣ୍ଡା ଲେଖଣୀ ଯୋଗ ହେଇ ମୁନ ହେଲା, ଭ୍ରୂକୁଟି ନନ୍ଦନ ପ୍ରାୟ ଘଣ୍ଟାଏ ଭିତରେ କ'ଣ ଗୁଡ଼ାଏ ଏଣୁ ତେଣୁ ସେଥିରେ ଲେଖିଦେଲେ । ଖାଲି ଅନୁସ୍ୱାର, ବିସର୍ଗ, ମାତ୍ରା, ଫଳା ଭରାଇ ଗୁଡ଼େ କ'ଣ

ଗାରେଇ ପକାଇଲେ, ଦୁଇଦିନ ଭିତରେ ବିକଶ ପୃଷ୍ଠା ହୋଇଗଲା । ତାଳପତ୍ର ପୋଥିର ନାମ ଦଣ୍ଡି ପଣ୍ଡିତସ୍ୟ ଖଣ୍ଡିତଚରିତମ୍ ବୋଲି ଜଣାଗଲା । ସଂପୃକ୍ତ ଲୋକମାନେ ଆସି ପୋଥିଟିକୁ ଦେଖିଲେ । ଆସ୍ତେ ଦେଖନ୍ତୁ କହି ଭ୍ରୂକୁଟି ନନ୍ଦନ ହସିଆରି କରେଇଦେଲେ ଯେ ବହୁ ପ୍ରାଚୀନ ବହି । ବହୁ କଷ୍ଟ ସହ୍ୟ କରି ପ୍ରାଚୀ ନଦୀ କୂଳରେ ଥିବା ଜୈନ ମନ୍ଦିର ନିକଟରେ ବଟବୃକ୍ଷ ପାର୍ଶ୍ବସ୍ଥ ଗୋଟିଏ ଭଙ୍ଗାଘରୁ ଏହା ମିଳିଛି ।

ଦଣ୍ଡି ପଣ୍ଡିତ ବହମାନ୍ଦିତ୍ୟ ସଭାର ଦ୍ୱାରୀ ଥିଲେ । ସେ ସମୟରେ ଦ୍ୱାରୀମାନେ ବି କାବ୍ୟ କବିତା ଲେଖି ପୃଥିବୀ ଚମକୁଥିଲେ । ଭ୍ରୂକୁଟି ନନ୍ଦନ ଖୁବ୍ ଅଭିନୟ କରି ଆଜନୁକ ଗବେଷଣା କରୁଥିବା ଗୁହମାନଙ୍କୁ ବୁଝାଇବାରେ ଲଗିଆଆନ୍ତି ।

ଏ କଥାର ଭେଦ ଜାଣିଥିବା ଲୋକମାନେ ଗୁଡ଼କୁ ପିମ୍ପୁଡ଼ି ଘେରିଲା ପରି ଏମାନଙ୍କୁ ଘେରାଉ କରିଥାଆନ୍ତି । ଗବେଷଣାରତ ଗୁହ କହିଲେ 'ଦେଖନ୍ତୁ ଭ୍ରୂକୁଟି ବାବୁ, ଏ ବିଷୟରେ ଆମେ ନିଶ୍ଚୟ ଆଲୋକ ଦେବୁ, ଗବେଷଣା କରିବୁ, ଦଣ୍ଡି ପଣ୍ଡିତଙ୍କ ବାପ ଅଜା ଚଉଦ ପୁରୁଷ ଖୋଳତାଡ଼ ବାହାର କରିବୁ, ଆପଣ ଲାଗି-ପଡ଼ନ୍ତୁ, ହଉ ଆମେ ଆସୁଛୁ-ନମସ୍କାର ! ସେମାନେ ଚାଲିଗଲେ । ଭ୍ରୂକୁଟି ନନ୍ଦନ କହିଲେ 'ଦେଖା ବେଟା ଆଳୁଅ । ମ୍ୟୁନିସିପାଲିଟି ଦୋଷରୁ ଲାଇଟି ଫେଲ୍ ମାରିଲେ ଏଥର ପରବାୟୁ ନାହିଁ ଏହିମାନଙ୍କ ଛଣପଟ ଆଲୁଅରେ ରାସ୍ତାଘାଟ ଝକମକ କରିବ ।'

ଜଣେ କିଏ କହିବାର ଶୁଣାଗଲା 'ହଇହେ ଅଜ୍ଞା, ଯାହା ତ କରୁଛ ଆମ ଆଗରେ, ଗୋଟେ ରୋଷେଇ କର ନଚେତ୍...'

ଭ୍ରୂକୁଟିଙ୍କ କଣ୍ଠ ଫିଟିଗଲା । ସେ କହିଲେ ହଇରେ ରୋଷେଇଟେ କ'ଣରେ ଆଜ କ'ଣ ଯଦି ଖାଇବୁ କହ ! ଟିକିଏ ଅପେକ୍ଷା କର ଗବେଷଣାଟା କ'ଣ ହେଉଛି ଦେଖ, ସବୁବେଳେ ପିଲଙ୍କ ଭଳିଆ କ'ଣ ହଉଛରେ ? —

କିଛିଦିନ ପରେ ଭ୍ରୂକୁଟି ନନ୍ଦନ ଗବେଷଣାଗାରରୁ ଖଣ୍ଡେ ଚିଠି ପାଇଲେ । ସେ ଅତି ଉତ୍ସୁକରେ ଖୋଲି ପଢ଼ିଲେ । ସେଥିରେ ଯାହା ଲେଖାଥିଲା ତା'ର ଓଡ଼ିଆ ମର୍ମାନୁବାଦ ଏହି—ଆପଣଙ୍କ ପରି ଉତ୍ସାହ ଗବେଷକଙ୍କର ସାହାଯ୍ୟ ପାଇ ଆମେ ଆନନ୍ଦ ଗଦଗଦ । ଦଣ୍ଡିଙ୍କର ଚଉଦ ପୁରୁଷ ଆମେ ଜାଣିବାକୁ ସମର୍ଥ ହୋଇଛୁ । ଦଣ୍ଡିପଣ୍ଡିତ ବହ୍ନମୂତ୍ରରେ ମଲେ । ତାଙ୍କ ପିତା କାଣ୍ଡି ପଣ୍ଡିତଙ୍କୁ ଧ୍ୱଜଭଙ୍ଗ ବେମାର ହୋଇଥିଲା । ବିଚରା ଭଲ ହୋଇ ଯାଇଥିଲେ, ତାଙ୍କ ବାପ ଗଣ୍ଡୁଳ ପଣ୍ଡିତଙ୍କୁ କ'ଣ ଗୋଟେ ଅଜଣା ରୋଗ ହୋଇଥିଲା କହି ହେଉନି, ତା ପରେ ଗବେଷଣା ଅଧା ଅଛି ତେବେ ସେ ବେଳରେ ଦଉଡ଼ି ଦେଇ ମରିଥିଲେ । ତାଙ୍କ ବାପ ମାଣ୍ଡି ପଣ୍ଡିତ ମାଇପ ହାତରୁ ବାଡ଼ଉଆ ଖାଇ ଖାଇ ଧଇସ୍ତା ହୋଇଥିଲେ ।

ତାଙ୍କ ପିତା ଆଖଣ୍ଡଳ ପଣ୍ଡିତ ଟିକିଏ ଟେରା ଥିଲେ । ସେ କଥା କହିଲାବେଳେ ଆଖି ମାରିବା ପରି ହେବାରେ ଦୁଇଥର ସ୍ଥାନରେ ମାଡ଼ ଖାଇଥିଲେ ।

ଆପଣ ବିକ୍ରମାଦିତ୍ୟ ସଭାର ସେ ଦ୍ୱାରୀ ଥିଲେ ବୋଲି ଯେଉଁ ପ୍ରାରମ୍ଭିକ ସୂଚନା ଦେଇଥିଲେ ତାହା ସତ୍ୟ ବୋଲି ପ୍ରମାଣିତ ହେବାରେ ଯାଗ ମେଘୁଆ ଧରିଛି । ଗବେଷଣାରୁ ଆହୁରି ଜଣାଯାଉଛି ଯେ ସେ କାଳିଦାସଙ୍କର ଧୋବା ଥିଲେ । କାଳିଦାସଙ୍କର ଧୋବା ଖାତା ହିସାବ ପୁସ୍ତକରେ ଲେଖା ଯାଉଥିଲା । ତେଣୁ ଦଣ୍ଡି ସେତିକି ଶିକ୍ଷା କରିବାରେ ଅସୁବିଧା ହୋଇ ନ ଥିଲା ।

ଗବେଷଣା ଗାରଦରୁ ଯେଉଁ ଚିଠି ଖଣ୍ଡିକ ଆସିଥିଲା ସେ ଖଣ୍ଡିକ ଭ୍ରୂକୁଟି ନନ୍ଦନବାବୁ ସବୁଆଡ଼େ ଦେଖାଇଲେ । ଛ'କୁ ନ ଲଗେଇ ପ୍ରଚାର କଲେ । ଯେଉଁ ଚେଲାମାନଙ୍କ ଆଗରେ ସେ ସବୁ କାଣ୍ଡ କରି-ଥିଲେ । ସେମାନେ ମଧ୍ୟ ଆଚମ୍ବିତ ହେଉଥାଆନ୍ତି ।

ଭ୍ରୂକୁଟି ନନ୍ଦନଙ୍କୁ ବହୁ ସଭା ସମିତିକୁ ଡକରା ଆସିଲା । ସେ ଯେଉଁ ସଭାକୁ ଆସନ୍ତି ସେଠାକୁ ସେ

ନଜର ଚେଲାମାନଙ୍କୁ ନେଇ ଯାଇଥା'ନ୍ତି । କାରଣ ସଭାରେ ତାଳିମାଡ଼କୁ ସେମାନେ ଦରକାର ହୁଅନ୍ତି । ସେ ଯେତେବେଳେ ବକ୍ତୃତାର ସୁଅ ଛୁଟାଇ ଥାଆନ୍ତି ସେତେବେଳେ ଘନ ଘନ ତାଳି ମାଡ଼ ହେବାରେ ତାଙ୍କର ନାକପୁଡ଼ା ଫୁଲୁଥାଏ । ତାଳିମାଡ଼ କରିବାକୁ ଯେଉଁ ଚେଲାମାନଙ୍କୁ ସେ ନେଇ ଥାଆନ୍ତି ତାଙ୍କ ପିଛା ଅର୍ଥ ଶ୍ରାଦ୍ଧ ହୁଏ । କିନ୍ତୁ ଖ୍ୟାତି କମେଇବା ନିଶାରେ ଭ୍ରୂକୁଟି ନନ୍ଦନ ମସଗୁଲ ଥାଆନ୍ତି ।

ଥରେ ସେ ସଙ୍ଗୀତ ସଭାକୁ ନିମନ୍ତ୍ରଣ ପାଇ ମୁଖ୍ୟବକ୍ତା ରୂପେ ଯୋଗ ଦେଇଥିଲେ । ମାଲ ଆଗରୁ ଯୋଗାଡ଼ କରି ସେ ସାଥିରେ ନେଇଥିଲେ । କିନ୍ତୁ ଅସଲ କଥା ହେଉଛି ତାଙ୍କୁ ସଙ୍ଗୀତର ସ' ଅକ୍ଷର ବି ମାଲୁମ ନ ଥିଲା । ତେଣୁ ସେ ବହୁ ସଂଖ୍ୟକ ଚେଲାଙ୍କୁ ସାଙ୍ଗରେ ନେଇଥିଲେ । ଦରିଟି ଭିତରେ ଚେଲାମାନେ ଖେଦି ହୋଇ ବସିଲେ ।

ଭ୍ରୂକୁଟି ନନ୍ଦନ ମୁଖ୍ୟବକ୍ତା ହୋଇ ଯାହା କହିଲେ ସଭାପତି ସବୁ କାଟି ପକେଇଲେ । ସଭାପତି ସଙ୍ଗୀତ ବିଶାରଦ । ତେଣୁ ତାଳ, ଲୟ ବିଷୟରେ ଭ୍ରୂକୁଟି ଯାହା କହିଲେ ସେ ସବୁ ଭୁଲ୍ । ଭ୍ରୂକୁଟି ନନ୍ଦନ କହିଥିଲେ 'ସଙ୍ଗୀତ ପରାକାଷ୍ଠା ମୁଣ୍ଡିମାଧବ ପୁସ୍ତକରେ ଲେଖାଅଛି—ଓଡ଼ିଶୀ ହେଉଛି ଚେଚେ-କେଟେ ଧା, ତିରି ତିରି କରି କରି, ତାଉଁ ତାଉଁଲିକେ ଟାଉଁ ଟାଟିଲିକେ ।'

...ସଭାପତି କହିଲେ—ଏ ସବୁ ଭଣ୍ଡାମି । ଭ୍ରୂକୁଟୀ ନନ୍ଦନ ଆହୁରି ରାଗିଯାଇ କହିଲେ—ତାକେ ଧିନକ ଧିନ ଥା, ଥେୟା ଥେୟା ଥେଇ ଥେଇ—ସଭା ସ୍ଥଳ ଏତିକିବେଳେ ତାଳି ମାଡ଼ରେ ଫୋଟି ହୋଇଗଲା । ସାବାସ ଭ୍ରୂକୁଟୀ ବୋଲି ଖାଲି ଚିତ୍କାର ହେଉଥାଏ । ଭ୍ରୂକୁଟି ଆହୁରି ଜୋରରେ ଚଉକି କାଡ଼େଇ କହିଲେ 'ହେ ମୋର ପ୍ରେମୀ ଗଣମାନେ ମୁଁ କହୁଛି ଶୁଣନ୍ତୁ । ସଙ୍ଗୀତ କଣ୍ଡୁ ନାଶନ, ଓଡ଼ିଶୀ ବାଦନେ ବେଦନଯୋଗ ଧାଧାପାପର ଇତିହାସ, ଉତ୍ତ ଓଡ଼ିଶୀ ଓଡ଼ିଶ ନାଶ—ଏହି ପୁସ୍ତକରେ ସଫା ଲେଖା ହୋଇଛି, କେଉଁ ପୃଷ୍ଠାର କେଉଁ ଧାଡ଼ି ମଧ୍ୟ ମୁଁ କହିଦେବି—ହଁ ସେଥିରେ ଲେଖାଅଛି, କ'ଣ ଲେଖାଅଛି ? ମୁଁ ଯାହା କହୁଛି ଲେଖା ଅଛି ।

ସଭାପତି ଉଠୁକି ପଡ଼ି କହିଲେ—ବହିଗୁଡ଼ିକର ଲେଖକ କିଏ ଏବଂ ସେ ବହି ଗୁଡ଼ିକ ମୋତେ ଖାଲି ଦେଖେଇବେ ?

ଭ୍ରୂକୁଟୀ ମନେ ମନେ ଭାବିଲେ 'ସରିଲା କଥା—ହ୍ୟାପ କରୁ ହରୁଗୁ ମୋତେ ନାକେଦମ କରିବ ।' ତାପରେ ସେ ଗର୍ଜି ଉଠି କହିଲେ—'ଆପଣ ଗଲେ ମୁଁ ଦେଖେଇବି ? ନା ତା ହୋଇ ପାରିବ ନାହିଁ । ସେଗୁଡ଼ାକ ଲଣ୍ଡନ ଯାଇଛି । ଇଂରେଜରେ ଛପା ହେଲେ ବଳେ ଦେଖିବେ ।

ଏଥର ତାଳି ମାଡ଼ ଅସହ୍ୟ ହେବାରେ ସଭା ଚଞ୍ଚଳ ଭାଙ୍ଗିଗଲା । ସଭାପତି ପାଞ୍ଚଜଣଙ୍କୁ କାଣପଟକୁ ଡାକି ନେଇ କ'ଣ ଫୁସର ଫାସର ହେଲେ ।

ଜପ ଯୋଗେ ପାଞ୍ଚଜଣ ଗଜା ଟୋକା ଆଗୁଆ ଆସି ଛକିଲେ । ଭ୍ରୂକୁଟି ନନ୍ଦନ ଯିବାକୁ ବାହାରିଲେ । ଅଧ ରାସ୍ତାରେ କେହି ତାଙ୍କ ଗୋଡ଼ ଅଟକେଇଲା । ଓହ୍ଲାଇବ କହି କିଏ ଜଣେ ଥାଳେ ଦେଲା ତ କିଏ ନାକ ଉପରକୁ କଷି କରି ଗୋଟିଏ ଥୋଇଦେଲା । ଚେଲାମାନେ ଥିଲେ ଭଲ ହୋଇଥାଆନ୍ତା କିନ୍ତୁ ସେମାନେ ସଜାକୁ ଆସିବେ ବୋଲି ଅଟକିଗଲେ ।

ଭ୍ରୂକୁଟି ନନ୍ଦନକୁ ଆଚ୍ଛା ପାଟେନ ସେଠାରେ ଦିଆଗଲା । ଲୁଗାପଟା ଚିରିଗଲା । ଯିଏ ଯାହା ପାରିଲା ସିଏ ତା କରିଗଲା । ତାଙ୍କୁ କ୍ଷମା ମାଗନ୍ତୁ ବୋଲି ବାଧ କରାଗଲା । ସେ ତା ନ କରିବାକୁ ଚାରା ନାହିଁ । କ୍ଷମା ପ୍ରାର୍ଥନା ଲେଖେଇ ନିଆଗଲା ।

କୌଣସି ପ୍ରକାରେ ସେ ନିଜର ଜୀବନ ବଞ୍ଚାଇ ପାଖ ଡାକ୍ତର ଖାନାରେ ଭର୍ତ୍ତି ହେଲେ । ଚେଲାମାନେ ଆଉ ଦେଖାକରି କହିଲେ—'ଭଲରେ ପହଞ୍ଚିଛ ତ ।' କୁନ୍ତେଇ କୁନ୍ତେଇ ହୋଇ ଭ୍ରୂକୁଟି ନନ୍ଦନ କହିଲେ—'ଗୋଗଛବାଡ଼ିଆ ।'

ଗୋଗଛବାଡ଼ଆ ଘରବଦନ ଚାର ଆସିଲ୍ ଯେ ଦଣ୍ଡି ଚରିତମ୍ ଜାଲଲେଖା, ସେ ଯାହା ଟଙ୍କା ନେଇ-ଛନ୍ତି ତାକୁ ଫେରସ୍ତ ନ ଦେଲେ···

ଭ୍ରୂକୁଟି ଉକ ଉକ ହୋଇ ଗୁର୍ଣ୍ଣି ରହିଲେ। ଜଣେ ଚେଲା କହିଲା 'କଷ୍ଟ କଲେ କୃଷ୍ଣ ମିଳେ ଆଜ୍ଞା ! କଏ କ'ଣ ଲେଖିଦେଲା, କଏ କ'ଣ କହି ଦେଲା ସେଥିରେ ଭୟ କଲେ ଚଳିବ ?'

ଭ୍ରୂକୁଟି ନନ୍ଦନ କହିଲେ "ବନ୍ଦନର ତାଳମାଡ଼, କଥା ବୁଝ୍ ବୁଝ୍ ଜଣା ପଡ଼ିଲା ଯେ ଭ୍ରୂକୁଟି ନନ୍ଦନ ବାବୁଙ୍କ ନାକ-ପାଟି ସମାନ ହୋଇ ଯାଇଛି ।

ବଡ଼ଲୋକ ହେବାର କାଇଦା ସେ ଜାଣିଥିଲେ, ବୋଲି ତାଙ୍କ ଅବସ୍ଥା ସିନା ଏଇଆ ହେଲା ।



## ବଂଚିବ ତ' ଟିକିଏ ହସ

ଖଗବଦନ ଖଗବେଳେ ଟିଉସନ୍ ମାଷ୍ଟରଙ୍କ ନିକଟରେ ପାଠ ପଢ଼ୁଥାଏ ଉମା । ଟିଉସନ୍ ମାଷ୍ଟ୍ରେ କହିଲେ -- ଉମା ! ଗୋଟିଏ ଗ୍ଲାସ ଜଳ ଆଣିଲ । ଉମା ସଙ୍ଗେ ସଙ୍ଗେ ଉଠିଯାଇ ଆଣିଲା ଗୋଟିଏ ଗ୍ଲାସ ଜଳ । ମାଷ୍ଟ୍ରେ ଗ୍ଲାସଟିର ଜଳ ପାନ କରିସାରି ଉମାକୁ ପଚାରିଲେ—ଜଳର ଅନ୍ୟ ନାମ କ'ଣ ?

ଉମା —ପାଣି ।

ମାଷ୍ଟ୍ରେ—ପାଣି ଶବ୍ଦ ପ୍ରୟୋଗ କରି ଗୋଟିଏ ବାକ୍ୟ ଗଠନ କର ।

ଉମା—ଆଜ ଖଗବେଳେ ମାଷ୍ଟ୍ରେ ମୋ ପାଣି ଗ୍ରହଣ କଲେ ।

× × ×

ସାଧୁବାବୁ ଓ ନକୁଳବାବୁ ଗୃହବାସ କରନ୍ତି କଟକ ସହରରେ । ଲାଗି ଲାଗି ଦୁଇଜଣଙ୍କର ଦୁଇଟି ବସାଘର । ଦୁଇଜଣଙ୍କର ଗୋଟିଏ ଗାଧୁଆ ଘର । ଗୋଟିଏ ପାଇଖାନା । ସେ ଦିନ ଖୁବ୍ ଭୋରରୁ ଉଠି ସାଧୁବାବୁ ନୋଟା ଧରି ବାହାରି ଆସିଲେ ପାଇଖାନା ଯିବା ପାଇଁ । ଠିକ୍ ସେତିକିବେଳେ ନୋଟା ଧରି ବାହାରି ଆସିଲେ ନକୁଳବାବୁ । ଦୁଇ-ଜଣଙ୍କୁ ତରବରିଆ ଚଳିବ । ସାଧୁବାବୁଙ୍କୁ ଦେଖି ପକାଇ ନକୁଳବାବୁ କହିଲେ—ଆପଣ ଯାଆନ୍ତୁ ।

ସାଧୁବାବୁ—ନାଁ······ନାଁ······ପ୍ରଥମେ ଆପଣ ଯାଆନ୍ତୁ ।

ନକୁଳ—ନାଁ···ନାଁ···ମୁଁ ଅପେକ୍ଷା କରୁଛି, ଆପଣ ଯାଆନ୍ତୁ ।

ସାଧୁ—ନାଁ···ନାଁ···ଆପଣ ଯାଆନ୍ତୁ ।

(ଭଦ୍ରାମୀ ଦୃଷ୍ଟିରୁ ଦୁଇଜଣଙ୍କର ଏମିତି କିଛି ସମୟ ଆଲୋଚନା ପରେ)

ନକୁଳ—ମୋର ହୋଇ ଯାଇଛି । ଏବେ ଆପଣ ଯାଆନ୍ତୁ ।

× × ×

ରାମନାଥ ବାବୁ ଧଇଁ ସଇଁ ହୋଇ ଘର ଭିତରକୁ ପଶି ଆସି ହସି ହସି ସ୍ତ୍ରୀଙ୍କୁ କହିଲେ—ବୁଝିଲ ମମତା ଆଜ ମୁଁ ୧୫ ପଇସା ରଖି ଦେଇଛି । ମମତା ବୋକା ଭଳି ସ୍ୱାମୀଙ୍କୁ ଗୁର୍ଣ୍ଣି ରହି କହିଲେ—କେମିତି ?

ରାମନାଥ ବାବୁ ଉତ୍ଫୁଲ୍ଲିତ ହୋଇ କହିଲେ—ଟାଉନ୍‌ବସ୍‌ରେ ଷ୍ଟେସନ ବଜାରରୁ ଗୃହମାଗୌରିକୁ ଆସିଥିଲେ ୧୫ ପଇସା ପଡ଼ଥାନ୍ତା । କିନ୍ତୁ ମୁଁ ଟାଉନ୍‌ବସରେ ନ ଆସି ବସ୍ ପଛରେ ଦୌଡ଼ ଦୌଡ଼ ଆସି ୧୫ ପଇସା ରଖି ଦେଇଛି ।

ମମତା ତତ୍‌କ୍ଷଣାତ୍ କହି ଉଠିଲେ—ତୁମେ କେଡ଼େ ବୋକା ମ ! ବସ୍ ପଛରେ ନ ଆସି ରିକ୍‌ସା ପଛରେ ଦୌଡ଼ ଦୌଡ଼ ଆସିଥିଲେ ଯେ ୭୫ ପଇସା ରହି ଯାଇଥାନ୍ତା ।

[୨ୟ ପୃଷ୍ଠାର ଅବଶିଷ୍ଟାଂଶ]

କାମ ନୁହଁ, ପଶୁଙ୍କ କାମ । ଇସ୍ କି ନାସନା କାମ !”

ବସନ୍ତୋତ୍ସବ ସମିତିର ମାର୍ଜିତ ରୁଚିସମ୍ପନ୍ନ ଭଦ୍ର ସଭ୍ୟମାନେ ଏହିବୁ ଘୃଣ୍ୟ କାମରୁ ବହୁତ ଦୂରରେ । ଏପରି ଘୃଣା ଉଦ୍ରେକକାରୀ କାର୍ଯ୍ୟ ସେମାନଙ୍କ ପକ୍ଷରେ ବିଲକୁଲ୍ ଅସମ୍ଭବ । ଗଲା ସେ କଥା କାଟ ଖାଇଗଲା । ପୁଣି କେଉଁ କଥାଟି ହେବ ସେହି ବିଷୟରେ ଚର୍ଚ୍ଚା ଚାଲିଲା । କିଏ କହିଲା ପିଚ୍‌କାରି ମରାମରି ହେବ । କିଏ କହିଲା ନା-ରଙ୍ଗ ବୋଳାବୋଳି ହେବ । ବୁଢା ଭିତରେ ଗୋଟାଏ ନେକେଡ଼ା ବାଘ ଲୁଚି ରହିଥିଲା ପରି ସଭ୍ୟମାନଙ୍କ ଭିତରେ ଜଣେ କମ୍ୟୁନିଷ୍ଟ ଛପି ରହିଥିଲେ । ସେ ଗର୍ଜନ କରି ଉଠିଲେ—ନା ସେ ରଙ୍ଗ ଫୋପଡ଼ା କାମ ଚାଲିବ ନାହିଁ । ଏଗୁଡାକ ଲୁଗା ବେପାରୀ ପୁଞ୍ଜିପତିଙ୍କ ଷଡ଼ଯନ୍ତ୍ର, ଚାଲବାଜି, ଜାଲଫିସାଦି, ମାରପେଞ୍ଚ, ଶଇତାନି ଛଡ଼ା ଆଉ କିଛି ନୁହେଁ । ଲୁଗା ସବୁ ରଙ୍ଗରେ ନଷ୍ଟ ହୋଇଗଲେ ସେମାନଙ୍କର ଆହୁରି ଅଧିକ ଲୁଗା ବିକି ହେବ । ବେଶି ଲୁଗା ବିକି ହେଲେ ମୁନାଫାଖୋରଙ୍କ ବେଶି ମୁନାଫା ହେବ । ଏମାନଙ୍କ ଦାଉରେ ସର୍ବହରାମାନେ ପେଷି ହୋଇ ଯାଉଛନ୍ତି । ଏଣେ ରଙ୍ଗ ବିକି, ଲୁଗା ନଷ୍ଟ କରି ମୁନାଫା ତେଣେ ଲୁଗା ବିକି ମୁନାଫା ନା ନା ଆମେ ସେ ଘୃଣା ଷଡ଼ଯନ୍ତ୍ରର ଶିକାର ହେବୁ ନାହିଁ ।

ଅପ୍ରତ୍ୟାଶିତ ଗୁଡ଼ାଏ ନାଲ୍‌ଝିଣ୍ଟିଆ ଶବ୍ଦ ଓ ନୂତନ ସଦର୍ପଙ୍କର କଷ୍ଟିନେତାଳିଆ ବକ୍ତୃତା ଶୁଣି ଅନ୍ୟମାନେ ତା ମୁହଁକୁ ଚାହିଁ ହୋଇ କିଛି ସମୟ ରହିଁ ରହିଲେ । କଥାଟା କି କେତେକଙ୍କ ମନକୁ ଅବଶ୍ୟ ଅନ୍ୟ କାରଣରୁ ପାଇଲା, ସମସ୍ତେ ଗୁହାଁରିଲେ ଏମିତିଆ ହୋଲିଖେଳ ହେବ ଯେ କାହାର କ୍ଷତି ହେବନି । ସମସ୍ତେ ଆନନ୍ଦରେ ତାକୁ ସ୍ୱାଗତ କରିବେ । ଗୋଟାଏ ଆନନ୍ଦର ବାତାବରଣ ଚାରିଆଡ଼େ ଖେଳିଯିବ । ବହୁ ଯୁକ୍ତିତର୍କ ପରେ ଠିକ୍ ହେଲା—ବଡ଼ ସକାଳୁ ସଭ୍ୟମାନେ ସବୁ ବନ୍ଧୁମାନଙ୍କୁ ସଙ୍କୁଳିବାକୁ ବାହାରିବେ, ପାଖରେ ଏଇସବୁ କିନିଷଗୁଡ଼ିକ ରହିବ, ଜଣେ ବନ୍ଧୁକୁ ଭେଟିବା ମାତ୍ରେ ଅତରପାଣି ଭର୍ତ୍ତି ହୋଇଥିବା ଗୋଟାଏ କାଠମାରି ପିଚକିରି ପମ୍ପରୁ ଜଣେ ତାଙ୍କ ଉପରେ ଅତରପାଣି ଛିଞ୍ଚି ଦେବ, ଆଉ ଜଣେ ସିନ୍ଦୁର ଟୋପା ଦେଲାପରି ତାଙ୍କ ମୁଣ୍ଡରେ ଅବିର ଟୋପାଟିଏ ଦେବ, ଆଉ ଜଣେ ଫୁଲହାରଟିଏ ପିନ୍ଧେଇ ଦେବ । ଶେଷକୁ ଜଣେ ତାଙ୍କ ପାଟିରେ ସନ୍ଦେଶଟିଏ ଖୁଆଇଦେବ । ତାପରେ କୁଣ୍ଢିଆ କୁଣ୍ଢେଇ ହୋଇ ଆଉ ଜଣକ ପାଖକୁ ଯିବେ । ନୂଆ କଥାଟାଏ କରୁଛନ୍ତି ବୋଲି ସମସ୍ତେ ଆନନ୍ଦରେ ଫାଟି ପଡ଼ିଲେ । କେତେଜଣଙ୍କୁ ରାତିରେ ନିଦ ହେଲାନାହିଁ । ଅନେକଙ୍କର ରାତି ଚାରିଟାରୁ ନିଦ ଭାଙ୍ଗିଗଲା ।

ସକାଳ ୭ଟାରୁ ସମସ୍ତେ ଜିନିଷପତ୍ର ଧରି ରିକ୍‌ସାରେ ବାହାରି ପଡ଼ିଲେ । ଯାତ୍ରା ଆରମ୍ଭରେ ଅବଶ୍ୟ ଗୋଟିଏ ଚ୍ଛୋଟିଆ ବିଗିଡ଼ି ଛିଙ୍କ ଶ୍ରୁତିଗୋଚର ହୋଇଥିଲା । ସନ୍ଦେଶ ହାଣ୍ଡିଟି ଧରିବା ଲାଗି ବିକଳା ପଣ୍ଡାର ଜିଦ୍‌କୁ ସମସ୍ତେ ସନ୍ଦେହ ଚକ୍ଷୁରେ ଦେଖିଲେ । ବହୁ ବାଦ ବିବାଦ ପରେ ହାଣ୍ଡିଟି ଅଖିଆ ପଣ୍ଡା ମାରଫତ୍‌ରେ ରହିଲା । ପହିଲେ ପଡ଼ିଲା ଅଧ୍ୟାପକ ଦାଶଙ୍କ ଘର । ଖାଉଡ଼ଟାଯାକ ତାଙ୍କର ସ୍ତୁତି, ଦାଶଙ୍କର ତାରିଫ ଓ ସହୃଦୟତାରେ ସଭ୍ୟମାନେ ଖୁବ୍ ଉତ୍ସାହିତ ହୋଇଗଲେ । ବହୁଆଡ଼ ବୁଲି ସାରିବା ପରେ ସ୍ଥିର କଲେ—ଏଡ଼େବଡ଼ କାମଟାଏ ଯଦି ଲୋକେ ଖବର କାଗଜରେ ନ ପଢିବେ ତେବେ ସବୁ ବୃଥା ହୋଇଯିବ । ଏଣୁ ସବୁ ଖବର କାଗଜ ସମ୍ପାଦକମାନଙ୍କୁ ହୋଲିସଙ୍ଗୁଳା ଜଣେଇବା ଦରକାର । କଥାଟି ଯଥାର୍ଥ ଜଣାଗଲା । ସମସ୍ତେ ସମ୍ପାଦକମାନଙ୍କ ପାଖକୁ ଧାଇଁଲେ । ୧ମ ଓ ୨ୟ ସମ୍ପାଦକଙ୍କ ପାଖରେ ମିଳନଟା ବଡ଼ ପ୍ରୀତିପଦ ହେଲା । ୩ୟ ସମ୍ପାଦକଙ୍କ ପାଖରେ ବିଗିଡ଼ି ଛିଙ୍କର ଫଳାଫଳଟା ବେଶ୍ ଜଣା ପଡ଼ିଗଲା । ବହୁ ଅନୁନୟ ବିନୟ ପରେ ସମ୍ପାଦକ ପଦାକୁ ମୁଣ୍ଡ କାଢିଲେ । ଜଣେ ଧୈର୍ଯ୍ୟଚ୍ୟୁତ ସଭ୍ୟ ଫୁସୁଫୁସୁ କରି ଜଣକ କାନରେ କହିଲେ ଯେ ଯେତେ ପ୍ରଦୁତତାଳା ବୋଲ

ହେଲ ଯେଉଁଥିରେ ନାଗ ତ ନାଗ, ଢେମଣାଟାଏ ବି ଗାତରୁ ବାହାରି ଆସି ଥାଆନ୍ତା, ସେତେବେଳକୁ ମହାଶୟ ମୁହଁ ଦେଖାଉଛନ୍ତି ।

ସମସ୍ତଙ୍କର ଆଗମନର ଉଦ୍ଦେଶ୍ୟ କର୍ମାରମ୍ଭର ଉଦ୍ୟମ ଜାଣିବା ମାତ୍ରେ ସମ୍ପାଦକଙ୍କୁ ଆଉ ସମ୍ଭାଳେ କିଏ ? ଚଉକି ଉପରୁ ପିଚ୍କି ଉଠି ଘର ଭିତରେ ଏପାଖ ସେପାଖ ହୋଇ ଗର୍ଜନ କରି ଲାଗିଲେ—"ଏଗୁଡ଼ାକ ମୁଁ ଘୃଣା କରେ । କଦର୍ଯ୍ୟ, ଅଭଦ୍ର, ଅସାମାଜିକ କୁସଂସ୍କାର ଉପରେ ମୁଁ ପଦାଘାତ କରେ, ମୁଁ-ମୁଁ-ମୁଁ ଯା—ନା—ଯାଅ ଦୂରହୁଅ ଏଠୁଁ ।"

ଜଣେ ଖୁବ୍ ସାହସ ବାନ୍ଧି କହିଲା—"ଆଜ୍ଞା, ଏଥିରେ ତ କୌଣସି କ୍ଷତି ହେବାର ସମ୍ଭାବନା ନାହିଁ ବରଂ ଏହା ଏକ ଦୃଢ଼ ସାମାଜିକ ସୌହାର୍ଦ୍ୟ ପ୍ରତିଷ୍ଠା ଦିଗରେ ସାହାଯ୍ୟ କରିବ ।"

ନିଆଁରେ ଯେମିତି କିଏ କିରେସିନି ଛିଟିଲା । ରାଗରେ ଜର୍ଜ୍ଜି ହୋଇ ସେ ପୁଣି ଗର୍ଜି ଉଠିଲେ—"କଅଣ ହେଲା—ସୌହାର୍ଦ୍ୟ ! ଚୁପ୍ କର । ବନ୍ୟା, ମରୁଡ଼ିରେ ଲୋକ ଖାଇବାକୁ ପାଉ ନାହାନ୍ତି, ତୁମେ ଅତରପାଣି, ଫୁଲମାଳ ସଜାଇ ସୌହାର୍ଦ୍ୟ ପ୍ରତିଷ୍ଠା କରିବ ? ଦୂରହୁଅ ପଳାଅ ମୋ ଆଗରୁ, ମୁଁ ତୁମ-ମାନଙ୍କ ଅବିବେକୀପଣ ଦେଖି ସହ୍ୟ କରି ପାରୁନି । ଉଠୁଛ ନା ଦରୁଆନ୍‌କୁ ଡାକିବି ?"

ହଠାତ୍ ଏପରି ଅନପେକ୍ଷିତ ଏକ ବଜ୍ର ପାଇଁ ସଭ୍ୟ-ମାନେ ପ୍ରସ୍ତୁତ ନଥିଲେ, ଯାହାର ମୁଣ୍ଡକୁ କିଛି ଗୋଟାଏ ଉତ୍ତର ଡାକିଲା ନାହିଁ । ଯାହା ବା କିଏ ପଦେଅଧେ କହି ଥାଆନ୍ତେ, ତାଙ୍କ କାଳସୀ ପରି ନାଚିବା ଦେଖି ଛାନିଆଁରେ ପଳେଇ ଆସିଲେ ।

ସନ୍ଧ୍ୟାରେ ହମିଶ ଘରେ ସମସ୍ତେ ଜମା ହେଲେ । ସକାଳ ବୈଠକରେ ଯୋଗ ଦେଇ ନଥିବା ଗଡେଇ ନାହାକ ସକାଳ ହାଲଚାଲ ଶୁଣିବା ଲାଗି ଆସିଥିଲା । ବିରସ ବଦନରେ ଯେତେବେଳେ ସଭ୍ୟମାନେ ଏ ଉତ୍ସବକୁ ଉଠେଇଁ ଦେବାର ପ୍ରସ୍ତାବ କଲେ ସେ ଆଶ୍ଚର୍ଯ୍ୟ ହୋଇଯାଇ କାରଣ ପଚାରିଲା । ବନ୍ୟା ମରୁଡ଼ି ପ୍ରପୀ-ଡ଼ିତ ଉତ୍କଳୀୟମାନଙ୍କ ପାଇଁ କୋହ ଉଠୁଥିବା ସମ୍ପାଦକଙ୍କ ଭର୍ତ୍ସନା ଓ କାଳସୀ ନୃତ୍ୟ ବିଷୟରେ ସବୁକିଛି ଶୁଣିବା ପରେ ସେ ସମସ୍ତଙ୍କୁ ଉପହାସ କରି କହିଲା—"ହଇରେ ସମସ୍ତଙ୍କ ମୁଣ୍ଡରେ ମଣ୍ଡା ପଶିଥିଲା । କେହି କିଛି କାଠମାଣି ଲଗେଇ ପାରିଲ ନାହିଁ ? ଆରେ ତାଙ୍କୁ ପଚାରିଲ ନାହିଁ—ବନ୍ୟା ମରୁଡ଼ିରେ ଲୋକ ତ ଖାଇ-ବାକୁ ପାଉ ନାହାନ୍ତି, ସେ କିଆଁ ଦିନକୁ ଦୁଇବେଳେ ଗୋଟାମାଛ ଭଜା ଠୁଙ୍କି ଦେଉଛନ୍ତି । ମରୁଡ଼ିଲାଗି ଲୋକଙ୍କ ତ ଜମା ମିଳୁନି ସେ କିଆଁ ପଚାଶଟଙ୍କିଆ ଧୋତି ପିନ୍ଧୁଛନ୍ତି । ପଟ୍ଟ ବୁଢ଼ିଆ ଗୁଡ଼ାକ ସେଠୁ ପଳେଇ ଆସି ଏଠି କାନ୍ଦୁଛନ୍ତି । କରେ ଘରକୁ ମାନ କରି ଖପରରେ ଖାଇବ ସବୁ ? ଆମ ଉତ୍ସବ ବନ୍ଦ ହେବ କିଆଁ । ସେଇ ଜଣକ ପାଖରେ ହାରିଗଲ ବୋଲି ଉତ୍ସବ ବନ୍ଦ ରଖିବ ? ତାଙ୍କୁ ମୁଁ ସତରପଟ ଶତାକାଟି ଛଡ଼ାପଟ ନେଇ ଆସିବି ।"

କଥାଟାକୁ ସମସ୍ତେ ନାପସନ୍ଦ କଲାରୁ ସେ କଣଟେ ହାତମାରି ପୁଣି କହିଲା—ତାଙ୍କ ମୁହଁରେ ମୁଁ ଅବିର ବଦଳରେ ସନ୍ଧ କଳା ନ ବୋଳିଛି ତେବେ ଏ କଣରୁ ଫାଳେ କାଟିଦେବ । ସେଦିନ ବାକି ସଭାସମିତି ଖୁବ୍ ଜୋରରେ ହୋଇଗଲା । ଫଳାଫଳକୁ ସମସ୍ତେ ଚାହିଁ ରହିଲେ ।

× × ×

ସମ୍ପାଦକ ନିଜ କୋଠରୀରେ ଏକୁଟିଆ ବସି ଗୋଟାଏ କଅଣ ପଢ଼ି ଲାଗି ଥାଆନ୍ତି । ଠିକ୍ ଏତିକିବେଳେ ଗଡେଇ ନାହାକ ଗୁଳି ଭଳି ଘର ଭିତରକୁ ପଶିଯାଇ ଅତି ଭକ୍ତିର ସହ ସରୁ ନମସ୍କାରଟାଏ ପକାଇଲା । ସମ୍ପାଦକେ ପ୍ରତି ନମସ୍କାର କରି ପରିଚୟ ଓ ଆଗମନର ଅଭିପ୍ରାୟ ପଚାରିଲେ । ଗଡେଇ ଭକ୍ତିରେ ଗଦଗଦ ହୋଇଯାଇ ଆସ୍ତେ କହିଲା—"ଆଜ୍ଞା, ଆପଣଙ୍କର କାଲିର ସମ୍ପାଦକୀୟଟି ପଢ଼ି ମୁଁ ଏକାବେଳକେ ଅଭିଭୂତ ହୋଇ ପଡ଼ିଲି । ଭାବିଲି ଦେଶର ଏ ଘୋରସଙ୍କଟ ବେଳରେ ଏଭଳି ଅଗ୍ନିଲେଖା ବିପଦଗ୍ରସ୍ତ ଲୋକର ବଣ୍ଟାଖଣ୍ଡ ପରି ହେବ ।"

ସମ୍ପାଦକ ବାଧାଦେଇ କହିଲେ—"ବସନ୍ତୁ, ବିଜେନ୍ତୁ—ଆରେ ବସନ୍ତୁ ନ—ଆରେ ହରିଆ ! ଭଦ୍ର ଲୋକ ଅସିଛନ୍ତି ବ୍ୟବସ୍ଥା କର।" ତାପରେ ଅଳ୍ପ ହସି କହିଲେ—"ମୁଁ କବା ଗୁର, କ ଅଗ୍ରଲେଖା ବା ଲେଖୁଛି ।"

ଗଦେଇ ଦେଖିଲା ତା ଔଷଧପାନଟା ଠିକ୍ କାମ କରୁଛି । ସାଙ୍ଗେ ସାଙ୍ଗେ ସେ ଦ୍ୱିଗୁଣା ମାତ୍ରା ଚଢ଼େଇ କହିଲା—"ଆଜ୍ଞା ଆପଣଙ୍କ ପକ୍ଷେ ଏଇଟା କହିବା ସ୍ୱାଭାବିକ । ବଜାଣି କହନ୍ତି "ନମ୍ରନ୍ତି ଫଳିନୋ ବୃକ୍ଷାଃ, ଗୁଣିନୋ ଜନାଃ ।" ଆପଣଙ୍କ ପାଇ ଆମ ଦେଶ ଧନ୍ୟ ଧନ୍ୟ ହୋଇଛି । ଆପଣଙ୍କ କଲମ ନିକଟରେ ମୁଖ୍ୟମନ୍ତ୍ରୀଙ୍କଠାରୁ ମୂର୍ଖ ଦପ୍ତରୀ ପର୍ଯ୍ୟନ୍ତ ସମସ୍ତଙ୍କର ମସ୍ତକ ଅବନତ, ଦୁର୍ନୀତିଗ୍ରସ୍ତ ଲୋକେ ପୋଲିସକୁ ଯେତେ ଭୟ ନ କରନ୍ତି, ସେତେ ବେଶି ଭୟ କରନ୍ତି ଆପଣଙ୍କ କଲମକୁ ।"

"ହେ ହରିଆ ! ଆରେ ଏତେବେଳଯାଏ କଅଣ କରୁଛୁ । ଆରେ ଚଞ୍ଚଳ ଆଣ, ଅଳସୁଆଟା କୋଉ କାମକୁ ପଟୁ ନୁହେଁ ।"

କିଛି ସମୟ ପରେ ହରିଆ ଚାହା, କେକ୍, ବିସ୍କୁଟ ନେଇ ଆସିଲା । ଗଦେଇ ସେଗୁଡ଼ାକ ନ ଦେଖିଲା ପରି ହୋଇ କହି ଲାଗିଥାଏ—"ଆଜ୍ଞା, ଆଉ କେଉଁ ରାଜ୍ୟ ହୋଇଥିଲେ ଲୋକେ ଆପଣଙ୍କୁ ନେଇ ରାଷ୍ଟ୍ରପତି ଆସନରେ ବସେଇ ଥାଆନ୍ତେ । ଆମ ରାଜ୍ୟ ବୋଲି ସିନା ଲୋକେ ଆପଣଙ୍କୁ ଚିହ୍ନି ପାରିଲେ ନାହିଁ । ଆଜ୍ଞା, ଆପଣଙ୍କର କେଉଁଠି ଗୋଟାଏ ଉଚ୍ଚଗ୍ରହ ଲୁଚିପଶିଆ ହୋଇ ରହିଯାଇଛି । ଆପଣ ତ ବହୁଦିନ ଧରି ଏଇ ସ୍ତରରେ ରହିବା ଲୋକ ନୁହନ୍ତି । ଆପଣ ସବୁବେଳେ କେବଳ ଉପରକୁ ଉଠିବା ବ୍ୟକ୍ତି । ସାମୁଦ୍ରିକ ଶାସ୍ତ୍ର ଅନୁଯାୟୀ ଆପଣଙ୍କ ନାକ, କାନ, ଗାଲ୍ ଏହା ପରିଷ୍କାର ସୂଚେଇ ଦେଉଛନ୍ତି । ମୋତେ ସବୁ ଲକ୍ଷଣ ଦିଶୁଛି ।"

"ଆପଣ ଆଗ ଖାଇ ନିଅନ୍ତୁ ତ, ଚା ଥଣ୍ଡା ହୋଇଯିବ । ଖିଆ ଆଗ ସାରନ୍ତୁ, ତାପରେ କଥାବାର୍ତ୍ତା କହିବେ ।"

ଗଦେଇ ମିନିଟକ ମଧ୍ୟରେ ସବୁ ସାରି ପୁଣି ଆରମ୍ଭ କଲା—"ଆଜ୍ଞା ସାମୁଦ୍ରିକ ଲକ୍ଷଣ ଅନୁଯାୟୀ ଆପଣ ତ ଶୀର୍ଷସ୍ଥାନର ଅଧିକାରୀ ହେବେ । ଆପଣଙ୍କ ହାତ ଟିକିଏ ଦେଖାଇବେ କି ?"

"ଆପଣ ତେବେ ଜଣେ ହସ୍ତରେଖା ବିଶାରଦ ?"

"ଆଜ୍ଞା ଏତେବଡ଼ କଥାଟାଏ ମୁଁ କିପରି କହିବି, ଏ ଶାସ୍ତ୍ର ଅଗାଧ ସମୁଦ୍ର । ତାର ଗଭୀରତା ମାପି ବିଶାରଦ ହେବା କିଛି ସହଜ କଥା ନୁହେଁ । ମୁଁ ସାମାନ୍ୟ କିଛି କୋରିଆ ସଂଗ୍ରହ କରିଛି ମାତ୍ର । ଆପଣମାନଙ୍କ କଲ୍ୟାଣରୁ ମୋର ଭବିଷ୍ୟ କଥନ କେଉଁଠିରେ ଅସତ୍ୟ ହୋଇନି । ମୁଁ କହିଥିଲି ଗିରି ରାଷ୍ଟ୍ରପତି ହେବେ । ସେ ହେଲେ । ମାର୍କିନ ବ୍ୟୋମଗୁଣିମାନେ ଚନ୍ଦ୍ର ପୃଷ୍ଠରେ ଯେଉଁ ତାରିଖ ଯେତେଟାବେଳେ ଓହ୍ଲାଇବେ ବୋଲି କହିଥିଲି ଠିକ୍ ତାହା ହେଲା । ମୋର ପ୍ରାୟ ସବୁ ଭବିଷ୍ୟତ କଥନ ନ୍ୟୁୟର୍କ ଟାଇମ୍ସରେ ବାହାରିଛି ।"

ଏହା କହିସାରି ସେ ସମ୍ପାଦକଙ୍କ ହାତ ଦେଖିଲା । ତାପରେ ସାଙ୍ଗରେ ନେଇଥିବା ଗୋଟିଏ ବାକ୍ସରୁ କାଚଟିଏ କାଢ଼ି ନାକ ଅଗ, କପାଳ, ଗାଲକୁ ତାରି ଭିତର ଦେଇ ନିରେଖି ନିରେଖି ଦେଖିଲା । ଅବାକ୍ ହୋଇଗଲା ପରି କହିଲା—ଏପରି ଚିହ୍ନ ମୁଁ ସାମୁଦ୍ରିକ ଚର୍ଚ୍ଚା କରିବା ଦିନଠାରୁ କେବେହେଲେ ଦେଖି ନଥିଲି । ଆସନ୍ତା ତିନି ବର୍ଷ ମଧ୍ୟରେ ଆପଣଙ୍କର ଅଚିନ୍ତ୍ୟମାପ୍ତ ସୌଭାଗ୍ୟ ଲାଭ ହେବ । ଚମ ଉପରେ ରେଖାଟା ଠିକ୍ ଜଣାପଡୁନି । ଗ୍ଲାସ ନିଆଗଲେ ପରିଷ୍କାର ବାରି ହୋଇ ଯାଆନ୍ତା । ନିର୍ଦ୍ଦିଷ୍ଟ ଦିନ ମୁଁ କହି ଦେଇ ପାରନ୍ତି ।"

"ହଁ ହଁ ଆପଣ ଗ୍ଲାସ ନିଅନ୍ତୁ ନା, ଆପଣଙ୍କ ଭବିଷ୍ୟ କଥନଟା ପରଖି ହୋଇ ଯାଆନ୍ତା ।"

"ଆଜ୍ଞା ବର୍ଷଟା ତ ନିର୍ଧାର୍ଯ୍ୟ ଜଣା ପଡ଼ିଗଲା । ନିର୍ଦ୍ଦିଷ୍ଟ ଦିନ ଜାଣିବା କି ଦରକାର । ଏଥିରେ ଟିକିଏ କଷ୍ଟ ଆପଣଙ୍କୁ ହେବ । ଅବଶ୍ୟ ସେ କ[illegible] ବିଶେଷ କିଛି ନୁହେଁ । କଷ୍ଟ [illegible] ହେଉଛି [illegible]

ପାପୁଲରେ ଟିକଏ କଳା ବୋଲ ଗୋଟିଏ ଧଳା କାଗଜ ଉପରେ ମାଡ଼ଦେବେ । ସେଥିପରି ନାକ ଓ ପାଲ୍ ଆଦିର ଛାପ ନେବାକୁ ହେବ । ସେ କାଳି କିଛି ଖରାପ କାଳି ନୁହେଁ, କନାରେ ପୋଛିଦେଲେ ଛାଡ଼ିଯିବ । ତାପରେ ଟିକଏ ସାବୁନ ମାରିଦେଲେ କାମ ଫତେ ! ଭାବୁଛି କାହିଁକି ଆପଣଙ୍କୁ ହଇରାଣ କରିବ । ବର୍ଷ ତ ଜାଣୁଛନ୍ତି, ନିର୍ଦ୍ଦିଷ୍ଟ ଘଟଣା ଜାଣି କି ଲାଭ ? ”

"ଆଚ୍ଛା ଖାଲି ହାତ ଛାପ ନେଲେ ଚଳିବନି ?”

"ଆଜ୍ଞା ନାଁ—ଶରୀରର ସଙ୍କେତ ଏକ ସ୍ଥାନରୁ ମିଳିବ ନାହିଁ । ସାମୁଦ୍ରିକ ଶାସ୍ତ୍ର ଅନୁଯାୟୀ ଦେହର ବିଭିନ୍ନ ସ୍ଥାନରୁ ସଙ୍କେତ ସବୁ ଗ୍ରହଣ କରିବାକୁ ପଡ଼େ । ନିର୍ଭୁଲ ଗଣନା ପାଇଁ ଏହା ଦରକାର । ଛାଡ଼ନ୍ତୁ ଆଜ୍ଞା—ବିଶେଷ କିଛି କଷ୍ଟ ନ ଥିଲେ ତ, ସେତିକିକେ ଅନ୍ତତଃ କାହିଁକି କରିବେ ।”

"କହୁଛନ୍ତି ତ ବିଶେଷ କଷ୍ଟ ନାହିଁ, ପୋଛି ଦେଲେ ଛାଡ଼ିଯିବ । ନିର୍ଦ୍ଦିଷ୍ଟ ଭାବେ ଗୋଟାଏ ଭବିଷ୍ୟତ କଥା ଜାଣିବା ପାଇଁ ଏ ସାମାନ୍ୟ କଷ୍ଟ ସହ୍ୟ କରାଯାଇପାରେ । ଏଇଟାକୁ ବି ମୁଁ କଷ୍ଟ ବୋଲି ଭାବୁନି । ଆପଣ ଛାପା ଉଠାନ୍ତୁ ।”

ଟିଣ ବାକ୍ସରୁ ଗୋଟାଏ କଳାରଙ୍ଗ ଡବା ଓ ଗୋଟାଏ ବ୍ରସ୍ କାଢ଼ି ଗଣେଇ କାମ ଆରମ୍ଭ କଲା । ପଛଲେ ବ୍ରସ୍‌ରେ କାଳି ଆଣି ପାପୁଲିରେ ଭଲ କରି ବୋଳିଦେଲା । ତାପରେ ନାକ, ଲଲାଟ, ଦୁଇଗାଲ ବେଶ୍ ଭଲ କରି ବୋଳି ଦେଇ କହିଲା—"ଆଜ୍ଞା ମାତ୍ର ଅଧ ମିନିଟିଏ ଅପେକ୍ଷା କରିବାକୁ ହେବ । କାଳିଟା ଟିକିଏ ବସିଗଲେ ଛାପା ନେବାକୁ ସୁବିଧା ହେବ । ଆପଣ ଟିକଏ ସ୍ଥିର ହୋଇ ବସନ୍ତୁ । ମୁଁ ଆଉ ବାକ୍ସରୁ ଛାପାର ବିଶେଷ ଧରଣର କାଗଜଟା ଆଣୁଛି । ପଡାରେ ଶିକ୍‌ସାରେ ଛାପା କାଗଜର ବାକ୍ସଟା ଅଛି । ଟିକଏ ସ୍ଥିର ହୋଇ ବସନ୍ତୁ ଯେପରି, କାଳି ଉପରେ ଅନ୍ୟ କିଛି ନ ବାଜେ, ରିକ୍‌ସା ପାଖରୁ ମୁଁ ଆସୁଛି ।”

ଏତକ କହି ଗଣେଇ ଟିଣ ବାକ୍ସଟି ଧରି ସେ ଘର ଭିତରୁ ବାହାରି ଚାଲିଗଲା । ସମ୍ପାଦକେ ଲଙ୍କା ପୋଡ଼ା ବାନ୍ଦର ପରି କାଳିଆ ମୁହଁ ଓ କାଳିଆ ହାତରେ ଗଣେଇର ଆଗମନକୁ ଅପେକ୍ଷା କରି ରହିଲେ । ଗଣେଇର ଦେଖାନାହିଁ । ବରଂ ଅଚାନ୍ଦା ଘରେ ପାଞ୍ଚଜଣ ଲୋକ ପଶିଆସି ହେଁ ହାଁ ହୋଇ ଲେଉଟି ପଳେଇଗଲେ । ଝପଟ ଆସିଲା ବେଳେ ଘୁରିଆଡ଼ୁ ମାଡ଼ ଆସେ । ଦେଖିବାରୁ କେତେଜଣ ସାମ୍ବାଦିକ ସେତିକିବେଳକୁ ଆସି ଜୁଟିଗଲେ । ସମ୍ପାଦକଙ୍କ ବିଚିତ୍ର ରୂପ ଦେଖି ଗୋଟାଏ ଘଟଣା ଫଟୋ ବି ଖଚ୍‌ଖାଚ୍ ଉଠେଇ ନେଲେ । ଅଧମିନିଟ୍ ଯେତେବେଳେ ଅଧ ଘଣ୍ଟାରେ ପରିଣତ ହେଲା, ସେତେବେଳେ ସମ୍ପାଦକ ଚଲେଇ ଉଠିଲେ— "ହରିଆ—ଆ—ଆ— ।” ହରିଆ ବି ପଶିଆସି ହେଁ କରି ହସିଦେଲା । ସମ୍ପାଦକ ରାଗରେ ଜଳିଯାଇ ଗର୍ଜନ କଲେ—"ବଦମାସ୍ ! କୁଆଡ଼େ ଗଲା ସେ ଆଉ ବଦମାସ୍‌ଟା ।”—

ସେତେବେଳକୁ ଆଉ ବଦମାସ୍‌ଟା ସମିତି ଘରେ ବସି ଅନ୍ୟାନ୍ୟ ସଭ୍ୟମାନଙ୍କୁ କହି ଲାଗିଥାଏ— "ପୁଅ ବସିଛି ସେଇଠି ହନୁମାଙ୍କଡ଼ ହୋଇ । ସେ ତ ବାର୍ଣ୍ଣିସ ପେଣ୍ଟ କାଳି । ଚଟ୍ କରି ଶୁଖିଯିବ । ପୁଅ ସାବୁନରେ ଯେତିକି ଘଷୁଥିବ ସେତିକି ଚଟା ଉଠୁଥିବ । ପୁଅ ନାକରେ କାନ୍ଦିବ, ପୁଅର ଫଟ ବି ଅନ୍ୟ ସବୁ କାଗଜରେ ଯେମିତି ବାହାରି ପଡ଼ିବ ତାର ବ୍ୟବସ୍ଥା କରି ଦେଇଛି । ଟିକିଏ ଅଝର ଚୋପା ପାଇଁ ଗର୍ଜି ଉଠିଲା, ଏବେ ଅଭଲ ନମ୍ବର ହୋଟରର ଶିକାର ହୋଇ ପୁଅ ବସିଥାଉ ।”

